GLIMPSES OF WORLD HISTORY-Vol-III

By Pandit Jawaharlal Nehru

Translated by Surendranath Dwivedy

Published by Grantha Mandir, Cuttack-2, Orissa

Reprinted : January 1989, 1100 copies

Library Edition : Rs. 63-00

Paper-back : Rs. 55-00



ପ୍ରକାଶକ : ଅଭିରାମ ମହାପାତ୍ର

'ଗ୍ରନ୍ଥମନ୍ଦିର, ବିନୋଦବିହାରୀ, କଟକ-୨

ମୁଦ୍ରକ : କୃଷ୍ଣଚନ୍ଦ୍ର ନାୟକ

ସତ୍ୟବ୍ରତ ପ୍ରେସ, ପିଠାପୁର, କଟକ-୧

ପୁନର୍ମୁଦ୍ରଣ : ଜାନୁଆରୀ, ୧୯୮୯

୧୧୦୦ ଖଣ୍ଡ

ମୂଲ୍ୟ : ପାଠାଗାର ସଂସ୍କରଣ ଟ ୬୩-୦୦

ପେପରବ୍ୟାକ୍ ଟ ୫୫-୦୦

# ସୂଚୀପତ୍ର


| ବିଷୟ | ପୃଷ୍ଠା |
|---|---|
| ୧୨୬। ବିପ୍ଳବ ଏବଂ ବିଶେଷତଃ ଇଉରୋପରେ ୧୮୪୮ରେ ଘଟିଥିବା ବିପ୍ଳବ | ୧ |
| ୧୨୭। ଇଟାଲି ଏକ ମିଳିତ ଓ ସ୍ୱାଧୀନ ଜାତି ହେଲା | ୧୦ |
| ୧୨୮। ଜର୍ମାନୀର ଅଭ୍ୟୁଦୟ | ୧୫ |
| ୧୨୯। କେତେକ ପ୍ରସିଦ୍ଧ ଲେଖକ | ୨୩ |
| ୧୩୦। ଡାରଉଇନ୍ ଓ ବିଜ୍ଞାନର ବିଜୟ | ୩୦ |
| ୧୩୧। ଗଣତନ୍ତ୍ରର ଅଗ୍ରଗତି | ୩୮ |
| ୧୩୨। ସାମ୍ୟବାଦର ଆବିର୍ଭାବ | ୪୭ |
| ୧୩୩। କାର୍ଲ୍ ମାର୍କସ ଓ ଶ୍ରମିକ ସଂଗଠନର ବିକାଶ | ୫୫ |
| ୧୩୪। ମାର୍କସବାଦ | ୬୩ |
| ୧୩୫। ଇଂଲଣ୍ଡରେ ଭିକଟୋରିଆ ଯୁଗ | ୭୩ |
| ୧୩୬। ଇଂଲଣ୍ଡ ପୁନଆର ସାହୁକାର ପାଲଟିଲା | ୮୧ |
| ୧୩୭। ଆମେରିକାରେ ଗୃହଯୁଦ୍ଧ | ୮୯ |
| ୧୩୮। ଆମେରିକାର ଅଦୃଶ୍ୟ ସାମ୍ରାଜ୍ୟ | ୯୮ |
| ୧୩୯। ଆୟର୍ଲାଣ୍ଡ ଓ ଇଂଲଣ୍ଡ ଭିତରେ ୭୦୦ ବର୍ଷବ୍ୟାପୀ ସଂଘର୍ଷ | ୧୦୫ |
| ୧୪୦। ଆୟର୍ଲାଣ୍ଡରେ ହୋମ୍‌ରୁଲ ଓ ସିନ୍‌ଫେନ ଆନ୍ଦୋଳନ | ୧୧୫ |
| ୧୪୧। ବ୍ରିଟେନ୍‌ର ଇଜିପ୍ଟ ଅଧିକାର ଓ କର୍ତ୍ତୃତ୍ୱ ପ୍ରତିଷ୍ଠା | ୧୨୨ |
| ୧୪୨। ଇଉରୋପର ବ୍ୟାଧିଗ୍ରସ୍ତ ଅଙ୍ଗ—ତୁର୍କୀ | ୧୩୨ |
| ୧୪୩। ଜାର୍ ଅମଳର ରୁଷ | ୧୪୧ |
| ୧୪୪। ୧୯୦୫ ମସିହାର ରୁଷ-ବିପ୍ଳବ ଓ ତାର ବିଫଳତା | ୧୪୮ |
| ୧୪୫। ଏକ ଯୁଗର ଅବସାନ | ୧୫୬ |
| ୧୪୬। ବିଶ୍ୱଯୁଦ୍ଧର ଆରମ୍ଭ | ୧୬୩ |
| ୧୪୭। ଯୁଦ୍ଧପୂର୍ବ ଭାରତ | ୧୭୩ |
| ୧୪୮। ଯୁଦ୍ଧ ୧୯୧୪—୧୯୧୮ | ୧୮୧ |

| ବିଷୟ | ପୃଷ୍ଠା |
|---|---|
| ୧୪୯ । ଯୁଦ୍ଧର ବିରତି | ୧୮୮ |
| ୧୫୦ । ରୁଷରେ ଜାର୍-ଶାସନର ତିରୋଧାନ | ୧୯୯ |
| ୧୫୧ । ବଲସେଭିକ୍‌ମାନଙ୍କର କ୍ଷମତା-ଅଧିକାର | ୨୦୯ |
| ୧୫୨ । ସୋଭିଏଟର ବିଜୟ | ୨୨୧ |
| ୧୫୩ । ଜାପାନ ହସ୍ତରେ ଚୀନର ଲାଞ୍ଛନା | ୨୩୦ |
| ୧୫୪ । ଯୁଦ୍ଧକାଳୀନ ଭାରତ | ୨୪୧ |
| ୧୫୫ । ଇଉରୋପର ନୂତନ ମାନଚିତ୍ର | ୨୫୨ |
| ୧୫୬ । ଯୁଦ୍ଧୋତ୍ତର ଦୁନିଆ | ୨୬୪ |
| ୧୫୭ । ପ୍ରଜାତନ୍ତ୍ର ଲାଗି ଆୟର୍ଲାଣ୍ଡର ସଂଗ୍ରାମ | ୨୭୨ |
| ୧୫୮ । ଭସ୍ମସ୍ତୂପରୁ ନୂତନ ତୁର୍କୀର ଉଦୟ | ୨୮୧ |
| ୧୫୯ । ମୋସ୍ତାଫା କେମାଲ ଅତୀତରୁ ସମ୍ପର୍କ ତୁଟାଇଲେ | ୨୯୩ |
| ୧୬୦ । ଭାରତ ଗାନ୍ଧୀଙ୍କର ଅନୁଗାମୀ ହେଲ | ୩୦୩ |
| ୧୬୧ । ୧୯୨୦ ମସିହା ପରବର୍ତ୍ତୀ ଭାରତ | ୩୧୩ |
| ୧୬୨ । ଭାରତରେ ଶାନ୍ତିପୂର୍ଣ୍ଣ ବିଦ୍ରୋହ | ୩୨୪ |

# ୧୨୭ : ବିପ୍ଳବ ଏବଂ ବିଶେଷତଃ ଇଉରୋପର ୧୮୪୮ରେ ଘଟିଥିବା ବିପ୍ଳବ

ଜାନୁୟାରୀ ୨୮, ୧୯୩୩, ଇନ୍ଦୁଲ୍-ଫିଟର୍

ଆମେ ଇଉରୋପକୁ ଫେରିଯିବା ଏବଂ ସେଠାର ୧୯ଶ ଶତାବ୍ଦୀର ଜଟିଳ ଓ ସଦା-ପରିବର୍ତ୍ତିମାନ ଚିତ୍ର ପ୍ରତି ଦୃଷ୍ଟି ପକାଇବା । ଦୁଇ ମାସ ପୂର୍ବେ ଲେଖିଥିବା କେତେକ ଚିଠିରେ ଆମେ ଏହା ଆଲୋଚନା କରିଥିଲେ ଏବଂ ଏହାର କେତେକ ପ୍ରଧାନ ରୂପ ମୁଁ ଦର୍ଶାଇ ଦେଇଥିଲି । ମୁଁ ଯେତେବେଳେ ସେଗୁଡ଼ିକ 'ବାଦ' କଥା ଉଲ୍ଲେଖ କରୁଛି, ତୁ ହୁଏତ ସବୁ ମନେ ରଖିପାରି ନଥିବୁ । ପୁଣି ଥରେ ସେଥିରୁ କେତେ ଲେଖିଦେଉଛି; ଯଥା —ଶିଳ୍ପଉଦ୍ୟୋଗ, ପୁଞ୍ଜିବାଦ, ସାମ୍ରାଜ୍ୟବାଦ, ସାମ୍ୟବାଦ, ଜାତୀୟତା, ଆନ୍ତର୍ଜାତୀୟତା । ମୁଁ ମଧ୍ୟ ତତେ ଗଣତନ୍ତ୍ର ଓ ବିଜ୍ଞାନ, ଯାତାୟାତପ୍ରଣାଳୀରେ ଅଦ୍ଭୁତ ପରିବର୍ତ୍ତନ, ଜନଶିକ୍ଷା ଓ ତାର ଫଳ, ଆଧୁନିକ ସମ୍ବାଦପତ୍ର ସମ୍ବନ୍ଧରେ ଲେଖିଥିଲି । ଏହିସବୁ ଜିନିଷ ଓ ଆହୁରି ଅନେକ କଥା ସେତେବେଳେ ଇଉରୋପର ସଭ୍ୟତା ଗଢ଼ିଥିଲା । ଏହା ହେଉଛି ବୁର୍ଜୋୟା ସଭ୍ୟତା । ଏଥିରେ ପୁଞ୍ଜିବାଦ ପ୍ରଥା ତଳେ ନୂତନ ମଧ୍ୟବିତ୍ତ ଶ୍ରେଣୀ ହିଁ ଶିଳ୍ପକଳା ଉପରେ ଅଧିକାର ହାସଲ କରିଥିଲେ । ବୁର୍ଜୋୟା ଇଉରୋପର ଏହି ସଭ୍ୟତା କ୍ରମେ ସଫଳ ହେଲା, ଉପରକୁ ଉଠି ଉଠିକା ଗଲା ଏବଂ ଶତାବ୍ଦୀ ଶେଷବେଳକୁ ଏହା ନିଜର ଶକ୍ତିପ୍ରଭାବ ସାରା ଜଗତ ଉପରେ ପ୍ରଭାବ ପକାଇଲା; ନିଜେ ପ୍ରଭାବିତ ହେଲା—ଏତିକିବେଳେ ବିପତ୍ତି ଆସିଲା ।

ଏସିଆରେ ଏହି ସଭ୍ୟତାର କ୍ରିୟାକଳାପ ଆମେ ଟିକିଏ ବିଶଦଭାବରେ ଦେଖିଛେ । କ୍ରମବର୍ଦ୍ଧିଷ୍ଣୁ ଶିଳ୍ପୋଦ୍ୟୋଗ ହେତୁ ବାଧ୍ୟହୋଇ ଇଉରୋପ ଦୂର ଦେଶମାନଙ୍କ ଆଡ଼କୁ ନିଜର ବାହୁ ବିସ୍ତାର କଲା ଏବଂ ସେଗୁଡ଼ିକ ଗ୍ରାସ କରି ନିୟନ୍ତ୍ରଣ କରିବାକୁ ଚେଷ୍ଟା କଲା ଏବଂ ସାଧାରଣତଃ ନିଜର ସୁବିଧା ସକାଶେ ସେଥିରେ ହସ୍ତକ୍ଷେପ କରିବାକୁ ଉଦ୍ୟମ କଲା । ଏଠି ଇଉରୋପ ବୋଇଲେ ମୁଁ ପଶ୍ଚିମ-ଇଉରୋପ କଥା କହୁଛି । ଏହା ହିଁ ଶିଳ୍ପୋଦ୍ୟୋଗରେ ନେତୃତ୍ୱ ନେଇଥିଲା ଏବଂ ଏହି ସମସ୍ତ ପାଶ୍ଚାତ୍ୟ ଦେଶମାନଙ୍କ ଭିତରେ

ଇଂଲଣ୍ଡ ହିଁ ଦୀର୍ଘକାଳ ପର୍ଯ୍ୟନ୍ତ ଅପ୍ରତିଦ୍ୱନ୍ଦ୍ୱୀ ନେତା ହୋଇ ରହିଲା—ଅନ୍ୟମାନଙ୍କଠାରୁ ବହୁତ ଆଗରେ ଥିଲା ଏବଂ ଆଗୁଆ ହୋଇଥିବାରୁ ପ୍ରଚୁର ଲାଭ କଲା ।

ଏସବୁ ଯେଉଁ ବିରାଟ ପରିବର୍ତ୍ତନ ଇଂଲଣ୍ଡ ଓ ପଶ୍ଚିମ ଦେଶମାନଙ୍କରେ ଘଟୁଥିଲା, ତାହା ଏହି ଶତାବ୍ଦୀର ପ୍ରଥମ ଭାଗରେ ଥିବା ରାଜା ଓ ସମ୍ରାଟମାନେ ବୁଝିପାରି ନଥିଲେ । ଯେଉଁ ନୂତନ ଶକ୍ତି ଜାତ ହେଉଥିଲା ତାହାର ମହତ୍ତ୍ୱ ସେମାନେ ହୃଦୟଙ୍ଗମ କରିପାରିଲେ ନାହିଁ । ନେପୋଲିୟନ ସମ୍ପୂର୍ଣ୍ଣ ଭାବରେ ବିତାଡ଼ିତ ହେବା ପରେ ଇଉରୋପର ଏହି ଶାସକମାନଙ୍କ ଏକମାତ୍ର ଚିନ୍ତା ହୋଇଥିଲା—କିପରି ନିଜକୁ ଓ ନିଜ ଗୋଷ୍ଠୀର ଅନ୍ୟ-ମାନଙ୍କୁ ଆହୁରି ଅଧିକକାଳ ରକ୍ଷା କରାଯିବ ଏବଂ ଏକଛତ୍ର ଶାସନ କିପରି ପୂର୍ବଥରେ ନିରାପଦରେ ଚାଲିବ । ଫରାସୀ ବିପ୍ଳବ ଓ ନେପୋଲିୟନ ଭୀଷଣ ଆତଙ୍କ ଉତ୍ପାଦନ କରିଥିଲେ, ସେଥିରୁ ସେମାନେ ସମ୍ପୂର୍ଣ୍ଣରୂପେ ମୁକ୍ତ ହୋଇ ନ ଥିଲେ ଏବଂ ସେମାନେ ଆଉ ଗୋଟାଏ ବିପଦ ଉଠାଇବା ନିମନ୍ତେ ପ୍ରସ୍ତୁତ ନ ଥିଲେ । ତତେ ମୁଁ ଆଗରୁ କହିଛି, ସେମାନେ ନିଜ ନିଜ ଭିତରେ 'ପବିତ୍ର ମିତ୍ରତା' ସ୍ଥାପନ କଲେ—ଏହାର ଉଦ୍ଦେଶ୍ୟ ହେଲା 'ରାଜାମାନଙ୍କର ଐଶ୍ୱରିକ ଅଧିକାର' ବଜାୟ ରଖି ତା' ବଳରେ ମନଇଚ୍ଛା କାମ କରିବା ଏବଂ କେହି ମୁଣ୍ଡ ଟେକିଲେ ତାକୁ ବାଧା ଦେବା । ଏକଛତ୍ର ଶାସନ ଓ ଧର୍ମ ଏହି ଉଦ୍ଦେଶ୍ୟରେ ହାତ ମିଳାଇଲେ—ଆଗରୁ ବରାବର ଯେପରି କରି ଆସିଛନ୍ତି । ଏହି ମିତ୍ରତାରେ ରୁଷର ଜାର ଆଲେକ୍‌ଜାଣ୍ଡର ହିଁ ଆଗୁଆ ଥିଲେ । ତାଙ୍କ ଦେଶରେ ଶିଳ୍ପୋଦ୍ୟୋଗ କିମ୍ବା ନୂତନ ଭାବଧାରା ପହଞ୍ଚି ନ ଥିଲା ଏବଂ ରୁଷ ଅତି ଅନୁନ୍ନତ ଓ ମଧ୍ୟ-ଯୁଗୀୟ ଅବସ୍ଥାରେ ଥିଲା । ଖୁବ୍ କମ୍ ବଡ଼ ସହର ଥିଲା, ବାଣିଜ୍ୟ ପ୍ରାୟ ଉନ୍ନତ କରି ନ ଥିଲା ଏବଂ ଏପରି କି ଉଚ୍ଚ ଦରର ହସ୍ତଶିଳ୍ପ ବି ନ ଥିଲା । ବିନା ବାଧାରେ ଏକଛତ୍ର ଶାସନ ଚାଲିଥିଲା । ଅନ୍ୟ ଇଉରୋପୀୟ ଦେଶରେ ଅବସ୍ଥା ଅଲଗା ଥିଲା । ପଶ୍ଚିମକୁ ଯେତେ ଯିବ, ମଧ୍ୟବିତ୍ତ ଶ୍ରେଣୀ ସେତେ ଅଧିକ ଆଖିରେ ପଡ଼ିବେ । ମୁଁ ତ ତତେ ଆଗରୁ କହିଛି ଯେ ଇଂଲଣ୍ଡରେ ଏକଛତ୍ର ଶାସନ ନ ଥିଲା । ପାର୍ଲିଆମେଣ୍ଟ ହିଁ ରାଜାଙ୍କୁ ଆୟତ୍ତ କରି ରଖିଥିଲା । କିନ୍ତୁ ପାର୍ଲିଅମେଣ୍ଟ କେତେକ ମୁଷ୍ଟିମେୟ ଧନୀ ଲୋକଙ୍କଦ୍ୱାରା ନିୟନ୍ତ୍ରିତ ହେଉଥିଲା । ରୁଷର ଏକଛତ୍ର ଶାସନ ଏବଂ ଇଂଲଣ୍ଡର ମୁଷ୍ଟିମେୟ ଧନୀ ଲୋକଙ୍କ ଶାସନ ମଧ୍ୟରେ ବହୁତ ପାର୍ଥକ୍ୟ ଥିଲା । କିନ୍ତୁ ତାଙ୍କ ଭିତରେ ଗୋଟିଏ ବିଷୟ ସମାନ ଥିଲା—ଜନସାଧାରଣ ଓ ବିପ୍ଳବକୁ ଉଭୟେ ଭୟ କରୁଥିଲେ ।

ତେଣୁ ସମଗ୍ର ଇଉରୋପରେ ପ୍ରତିକ୍ରିୟା ରାଜୁତି କଲା ଏବଂ ସମସ୍ତ ଉଦାର ଚିନ୍ତା ନିର୍ମମ ଭାବରେ ଦମନ କରାଗଲା । ୧୮୧୫ର ଭିଏନା କଂଗ୍ରେସ ନିଷ୍ପତ୍ତି ଅନୁସାରେ ଇଟାଲୀ ଓ ପୂର୍ବ ଇଉରୋପ ପ୍ରଭୃତି ଦେଶକୁ ବିଦେଶୀ ଶାସନ ଅଧୀନରେ ରଖାଗଲା । ବଳପୂର୍ବକ ଏଗୁଡ଼ିକୁ ଦବାଇ ରଖିବା ଦରକାର ହେଲା । କିନ୍ତୁ ଏପରି ବେଶୀଦିନ ସଫଳତାର ସହିତ କରାଯାଇ ପାରେନା; ଗୋଳମାଳ ହେବ ହିଁ ହେବ । ଏହା ଠିକ୍ ଫୁଟୁଥିବା ଗ୍ଲ' କେଟଲି

ଘୋଡ଼ଣି ଧରିବାକୁ ଚେଷ୍ଟା କଲି ପରି । ଇଉରୋପ ବାଷ୍ପରେ ଟଳମଟଳ ହେଉଥିଲା ଏବଂ ବାରମ୍ବାର ଏହି ବାଷ୍ପ ଜୋରପୂର୍ବକ ପଦାକୁ ବାହାରି ଆସୁଥିଲା । ୧୮୩୦ର ଜାଗରଣ କଥା ମୁଁ ତୋତେ କହିଛି । ଏତେବେଳେ ଇଉରୋପରେ କେତେକ ପରିବର୍ତ୍ତନ ଘଟିଲା —ବିଶେଷତଃ ଫ୍ରାନ୍ସରେ, ସେଠି ବୋର୍ବନମାନଙ୍କ ତନ୍ତ୍ର ଦିଆଗଲା । ଏହି ଜାଗରଣରେ ରାଜା, ସମ୍ରାଟ ଓ ତାଙ୍କ ମନ୍ତ୍ରୀସବୁ ଅଧିକ ଆତଙ୍କିତ ହୋଇଗଲେ ଏବଂ ସେମାନେ ଆହୁରି ଅଧିକ ବଳପ୍ରୟୋଗ କରି ଲୋକଙ୍କ ଉପରେ ଅତ୍ୟାଚାର ଓ ଦମନ ଚଳାଇଲେ ।

ଯୁଦ୍ଧ ଓ ବିପ୍ଳବଦ୍ୱାରା ଦେଶମାନଙ୍କରେ ଯେଉଁସବୁ ବିରାଟ ପରିବର୍ତ୍ତନ ହୋଇଛି, ସେ ବିଷୟ ଆମେ ଦେଖିଛେ । ଅତୀତରେ ଯୁଦ୍ଧସବୁ କେତେବେଳେ ଧର୍ମ ଓ କେତେବେଳେ ବଂଶପ୍ରତିଦ୍ୱନ୍ଦ୍ୱିତା ଯୋଗ ହୋଇଛି । ଅନେକ ସମୟରେ ଏକ ଦେଶ ଉପରେ ଅନ୍ୟ ଦେଶର ରାଜନୀତିକ ଅଭିଯାନ ଆକାରରେ ହୋଇଛି । ଏହିସବୁ କାରଣ ପଶ୍ଚାତ୍ତରେ ସାଧାରଣତଃ ଆର୍ଥନୀତିକ କାରଣ ମଧ୍ୟ ଥାଏ । ଏହିରୂପେ ଇଉରୋପ ଓ ଏସିଆ ଉପରେ ମଧ୍ୟ-ଏସିଆର ଜାତିମାନଙ୍କ ଆକ୍ରମଣର କାରଣ ହେଉଛି, ସେମାନେ କ୍ଷୁଧିତ ହୋଇ ପଶ୍ଚିମାଞ୍ଚଳକୁ ଯିବା । ଆର୍ଥନୀତିକ ପ୍ରଗତି ହିଁ କୌଣସି ଜାତି ବା ଦେଶକୁ ଶକ୍ତିଶାଳୀ କରେ ଓ ଅନ୍ୟମାନଙ୍କ ଅପେକ୍ଷା ସୁବିଧାଜନକ ଅବସ୍ଥାରେ ରଖେ । ମୁଁ ତତେ ଦର୍ଶାଇ ଦେଇଛି ଯେ ଇଉରୋପର ତଥାକଥିତ ଧର୍ମ-ଯୁଦ୍ଧ ପଶ୍ଚାତ୍ତରେ ଏହି ଆର୍ଥନୀତିକ କାରଣ ହିଁ ରହିଥିଲା । ଆମେ ଆଧୁନିକ କାଳ କଥା ଆଲୋଚନା କଲେ ଧର୍ମଯୁଦ୍ଧ ଓ ବଂଶଗତ ଯୁଦ୍ଧ କ୍ରମେ ବନ୍ଦ ହୋଇଯାଉଥିବାର ଦେଖୁ । ଯୁଦ୍ଧ ଅବଶ୍ୟ ବନ୍ଦ ହୁଏନା । ଦୁର୍ଭାଗ୍ୟବଶତଃ ଏହା ଅଧିକ ଉଗ୍ର ହୋଇପଡ଼େ । କିନ୍ତୁ ଆଜିକାଲି ଏହାର କାରଣ ହେଉଛି ରାଜନୀତିକ ଓ ଆର୍ଥନୀତିକ । ରାଜନୀତିକ କାରଣ ମୁଖ୍ୟଭାବରେ ଜାତୀୟତା ସହିତ ସମ୍ପୃକ୍ତ; ଏହା ଏକ ଦେଶଦ୍ୱାରା ଅନ୍ୟ ଦେଶର ଦମନ ଅଥବା ଦୁଇ ଆକ୍ରମଣଶୀଳ ଜାତୀୟବାଦ ମଧ୍ୟରେ ସଂଘର୍ଷ ଫଳରେ ହୁଏ । କିନ୍ତୁ ଏହି ସଂଘର୍ଷ ଅଧିକ ପରିମାଣରେ ଆର୍ଥନୀତିକ କାରଣ ହେତୁ ହୁଏ; ଯଥା—ଆଧୁନିକ ଶିଳ୍ପୋନ୍ନତ ଦେଶମାନଙ୍କର କଞ୍ଚାମାଲ ଓ ବଜାର ପାଇଁ ଦାବୀ । ତେଣୁ ଆମେ ଦେଖିପାରୁ ଯେ ଯୁଦ୍ଧରେ ଆର୍ଥନୀତିକ କାରଣ ହିଁ ଅଧିକ ଗୁରୁତର ହୋଇଉଠେ ଏବଂ ପ୍ରକୃତରେ ଆଜି ଅନ୍ୟସବୁ କଥାକୁ ଏହା ଘୋଡ଼ାଇ ଦିଏ । ଅତୀତ ବିପ୍ଳବର ମଧ୍ୟ ସେହିପରି ପରିବର୍ତ୍ତନ ଘଟିଛି । ପ୍ରଥମରେ ବିପ୍ଳବସବୁ ପ୍ରାସାଦ-ବିପ୍ଳବ ହୋଇଥିଲା । ଶାସକବଂଶର ଲୋକେ ପରସ୍ପର ବିରୁଦ୍ଧରେ କୁଚକ୍ର କରୁଥିଲେ, ଲଢ଼ାଇ କରି ପରସ୍ପରକୁ ହତ୍ୟା କରୁଥିଲେ ଅଥବା ଅତି ହଇରାଣ ହୋଇ ଜନତା ବିଦ୍ରୋହ କରି ଅତ୍ୟାଚାରୀଙ୍କୁ ଶେଷ କରି ଦେଉଥିଲେ କିମ୍ବା ଏକ ଉଚ୍ଚାଭିଳାଷୀ ଯୋଦ୍ଧା ସୈନ୍ୟଙ୍କ ସାହାଯ୍ୟରେ ସିଂହାସନ ଦଖଲ କରୁଥିଲେ । ଏହି ପ୍ରାସାଦ-ବିପ୍ଳବ ମୁଷ୍ଟିମେୟ ଲୋକଙ୍କ ଭିତରେ ସୀମାବଦ୍ଧ ଥିଲା ଏବଂ ଜନସାଧାରଣ ଏଥିରେ ବିଶେଷ ସମ୍ପୃକ୍ତ ନ ଥିଲେ ଏବଂ ଏଥିପ୍ରତି ପ୍ରାୟ ଖାତିର କରୁ ନଥିଲେ । ଶାସକମାନେ ବଦଳିଯାନ୍ତି, କିନ୍ତୁ ବ୍ୟବସ୍ଥା ସେହିପରି ଥାଏ ଏବଂ ଲୋକଙ୍କର ଜୀବନରେ କୌଣସି

ପରିବର୍ତ୍ତନ ହୁଏନା । ଅବଶ୍ୟ ଏକ ଖରାପ ଶାସକ ଖୁବ୍ ଅତ୍ୟାଚାର କରିପାରେ ଏବଂ ତାହା ଲୋକଙ୍କ ପକ୍ଷରେ ଅସହ୍ୟ ହୋଇଉଠେ; ଭଲ ଶାସକ ହେଲେ ଲୋକେ ମାନି ନେଇପାରନ୍ତି । କିନ୍ତୁ ଶାସନ ଭଲ ହେଉ ବା ମନ୍ଦ ହେଉ କେବଳ ରାଜନୀତିକ ପରିବର୍ତ୍ତନଦ୍ୱାରା ଲୋକଙ୍କର ସାମାଜିକ ଓ ଆର୍ଥିକ ଅବସ୍ଥାରେ ଆଞ୍ଚ ଆସେନା । ଏଥିରେ କୌଣସି ସାମାଜିକ ବିପ୍ଳବ ହେବ ନାହିଁ ।

ଜାତୀୟ ବିପ୍ଳବଦ୍ୱାରା ଅଧିକ ପରିବର୍ତ୍ତନ ଘଟେ । ଗୋଟିଏ ଦେଶ ଅନ୍ୟଦ୍ୱାରା ଶାସିତ ହେଉଥିବା ବେଳେ ବିଦେଶୀ ଶାସକ ଶ୍ରେଣୀ ହିଁ ପ୍ରାଧାନ୍ୟ ଲଭିଥାଆନ୍ତି । ଏହା ଅନେକ ଉପାୟରେ କ୍ଷତିକାରକ । କାରଣ ଅନ୍ୟ ଏକ ଦେଶର ମଙ୍ଗଳ ସକାଶେ ପରାଧୀନ ଦେଶ ଶାସିତ ହୁଏ ଅଥବା ଏପରି ଶାସନରେ ଏକ ବିଦେଶୀ ଶ୍ରେଣୀ ହିଁ ଫାଇଦା ଉଠାନ୍ତି । ଅବଶ୍ୟ ପରାଧୀନ ଲୋକଙ୍କର ଆତ୍ମସମ୍ମାନରେ ଏଥିରେ ଖୁବ୍ ଆଘାତ ଲାଗେ । ଏହାଛଡ଼ା ପରାଧୀନ ଦେଶର ଉଚ୍ଚ ଶ୍ରେଣୀକୁ କ୍ଷମତା ଓ କର୍ତ୍ତୃତ୍ୱ ଅଧିକାରରୁ ବିଦେଶୀ ଶାସକଶ୍ରେଣୀ ଦୂରେଇ ରଖେ—ତାହା ନ ହୋଇଥିଲେ ସେମାନେ ତାହା ପାଇପାରିଥାନ୍ତେ । ଜାତୀୟ ବିପ୍ଳବ ସଫଳ ହେଲେ ଅନ୍ତତଃ ବିଦେଶୀ ଶକ୍ତିକୁ ତଡ଼ିଦିଏ ଏବଂ ସେ ଦେଶର ମୁଖିଆ ଶ୍ରେଣୀ ଢଙ୍ଗେ ସଙ୍ଗେ ସେ ସ୍ଥାନ ଦଖଲ କରିଯାଆନ୍ତି । ଏହିରୂପେ ଅଧିକ ବଳଶାଳୀ ବିଦେଶୀ ଶ୍ରେଣୀକୁ ତଡ଼ିବାରେ ଏହି ଉଚ୍ଚ ଶ୍ରେଣୀ ଖୁବ୍ ଫାଇଦା ଉଠାନ୍ତି; ସାଧାରଣ ଭାବରେ ଦେଶ ବି ଲାଭବାନ୍ ହୁଏ, କାରଣ ଅନ୍ୟ ଦେଶର ସ୍ୱାର୍ଥ ଲାଗି ତାହାର ଶାସନ ଚଳେନା । ଜାତୀୟ ବିପ୍ଳବ ସଙ୍ଗେ ସଙ୍ଗେ ଏକ ସାମାଜିକ ବିପ୍ଳବ ନ ହେଲେ, ଯେଉଁମାନେ ନିମ୍ନ ସ୍ତରରେ ଥାଆନ୍ତି ସେମାନେ ବିଶେଷ କିଛି ଲାଭ ପାଆନ୍ତି ନାହିଁ ।

ସାମାଜିକ ବିପ୍ଳବ ଅନ୍ୟ ବିପ୍ଳବମାନଙ୍କଠାରୁ ସମ୍ପୂର୍ଣ୍ଣ ଅଲଗା ଜିନିଷ—ଅନ୍ୟ ବିପ୍ଳବ ସବୁ କେବଳ ଉପର-ପରିବର୍ତ୍ତନ କରନ୍ତି । ଏହା ରାଜନୀତିକ ବିପ୍ଳବ ସହିତ ଜଡ଼ିତ, କିନ୍ତୁ ତାହା ଅପେକ୍ଷା ଅଧିକ କାମ କରେ—ସମାଜର ମୂଳଦୁଆ ପରିବର୍ତ୍ତନ କରିଦିଏ । ଯେଉଁ ଇଂରେଜୀ ବିପ୍ଳବ ପାର୍ଲିଆମେଣ୍ଟକୁ ସର୍ବେସର୍ବା କଲା, ତାହା କେବଳ ରାଜନୀତିକ ବିପ୍ଳବ ନୁହେଁ, ଆଂଶିକ ଭାବରେ ଏହା ଏକ ସାମାଜିକ ବିପ୍ଳବ ବି ଥିଲା । କାରଣ ଧନୀ ବୁର୍ଜୋୟା ଶ୍ରେଣୀଙ୍କ ହାତରେ କ୍ଷମତା ଦେବା ଲାଗି ଉଦ୍ୟମ କଲା । ତେଣୁ ଉଚ୍ଚ ବୁର୍ଜୋୟା ଶ୍ରେଣୀ ରାଜନୀତିକ ଓ ସାମାଜିକ ଦିଗରେ ଉନ୍ନତି ଲାଭ କଲେ । ନିମ୍ନ ବୁର୍ଜୋୟା ଓ ଜନସାଧାରଣଙ୍କୁ ସାଧାରଣତଃ ଏହା ସ୍ପର୍ଶ କରି ନ ଥିଲା । ଫରାସୀ ବିପ୍ଳବ ମଧ୍ୟ ଆହୁରି ବେଶୀ ଭାବରେ ସାମାଜିକ ବିପ୍ଳବ । ଆମେ ତ ଦେଖିଛେ, ଏହା ସମଗ୍ର ସମାଜବ୍ୟବସ୍ଥାକୁ ଓଲଟାଇ ଦେଲା ଏବଂ ଏପରି କି କିଛିକ୍ଷଣ ସକାଶେ ଜନତା ହାତରେ ସବୁ ରହିଲା । ଶେଷରେ ଏଠି ବି ବୁର୍ଜୋୟା ଶ୍ରେଣୀର ଜୟ ହେଲା ଏବଂ ଜନତା ବିପ୍ଳବରେ ତାଙ୍କ କାମ କରିସାରିଲା ପରେ ତାଙ୍କୁ ପୁଣି ନିଜ ସ୍ଥାନକୁ ଫେରାଇ ଦିଆଗଲା । କିନ୍ତୁ ବିଶେଷ ସୁବିଧାଭୋଗୀ ସାମନ୍ତ-ମାନେ ତଡ଼ା ଖାଇଗଲେ ।

ତେଣୁ ଏହା ସ୍ପଷ୍ଟ ଯେ ଏପରି ସାମାଜିକ ବିପ୍ଳବସବୁ କେବଳ ରାଜନୀତିକ ବିପ୍ଳବ ଅପେକ୍ଷା ଆହୁରି ଅଧିକ ଫଳଦାୟକ ଏବଂ ସାମାଜିକ ଅବସ୍ଥା ସହିତ ଏହା ଘନିଷ୍ଠ ରୂପେ ଜଡ଼ିତ । ଅବସ୍ଥା ଅନୁକୂଳ ଥାଇ ଜନତା ସେଥିଲାଗି ପ୍ରସ୍ତୁତ ନ ଥିଲେ କୌଣସି ଉଚ୍ଚାକାଙ୍କ୍ଷୀତପୂର ଲୋକ ବା ଗୋଷ୍ଠୀଦ୍ୱାରା ଏକ ସାମାଜିକ ବିପ୍ଳବ ହୋଇପାରେ ନା । ପ୍ରସ୍ତୁତ ହେବାର ଅର୍ଥ ମୁଁ କହୁ ନାହିଁ ଯେ ସେମାନଙ୍କୁ ଏକଥା କହିବାଦ୍ୱାରା ସେମାନେ ଜାଣିଶୁଣି ଏଥିଲାଗି ପ୍ରସ୍ତୁତ ହୋଇଥିବେ । ମୋର କହିବା ଅର୍ଥ ହେଉଛି, ସାମାଜିକ ଓ ଆର୍ଥିକ ଅବସ୍ଥା ଏପରି ହୋଇଥିବ ଯେ ଜୀବନ ଦୁର୍ବହ ହୋଇପଡ଼ିଥିବ ଏବଂ ଏପରି ଏକ ପରିବର୍ତ୍ତନ ଛଡ଼ା ଅନ୍ୟ କୌଣସିଥିରେ ସେମାନେ କିଛି ପ୍ରତିକାର ବା ଚଳିପାରିବାର ବାଟ ପାଇ-ପାରିବେ ନାହିଁ । ପ୍ରକୃତରେ ଦେଖିବାକୁ ଗଲେ ଯୁଗ ଯୁଗ ଧରି ଅସଂଖ୍ୟ ଲୋକଙ୍କ ପକ୍ଷରେ ଜୀବନ ଏକ ବୋଝ ହୋଇ ରହିଛି ଏବଂ ଏହା ସେମାନେ କିପରି ଭାବରେ ସହ୍ୟ କରି ରହିଛନ୍ତି, ଏହା ହିଁ ଅଦ୍ଭୁତ କଥା । ବେଳେବେଳେ ବିଦ୍ରୋହ—ମୁଖ୍ୟତଃ କୃଷକ ବିଦ୍ରୋହ ଓ ଜାକେରି (jacqueries) ମାନ ହୋଇଛି ଏବଂ କ୍ରୋଧୋନ୍ମତ୍ତ ହୋଇ ସେମାନେ ଯାହା ପାଇଛନ୍ତି ଅନ୍ଧଭାବରେ ତାହା ଧ୍ୱଂସ କରି ଦେଇଛନ୍ତି । କିନ୍ତୁ ସାମାଜିକ ବ୍ୟବସ୍ଥା ପରିବର୍ତ୍ତନ କରିବା ଲାଗି କୌଣସି ସଚେତନ ଅଭିଳାଷ ଦେଖାଯାଇ ନାହିଁ । ଯାହାହେଉ ଏହି ଅଜ୍ଞତା ସତ୍ତ୍ୱେ ଅତୀତରେ ପ୍ରଚଳିତ ସାମାଜିକ ଅବସ୍ଥା ବାରମ୍ବାର ଭାଙ୍ଗିଯାଇଛି; ପୁରାତନ ରୋମ, ମଧ୍ୟଯୁଗରେ ଇଉରୋପ, ଭାରତ, ଚୀନ ଓ ଅନ୍ୟ ଅନେକ ସାମ୍ରାଜ୍ୟର ଏହି କାରଣରୁ ପତନ ହୋଇଛି ।

ଅତୀତରେ ସାମାଜିକ ଓ ଆର୍ଥନୀତିକ ପରିବର୍ତ୍ତନସବୁ ଧୀରେ ଧୀରେ ହୋଇଥିଲା ଏବଂ ଦୀର୍ଘକାଳପର୍ଯ୍ୟନ୍ତ ଉତ୍ପାଦନ, ବଣ୍ଟନ ଓ ଯାତାୟାତପ୍ରଣାଳୀ ପୂର୍ବପରି ରହିଥିଲା । ତେଣୁ ଲୋକେ ପରିବର୍ତ୍ତନର ଗତି ଲକ୍ଷ୍ୟ କରିଥିଲେ ଏବଂ ଭାବୁଥିଲେ ଯେ ପୁରାତନ ସମାଜ-ବ୍ୟବସ୍ଥା ସ୍ଥାୟୀ ଓ ଅପରିବର୍ତ୍ତନୀୟ । ଧର୍ମ ଏହି ବ୍ୟବସ୍ଥାକୁ ଗୋଟିଏ ଦୈବୀ ଛାପ ଦେଇଥିଲା ଏବଂ ଏହା ପଛରେ ଅନେକ ସ୍ୱାର୍ଥ ଓ ବିଶ୍ୱାସ ଲାଗି ରହିଗଲା । ଲୋକଙ୍କ ଭିତରେ ଏହା ଏପରି ମଜ୍ଜାଗତ ହୋଇଗଲା ଯେ ଯେତେବେଳେ ପ୍ରକୃତ ଅବସ୍ଥା ବଦଳିଯାଇ ପୁରାତନ ବ୍ୟବସ୍ଥା ଅକାମୀ ହୋଇଗଲା, ସେତେବେଳେ ସୁଦ୍ଧା ଏହାର ପରିବର୍ତ୍ତନ କରିବା ବିଷୟ ଚିନ୍ତା କରି ନ ଥିଲେ । ଶିଳ୍ପ ବିପ୍ଳବର ଆଗମନ ଏବଂ ଯାତାୟାତ ପଥରେ ପରିବର୍ତ୍ତନ ହେଲା ପରେ ସାମାଜିକ ପରିବର୍ତ୍ତନ ଦ୍ରୁତବେଗରେ ଚାଲିଲା । ନୂତନ ଶ୍ରେଣୀ ଆଗୁଆ ହୋଇ ଆସିଲେ ଏବଂ ଧନୀ ପାଲଟିଲେ । ଏକ ନୂତନ ଶ୍ରମିକ ଶ୍ରେଣୀ (ଶିଳ୍ପ ହେତୁ) ସୃଷ୍ଟି ହେଲେ; ଏମାନେ ହସ୍ତଶିଳ୍ପୀ ଓ କ୍ଷେତ୍ରମଜୁରିଆଙ୍କଠାରୁ ସମ୍ପୂର୍ଣ୍ଣ ଭିନ୍ନ ଧରଣର । ଏଥିପାଇଁ ନୂତନ ଆର୍ଥନୀତିକ ବ୍ୟବସ୍ଥା ଓ ରାଜନୀତିକ ପରିବର୍ତ୍ତନର ଆବଶ୍ୟକତା ପଡ଼ିଲା । ପଶ୍ଚିମ-ଇଉରୋପ ଗୋଟାଏ ବିଚିତ୍ର ପ୍ରକାର ଅକାମୀ ଅବସ୍ଥାରେ ଥିଲା । ବୁଦ୍ଧିମାନ ସମାଜ ହୋଇଥିଲେ ପରିବର୍ତ୍ତନର ଆବଶ୍ୟକତା ପଡ଼ିଲେ ଆବଶ୍ୟକୀୟ ପରିବର୍ତ୍ତନ କରିଦେବ

ଏବଂ ପରିବର୍ତ୍ତିତ ଅବସ୍ଥାରୁ ନିଜର ଲାଭ ଉଠାଇବ । କିନ୍ତୁ ସମାଜସବୁ ବୁଦ୍ଧିମାନ୍ ନୁହନ୍ତି ଏବଂ ସମଗ୍ର ସମାଜ ଭାବରେ ସେସବୁ ଚିନ୍ତା କରନ୍ତି ନାହିଁ । ବ୍ୟକ୍ତିବିଶେଷ ନିଜ କଥା ଓ ସେଥିରୁ ତାଙ୍କର କି ଲାଭ ହେବ, ଏହା ଭାବନ୍ତି । ଏହା ସ୍ୱାର୍ଥସମ୍ପନ୍ନ ଶ୍ରେଣୀ ବି ସେହିପରି ଭାବନ୍ତି । କୌଣସି ସମାଜରେ ଯଦି ଗୋଟିଏ ଶ୍ରେଣୀ ପ୍ରାଧାନ୍ୟ କରୁଥାଏ, ତେବେ ତାହା ସେଠି ରହିବାକୁ ଚାହେଁ ଏବଂ ତା ତଳେ ଥିବା ଅନ୍ୟ ଶ୍ରେଣୀକୁ ଶୋଷଣ କରି ଲାଭ ଉଠାଇବାକୁ ଚାହେଁ । ବୁଦ୍ଧି ଓ ଦୂରଦୃଷ୍ଟି ସହ ବିବେଚନା କଲେ ବୁଝିପାରିବ ଯେ ତୁମେ ଯେଉଁ ସମାଜର ଅଙ୍ଗ ସେହି ସମାଜର ସମୂହ ଉନ୍ନତିଦ୍ୱାରା ହିଁ ଶେଷରେ ତୁମେ ଲାଭ ଉଠାଇପାରିବ । କିନ୍ତୁ କ୍ଷମତା ପାଇଥିବା ବ୍ୟକ୍ତି ବା ଶ୍ରେଣୀ ତା ଅଧିକାରରେ ଯାହା ଥାଏ, ତାହା ସେ ରଖିବାକୁ ଚାହେଁ । ଏହା କରିବାର ସହଜ ଉପାୟ ହେଉଛି, ପ୍ରଚଳିତ ସମାଜ ବ୍ୟବସ୍ଥାଠାରୁ ଉତ୍କୃଷ୍ଟ ବ୍ୟବସ୍ଥା ଆଉ ନାହିଁ—ଏହି ଭାବ ଅନ୍ୟ ଶ୍ରେଣୀ ଲୋକଙ୍କ ଭିତରେ ଜାଗ୍ରତ କରାଇବା । ଲୋକଙ୍କ ମନରେ ଏହି ଭାବ ପୂରାଇବା ପାଇଁ ଧର୍ମ ଠିଆ ହୋଇ ଆସେ, ଏହି କଥା ଶିଖିବା ପାଇଁ ଶିକ୍ଷା ଦିଆଯାଏ; ଆଶ୍ଚର୍ଯ୍ୟ କଥା, ଶେଷରେ ପ୍ରାୟ ପ୍ରତ୍ୟେକ ଲୋକ ଏଥିରେ ସମ୍ପୂର୍ଣ୍ଣରୂପେ ବିଶ୍ୱାସ କରିଯାଆନ୍ତି ଏବଂ ଏହା ପରିବର୍ତ୍ତନ କରିବା କଥା ଚିନ୍ତା କରନ୍ତି ନାହିଁ । ଏପରିକି ଏହି ବ୍ୟବସ୍ଥାରେ ଯେଉଁମାନେ କଷ୍ଟ ଭୋଗନ୍ତି, ସେମାନେ ପ୍ରକୃତରେ ବିଶ୍ୱାସ କରନ୍ତି ଯେ ଏପରି ପ୍ରଥା ଚାଲିବାଟା ହେଉଛି ଠିକ୍ ଏବଂ ଅନ୍ୟମାନେ ପ୍ରଚୁରତାରେ ବାସକରୁଥିବାବେଳେ ସେମାନେ ଉପବାସରେ ସଢ଼ିବା, ସେପରି ଗୋଇଠା ଖାଇ ଓ ଘୁସି ଖାଇ ରହିବାଟି ହେଉଛି ଠିକ୍ ।

ତେଣୁ ଲୋକେ ଅନୁମାନ କରନ୍ତି ଯେ ସମାଜ ବ୍ୟବସ୍ଥା ଅପରିବର୍ତ୍ତନୀୟ ଏବଂ ଏଥିରେ ଯଦିବା ଅଧିକ ସଂଖ୍ୟକ ଲୋକ କଷ୍ଟ ପାଆନ୍ତି, ସେଇଟା କାହାରି ଦୋଷରୁ ନୁହେଁ, ଏହା ତାଙ୍କ ନିଜର ଦୋଷ; କିସମତ୍, ନିଜର ଭାଗ୍ୟ, ପୂର୍ବ ପାପ ସକାଶେ ଶାସ୍ତି । ସମାଜ ସର୍ବଦା ରକ୍ଷଣଶୀଳ ଏବଂ ପରିବର୍ତ୍ତନ ଚାହେଁ ନା । ଯେଉଁ ଧାରାରେ ପଡ଼ିଥାଏ ସେହିଠାରେ ହିଁ ରହିବାକୁ ଭଲ ପାଏ ଏବଂ ସେଇଠି ରହିବାକୁ ହେବ ବୋଲି ଦୃଢ଼ ଭାବରେ ବିଶ୍ୱାସ କରେ । ଏପରି ଯଦି କୌଣସି ବ୍ୟକ୍ତି ଏହାର ଅବସ୍ଥା ଉନ୍ନତ କରିବାକୁ ଇଚ୍ଛା କରି ସେହି ପୁରୁଣା ରାସ୍ତା ଛାଡ଼ି ଆସିବା ନିମନ୍ତେ କହେ, ତେବେ ସେ ତାକୁ ଶାସ୍ତି ଦିଏ ।

କିନ୍ତୁ ସମାଜରେ ଚିନ୍ତା ନ କରୁଥିବା ଆତ୍ମତୃପ୍ତ ଲୋକଙ୍କ ଆମୋଦ ପାଇଁ ସାମାଜିକ ଓ ଆର୍ଥିକ ଅବସ୍ଥା ଅପେକ୍ଷା କରେନା । ଲୋକଙ୍କ ଭାବଧାରା ଏକାପରି ଥିଲେ ସୁଦ୍ଧା ଏହା ଅଗ୍ରସର ହୋଇଯାଏ । ଏହି ପୁରୁଣା ଅକାମୀ ଧାରଣା ଓ ବାସ୍ତବିକତା ମଧ୍ୟରେ ଦୂରତ୍ୱ ଅଧିକ ହୋଇଯାଏ ଏବଂ ଯଦି ଏହି ଦୂରତ୍ୱକୁ କମାଇବା ଓ ଉଭୟଙ୍କୁ ଏକତ୍ର କରିବା ନିମନ୍ତେ କିଛି ନ କରାଯାଏ, ତାହା ହେଲେ ଏହି ବ୍ୟବସ୍ଥା ଫାଟିପଡ଼େ ଏବଂ ଏକ ବିପର୍ଯ୍ୟୟ ଆସି ପହଞ୍ଚେ । ଏଥିଯୋଗୁଁ ହିଁ ପ୍ରକୃତ ସାମାଜିକ ବିପ୍ଳବସବୁ ହୁଏ । ପୁରୁଣା ଢଙ୍ଗର

ସ୍ୱଭାବର ଜୋର ଯୋଗୁଁ କିଛି ବିଳମ୍ବ ହେଲେ ସୁଦ୍ଧା ଏପରି ଅବସ୍ଥା ପହଞ୍ଚିଲେ ବିପ୍ଳବ ହେବ ହିଁ ହେବ । ଏପରି ଅବସ୍ଥା ନ ଥିଲେ କେତେକ ବ୍ୟକ୍ତିବିଶେଷ ଯେତେ ଚେଷ୍ଟା କଲେ ସୁଦ୍ଧା ବିପ୍ଳବ ଆଣିପାରିବେ ନାହିଁ । ଯେତେବେଳେ ବିପ୍ଳବ ସଂଘଟିତ ହୁଏ, ସେତେ-ବେଳେ ଯେଉଁ ଆବରଣ ଲୋକଙ୍କ ପାଖରୁ ପ୍ରକୃତ ଅବସ୍ଥା ଘୋଡ଼ାଇ ରଖିଥାଏ, ତାହା ଦୂର ହୋଇଯାଏ ଏବଂ ସେମାନେ ଶୀଘ୍ର ସବୁକଥା ବୁଝିପାରନ୍ତି । ସେମାନେ ଯେ ଥରେ ଗତାନୁଗତିକ ଧାରା ଛାଡ଼ିଲେ ଆଗକୁ ମାଡ଼ି ଚାଲନ୍ତି ! ଏହି କାରଣରୁ ବିପ୍ଳବ ବେଳେ ଲୋକେ ଅଦ୍ଭୁତ ଶକ୍ତି ସହକାରେ ଅଗ୍ରସର ହୁଅନ୍ତି । ତେଣୁ ରକ୍ଷଣଶୀଳତା ଓ ପଛକୁ ଟାଣିବାର ଅନିବାର୍ଯ୍ୟ ଫଳ ହେଉଛି ବିପ୍ଳବ । ସମାଜ ଯଦି ଏକ ଅପରିବର୍ତ୍ତନୀୟ ସମାଜ-ବ୍ୟବସ୍ଥା ରହିଛି ବୋଲି ଭୁଲ ଧାରଣା ଛାଡ଼ିଦେଇ ପାରନ୍ତା ଏବଂ ପରିବର୍ତ୍ତିତ ଅବସ୍ଥା ସହ ପାଦ ମିଳାଇ ସଦାବେଳେ ଚାଲନ୍ତା, ତେବେ କୌଣସି ସାମାଜିକ ବିପ୍ଳବ ଘଟନ୍ତା ନାହିଁ । ତାହାହେଲେ ଧାରାବାହିକ କ୍ରମପରିବର୍ତ୍ତନ ହିଁ ହୁଅନ୍ତା ।

ଆଗରୁ କୌଣସି ଇଚ୍ଛା ନ ଥାଇ ସୁଦ୍ଧା ମୁଁ ବିପ୍ଳବ ବିଷୟରେ ଟିକିଏ ବିସ୍ତୃତ ଭାବରେ ଲେଖିଲି । ଏହି ବିଷୟ ମୋତେ ଭଲ ଲାଗୁଛି; କାରଣ ଆଜି ସମଗ୍ର ପୃଥିବୀରେ ସବୁ ଖାପଛଡ଼ା ପରି ମନେହେଉଛି ଏବଂ ଅନେକ ସ୍ଥାନର ସମାଜବ୍ୟବସ୍ଥା ଭାଙ୍ଗିପଡ଼ିଲା ପରି ବୋଧ ହେଉଛି । ଅତୀତରେ ସାମାଜିକ ବିପ୍ଳବର ଏହା ହିଁ ପୂର୍ବାଭାସ ହୋଇଥିଲା ଏବଂ ପୃଥିବୀରେ ବିରାଟ ପରିବର୍ତ୍ତନର ପୂର୍ବ ଅବସ୍ଥାରେ ଆମେ ଅଛୁ ବୋଲି ଭାବିବା ସ୍ୱାଭାବିକ । ବିଦେଶୀ କର୍ତ୍ତୃତ୍ୱ ଅଧୀନରେ ଥିବା ପ୍ରତ୍ୟେକ ଦେଶ ପରି ଭାରତରେ ଜାତୀୟତା ଓ ଦେଶରୁ ବିଦେଶୀ ଶାସନ ତଡ଼ିବାର ଆକାଂକ୍ଷା ପ୍ରବଳ ହୋଇ ରହିଛି । କିନ୍ତୁ ବହୁ ପରିମାଣରେ ଏହି ଜାତୀୟତାବାଦର ପ୍ରେରଣା ସଂଗଠିତ ସମ୍ପନ୍ନ ଶ୍ରେଣୀଙ୍କ ଭିତରେ ସୀମାବଦ୍ଧ ରହିଛି । କୃଷକ, ଶ୍ରମିକ ଓ ଅନ୍ୟ ଯେଉଁମାନେ ସର୍ବଦା ଅଭାବରେ ରହିଛନ୍ତି, ସେମାନେ ଏହି ଅସ୍ପଷ୍ଟ ଜାତୀୟତାବାଦ ସ୍ୱପ୍ନ ଦେଖିବା ଅପେକ୍ଷା ନିଜର ଖାଲି ପେଟ ପୂରାଇବାରେ ବେଶି ଲାଗିପଡ଼ିଛନ୍ତି । ଅଧିକ ଖାଦ୍ୟ ଓ ଉନ୍ନତ ଅବସ୍ଥା ଯଦି ସ୍ୱରାଜ ବା ଜାତୀୟତା ନ ଦେଇ-ପାରିବ, ତେବେ ତାଙ୍କ ନିକଟରେ ଏହାର କୌଣସି ଅର୍ଥ ନାହିଁ । ଅତଏବ ଆଜି ଭାରତର ସମସ୍ୟା କେବଳ ରାଜନୈତିକ ନୁହେଁ; ଏହା ଅଧିକ ପରିମାଣରେ ସାମାଜିକ ।

ଆମେ ଯେଉଁ ୧୯ଶ ଶତାବ୍ଦୀ ବିଷୟ ବିଚାର କରୁଛେ, ସେତେବେଳେ ଇଉରୋପରେ ଅନେକ ବିଦ୍ରୋହ ଓ ଅନ୍ୟ ଗଣ୍ଡଗୋଳସବୁ ହୋଇଥିବାରୁ ମୁଁ ଅସଲ ବାଟ ଛାଡ଼ିଦେଇ ବିପ୍ଳବ ସମ୍ବନ୍ଧରେ ଏପରି ଦୀର୍ଘ ଆଲୋଚନା କଲି । ଅନେକଗୁଡ଼ିଏ ବିଦ୍ରୋହ, ବିଶେଷତଃ ଏହି ଶତାବ୍ଦୀର ପ୍ରଥମାର୍ଦ୍ଧରେ, ବିଦେଶୀ ଶାସନ ବିରୁଦ୍ଧରେ ଜାତୀୟ ଜାଗରଣ ରୂପେ ଦେଖା ଦେଇଥିଲା । ଏହା ପାଖେ ପାଖେ ଶିଳ୍ପୋନ୍ନତ ଦେଶମାନଙ୍କରେ ସାମାଜିକ ବିଦ୍ରୋହର ଧାରଣା ଯୋଗୁଁ ନୂତନ ଶ୍ରମିକ ଶ୍ରେଣୀର ପୁଞ୍ଜିବାଦୀ ପ୍ରଭୁମାନଙ୍କ

ସବୁ ସଂଘର୍ଷ ବ୍ୟାପିଲା । ଲୋକେ ସାମାଜିକ ବିପ୍ଳବ ସମ୍ବନ୍ଧରେ ଚିନ୍ତା କରିବାକୁ ଲାଗିଲେ ଓ ସଚେତନ ଭାବରେ କାର୍ଯ୍ୟ କରିବାକୁ ଲାଗିଲେ ।

୧୮୪୮ ସାଲକୁ ଇଉରୋପରେ ବିପ୍ଳବ ବର୍ଷ ବୋଲି କହନ୍ତି । ଅନେକ ଦେଶରେ ଜାଗରଣ ହେଲା—କେତେକ ଆଂଶିକ ଭାବରେ ସଫଳ ହେଲା, କିନ୍ତୁ ଅଧିକାଂଶ ବିଫଳ ହେଲା । ପୋଲଣ୍ଡ, ଇଟାଲୀ, ବୋହେମିଆ ଓ ହଙ୍ଗେରୀ ଜାଗରଣ ପଛରେ ଏକ ଜାତୀୟତା ହିଁ ରହିଥିଲା । ପୋଲଣ୍ଡବାସୀ ପ୍ରୁସିଆ ବିରୁଦ୍ଧରେ ବିଦ୍ରୋହ କଲେ, ବୋହେମିଆବାସୀ ଓ ଉତ୍ତର-ଇଟାଲିବାସୀମାନେ ଅଷ୍ଟ୍ରିଆ ବିରୁଦ୍ଧରେ । ଏ ସମସ୍ତଙ୍କୁ ଦବାଇ ଦିଆଗଲା । ଅଷ୍ଟ୍ରିଆ ବିରୁଦ୍ଧରେ ହଙ୍ଗେରୀ ବିଦ୍ରୋହ ସବୁଠାରୁ ବଡ଼ ଥିଲା । ଏହାର ନେତା ଥିଲେ ଲୋଜସ୍ କସୁଥ୍ —ସେ ଜଣେ ଦେଶପ୍ରେମୀ ଓ ସ୍ୱାଧୀନତା ପାଇଁ ଲଢ଼ୁଆ ଭାବରେ ହଙ୍ଗେରୀ ଇତିହାସରେ ପ୍ରସିଦ୍ଧ । ଦୁଇ ବର୍ଷ କାଳ ପ୍ରତିରୋଧ ସତ୍ତ୍ୱେ ଏହି ବିଦ୍ରୋହ ମଧ୍ୟ ଦବିଗଲା । କେତେକ ବର୍ଷ ପରେ ହଙ୍ଗେରୀ ଆଉ ଜଣେ ପ୍ରଧାନ ନେତା ଡିଏକଙ୍କ ନେତୃତ୍ୱରେ ଯୁଦ୍ଧର ଅନ୍ୟ ପ୍ରଣାଳୀ ପ୍ରୟୋଗ କରି କୃତକାର୍ଯ୍ୟ ହେଲା । ମଜାର କଥା ହେଉଛି, ଡିଏକ୍‌ଙ୍କର ଉପାୟ ଥିଲା ନିଷ୍କ୍ରିୟ ପ୍ରତିରୋଧ । ୧୮୬୭ରେ ଅଳ୍ପେ ଅଧିକେ ସମାନ ସର୍ତ୍ତରେ ହଙ୍ଗେରୀ ଓ ଅଷ୍ଟ୍ରିଆ ଏକାଠି ହୋଇଗଲା ଏବଂ ହାପସ୍‌ବର୍ଗ ସମ୍ରାଟ ଫ୍ରାନ୍‌ସିସ ଜୋସେଫ୍‌ଙ୍କ ଅଧୀନରେ ଏକ "ଦ୍ୱୈଧ ରାଜସତ୍ତା" ସ୍ଥାପିତ ହେଲା । ଅର୍ଦ୍ଧ ଶତାବ୍ଦୀପରେ ଆଇରିସ୍‌ମାନେ ଇଂଲଣ୍ଡ ବିରୁଦ୍ଧରେ ଲଢ଼ିଲାବେଳେ ଡିଏକ୍‌ଙ୍କର ନିଷ୍କ୍ରିୟ ପ୍ରତିରୋଧ ଉପାୟ ତାଙ୍କ ପକ୍ଷରେ ଆଦର୍ଶ ହୋଇଥିଲା । ୧୯୨୦ରେ ଭାରତରେ ଅସହଯୋଗ ଆନ୍ଦୋଳନ ଆରମ୍ଭ ହେବାରୁ ଡିଏକ୍‌ଙ୍କ ସଂଗ୍ରାମ କଥା କେତେକ ଲୋକଙ୍କର ସ୍ମରଣ ହେଲା; କିନ୍ତୁ ଏହି ଦୁଇ ଉପାୟରେ ବହୁତ ପାର୍ଥକ୍ୟ ଥିଲା ।

୧୮୪୮ରେ ଜର୍ମାନୀରେ ବି ବିଦ୍ରୋହ ହୋଇଥିଲା, କିନ୍ତୁ ତାହା ତେତେ ଗୁରୁତର ନୁହେଁ; ତାହା ଦମନ କରି ଦିଆଗଲା ଏବଂ କେତେକ ସଂସ୍କାର ହେବ ବୋଲି ପ୍ରତିଶ୍ରୁତି ଦିଆଗଲା । ଫ୍ରାନ୍‌ସରେ ବଡ଼ ପରିବର୍ତ୍ତନ ହୋଇଥିଲା । ୧୮୩୦ରେ ବୋର୍ବନ୍‌ମାନଙ୍କୁ ତଡ଼ିଦେବା ଦିନଠାରୁ ଲୁଇ ଫିଲିପ ରାଜା ହେଲେ । ସେ ଏକପ୍ରକାର ଅଧା ଶାସନତାନ୍ତ୍ରିକ ରାଜା ଥିଲେ । ୧୮୪୮ ବେଳକୁ ଲୋକେ ତାଙ୍କ ଉପରେ ବିରକ୍ତ ହୋଇଗଲେ ଏବଂ ତାଙ୍କୁ ସିଂହାସନ ତ୍ୟାଗ କରିବାକୁ ପଡ଼ିଲା । ପୁନର୍ବାର ଏକ ପ୍ରଜାତନ୍ତ୍ର ସ୍ଥାପିତ ହେଲା । ଏହା ହେଉଛି ଦ୍ୱିତୀୟ ପ୍ରଜାତନ୍ତ୍ର—ପ୍ରଥମଟି ବଡ଼ ବିପଦ ବେଳେ ହୋଇଥିଲା । ଏହି ଗୋଳମାଳର ସୁଯୋଗ ଦେଖି ନେପୋଲିୟନଙ୍କ ଏକ ପୁତୁରା ଲୁଇ ବୋନାପାର୍ଟ ପାରିସକୁ ଆସିଲେ ଏବଂ ନିଜକୁ ଜଣେ ସ୍ୱାଧୀନତାର ବଡ଼ ବନ୍ଧୁ ବୋଲି ପରିଚୟ ଦେଇ ପ୍ରଜାତନ୍ତ୍ରର ସଭାପତି ନିର୍ବାଚିତ ହେଲେ । କ୍ଷମତା ପାଇବା ଲାଗି ଏହା ଏକ ପେଖନା ମାତ୍ର । ନିଜେ ଦୃଢ଼ ହେଲା ପରେ ସେ ସୈନ୍ୟଙ୍କୁ ନିଜ ଆୟତ୍ତରେ ରଖିଲେ ଏବଂ ୧୮୫୧ରେ ସେ ଜବରଦସ୍ତି

ସମସ୍ତ କ୍ଷମତା ହାସଲ କରିନେଲେ । ନିଜର ସୈନ୍ୟଙ୍କଦ୍ୱାରା ସେ ପାରିସକୁ ଡର୍‌ାଇ ଦେଲେ, ଅନେକ ଲୋକଙ୍କୁ ଗୁଳିକରି ମାରିଦେଲେ ଏବଂ ଆସେମ୍ବ୍ଲିକୁ ଉଚ୍ଛେଦିତ କଲେ । ତତ୍ପର ବର୍ଷ ନିଜର ତୃତୀୟ ନେପୋଲିୟନ ନାମକରଣ କରି ନିଜକୁ ସମ୍ରାଟ ବୋଲି ଘୋଷଣା କଲେ—ନେପୋଲିୟନଙ୍କ ପୁଅକୁ ଦ୍ୱିତୀୟ ନେପୋଲିୟନ ବୋଲି ଧରାଯାଉଥିଲା—ଅବଶ୍ୟ ସେ କେବେ ରାଜତ୍ୱ କରି ନ ଥିଲେ । ଚାରିବର୍ଷରୁ କିଛି ଅଧିକ ସମୟ ପର୍ଯ୍ୟନ୍ତ ବଞ୍ଚିରହିଲା ପରେ ଏହିରୂପେ ଦ୍ୱିତୀୟ ପ୍ରଜାତନ୍ତ୍ର ଶେଷ ପାଇଲା ।

୧୮୪୮ରେ ଇଂଲଣ୍ଡରେ କୌଣସି ବିଦ୍ରୋହ ହୋଇ ନ ଥିଲା, କିନ୍ତୁ ସେଠି ବହୁ ଗୋଳମାଳ ହୋଇଥିଲା । ପ୍ରକୃତ ଗୋଳମାଳ ଅବସ୍ଥା ପହଞ୍ଚିଲେ ଇଂଲଣ୍ଡ ମୁଣ୍ଡ ନଇଁବା ବାଟ ଧରେ ଏବଂ ତେଣୁ ଏହା ଏଡ଼ାଇ ଦିଏ । ତାର ଶାସନ ବିଧାନ ଏଥିରେ ସାହାଯ୍ୟ କରେ ଏବଂ ଅନେକ ଦିନ ଅଭ୍ୟାସ ଫଳରେ ଯେତେବେଳେ ଆଉ କିଛି ବାଟ ନ ଥାଏ, ଇଂରେଜମାନେ କେତେକ ରଫାଦଫା କରିଯାଆନ୍ତି । ଏହିରୂପେ ବିରାଟ ଓ ହଠାତ୍ ପରିବର୍ତ୍ତନକୁ ଇଂଲଣ୍ଡ ଏଡ଼ାଇ ପାରିଛି—ଅଥଚ ଅନ୍ୟ ଦେଶରେ ଅଧିକ ଶକ୍ତ ଶାସନ-ବିଧାନ ଓ ଲୋକଙ୍କ ଜିଦ୍‌ଖୋରି ଫଳରେ ଏପରି ପରିବର୍ତ୍ତନ ହୋଇଛି । ୧୮୩୨ରେ ଗୋଟିଏ 'ସଂସ୍କାର ବିଲ୍' ଯୋଗୁ ଇଂଲଣ୍ଡରେ ଗୋଟାଏ ବଡ଼ ଆନ୍ଦୋଳନ ଲାଗିଥିଲା—ଏହି ବିଲରେ ପାର୍ଲିଆମେଣ୍ଟକୁ ସଭ୍ୟ ନିର୍ବାଚନ କରିବାର ଭୋଟ ଅଧିକାର ଅଧିକ ସଂଖ୍ୟକ ଲୋକଙ୍କୁ ଦିଆଗଲା । ଆଧୁନିକ ମାପକାଠିରେ ଦେଖିଲେ ଏହା ଅତି ମାମୁଲି ଓ କିଛି କ୍ଷତି ନ କରିବା ଭଳି ଆଇନ । ଏଥିରେ ମଧ୍ୟବିତ୍ତ ଶ୍ରେଣୀର ଆଉ କିଛି ବେଶି ଲୋକଙ୍କୁ ଭୋଟ କ୍ଷମତା ମିଳିଲା । ଶ୍ରମିକ ଓ ଅନ୍ୟମାନଙ୍କ ଭିତରୁ ଅଧିକାଂଶଙ୍କର ଭୋଟ ନ ଥିଲା । ସେତେବେଳେ ପାର୍ଲିଆମେଣ୍ଟ ଅଳ୍ପ ସଂଖ୍ୟକ ଧନୀ ଲୋକଙ୍କ ହାତରେ ଥିଲା ଏବଂ ସେମାନେ ନିଜର ବିଶେଷ ସୁବିଧା ଓ "ବରୋ" ଯେଉଁଠୁ ସେମାନେ ବିନା କୌଣସି ଗୋଳମାଳର ହାଉସ ଅଫ୍ କମନ୍‌ସ୍‌କୁ ନିର୍ବାଚିତ ହେଉଥିଲେ ତାହା ହରାଇବାର ଭୟ ଥିଲା । ତେଣୁ ଏମାନେ ସମସ୍ତ ଶକ୍ତି ଖଟାଇ ସଂସ୍କାର ବିଲର ବିରୋଧ କଲେ ଏବଂ କହିଲେ ଯେ ଏହି ବିଲ୍ ପାସ ହେଲେ ଇଂଲଣ୍ଡ ରସାତଳକୁ ଚାଲିଯିବ ଏବଂ ଦୁନିଆ ଶେଷ ପାଇଯିବ । ଇଂଲଣ୍ଡ ଗୃହ-ବିବାଦର ନିକଟରେ ପହଞ୍ଚିଲା—ଏତେବେଳେ ବିରୋଧୀମାନେ ଜନଆନ୍ଦୋଳନରେ ଆତଙ୍କିତ ହୋଇ ବିଲ୍ ପାସ୍ ହେବାରେ ସମ୍ମତି ଦାନ କଲେ । କହିବା ଅନାବଶ୍ୟକ ଯେ ଇଂଲଣ୍ଡ ଏଥିରୁ ଉଦ୍ଧାର ପାଇଲା ଏବଂ ପାର୍ଲିଆମେଣ୍ଟ ପୂର୍ବପରି ଧନୀଙ୍କ ଆୟତ୍ତରେ ରହି ଚାଲିଲା । ସଂଗଠସଂପନ୍ନ ମଧ୍ୟବିତ୍ତ ଶ୍ରେଣୀ ଅଧିକ କ୍ଷମତା ପାଇଲେ ।

୧୮୪୮ବେଳକୁ ଆଉ ଏକ ବଡ଼ ଆନ୍ଦୋଳନ ଦେଶକୁ ଦୋହଲାଇ ଦେଇଥିଲା । ଏହାକୁ ଚାର୍ଟିଷ୍ଟ ଆନ୍ଦୋଳନ କହନ୍ତି; କାରଣ "ଲୋକଙ୍କ ଦାବୀ" ସମ୍ବଳିତ କେତେକ ସଂସ୍କାର ଦାବୀ କରି ପାର୍ଲିଆମେଣ୍ଟରେ ଗୋଟିଏ ପ୍ରକାଣ୍ଡ ଦରଖାସ୍ତ ପେସ କରିବା ନିମନ୍ତେ

ପ୍ରସ୍ତାବ ହୋଇଥିଲା । ଶାସକଶ୍ରେଣୀଙ୍କୁ ଖୁବ ଆତଙ୍କିତ କଲା ପରେ ଏହି ଆନ୍ଦୋଳନକୁ ଦବାଇ ଦିଆଗଲା । କଲକାରଖାନାମାନଙ୍କରେ ଶ୍ରମିକଙ୍କ ଭିତରେ ବହୁ ପରିମାଣରେ ଦୁଃଖ ଓ ଅସନ୍ତୋଷ ରହିଥିଲା । ଏହି ସମସ୍ତ ବେଳକୁ କେତେକ ଶ୍ରମିକ-ଆଇନ ମଧ୍ୟ ପାସ୍ ହେଲା ଏବଂ ଏଥିରେ ଶ୍ରମିକମାନଙ୍କ ଅବସ୍ଥା କିଞ୍ଚିତ ପରିମାଣରେ ଉନ୍ନତିଲାଭ କଲା । ବର୍ଦ୍ଧିଷ୍ଣୁ ବେପାର ଯୋଗୁଁ ଇଂଲଣ୍ଡ ଦ୍ରୁତ ଗତିରେ ଧନ କମାଉ ଥିଲା; ଏହା "ପୃଥିବୀର କାରଖାନା" ରେ ପରିଣତ ହେଉଥିଲା । ଅଧିକାଂଶ ଲାଭ କଲକାରଖାନା ମାଲିକଙ୍କ ପାଖକୁ ଗଲା; କିନ୍ତୁ ଏଥିରୁ ଏକ କ୍ଷୁଦ୍ର ଅଂଶ ମାତ୍ର ଶ୍ରମିକମାନଙ୍କ ପାଖକୁ ନିଗିଡ଼ି ଆସୁଥିଲା । ଏହିସବୁ ଯୋଗୁଁ ୧୮୪୮ର ଜାଗରଣରେ ବାଧା ପଡ଼ିଥିଲା । କିନ୍ତୁ ସେତେବେଳେ ଏହା ଖୁବ ନିକଟ ପରି ମନେ ହେଉଥିଲା ।

ମୁଁ ଏପର୍ଯ୍ୟନ୍ତ ୧୮୪୮ ମସିହା ଶେଷ କରି ନାହିଁ, ସେହି ବର୍ଷ ରୋମରେ କଣ ହୋଇଗଲା କହିବା ପାଇଁ ବାକି ଅଛି । ଆସନ୍ତା ଚିଠିରେ ତାହା ଲେଖିବି ।

## ୧୨୭ : ଇଟାଲୀ ଏକ ମିଳିତ ଓ ସ୍ୱାଧୀନ ଜାତି ହେଲା

ଜାନୁୟାରୀ ୩୦, ୧୯୩୩, ବସନ୍ତ ପଞ୍ଚମୀ

୧୮୪୮ର ବିବରଣୀରେ ମୁଁ ଇଟାଲୀକୁ ପଛକୁ ରଖିଛି । ୧୮୪୮ ମସିହାରେ ସବୁ ଆଗ୍ରହପ୍ରଦ ଘଟଣାବଳୀ ଭିତରେ ରୋମରେ ବୀରତ୍ୱପୂର୍ଣ୍ଣ ସଂଗ୍ରାମ ହିଁ ଅଧିକ କୌତୂହଳପ୍ରଦ ।

ନେପୋଲିୟନଙ୍କ ଅମଳ ପୂର୍ବରୁ ଇଟାଲୀ ଛୋଟ ଛୋଟ ରାଜ୍ୟରେ ବିଭକ୍ତ ଥିଲା ଏବଂ ଛୋଟ ଛୋଟ ରାଜା ଥିଲେ । ଅଳ୍ପକାଳ ପର୍ଯ୍ୟନ୍ତ ନେପୋଲିୟନ ଏହାକୁ ଏକତ୍ର କରିଥିଲେ । ନେପୋଲିୟନଙ୍କ ପରେ ଏହା ତା'ର ପୂର୍ବ ଅବସ୍ଥାକୁ ଫେରିଗଲା ଅଥବା ଆହୁରି ଅଧିକ ଖରାପ ହେଲା । ୧୮୧୫ରେ ଭିଏନା କଂଗ୍ରେସରେ ବିଜେତା ମିତ୍ରଶକ୍ତିମାନେ ବସି ଖୁବ୍ ବିଚାର କରି ନିଜ ଭିତରେ ଏହାକୁ ବାଣ୍ଟି ନେଲେ । ଅଷ୍ଟ୍ରିୟା ଭେନିସ ଓ ତା ଚାରିପାଖର ବହୁ ଅଞ୍ଚଳ ନେଲା, କେତେକ ଅଷ୍ଟ୍ରିୟାନ ରାଜାମାନଙ୍କୁ ଭଲ ଗ୍ରାସ ମିଳିଗଲା; ପୋପ୍ ରୋମକୁ ଫେରିଆସିଲେ ଏବଂ ତା ଚାରିପାଖ ରାଜ୍ୟ ମିଶି ପାପାଲ ଷ୍ଟେଟ ହେଲା, ନେପଲସ ଓ ଦକ୍ଷିଣ ଅଞ୍ଚଳ ମିଶି ଦୁଇ ସିସିଲି ରାଜ୍ୟ ହେଲା ଓ ବୋର୍ବନ ରାଜ୍ୟ ଅଧୀନରେ ରହିଲା । ଉତ୍ତର-ପଶ୍ଚିମରେ ଫରାସୀ ସୀମାନ୍ତକୁ ପିଡ଼ମଣ୍ଟ ଓ ସର୍ଡ଼ିଆନର ଏକ ରାଜା

ଥିଲେ । ପିଡ୍‌ମଣ୍ଟ ଛଡ଼ା ଆଉ ଏସବୁ ଶ୍ରେଷ୍ଠ ରାଜା ଓ ସାମନ୍ତରାଜାମାନେ ଅତି ସ୍ୱେଚ୍ଛାଚାରୀ ଭାବରେ ଶାସନ କଲେ ଏବଂ ଏପରି କି ନେପୋଲିୟନଙ୍କ ଆଗମନ ପୂର୍ବରୁ ସେମାନେ ବା ଅନ୍ୟମାନେ ଯାହା କରିଥିଲେ, ତାହା ଅପେକ୍ଷା ତାଙ୍କ ପ୍ରଜାଙ୍କ ଉପରେ ଅଧିକ ଅତ୍ୟାଚାର କଲେ । କିନ୍ତୁ ନେପୋଲିୟନଙ୍କ ଆଗମନ ଦେଶରେ ଆଲୋଡ଼ନ ସୃଷ୍ଟି କରିଥିଲା ଏବଂ ଏକ ମିଳିତ ଓ ସ୍ୱାଧୀନ ଇଟାଲୀ ସ୍ୱପ୍ନରେ ଯୁବକମାନେ ଉଦ୍ବୁଦ୍ଧ ହୋଇଥିଲେ । ଶାସକ ମାନଙ୍କର ଅତ୍ୟାଚାର ସତ୍ତ୍ୱେ କିମ୍ବା ହୁଏତ ସେହି କାରଣରୁ ଅନେକ ଶ୍ରେଷ୍ଠ ଶ୍ରେଷ୍ଠ ବିଦ୍ରୋହ ହେଲା ଏବଂ ଗୁପ୍ତ ସମିତିମାନ ଗଢ଼ାହେଲା ।

ଅଳ୍ପ ଦିନ ପରେ ଜଣେ ଉଦୀୟମାନ ଯୁବକ ବାହାରିଲେ । ସେ ସ୍ୱାଧୀନତା ଆନ୍ଦୋଳନର ନେତା ହେଲେ । ଏ ହେଉଛନ୍ତି ଗିୟେସେପ୍ ମାଜିନି—ଇଟାଲୀ ଜାତୀୟ-ବାଦର ଆଦି ପ୍ରଚାରକ । ଏକ ଇଟାଲୀୟ ପ୍ରଜାତନ୍ତ୍ର ସ୍ଥାପନ କରିବା ଉଦ୍ଦେଶ୍ୟରେ ୧୮୩୧ରେ ସେ 'ଗିଓଭେନ୍ ଇଟାଲିଆ' ବା ତରୁଣ ଇଟାଲୀ ନାମକ ଏକ ସମିତି ଗଢ଼ିଲେ । ଅନେକ ବର୍ଷ ପର୍ଯ୍ୟନ୍ତ ସେ ଏହି ଉଦ୍ଦେଶ୍ୟରେ ଇଟାଲୀରେ କାର୍ଯ୍ୟ କରିଥିଲେ ଏବଂ ନିର୍ବାସିତ ହୋଇ ରହିଥିଲେ । ଅନେକ ସମୟରେ ତାଙ୍କ ଜୀବନ ସଙ୍କଟରେ ପଡ଼ିଥିଲା । ତାଙ୍କର ଅନେକ ଲେଖା ଜାତୀୟ-ସାହିତ୍ୟରେ ଚିରସମ୍ପଦ ହୋଇଗଲା । ୧୮୪୮ରେ ଯେତେବେଳେ ସମଗ୍ର ଉତ୍ତର-ଇଟାଲୀରେ ବିଦ୍ରୋହ ଆରମ୍ଭ ହେଉଥିଲା, ସେତେବେଳେ ମାଜିନି ସୁବିଧା ମନେ-କରି ରୋମକୁ ଆସିଲେ । ପୋପଙ୍କୁ ବାହାର କରି ଦିଆଗଲା ଏବଂ ଏକ ତିନିଜଣିଆ କମିଟି ଅଧୀନରେ ଗୋଟିଏ ପ୍ରଜାତନ୍ତ୍ର ଘୋଷଣା କରିଦିଆଗଲା—ଏହାକୁ "ଟ୍ରିଉମ୍‌ଭିର" କହନ୍ତି—ପୁରାତନ ରୋମ ଇତିହାସରୁ ଏହି ଶବ୍ଦ ଆସିଥିଲା । ଏହି ତିନି "ଟ୍ରିଉମ୍‌ଭିର"ଙ୍କ ଭିତରେ ମାଜିନି ଥିଲେ ଜଣେ । ଅଷ୍ଟ୍ରିଆନ୍, ନିଓପଲିଟାନ୍ ଏବଂ ଏପରି କି ପୋପ୍‌ଙ୍କୁ ଫେରାଇ ଆଣିବା ଲାଗି ଆସିଥିବା ଫରାସୀମାନେ ସମସ୍ତେ ସବୁଦିଗରୁ ନୂତନ ପ୍ରଜାତନ୍ତ୍ର ଉପରେ ଆକ୍ରମଣ କଲେ । ରୋମାନ୍ ପ୍ରଜାତନ୍ତ୍ର ତରଫରୁ ପ୍ରଧାନ ଯୋଦ୍ଧା ଥିଲେ ଗାରିବଲ୍‌ଡ଼ି । ସେ ଅଷ୍ଟ୍ରିଆନ୍‌ଙ୍କୁ ଅଟକାଇଲେ, ନିଓପଲିଟାନମାନଙ୍କୁ ପରାସ୍ତ କଲେ ଏବଂ ଏପରି କି ଫରାସୀଙ୍କ ଗତିରୋଧ କଲେ । ସ୍ୱେଚ୍ଛାସେବକ ସାହାଯ୍ୟରେ ଏସବୁ କରା-ହୋଇଥିଲା ଏବଂ ପ୍ରଜାତନ୍ତ୍ରକୁ ରକ୍ଷା କରିବା ନିମନ୍ତେ ରୋମର ସାହସୀ ଓ ସର୍ବୋତ୍କୃଷ୍ଟ ଯୁବକ ନିଜର ପ୍ରାଣଦାନ କଲେ । ଶେଷରେ ବୀରତ୍ୱପୂର୍ଣ୍ଣ ସଂଗ୍ରାମ ପରେ ଫରାସୀ ହାତରେ ରୋମାନ୍ ପ୍ରଜାତନ୍ତ୍ର ପଡ଼ିଲା—ସେମାନେ ପୋପଙ୍କୁ ଫେରାଇ ଆଣିଲେ ।

ସଂଗ୍ରାମର ପ୍ରଥମ ଅଧ୍ୟାୟ ଏହିପରି ସମାପ୍ତ ହେଲା । ମାଜିନି ଓ ଗାରିବଲ୍‌ଡ଼ି ଅନ୍ୟ ବାଟରେ କାମ କଲେ—ପ୍ରଚାର ଓ ଆଗାମୀ ବଡ଼ ଉଦ୍ୟମ ପାଇଁ ପ୍ରସ୍ତୁତ କରିବାରେ ଲାଗିପଡ଼ିଲେ । ସେ ଦୁହେଁ କେହି କାହାରି ପରି ନୁହନ୍ତି, ଜଣେ ଭାବୁକ ଏବଂ ଆଦର୍ଶବାଦୀ—ଅନ୍ୟ ଜଣକ ଜଣେ ଯୋଦ୍ଧା—ଗରିଲା ବା ଖଣ୍ଡଯୁଦ୍ଧରେ ପ୍ରବୀଣ । ଇଟାଲୀର ସ୍ୱାଧୀନତା

ଓ ଏକତା ଲାଗି ଦୃଢ଼ଙ୍କ ଭୀଷଣ ଭାବରେ ଲାଗି ପଡ଼ିଥିଲେ । ତାପରେ ଏହି ମହାନ୍ ରଙ୍ଗମଞ୍ଚରେ ଆଉ ଜଣେ ତୃତୀୟ ଅଭିନେତା ପ୍ରଧାନ ହୋଇଉଠିଲେ । ଏ ହେଉଛନ୍ତି ପିଡ଼ମଣ୍ଟ ରାଜା ଭିକ୍ଟର ଏମାନୁଏଲଙ୍କ ପ୍ରଧାନମନ୍ତ୍ରୀ କାଭୁର୍ । ଭିକ୍ଟର ଏମାନୁଏଲଙ୍କୁ ଇଟାଲୀର ରାଜା କରିବା ନିମନ୍ତେ କାଭୁର ମୁଖ୍ୟଭାବରେ ଲାଗିଥାନ୍ତି । ଏହା କରିବାକୁ ହେଲେ ଅନେକ ଶ୍ରେଷ୍ଠ ଶ୍ରେଷ୍ଠ ରାଜାମାନଙ୍କୁ ଦବେଇବାକୁ ଓ ତଡ଼ିଦେବାକୁ ପଡ଼ିବ; ତେଣୁ ମାଜିନି ଓ ଗାରିବଲ୍‌ଡ଼ିଙ୍କ କାର୍ଯ୍ୟର ଫାଇଦା ଉଠାଇବାକୁ ସେ ସମ୍ପୂର୍ଣ୍ଣରୂପେ ସେତେବେଳେ ପ୍ରସ୍ତୁତ ଥିଲେ । ଫ୍ରାନ୍‌ସରେ ତୃତୀୟ ନେପୋଲିୟନ ଶାସକ ଥାଆନ୍ତି—ସେ ଫରାସୀ ସହି ଚକ୍ରାନ୍ତ କରି ସେମାନଙ୍କୁ ଅଷ୍ଟ୍ରିଆ ସହିତ ଯୁଦ୍ଧରେ ବ୍ୟାପୃତ କରାଇଲେ । ଅଷ୍ଟ୍ରିଆ ଏହାଙ୍କର ଶତ୍ରୁ ଥିଲା । ଏହା ହେଉଛି ୧୮୫୯ର କଥା । ଫରାସୀମାନଙ୍କଦ୍ୱାରା ଅଷ୍ଟ୍ରିଆନ୍‌ମାନେ ପରାସ୍ତ ହେବାର ସୁଯୋଗ ନେଇ ଗାରିବଲ୍‌ଡ଼ି ନିଜର ସ୍ୱେଚ୍ଛାବଳରେ ନେପଲସ ଓ ସିସିଲି ରାଜା ବିରୁଦ୍ଧରେ ଏକ ଅସାଧାରଣ ଅଭିଯାନ ଆରମ୍ଭ କଲେ । ଏହା ହେଉଛି ଗାରିବଲ୍‌ଡ଼ି ଓ ତାଙ୍କର ଏକ ସହସ୍ର ଲାଲକୁର୍ତ୍ତା ଦଳଙ୍କ ବିଖ୍ୟାତ ଅଭିଯାନ—ଅଶିକ୍ଷିତ ଲୋକେ କୌଣସି ଉପଯୁକ୍ତ ଅସ୍ତ୍ରଶସ୍ତ୍ର ବା ମାଲମତା ନଥାଇ ତାଙ୍କ ବିରୁଦ୍ଧରେ ଥିବା ଶିକ୍ଷିତ ସେନାର ସମ୍ମୁଖୀନ ହେଲେ । ଏହି ଏକ ସହସ୍ର ଲାଲକୁର୍ତ୍ତା ନିଜ ଅପେକ୍ଷା ବହୁ ଅଧିକ ସଂଖ୍ୟକ ସେନା ବିରୋଧରେ ଲଢ଼ିଲେ । କିନ୍ତୁ ସେମାନଙ୍କର ଉତ୍ସାହ ଓ ଲୋକଙ୍କର ସଦିଚ୍ଛା ଯୋଗୁଁ ସେମାନେ ବିଜୟ ପରେ ବିଜୟ ହାସଲ କଲେ । ଗାରିବଲ୍‌ଡ଼ିଙ୍କ ଯଶ ବ୍ୟାପିଗଲା । ତାଙ୍କ ନାମରେ ଏପରି ଯାଦୁ ଥିଲା ଯେ ସୈନିକମାନେ ତାଙ୍କ ଆଗମନ ମାତ୍ରେ ବିଚଳିତ ହୋଇ ଯାଉଥିଲେ । ତଥାପି ତାଙ୍କ କାମ ବଡ଼ କଷ୍ଟକର ଥିଲା ଏବଂ ଅନେକ ସମୟରେ ଗାରିବଲ୍‌ଡ଼ି ଓ ତାଙ୍କ ସ୍ୱେଚ୍ଛାସେବକମାନେ ପରାଜୟ ଓ ବିପଦରେ ପଡ଼ିବା ଅବସ୍ଥାରେ ପହଞ୍ଚି ଯାଉଥିଲେ । କିନ୍ତୁ ପରାସ୍ତ ହେବା ବେଳେ ସୁଭାଗ୍ୟ ତାଙ୍କୁ ରକ୍ଷା କଲା—ପାଣି ଛଡ଼େଇ ସାହସିକ କାମ କଲେ ଏପରି ଅନେକ ସମୟରେ ହୁଏ । ତାଙ୍କର ପରାଜୟ ବିଜୟରେ ପରିଣତ ହେଲା ।

ଗାରିବଲ୍‌ଡ଼ି ଓ ତାଙ୍କର ଏକ ହଜାର ସ୍ୱେଚ୍ଛାସେବକ ସିସିଲିରେ ପହଞ୍ଚିଲେ । ସେଠୁ ସେମାନେ ଆସ୍ତେ ଆସ୍ତେ ଉପରକୁ ଉଠି ଇଟାଲୀ ଆଡ଼କୁ ଗଲେ । ଦକ୍ଷିଣ-ଇଟାଲୀର ଗ୍ରାମ ମଧ୍ୟ ଦେଇ ଗଲାବେଳେ ଗାରିବଲ୍‌ଡ଼ି ସ୍ୱେଚ୍ଛାସେବକ ପାଇଁ ଆହ୍ୱାନ କରୁଥିଲେ ଏବଂ ସେମାନଙ୍କୁ ଯେଉଁ ପୁରସ୍କାର ଦେବାର ଘୋଷଣା କରୁଥିଲେ ତାହା ଅସାଧାରଣ । ସେ କହୁଥିଲେ "ଆସ, ଆସ ! ଯେ ଘରେ ରହେ ସେ ଭୀରୁ । ମୁଁ ତମକୁ ଦେବି କ୍ଳାନ୍ତି, କଷ୍ଟ ଓ ଯୁଦ୍ଧ । କିନ୍ତୁ ଆମେ ଜିତିବା ଅଥବା ମରିବା ।" ସଫଳତା ପରି କିଛି ସଫଳ ହୁଏନା । ଗାରିବଲ୍‌ଡ଼ିଙ୍କ ପ୍ରଥମ ସଫଳତାରେ ଇଟାଲୀୟ ମାନଙ୍କର ଜାତୀୟତା ଭାବର ଉଦ୍ରେକ ହେଲା । ସ୍ୱେଚ୍ଛାସେବକ ସୁଅ ମାଡ଼ିଆସିଲେ ଏବଂ ସେମାନେ ଗାରିବଲ୍‌ଡ଼ିଙ୍କ ଏହି ସଙ୍ଗୀତ ଗାଇ ଉତ୍ତରାଞ୍ଚଳକୁ ଅଗ୍ରସର ହେଲେ ।

"ମଶାଣି ଫାଟକ ମୁକ୍ତରେ ଆଜ ଦୂରରୁ ମୂର୍ଚ୍ଛାର ଆସିଛୁ ଧାଇଁ
ଦେଶ ପାଇଁ ଯେବେ ରକ୍ତ ଦେଲ ଯେ ତା ପ୍ରେତ ମଣିଷ ହଠିଚ ଚେଇଁ
ହାତରେ ଝଲସେ ବଜସ୍ର ଖଡ଼୍ଗ—ଝାରଇ ସୁମନ ମାଳା ତ ଗଲେ,
ମରିଥିଲ ଯେବେ—ପ୍ରାଣେ ଆଜ ତାର ଇତାଲୀ ନାଁରେ ମଶାଲ ଜଳେ,
ତାର ସାଥେ ଆଜ ସ୍କୁଲ ରୁ ଯୁବକ—ତା'ର ଗଢ଼ାପଥେ ସଜାଅ ରଥ,
ଆସ—ଧର କଷି ଜାତର ନିଶାଣ—ବଜା ତୋର ବାଜା—ମାତୁ ଜଗତ ।
ଲୁହା କରଦେଇ ଆସ ତୋର ଗୁଡ—ନଆଁ ପର ଆସ ଉଜ୍ଜ୍ୱଳ ହୋଇ,
ଇତାଲୀର ଯେତେ ଅଭିଳାଷ ଆଣ—ଆସ ଶେଷ ଆଶା ଶିଖା ଜଳାଇ,
ମୋ ଜାତର ଘରୁ ଉଠା ତୋ ଆସନ—ଇତାଲୀ ଦେଶରେ ତୋ ସ୍ଥାନ କାହିଁ ?
ଦୂର ପରଦେଶୀ—ଅଜଣା—ଅଚହ୍ନା—ଇତାଲୀର ସୀମା ଯାଅ ତୁ ଡେଇଁ ।"

(ଅନୁବାଦକ—ଚିତ୍ତରଞ୍ଜନ ଦାସ)

ପ୍ରତ୍ୟେକ ସ୍ଥାନରେ ସଙ୍ଗୀତ କପଟ ଏକାଭିଳାଷୀ !

କାଭୁର ଗାରବଲ୍‌ଡ଼ିଙ୍କ ସଫଳତାର ସୁଯୋଗ ଉଠାଇଲେ ଏବଂ ଏହାର ଫଳ ସ୍ୱରୂପ ପିଡ଼ମଣ୍ଟର ଏମାନୁଏଲ ୧୮୬୧ରେ ଇଟାଲୀର ରାଜା ହେଲେ । ରୋମ ଏବେ ସୁଦ୍ଧା ଫରାସୀସେନାଙ୍କ ଅଧୀନରେ ଥିଲା । ଭେନିସ୍ ଅଷ୍ଟ୍ରିୟାନଙ୍କ ଅଧୀନରେ ଥିଲା । ୧୦ ବର୍ଷ ଭିତରେ ଭେନିସ୍ ଓ ରୋମ ଉଭୟ ଇଟାଲୀର ଅନ୍ୟ ଅଂଶ ସହିତ ଯୋଗ ହୋଇଗଲା ଏବଂ ରୋମ ଏହାର ରାଜଧାନୀ ହେଲା । ଶେଷରେ ଇଟାଲୀ ଏକ ମିଳିତ ଦେଶ ହେଲା । କିନ୍ତୁ ମାଜିନି ସୁଖୀ ନ ଥିଲେ । ତାଙ୍କର ସମସ୍ତ ଜୀବନ ଦେଇ ସେ ପ୍ରଜାତନ୍ତ୍ର ଆଦର୍ଶ ପାଇଁ ଲଢ଼ିଥିଲେ ଏବଂ ଏବେ ଇଟାଲୀ ପିଡ଼ମଣ୍ଟର ଭିକ୍ଟର ଏମାନୁଏଲଙ୍କ ରାଜ୍ୟ ହୋଇ ରହିଲା । ଏକଥା ସତ୍ୟ ଯେ ଏହି ନୂତନ ରାଜ୍ୟ ଏକ-ଶାସନତାନ୍ତ୍ରିକ ଦେଶ ଥିଲା ଏବଂ ଭିକ୍ଟର ଏମାନୁଏଲ ରାଜା ହେବା ସଙ୍ଗେ ସଙ୍ଗେ ଟୁରିନ୍‌ରେ ଇଟାଲୀ ପାର୍ଲିଆମେଣ୍ଟ ବସିଲା ।

ଏହିପରି ଇଟାଲୀ ଦେଶ ପୁନର୍ବାର ମିଳିତ ହେଲା ଓ ବିଦେଶୀ ଶାସନରୁ ମୁକ୍ତ ହେଲା । ମାଜିନି, ଗାରବଲ୍‌ଡ଼ି ଓ କାଭୁର—ଏହି ତିନି ଜଣ ଏହା ଆଣିପାରିଲେ ଏବଂ ସମ୍ଭବତଃ ଯଦି ତିନିଙ୍କ ଭିତରୁ କେହି ଜଣେ ନ ଥାନ୍ତା, ତେବେ ସ୍ୱାଧୀନତା ବିଳମ୍ବରେ ଆସିଥାଆନ୍ତା । ଅନେକ ବର୍ଷ ପରେ ଇଂରେଜ କବି ଓ ଔପନ୍ୟାସିକ ଜର୍ଜ ମେରେଡ଼ିଥ୍ ଲେଖିଛନ୍ତି—

"ଇତାଲୀ ପ୍ରାଣରେ ନୂତନ ରେଖା  ଏ ଇତାଲୀ ଦେଖି ପଡ଼ୁଛି ମନେ,
ପ୍ରଥମେ ଯେଦିନ ଦେଲରେ ଦେଖା  ତିନିଜନ ଆଣିଲେ ଯେ ତାର ପ୍ରାଣେ ।

ଉଠୁଥିଲା ଯେବେ ତା ଶିର ଜାଗି,
ଧୂଳିରେ ଆକୁଳେ ପଡ଼ିଲା ଭାଙ୍ଗି,
ପଡ଼ିଥିଲା ଯହିଁ ଲଙ୍ଗଳ ଗାର
ଆଜ ସେ ଶସ୍ୟରେ ଦିଶେ ସୁନ୍ଦର
ପାଚିଲା କିଆରୀ ହସିଲା ପର
ସେ ଦେଶ ସୁଷମା ପଡ଼ୁଛି ଝରି

"କାଭୁର" ରଚିଲା ଭାବନାଧାର,
ଆତ୍ମା ଦେଲା ତାକୁ "ମାଜିନି" ପର !
"ଗାରିବଲ୍‌ଡ଼ି" ଖଡ଼୍‌ଗେ ଉଠିଲା ଗର୍ଜି,
ଇଟାଲୀର ମୁକ୍ତି—ଅଜେୟ ସାଜି ।
ଧ୍ୱଂସ ଦୁଃଖ ଦୈନ୍ୟ ଲୁଚିଲା ଦୂରେ,
ହସିଲା ତା ଲକ୍ଷ୍ୟ—ଶୁଭ୍ର ଜ୍ୟୋତିରେ ।"

(ଅନୁବାଦକ—ଚିତ୍ତରଞ୍ଜନ ଦାସ)

ମୁଁ ତତେ ସଂକ୍ଷେପରେ ଗୋଟି ଗୋଟି କରି ଇଟାଲୀର ସ୍ୱାଧୀନତା ଲଢ଼ାଇର କାହାଣୀ ଲେଖିଲି । ଅନ୍ୟ ମୃତ ଇତିହାସର ବିବରଣୀ ପରି ଏହା ତତେ ଲାଗିବ । କିନ୍ତୁ ତୁ କପରି ଏହି କାହାଣୀକୁ ଜୀବନ୍ତ କରିପାରିବୁ, ନିଜ ମନରେ ଆନନ୍ଦ ପାଇବୁ ଏବଂ ସଂଗ୍ରାମ ଲାଗି ମନରେ ବ୍ୟାକୁଳତା ଜନ୍ମିବ, ଏହା ମୁଁ ତତେ କହିଦେବି । ବହୁଦିନ ପୂର୍ବେ ମୁଁ ଯେତେବେଳେ ସ୍କୁଲରେ ପଢ଼ୁଥିଲି, ସେତେବେଳେ ଅନ୍ତତଃ ମୁଁ ସେପରି ବୋଧ କରିଥିଲି ଏବଂ ଏହି କାହାଣୀ ମୁଁ ଟ୍ରିଭେଲିୟନଙ୍କ ତିନିଗୋଟି ପୁସ୍ତକରେ ପଢ଼ିଥିଲି— ବହିଗୁଡ଼ିକ ହେଉଛି, (୧) ଗାରିବଲ୍‌ଡ଼ି ଓ ରୋମ ପ୍ରଜାତନ୍ତ୍ର ପାଇଁ ଲଢ଼ାଇ (୨) ଗାରିବଲ୍‌ଡ଼ି ଓ ହଜାରେ ସ୍ୱେଚ୍ଛାସେବକ ଏବଂ (୩) ଗାରିବଲ୍‌ଡ଼ି ଓ ଇଟାଲୀର ଗଠନ ।

ଇଟାଲୀ ଯୁଦ୍ଧବେଳେ ଇଂରେଜ ଲୋକେ ଗାରିବଲ୍‌ଡ଼ି ଓ ତାଙ୍କ ଲାଲକୁର୍ତ୍ତୀଙ୍କ ପ୍ରତି ସହାନୁଭୂତି ଦେଖାଇଥିଲେ ଏବଂ ଅନେକ ଇଂରେଜ କବି ଯୁଦ୍ଧ ସମ୍ବନ୍ଧରେ ଜ୍ୱାଳାମୟୀ କବିତା ଲେଖିଛନ୍ତି । ନିଜର ସ୍ୱାର୍ଥ ଜଡ଼ିତ ନ ଥିଲେ ଇଂରେଜ ଲୋକଙ୍କ ସହାନୁଭୂତି କପରି ଯୁଦ୍ଧ କରୁଥିବା ଲୋକଙ୍କ ପ୍ରତି ଥାଏ, ଏହା ଅଦ୍ଭୁତ କଥା । ସ୍ୱାଧୀନତା ପାଇଁ ଲଢ଼ାଇ କରୁଥିବା ଗ୍ରୀସ୍‌କୁ ସେମାନେ କବି ବାଇରନ ଓ ଅନ୍ୟମାନଙ୍କୁ ପ୍ରେରଣ କଲେ, ଇଟାଲୀକୁ ସେମାନେ ସମସ୍ତ ସଦିଚ୍ଛା ଓ ଉତ୍ସାହ ଦେଲେ, କିନ୍ତୁ ତାଙ୍କ ପଡ଼ୋଶୀ ଆୟର୍ଲଣ୍ଡରେ—ଅନ୍ଧର ଦୂର ଭାରତ, ଇଜିପ୍ଟ ଓ ଅନ୍ୟାନ୍ୟ ସ୍ଥାନରେ ଇଂରେଜ ଦୂତମାନେ କେବଳ ମେସିନ୍‌ଗନ୍ (Machine gun) ଓ ଧ୍ୱଂସ ଆଣିଥିଲେ । ସେତେବେଳେ ଇଟାଲୀ ସମ୍ବନ୍ଧରେ ସୁଇନବୋର୍ଣ୍ଣ, ମେରେଡ଼ିଥ ଓ ଏଲିଜାବେଥ ବାରେଟ ବ୍ରାଉନଙ୍କ ଅନେକ ସୁନ୍ଦର କବିତା ଲେଖିଥିଲେ । ମେରେଡ଼ିଥ ଏ ସମ୍ବନ୍ଧରେ ଉପନ୍ୟାସ ବି ଲେଖିଥିଲେ । ସୁଇନ୍‌ବର୍ଣ୍ଣଙ୍କ ଏକ କବିତା—'ଦି' ହଲ୍‌ଟ ବିଫୋର ରୋମ' (The halt before Rome)ରୁ କେତେକ ଅଂଶ ମୁଁ ଏଠି ଉଦ୍ଧାର କରିବି । ସଂଗ୍ରାମ ଚାଲିଥିଲାବେଳେ ଇଟାଲୀ ଯେତେବେଳେ ଅନେକ ବାଧା ପାଉଥିଲା ଏବଂ ଅନେକ ବିଶ୍ୱାସଘାତକ ଯାଇ ତାଙ୍କ ବିଦେଶୀ ପ୍ରଭୁଙ୍କୁ ସାହାଯ୍ୟ କରୁଥିଲେ, ଏ ଲେଖା ସେତେବେଳର :—

"ତୋର ପ୍ରଭୁ ତୋତେ ଦେଇପାରେ ଦାନ—ମୁକ୍ତି କିନ୍ତୁ ଦେବ ନାହିଁ ଦାନ,
ନ ଯିବ ଅଟକ—ନାହିଁ ସ୍ଥାୟୀ ବାସ—ନାହିଁ ସୀମା—ଏ ମୁକ୍ତି ମହାନ୍;
ଜାତି ପ୍ରାଣେଁ ତନ୍ଦ୍ରା ନାଶି—ମଣିଷକୁ ହଏ ସେ ଇଙ୍ଗିତ
ଧାଇଁବାକୁ—ଯେ ସେନା ମରୁଚି; କ୍ଷତରେ ଯେ ଲେଟୁଚି ରକ୍ତାକ୍ତ
ପ୍ରାଣ ଦେଇ ରୋପିବାକୁ ବୀଜ ଭବିଷ୍ୟର—ଡାକ ହଏ ମୁକ୍ତ;
ଜୀବନର ପାଉଁଶ ଉପରେ ମହାଜାତି ଉଠିବରେ ମାତି—
ନୂତନର ହେବ ସୃଷ୍ଟି ଦୁଃଖ ଯିବ ପଶି,
ଯୁଦ୍ଧରେ ମରିବ ଯିଏ ମରି ହେବ ଆକାଶର ତାରା।"
(ଅନୁବାଦକ—ଚିତ୍ତରଞ୍ଜନ ଦାସ)

## ୧୨୮ : ଜର୍ମାନୀର ଅଭ୍ୟୁଦୟ

ଜାନୁୟାରୀ ୩୧, ୧୯୩୩

ଗତ ଚିଠିରେ ଆମେ ଦେଖିଲେ ଏକ ବୃହତ୍ ଇଉରୋପୀୟ ଜାତିର ଗଠନ କିପରି ହେଲା। ଏ ଜାତି ସହିତ ଆମେ ଆଜି ଭଲରୂପେ ପରିଚିତ। ଏବେ ଆମେ ଆଉ ଏକ ମହାନ୍ ଆଧୁନିକ ରାଷ୍ଟ୍ର ଜର୍ମାନୀ କିପରି ଗଢ଼ିଉଠିଲା ଦେଖିବା।

ଏକ ସାଧାରଣ ଭାଷା ଏବଂ ଅନ୍ୟାନ୍ୟ ଅନେକ ସାମ୍ୟ ଥାଇ ସୁଦ୍ଧା ଜର୍ମାନୀ ବଡ଼ ଛୋଟ ହୋଇ ବହୁସଂଖ୍ୟକ ରାଜ୍ୟରେ ବିଭକ୍ତ ହୋଇଥିଲା। ଅନେକ ଶତାବ୍ଦୀ ପର୍ଯ୍ୟନ୍ତ ଅଷ୍ଟ୍ରିଆର ହାପସ୍‌ବର୍ଗମାନେ ମୁଖ୍ୟ ଜର୍ମାନ ଶକ୍ତି ଥିଲେ। ତା' ପରେ ପ୍ରୁସିଆ ଆଗକୁ ଆସିଲା ଏବଂ ଜର୍ମାନ ଲୋକଙ୍କର ନେତୃତ୍ୱ ନେବା ନିମନ୍ତେ ଏହି ଦୁଇ ଶକ୍ତି ଭିତରେ ଝଗଡ଼ା ଚାଲିଲା। ନେପୋଲିୟନ୍ ଉଭୟଙ୍କର ଦର୍ପ ଖର୍ବ କରିଦେଲେ। ଏହାର ଫଳ-ସ୍ୱରୂପ ଜର୍ମାନ ଜାତୀୟତାର ଶକ୍ତି ବଢ଼ିଲା ଏବଂ ତାଙ୍କର ଅନ୍ତିମ ପରାଜୟରେ ସାହାଯ୍ୟ କଲା। ଏହିରୂପେ ଜର୍ମାନ ଓ ଇଟାଲୀରେ ଅଜ୍ଞାତଭାବରେ ଓ ଇଚ୍ଛା ନ କରି ସୁଦ୍ଧା ନେପୋଲିୟନ ଜାତୀୟତା ଓ ସ୍ୱାଧୀନତାର ଆଦର୍ଶକୁ ନୂଆ ପ୍ରେରଣା ଦେଲେ। ନେପୋଲିୟନଙ୍କ ବେଳର ମୁଖ୍ୟ ଜର୍ମାନ ଜାତୀୟତାବାଦୀଙ୍କ ଭିତରେ ଫିଚ୍‌ଟେ ଜଣେ ଦାର୍ଶନିକ ଥାଇ ସୁଦ୍ଧା ଏକ ଉତ୍ସାହୀ ଦେଶପ୍ରେମୀ ଥିଲେ—ସେ ତାଙ୍କ ଲୋକଙ୍କୁ ଜାଗ୍ରତ କରିବା ନିମନ୍ତେ ଅନେକ କାମ କରିଥିଲେ।

ନେପୋଲିୟନଙ୍କ ପରେ ଅର୍ଦ୍ଧ ଶତାବ୍ଦୀ ପର୍ଯ୍ୟନ୍ତ ଏହି ଶ୍ରେଷ୍ଠ ଜର୍ମାନ ରାଜ୍ୟସବୁ ରହିଲା । ରାଷ୍ଟ୍ରସଂଘ ବା କେନ୍ଦ୍ର ଶାସନ କରିବା ନିମନ୍ତେ ଅନେକ ଉଦ୍ୟମ ହୋଇଥିଲା, କିନ୍ତୁ ଏହା ସଫଳ ହୋଇ ନ ଥିଲା; କାରଣ ଉଭୟ ଅଷ୍ଟ୍ରିଆ ଓ ପ୍ରୁସିଆର ଶାସକ ଓ ସରକାରମାନେ ନେତୃତ୍ୱ ନେବାକୁ ଚାହୁଁଥିଲେ । ଇତ୍ୟବସରେ ସମସ୍ତ ଉଦାରନୈତିକ ଚିନ୍ତାଧାରାକୁ ପ୍ରଚଣ୍ଡରୂପେ ଦମନ କରାଗଲା ଏବଂ ୧୮୩୦ ଓ ୧୮୪୮ରେ ବିଦ୍ରୋହ ହେଲା—ଏହାସବୁ ଦବାଇ ଦିଆଗଲା । ଲୋକଙ୍କୁ ସନ୍ତୁଷ୍ଟ କରିବା ନିମନ୍ତେ ଅବଶ୍ୟ କେତେକ ଶ୍ରେଷ୍ଠ ଶ୍ରେଷ୍ଠ ସଂସ୍କାର ପ୍ରଚଳନ କରାଗଲା ।

ଇଂଲଣ୍ଡ ପରି ଜର୍ମାନୀର କେତେକାଞ୍ଚଳରେ କୋଇଲା ଖଣି ଓ ଲୁହା ଖଣି ଥିଲା ଏବଂ ତେଣୁ ଶିଳ୍ପ ଉନ୍ନତି ନିମନ୍ତେ ଅବସ୍ଥା ଅନୁକୂଳ ଥିଲା । ଜର୍ମାନୀ ମଧ୍ୟ ତାର ଦାର୍ଶନିକ, ବୈଜ୍ଞାନିକ ଓ ଯୋଦ୍ଧାମାନଙ୍କ ଲାଗି ପ୍ରସିଦ୍ଧ ଥିଲା । କଳକାରଖାନା ତିଆରି ହେଲା ଏବଂ ଶିଳ୍ପ ଶ୍ରେଣୀର ଶ୍ରମିକ ସୃଷ୍ଟି ହେଲା ।

ଏତିକବେଳେ ଶତାବ୍ଦୀର ମଧ୍ୟଭାଗରେ ପ୍ରୁସିଆରେ ଜଣେ ଲୋକ ଦେଖା ଦେଲେ—ସେ ଅନେକ ବର୍ଷ ପର୍ଯ୍ୟନ୍ତ ଖାଲି ଜର୍ମାନୀ ନୁହେଁ, ଇଉରୋପ ରାଜନୀତିରେ ମଧ୍ୟ ପ୍ରାଧାନ୍ୟ କରିଥିଲେ । ସେ ହେଉଛନ୍ତି ଅଟୋଭନ୍ ବିସ୍‌ମାର୍କ—ପ୍ରୁସିଆର ଜଣେ ଜମି ମାଲିକ । ସେ ଓ୍ୟାଟରଲୁ ଯୁଦ୍ଧ ବର୍ଷ ଜନ୍ମ ହୋଇଥିଲେ ଏବଂ ଅନେକ ବର୍ଷ ପର୍ଯ୍ୟନ୍ତ କୂଟନୀତିକ ଦୂତ ରୂପେ ସେ ବିଭିନ୍ନ ଦରବାରରେ କାର୍ଯ୍ୟ କରିଥିଲେ । ସେ ୧୮୬୨ରେ ପ୍ରୁସିଆର ପ୍ରଧାନମନ୍ତ୍ରୀ ହେଲେ ଏବଂ ସଙ୍ଗେ ସଙ୍ଗେ ନିଜର ପ୍ରଭାବ ଦେଖାଇଦେଲେ । ସେ ପ୍ରଧାନମନ୍ତ୍ରୀ ହେବାର ଏକ ସପ୍ତାହ ଭିତରେ ବକ୍ତୃତା ଦେଉ ଦେଉ କହିଥିଲେ, "ଏ କାଳର ପ୍ରଧାନ ପ୍ରଶ୍ନସବୁ ବକ୍ତୃତା ଓ ଅଧିକ ସଂଖ୍ୟକ ଲୋକଙ୍କ ପ୍ରସ୍ତାବରେ ନୁହେଁ, ତରବାରି ଓ ରକ୍ତଦ୍ୱାରା ହିଁ ନିଷ୍ପତ୍ତି ହେବ ।"

ରକ୍ତ ଓ ତରବାରି ! ଏହି ଶବ୍ଦଗୁଡ଼ିକ ପ୍ରସିଦ୍ଧ ହୋଇଗଲା ଏବଂ ସେ ଦୂରଦୃଷ୍ଟି ସହ ଓ ଅବିଶ୍ରାନ୍ତ ଭାବରେ ଯେଉଁ ନୀତି ଅନୁସରଣ କରିଥିଲେ, ଏହା ପ୍ରକୃତରେ ତାର ପ୍ରତିବିମ୍ବ । ସେ ଗଣତନ୍ତ୍ରକୁ ଘୃଣା କରୁଥିଲେ ଏବଂ ପାର୍ଲିଆମେଣ୍ଟ ଓ ପ୍ରତିନିଧିମୂଳକ ବ୍ୟବସ୍ଥାସବୁ ପ୍ରତି ଭଦ୍ର ବ୍ୟବହାର ଦେଖାଉ ନ ଥିଲେ । ସେ ଅତୀତର ଏକ ଭଗ୍ନାବଶେଷ ପରି ମନେହେଲେ; କିନ୍ତୁ ତାଙ୍କର ଦକ୍ଷତା ଓ ଦୃଢ଼ତା ଏପରି ଥିଲା ଯେ ସେ ବର୍ତ୍ତମାନକୁ ତାଙ୍କ ଇଚ୍ଛାନୁସାରେ ଚଳାଇନେଲେ । ସେ ଆଧୁନିକ ଜର୍ମାନୀ ତିଆରି କଲେ ଏବଂ ୧୯ଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧର ଇଉରୋପ ଇତିହାସକୁ ରୂପଦାନ କଲେ । ଦାର୍ଶନିକ ଓ ବୈଜ୍ଞାନିକଙ୍କ ଜର୍ମାନୀ ପଶ୍ଚାତ୍‌ରେ ଲୁଚିଗଲା ଏବଂ ରକ୍ତ ଓ ତରବାରିରେ ଜର୍ମାନୀ, ଏକ ଯୁଦ୍ଧକୁଶଳ ଜର୍ମାନୀ ଇଉରୋପ ମହାଦେଶରେ ପ୍ରାଧାନ୍ୟ କରିବାକୁ ଲାଗିଲା । ସେତେବେଳର ଜଣେ ମୁଖ୍ୟ ଜର୍ମାନୀ କହିଛନ୍ତି, "ବିସମାର୍କ ଜର୍ମାନୀକୁ ବଡ଼ କଲେ ଓ ଜର୍ମାନ ଲୋକଙ୍କୁ

ଗ୍ରେଟ୍ କରଦେଲେ ।" ଇଉରୋପରେ ଓ ଆନ୍ତର୍ଜାତିକ ବ୍ୟାପାରରେ ଜର୍ମାନୀକୁ ଏକ ବଡ଼ ଶକ୍ତି କରିବାର ନୀତି ଧରିବା ହେତୁ ଜର୍ମାନ ଲୋକେ ସନ୍ତୁଷ୍ଟ ହେଲେ ଏବଂ ଜାତୀୟ ମର୍ଯ୍ୟାଦା ବୃଦ୍ଧିର ଆଶାରେ ସେମାନେ ତାଙ୍କର ସକଳପ୍ରକାର ଅତ୍ୟାଚାର ସହିନେଲେ ।

ନିଜେ କଣ କରିବାକୁ ଯାଉଛନ୍ତି ସେ ସମ୍ବନ୍ଧରେ ସ୍ପଷ୍ଟ ଧାରଣା ପୋଷଣ କରି ଓ ଯତ୍ନର ସହିତ ଏକ ଯୋଜନା ପ୍ରସ୍ତୁତ କରି ବିସ୍‌ମାର୍କ କ୍ଷମତାକୁ ଆସିଥିଲେ ଏହି ଯୋଜନା ଅନୁସାରେ । ସେ ପ୍ରତିଜ୍ଞାବଦ୍ଧ ଭାବରେ କାମ କଲେ ଏବଂ ଅପୂର୍ବ ସଫଳତା ଲାଭ କଲେ । ସେ ଜର୍ମାନୀ ତିଆରି କରିବାକୁ ଚାହୁଁଥିଲେ ଏବଂ ଜର୍ମାନୀ ଜରିଆରେ ପ୍ରୁସିଆକୁ ଇଉରୋପରେ ପ୍ରଧାନ କରିବାକୁ ଚାହୁଁଥିଲେ । ସେତେବେଳେ ତୃତୀୟ ନେପୋଲିୟନଙ୍କ ଅଧୀନରେ ଏହି ମହାଦେଶରେ ଫ୍ରାନସ ହିଁ ସବୁଠୁ ଅଧିକ କ୍ଷମତାଶାଳୀ ଦେଶ ରୂପେ ଗଣ୍ୟ ହେଉଥିଲା । ଅଷ୍ଟ୍ରିଆ ମଧ୍ୟ ଏକ ବଡ଼ ପ୍ରତିଦ୍ୱନ୍ଦ୍ୱୀ ଥିଲା । ପୁରାତନ ଧରଣର ଆନ୍ତର୍ଜାତୀୟ ରାଜନୀତି ଓ କୂଟନୀତିରେ ବିସ୍‌ମାର୍କ କପରି ଅନ୍ୟ ଶକ୍ତିମାନଙ୍କ ସହ ଖେଳ ଖେଳିଲେ ଏବଂ ଗୋଟି ଗୋଟି କରି ପ୍ରତ୍ୟେକକୁ ଶେଷ କରିଦେଲେ, ଏହା ଦେଖିଲେ ବଡ଼ ଆନନ୍ଦଦାୟକ ମନେହୁଏ । ତାଙ୍କର ପ୍ରଥମ କାର୍ଯ୍ୟ ହେଲା—ଜର୍ମାନ୍ ଜାତି ଯେ ନେତୃତ୍ୱ ଦେବ, ଏହା ସବୁଦିନ ପାଇଁ ସ୍ଥିର କରିଦେବା । ଏଣୁ ସେ ପ୍ରୁସିଆ ଓ ଅଷ୍ଟ୍ରିୟା ଭିତରେ ପୁରୁଣା ପ୍ରତିଦ୍ୱନ୍ଦ୍ୱିତା ଆଉ ଚାଲିବାକୁ ଦେଲେ ନାହିଁ । ପ୍ରୁସିଆ ସପକ୍ଷରେ ହିଁ ଏହି ପ୍ରଶ୍ନ ନିଷ୍ପତ୍ତି କରିବାକୁ ହେବ ଏବଂ ଅଷ୍ଟ୍ରିଆକୁ ବୁଝିବାକୁ ହେବ ଯେ ସେ ଦ୍ୱିତୀୟ ସ୍ତରରେ ହିଁ ରହିବ । ତା'ପରେ ଫ୍ରାନ୍‌ସର ପାଳି । (ମନେରଖ, ମୁଁ ଯେତେବେଳେ ପ୍ରୁସିଆ, ଅଷ୍ଟ୍ରିଆ, ଫ୍ରାନସ ଆଦି କହୁଛି ସେତେବେଳେ ଏହାର ଅର୍ଥ ହେଉଛି ସେ ଦେଶର ସରକାର । ଏହିସବୁ ସରକାର ଅନେକାଂଶରେ ଏକଚ୍ଛତ୍ର ଥିଲେ ଏବଂ ସେଠାରେ ପାର୍ଲିଆମେଣ୍ଟର ପ୍ରାୟ କିଛି କ୍ଷମତା ନ ଥିଲା ।)

ତେଣୁ ବିସ୍‌ମାର୍କ ନୀରବରେ ତାଙ୍କ ସାମରିକ ଯନ୍ତ୍ରକୁ ଦୋରସ୍ତ କଲେ । ଇତି-ମଧ୍ୟରେ ତୃତୀୟ ନେପୋଲିୟନ୍ ଅଷ୍ଟ୍ରିଆ ଆକ୍ରମଣ କରି ପରାସ୍ତ କଲେ । ଏହି ସମୟ ବେଳେ ଗାରିବଲ୍‌ଡ଼ି ଦକ୍ଷିଣ-ଇଟାଲିରେ ଅଭିଯାନ ଆରମ୍ଭ କଲେ ଏବଂ ଶେଷରେ ଏହାର ଫଳ ସ୍ୱରୂପ ଇଟାଲି ସ୍ୱାଧୀନ ହେଲା । ଏହା ବିସ୍‌ମାର୍କଙ୍କୁ ସୁହାଇଲା, କାରଣ ଏଥିରେ ଅଷ୍ଟ୍ରିଆ ଦୁର୍ବଳ ହୋଇପଡ଼ିଲା । ରୁଷୀୟ ପୋଲାଣ୍ଡରେ ଜାତୀୟ ବିଦ୍ରୋହ ଆରମ୍ଭ ହେବାରୁ ଦରକାର ପଡ଼ିଲେ ପୋଲାଣ୍ଡ ଲୋକଙ୍କୁ ଗୁଳି କରିଦେବା ପାଇଁ ଜାର୍‌ଙ୍କୁ ସାହାଯ୍ୟ ଦେବା ନିମନ୍ତେ ବିସ୍‌ମାର୍କ ରାଜି ହେଲେ । ଏପରି ସାହାଯ୍ୟ ଦେବା ଅତି ନିନ୍ଦନୀୟ, କିନ୍ତୁ ଏହାର ଉଦ୍ଦେଶ୍ୟ ସଫଳ ହେଲା—ତାହା ହେଉଛି ଇଉରୋପରେ ଆଉ କୌଣସି ଜଟିଳ ଅବସ୍ଥା ଭବିଷ୍ୟତରେ ଉପୁଜିଲେ ଜାର୍‌ର ସଦିଚ୍ଛା ଲାଭ କରିବା । ତା'ପରେ ଅଷ୍ଟ୍ରିଆ ସହ ମିଶି ସେ ଡେନମାର୍କକୁ ପରାସ୍ତ କଲେ ଓ ଅଳ୍ପ କେତେଦିନ ପରେ ଅଷ୍ଟ୍ରିଆ ପ୍ରତି ଦୃଷ୍ଟି ପକାଇଲେ—ଏଥିପୂର୍ବରୁ ଫ୍ରାନ୍‌ସ ଓ ଇଟାଲୀର ସମର୍ଥନ ପାଇବା ନିମନ୍ତେ ସବୁ ବ୍ୟବସ୍ଥା

କରିଥାଆନ୍ତି । ୧୮୬୬ରେ ଅତି ଅଳ୍ପ କାଳ ଭିତରେ ଅଷ୍ଟ୍ରିଆ ଉପରେ ପ୍ରୁସିଆ ପ୍ରଭୁତ୍ୱ କଲା । ଜର୍ମାନ ନେତୃତ୍ୱ ପ୍ରଶ୍ନ ତୁଟାଇ ଦେଇ ଏବଂ ପ୍ରୁସିଆ ନେତା ବୋଲି ପରିଷ୍କାର କରିଦେଲା ପରେ ସେ ବଡ଼ ବୁଦ୍ଧିମାନର କାର୍ଯ୍ୟ କରି ଅଷ୍ଟ୍ରିଆ ସହ ଉଦାରଭାବରେ ବ୍ୟବହାର କଲେ—ଯେପରି କି ଆଉ ତିକ୍ତତା ରହିବ ନାହିଁ । ପ୍ରୁସିଆ ନେତୃତ୍ୱରେ (ଅଷ୍ଟ୍ରିଆ ଏଥିରେ ନ ଥିଲା) ଉତ୍ତର-ଜର୍ମାନ ରାଷ୍ଟ୍ରସଂଘ ପ୍ରତିଷ୍ଠା ପାଇଁ ରାସ୍ତା ଏବେ ପରିଷ୍କାର ହୋଇଥିଲା । ବିସ୍‌ମାର୍କ ରାଷ୍ଟ୍ରସଂଘର ଚାନ୍‌ସେଲର ହେଲେ । ଆଜିକାଲି ଆମର ରାଜନୀତିଜ୍ଞ ଓ ଆଇନଜ୍ଞ ପଣ୍ଡିତମାନେ ମାସ ମାସ ବର୍ଷ ବର୍ଷ ଧରି ବସି ରାଷ୍ଟ୍ରସଂଘ ଓ ଶାସନବିଧାନ ଆଦି ସମ୍ବନ୍ଧରେ କଥାବାର୍ତ୍ତା କରନ୍ତି ଓ ଯୁକ୍ତି କରି ଦିନ କଟାନ୍ତି । କିନ୍ତୁ ଉଲ୍ଲେଖଯୋଗ୍ୟ କଥା ଏହି ଯେ ବିସ୍‌ମାର୍କ ପାଞ୍ଚ ଘଣ୍ଟା ଭିତରେ ଉତ୍ତର ଜର୍ମାନ ରାଷ୍ଟ୍ରସଂଘର ନୂତନ ଶାସନ-ବିଧାନ···ମୁହଁରୁ ଡାକିଥିଲେ । ୧୯୧୮ ପୃଥିବୀର ଯୁଦ୍ଧ ପରେ ଜର୍ମାନରେ ପ୍ରଜାତନ୍ତ୍ର ସ୍ଥାପିତ ହେବା ପର୍ଯ୍ୟନ୍ତ ଏଥିରେ ସାମାନ୍ୟ କେତେକ ପରିବର୍ତ୍ତନ ହୋଇ ପଚାଶ ବର୍ଷ ପର୍ଯ୍ୟନ୍ତ ଏହା ହିଁ ଜର୍ମାନୀର ଶାସନବିଧାନ ହୋଇ ରହିଥିଲା ।

ବିସ୍‌ମାର୍କ ତାଙ୍କ ପ୍ରଥମ ମହାନ୍ ଉଦ୍ଦେଶ୍ୟ ହାସଲ କଲେ । ତାପରେ କାର୍ଯ୍ୟ ହେଲା ଫ୍ରାନ୍‌ସକୁ ହରାଇ ଇଉରୋପରେ ପ୍ରାଧାନ୍ୟ ସ୍ଥାପନ କରିବା । ନୀରବରେ ଏବଂ କିଛି ପାଟିତୁଣ୍ଡ ନ କରି ସେ ଏଇଥିପାଇଁ ପ୍ରସ୍ତୁତ ହୋଇଗଲେ । ଜର୍ମାନ ଏକତା ଆଣିବାକୁ ଚେଷ୍ଟା କରି ଏବଂ ଅନ୍ୟ ଇଉରୋପୀୟ ଶକ୍ତିମାନଙ୍କର ସନ୍ଦେହ ଦୂର କରି ଏହା କରିପାରିଲେ । ଏପରି କି ପରାଜିତ ଅଷ୍ଟ୍ରିଆ ପ୍ରତି ଏପରି ଭଦ୍ର ବ୍ୟବହାର କରାଗଲା ଯେ କୌଣସି ମନ୍ଦ ଭାବନା ରହିଲା ନାହିଁ । ଇଂଲଣ୍ଡ ହିଁ ଫ୍ରାନ୍‌ସର ଅନେକ ଦିନର ପ୍ରତିଦ୍ୱନ୍ଦ୍ୱୀ ଏବଂ ତୃତୀୟ ନେପୋଲିୟନଙ୍କ ବଡ଼ ଉଚ୍ଚ ଯୋଜନାସବୁ ସେମାନେ ବଡ଼ ସନ୍ଦେହ ଦୃଷ୍ଟିରେ ଦେଖୁଥିଲେ । ତେଣୁ ଫ୍ରାନ୍‌ସ ବିରୁଦ୍ଧରେ କୌଣସି ସଂଗ୍ରାମରେ ଇଂଲଣ୍ଡର ସଦିଚ୍ଛା ପାଇବା ବିସ୍‌ମାର୍କଙ୍କ ପକ୍ଷରେ କଷ୍ଟକର ନ ଥିଲା । ସେ ଯୁଦ୍ଧ ପାଇଁ ସମ୍ପୂର୍ଣ୍ଣରୂପେ ପ୍ରସ୍ତୁତ ହୋଇସାରିଲା ପରେ ଏପରି ଖେଳ ଖେଳିଲେ ଯେ ପ୍ରକୃତରେ ୧୮୭୦ରେ ତୃତୀୟ ନେପୋଲିୟନ୍ ପ୍ରୁସିଆ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ । ପ୍ରୁସିଆ ସରକାରକୁ ଆକ୍ରମଣଶୀଳ ଫ୍ରାନ୍‌ସର ନିରୀହ ଶିକାର ପରି ଇଉରୋପ ବିଚାରିଲା । "ବର୍ଲିନ ! ବର୍ଲିନ !" ବୋଲି ପାରିସରେ ଲୋକେ ଚିତ୍କାର କଲେ ଏବଂ ତୃତୀୟ ନେପୋଲିୟନ ଆତ୍ମବଡ଼ିମାରେ ବିଚାରିଲେ ଯେ ସେ ବିଜୟୀ ସୈନ୍ୟମାନଙ୍କୁ ଘେନି ଅତିଶୀଘ୍ର ବର୍ଲିନରେ ପହଞ୍ଚିବେ । କିନ୍ତୁ ଏହାଠାରୁ ଅଲଗା କଥା ଘଟିଲା । ବିସ୍‌ମାର୍କଙ୍କର ଶିକ୍ଷିତ ସାମରିକ ଯନ୍ତ୍ର ଫ୍ରାନ୍‌ସର ଉତ୍ତର-ପୂର୍ବ ସୀମାନ୍ତରେ ଆକ୍ରମଣ ଆରମ୍ଭ କଲା ଏବଂ ଫରାସୀ ସେନା ଏହା ଆଗରେ ମିଳେଇଗଲା । ଅଳ୍ପ କେତେ ସପ୍ତାହ ଭିତରେ ସେଡ଼ାନଠାରେ ତୃତୀୟ ନେପୋଲିୟନ୍ ନିଜେ ଓ ତାଙ୍କ ସେନା ଜର୍ମାନ-ମାନଙ୍କଦ୍ୱାରା ବନ୍ଦୀ ହେଲେ ।

ଏହିରୂପେ ଫ୍ରାନ୍ସର ଦ୍ୱିତୀୟ ନେପୋଲିୟନୀୟ ସାମ୍ରାଜ୍ୟର ଅନ୍ତ ହେଲା । ତତ୍‌କ୍ଷଣାତ୍ ଏକ ପ୍ରଜାତନ୍ତ୍ର ସରକାର ପାରିସରେ ସ୍ଥାପିତ ହେଲା । ଅନେକ କାରଣରୁ ତୃତୀୟ ନେପୋଲିୟନଙ୍କ ପତନ ହେଲା, ମୁଖ୍ୟତଃ ଲୋକଙ୍କ ଉପରେ ତାଙ୍କର ଦମନନୀତି ହେତୁ ସେ ଅତ୍ୟନ୍ତ ଅପ୍ରିୟ ହୋଇଥିବାରୁ ଏହା ହେଲା । ସେ ଲୋକଙ୍କ ଦୃଷ୍ଟି ବିଦେଶୀ ଯୁଦ୍ଧ ପ୍ରତି ନେଇଯିବାକୁ ଚାହିଁଲେ—ହଇରାଣରେ ପଡ଼ିଲାବେଳେ ରାଜା ଓ ସରକାରମାନେ ଏହି ପନ୍ଥା ଗ୍ରହଣ କରନ୍ତି । ସେ କୃତକାର୍ଯ୍ୟ ହେଲେ ନାହିଁ ଏବଂ ଯୁଦ୍ଧ ହିଁ ତାଙ୍କ ଅଭିଳାଷରେ ଜଉମୁନ୍ଦ ମାରିଦେଲା ।

ଦେଶରକ୍ଷା କରିବା ନିମନ୍ତେ ପାରିସରେ ଏକ ଜାତୀୟ ସରକାର ପ୍ରତିଷ୍ଠା ହେଲା । ସେମାନେ ପ୍ରୁସିଆକୁ ଶାନ୍ତି ପ୍ରସ୍ତାବ ଦେଲେ; କିନ୍ତୁ ବିସ୍‌ମାର୍କ ଏପରି ଅପମାନଜନକ ସର୍ତ୍ତ ପଠାଇଲେ ଯେ ତା' ଫଳରେ ବାସ୍ତବିକ କୌଣସି ସେନା ନ ଥାଇ ସୁଦ୍ଧା ଫରାସୀଜାତି ଯୁଦ୍ଧ କରିବା ନିମନ୍ତେ ସ୍ଥିର କଲେ । ଭର୍ସେଇ ଓ ତା ପାର୍ଶ୍ୱବର୍ତ୍ତୀ ଜର୍ମାନ ସୈନ୍ୟମାନେ ପାରିସ ଅବରୋଧ କଲେ । ଶେଷରେ ପାରିସ ମୁଣ୍ଡ ନୁଆଁଇଲା ଏବଂ ନୂତନ ପ୍ରଜାତନ୍ତ୍ର ପରାଜୟ ସ୍ୱୀକାର କରି ବିସ୍‌ମାର୍କଙ୍କର କଠିନ ସର୍ତ୍ତସବୁ ଗ୍ରହଣ କଲା । ସେ ଯୁଦ୍ଧ ଲାଗି ବହୁ ପରିମାଣରେ କ୍ଷତିପୂରଣ ସ୍ୱରୂପ ଧନ ଦେବାକୁ ସମ୍ମତ ହେଲା ଏବଂ ସବାପେକ୍ଷା ଅଧିକ ଆଘାତ ଦେଲା ଏହି ଯେ ଆଲେସସ୍ ଓ ଲରେନ୍ ପ୍ରଦେଶ, ଯାହା ପ୍ରାୟ ୨୦୦ ବର୍ଷରୁ ଅଧିକ କାଳ ଫ୍ରାନ୍‌ସର ଅଙ୍ଗରୂପେ ରହି ଆସିଥିଲା, ତାହା ଏବେ ଜର୍ମାନୀ ହାତକୁ ଛାଡ଼ି ଦେବାକୁ ପଡ଼ିଲା ।

କିନ୍ତୁ ପାରିସର ଅବରୋଧ ଶେଷ ନ ହେଉଣୁ ଭର୍ସେଇରେ ନୂତନ ସାମ୍ରାଜ୍ୟର ଜନ୍ମ ହେଲା । ୧୮୭° ମସିହା ସେପ୍‌ଟେମ୍ବର ମାସରେ ତୃତୀୟ ନେପୋଲିୟନଙ୍କର ଫରାସୀ ସାମ୍ରାଜ୍ୟ ଶେଷ ପାଇଲା; ୧୮୭୧ ମସିହା ଜାନୁୟାରୀ ମାସରେ ଭର୍ସେଇରେ ଚତୁର୍ଦ୍ଦଶ ଲୁଇଙ୍କ ପ୍ରକାଣ୍ଡ ପ୍ରାସାଦରେ ପ୍ରୁସିଆନ ରାଜାଙ୍କୁ କାଇଜର ବା ସମ୍ରାଟ ଉପାଧି ଦେଇ ତାଙ୍କ ଅଧୀନରେ ଏକ ମିଳିତ ଜର୍ମାନୀ ଦେଶ ଘୋଷଣା ହେଲା । ନୂତନ ସମ୍ରାଟ କାଇଜରଙ୍କୁ ସମ୍ମାନ ଦେଖାଇବା ନିମନ୍ତେ ଜର୍ମାନୀର ସବୁ ରାଜା ଓ ପ୍ରତିନିଧିମାନେ ସେଠି ରୁଣ୍ଡ ହେଲେ । ଏହାଦ୍ୱାରା ପ୍ରୁସିଆନ ହୋହେନ୍‌ଜୋଲେର୍ଣ୍ଣ ରାଜବଂଶ ସମ୍ରାଟ ବଂଶରେ ପରିଣତ ହେଲା ଏବଂ ମିଳିତ ଜର୍ମାନୀ ପୃଥିବୀର ଏକ ପ୍ରଧାନ ଶକ୍ତି ହେଲା ।

ଭର୍ସେଇରେ ଆନନ୍ଦ ଉତ୍ସବ କରାଗଲା; କିନ୍ତୁ ନିକଟରେ ପାରିସରେ ଦୁଃଖ-ଦୁର୍ଦ୍ଦଶା ଓ ଅତି ହୀନମାନ ଅବସ୍ଥା ଥିଲା । ବିପତ୍ତି ଉପରେ ବିପତ୍ତି ପଡ଼ି ଲୋକେ ବ୍ୟତିବ୍ୟସ୍ତ ହୋଇଥିଲେ ଏବଂ କୌଣସି ସ୍ଥାୟୀ ବା ସୁପ୍ରତିଷ୍ଠିତ ସରକାର ନ ଥିଲା । ଜାତୀୟ ଆସେମ୍ବ୍ଲିକୁ ବହୁସଂଖ୍ୟକ ରାଜତନ୍ତ୍ରବାଦୀ ନିର୍ବାଚିତ ହେଲେ ଏବଂ ସେମାନେ ରାଜପଦ୍ଧି ଫେରାଇ ଆଣିବା ନିମନ୍ତେ ଚକ୍ରାନ୍ତ କଲେ । 'ନେସନାଲ୍ ଗାର୍ଡ଼' ବା ଜାତୀୟ ପ୍ରହରୀଦଳ ପ୍ରଜାତନ୍ତ୍ରବାଦୀ

ବୋଲି ବିଶ୍ୱାସ କରାଯାଇଥିଲା; ତେଣୁ ପଥରୁ ସେ କଣ୍ଟକ ହଟାଇଦେବା ନିମନ୍ତେ ଚେଷ୍ଟା କଲେ । ସମସ୍ତ ବିପ୍ଳବୀ ଓ ଗଣତନ୍ତ୍ରବାଦୀ ଲୋକେ ଅନୁଭବ କଲେ ଯେ ପୁଣି ପ୍ରତିକ୍ରିୟା ଓ ଅତ୍ୟାଚାର ଚାଲିବ । ଗୋଟିଏ ବିଦ୍ରୋହ ହେଲା ଏବଂ ୧୮୭୧ ମସିହା ମାର୍ଚ୍ଚ ମାସରେ ପାରିସରେ "କମ୍ୟୁନ୍" ଘୋଷିତ ହେଲା । ତାହା ଏକପ୍ରକାର ମ୍ୟୁନିସିପାଲିଟି ଏବଂ ଫରାସୀ ବିପ୍ଳବ ପ୍ରତି ଦୃଷ୍ଟିପାତ କରି ଏହା ସେଥିରୁ ପ୍ରେରଣା ପାଇଥିଲା । କିନ୍ତୁ ଏହା ତାହା ଅପେକ୍ଷା ଆଉ କିଛି ଅଧିକ ଥିଲା ଏବଂ ଅତି ଅସ୍ପଷ୍ଟ ରୂପେ ହେଲେ ସୁଦ୍ଧା ଏହାର ଉଦ୍ଦେଶ୍ୟ ତଳୁଁ ଏଥିରେ ନୂତନ ସାମ୍ୟବାଦୀ ଭାବ ନିହିତ ଥିଲା । ଏକ ଅର୍ଥରେ ଏହା ରୁଷ ସୋଭିଏଟ୍ ପ୍ରଣାଳୀର ପୂର୍ବଗାମୀ ।

କିନ୍ତୁ ୧୮୭୧ରେ ଏହି ପାରିସ କମ୍ୟୁନ ଅଳ୍ପକ୍ଷଣସ୍ଥାୟୀ ହେଲା । ସାଧାରଣ ଲୋକଙ୍କର ଜାଗରଣରେ ଆତଙ୍କିତ ହୋଇ ରାଜତନ୍ତ୍ରବାଦୀ ଓ ବୁର୍ଜୋୟା ଶ୍ରେଣୀ କମ୍ୟୁନ୍ ଅଧୀନରେ ପାରିସର ଯେଉଁ ଅଂଶ ଥିଲା ତା'ଉପରେ ଆକ୍ରମଣ କଲେ । ଅତି ନିକଟରେ ଉପେଇ ଓ ଅନ୍ୟତ୍ର ଥିବା ଜର୍ମାନ ସୈନ୍ୟ ଏହାସବୁ ଦେଖୁଥାନ୍ତି । ଜର୍ମାନମାନଙ୍କ ପାଖରେ ବନ୍ଦୀହୋଇ ରହିଥିବା ଫରାସୀ ସୈନ୍ୟମାନେ ଖଲାସ ହେବାରୁ ପାରିସକୁ ଆସିଲେ, ସେମାନେ ତାଙ୍କର ପୁରାତନ କର୍ମକର୍ତ୍ତାଙ୍କ ପକ୍ଷ ନେଲେ ଓ କମ୍ୟୁନ ବିରୁଦ୍ଧରେ ଲଢ଼ିଲେ । ସେମାନେ କମ୍ୟୁନ-ପନ୍ଥୀ (କମ୍ୟୁନାର୍ଡ଼)ଙ୍କ ବିରୁଦ୍ଧରେ ସାଧା କଲେ ଏବଂ ୧୮୭୧ ମସିହା ମେ ମାସ ଶେଷବେଳକୁ ଏକ ଗ୍ରୀଷ୍ମ ଦିବସରେ ସେମାନେ କମ୍ୟୁନାର୍ଡ଼ଙ୍କୁ ପରାସ୍ତ କଲେ ଏବଂ ପାରିସ ରାସ୍ତାରେ ୩୦,୦୦୦ ନରନାରୀଙ୍କ ଗୁଳିକରି ମାରିଦେଲେ । ବିନା ଉତ୍ତେଜନାରେ ପରେ ବହୁସଂଖ୍ୟକ କମ୍ୟୁନାର୍ଡଙ୍କୁ ଗୁଳି କରାଗଲା । ଏହିରୂପେ ପାରିସ କମ୍ୟୁନର ଅନ୍ତ ହେଲା ଏବଂ ସେ ସମୟରେ ଏହା ଇଉରୋପରେ ଖୁବ୍ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା । କେବଳ ଏହି ରକ୍ତାକ୍ତ ଦମନ ଯୋଗୁଁ ନୁହେଁ; ଏହା ପ୍ରଚଳିତ ବ୍ୟବସ୍ଥା ବିରୁଦ୍ଧରେ ପ୍ରଥମ ସାମ୍ୟବାଦୀ ବିଦ୍ରୋହ ହୋଇଥିବାରୁ ଏପରି ଚାଞ୍ଚଲ୍ୟ ଖେଳିଗଲା । ଅନେକ ସମୟରେ ଗରିବ ଧନୀଙ୍କ ବିରୁଦ୍ଧରେ ଉଠିଛନ୍ତି; କିନ୍ତୁ ଯେଉଁ ବ୍ୟବସ୍ଥା ଯୋଗୁଁ ସେମାନେ ଗରିବ ହୋଇଛନ୍ତି, ତାକୁ ପରିବର୍ତ୍ତନ କରିବା କଥା କେବେ ଚିନ୍ତା କରି ନ ଥିଲେ । କମ୍ୟୁନ୍ ଏକ ଗଣତାନ୍ତ୍ରିକ ଓ ଆର୍ଥନୀତିକ ବିଦ୍ରୋହ ଥିଲା ଏବଂ ସେଥିପାଇଁ ଇଉରୋପରେ ସାମ୍ୟବାଦୀ ଚିନ୍ତାଧାରା ପ୍ରଚାରରେ ଏହା ଅଗ୍ରଦୂତ ଥିଲା । ଫ୍ରାନ୍ସରେ କମ୍ୟୁନକୁ ହିଂସା ଦ୍ୱାରା ଦବାଇ ଦିଆଯିବାରୁ ସାମ୍ୟବାଦୀ ଚିନ୍ତାଧାରା ଛପି ରହିଗଲା ଏବଂ ସେଥିରୁ ଆସ୍ତେ ଆସ୍ତେ ଉପରକୁ ଉଠିଲା ।

କମ୍ୟୁନ ଦବିଗଲେ ସୁଦ୍ଧା ଫ୍ରାନ୍ସରେ ଆଉ ରାଜତନ୍ତ୍ର ରହିଲା ନାହିଁ । କିଛିଦିନ ପରେ ଏହା ସ୍ଥାନରେ ପ୍ରଜାତନ୍ତ୍ରବାଦ ସ୍ଥାପିତ ହେଲା ଓ ୧୮୭୫ ମସିହା ଜାନୁୟାରୀମାସରେ ନୂତନ ଶାସନବିଧାନ ଅନୁସାରେ ତୃତୀୟ ପ୍ରଜାତନ୍ତ୍ର ଘୋଷିତ ହେଲା । ସେହିଦିନୁ ଏହି

ପ୍ରଜାତନ୍ତ୍ର ଚାଲିଛି ଏବଂ ଏବେ ସୁଦ୍ଧା ରହିଛି । ଫ୍ରାନ୍ସରେ କେତେକ ଲୋକେ ଏବେ ସୁଦ୍ଧା ରାଜାପଦ ରଖିବା ବିଷୟ ଉଠାନ୍ତି; କିନ୍ତୁ ତାଙ୍କ ସଂଖ୍ୟା ଅତି ଅଳ୍ପ ଏବଂ ଫ୍ରାନ୍ସ ନିର୍ଦ୍ଦିଷ୍ଟ ରୂପେ ପ୍ରଜାତନ୍ତ୍ରବାଦ ଗ୍ରହଣ କରିଛି । ଫରାସୀ ପ୍ରଜାତନ୍ତ୍ର ଏକ ବୁର୍ଜୋୟା ପ୍ରଜାତନ୍ତ୍ର ଏବଂ ସଂଗତିସମ୍ପନ୍ନ ମଧ୍ୟବିତ୍ତ ଶ୍ରେଣୀ ହିଁ ଏହାକୁ ପରିଚାଳନା କରୁଛନ୍ତି ।

୧୮୭୦-୭୧ର ଜର୍ମାନ ଯୁଦ୍ଧରୁ ଫ୍ରାନ୍ସ ମୁକ୍ତି ପାଇଲା ଏବଂ ବହୁ ପରିମାଣରେ କ୍ଷତିପୂରଣ ଦେଲା, କିନ୍ତୁ ସେମାନଙ୍କୁ ଯେଉଁ ଅପମାନ ସହିବାକୁ ପଡ଼ିଲା, ସେ କ୍ରୋଧ ଲୋକଙ୍କ ମନରେ ଜାଗିରହିଲା । ସେମାନେ ଏକ ଅହଙ୍କାରୀ ଜାତି ଏବଂ ଅନେକଦିନର ସ୍ମୃତି ତାଙ୍କ ମନରେ ରହିଛି; ସେହି ପ୍ରତିଶୋଧ ନେବା ଭାବ ତାଙ୍କ ମନକୁ ଅଧିକାର କରି ରହିଲା । ବିଶେଷଭାବରେ ଆଲସେସ୍ ଓ ଲରେନ୍ ଛିଡାଇବାକୁ ସେମାନେ ବେଶି ଅନୁଭବ କଲେ । ଅଷ୍ଟ୍ରିଆର ପରାଜୟ ପରେ ତା ପ୍ରତି ଦୟାଶୀଳ ଭାବ ଦେଖାଇ ବିସ୍‌ମାର୍କ ବୁଦ୍ଧିମାନର କାର୍ଯ୍ୟ କଲେ; କିନ୍ତୁ ଫ୍ରାନ୍ସ ପ୍ରତି ଯେଉଁ କଠୋର ବ୍ୟବହାର କରିଥିଲେ, ସେଥିରେ କୌଣସି ଜ୍ଞାନ ବା ଉଦାରତା ନ ଥିଲା । ଏକ ଅହଙ୍କାରୀ ଶତ୍ରୁକୁ ନିଜ କବଳକୁ ଆଣିବା ବିନିମୟରେ ସେ ଏହି ଲୋକମାନଙ୍କର ଭୀଷଣ ଓ ସଦାଜାଗ୍ରତ ଶତ୍ରୁତା ପାଇଲେ ଠିକ୍ ସେଡାନ ଯୁଦ୍ଧ ପରେ, ଏପରି କି ତାହା ଶେଷ ହେବା ପୂର୍ବରୁ ମଧ୍ୟ ପ୍ରସିଦ୍ଧ ସାମ୍ୟବାଦୀ କାର୍ଲ ମାର୍କସ୍ ଏକ ଇସ୍ତାହାର ପ୍ରକାଶ କରିଥିଲେ—ସେଥିରେ ସେ ଭବିଷ୍ୟତ୍ ବାଣୀ ଦେଇଥିଲେ ଯେ ଆଲସେସ୍ ଦଖଲ ହେତୁ "ଦୁଇ ଦେଶ ଭିତରେ ଚିର ଶତ୍ରୁତା ରହିବ, ଶାନ୍ତି ପରିବର୍ତ୍ତେ ସନ୍ଧି ହେବ ।" ଏହି ଘଟଣା ପରି ଆହୁରି ଅନେକ ବିଷୟରେ ମାର୍କସ୍‌ଙ୍କର ଭବିଷ୍ୟବାଣୀ ସତ୍ୟ ହୋଇଛି ।

ଜର୍ମାନୀରେ ଏବେ ବିସ୍‌ମାର୍କ ଦବଂଶକ୍ତିମାନ ସାମ୍ରାଜ୍ୟବାଦୀ ଚାନ୍‌ସେଲର ହେଲେ । ସେହି ବେଳ ପାଇଁ "ରକ୍ତ ଓ ତରବାରି" ନୀତି ସଫଳ ହେଲା ଏବଂ ଜର୍ମାନୀ ତାହା ଗ୍ରହଣ କଲା ଏବଂ ଉଦାରନୀତିକ ଭାବଧାରା ଚାଲିଲା ନାହିଁ । ବିସ୍‌ମାର୍କ ରାଜା ହାତରେ କ୍ଷମତା ଦେବାକୁ ଚାହୁଁଥିଲେ—ସେ ଗଣତନ୍ତ୍ରରେ ବିଶ୍ୱାସ କରୁ ନ ଥିଲେ । ଜର୍ମାନ ଶିଳ୍ପ ଓ ଶ୍ରମିକ ଶ୍ରେଣୀ ବୃଦ୍ଧି ହେବାରୁ ଏହି ଶ୍ରେଣୀ ଶକ୍ତି ଅର୍ଜନ କରି ଆମୂଳ ପରିବର୍ତ୍ତନ ଦାବୀ କରିବାରୁ ନୂତନ ସମସ୍ୟା ଉପୁଜିଲା । ଶ୍ରମିକମାନଙ୍କ ଅବସ୍ଥା ଉନ୍ନତ କରି ଏବଂ ସାମ୍ୟବାଦ ଦମନ କରି—ଏହି ଦୁଇ ଭାବରେ ବିସ୍‌ମାର୍କ ଏହି ସମସ୍ୟା ସମାଧାନ କରିବାର ଚେଷ୍ଟା କଲେ । ସେ ଶ୍ରମିକମାନଙ୍କୁ ନିଜ ଆଡ଼କୁ ଆଣିବା ଲାଗି ଚେଷ୍ଟା କଲେ ଅଥବା ସାମାଜିକ ଆଇନସବୁ କରି ଅନ୍ତତଃ ସେମାନଙ୍କୁ ଚରମପନ୍ଥୀ ହେବାରେ ବାଧା ଦେଲେ । ଏପରି ଆଇନ କରିବାରେ ଜର୍ମାନ ହିଁ ନେତୃତ୍ୱ ନେଲା ଏବଂ ଇଂଲଣ୍ଡରେ ଅନେକ ଶିଳ୍ପୋନ୍ନତି ଓ ଶ୍ରମିକ ଆନ୍ଦୋଳନ ହୋଇ ସୁଦ୍ଧା ସେପରି ବିଶେଷ କିଛି ଏ ଦିଗରେ ହେବା ପୂର୍ବରୁ ଜର୍ମାନୀରେ ବୃଦ୍ଧ ବୟସରେ ପେନ୍‌ସନ, ଇନ୍‌ସୁରେନ୍‌ସ ଓ ଶ୍ରମିକମାନଙ୍କ ପାଇଁ ଚିକିତ୍ସା

ବ୍ୟବସ୍ଥା ଓ ଶ୍ରମିକଙ୍କ ଅବସ୍ଥାରେ ଅନ୍ୟସବୁ ଉନ୍ନତି କରାଗଲା । ସେ ଏହି ନୀତିରେ କିଛି ସଫଳ ହେଲେ, କିନ୍ତୁ ଶ୍ରମିକ ଅନୁଷ୍ଠାନ ଗଢି ଉଠିଲା । ଖୁବ୍ ଦକ୍ଷ ନେତା ସେମାନଙ୍କର ଥିଲେ—ଫର୍ଡିନାଣ୍ଡ ଲସାଲେ ଜଣେ ବିଚକ୍ଷଣ ପୁରୁଷ ଏବଂ ତାଙ୍କୁ ୧୯ଶ ଶତାବ୍ଦୀର ସର୍ବୋତ୍କୃଷ୍ଟ ବକ୍ତା ବୋଲି କୁହାଯାଏ । ଗୋଟିଏ ଲଢ଼ାଇରେ ସେ ଖୁବ୍ ଯୁବା ବୟସରେ ମଲେ । ଉଇଲ୍‌ହେଲ୍ମ୍ ଲିବ୍‌ନେଖ୍‌ଟ ଜଣେ ପୁରୁଣା ସାହସୀ ଯୋଦ୍ଧା ଓ ବିଦ୍ରୋହୀ—ସେ ପ୍ରାୟ ଗୁଳିରେ ମରୁ ମରୁ ବଞ୍ଚିଗଲେ ଏବଂ ପଳାଇଯାଇ ଅନେକ ବର୍ଷ ବଞ୍ଚିଲେ । ତାଙ୍କ ପୁତ୍ର କାର୍ଲ ସ୍ୱାଧୀନତା ପାଇଁ ଲଢ଼ାଇ ଚଳାଇଥାନ୍ତି—୧୯୧୮ରେ ଜର୍ମାନ ପ୍ରଜାତନ୍ତ୍ର ସ୍ଥାପନର କେତେବର୍ଷ ପୂର୍ବରୁ ତାଙ୍କୁ ବି ହତ୍ୟା କରାଗଲା । କାର୍ଲ ମାର୍କସ୍‌ଙ୍କ ସମ୍ବନ୍ଧରେ ମୁଁ ଆଉ ଏକ ଚିଠିରେ ତତେ କହିବି । କିନ୍ତୁ ମାର୍କସ୍ ତାଙ୍କ ଜୀବନକାଳର ଅଧିକାଂଶ ସମୟ ନିର୍ବାସିତରୂପେ ଅନ୍ୟ ଦେଶରେ କାଟିଥିଲେ ।

ଶ୍ରମିକ ସଂଗଠନ ବଢ଼ିଲା ଏବଂ ୧୮୭୫ରେ ସମସ୍ତେ ମିଳି ଏକ ସୋସାଲିଷ୍ଟ ଡେମୋକ୍ରେଟିକ୍ ପାର୍ଟି ଗଠନ କଲେ । ସାମ୍ୟବାଦର ଅଭିବୃଦ୍ଧି ବିସ୍‌ମାର୍କ ସହ୍ୟ କରିପାରିଲେ ନାହିଁ । ସମ୍ରାଟଙ୍କୁ ହତ୍ୟା କରିବା ନିମନ୍ତେ ଉଦ୍ୟମ ହେଲା ଏବଂ ସୋସାଲିଷ୍ଟମାନଙ୍କ ଉପରେ ଏକ ଭୀଷଣ ଆକ୍ରମଣ ଚଳାଇବା ପାଇଁ ସେ ତାହାକୁ ଛଳନା ରୂପେ ପାଇଲେ । ୧୮୭୮ରେ ସମସ୍ତ ପ୍ରକାର ସାମ୍ୟବାଦୀ କାର୍ଯ୍ୟକ୍ରମ ନିଷେଧ କରି ସୋସାଲିଷ୍ଟ ବିରୋଧୀ ଆଇନସବୁ ପାସ୍ ହେଲା । ସୋସାଲିଷ୍ଟଙ୍କ ପାଇଁ ଏକପ୍ରକାର ସାମରିକ ଆଇନ ଜାରି ହେଲା ଏବଂ ଦେଶରୁ ହଜାର ହଜାର ଲୋକଙ୍କୁ ବିତାଡ଼ିତ କରାଗଲା କିମ୍ବା ବନ୍ଦୀ କରାଗଲା । ଏହି ବିତାଡ଼ିତଙ୍କ ଭିତରୁ ଅନେକେ ଆମେରିକା ଗ୍ଲିଗଲେ ଏବଂ ସେଠାରେ ସାମ୍ୟବାଦର ଅଗ୍ରଦୂତ ହେଲେ । ସୋସାଲିଷ୍ଟ ଡେମୋକ୍ରେଟିକ୍ ପାର୍ଟି ବଡ଼ ଗୁରୁତର ଆଘାତ ପାଇଲା, ତଥାପି ତାହା ବଞ୍ଚିଗଲା ଓ ପରେ ପୁନର୍ବାର ବଳ ପାଇ ବଢ଼ିଲା । ବିସ୍‌ମାର୍କଙ୍କ ଆତଙ୍କବାଦ ଏହାକୁ ମାରିପାରିଲା ନାହିଁ; ଏହାର ସଫଳତା ତାଙ୍କ ପ୍ରତି ଆହୁରି କ୍ଷତିକାରକ ହୋଇଉଠିଲା । ଏହା କ୍ଷମତାଶାଳୀ ହେବା ସଙ୍ଗେ ସଙ୍ଗେ ବହୁପରିମାଣରେ ସମ୍ପଦ ସହ ଏକ ବିଶାଳ ସଂଗଠନ ହୋଇଉଠିଲା ଏବଂ ହଜାର ହଜାର ବେତନଭୋଗୀ କର୍ମୀ ରହିଲେ । କୌଣସି ବ୍ୟକ୍ତି ବା ଅନୁଷ୍ଠାନ ଧନୀ ହେଲେ ଆଉ ବିପ୍ଳବୀ ହୋଇ ରହେନା । ଜର୍ମାନୀରେ ସୋସାଲିଷ୍ଟ ଡେମୋକ୍ରେଟିକ୍ ପାର୍ଟିର ଏହି ଦଶା ହେଲା ।

ବିସ୍‌ମାର୍କଙ୍କ କୂଟନୀତିର ନିପୁଣତା ଶେଷପର୍ଯ୍ୟନ୍ତ ରହିଥିଲା ଏବଂ ତାଙ୍କ ବେଳରେ ଆନ୍ତର୍ଜାତୀୟ ରାଜନୀତିରେ ସେ ଏକ ମହାନ୍ ଖେଳ ଖେଳିଲେ । ସେତେବେଳେ ଏପରି ରାଜନୀତିସବୁ ଯେପରି ଥିଲା, ଏବେ ବି ସେହିପରି ରହିଛି । ଏହା ହେଉଛି ଅତି ବିଚିତ୍ର ଓ ଜଟିଳ ଚକ୍ରାନ୍ତ, ପ୍ରତି-ଚକ୍ରାନ୍ତ, ଶଠତା ଓ ଆସ୍ଫାଳନର ଜାଲ୍ ଯାହା କି ଗୋପନ ଆବରଣର ପଛଆଡ଼େ ହୁଏ । ଦିନର ଆଲୁଅ ପଡ଼ିଲେ ତାହା ବେଶିଦିନ ରହିପାରେନା ।

ବିସ୍‌ମାର୍କ ଅଷ୍ଟ୍ରିଆ ଓ ଇଟାଲୀ ସହ ମିଶିତା କଲେ—ତାହାକୁ ତିଶକ୍ତି ମେଣ୍ଟ (Triple alliance) କହନ୍ତି; କାରଣ ସେ ଏବେ ଫ୍ରାନ୍‌ସ ପ୍ରତି ପ୍ରତିଶୋଧ ନେବା ଭୟ କରୁଥିଲେ । ତେଣୁ ପ୍ରତ୍ୟେକ ପକ୍ଷ ଅତ୍ୟନ୍ତ ସଶଙ୍କିତ ହୋଇ ପରସ୍ପର ବିରୁଦ୍ଧରେ ଚକ୍ରାନ୍ତ କରିବାକୁ ଲାଗିଲେ ।

୧୮୮୮ରେ ଜଣେ ଯୁବକ ସମ୍ରାଟ ଦ୍ୱିତୀୟ ଉଇଲ୍‌ହେଲମ୍ ରୂପେ ଜର୍ମାନୀର କାଇଜର ହେଲେ । ସେ ଖୁବ୍ ବଳବାନ ଲୋକ ବୋଲି ନିଜକୁ ମଣିଲେ ଏବଂ ବିସ୍‌ମାର୍କଙ୍କ ସହ ବିବାଦ ଲଗାଇଲେ । ତାଙ୍କର ବୃଦ୍ଧ ବୟସରେ ଓ ତାଙ୍କୁ ଖୁବ୍ ବିରକ୍ତ କରି ଏହି ଲୌହ ଚାନ୍‌ସେଲରଙ୍କୁ ତାଙ୍କ ଅଫିସରୁ ଡିସ୍‌ମିସ୍ କରିଦିଆଗଲା । ତାଙ୍କୁ ଟିକିଏ ସନ୍ତୁଷ୍ଟ କରିବା ନିମନ୍ତେ ଗୋଟିଏ ରାଜା ଉପାଧି ଦିଆଗଲା, କିନ୍ତୁ ସେ ବିରକ୍ତ ହୋଇ ନିଜ ଇଷ୍ଟେଟ୍‌ରେ ଯାଇ ଅବସର ନେଲେ ଏବଂ ରାଜାମାନଙ୍କ ପ୍ରତି ତାଙ୍କର ମାୟା କଟିଗଲା । ଜଣେ ବନ୍ଧୁଙ୍କୁ ସେ କହୁଥିଲେ, "ହିଜକାସ୍ତ ଭାବପ୍ରବଣତା ପ୍ରତି ବହୁ ଶ୍ରଦ୍ଧା ଓ ରାଜାମାନଙ୍କ ପ୍ରତି ଭକ୍ତି ଦେଖାଇ ମୁଁ ଅଫିସ ଗ୍ରହଣ କଲି; କିନ୍ତୁ ଦୁଃଖର ସହ ଦେଖିଲି ଯେ ଦିନକୁ ଦିନ ମୋର ଏହି ସଞ୍ଚିତ ଶ୍ରଦ୍ଧା କ୍ଷୟ ହୋଇଗଲା; ମୁଁ ତିନୋଟି ରାଜାଙ୍କର ନଗ୍ନରୂପ ଦେଖିଛି ଏବଂ ସେ ଦୃଶ୍ୟ ଆମୋଦଦାୟକ ନୁହେଁ ।"

ଏହି ବିପଣ୍ଡ ବୃଦ୍ଧ ଆଉ ଅଧିକା କେତେ ବର୍ଷ ବଞ୍ଚିଲେ ଏବଂ ୮୩ ବର୍ଷ ବୟସରେ ୧୮୯୮ରେ ମଲେ । କାଇଜର ତାଙ୍କୁ ଡିସ୍‌ମିସ୍ କଲା ପରେ ଏବଂ ତାଙ୍କ ମୃତ୍ୟୁ ପରେ ସୁଦ୍ଧା ତାଙ୍କର ଛାୟା ଜର୍ମାନୀ ଉପରେ ପଡୁଥିଲା ଏବଂ ତାଙ୍କର ପ୍ରେରଣା ଉତ୍ତରାଧିକାରୀମାନଙ୍କୁ ଚଳାଇଥିଲା । କିନ୍ତୁ ତାଙ୍କ ପରେ ଯେଉଁମାନେ ଆସିଲେ, ସେମାନଙ୍କ ପ୍ରତିଷ୍ଠା କମ୍ ଥିଲା ।

## ୧୨୯ : କେତେକ ପ୍ରସିଦ୍ଧ ଲେଖକ

ଫେବୃୟାରୀ ପହିଲା, ୧୯୩୩

କାଲି ଜର୍ମାନୀର ଅଭ୍ୟୁଦୟ ବିଷୟରେ ତୋତେ ଲେଖିଲାବେଳେ ମୋତେ ମାଲୁମ୍ ହେଲା ଯେ ୧୯ଶ ଶତାବ୍ଦୀର ପ୍ରଥମ ଭାଗର ସବୁଠାରୁ ବଡ଼ ଜର୍ମାନଙ୍କ ସମ୍ବନ୍ଧରେ ମୁଁ ତତେ କିଛି କହି ନାହିଁ । ଏ ହେଉଛନ୍ତି ପ୍ରସିଦ୍ଧ ଲେଖକ ଗେଟେ—ତାଙ୍କର ମୃତ୍ୟୁର

ଶତବାର୍ଷିକୀ କେତେକ ମାସ ପୂର୍ବେ ସମଗ୍ର ଜର୍ମାନୀରେ ପାଳିତ ହୋଇଥିଲା । ତା'ପରେ ମୁଁ ଭାବିଲି—ଏ ସମୟରେ ଇଉରୋପର ପ୍ରସିଦ୍ଧ ଲେଖକମାନଙ୍କ ସମ୍ବନ୍ଧରେ ମୁଁ ତୋତେ କିଛି କହିବି ବୋଲି । କିନ୍ତୁ ମୋ ପକ୍ଷରେ ତାହା ଏକ ବିପଜ୍ଜନକ ବିଷୟ । କାରଣ ମୋର କେବଳ ଅଜ୍ଞତା ହିଁ ଏଥିରେ ମୁଁ ଦେଖାଇବି । ଜଣାଶୁଣା କେତେକ ନାମ ତାଲିକା ଦେବାଟା କେବଳ ବୋକାମୀ ହେବ ଏବଂ ଅଧିକା କିଛି କହିବା ବି କଷ୍ଟକର । ଇଂରାଜୀ ସାହିତ୍ୟ ସମ୍ବନ୍ଧରେ ମୁଁ ଅତି ଅଳ୍ପ ଜାଣେ ଏବଂ ଅନ୍ୟ ଇଉରୋପୀୟ ଭାଷା ସମ୍ବନ୍ଧରେ ମୋର ଜ୍ଞାନ କେବଳ ଅଳ୍ପ କେତେକ ଅନୁବାଦରେ ସୀମାବଦ୍ଧ । ତାହାହେଲେ ମୁଁ କଣ କରିବି ?

ଏ ବିଷୟରେ କିଛି କହିବାର ଖିଆଲ ମୋ ମନରେ ପଶିଛି ଏବଂ ଏଥିରୁ ମୁଁ ନିଜକୁ ମୁକୁଳାଇ ପାରୁ ନାହିଁ । ମୁଁ ମନେକରୁଛି ଯେ ଏହି ମନମୁଗ୍ଧକର କ୍ଷେତ୍ର ପାଇଁ ପଡ଼ିଥିବା ରାସ୍ତାରେ ମୁଁ ବେଶିଦୂର ତୋ ସହିତ ନ ଯାଇପାରିଲେ ସୁଦ୍ଧା ଅନ୍ତତଃ ତୋତେ ପଥ ନିର୍ଦ୍ଦେଶ କରିଦେବି । କାରଣ ଅସଂଖ୍ୟ ଜନତାର ଉପରଠାଉରିଆ କାର୍ଯ୍ୟକଳାପ ଅପେକ୍ଷା କଳା ଓ ସାହିତ୍ୟରେ ଜାତିର ଅନ୍ତରା ଭିତରକୁ ଅଧିକ ପ୍ରବେଶ କରାଯାଇପାରେ । ଏଗୁଡ଼ିକ ଜରିଆରେ ଆମେ ନିଶ୍ଚଳ ଓ ନିବିଡ଼ ଚିନ୍ତା-ରାଜ୍ୟରେ ପହଞ୍ଚିପାରୁ—ସେ କାଳର ବିଦ୍ୱେଷ ଓ ପ୍ରେମ ଆଦର ଆଉ ଏଥିରେ ବାକି ନ ଥାଏ; କିନ୍ତୁ ଆଜି କବି ଓ ଶିଳ୍ପୀମାନଙ୍କୁ କାଲିର ଭବିଷ୍ୟଦ୍‌ବକ୍ତା ରୂପେ ପ୍ରାପ୍ୟ କେହି ମଣନ୍ତି ନାହିଁ ଏବଂ ସେମାନେ ସେପରି କିଛି ସମ୍ମାନ ପାଆନ୍ତି ନାହିଁ । ଯାହା କଦ୍ୱଚିତ୍ ସମ୍ମାନ ମିଳେ, ତାହା ତାଙ୍କର ମୃତ୍ୟୁ ପରେ ।

ମୁଁ ତତେ କେତୋଟି ନାମ ତାଲିକା ଦେବି—କେତୋଟି ନାମ ତୁ ବି ଆଗରୁ ଭଲରୂପେ ଜାଣୁ—ମୁଁ କେବଳ ଊନବିଂଶ ଶତାବ୍ଦୀର ପ୍ରଥମ ଭାଗ କଥା କହିଯିବି ତୋର ଜାଣିବାର ଇଚ୍ଛା ଜାଗ୍ରତ କରାଇବା ନିମନ୍ତେ । ତୋର ସ୍ମରଣ ରଖିବା ଉଚିତ ଯେ ୧୯ଶ ଶତାବ୍ଦୀର ଇଉରୋପୀୟ ଦେଶରେ ସୁନ୍ଦର ଲେଖାମାନଙ୍କର ଅମୂଲ୍ୟ ଭଣ୍ଡାର ରହିଛି ।

ଗେଟେ ପ୍ରକୃତରେ ୧୮ଶ ଶତାବ୍ଦୀର ଲୋକ; କାରଣ ସେ ୧୭୪୯ରେ ଜନ୍ମ ହୋଇଥିଲେ । କିନ୍ତୁ ସେ ଖୁବ୍ ପାଚିଲା ବୁଢ଼ା ହୋଇ ୮୩ବର୍ଷ ପର୍ଯ୍ୟନ୍ତ ବଞ୍ଚିଥିଲେ ଏବଂ ପରବର୍ତ୍ତୀ ଶତାବ୍ଦୀର ଏକତୃତୀୟାଂଶ ଭୋଗ କରିଥିଲେ । ଇଉରୋପୀୟ ଇତିହାସର ଏକ ଝଞ୍ଜାପୂର୍ଣ୍ଣ କାଳରେ ସେ ବାସ କରିଥିଲେ ଏବଂ ନିଜ ଦେଶକୁ ନେପୋଲିୟନଙ୍କ ସୈନ୍ୟ ଦଖଲ କରିନେବା ସେ ନିଜ ଆଖିରେ ଦେଖିଥିଲେ । ନିଜ ଜୀବନରେ ସେ ବହୁତ ଦୁଃଖ ସହିଥିଲେ; କିନ୍ତୁ କ୍ରମେ ସେ ଜୀବନରେ ଦୁଃଖଦୁର୍ଦ୍ଦଶା ଉପରେ ଆଭ୍ୟନ୍ତରୀଣ କର୍ତ୍ତୃତ୍ୱ କରି-ପାରିଲେ ଏବଂ ଏକପ୍ରକାର ବିଚ୍ଛିନ୍ନ ଓ ନିସ୍ପୃହ ଭାବ ପ୍ରାପ୍ତ ହେଲେ—ଏଥିରେ ସେ ଶାନ୍ତ

ଲଭିଲେ । ତାଙ୍କର ୬୦ ବର୍ଷ ବୟସବେଳେ ନେପୋଲିୟନ ତାଙ୍କୁ ପ୍ରଥମେ ସାକ୍ଷାତ୍ କରିଥିଲେ । ସେ ତାଙ୍କ ଦୁଆର ମୁହଁରେ ଛିଡ଼ା ହୋଇଥିଲେ; ତାଙ୍କର ମୁଖ ଓ ଶରୀରରେ ଗୋଟାଏ ଅବିଚଳିତ ଦୃଷ୍ଟି ଓ ମର୍ଯ୍ୟାଦାପୂର୍ଣ୍ଣ ଭାବ ପ୍ରକଟିତ ହେଉଥିଲା—ନେପୋଲିୟନ ତାଙ୍କୁ ଦେଖି ଚିତ୍କାର କଲେ ‘voila unhomme’ ଅର୍ଥାତ୍ ‘ଏ ହେଉଛନ୍ତି ଅସଲ ଲୋକ’ । ସେ ଅନେକ ବିଷୟରେ ହାତ ଦେଇଥିଲେ ଏବଂ ଯାହା କରିଥିଲେ ସେଥିରେ ଯଶ ଅର୍ଜନ କରିଥିଲେ । ସେ ଜଣେ ଦାର୍ଶନିକ, କବି ଓ ନାଟ୍ୟକାର ଥିଲେ, ଜଣେ ବୈଜ୍ଞାନିକ ଭାବରେ ବିଭିନ୍ନ ବିଜ୍ଞାନରେ ତାଙ୍କର ଆଗ୍ରହ ଥିଲା ଏବଂ ଏସବୁ ଛଡ଼ା ତାଙ୍କର ପ୍ରକୃତ କାର୍ଯ୍ୟ ଥିଲା ଏକ କ୍ଷୁଦ୍ର ଜର୍ମାନ ରାଜ-ଦରବାରରେ ମନ୍ତ୍ରୀ ରୂପରେ । ସେ ଜଣେ ଲେଖକଭାବେ ଆମକୁ ଭଲରୂପେ ଜଣା ଏବଂ ତାଙ୍କର ପ୍ରସିଦ୍ଧ ପୁସ୍ତକ ହେଉଛି ‘ଫଷ୍ଟ୍’ । ତାଙ୍କର ଦୀର୍ଘ ଜୀବନ-କାଳରେ ତାଙ୍କର ଯଶ ବ୍ୟାପିଥିଲା ଏବଂ ପାଶ୍ଚାତ୍ୟ ଜଗତରେ ନିଜ ଦେଶ ଲୋକେ ତାଙ୍କୁ ଏକ ଅର୍ଦ୍ଧଦେବତା ପରି ମନେ କରୁଥିଲେ ।

ଗେଟେଙ୍କ ସମସାମୟିକ, ତାଙ୍କଠାରୁ ବୟସରେ ଟିକିଏ କ୍ଷୁଦ୍ର ଥିଲେ ସିଲର୍—ସେ ମଧ୍ୟ ଅନ୍ୟ ଜଣେ ଖ୍ୟାତନାମା କବି । ଆହୁରି ବୟସରେ କ୍ଷୁଦ୍ର ଥିଲେ ହେନରିଚ୍ ହେଇନ୍—ସେ ଜର୍ମାନ ଭାଷାରେ ଜଣେ ଆମୋଦଦାୟକ ଓ ମହାନ୍ କବି । ସେ ଅତି ସୁନ୍ଦର ଖଣ୍ଡକାବ୍ୟସବୁ ଲେଖିଛନ୍ତି । ଗେଟେ, ସିଲର ଓ ହେଇନ୍—ଏ ତିନିହେଁ ପୁରାତନ ଗ୍ରୀସର ପ୍ରସିଦ୍ଧ ସଂସ୍କୃତି ପଛେ ଆସିଥିଲେ ।

ଦୀର୍ଘ କାଳ ହେଲା ଜର୍ମାନୀ ଦାର୍ଶନିକମାନଙ୍କର ଭୂମିରୂପେ ଗଣ୍ୟ ହୋଇଆସିଛି ଏବଂ ମୁଁ ତତେ ଗୋଟିଏ ଦୁଇଟି ନାମ ଲେଖି ଦେଇପାରେ—ଅବଶ୍ୟ ସେଥିରେ ତୋର ହୁଏତ ଅଧିକ ଆଗ୍ରହ ନ ହୋଇପାରେ । କେବଳ ଯେଉଁମାନଙ୍କର ସେ ବିଷୟ ପ୍ରତି ପ୍ରବଳ ଇଚ୍ଛା ରହିଛି ସେମାନେ ତାଙ୍କ ବହି ପଢ଼ିପାରନ୍ତି; କାରଣ ସେଗୁଡ଼ିକ ବଡ଼ ଦୁର୍ବୋଧ ଓ କଷ୍ଟକର । ଯାହାହେଉ ଏମାନେ ଓ ଅନ୍ୟ ଦାର୍ଶନିକମାନେ ବଡ଼ ଆଗ୍ରହପ୍ରଦ ଓ ତାଙ୍କ ଲେଖାରୁ ବହୁତ ଶିଖିବାର ଅଛି; କାରଣ ସେମାନେ ଭାବନା ଆଲୋକ ଜଳାଇ ରଖିଥିଲେ ଏବଂ ତାଙ୍କ ଜରିଆରେ ହିଁ ଭାବ-ରାଜ୍ୟର ଉନ୍ନତ ଲୋକ ଦେଖିପାରେ । ୧୮ଶ ଶତାବ୍ଦୀରେ ଜଣେ ବଡ଼ ଜର୍ମାନ ଦାର୍ଶନିକ ଥିଲେ ଇମାନୁଏଲ୍ କାଣ୍ଟ ଏବଂ ସେ ଏ ଶତାବ୍ଦୀ ଶେଷ ପର୍ଯ୍ୟନ୍ତ ଥିଲେ—ତାଙ୍କ ବୟସ ଥିଲା ୮୦ । ଦର୍ଶନ-ରାଜ୍ୟରେ ଆଉ ଜଣେ ନାମଜାଦା ଲୋକ ହେଉଛନ୍ତି ହେଗେଲ । ସେ କାଣ୍ଟଙ୍କୁ ଅନୁସରଣ କରିଥିଲେ ଏବଂ କମ୍ୟୁନିଜ୍‌ମ୍‌ର ପିତା କାର୍ଲ୍ ମାର୍କସ୍ ତାଙ୍କ ଲେଖାରେ ଖୁବ୍ ପ୍ରଭାବିତ ହୋଇଥିଲେ ବୋଲି ଧରାଯାଏ । ଦାର୍ଶନିକଙ୍କ ସମ୍ବନ୍ଧରେ ଏତିକି ।

୧୯ଶ ଶତାବ୍ଦୀର ପ୍ରଥମ ଭାଗରେ ବହୁତ ସଂଖ୍ୟକ ଖ୍ୟାତନାମା କବି ବିଶେଷତଃ ଇଂଲଣ୍ଡରେ ଜାତ ହୋଇଥିଲେ । ତୁମର ଭଲରୂପେ ଜଣାଶୁଣା ଜାତୀୟ କବି ସୁବ୍ରକନ

ମଧ୍ୟ ସେତେବେଳେ ଥିଲେ । ଗୋଟିଏ ଦ୍ୱନ୍ଦ୍ୱଯୁଦ୍ଧରେ ସେ ଅଳ୍ପ ବୟସରେ ମରିଗଲେ । ଫ୍ରାନ୍ସର ମଧ୍ୟ କେତେକ କବି ଥିଲେ; କିନ୍ତୁ ମୁଁ କେବଳ ଦୁଇଟି ଫରାସୀ କବିଙ୍କ ନାମ ଉଲ୍ଲେଖ କରିବି । ଜଣେ ହେଉଛନ୍ତି ଭିକ୍ଟର ହ୍ୟୁଗୋ —ସେ ୧୮୦୨ରେ ଜନ୍ମ ହୋଇଥିଲେ ଏବଂ ଗେଟେଙ୍କ ପରି ୮୩ ବର୍ଷ ବଞ୍ଚିଥିଲେ ଏବଂ ଗେଟେଙ୍କ ପରି ସେ ମଧ୍ୟ ନିଜ ଦେଶର ସାହିତ୍ୟ-କ୍ଷେତ୍ରରେ ଅର୍ଦ୍ଧ-ଦେବତା ରୂପେ ପୂଜା ପାଇଥିଲେ । ଲେଖକ ଓ ରାଜନୀତିକ ଭାବରେ ତାଙ୍କର ବିବିଧ କାର୍ଯ୍ୟର ଧାରା ଥିଲା । ଜଣେ ଉଗ୍ର ରାଜତନ୍ତ୍ରବାଦୀ ଏବଂ ଏକଚ୍ଛତ୍ର ଶାସନର ବିଶ୍ୱାସୀରୂପେ ସେ ଜୀବନ ଆରମ୍ଭ କଲେ । କ୍ରମେ ତାଙ୍କର ପଦେ ପଦେ ପରିବର୍ତ୍ତନ ହେଲା—ଶେଷକୁ ୧୮୪୮ରେ ସେ ଜଣେ ପ୍ରଜାତନ୍ତ୍ରବାଦୀ ହେଲେ । ଲୁଇ ନେପୋଲିୟନ କ୍ଷଣକାଳସ୍ଥାୟୀ ଦ୍ୱିତୀୟ ପ୍ରଜାତନ୍ତ୍ରର ପ୍ରେସିଡେଣ୍ଟ ହେଲାବେଳେ ତାଙ୍କ ପ୍ରଜାତନ୍ତ୍ର ମତ ସକାଶେ ହ୍ୟୁଗୋଙ୍କୁ ନିର୍ବାସିତ କରି ଦେଇଥିଲେ । ୧୮୭୧ରେ ଭିକ୍ଟର ହ୍ୟୁଗୋ ପାରିସ କମ୍ୟୁନ୍‌ର ସପକ୍ଷବାଦୀ ହେଲେ । ରକ୍ଷଣଶୀଳତାର ଚରମ ସୀମାରୁ ସେ ଧୀରେ ଧୀରେ ଅଥଚ ନିଶ୍ଚିତ ଭାବରେ ଉଗ୍ର ସାମ୍ୟବାଦୀ ମତ ଆଡ଼କୁ ଗତି କଲେ । ଅଧିକାଂଶ ଲୋକ ବୃଦ୍ଧ ହେଲାବେଳକୁ ରକ୍ଷଣଶୀଳ ଓ ପ୍ରତିଗାମୀ ହୋଇଯାଆନ୍ତି । ହ୍ୟୁଗୋ ଠିକ୍ ବିପରୀତ । କିନ୍ତୁ ଏଠି ଆମର ତାଙ୍କ ସହିତ ଜଣେ ଲେଖକ ଭାବରେ ସମ୍ପର୍କ । ସେ ଜଣେ ବଡ଼ କବି, ଔପନ୍ୟାସିକ ଓ ନାଟ୍ୟକାର ଥିଲେ ।

ଦ୍ୱିତୀୟ ଫରାସୀ କବିଙ୍କ ନାମ ହେଉଚି ହୋନରି ଡ଼ି ବାଲ୍‌ଜାକ୍ । ସେ ଭିକ୍ଟର ହ୍ୟୁଗୋଙ୍କ ସମସାମୟିକ; କିନ୍ତୁ ତାଙ୍କଠୁଁ ସମ୍ପୂର୍ଣ୍ଣ ପୃଥକ୍ ଧରଣର । ସେ ଜଣେ ଅଦ୍ଭୁତ ଶକ୍ତିଶାଳୀ ଲେଖକ ଓ ଔପନ୍ୟାସିକ ଥିଲେ ଏବଂ ଅତି ଅଳ୍ପ ଦିନ ଭିତରେ ବହୁସଂଖ୍ୟକ ଉପନ୍ୟାସ ଲେଖି ଯାଇଛନ୍ତି । ତାଙ୍କର କାହାଣୀଗୁଡ଼ିକର ପରସ୍ପର ସହିତ ସମ୍ପର୍କ ରହିଛି, ଏକା ଚରିତ୍ର ସେଗୁଡ଼ିକରେ ଦେଖାଯାଏ । ତାଙ୍କର ଉଦ୍ଦେଶ୍ୟ ଥିଲା, ତାଙ୍କ ଉପନ୍ୟାସ ଗୁଡ଼ିକରେ ତାଙ୍କ ଅମଳର ସମଗ୍ର ଫରାସୀ-ଜୀବନ ପ୍ରତିଫଳିତ କରିବା ଏବଂ ଏହି ସମସ୍ତ ଲେଖାକୁ ସେ "ଲାକମେଡ଼ିଆ ହିଉମେନ" ଅର୍ଥାତ୍ 'ମାନବତାର ପ୍ରହସନ' ବୋଲି ନାମ ଦେଇଥିଲେ । ଏହା ଅତି ଉଚ୍ଚାକାଙ୍‌କ୍ଷା ଏବଂ ଯଦିଓ ସେ କଷ୍ଟ ସହି ଦୀର୍ଘକାଳ ପର୍ଯ୍ୟନ୍ତ ବଞ୍ଚିଥିଲେ, ତଥାପି ଯେଉଁ ବିରାଟ କାର୍ଯ୍ୟରେ ସେ ନିଜକୁ ନିଯୁକ୍ତ କରିଥିଲେ, ତାହା ପୂର୍ଣ୍ଣ କରିପାରିଲେ ନାହିଁ ।

୧୯ଶ ଶତାବ୍ଦୀର ପ୍ରଥମ ଭାଗରେ ଇଂଲଣ୍ଡରେ ଥିବା ତିନି ଜଣ ବିଚକ୍ଷଣ କବିଙ୍କ ନାମ ଉଲ୍ଲେଖଯୋଗ୍ୟ । ସେମାନେ ସମସାମୟିକ ଏବଂ ତିନି ବର୍ଷ ଭିତରେ ସେମାନେ ଅଳ୍ପ ବୟସରେ ମରିଯାଇଥିଲେ । ଏହି ତିନି ଜଣ ହେଉଛନ୍ତି କୀଟସ୍, ସେଲି ଓ ବାଇରନ୍ । କୀଟସ୍‌ଙ୍କୁ ଦାରିଦ୍ର୍ୟ ଓ ନୈରାଶ୍ୟ ସହିତ କଠିନ ସଂଗ୍ରାମ କରିବାକୁ ପଡ଼ିଥିଲା ଏବଂ ୧୮୨୧ରେ ୨୬ ବର୍ଷ ବୟସରେ ରୋମରେ ମଲାବେଳକୁ ତାଙ୍କୁ କେହି ବିଶେଷ ଜାଣି ନ ଥିଲେ । ତଥାପି ସେ କେତେକ ଅତି ସୁନ୍ଦର କାବ୍ୟ ଲେଖିଛନ୍ତି । କୀଟସ୍ ମଧ୍ୟବିତ୍ତ ଶ୍ରେଣୀର ଲୋକ୍

ଥିଲେ ଏବଂ ତାଙ୍କ ପଥରେ ଧନର ଅଭାବ ପ୍ରଧାନ ବାଧା ଯେତେବେଳେ ହେଲା, ସେତେ-ବେଳେ ଗରିବ ଲୋକଙ୍କ ପକ୍ଷରେ କବି ଓ ଲେଖକ ହେବା କେତେ କଷ୍ଟକର ନ ହୋଇ-ଥିବ । ବାସ୍ତବିକ କାମ୍ବ୍ରିଜର ବର୍ତ୍ତମାନ ଇଂରେଜୀ ସାହିତ୍ୟ ଅଧ୍ୟାପକ ଏ ସମ୍ପର୍କରେ ଉପଯୁକ୍ତ ମନ୍ତବ୍ୟ ଦେଇଛନ୍ତି ।

ସେ କହନ୍ତି, "ଏକଥା ନିଶ୍ଚିତ ଯେ ଆମ ଶାସନର କୌଣସି ଦୋଷ ହେତୁ ଆଜି-କାଲି ଗରିବ କବିମାନଙ୍କର ଗୋଟିଏ କୁକୁର ପରି ବି ସୁବିଧା ସୁଯୋଗ ନାହିଁ କିମ୍ବା ଦୁଇ ଶହ ବର୍ଷ ପୂର୍ବେ ନ ଥିଲା । ମୁଁ ଦଶ ବର୍ଷର ଅଧିକାଂଶ ସମୟ ୩୨୦ଟି ପ୍ରାଥମିକ ବିଦ୍ୟାଳୟ ଲକ୍ଷ୍ୟ କରିଛି ଏବଂ ମୋର ବିଶ୍ୱାସ ଯେ ଆମେ ଗଣତନ୍ତ୍ର ସମ୍ବନ୍ଧରେ ନାନା ଅନର୍ଥକ କଥା କହିପାରୁ; କିନ୍ତୁ ପ୍ରକୃତରେ ଯେଉଁ ବୌଦ୍ଧିକ ସ୍ୱତନ୍ତ୍ରତା ପ୍ରାପ୍ତ ହେଲେ ବଡ଼ ବଡ଼ ଲେଖା-ମାନ ବାହାରେ, ସେଥିଲାଗି ଏଥେନିଅନ୍ ଦାସମାନଙ୍କର ଯାହା ସ୍ୱାଧୀନତା ଥିଲା ଆଜି ଇଂଲଣ୍ଡର ଜଣେ ଦରିଦ୍ର ସନ୍ତାନ ତାଠାରୁ କିଛି ଅଧିକା ଆଶା କରିପାରେନା ।"

ମୁଁ ଏହା ଉଦ୍ଧାର କରିବାର ଉଦ୍ଦେଶ୍ୟ ହେଉଛି, ଆମେ ଭାବିନେଉ ଯେ କବିତା, ସୁନ୍ଦର ଲେଖା, ସଂସ୍କୃତି—ଏସବୁ ସାଧାରଣତଃ ସଙ୍ଗତିସମ୍ପନ୍ନ ଶ୍ରେଣୀର ଏକଚାଟିଆ ଅଧିକାର । ଏକ ଗରିବ କୁଡ଼ିଆରେ କବିତା ଓ ସଂସ୍କୃତିର ସ୍ଥାନ ନାହିଁ, ଖାଲି ପେଟ ପାଇଁ ଏହା ନୁହେଁ । ତେଣୁ ଆମର ଆଜିକାଲିକା ସଂସ୍କୃତି ଏହି ସଙ୍ଗତିସମ୍ପନ୍ନ ବୁର୍ଜୋୟା ମନୋଭାବର ପ୍ରତିବିମ୍ବ ମାତ୍ର । ଯେତେବେଳେ ଶ୍ରମିକ ଗୋଟିଏ ପୃଥକ୍ ସାମାଜିକ ବ୍ୟବସ୍ଥାର ପରିଚାଳନା ହାତକୁ ନେବ ଏବଂ ସଂସ୍କୃତି ଆଦି ପାଇଁ ସୁଯୋଗ ଓ ଅବକାଶ ପାଇବ, ସେତେବେଳେ ଏହାର ବହୁତ ପରିବର୍ତ୍ତନ ହୋଇପାରେ, ଆଜି ସୋଭିଏଟ୍ ରୁଷରେ ହେନ୍ତି ପ୍ରକାର ପରିବର୍ତ୍ତନ ସମ୍ବନ୍ଧେ ଆଗ୍ରହର ସହିତ ଦେଖୁଛନ୍ତି ।

ଏଥିରୁ ପରିଷ୍କାର ହେଉଚି ଯେ ଗତ କେତେ ପୁରୁଷ ହେଲା ଭାରତରେ ସଂସ୍କୃତି ଦିଗରେ ଆମର ଯେ ବହୁ ପରିମାଣରେ ଦାରିଦ୍ର୍ୟ ଦେଖାଯାଉଛି, ତାହା ଆମ ଲୋକଙ୍କ ଅଭାବ ଦାରିଦ୍ର୍ୟ ଯୋଗୁଁ । ଯେଉଁ ଲୋକଙ୍କର ଖାଇବାକୁ କିଛି ନାହିଁ, ତାଙ୍କୁ ସଂସ୍କୃତି କଥା କହିବା ଏକ ଅପମାନ ଭଳି । ଏହି ଦାରିଦ୍ର୍ୟ-ଦୁଃଖ ମଧ୍ୟ ଆମଠାରୁ ଅପେକ୍ଷାକୃତ ସଙ୍ଗତି-ସମ୍ପନ୍ନ ଲୋକଙ୍କୁ ସ୍ପର୍ଶ କରିଛି ଏବଂ ବଡ଼ ଦୁଃଖର କଥା ଯେ ଭାରତର ଏହି ଶ୍ରେଣୀ ବି ଆଜି ଅତ୍ୟନ୍ତ ସଂସ୍କୃତିହୀନ ଅବସ୍ଥାରେ ଅଛନ୍ତି ! ବିଦେଶୀ ଶାସନ ଓ ସାମାଜିକ ଅଧଃପତନ ହେତୁ କେତେ ଦୋଷ ଆମ ସମାଜରେ ନ ରହିଛି ! କିନ୍ତୁ ଏହି ସାଧାରଣ ଦାରିଦ୍ର୍ୟ ଓ ନୀରସତା ସତ୍ତ୍ୱେ ଭାରତରେ ଗାନ୍ଧୀ ଓ ରବୀନ୍ଦ୍ରନାଥ ଠାକୁରଙ୍କ ପରି ଅଦ୍ଭୁତ ସଂସ୍କୃତିସମ୍ପନ୍ନ ଲୋକେ ଜାତହୋଇଛନ୍ତି ।

ମୁଁ ମୋ ବିଷୟରୁ ଖସିଆସିଲି । ସେଲୀ ଜଣେ ଅତ୍ୟନ୍ତ ପ୍ରିୟ ବ୍ୟକ୍ତି ଥିଲେ; ତାଙ୍କ ଯୁବାବେଳୁ ତାଙ୍କ ଭିତରେ ତେଜ ଥିଲା ଏବଂ ପ୍ରତ୍ୟେକ କଥାରେ ସେ ସ୍ୱାଧୀନତା ଦାବୀ

କରୁଥିଲେ । ଅକ୍ସ୍‌ଫୋର୍ଡ କଲେଜରେ 'ନାସ୍ତିକବାଦର ଆବଶ୍ୟକତା' ବୋଲି ଏକ ପ୍ରବନ୍ଧ ଲେଖିବାରୁ ସେ ବିତାଡ଼ିତ ହେଲେ । ସେ [ଏବଂ କୀଟସ୍ ମଧ୍ୟ] କବିମାନେ ଯେପରି କଟାନ୍ତି, ତାଙ୍କର ଅଳ୍ପକ୍ଷଣସ୍ଥାୟୀ ଜୀବନ ନିଜର କଳ୍ପନା ଓ ଅବାସ୍ତବତାରେ କଟାଇଥିଲେ ସାଂସାରିକ ଅସୁବିଧା ପ୍ରତି ଦୃଷ୍ଟି ନ ଦେଇ । କୀଟସ୍‌ଙ୍କ ମୃତ୍ୟୁର ଏକ ବର୍ଷ ପରେ ଇଟାଲି ଉପକୂଳରେ ସେ ବୁଡ଼ି ମଲେ । ତାଙ୍କର ପ୍ରସିଦ୍ଧ କାବ୍ୟଗୁଡ଼ିକ ସମ୍ବନ୍ଧରେ ମୋର କହିବା ଦରକାର ନାହିଁ; ତୁ ଅନ୍ଲେଶରେ ତାହା ପାଇ ପଢ଼ିପାରିବୁ । କିନ୍ତୁ ତାଙ୍କର ଗୋଟିଏ ଶ୍ରେଷ୍ଠ କବିତା ମୁଁ ଏଠି ଦେବି । ଅବଶ୍ୟ ଏହା କୌଣସି ଦିଗରୁ ତାଙ୍କର ସର୍ବୋତ୍କୃଷ୍ଟ କବିତା ନୁହେଁ, କିନ୍ତୁ ତାହା ଆମର ଆଧୁନିକ ସଭ୍ୟତାରେ ଗରିବ ଶ୍ରମିକର ଶୋଚନୀୟ ଦଶା ପ୍ରକଟିତ କରିଛି । ପୁରାତନ ଦାସମାନଙ୍କ ପରି ସେ ଅତି ଖରାପ ଅବସ୍ଥାରେ ଅଛି । ଏହି କବିତା ୧୦୦ ବର୍ଷରୁ ଅଧିକ ଦିନ ତଳେ ଲେଖା ହୋଇଥିଲା; ତଥାପି ଆମର ଆଜି-କାଲିକା ଅବସ୍ଥା ପ୍ରତି ଏହା ପ୍ରଯୁଜ୍ୟ । ଏହାକୁ 'ଅରାଜକତାର ମୁଖା' (The Mask of Anarchy) ବୋଲି କହନ୍ତି ।

"କାହାକୁ କହୁ ତୁ ମୁକ୍ତ—ଦାସତାରେ ମୁକ୍ତ ନେଉ ଗଣି
ଦାସତାର ପ୍ରତ୍ୟେକ ଅକ୍ଷର ତୋ ପ୍ରାଣର କରେ ପ୍ରତିଧ୍ୱନି
ଶ୍ରମ କର—ଚମ ତଳେ ପ୍ରାଣ ତୋର ରଖିବୁ ବଞ୍ଚାଇ
ଉତ୍ପୀଡ଼କ ହାତରେ ଆଦରେ ସେ ଜୀବନ ଦେବାକୁ ବଢ଼ାଇ
ତାର ଲାଗି ତୋର ସୃଷ୍ଟି—ହଳ—ତନ୍ତ—ଖଡ଼ଗ—କୋଦାଳ,
ତାର ସେବା—ଆତ୍ମରକ୍ଷା ପାଇଁ ନିଜ ପ୍ରାଣ କରିବୁ ବିକଳ ।

ତୋ ଛୁଆ ଶୁଖିଲା ଧଡ଼—ମାଆ ତାର ଦୁଃଖେ ଯାଏ ଝରି,
ମାଘ ମାସ ଘୋର ଶୀତରାତି – ପ୍ରାଣ ନେବ ତାର ଚମ ଚିରି

ବଳିଷ୍ଠ କୁକୁର ଆଗେ ଧନୀ କେତେ ଆହାର ଫୋପାଡ଼େ,
ବଳେ ଯେ କୁକୁର ଠାରୁ—ଲୋକ ଆଖି ପଡ଼େ ତା ଉପରେ
ପର ପାଖେ ବିକା ପ୍ରାଣ—ନାହିଁ ଶକ୍ତି—ଆପଣାର କିଛି
ଅପରେ ଆଶ୍ରିତ କରି – ତା ହାତରେ ତୋ ସୃଷ୍ଟି ରହିଛି,

ବିକଳେ ହତାଶ—ଯଦି ଅଭିଯୋଗ କରୁ ତୁ ସଂସାରେ
ଦୈତ୍ୟ ପରି ଗରଜେ ମାଲିକ—ତୋର ମୁଖ କଥା ବାହାରିଲେ
ଗର୍ଜିଉଠେ ତାର ସେନା—ହତ୍ୟା କରି ତୋତେ ତୋ ଗୃହିଣୀ
ତୋର ଗୃହ କାଣି ଗୃଲେ—ଜଗତରେ ରକତ ଉଜାଣି ।"

(ଅନୁବାଦକ—ଶଚିରଞ୍ଜନ ଦାସ)

ବାଇରନ୍ ମଧ୍ୟ ସ୍ୱାଧୀନତାକୁ ପ୍ରଶଂସା କରି ସୁନ୍ଦର କବିତା ଲେଖିଛନ୍ତି; କିନ୍ତୁ ଏହା ଜାତୀୟ ସ୍ୱାଧୀନତା ଏବଂ ସେଲିଙ୍କ କବିତା ପରି ଅର୍ଥନୀତିକ ସ୍ୱାଧୀନତା ସମ୍ପର୍କରେ ନୁହେଁ । ମୁଁ ତତେ କହୁଛି, ସେଲିଙ୍କ ମୃତ୍ୟୁର ଦୁଇ ବର୍ଷ ପରେ ତୁର୍କ ବିରୁଦ୍ଧରେ ଗ୍ରୀକ୍‌ରେ ଲାଗିଥିବା ଜାତୀୟ ସ୍ୱାଧୀନତା ଯୁଦ୍ଧରେ ସେ ମରିଗଲେ । ମୋର ବାଇରନ୍‌ଙ୍କ ପ୍ରତି ମଣିଷ ହିସାବରେ ଗୋଟାଏ ଖରାପ ଧାରଣା ରହିଛି ଏବଂ ତଥାପି ମୋର ଗୋଟାଏ ସୁହୃଦ୍ ଭାବ ତାଙ୍କ ପ୍ରତି ରହିଛି; କାରଣ ସେ ମୋର ସ୍କୁଲ୍ ଓ କଲେଜ—ହାରୋ ସ୍କୁଲ୍ ଓ କେମ୍ବ୍ରିଜର ଟ୍ରିନିଟି କଲେଜରେ ପଢ଼ୁଥିଲେ । ତାଙ୍କ ଯୁବାବସ୍ଥାରେ ସେ ଯଶ ଅର୍ଜିଲେ, ଯାହା କି ଙ୍ଗ୍‌ଲଣ୍ଡ ଓ ସେଲିଙ୍କ ଭାଗ୍ୟରେ ଘଟି ନ ଥିଲା ଏବଂ ଲଣ୍ଡନ ସୋସାଇଟିରେ ତାଙ୍କୁ ମହାନ୍ କରି ଦିଆଗଲା; କିନ୍ତୁ ପରେ ତାଙ୍କର ଏ ସ୍ଥାନ ଚ୍ୟୁତ ହେଲା ।

ଏହି ସମୟରେ ଆଉ ଦୁଇ ଜଣ ପ୍ରସିଦ୍ଧ କବି ଥିଲେ—ଏହି ଯୁବକ ତିନି ଜଣଙ୍କ ଅପେକ୍ଷା ସେମାନେ ଅଧିକ କାଳ ବଞ୍ଚିଥିଲେ । ଓ୍ୱାର୍ଡ଼ସ୍‌ଓ୍ୱର୍ଥ ୧୭୭୦ରୁ ୧୮୫୦ ପର୍ଯ୍ୟନ୍ତ ୮୦ ବର୍ଷ ବଞ୍ଚିଥିଲେ—ଏ ଜଣେ ବଡ଼ ଇଂରେଜ କବି ଭାବରେ ପରିଗଣିତ । ସେ ଭାରି ପ୍ରକୃତି-ପ୍ରିୟ ଥିଲେ ଏବଂ ତାଙ୍କର ଅଧିକ କବିତା ପ୍ରକୃତି-ସମ୍ବନ୍ଧୀୟ । ଅନ୍ୟ ଜଣକ ହେଉଛନ୍ତି—କଲେରିଜ୍; ତାଙ୍କର କେତେକ କବିତା ଭାରି ଭଲ ।

୧୯ଶ ଶତାବ୍ଦୀର ପ୍ରଥମ ଭାଗରେ ତିନି ଜଣ ପ୍ରସିଦ୍ଧ ଔପନ୍ୟାସିକ ବି ଥିଲେ । ଏମାନଙ୍କ ଭିତରେ ବୟସରେ ବଡ଼ ହେଉଛନ୍ତି ଓ୍ୱାଲ୍‌ଟର ସ୍କଟ ଏବଂ ତାଙ୍କର 'ଓ୍ୟାଭରଲି' ଉପନ୍ୟାସ ଭାରି ଲୋକପ୍ରିୟ । ମୋର ମନେ ହୁଏ, ତୁ ସେଥିରୁ କିଛି ପଢ଼ିଛୁ । ମୁଁ ପିଲା ବେଳେ ତାକୁ ଭଲ ପାଉଥିବାର ମନେ ପଡ଼ୁଛି; କିନ୍ତୁ ବଡ଼ ହେଲେ ରୁଚିର ପରିବର୍ତ୍ତନ ଘଟେ ଏବଂ ଏକଥା ନିଶ୍ଚିତ ଯେ ସେଗୁଡ଼ିକ ଏବେ ପଢ଼ିଲେ ମୋତେ ବିରକ୍ତି ଲାଗିବ । ଅନ୍ୟ ଦୁଇ ଜଣ ଔପନ୍ୟାସିକ ହେଉଛନ୍ତି ଥାକରେ ଓ ଡିକେନ୍‌ସ । ମୋର ମନେ ହୁଏ, ଏ ଦୁହେଁ ସ୍କଟ୍‌ଙ୍କ ଅପେକ୍ଷା ଅଧିକ ଉଚ୍ଚଦରର । ମୋର ଆଶା, ତୋତେ ଏ ଦୁହିଁଙ୍କ ଉପନ୍ୟାସ ଭଲ ଲାଗିବ । ଥାକରେ ୧୮୧୧ ସାଲରେ କଲିକତାରେ ଜନ୍ମ ହୋଇଥିଲେ ଏବଂ ସେ ସେଠି ପାଞ୍ଚ କି ଛଅ ବର୍ଷ କଟାଇଲେ । ତାଙ୍କର କେତେକ ବହିରେ ଭାରତୀୟ ନବାବଙ୍କ ସମ୍ବନ୍ଧରେ ବାସ୍ତବ ବର୍ଣ୍ଣନା ରହିଛି—ଅର୍ଥାତ୍ ଭାରତରେ ଇଂରେଜ ଲୋକେ ଯେଉଁମାନେ ଖୁବ୍ ସମ୍ପଦ ଅର୍ଜନ କରି ମୋଟା ଓ ଗରମ ହୋଇଯାଆନ୍ତି ଏବଂ ସେସବୁ ଉପଯୋଗ କରିବା ନିମନ୍ତେ ଇଂଲଣ୍ଡକୁ ଫେରିଯାଆନ୍ତି, ସେହିମାନଙ୍କ ସମ୍ବନ୍ଧରେ ।

୧୯ଶ ଶତାବ୍ଦୀର ଲେଖକମାନଙ୍କ ସମ୍ବନ୍ଧରେ ମୁଁ ଏତିକି କହିବାକୁ ଚାହେଁ । ଏତେ ବଡ଼ ବିଷୟ ଏତିକିରେ କହି ଶେଷ କରିଦେବା ହାସ୍ୟାସ୍ପଦ । ଯେଉଁ ଲୋକକୁ ଏ ସମ୍ବନ୍ଧରେ ଜଣାଅଛି, ସେ ମନମୋହିଲା ପରି ଲେଖି ପାରିଆନ୍ତା, ଏଥିରେ ସନ୍ଦେହ ନାହିଁ । ସେ ସେ ମଧ୍ୟ ଏ କାଳର ସଙ୍ଗୀତ ଓ କଳା ସମ୍ବନ୍ଧରେ ବହୁତ କିଛି ଲେଖି ପାରନ୍ତା ।

ଏସବୁ କହିବା ଓ ଜାଣିବା ଦରକାର, କିନ୍ତୁ ଏହା ମୋର ଶକ୍ତିବହିର୍ଭୂତ ଏବଂ ମୁଁ ଯେତିକି ଜାଣେ କେବଳ ସେତିକି କହିବା ଠିକ୍ ହେବ ।

ଗେଟେଙ୍କର 'ଫଷ୍ଟ'ରୁ ଆଉ ଏକ କବିତା ଉଦ୍ଧାର କରି ମୁ ଏହା ଶେଷ କରିବି । ଏହା ଅବଶ୍ୟ ଜର୍ମାନ ଭାଷାରୁ ଅନୂଦିତ—

"ବିଶ୍ୱ ଶକତି କ୍ଷୀଣ କରିଚୁ ତା ଶିର କରିଚୁ ନତ
ଭଙ୍ଗିରେ ହାସ୍ୟ ଧ୍ୱଂସ କରିଚୁ—ଆଘାତେ କରିଚୁ କ୍ଷତ
ରାଜା ଯେ ଆସିଚି ଦେବତା ବୋଲାଇ ଦଳିଚି ବିଶ୍ୱ ସାରା
ଶୂନ୍ୟ ହୋଇଚି ବିଶ୍ୱସମ୍ପଦ—ସହିଚି ମଣିଷ ପରା !
ଭଗ୍ନ ବିଶ୍ୱର ଭଗ୍ନ ପୁତ୍ତଳୀ—ଆମେ ଗାଉ ଗତ କଥା—
ଲୁପ୍ତ ସୁଷମା, ନଷ୍ଟ ମାଧୁରୀ—ସେଇ ଅତୀତର ଗାଥା ।
ବିଶ୍ୱମାଝର ମହାନ ଶିଶୁ ଗଢ଼ ରେ ନୂତନ ସୃଷ୍ଟି
ଆଉ ଥରେ ଆଜି ଝଲସି ଉଠୁରେ ଉଜ୍ଜ୍ୱଳ ତୋର କୀର୍ତ୍ତି
ତୋହରି ବୁକୁରେ ଉନ୍ନତ ଯୁଗ ଟେକୁ ତାର ଉଚ୍ଚ ଶିର
ଆଣରେ ଆଲୋକ—ବିପୁଳ ପୁଲକେ ଧାଉଁ ତୋ ଦୁନିଆ ସାରା,
ଅଶ୍ରୁତ କମନୀୟ
ଗାଇ ଉଠୁ ତୋର ସୁନ୍ଦର ଗାନ ଆକାଶ ଭୁବନମୟ ॥
( ଅନୁବାଦକ—ଚିତ୍ତରଞ୍ଜନ ଦାସ )

## ୧୩୦ : ଡାରଉଇନ୍ ଓ ବିଜ୍ଞାନର ବିଜୟ

ଫେବ୍ରୁଆରୀ ୩, ୧୯୩୩

କବିଙ୍କଠୁଁ ଚାଲ ବୈଜ୍ଞାନିକଙ୍କ ପାଖକୁ ଯିବା । ମୋର ମନେହୁଏ, କବିମାନଙ୍କୁ ଆଜି ସୁଦ୍ଧା ଏକପ୍ରକାର ଅକାମୀ ବୋଲି ଧରାଯାଏ; କିନ୍ତୁ ବୈଜ୍ଞାନିକମାନେ ଆଜି ଯାଦୁକର ଏବଂ ତାଙ୍କର ପ୍ରଭାବ ଓ ସମ୍ମାନ ଅଛି । ୧୯ଶ ଶତାବ୍ଦୀ ପୂର୍ବରୁ ଏପରି ନ ଥିଲା । ପ୍ରଥମେ ଇଉରୋପରେ ବୈଜ୍ଞାନିକ ଜୀବନ ବଡ଼ ବିପଦସଂକୁଳ ଥିଲା ଏବଂ ବେଳେ ବେଳେ ଏହି

କାରଣରୁ ମୃତ୍ୟୁ ବି ଘଟିଛି । ଗିଓଡ଼ାର୍ଣ୍ଣୋ ବ୍ରୁନୋଙ୍କୁ ରୋମରେ ପାଦ୍ରୀମାନେ ଜୀଅନ୍ତା ପୋଡ଼ି ଦେଇଥିଲେ ମୁଁ ତତେ କହିଛି । କେତେ ବର୍ଷ ପରେ ୧୮ଶ ଶତାବ୍ଦୀରେ ଗାଲିଲିଓଙ୍କ ଜୀବନ ପ୍ରାୟ ଶେଷ ହେବା ଉପରେ ହୋଇଥିଲା; କାରଣ ପୃଥିବୀ ସୂର୍ଯ୍ୟ ଚତୁର୍ଦ୍ଦିଗରେ ବୁଲୁଛି ବୋଲି ସେ କହିଥିଲେ । ସେ ପ୍ରଚଳିତ ଧର୍ମର ବିରୋଧ ଦୋଷରେ ପୋଡ଼ା ହେବାରୁ ରକ୍ଷା ପାଇଗଲେ; କାରଣ ସେ କ୍ଷମା ମାଗିଲେ ଓ ତାଙ୍କ ଘୋଷଣାସବୁ ପ୍ରତ୍ୟାହାର କରିନେଲେ । ଏହିରୂପେ ଇଉରୋପରେ ଧର୍ମସଂସ୍ଥାର ସର୍ବଦା ବିଜ୍ଞାନ ସହିତ ସଂଘର୍ଷ ଉପୁଜୁଥାଏ ଏବଂ ନୂତନ ଭାବଧାରା ଦବାଇଦେବା ପାଇଁ ତାହା ଚେଷ୍ଟା କରୁଥାଏ । ଇଉରୋପରେ ଓ ଅନ୍ୟତ୍ର ସଂଗଠିତ ଧର୍ମର କେତେକ ବିଭିନ୍ନ ମତ ରହିଛି, ଯାହାକୁ ତାର ଅନୁଚରମାନଙ୍କୁ କୌଣସି ସନ୍ଦେହ ବା ପ୍ରଶ୍ନ ନ କରି ମାନିନେବାକୁ ପଡ଼େ । କିନ୍ତୁ ବିଜ୍ଞାନ ସମ୍ପୂର୍ଣ୍ଣ ପୃଥକ୍ ଭାବରେ ଜିନିଷ ପ୍ରତି ଦୃଷ୍ଟିପାତ କରେ । ଏହା କୌଣସି ଜିନିଷକୁ ସ୍ୱତଃସିଦ୍ଧ ବୋଲି ମାନିନିଏ ନା—ଏହାର କୌଣସି ଧରାବନ୍ଧା ମତ (Dogma) ନାହିଁ ଅଥବା ରହିବା ଉଚିତ ନୁହେଁ । ଏହା ଖୋଲା ମନ ରଖିବା ପାଇଁ ଉତ୍ସାହିତ କରେ ଏବଂ ପୁନଃ ପୁନଃ ପ୍ରୟୋଗଦ୍ୱାରା ସତ୍ୟ ପାଇବାକୁ ଚେଷ୍ଟା କରେ । ଧାର୍ମିକ ଦୃଷ୍ଟିକୋଣଠାରୁ ଏହି ଦୃଷ୍ଟିକୋଣ ସ୍ପଷ୍ଟଭାବରେ ସଂପୂର୍ଣ୍ଣ ପୃଥକ୍ ଏବଂ ଏହି ଉଭୟ ଭିତରେ ଯେ ବାରମ୍ବାର ସଂଘର୍ଷ ହୋଇଛି, ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ।

ମୋର ମନେହୁଏ, ସବୁ ଯୁଗରେ ବିଭିନ୍ନ ଲୋକେ ନାନା ପ୍ରକାର ପ୍ରୟୋଗ କରିଛନ୍ତି । ପୁରାତନ ଭାରତରେ ରସାୟନ ବିଦ୍ୟା ଓ ଅସ୍ତ୍ରଚିକିତ୍ସା ବିଦ୍ୟା ଖୁବ୍ ଉନ୍ନତ ହୋଇଥିଲା ବୋଲି କୁହାଯାଏ ଏବଂ ବହୁ ପ୍ରୟୋଗ ପରେ ଏହା ହୋଇ ପାରିଥିବ । ପୁରାତନ ଗ୍ରୀକ୍‌ମାନେ କେତେକ ପରିମାଣରେ ପ୍ରୟୋଗ କରିଥିଲେ । ଚୀନାମାନଙ୍କ ସମ୍ବନ୍ଧରେ ମୁଁ ଏବେ ଏକ ଆଶ୍ଚର୍ଯ୍ୟଜନକ ବିବରଣ ପଢ଼ିଛି—ଏଥିରେ ୧୬୦୦ ବର୍ଷ ପୂର୍ବର ଚୀନା ଲେଖକମାନଙ୍କ ଲେଖାରୁ ଉଦ୍ଧାର କରାଯାଇଛି—ଏଥିରେ ଦେଖାଇ ଦିଆହୋଇଛି ଯେ ସେମାନେ କ୍ରମବିକାଶ ତଥ୍ୟ ଓ ଶରୀରର ରକ୍ତ ସଞ୍ଚାଳନ ବିଷୟ ଜାଣିଥିଲେ ଏବଂ ଚୀନା ଅସ୍ତ୍ରଚିକିତ୍ସକମାନେ ଚୈତନ୍ୟହାରକ ଦ୍ରବ୍ୟ (anaesthetics) ବ୍ୟବହାର କରିଥିଲେ । କିନ୍ତୁ କୌଣସି ସିଦ୍ଧାନ୍ତରେ ପହଞ୍ଚିବା ଭଳି ଏ କାଳ ସମ୍ବନ୍ଧରେ ଯଥେଷ୍ଟ ଜଣା ନାହିଁ । ପୁରାତନ ସଭ୍ୟତାରେ ଯଦି ଏହିସବୁ ଉପାୟ ଆବିଷ୍କାର ହୋଇ-ଥିଲା, ତେବେ ସେମାନେ ତାହା ପରେ ଭୁଲିଲେ କାହିଁକି ? ଅଧିକ ଉନ୍ନତି ସେମାନେ ବା ନ କଲେ କାହିଁକି ? ଅଥବା ସେମାନେ ଏ ପ୍ରକାର ପ୍ରଗତିକୁ କି ଯଥେଷ୍ଟ ଗୁରୁତ୍ୱ ଦେଉ ନ ଥିଲେ ? ଅନେକ ଆଗ୍ରହଜନକ ପ୍ରଶ୍ନ ଉଠେ; କିନ୍ତୁ ସେଗୁଡ଼ିକର ଜବାବ ଦେବା ପାଇଁ ଆମ ପାଖରେ ମସଲା ନାହିଁ ।

ଆରବମାନେ ଭାରି ପ୍ରୟୋଗ କରିବା ପ୍ରିୟ ଥିଲେ ଏବଂ ମଧ୍ୟଯୁଗରେ ଇଉରୋପ ତାଙ୍କୁ ଅନୁସରଣ କରିଥିଲା, କିନ୍ତୁ ସେମାନଙ୍କର ସବୁ ପ୍ରୟୋଗ ପ୍ରକୃତରେ ବୈଜ୍ଞାନିକ ନ

ଥିଲି । ସେମାନେ ସର୍ବଦା ପରଶମଣି (philosophers' stone) ବୋଲି ଯାହା କହନ୍ତି, ତାକୁ ଅନାଇ ରହୁଥିଲେ—ଏଥିରେ ସାଧାରଣ ଧାତୁ ସୁନାରେ ପରିଣତ ହୋଇଯାଏ ବୋଲି ଶୁଣାଯାଏ । ଏହି ଧାତୁ ପରିବର୍ତ୍ତନର ଗୋପନ ରହସ୍ୟ ଜାଣିବା ପାଇଁ ଲୋକେ ଜଟିଳ ରାସାୟନିକ ପ୍ରୟୋଗରେ ଜୀବନ କଟାଇ ଦେଉଥିଲେ । ଏହାକୁ ଅପରାସାୟନ ବିଦ୍ୟା ବା ଆଲକେମୀ (alchemy) କହନ୍ତି । ସେମାନେ ପରିଶ୍ରମ କରି 'ଜୀବନର ସାର ପଦାର୍ଥ' ବା ଅମୃତ ଯାହାକି ତାଙ୍କୁ ଅମର କରିବ, ତାହା ଖୋଜୁଥିଲେ । ଗଳ୍ପ ଗପ ଛଡ଼ା ଅନ୍ୟତ୍ର କେଉଁଠି କେହି ଏହି ଅମୃତ ବା ପ୍ରସିଦ୍ଧ ପଥର ପାଇଛନ୍ତି ବୋଲି କିଛି ଉଲ୍ଲେଖ ନାହିଁ । ପ୍ରକୃତରେ ଧନ, କ୍ଷମତା ଓ ଦୀର୍ଘଜୀବନ ଲାଭ ଆଶାରେ ଗୋଟାଏ ପ୍ରକାର ଯାଦୁ ବାହାର କରିବା ଲାଗି ଏହି ଉଦ୍ୟମ ଥିଲା । ବିଜ୍ଞାନର ଭାବ ସହିତ ଏହାର କିଛି ସମ୍ପର୍କ ନ ଥିଲା । ଯାଦୁ ଓ ଭେଳକିବିଦ୍ୟା ଆଦି ସହ ବିଜ୍ଞାନର କିଛି ସମ୍ପର୍କ ନାହିଁ ।

ଯାହାହେଉ, ଇଉରୋପରେ ପ୍ରକୃତରେ ବୈଜ୍ଞାନିକ ପ୍ରଣାଳୀର କ୍ରମେ ଉନ୍ନତି ହେଲା ଏବଂ ବିଜ୍ଞାନ-କ୍ଷେତ୍ରରେ ସର୍ବାପେକ୍ଷା ମହାନ୍ ହେଉଛନ୍ତି ଜଣେ ଇଂରେଜ— ଆଇଜାକ୍ ନିଉଟନ; ସେ ୧୬୪୨ରୁ ୧୭୨୭ ପର୍ଯ୍ୟନ୍ତ ରହିଥିଲେ । ନିଉଟନ୍ ମାଧ୍ୟାକର୍ଷଣ ଶକ୍ତିର ନିୟମ ଦର୍ଶାଇଲେ – ଅର୍ଥାତ୍ ଜିନିଷ କିପରି ତଳକୁ ପଡ଼େ ଏବଂ ଏହା ସାହାଯ୍ୟରେ ଓ ଅନ୍ୟ ଯେଉଁସବୁ ତତ୍ତ୍ୱ ଆବିଷ୍କୃତ ହୋଇଛି ତାହା ସାହାଯ୍ୟରେ ସେ ସୂର୍ଯ୍ୟ ଓ ଗ୍ରହମାନଙ୍କର ଗତିକଥା ବୁଝାଇଦେଲେ । ତାଙ୍କ ତଥ୍ୟକୁ ବଡ଼ ଓ ଶ୍ରେଷ୍ଠ ପ୍ରତ୍ୟେକ ଜିନିଷ ଖାଟିଲା ପରି ମନେହେଲା ଏବଂ ସେ ଖୁବ୍ ସମ୍ମାନ ଲାଭ କଲେ ।

ଧର୍ମସଂସ୍ଥାର ରକ୍ଷଣଶୀଳ ଭାବଧାରା ଉପରେ ବିଜ୍ଞାନର ଜୟ ହୋଇଥିଲା । ଏହାକୁ ଆଉ ଦବାଇ ରଖାଯାଇ ପାରିଲା ନାହିଁ କିମ୍ବା ଏହାର ସେବକମାନଙ୍କୁ ଶାସ୍ତି ଦିଆହେଲା ନାହିଁ । ବିଶେଷଭାବରେ ଇଂଲଣ୍ଡ ଓ ଫ୍ରାନ୍ସରେ ଏବଂ ପରେ ଜର୍ମାନୀ ଓ ଆମେରିକାରେ ଅନେକ ବୈଜ୍ଞାନିକ ଧୈର୍ଯ୍ୟର ସହିତ କାର୍ଯ୍ୟ କଲେ, ପ୍ରୟୋଗ କଲେ ଏବଂ ତଥ୍ୟ ଓ ଜ୍ଞାନ ସଂଗ୍ରହ କଲେ । ଏହିରୂପେ ବୈଜ୍ଞାନିକ ଜ୍ଞାନ ବଢ଼ିଲା । ତୋର ମନେ ଥିବ, ୧୮ଶ ଶତାବ୍ଦୀରେ ହେତୁବାଦ (rationalism) ଶିକ୍ଷିତ ଶ୍ରେଣୀଙ୍କ ଭିତରେ ବିସ୍ତାର ଲଭିଥିଲା । ଏହା ଭଲ୍‌ଟେୟାର ଓ ରୁଷୋଙ୍କ ଶତାବ୍ଦୀ ଏବଂ ସେମାନେ ଓ ଅନ୍ୟ ଅନେକ ସିଦ୍ଧହସ୍ତ ଫରାସୀ ଲୋକେ ସମସ୍ତ ପ୍ରକାର ବିଷୟରେ ଲେଖିଲେ ଏବଂ ଲୋକଙ୍କ ମନରେ ଗୋଟାଏ ଆଲୋଡ଼ନ ସୃଷ୍ଟି କଲେ । ଏହି ଶତାବ୍ଦୀର ଗର୍ଭରେ ବିରାଟ ଫରାସୀ-ବିପ୍ଳବ ସୃଷ୍ଟିର ହେଉଥିଲା । ଏହି ହେତୁବାଦୀ ଦୃଷ୍ଟିକୋଣ ବୈଜ୍ଞାନିକ ଦୃଷ୍ଟିକୋଣ ସହ ଖାପ ଖାଇଲା ଏବଂ ଉଭୟେ ଧର୍ମସଂସ୍ଥା ବା ଗିର୍ଜାର ହେତୁହୀନ ଦୃଷ୍ଟିକୋଣର ବିରୋଧୀ ହେଲେ ।

ମୁଁ ତତେ କହିଛି, ଅନ୍ୟ ବିଷୟ ସହ ଊନବିଂଶ ଶତାବ୍ଦୀ ହେଉଛି ବିଜ୍ଞାନ-ଶତାବ୍ଦୀ । ଔଦ୍ୟୋଗିକ ବିପ୍ଳବ, ଯାନ୍ତ୍ରିକ ବିପ୍ଳବ ଏବଂ ଯାତାୟାତ ପ୍ରଣାଳୀରେ ଅଭୂତ

ପରିବର୍ତ୍ତନ ଏହିରୂ ବିଜ୍ଞାନ ଯୋଗୁଁ ହୋଇ ପାରିଥିଲା । ଅସଂଖ୍ୟ କଳକାରଖାନା ହୋଇ ଉତ୍ପାଦନ-ପ୍ରଣାଳୀ ବଦଳିଗଲା, ରେଲ୍ ଓ ବାଷ୍ପୀୟ ପୋତ ହେତୁ ପୃଥିବୀ ଗ୍ରେଟ୍ ଛୋଟ ମନେହେଲ; ବିଦ୍ୟୁତ୍ ଟେଲିଗ୍ରାଫ ମଧ୍ୟ ଅଦ୍ଭୁତ ଏକ ବିସ୍ମିତ କଥା । ଇଂଲଣ୍ଡର ସୁଦୂର ବ୍ୟାପୀ ସାମ୍ରାଜ୍ୟର ଧନ ବୋହି ହୋଇ ଆସିଲା । ଏଥିରେ ସ୍ୱାଭାବିକରୂପେ ପୁରାତନ ଭାବ-ଧାରାସବୁ ଦୋହଲିଗଲା ଏବଂ ଧର୍ମର ପ୍ରାଧାନ୍ୟ କମ୍ ହୋଇଗଲା । ଭୂମିରେ କୃଷକ-ଜୀବନ ତୁଳନାରେ କାରଖାନାରେ ନିଯୁକ୍ତ ହୋଇଥିବା ଲୋକେ ଧାର୍ମିକ ସମସ୍ୟା ଅପେକ୍ଷା ଆର୍ଥିକ ସମସ୍ୟା ବିଷୟ ଅଧିକ ଚିନ୍ତା କରିବାକୁ ଲାଗିଲେ ।

ଏହି ଶତାବ୍ଦୀର ମଧ୍ୟଭାଗରେ ୧୮୫୯ରେ ଇଂଲଣ୍ଡର ଏକ ପୁସ୍ତକ ପ୍ରକାଶିତ ହେଲା —ଯାହା ଫଳରେ ଏକଦେଶଦର୍ଶୀ ଧାର୍ମିକ ଭାବ ଓ ବୈଜ୍ଞାନିକ ଦୃଷ୍ଟିକୋଣ ଭିତରେ ସଂଘର୍ଷ ଉପୁଜିଲା । ଏହି ପୁସ୍ତକ ହେଉଛି ଚାର୍ଲସ ଡାରଉଇନ୍‌ଙ୍କ ଲିଖିତ 'ଓରିଜିନ୍ ଅଫ୍ ସ୍ପେସିଜ୍' (Origin of Species) ଅର୍ଥାତ୍ 'ପ୍ରାଣୀସମୂହର ଉତ୍ପତ୍ତି' । ଡାରଉଇନ୍‌ଙ୍କୁ ଜଣେ ବଡ଼ ବୈଜ୍ଞାନିକ ରୂପେ ଧରାଯାଏନା; ସେ ଯାହା କହିଛନ୍ତି, ସେଥିରେ ନୂତନ କଥା ସେପରି କିଛି ନାହିଁ । ଡାରଉଇନ୍‌ଙ୍କ ପୂର୍ବରୁ ଅନେକ ଭୂତତ୍ତ୍ୱବିତ୍ ଓ ପ୍ରକୃତିତତ୍ତ୍ୱବିତ୍ (Naturalist) କାର୍ଯ୍ୟ କରିଛନ୍ତି ଏବଂ ଅନେକ ତଥ୍ୟ ସଂଗ୍ରହ କରିଛନ୍ତି । ସେ ଯାହାହେଉ ଡାରଉଇନ୍‌ଙ୍କ ପୁସ୍ତକ ଯୁଗପ୍ରବର୍ତ୍ତନ କଲା; ଏହା ଲୋକଙ୍କ ଭାବନାରେ ପ୍ରଭାବ ପକାଇଲା ଏବଂ ଅନ୍ୟ ଯେକୌଣସି ବୈଜ୍ଞାନିକ କାର୍ଯ୍ୟ ଅପେକ୍ଷା ସାମାଜିକ ଦୃଷ୍ଟିକୋଣ ବଦଳାଇବାରେ ଅଧିକ ସାହାଯ୍ୟ କରିଥିଲା । ଏହା ଫଳରେ ଏକ ମାନସିକ ଭୂକମ୍ପ ଜାତ ହେଲା ଏବଂ ଡାରଉଇନ୍ ବିଖ୍ୟାତ ହୋଇଗଲେ ।

ଡାରଉଇନ୍ ପଦାର୍ଥବିଦ୍ୟା ଅଧ୍ୟୟନ ଲାଗି ଦକ୍ଷିଣ ଆମେରିକା ଓ ପ୍ରଶାନ୍ତ ମହାସାଗରୀୟ ଅଞ୍ଚଳରେ ଭ୍ରମଣ କରିଥିଲେ ଏବଂ ପ୍ରଚୁର ସାମଗ୍ରୀ ଓ ବିବରଣୀ ସଂଗ୍ରହ କରିଥିଲେ । ପ୍ରାକୃତିକ ପରିସ୍ଥିତି ଅନୁସାରେ ପ୍ରତ୍ୟେକ ପ୍ରକାର ଜୀବର କିପରି ପରିବର୍ତ୍ତନ ହେଉଛି, ତାହା ସେ ଦେଖାଇ ଦେଇଥିଲେ । ସେପର୍ଯ୍ୟନ୍ତ ଅନେକ ଲୋକ ଭାବୁଥିଲେ ଯେ ମଣିଷ ସମେତ ପ୍ରତ୍ୟେକ ପ୍ରକାର ଓ ଜାତିର ଜୀବବିଶେଷ ଅଲଗା ଭାବରେ ଭଗବାନଙ୍କ ଦ୍ୱାରା ସୃଷ୍ଟି ଏବଂ ସେହି ଦିନୁଁ ଏହା ଅଲଗା ଓ ଅପରିବର୍ତ୍ତନୀୟ ହୋଇ ରହିଛି; ଅର୍ଥାତ୍ ଏକ ଜାତୀୟ ଜୀବ ଅନ୍ୟ ଜାତିରେ ବଦଳିପାରେନା; ଅସଂଖ୍ୟ ପ୍ରକୃତ ଦୃଷ୍ଟାନ୍ତ ଦେଖାଇ ଡାର୍‌ଉଇନ୍ ଦେଖାଇ ଦେଲେ ଯେ ଏକଜାତୀୟ ଜୀବ ଅନ୍ୟ ଜାତିରେ ବଦଳିଯାଏ ଏବଂ ଏହା ବିକାଶର ଏକ ସାଧାରଣ ପ୍ରଣାଳୀ । ଏହା ପ୍ରାକୃତିକ ପରିସ୍ଥିତି ଅନୁସାରେ ଘଟେ । କୌଣସି ପ୍ରକାର ଗୋଷ୍ଠୀର ସାମାନ୍ୟ ପରିବର୍ତ୍ତନଦ୍ୱାରା ଯଦି କୌଣସି ପ୍ରକାରେ ସମୂହ ଲାଭବାନ ହୁଏ କିମ୍ବା ଅନ୍ୟମାନଙ୍କ ଅପେକ୍ଷା ଅଧିକ କାଳ ବଞ୍ଚିଯାଏ, ତେବେ ଧୀରେ ଧୀରେ ପରିବର୍ତ୍ତନ ସ୍ଥାୟୀ ହୋଇଯାଏ ଏବଂ ଏପରି ବହୁବିଧ ଜାତି ବଞ୍ଚିରହିବାର ସ୍ପଷ୍ଟ ଦେଖାଯାଏ । କିଛି ଦିନ ପରେ ଏହି ବିବିଧ ଜାତିର ସଂଖ୍ୟା ଅଧିକ ହୋଇଯାଏ ଏବଂ ଅନ୍ୟ

ମାନଙ୍କୁ ବୁଡ଼ାଇ ପକାଏ । ଏହିରୂପେ ଗୋଟିକ ପରେ ଗୋଟିଏ ପରିବର୍ତ୍ତନ ଓ ବିଭିନ୍ନତା ଆସିବ ଏବଂ କିଛି ଦିନ ପରେ ଏକ ନୂତନ ଜାତିର ଜନ୍ମ ହେବ । ତେଣୁ ଏହି ପ୍ରାକୃତିକ ପରିସ୍ଥିତି ଅନୁସାରେ 'ଅଧିକ ବଳବାନ୍ ବଞ୍ଚିରହିବା' ସୂତ୍ର ଅନୁସାରେ କାଳର ଗତିରେ ପ୍ରାୟ ନୂଆ ପ୍ରକାର ଗୋଷ୍ଠୀ ଦେଖାଦେବ । ଏହା ଉଦ୍ଭିଦ, ଜୀବଜନ୍ତୁ ଓ ମନୁଷ୍ୟ ପ୍ରତି ମଧ୍ୟ ପ୍ରଯୁଜ୍ୟ । ଏହି ତଥ୍ୟ ଅନୁସାରେ ଆମେ ଆଜି ଯେତେ ବିଭିନ୍ନ ପ୍ରକାର ଉଦ୍ଭିଦ ଓ ଜୀବ ଜାତି ଦେଖୁଛେ, ସେସବୁର ଏକ ସମାନ ପୂର୍ବପୁରୁଷ ନିଶ୍ଚୟ ଥିଲା ।

କେତେକ ବର୍ଷ ପରେ ଡାରୱିନ୍ 'ଦି ଡ଼ିସେଣ୍ଟ ଅଫ୍ ମ୍ୟାନ୍' (The Descent of Man) ବା 'ମନୁଷ୍ୟର ବଂଶ' ନାମକ ଆଉ ଏକ ପୁସ୍ତକ ପ୍ରକାଶକଲେ—ଏଥିରେ ଏହି ତଥ୍ୟ ସେ ମନୁଷ୍ୟ ପ୍ରତି ପ୍ରୟୋଗ କଲେ । ଡାରୱିନ୍ ଓ ତାଙ୍କ ଅନୁଚରମାନେ ଯେପରି ଭାବରେ ଆରମ୍ଭ କରିଥିଲେ, ସେପରି ନ ହେଲେ ସୁଦ୍ଧା ଆଜି ଏହି କ୍ରମବିକାଶ ଓ ପ୍ରାକୃତିକ ପସନ୍ଦ ତଥ୍ୟକୁ ଅଧିକାଂଶ ଲୋକ ସ୍ୱୀକାର କରୁଛନ୍ତି । ବାସ୍ତବିକ ଏହି ପ୍ରାକୃତିକ ପସନ୍ଦ ନୀତିକୁ କୃତ୍ରିମ ଭାବରେ ପଶୁ, ଉଦ୍ଭିଦ, ଫଳଫୁଲ ଉପରେ ପ୍ରୟୋଗ କରିବା ସାଧାରଣ କଥା ହୋଇଗଲାଣି । ଆଜିକାଲିର ଅନେକ ଭଲ ପଶୁ ଓ ଉଦ୍ଭିଦ ଏହିପରି କୃତ୍ରିମ ଉପାୟରେ ସୃଷ୍ଟି କରାଯାଇଛି । ଯଦି ଅପେକ୍ଷାକୃତ ଅଳ୍ପକାଳ ଭିତରେ ମନୁଷ୍ୟ ଏପରି ପରିବର୍ତ୍ତନ ଓ ନୂତନ ଜାତି ସୃଷ୍ଟି କରିପାରିଲା, ତେବେ ଶହ ଶହ, ହଜାର ହଜାର ଓ ଲକ୍ଷ ଲକ୍ଷ ବର୍ଷ ଭିତରେ ପ୍ରକୃତି କଣ ନ କରିପାରେ ? ଲଣ୍ଡନର ସାଉଥ କେନ୍‌ସିଂଟନ ଯାଦୁଘର ପରି ପ୍ରାକୃତିକ ଇତିହାସର ଯାଦୁଘର ଦେଖିଲେ ଉଦ୍ଭିଦ ଓ ଜୀବଜନ୍ତୁ କିପରି ବିବିଧ ପ୍ରକୃତି ସହିତ ଖାପ ଖୁଆଇ ଚାଲିଛନ୍ତି ତାହା ଦେଖିପାରିବା ।

ଆଜି ଏସବୁ ଆମକୁ ଅତି ସୁସ୍ପଷ୍ଟ ପରି ମନେହେଉଛି । କିନ୍ତୁ ସତୁରି ବର୍ଷ ପୂର୍ବେ ଏହା ଏପରି ସୁସ୍ପଷ୍ଟ ନ ଥିଲା । ସେତେବେଳେ ଇଉରୋପର ଅଧିକାଂଶ ଲୋକ ବାଇବଲର ବର୍ଣ୍ଣିତ ବିବରଣୀକୁ ବିଶ୍ୱାସ କରୁଥିଲେ ଯେ ଖ୍ରୀଷ୍ଟଜନ୍ମର ୪୦୦୪ ବର୍ଷ ପୂର୍ବେ ପୃଥିବୀ ସୃଷ୍ଟି ହେଲାବେଳେ ଅଲଗାଭାବରେ ପ୍ରତ୍ୟେକ ଉଦ୍ଭିଦ ଓ ଜୀବଜନ୍ତୁ ସୃଷ୍ଟି ହୋଇଛି ଏବଂ ଶେଷରେ ମଣିଷର ସୃଷ୍ଟି । ସେମାନେ ବାଇବଲ ବର୍ଣ୍ଣିତ ବନ୍ୟା ଓ ନୋହାଃ ନୌକା (Flood and Noah's ark)ରେ ଥିବା ପଶୁଯୁଗଳ ବିଷୟରେ ବିଶ୍ୱାସ କରୁଥିଲେ, ଯଦ୍ଦ୍ୱାରା କୌଣସି ଜୀବର ଲୋପ ହୋଇପାରିବ ନାହିଁ । ଡାରୱିନଙ୍କ ତଥ୍ୟ ଏହା ସହିତ ଖାପ ଖାଇଲା ନାହିଁ । ଡାରୱିନ୍ ଓ ଅନ୍ୟ ଭୂତତ୍ତ୍ୱବିତ୍‌ମାନେ ପୃଥିବୀର ସୃଷ୍ଟି କେବଳ ୬୦୦୦ ବର୍ଷ ନୁହେଁ, ଲକ୍ଷ ଲକ୍ଷ ବର୍ଷ ହେଲା ହୋଇଛି ବୋଲି କହିଲେ । ତେଣୁ ନରନାରୀଙ୍କ ମନରାଜ୍ୟରେ ଗୋଟାଏ ସଂଘର୍ଷ ଜାତହେଲା ଓ ଅନେକ ଭଲ ଲୋକ କଣ କରିବେ ସ୍ଥିର କରିପାରିଲେ ନାହିଁ । ପୁରୁଣା ଧର୍ମବିଶ୍ୱାସ ଅନୁସାରେ ଏକ କଳନାରେ

ବିଶ୍ୱାସ କରିବା କଥା; କିନ୍ତୁ ଯୁକ୍ତିଯୁକ୍ତ କାରଣ ଦେଖି ଆଉ ଏକ ଜିନିଷରେ ବିଶ୍ୱାସ କରିବା ଇଚ୍ଛା ହେଲା । ଅନ୍ଧଭାବରେ ଲୋକ ଯଦି କୌଣସି ନିର୍ଦ୍ଦିଷ୍ଟ ମତରେ ବିଶ୍ୱାସ କରିଥାଏ ଏବଂ ତାହା ଯଦି ଏକ ଆଘାତ ପାଏ, ତେବେ ସେ ଅସହାୟ ଓ ଦୁର୍ଦ୍ଦଶାଗ୍ରସ୍ତ ବୋଲି ବୋଧକରେ ଏବଂ କୌଣସି ନିର୍ଦ୍ଦିଷ୍ଟ ଦୃଢ଼ ମତ ଉପରେ ଛିଡ଼ା ହୋଇପାରେ ନାହିଁ, କିନ୍ତୁ ଯେଉଁ ଆଘାତ ଆମକୁ ବାସ୍ତବତା ଜଣାଇଦିଏ, ତାହା ଉତ୍ତମ ।

ତେଣୁ ଇଂଲଣ୍ଡରେ ଓ ଇଉରୋପରେ ଅନ୍ୟତ୍ର ବିଜ୍ଞାନ ଓ ଧର୍ମ ମଧ୍ୟରେ ଖୁବ୍ ଯୁଦ୍ଧ ଓ ସଂଘର୍ଷ ଚାଲିଲା । ଏହାର ଫଳାଫଳରେ ଆଉ ସନ୍ଦେହ କ'ଣ ଅଛି ? ଶିଳ୍ପ ଓ ଯାନ୍ତ୍ରିକ ଯାନବାହନବିଶିଷ୍ଟ ନୂତନ ଦୁନିଆ ବିଜ୍ଞାନ ଉପରେ ହିଁ ନିର୍ଭର କରୁଥିଲା ଏବଂ ବିଜ୍ଞାନକୁ ଆଉ ବାହାର କରିଦିବା ସମ୍ଭବ ନୁହେଁ । ବିଜ୍ଞାନ ହିଁ ସମଗ୍ର ପଥରେ ଜୟୀ ହେଲା ଏବଂ 'ସ୍ୱାଭାବିକ ପସନ୍ଦ' ଓ 'ଅଧିକ ବଳବାନ୍ ବଞ୍ଚିବା' ଆଦି ବାକ୍ୟାଂଶ ସାଧାରଣ ଲୋକ ବ୍ୟବହାର କରିବାକୁ ଲାଗିଲେ—ଏହାର ପ୍ରକୃତ ଅର୍ଥ କ'ଣ ନ ବୁଝି ଏପରି ବ୍ୟବହାର କରାଯାଉଥିଲା । ଡାରୱିନ୍ ତାଙ୍କର 'ଡିସେଣ୍ଟ ଅଫ ମ୍ୟାନ' (Descent of man) ବହିରେ ସୂଚାଇଥିଲେ ଯେ ମଣିଷ ଓ କେତେକ ବାନରଙ୍କ ପୂର୍ବପୁରୁଷ ଏକା ଦୃଷ୍ଟାନ୍ତଦ୍ୱାରା ଉନ୍ନତିଧାରାର ବିଭିନ୍ନ ଅବସ୍ଥା ଦର୍ଶାଇ ଏହା ପ୍ରମାଣ କରାଯାଇପାରୁ ନ ଥିଲା । ଏହିଥିରୁ ହିଁ ସାଧାରଣ ପରିହାସ 'ଯୋଗସୂତ୍ରର ଅଭାବ' (Missing link) ବାହାରିଲା । ବିଚିତ୍ର କଥାହେଉଛି ଶାସକଶ୍ରେଣୀ ନିଜର ସୁବିଧା ଅନୁସାରେ ଡାରୱିନଙ୍କ ତଥ୍ୟକୁ ଅର୍ଥ କଲେ ଏବଂ ଦୃଢ଼ଭାବରେ ବିଶ୍ୱାସ କଲେ ଯେ ଉପରେ ରହିବା ପାଇଁ ତାଙ୍କର ଜନ୍ମ, ଏହା ଏଥିରୁ ପ୍ରମାଣିତ ହେଉଛି । ଜୀବନ-ସଂଗ୍ରାମରେ ବଞ୍ଚିବାଲାଗି ସେମାନେ ଯୋଗ୍ୟ ଏବଂ 'ସ୍ୱାଭାବିକ ପସନ୍ଦ' ଅନୁସାରେ ସେମାନେ ଉପରକୁ ଉଠିଛନ୍ତି ଓ ଶାସକଶ୍ରେଣୀ ହୋଇଛନ୍ତି । ଗୋଟିଏ ଶ୍ରେଣୀ ଅନ୍ୟ ଉପରେ ପ୍ରାଧାନ୍ୟ ବିସ୍ତାର କରିବା ଅଥବା ଗୋଟିଏ ଜାତି ଅପର ଜାତିକୁ ଶାସନ କରିବାର ଏହା ହିଁ ଯଥାର୍ଥତା ବୋଲି ଧରାଗଲା । ଏହା ହିଁ ସାମ୍ରାଜ୍ୟବାଦ ଓ ଗୋରାଜାତିର ଶ୍ରେଷ୍ଠତ୍ୱ ଲାଗି ଯୁକ୍ତିସ୍ୱରୂପ ଧରାଗଲା । ପଶ୍ଚିମରେ ଅନେକ ଲୋକ ଭାବିବାକୁ ଲାଗିଲେ ଯେ ସେମାନେ ଯେତେ ଅଧିକ ପ୍ରାଧାନ୍ୟ ଲାଭ କରୁଥିବେ, ଅଧିକ ନିର୍ମମ ଓ ବଳବାନ୍ ହେଉଥିବେ । ମନୁଷ୍ୟର ମୂଲ୍ୟ ଅନୁପାତରେ ସେମାନେ ସେତେ ଉପରେ ରହିପାରିବେ । ଏହା ଆମୋଦଦାୟକ ଦର୍ଶନ ନୁହେଁ, କିନ୍ତୁ ଏଥିରୁ ଏସିଆ ଓ ଆଫ୍ରିକାରେ ପାଶ୍ଚାତ୍ୟ ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କର ଆଚରଣ କେତେକ ପରିମାଣରେ ବୁଝାପଡ଼େ ।

ପରବର୍ତ୍ତୀ ବୈଜ୍ଞାନିକମାନେ ଡାରୱିନଙ୍କ ତଥ୍ୟକୁ ସମାଲୋଚନା କରିଛନ୍ତି; କିନ୍ତୁ ତାଙ୍କର ସାଧାରଣ ଭାବଧାରା ରହିଛି । ତାଙ୍କ ତଥ୍ୟସ୍ୱୀକାରର ଗୋଟିଏ ଫଳ ହୋଇଛି —ପ୍ରଗତି ଧାରାରେ ଲୋକେ ବିଶ୍ୱାସ ସ୍ଥାପନ କରିଛନ୍ତି । ଏହା ଅର୍ଥ ମନୁଷ୍ୟ ଓ ସମାଜ

ତଥା ସମଗ୍ର ଦୁନିଆ ପୂର୍ଣ୍ଣତା ଆଡ଼କୁ ଗତି କରୁଛି ଏବଂ ଦିନକୁ ଦିନ ଉନ୍ନତ ହେଉଛି । କେବଳ ଡାରୱିଇନ୍‌ଙ୍କ ତଥ୍ୟ ଯୋଗୁ ଏପରି ପ୍ରଗତିର ଧାରଣା ଜନ୍ମି ନାହିଁ । ବୈଜ୍ଞାନିକ ଆବିଷ୍କାରର ସାଧାରଣ ଉନ୍ମୁଖତା ଏବଂ ଔଦ୍ୟୋଗିକ ବିପ୍ଳବ ଓ ତା ପରେ ଯେଉଁସବୁ ପରିବର୍ତ୍ତନ ଘଟିଲା, ତାହା ହିଁ ଲୋକଙ୍କ ମନକୁ ଏ ଦିଗରେ ପ୍ରସ୍ତୁତ କରିଦେଲା । ଡାରୱିଇନ୍‌ଙ୍କ ତଥ୍ୟ ଏହାକୁ ପ୍ରମାଣସିଦ୍ଧ କଲା ଏବଂ ଲୋକେ ନିଜେ ଚିନ୍ତା କରିବାକୁ ଲଗିଲେ ଯେ ସେମାନେ ମାନବର ପୂର୍ଣ୍ଣତାପ୍ରାପ୍ତି ନିମନ୍ତେ ଜଣ୍ଟ୍ୱଲଭ କରି ଅଗ୍ରସର ହେଉଛନ୍ତି—ଏହି ପୂର୍ଣ୍ଣତାର ରୂପ ଯେପରି ହେଉ ପଛକେ ଏହି ପ୍ରଗତି ଧାରଣା ଯେ ସେତେବେଳେ ସମ୍ପୂର୍ଣ୍ଣ ନୂତନ ଥିଲା ଏହା ମନେରଖିବା ଦରକାର । ଅତୀତରେ ଇଉରୋପ ବା ଏସିଆ କିମ୍ବା କୌଣସି ପୁରାତନ ସଭ୍ୟତାରେ ଏପରି ଧାରଣା ଥିଲା ପରି ମନେ ହୁଏ ନା । ଇଉରୋପର ଔଦ୍ୟୋଗିକ ବିପ୍ଳବ ପର୍ଯ୍ୟନ୍ତ ଲୋକେ ଅତୀତ କାଳକୁ ହିଁ ଆଦର୍ଶରୂପେ ଦେଖୁଥିଲେ । ପରବର୍ତ୍ତୀ କାଳ ଅପେକ୍ଷା ଗ୍ରୀକ୍ ଓ ରୋମାନ୍ ସଂସ୍କୃତି କାଳ ଅଧିକ ଗୁଣ ସମ୍ପନ୍ନ, ଉନ୍ନତ ଓ ସଂସ୍କୃତିସମ୍ପନ୍ନ ବୋଲି ଧରି ଯାଉଥିଲା । ଲୋକେ ଭାବୁଥିଲେ ଯେ ହୁଏତ ଜାତିର ଅଧୋଗତି ବା ଖରାପ ଅବସ୍ଥା କ୍ରମେ ହେଉଛି ଅଥବା କୌଣସି ନିର୍ଦ୍ଦିଷ୍ଟ ପରିବର୍ତ୍ତନ ଅନ୍ତତଃ ହେଉ ନାହିଁ ।

ଭାରତରେ ସେହିପରି ଅବନତି ଆଡ଼କୁ ଯାଉଛୁ ବୋଲି ଏବଂ ଅତୀତରେ ଏକ ସୁବର୍ଣ୍ଣଯୁଗ ଥିଲା ବୋଲି ସେହିପରି ଧାରଣା ଅଛି । ଭାରତର ପୁରାଣସବୁ ଭୂତତ୍ତ୍ୱ କାଳରୁ ରହିଛି; କିନ୍ତୁ ଏହା ସର୍ବଦା ସତ୍ୟଯୁଗରୁ ଆରମ୍ଭ କରେ ଏବଂ ବର୍ତ୍ତମାନ ଅନ୍ୟାୟକାଳ ଅର୍ଥାତ୍ କଳିଯୁଗ ଆସି ପହଞ୍ଚିଛି ବୋଲି ବର୍ଣ୍ଣନା କରେ ।

ସୁତରାଂ ଆମେ ଦେଖିଲେ ଯେ ମାନବୀୟ ପ୍ରଗତି ଧାରଣା ଏକ ସମ୍ପୂର୍ଣ୍ଣ ନୂତନ ଧାରଣା । ଆମର ଅତୀତ ଇତିହାସ ଜ୍ଞାନ ଏହି ଧାରଣାରେ ଆମର ବିଶ୍ୱାସ ଜନ୍ମାଏ । କିନ୍ତୁ ଆମର ଜ୍ଞାନ ଏବେ ସୁଦ୍ଧା ବଡ଼ ସୀମାବଦ୍ଧ ଅଛି ଏବଂ ହୁଏତ ପୂର୍ଣ୍ଣ ଜ୍ଞାନ ଅର୍ଜନ କଲେ ଆମର ଦୃଷ୍ଟିକୋଣ ବି ପରିବର୍ତ୍ତନ ହୋଇଯାଇପାରେ । ଏପରି କି 'ପ୍ରଗତି' ବିଷୟରେ ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଯେପରି ଉତ୍ସାହ ଥିଲା, ଆଜି ସେପରି ନାହିଁ । ପୃଥିବୀବ୍ୟାପୀ ଯୁଦ୍ଧରେ ହେଲା ପରି ପ୍ରଗତି ଫଳରେ ଯଦି ଆମେ ବହୁଳ ଭାବରେ ପରସ୍ପରକୁ ଧ୍ୱଂସ କରିବାରେ ବ୍ରତୀ ହେଉ, ତେବେ ଏହି ପ୍ରଗତିରେ କିଛି ଦୋଷ ଅଛି ବୋଲି ବୁଝିବାକୁ ହେବ । ଆଉ ଏକ ବିଷୟ ମନେ ରଖିବାର କଥା ଯେ ଡାରୱିଇନ୍‌ଙ୍କର 'ଯେ ବଳୁଆ ସେ ବଞ୍ଚିବ' (Survival of the fittest) ଅର୍ଥ କିଛି ଉତ୍କୃଷ୍ଟ ଲୋକ ବଞ୍ଚିବା ନୁହେଁ । ଏହା କେବଳ ପଣ୍ଡିତ ଲୋକଙ୍କର କଳ୍ପନା । ଆମର ଦେଖିବାର କଥା ଯେ ଯେଉଁ ପୁରୁଣା ଓ ବ୍ୟାପକ ଧାରଣା ଥିଲା ଯେ ସମାଜ ସ୍ଥିର ଅପରିବର୍ତ୍ତନୀୟ ରହିଛି ଏବଂ ଏପରି କି ଅଧୋଗତି ଆଡ଼କୁ ଯାଉଛି, ଏହି ଧାରଣା ଥିବା ସମାଜକୁ ୧୯ଶ ଶତାବ୍ଦୀର ଆଧୁନିକ ବିଜ୍ଞାନ ଫୋପାଡ଼ି ଦେଇଛି ଏବଂ ତା ସ୍ଥାନରେ ଏକ କ୍ରିୟାଶୀଳ ଓ ପରିବର୍ତ୍ତନ-

ଶୀଳ ସମାଜର ଧାରଣା ଆସିଛି; ପ୍ରଗତି ଭାବ ବି ଆସିଛି । ବାସ୍ତବିକ ଏହି କାଳରେ ସମାଜର ଖୁବ୍ ପରିବର୍ତ୍ତନ ହୋଇଛି ।

ମୁଁ ତତେ ଡାର୍‌ଉଇନ୍‌ଙ୍କ 'ଜୀବନର ଜନ୍ମ ତଥ୍ୟ' ସମ୍ବନ୍ଧରେ କହିଲି । ଏହି ସମ୍ବନ୍ଧରେ ୨୫୦୦ ବର୍ଷ ପୂର୍ବେ ଜଣେ ଚୀନା ଦାର୍ଶନିକ କଣ ଲେଖିଥିଲେ ତାହା ଜାଣିବା ଲାଗି ତୋର ଆଗ୍ରହ ହେବ । ତାଙ୍କର ନାମ ହେଉଛି ସୌଁ-ସେ ଏବଂ ସେ ଖ୍ରୀଷ୍ଟପୂର୍ବ ୬ଷ୍ଠ ଶତାବ୍ଦୀରେ ବୁଦ୍ଧଙ୍କ ଥିବା ସମୟରେ ଲେଖିଥିଲେ:—

"ସମସ୍ତ ସଂଗଠନର ମୂଳ ହେଉଛି ଗୋଟିଏ ଜୀବଗୋଷ୍ଠୀ । ଏହି ଏକ ଜୀବ ଗୋଷ୍ଠୀ ଧୀରେ ଧୀରେ ଓ କ୍ରମାନ୍ୱୟେ ପରିବର୍ତ୍ତିତ ହୋଇ ଚାଲିଛି ଏବଂ ତାପରେ ବିଭିନ୍ନ ପ୍ରକାରର ସମସ୍ତ ଜୀବ ଜାତ ହୋଇଛନ୍ତି । ଏହିସବୁ ଗୋଷ୍ଠୀରେ ହଠାତ୍ ପୃଥକୀକରଣ କରାଯାଇ ପାରି ନ ଥିଲା; କିନ୍ତୁ ତା ପରିବର୍ତ୍ତେ ସେଗୁଡ଼ିକ କ୍ରମେ ପରିବର୍ତ୍ତନଦ୍ୱାରା ଯୁଗ ଯୁଗରେ ନିଜର ପାର୍ଥକ୍ୟ ଦର୍ଶାଇଦେଲା ।"

ଏହା ଡାର୍‌ଉଇନ୍‌ଙ୍କର ତଥ୍ୟ ସହିତ ବହୁତ ମିଳିଯାଉଛି ଏବଂ ପୃଥିବୀକୁ ଯେଉଁ ସିଦ୍ଧାନ୍ତ ଆବିଷ୍କାର କରିବା ନିମନ୍ତେ ହଜାର ହଜାର ବର୍ଷ ଲାଗିଲା, ତାହା ଏହି ପୁରାତନ ଚୀନା ଜୀବବିଜ୍ଞାନତତ୍ତ୍ୱବିତ୍ (Biologist) ଏତେ ଆଗରୁ ବୁଝିପାରିଥିଲେ ଦେଖି ଆଶ୍ଚର୍ଯ୍ୟ ବୋଧହୁଏ ।

୧୯ଶ ଶତାବ୍ଦୀର ପ୍ରଗତି ସଙ୍ଗେ ସଙ୍ଗେ ପରିବର୍ତ୍ତନର ଗତି ମଧ୍ୟ ଦ୍ରୁତତର ହେଲା । ବିଜ୍ଞାନ ଆଶ୍ଚର୍ଯ୍ୟ ଜିନିଷସବୁ ବାହାର କଲା ଏବଂ ଅସଂଖ୍ୟ ଆବିଷ୍କାର ଓ ଉଦ୍ଭାବନ ସମାରୋହ ଲୋକଙ୍କ ଆଖି ଝଲସାଇ ଦେଲା । ଟେଲିଗ୍ରାଫ୍, ଟେଲିଫୋନ, ମଟର ଓ ପୁଣି ପରେ ଉଡ଼ାଜାହାଜ ପରି ଆବିଷ୍କାରସବୁ ମନୁଷ୍ୟର ଜୀବନରେ ବହୁତ ପରିବର୍ତ୍ତନ ଆଣିଦେଲା । ବିଜ୍ଞାନ ସୁଦୂର ଆକାଶ, ଅଦୃଶ୍ୟ ଅଣୁ ପରମାଣୁ ଏବଂ ଏ ଦ୍ୱାର ଆହୁରି ଶ୍ରେଷ୍ଠ ଅଂଶସବୁ ମାପିବା ନିମନ୍ତେ ସାହସ କଲା । ଏହା ମନୁଷ୍ୟର ଶ୍ରମର କଠିନତା କମାଇଦେଲା ଏବଂ ଲକ୍ଷ ଲକ୍ଷ ଲୋକଙ୍କ ପକ୍ଷରେ ଜୀବନ ବଡ଼ ସହଜ କରିଦେଲା । ବିଜ୍ଞାନ ଯୋଗୁ ପୃଥିବୀରେ ବିଶେଷତଃ ଶିଳ୍ପୋନ୍ନତ ଦେଶମାନଙ୍କରେ ଲୋକସଂଖ୍ୟା ପ୍ରବଳ ଭାବରେ ବଢ଼ିଲା । ଏହା ସଙ୍ଗେ ସଙ୍ଗେ ଅତି ଦୋରସ୍ତ ଧ୍ୱଂସପ୍ରଣାଳୀ ମଧ୍ୟ ବିଜ୍ଞାନ ବାହାର କଲା । କିନ୍ତୁ ଏହା ବିଜ୍ଞାନର ଦୋଷ ନୁହେଁ । ଏହା ଫଳରେ ମଣିଷର ପ୍ରକୃତି ଉପରେ ଅଧିକାର ବଢ଼ିଲା ଏବଂ ଏହା କିପରି ବ୍ୟବହାର କରିବ ତାକୁ ଜଣା ନ ଥିଲା । ତେଣୁ ସେ ଅନେକ ସମୟରେ ଖରାପ ଆଚରଣ କରି ବିଜ୍ଞାନର ଦାନକୁ ନଷ୍ଟ କଲା । କିନ୍ତୁ ବିଜ୍ଞାନର ବିଜୟଯାତ୍ରା ଚାଲିଲା ଏବଂ ହଜାର ହଜାର ବର୍ଷ ପୂର୍ବରୁ ଯାହା ହୋଇଥିଲା ତାହା ଅପେକ୍ଷା ଅଧିକ ଭାବରେ ୧୫୦ ବର୍ଷ ଭିତରେ ଏହା ପୃଥିବୀକୁ ପରିବର୍ତ୍ତନ କରିଦେଲା । ବାସ୍ତବିକ ପ୍ରତ୍ୟେକ ଦିଗରେ ଏବଂ ଜୀବନର ପ୍ରତ୍ୟେକ ବିଭାଗରେ ବିଜ୍ଞାନ ଦୁନିଆରେ ବିପ୍ଳବ ଆଣିଛି ।

ବିଜ୍ଞାନର ଅଗ୍ରଗତି ଏବେ ବି ଚାଲିଛି ଏବଂ ଏହା ପୂର୍ବ ଅପେକ୍ଷା ଅଧିକ ବେଗରେ ଚାଲିଛି । ଏହା ପକ୍ଷରେ ବିଶ୍ରାମ ନାହିଁ । ରେଲ୍‌ଓ୍ୱେ ତିଆରି ହେଉଛି ଏବଂ ଏହା ଚାଲିବା ଲାଗି ପ୍ରସ୍ତୁତ ହେଲାବେଳକୁ ବହୁତ ପୁରୁଣା ପରି ମନେ ହେଉଛି । ଗୋଟିଏ ମେସିନ କିଣା ହୋଇ ଖଞ୍ଜାଯାଉଛି; କିନ୍ତୁ ବର୍ଷେ ବା ଦୁଇ ବର୍ଷ ଭିତରେ ତାହା ଅପେକ୍ଷା ଆହୁରି ଉନ୍ନତ ଧରଣର ଯନ୍ତ୍ରସବୁ ବାହାରି ପଡ଼ୁଛି । ଏହିରୂପେ ଉନ୍ନତ ପ୍ରତିଯୋଗିତା ଚାଲିଛି । ଆଜି ଆମ ଅମଳରେ ବାଷ୍ପ ବଦଳରେ ବିଦ୍ୟୁତ୍ ବ୍ୟବହାର ହେଲଣି—ଏହା ଠିକ୍ ଦେଢ଼ ଶତାବ୍ଦୀ ପୂର୍ବେ ହୋଇଥିବା ଶିଳ୍ପ ବିପ୍ଳବ ପରି ଏକ ବିପ୍ଳବ ଆଣି ଦେଇଛି ।

ବିଜ୍ଞାନର ଅସଂଖ୍ୟ ଶାଖା ଉପଶାଖାରେ ବହୁସଂଖ୍ୟକ ବୈଜ୍ଞାନିକ ଓ ବିଶେଷଜ୍ଞ କାର୍ଯ୍ୟ କରୁଛନ୍ତି । ଏମାନଙ୍କ ମଧ୍ୟରେ ଆଲ୍‌ବର୍ଟ ଆଇନ୍‌ଷ୍ଟାଇନଙ୍କ ନାମ ହେଉଛି ସର୍ବପ୍ରଧାନ —ସେ ନିଉଟନ୍‌ଙ୍କ ପ୍ରସିଦ୍ଧ ତଥ୍ୟକୁ କେତେକ ପରିମାଣରେ ସଂଶୋଧନ କରିବାରେ ସଫଳ ହୋଇଛନ୍ତି ।

ବିଜ୍ଞାନରେ ପ୍ରଗତି ଏପରି ହୋଇଛି ଏବଂ ବୈଜ୍ଞାନିକ ତଥ୍ୟରେ ଏପରି ପରିବର୍ତ୍ତନ ଓ ସଂଯୋଗସବୁ ହୋଇଛି ଯେ ବୈଜ୍ଞାନିକମାନେ ବି ଅବାକ୍ ହୋଇ ପଡ଼ିଛନ୍ତି । ସେମାନେ କୌଣସି ବିଷୟରେ ନିଶ୍ଚିତ ହେବାର ଗର୍ବ ଓ ତୃପ୍ତି ହରାଇଛନ୍ତି । ସେମାନେ ଏବେ ନିଜର କୌଣସି ସିଦ୍ଧାନ୍ତ ଦେବାକୁ ଏବଂ ଭବିଷ୍ୟତ୍ ବାଣୀ କରିବାକୁ ଦ୍ୱିଧା କରୁଛନ୍ତି ।

କିନ୍ତୁ ଏହା ବିଂଶ ଶତାବ୍ଦୀର କଥା—ଆମ ନିଜ ଅମଳର କଥା । ୧୯ଶ ଶତାବ୍ଦୀରେ ପୂର୍ଣ୍ଣ ନିର୍ଭରତା ଥିଲା ଏବଂ ଅସଂଖ୍ୟ ସଫଳତାରେ ଗର୍ବିତ ହୋଇ ବିଜ୍ଞାନ ଲୋକଙ୍କ ଉପରେ ନିଜକୁ ପ୍ରତିଷ୍ଠିତ କଲା ଏବଂ ଲୋକେ ଦେବତାରୂପେ ଏହା ପାଖରେ ବଶ୍ୟତା ସ୍ୱୀକାର କଲେ ।

## ୧୩୧ : ଗଣତନ୍ତ୍ରର ଅଗ୍ରଗତି

ଫେବୃୟାରୀ ୧୦, ୧୯୩୩

୧୯ଶ ଶତାବ୍ଦୀର ବୈଜ୍ଞାନିକ ପ୍ରଗତି ସମ୍ବନ୍ଧରେ ଭିଷତ୍ ଦୃଷ୍ଟି ଦେବା ଲାଗି ମୁଁ ଚେଷ୍ଟା କରିଛି । ଏହି ଶତାବ୍ଦୀର ଆଉ ଏକ ବିଭବ ପ୍ରତି ଦୃଷ୍ଟି ନିକ୍ଷେପ କରିବା—ତାହା ହେଉଛି ଗଣତନ୍ତ୍ର ମନୋଭାବର ବୃଦ୍ଧି ।

ଅଷ୍ଟାଦଶ ଶତାବ୍ଦୀର ଫ୍ରାନ୍‌ସରେ ମତର ସଂଘର୍ଷ ବିଷୟରେ ତତେ ମୁଁ କହିଥିଲି ମନେଥିବ; ସେ କାଳର ଜଣେ ମହାନ୍ ଭାବୁକ ଓ ଲେଖକ ଭଲ୍‌ଟେୟାର ଓ ଅନ୍ୟମାନେ ଧର୍ମ ଓ ସମାଜର ଅନେକ ପୁରୁଣା କଥାକୁ ଚ୍ୟାଲେଞ୍ଜ କଲେ ଏବଂ ସାହସ ସହକାରେ ନୂତନ ତଥ୍ୟର ଅବତାରଣା କଲେ । ସେତେବେଳେ ଏପରି ରାଜନୀତିକ ଚିନ୍ତା ଅଧିକ ଭାବରେ ଫ୍ରାନ୍‌ସରେ ସୀମାବଦ୍ଧ ଥିଲା । ଜର୍ମାନୀରେ ଦାର୍ଶନିକମାନେ ଦର୍ଶନର ଅଧିକ ଜଟିଳ ପ୍ରଶ୍ନରେ ଲାଗିପଡ଼ିଥିଲେ । ଇଂଲଣ୍ଡରେ ବେପାର ଓ ବାଣିଜ୍ୟ ବୃଦ୍ଧି ହେଉଥିଲା ଏବଂ ଅବସ୍ଥାଚକ୍ରରେ ବାଧ୍ୟ ନ ହେଲେ ଅଧିକାଂଶ ଲୋକ ଚିନ୍ତା କରିବାକୁ ଭଲ ପାଉ ନଥିଲେ । ଯାହାହେଉ ୧୮ଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ ବେଳକୁ ଇଂଲଣ୍ଡରେ ଏକ ସୁଖ୍ୟାତ ପୁସ୍ତକ ବାହାରିଲା । ଏହା ହେଉଛି ଆଡ଼ାମ୍ ସ୍ମିଥ୍‌ଙ୍କ 'ଦେଶମାନଙ୍କର ସମ୍ପତ୍ତି' (Wealth of Nations) । ଏହା ରାଜନୀତି ସମ୍ପର୍କରେ ନୁହେଁ, ବ୍ରାଜନୀତିକ ଅର୍ଥନୀତି ବା ଅର୍ଥନୀତି ସମ୍ବନ୍ଧରେ ଲେଖା । ସେ କାଳର ଅନ୍ୟସବୁ ବିଷୟ ପରି ଏଥିରେ ମଧ୍ୟ ଧର୍ମ ଓ ନୀତିଶାସ୍ତ୍ର ମିଶିଥିଲା ଏବଂ ଏହିରୂପେ ଏଥିରେ ବହୁଳ ଭାବରେ ଗୋଳମାଳିଆ ଅବସ୍ଥା ଥିଲା । ଆଡାମ୍-ସ୍ମିଥ୍ ବୈଜ୍ଞାନିକ ଭାବରେ ଏସବୁ ବିଚାର କଲେ ଏବଂ ସମସ୍ତ ନୈତିକ ଜଟିଳତା ପ୍ରତି ଦୃଷ୍ଟି ନ ଦେଇ ଅର୍ଥନୀତି ଯେଉଁ ପ୍ରାକୃତିକ ନିୟମାନୁସାରେ ଚାଲୁଛି ତାହା ବାହାର କରିବା ନିମନ୍ତେ ଉଦ୍ୟମ କଲେ । ତୁ ବୋଧହୁଏ ଜାଣୁ ଅର୍ଥନୀତି ଅର୍ଥ ହେଉଛି—କୌଣସି ଜାତି କିମ୍ବା ସମଗ୍ର ଦେଶର ଆୟ ଓ ବ୍ୟୟର ପରିଚାଳନା; ସେମାନେ କଣ ଉତ୍ପାଦନ କରନ୍ତି ଓ କଣ ଖରଚ କରନ୍ତି ଏବଂ ପରସ୍ପର ସହିତ, ଅନ୍ୟ ଦେଶ ଓ ଦେଶବାସୀଙ୍କ ସହିତ କି ସମ୍ପର୍କ ରହିଛି—ଏହା ଦର୍ଶାଇଦେବା । ଆଡାମ୍ ସ୍ମିଥ୍ ବିଶ୍ୱାସ କରୁଥିଲେ ଯେ କେତେକ ସ୍ଥିରୀକୃତ ସ୍ୱାଭାବିକ ନିୟମ ଅନୁସାରେ ଏହିସବୁ ଜଟିଳ କାର୍ଯ୍ୟମାନ ଘଟୁଛି ଏବଂ ତାଙ୍କ ପୁସ୍ତକରେ ସେ ଏହା ଲେଖିଦେଲେ । ସେ ମଧ୍ୟ ବିଶ୍ୱାସ କରୁଥିଲେ ଯେ ଶିଳ୍ପ ଉନ୍ନତି ପାଇଁ ପୂର୍ଣ୍ଣ ସ୍ୱାଧୀନତା ଦେବା ଦରକାର—ତାହାହେଲେ ଏହି ନିୟମରେ କୌଣସି ବାଧା ପଡ଼ିନଥିବ ନାହିଁ । 'ଲେସେଜ୍ ଫେୟାର୍' ତତ୍ତ୍ୱର ଏହା ହେଲା ଆରମ୍ଭ—ଏ ସମ୍ବନ୍ଧରେ ମୁଁ ତତେ କିଛି ଆଗରୁ କହିଛି । ସେତେବେଳେ ଫ୍ରାନ୍‌ସରେ ଯେଉଁ ନୂତନ ଗଣତନ୍ତ୍ର ଭାବ ଜାଗରୂକ ହୋଇଥିଲା, ତାହା ସହିତ ଆଡ଼ାମ୍ ସ୍ମିଥ୍‌ଙ୍କ ପୁସ୍ତକର କୌଣସି ସମ୍ପର୍କ ନାହିଁ । କିନ୍ତୁ ମନୁଷ୍ୟ ଓ ଦେଶମାନଙ୍କୁ ସ୍ପର୍ଶ କରୁଥିବା ଅତି ଗୁରୁତର ସମସ୍ୟାର ସେ ସେ ବୈଜ୍ଞାନିକ ଉପାୟରେ ସମାଧାନ କରିବାକୁ ଉଦ୍ୟମ କଲେ, ସେଥିରୁ ମଣିଷ ସେ ନୂଆ ବାଟରେ ଯାଉଛି ଏହା ସ୍ପଷ୍ଟ ହୁଏ—ପ୍ରତ୍ୟେକ କଥାକୁ ପୁରୁଣା ପରମାର୍ଥୀ ଧରଣରେ ଦେଖିବାଠାରୁ ଏହା ସମ୍ପୂର୍ଣ୍ଣ ପୃଥକ୍ । ଅର୍ଥନୀତି ବିଜ୍ଞାନର ପିତା ରୂପେ ଆଡାମ୍ ସ୍ମିଥ୍‌ଙ୍କୁ ଗଣ୍ୟ କରାଯାଏ ଏବଂ ୧୯ଶ ଶତାବ୍ଦୀର ଅନେକ ଇଂରେଜ ଅର୍ଥନୀତିଜ୍ଞ ତାଙ୍କଠାରୁ ପ୍ରେରଣା ଲାଭ କରିଛନ୍ତି ।

ନୂତନ ଅର୍ଥନୀତି ବିଜ୍ଞାନ ଅଧ୍ୟାପକ ଓ କେତେକ ସୁଶିକ୍ଷିତ ଲୋକଙ୍କ ଭିତରେ

ସୀମାବଦ୍ଧ ଥିଲି । କିନ୍ତୁ ଏଥି ଭିତରେ ଗଣତନ୍ତ୍ରର ନୂତନ ଭାବ ପ୍ରସାର ଲାଭ କଲି ଏବଂ ଆମେରିକା ଓ ଫରାସୀ ବିପ୍ଳବରେ ଏହା ଅଦ୍ଭୁତ ପ୍ରକାରେ ଲୋକପ୍ରିୟ ଓ ବାଞ୍ଛିତ ହୋଇ ଗଲା । ଆମେରିକାର ସ୍ୱାଧୀନତା ଘୋଷଣା ପତ୍ର ଓ ଫରାସୀ ଦାବୀ ଘୋଷଣା ପତ୍ରର ସୁଶ୍ରାବ୍ୟ ଶବ୍ଦ ଓ ବାକ୍ୟାବଳୀ ଲୋକଙ୍କ ଅନ୍ତରରେ ଆଲୋଡ଼ନ ସୃଷ୍ଟି କଲା । ଦଳିତ ଓ ଲୁଣ୍ଠିତ ହେଉଥିବା ଲକ୍ଷ ଲକ୍ଷ ଲୋକଙ୍କ ମନରେ ଏକ ରୋମାଞ୍ଚ ସୃଷ୍ଟି କଲା ଓ ମୁକ୍ତିବାଣୀ ଆଣି ଦେଲା । ଉଭୟ ଘୋଷଣା ପତ୍ରରେ ସ୍ୱାଧୀନତା, ସମାନତା ଓ ସୁଖୀ ହେବାର ଅଧିକାର ପ୍ରତ୍ୟେକ ଲୋକର ଅଛି ବୋଲି କୁହାହୋଇଥିଲା । ଏହି ମୂଲ୍ୟବାନ ଦାବୀ ଘୋଷଣା ହୋଇଯିବାଦ୍ୱାରା ଯେ ଲୋକେ ଏହା ପାଇଗଲେ ତାହା ନୁହେଁ । ଆଜି ସୁଦ୍ଧା ଏହି ଘୋଷଣା ହେବାର ଦେଢ଼ ଶତାବ୍ଦୀ ପରେ ଖୁବ୍ କମ୍ ଲୋକ ଏହା ଉପଭୋଗ କରି ପାରୁଛନ୍ତି । କିନ୍ତୁ ଏହି ନୀତି ବିସ୍ଥାନ ବି ସେତେବେଳେ ଅସାଧାରଣ ଓ ପ୍ରାଣ-ସଞ୍ଚାରକ ଥିଲା ।

ଅନ୍ୟ ସ୍ଥାନ ପରି ଇଉରୋପରେ ଅନ୍ୟ ସବୁ ଧର୍ମରେ ଯେପରି ଥାଏ, ଖ୍ରୀଷ୍ଟ-ଧର୍ମରେ ମଧ୍ୟ ସେହିପରି ପୁରୁଣା ଧାରଣା ପ୍ରଚଳିତ ଥିଲା ଯେ ପାପ ଓ ଅସୁଖ ମନୁଷ୍ୟ ଜୀବନରେ ସାଧାରଣ ଓ ଅନିବାର୍ଯ୍ୟ ଘଟଣା । ଦୁନିଆରେ ଦାରିଦ୍ର୍ୟ ଓ ଦୁର୍ଦ୍ଦଶାକୁ ଏକ ସ୍ଥାୟୀ ଓ ସମ୍ମାନଜନକ ସ୍ଥାନ ଧର୍ମ ଦେଲା ପରି ମନେ ହେଉଥିଲା । ଧର୍ମର ସମସ୍ତ ସୁଖ ଓ ପୁରସ୍କାର ପର ଜଗତ ପାଇଁ ରଖାଯାଇଥାଏ । ଆମକୁ କୁହାଯାଏ ଯେ ଈଶ୍ୱରଙ୍କ ଉପରେ ଭରସା ରଖି ଏହା ସହ୍ୟ କରିଯାଅ ଏବଂ କୌଣସି ମୌଳିକ ପରିବର୍ତ୍ତନ ଲାଗି ଚେଷ୍ଟା କର ନାହିଁ । ଦାତାପଣିଆ ଉତ୍ସାହିତ କରାଯାଏ—ଗରିବକୁ ଟିକିଟାକି ସବୁ ଦିଅ—କିନ୍ତୁ ଦାରିଦ୍ର୍ୟ ଅଥବା ଯେଉଁ ବ୍ୟବସ୍ଥା ପରିଣାମ ହେତୁ ଦାରିଦ୍ର୍ୟ ଉପୁଜୁଛି, ତାହା ଦୂର କରିବାର କୌଣସି ଧାରଣା ନ ଥିଲା । ସ୍ୱାଧୀନତା ଓ ସମାନତାର ଭାବ ଧର୍ମସଂସ୍ଥା ଓ ସମାଜର ପ୍ରଭୁତ୍ୱ-ବ୍ୟଞ୍ଜକ ଦୃଷ୍ଟିକୋଣର ସମ୍ପୂର୍ଣ୍ଣ ବିରୋଧୀ ।

ଗଣତନ୍ତ୍ର ଅବଶ୍ୟ କହୁ ନ ଥିଲା ଯେ ପ୍ରକୃତରେ ସବୁ ମଣିଷ ସମାନ । ଏହା ଏପରି କହିପାରନ୍ତା ନାହିଁ; କାରଣ ବିଭିନ୍ନ ଲୋକ ଭିତରେ ଯେ ଅସମାନତା ରହିଛି ଏହା ପରିଷ୍କାର । ଦୈହିକ ଅସମାନତା ଫଳରେ କେତେକ ଦୁର୍ବଳ ଓ ସବଳ ଅଛନ୍ତି, ମାନସିକ ଅସମାନତା ହେତୁ କେତେ ଲୋକ ଅନ୍ୟମାନଙ୍କ ଅପେକ୍ଷା ଅଧିକ ଦକ୍ଷ ଓ ଜ୍ଞାନୀ ହୁଅନ୍ତି ଏବଂ ନୈତିକ ଅସମାନତା ଫଳରେ କେତେକ ନିଃସ୍ୱାର୍ଥପର ହୁଅନ୍ତି ଏବଂ ଅନ୍ୟ-ମାନେ ହୁଅନ୍ତି ନାହିଁ । ଏହା ସମ୍ପୂର୍ଣ୍ଣ ସମ୍ଭବ ଯେ ବିଭିନ୍ନ ପ୍ରକାର ଲାଳନପାଳନ, ଶିକ୍ଷା କିମ୍ବା ଶିକ୍ଷା ଅଭାବ ହେତୁ ଏହିସବୁ ବୈଷମ୍ୟ ଘଟୁଛି । ଦୁଇଜଣ ବାଳକ ବା ବାଳିକାଙ୍କୁ ନିଅ—ଉଭୟଙ୍କର ସମାନ ଦକ୍ଷତା ରହିଛି । ଜଣକୁ ଶିକ୍ଷା ଦିଅ ଏବଂ ଜଣକୁ ଶିକ୍ଷା ଦିଅ ନାହିଁ—କେତେବର୍ଷ ପରେ ଦେଖିବ ଦୁହିଁଙ୍କ ଭିତରେ ବହୁତ ପାର୍ଥକ୍ୟ ହୋଇଯାଇଛି । ଅଥବା ଜଣକୁ ସ୍ୱାସ୍ଥ୍ୟକର ଖାଦ୍ୟ ଦିଅ, ଅନ୍ୟକୁ ଖରାପ ଓ ଅପର୍ଯ୍ୟାପ୍ତ ଖାଦ୍ୟ ଦିଅ; ଜଣେ

ଠିକ୍‌ରୂପେ ବଢ଼ିବ ଏବଂ ଅନ୍ୟ ଜଣକ ଦୁର୍ବଳ, ରୁଗ୍‌ଣ ଓ ଅବିକଶିତ ରହିବ । ତେଣୁ ଜଣକର ଲାଳନପାଳନ ପାରିପାର୍ଶ୍ୱିକ ଅବସ୍ଥା, ଶିକ୍ଷା ଓ ବିଦ୍ୟା ଯଥେଷ୍ଟ ପାର୍ଥକ୍ୟ କରିବ ଏବଂ ଆମେ ଯଦି ପ୍ରତ୍ୟେକ ଲୋକଙ୍କୁ ସମାନ ଶିକ୍ଷା ଓ ସୁଯୋଗ ଦେଉ, ତେବେ ଆଜି ଯେପରି ଅଛି ତାହା ଅପେକ୍ଷା ବହୁତ୍ କମ ବୈଷମ୍ୟ ରହିବ । ଏହା ପ୍ରକୃତରେ ହେବା ଖୁବ୍ ସମ୍ଭବ । କିନ୍ତୁ ଗଣତନ୍ତ୍ର ସମ୍ପର୍କରେ କହିବାକୁ ଗଲେ ପ୍ରଥ ମଣିଷ ମାନଙ୍କେ ଯେ ଅସମାନ ଏହା ସ୍ୱୀକାର କରେ ଏବଂ ତଥାପି ଏହା କହିଲା ଯେ ପ୍ରତ୍ୟେକ ଲୋକର ସମାନ ରାଜନୀତିକ ଓ ସାମାଜିକ ସ୍ଥାନ ଥିବା ପରି ବ୍ୟବହାର କରିବାକୁ ହେବ । ଏହି ଗଣତାନ୍ତ୍ରିକ ତଥ୍ୟକୁ ଆମେ ଯଦି ପୂରାପୂରି ଗ୍ରହଣ କରିବା, ତାହାହେଲେ ଆମେ ନାନା ପ୍ରକାର ବୈପ୍ଳବିକ ସିଦ୍ଧାନ୍ତରେ ଉପନୀତ ହେବା । ବର୍ତ୍ତମାନ ଆମେ ଏହିରୁ ଭିତରକୁ ଯିବା ନାହିଁ; କିନ୍ତୁ ଏହି ତଥ୍ୟର ଗୋଟିଏ ସ୍ପଷ୍ଟ ପରିଣତି ହେଉଛି ଶାସନ ବ୍ୟବସ୍ଥା ସଭା ବା ପାର୍ଲିଆ-ମେଣ୍ଟକୁ ଜଣେ ସଭ୍ୟ ନିର୍ବାଚନ କରିବାରେ ପ୍ରତ୍ୟେକ ଲୋକର ଭୋଟ କ୍ଷମତା ରହିବା ଦରକାର । ଭୋଟ ହେଉଛି ରାଜନୀତିକ ଅଧିକାରର ପ୍ରତୀକ ଏବଂ ଏହା ଧରି ନିଆଯାଉଥିଲା ଯେ, ଯଦି ପ୍ରତ୍ୟେକ ଲୋକର ଭୋଟ କ୍ଷମତା ରହିଲା, ତେବେ ରାଜନୀତିକ କ୍ଷମତାରେ ପ୍ରତ୍ୟେକର ସମାନ ଭାଗ ରହିଲା । ତେଣୁ ୧୯ଶ ଶତାବ୍ଦୀ ସାରା ଗଣତନ୍ତ୍ରର ପ୍ରଧାନ ଦାବୀ ଭିତରୁ ଗୋଟିଏ ଥିଲା ଭୋଟାଧିକାରକୁ ବ୍ୟାପକ କରିବା ନିମନ୍ତେ । ସାବାଳକ ଭୋଟାଧିକାର ଅର୍ଥ ହେଉଛି ପ୍ରତ୍ୟେକ ସାବାଳକ ବା ବୟସ୍କ ଲୋକର ଭୋଟଦେବା କ୍ଷମତା ରହିବ । ଅନେକ ଦିନ ପର୍ଯ୍ୟନ୍ତ ସ୍ତ୍ରୀଲୋକମାନଙ୍କୁ ଭୋଟ ଦେବାକୁ ଅନୁମତି ଦିଆଯାଉ ନ ଥିଲା ଏବଂ ଖୁବ୍ ବେଶି ଦିନର କଥା ନୁହେଁ—ବିଶେଷତଃ ବ୍ରିଟେନ୍ ସ୍ତ୍ରୀଲୋକମାନେ ଏଥିଲାଗି ଗୋଟାଏ ପ୍ରବଳ ଆନ୍ଦୋଳନ ଚଳାଇଥିଲେ । ଅଧିକାଂଶ ଉନ୍ନତ ଦେଶମାନଙ୍କରେ ଏବେ ନରନାରୀ ସମସ୍ତଙ୍କର ସାବାଳକ ଭୋଟାଧିକାର ରହିଛି ।

କିନ୍ତୁ ବିଚିତ୍ର କଥା, ଅଧିକାଂଶ ଲୋକ ଭୋଟ ଅଧିକାର ପାଇଲା ପରେ ଦେଖିଲେ ଯେ, ଏଥିରେ ତାଙ୍କର ବିଶେଷ କିଛି ପ୍ରଭେଦ ହେଲା ନାହିଁ । ଭୋଟ ଥିବା ସତ୍ତ୍ୱେ ଷ୍ଟେଟ୍ ବା ସରକାରରେ ତାଙ୍କର କିଛି ଅଧିକାର ନ ଥିଲା ବା ଅତି ଅଳ୍ପ ଅଧିକାର ଥିଲା । କ୍ଷୁଧିତ ଲୋକ ପାଖରେ ଭୋଟର କିଛି ମୂଲ୍ୟ ନାହିଁ । ଯେଉଁମାନେ ତାର ଏହି କ୍ଷୁଧାର ସୁବିଧା ଉଠାଇ ଏବଂ ନିଜର ସୁବିଧା ସକାଶେ ଯେପରି ଇଚ୍ଛା କରନ୍ତି, ସେପରି ତାଠାରୁ କାର୍ଯ୍ୟ ଆଦାୟ କରନ୍ତି, ସେହି ଲୋକଙ୍କ ହାତରେ ହିଁ ପ୍ରକୃତ କ୍ଷମତା ଥାଏ । ତେଣୁ ଭୋଟ ଯେଉଁ ରାଜନୀତିକ କ୍ଷମତା ହେବ ବୋଲି ମନେ କରାଯାଉଥିଲା, ତାହା ଅର୍ଥନୀତିକ କ୍ଷମତା ବ୍ୟତିରେକେ ଛାୟା ମାତ୍ର ଦେଖାଗଲା—ଏଥିରେ ସାରାଂଶ ନାହିଁ । ଆଦିମ ଗଣତନ୍ତ୍ର-ବାଦୀମାନଙ୍କର ଯେଉଁ ସ୍ୱପ୍ନ—ଭୋଟ ପାଇଲେ ସମାନତା ଆସିଯିବ—ତାହା ନିରର୍ଥକ ହେଲା ।

ଏହା ଅବଶ୍ୟ ଅନେକ ଦୂରର କଥା । ୧୮ଶ ଶତାବ୍ଦୀର ଶେଷ ଓ ୧୯ଶ

ଶତାବ୍ଦୀର ଆରମ୍ଭ—ପ୍ରଥମାବସ୍ଥାରେ ଗଣତନ୍ତ୍ରବାଦୀଙ୍କ ଭିତରେ ଖୁବ୍ ଉତ୍ସାହ ଥିଲା। ଗଣତନ୍ତ୍ର ପ୍ରତ୍ୟେକ ବ୍ୟକ୍ତିକୁ ସ୍ୱାଧୀନ ଓ ସମାନ ନାଗରିକ କରିଦେବ ଏବଂ ରାଷ୍ଟ୍ରର ସରକାର ପ୍ରତ୍ୟେକ ଲୋକର ସୁଖପାଇଁ କାର୍ଯ୍ୟ କରିବ। ୧୮ଶ ଶତାବ୍ଦୀର ରାଜା ଓ ସରକାରଙ୍କର ଏକଚ୍ଛତ୍ର ଶାସନ ଏବଂ ଯେଉଁ ପ୍ରକାରେ ସେମାନେ ତାଙ୍କର ଅଖଣ୍ଡ କ୍ଷମତାର ପ୍ରୟୋଗ କଲେ, ତାର ଭୀଷଣ ପ୍ରତିକ୍ରିୟା ହୋଇଥିଲା। ତେଣୁ ବ୍ୟକ୍ତିବିଶେଷର ଅଧିକାର ସମ୍ବନ୍ଧରେ ଘୋଷଣାପତ୍ର କରିବା ଦରକାର ହେଲା। ସମ୍ଭବତଃ ବ୍ୟକ୍ତିବିଶେଷର ଅଧିକାର ଆମେରିକା ଓ ଫରାସୀ ଘୋଷଣାପତ୍ରରେ ଏକପ୍ରକାର ଭୁଲିହୋଇ ଅନ୍ୟ ଆଡ଼କୁ ଚାଲିଗଲା। ଠିକ୍ ଜଟିଳ ସମାଜରେ ବ୍ୟକ୍ତିବିଶେଷଙ୍କୁ ଅଲଗା କରିବା ଏବଂ ସେମାନଙ୍କୁ ପୂର୍ଣ୍ଣ ସ୍ୱାଧୀନତା ଦେବା କିଛି ସହଜ କଥା ନୁହେଁ। ଏପରି ବ୍ୟକ୍ତିବିଶେଷ ଓ ସମାଜର ସ୍ୱାର୍ଥ ଭିତରେ ସଂଘର୍ଷ ହୋଇପାରେ ଏବଂ ହୁଏ ମଧ୍ୟ। ସେ ଯାହାହେଉ, ପଛକେ ଗଣତନ୍ତ୍ର ବହୁ ପରିମାଣରେ ବ୍ୟକ୍ତି ସ୍ୱାଧୀନତା ଲାଗି ଦାବୀ କରୁଥିଲା।

୧୮ଶ ଶତାବ୍ଦୀର ରାଜନୀତିକ ଭାବନାରେ ଇଂଲଣ୍ଡ ପଛରେ ପଡ଼ିଥିଲା—ଆମେରିକା ଓ ଫରାସୀ ବିପ୍ଳବର ଆଞ୍ଚ ଏଥିରେ ବାଜିଲା। ପ୍ରଥମ ପ୍ରତିକ୍ରିୟା ହେଲା ନୂତନ ଗଣତାନ୍ତ୍ରିକ ଭାବଧାରା ପ୍ରତି ଭୟ ଏବଂ ନିଜ ଦେଶରେ ସାମାଜିକ ବିପ୍ଳବ ଘଟିବାର ସମ୍ଭାବନା ଆଶଙ୍କା। ଶାସକଶ୍ରେଣୀ ଅଧିକ ରକ୍ଷଣଶୀଳ ଓ ପ୍ରତିକ୍ରିୟାପନ୍ଥୀ ହେଲେ। କିନ୍ତୁ ତଥାପି ନୂତନ ଭାବଧାରା ଶିକ୍ଷିତ ଲୋକଙ୍କ ଭିତରେ ବିସ୍ତାର ଲଭିଲା। ଏହି ସମୟରେ ଥମାସ୍ ପେନ ଏକ ମହାନ ଇଂରେଜ ଥିଲେ। ସେ ସ୍ୱାଧୀନତା ଯୁଦ୍ଧବେଳେ ଆମେରିକାରେ ଥିଲେ ଏବଂ ଆମେରିକାବାସୀଙ୍କୁ ସାହାଯ୍ୟ କରିଥିଲେ। ଆମେରିକାବାସୀଙ୍କୁ ପୂର୍ଣ୍ଣ ସ୍ୱାଧୀନତା ଦିଗରେ ପରିବର୍ତ୍ତିତ କରିବାରେ ସେ ଆଂଶିକ ଭାବରେ ଦାୟୀ। ଇଂଲଣ୍ଡକୁ ଫେରି ସେ ମଣିଷର ଅଧିକାର (The rights of man) ନାମକ ପୁସ୍ତକ ଲେଖିଲେ ଏବଂ ଯେତେବେଳେ ଫରାସୀ ବିପ୍ଳବ ଆରମ୍ଭ ହୋଇଥାଏ, ତାର ସମର୍ଥନ ସେଥିରେ କଲେ। ଏହି ବହିରେ ସେ ରାଜତନ୍ତ୍ର ଉପରେ ଆକ୍ରମଣ କଲେ ଓ ଗଣତନ୍ତ୍ର ପାଇଁ ଦାବୀ କଲେ। ଏହି କାରଣରୁ ବ୍ରିଟିଶ ସରକାର ତାଙ୍କୁ ନିର୍ବାସିତ କଲା ଏବଂ ସେ ଫ୍ରାନ୍ସକୁ ପଳାଇଗଲେ। ପାରିସରେ ଅତିଶୀଘ୍ର ସେ ଜାତୀୟ କନ୍‌ଭେନ୍‌ସନର ସଭ୍ୟ ହୋଇ ପଡ଼ିଥିଲେ। ସେ ଷୋଡ଼ଶ ଲୁଇଙ୍କୁ ଫାଶି ଦେବା ବିରୁଦ୍ଧରେ ମତ ଦେଇଥିବା କାରଣରୁ ୧୭୯୩ରେ ଜାକୋବିନ୍‌ମାନେ ତାଙ୍କୁ ଜେଲରେ ପୁରାଇଲେ। ପାରିସ ଜେଲରେ ସେ 'ବିବେଚନା ଯୁଗ' (The age of Reason) ନାମକ ଆଉ ଏକ ପୁସ୍ତକ ଲେଖିଥିଲେ—ଏଥିରେ ସେ ଧାର୍ମିକ ଦୃଷ୍ଟିକୋଣର ସମାଲୋଚନା କରିଥିଲେ। ଇଂରେଜ ଅଦାଲତ ପାଖରେ ପେନଙ୍କୁ ହାଜର କରାଯିବା ସମ୍ଭବ ନ ଥିବାରୁ ଏହି ବହି ବାହାର କରିଥିବା ହେତୁ ଇଂରେଜ ପ୍ରକାଶକଙ୍କୁ ଜେଲ ଦଣ୍ଡ ଦିଆଗଲା। (ରବସ୍ପିୟରଙ୍କ ମୃତ୍ୟୁପରେ ତାଙ୍କୁ ପାରିସ ଜେଲରୁ ଖଲାସ କରି ଦିଆଗଲା।) ସମାଜ ପକ୍ଷରେ ଏପରି ପୁସ୍ତକ ବିପଜ୍ଜନକ ବୋଲି

ମନେ କରିଗଲା, କାରଣ ଗଣତନ୍ତ୍ରକୁ ତାର ଯଥାସ୍ଥାନରେ ରଖିବା ନିମନ୍ତେ ଧର୍ମର ଆବଶ୍ୟକତା ଥିଲା । ପେନଙ୍କ ବହିର କେତେକ ପ୍ରକାଶକ—ଏଥିରେ ସ୍ତ୍ରୀଲୋକ ବି ଥିଲେ —ଜେଲକୁ ପଠାଗଲେ । ଆହୁରି ମଜାର କଥା ଯେ କବି ସେଲି ପ୍ରତିବାଦ କରି ବିଚାରପତିଙ୍କ ପାଖକୁ ଏକ ଚିଠି ଲେଖିଥିଲେ ।

୧୯ଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଇଉରୋପରେ ଯେଉଁ ଗଣତନ୍ତ୍ର ଭାବଧାରାର ପ୍ରସାର ହେଲା, ଫରାସୀ ବିପ୍ଳବ ହିଁ ଥିଲା ତାର ଜନ୍ମଦାତା । ବାସ୍ତବିକ ଅବସ୍ଥା ଦ୍ରୁତବେଗରେ ପରିବର୍ତ୍ତିତ ହେଲେ ସୁଦ୍ଧା ବିପ୍ଳବର ଭାବ ଲାଗିରହିଲା । ଏହିସବୁ ଗଣତାନ୍ତ୍ରିକ ଭାବଧାରା ହେଉଛି ରାଜା ଓ ଏକଛତ୍ର ଶାସନ ବିରୁଦ୍ଧରେ ବୌଦ୍ଧିକ ପ୍ରତିକ୍ରିୟା । ଏଗୁଡ଼ିକ ଶିଳ୍ପୋଦ୍ୟୋଗ ହେବାର ପୂର୍ବ ଅବସ୍ଥା ଉପରେ ପ୍ରତିଷ୍ଠିତ । କିନ୍ତୁ ନୂତନ ଶିଳ୍ପ— ବାଷ୍ପ ଓ ବଡ଼ ମେସିନ୍ ଯୋଗୁଁ ପୁରାତନ ବ୍ୟବସ୍ଥା ସମ୍ପୂର୍ଣ୍ଣରୂପେ ଓଲଟ ପାଲଟ ହୋଇଗଲା । ଅଥଚ ଆଶ୍ଚର୍ଯ୍ୟ କଥା, ୧୯ଶ ଶତାବ୍ଦୀର ପ୍ରଥମ ଭାଗରେ ଅଗ୍ରଗାମୀଦଳ ଓ ଗଣତନ୍ତ୍ରବାଦୀମାନେ ଏହି ପରିବର୍ତ୍ତନ ପ୍ରତି ଦୃଷ୍ଟି ଦେଲେ ନାହିଁ ଏବଂ ବିପ୍ଳବ ଓ ମନୁଷ୍ୟ ଅଧିକାର ଘୋଷଣାପତ୍ରରେ ଥିବା ସୁନ୍ଦର ବାକ୍ୟାବଳୀ ସମ୍ବନ୍ଧରେ କହିବାକୁ ଲାଗିଲେ । ତାଙ୍କୁ ବୋଧହୁଏ ମନେହେଲା ଏହିସବୁ ପରିବର୍ତ୍ତନ କେବଳ ଭୌତିକ ଏବଂ ଗଣତନ୍ତ୍ରର ଉଚ୍ଚ ଆଧ୍ୟାତ୍ମିକ, ନୈତିକ ଓ ରାଜନୀତିକ ଦାବୀକୁ ସ୍ପର୍ଶ କରି ନାହିଁ । କିନ୍ତୁ ଭୌତିକ ଜିନିଷ ଏପରି ଭାବରେ ଗତିକରେ, ତାହା ଅବହେଳା କରି ହୁଏନା । ଆହୁରି ଦେଖିବାର କଥା, ପୁରୁଣା ଧାରଣାକୁ ଛାଡ଼ି ନୂତନ ଭାବଧାରା ଗ୍ରହଣ କରିବା ଲୋକଙ୍କ ପକ୍ଷରେ କିପରି ଅସାଧାରଣ ଭାବରେ କଷ୍ଟକର ହୋଇପଡ଼େ । ସେମାନେ ତାଙ୍କ ଆଖି ଓ ମନକୁ ବନ୍ଦ କରି ଦିଅନ୍ତି ଏବଂ ବୁଝିବାକୁ ମନା କରନ୍ତି; ପୁରୁଣା ଭାବନା ତାଙ୍କର କ୍ଷତି କରୁଥିଲେ ସୁଦ୍ଧା ତାକୁ ରକ୍ଷା କରିବା ନିମନ୍ତେ ଲାଗିଥାନ୍ତି । ସେମାନେ ପ୍ରାୟ ସବୁ କାମ କରିବେ; କିନ୍ତୁ ନୂତନ ଭାବଧାରା ଗ୍ରହଣ କରିବେ ନାହିଁ ଓ ନୂତନ ଅବସ୍ଥା ସହ ଖାପ ଖୁଆଇ ଚଳିବେ ନାହିଁ । ରକ୍ଷଣଶୀଳତାର କ୍ଷମତା ଅତି ପ୍ରକାଣ୍ଡ । ଏପରି ଅଗ୍ରପନ୍ଥୀମାନେ, ଯେଉଁମାନେ ନିଜକୁ ଖୁବ୍ ଉନ୍ନତ ବୋଲି ବିଚାରନ୍ତି, ଅନେକ ସମୟରେ ପୁରୁଣା ଓ ପରିତ୍ୟକ୍ତ ଭାବଧାରାକୁ ଧରି ବସନ୍ତି ଏବଂ ପରିବର୍ତ୍ତିତ ଅବସ୍ଥା ପ୍ରତି ନଜର ପକାନ୍ତି ନାହିଁ; ତେଣୁ ପ୍ରଗତି ଯେ ମନ୍ଥର ହେଉଛି, ଏଥିରେ ଆଶ୍ଚର୍ଯ୍ୟ କିଛି ନାହିଁ ଏବଂ ଅନେକ ସମୟରେ ପ୍ରକୃତ ଅବସ୍ଥା ଓ ଲୋକଙ୍କ ଭାବଧାରା ଭିତରେ ବହୁ ପାର୍ଥକ୍ୟ ରହିଯାଏ—ଏହା ଫଳରେ ବୈପ୍ଳବିକ ପରିସ୍ଥିତି ଉପୁଜେ ।

ଏହିରୂପେ ଅନେକ ଶତାବ୍ଦୀ ପର୍ଯ୍ୟନ୍ତ ଗଣତନ୍ତ୍ର ବୋଇଲେ ଫରାସୀ ବିପ୍ଳବର ଭାବଧାରା ଓ ରୀତି ବୁଝାଉଥିଲା । ନୂତନ ଅବସ୍ଥା ସହିତ ଖାପ ଖୁଆଇବାରେ ଅସମର୍ଥ ହେବାରୁ ଏହି ଶତାବ୍ଦୀ ଶେଷ ବେଳକୁ ଗଣତନ୍ତ୍ର ଦୁର୍ବଳତର ହେଲା ଏବଂ ପରେ ଧ୍ୱଂସ

ଶତାବ୍ଦୀରେ ଅନେକ ଲୋକ ଏହାକୁ ପରିତ୍ୟାଗ କଲେ । ଆଜି ସୁଦ୍ଧା ଆମ ଭାରତରେ ଅନେକ ଉନ୍ନତ ରାଜନୀତିଜ୍ଞ ଫରାସୀ ବିପ୍ଳବ ଓ ମାନବର ଅଧିକାର ଆଦି ଭାଷାରେ କଥା କହନ୍ତି; କିନ୍ତୁ ସେହିଦିନୁ ଯେ ପରିବର୍ତ୍ତନ ହୋଇଗଲାଣି, ସେଥିପ୍ରତି ସେମାନଙ୍କର ଦୃଷ୍ଟି ନାହିଁ ।

• ପ୍ରଥମ ଗଣତନ୍ତ୍ରବାଦୀମାନେ ହେତୁବାଦ ଗ୍ରହଣ କରିବା ସ୍ୱାଭାବିକ । ଚିନ୍ତା ଓ ବାଣୀର ସ୍ୱାଧୀନତା ଦାବୀ ସହି ଧର୍ମ ଓ ନୀତିଶାସ୍ତ୍ର କେବେହେଁ ମେଳ ହୋଇପାରିବ ନାହିଁ । ବାଇବେଲକୁ ଲୋକେ ପରୀକ୍ଷା କରିବାକୁ ସାହସ କଲେ—ଏହା ସତେ ଯେପରି ଏକ ସାଧାରଣ ପୁସ୍ତକ ଏବଂ ଅନ୍ଧଭାବରେ ଓ ପ୍ରଶ୍ନ ନ କରି ଏହାକୁ ଗ୍ରହଣ କରିନେବା ଭାବ ଲୋକଙ୍କର ଚାଲିଗଲା । ବାଇବେଲର ଏପରି ସମାଲୋଚନାକୁ "ଉଚ୍ଚତର ସମାଲୋଚନା" ବୋଲି କହନ୍ତି । ସମାଲୋଚକମାନେ ଏହି ସିଦ୍ଧାନ୍ତରେ ପହଞ୍ଚିଲେ ଯେ ବିଭିନ୍ନ ଯୁଗରେ ବିଭିନ୍ନ ଲୋକଙ୍କଦ୍ୱାରା ଲିଖିତ କାଗଜମାନଙ୍କ ସଂଗ୍ରହର ସମଷ୍ଟି ହେଉଛି ବାଇବେଲ । ସେମାନେ ମଧ୍ୟ ମତବ୍ୟକ୍ତ କଲେ, ଯୀଶୁଙ୍କର କୌଣସି ଧର୍ମସ୍ଥାପନ କରିବାର ଇଚ୍ଛା ନଥିଲା । ଏହି ସମାଲୋଚନା ଫଳରେ ଅନେକ ପୁରୁଣା ବିଶ୍ୱାସ ଦୋହଲିଗଲା ।

ବିଜ୍ଞାନ ଓ ଗଣତାନ୍ତ୍ରିକ ଭାବଧାରା ହେତୁ ପୁରାତନ ଧାର୍ମିକ ଭିତ୍ତି ଦୁର୍ବଳ ହୋଇ ପଡ଼ୁଥିବାରୁ ପୁରାତନ ଧର୍ମର ସ୍ଥାନ ପୂରଣ କରିବା ନିମନ୍ତେ ଗୋଟିଏ ଦର୍ଶନ ବାଢ଼ିବା ନିମନ୍ତେ ପ୍ରଚେଷ୍ଟା ଚାଲିଲା । ଜଣେ ଫରାସୀ ଦାର୍ଶନିକ ଅଗଷ୍ଟେ କୋମ୍‌ତେ ମଧ୍ୟ ଉଦ୍ୟମ କରିଥିଲେ—ସେ ୧୭୯୮ରୁ ୧୮୫୭ ପର୍ଯ୍ୟନ୍ତ ବଞ୍ଚିଥିଲେ । କୋମ୍‌ତେ ଅନୁଭବ କଲେ ଯେ ପୁରାତନ ନୀତିଶାସ୍ତ୍ର ଓ ସନାତନୀ ଧର୍ମସବୁ ଅକାମୀ ଧରିଗଲାଣି; କିନ୍ତୁ ତାଙ୍କର ହୃଦ୍‌ବୋଧ ହେଲା ଯେ କୌଣସି ପ୍ରକାର ଏକ ଧର୍ମର ସାମାଜିକ ଆବଶ୍ୟକତା ରହିଛି । ସେଥିଲାଗି ସେ ଏକ "ମାନବିକ ଧର୍ମ"ର ପ୍ରସ୍ତାବ କଲେ । ଏହାକୁ "ପଜିଟିଭିଜମ୍" ବା 'ବାସ୍ତବିକତାବାଦ' **(Positivism)** ନାମ ଦେଲେ । ଏହା ପ୍ରେମ, ଶୃଙ୍ଖଳା ଓ ପ୍ରଗତି ଉପରେ ପ୍ରତିଷ୍ଠିତ ହେବ । ଏଥିରେ ଅତିପ୍ରାକୃତିକ କିଛି ନ ଥିଲା । ଏହା ବିଜ୍ଞାନ ଉପରେ ପ୍ରତିଷ୍ଠିତ । ୧୯ଶ ଶତାବ୍ଦୀର ପ୍ରଚଳିତ ଅନ୍ୟ ସବୁ ଭାବଧାରା ପରି ଏହା ପଶ୍ଚାତ୍ତରେ ମାନବଜାତିର ପ୍ରଗତି ଭାବଧାରା ରହିଥିଲା । କୋମ୍‌ତେଙ୍କ ଧର୍ମରେ ମୁଷ୍ଟିମେୟ ଶିକ୍ଷିତ ଲୋକେ ବିଶ୍ୱାସ କଲେ ଓ ଇଉରୋପର ଚିନ୍ତାଧାରା ଉପରେ ତାଙ୍କର ସାଧାରଣ ପ୍ରଭାବ ଖୁବ୍ ବେଶି ପଡ଼ିଲା । ସମାଜ ବିଜ୍ଞାନ ସେ ପ୍ରଥମେ ଅଧ୍ୟୟନ ଆରମ୍ଭ କଲେ ବୋଲି କୁହାଯାଏ—ସମାଜ ବିଜ୍ଞାନ ଅର୍ଥ ହେଉଛି ମାନବ ସମାଜ ଓ ସଂସ୍କୃତି ।

ଜନ୍ ଷ୍ଟୁଆର୍ଟ ମିଲ୍ କୋମ୍‌ତେଙ୍କ ସମସାମୟିକ; କିନ୍ତୁ ତାଙ୍କ ଅପେକ୍ଷା ଅନେକ ଦିନ ଆହୁରି ବଞ୍ଚିଥିଲେ (୧୮୦୬—୧୮୭୩) । ସେ ଜଣେ ଇଂରେଜ ଦାର୍ଶନିକ ଓ ଅର୍ଥନୀତିଜ୍ଞ—ମିଲ୍ କୋମ୍‌ତେଙ୍କ ଉପଦେଶ ଏବଂ ସାମ୍ୟବାଦୀ ଭାବଧାରାରେ ପ୍ରଭାବିତ

ହୋଇଥିଲେ । ଆଡ଼ାମ୍ ସ୍ମିଥ୍‌ଙ୍କ ଉପଦେଶ ଅନୁସାରେ ଇଂରେଜ ରାଜନୀତିକ ଅର୍ଥନୀତି ଗଢ଼ି ଉଠିଥିଲା—ସେ ତାକୁ ନୂଆ ଢଙ୍ଗରେ ଚାଳନା କରିବାକୁ ଚେଷ୍ଟା କଲେ ଏବଂ ଅର୍ଥନୀତିକ ଚିନ୍ତାଧାରା ଭିତରେ କିଛି ସାମ୍ୟବାଦ ନୀତି ପୂରାଇଲେ । କିନ୍ତୁ ସେ ମୁଖ୍ୟ "ଉପଯୋଗିତାବାଦୀ" (Utilitarian) ଭାବରେ ଉତ୍ତମରୂପେ ଜଣା । "ଉପଯୋଗିତା-ବାଦ" ଏକ ନୂତନ ତଥ୍ୟ—କିଛିଏ ଆଗରୁ ଇଂଲଣ୍ଡରେ ଆରମ୍ଭ ହୋଇଥିଲା ଏବଂ ମିଲ୍‌ଙ୍କଦ୍ୱାରା ଏହା ଖୁବ୍ ପ୍ରାଧାନ୍ୟ ପାଇଲା । ଏହାର ନାମରୁ ଯେପରି ବୁଝାଯାଉଛି, ଏହାର ମୂଳ ଦର୍ଶନ ହେଲା ମଙ୍ଗଳ ବା ଉପକାରିତା । "ସର୍ବାଧିକ ଲୋକଙ୍କ ସର୍ବାଧିକ ସୁଖ" ଉପଯୋଗିତାବାଦୀମାନଙ୍କର ମୂଳ ନୀତି ଥିଲା । ଠିକ୍ ଭୁଲ ବିବେଚନା କରିବାର ଏହା ହିଁ ଏକମାତ୍ର ପରୀକ୍ଷା । ଯେଉଁ କାମ ଫଳରେ ଯେତିକି ସୁଖ ଆସିପାରୁଛି ସେ କାମକୁ ସେତିକି ଠିକ୍ ଏବଂ ଯେଉଁ କାମ ଫଳରେ ସୁଖର ବିପରୀତ ଯେତେଦୂର ଘଟୁଛି ତାହାକୁ ସେତିକି ଭୁଲ ବୋଲି କୁହାଗଲା । ଏହି ଦୃଷ୍ଟିକୋଣ – ଅର୍ଥାତ୍ ସର୍ବାଧିକ ଲୋକଙ୍କୁ ସର୍ବାଧିକ ସୁଖ ଦେବା—ଯେନି ସମାଜ ଓ ସରକାର ସଂଗଠିତ ହେବା ଦରକାର । ପୂର୍ବର ଗଣତାନ୍ତ୍ରିକ ସିଦ୍ଧାନ୍ତ ହେଉଛି—ପ୍ରତ୍ୟେକ ଲୋକକୁ ସମାନ ଅଧିକାର ମିଳୁ; କିନ୍ତୁ ଉପରୋକ୍ତ ଦୃଷ୍ଟିକୋଣ ଠିକ୍ ଏହାଭଳି ନୁହେଁ । ସର୍ବାଧିକ ଲୋକଙ୍କୁ ସର୍ବାଧିକ ସୁଖ ଆଣିଦେବା ପାଇଁ ହୁଏତ ଅଳ୍ପ ସଂଖ୍ୟକ ଲୋକଙ୍କୁ ତ୍ୟାଗ ବା ଅସୁଖୀ କରିବା ଦରକାର ହୋଇପାରେ । ମୁଁ କେବଳ ଏହି ପାର୍ଥକ୍ୟଟା ଚୋଟେ ଦର୍ଶାଇ ଦେଉଛି; କିନ୍ତୁ ଆମେ ଏଠି ତାହା ଆଲୋଚନା କରିବା ନାହିଁ । ଏହିରୂପେ ଗଣତନ୍ତ୍ରର ଅର୍ଥ ହେଲା ଅଧିକ ସଂଖ୍ୟକ ଲୋକଙ୍କର ଅଧିକାର ।

ଜନ୍ ଷ୍ଟୁଆର୍ଟ ମିଲ୍ ବ୍ୟକ୍ତିବିଶେଷର ସ୍ୱାଧୀନତା—ଏହି ଗଣତନ୍ତ୍ର ଭାବର ଜଣେ ଶକ୍ତିଶାଳୀ ସମର୍ଥକ ଥିଲେ । ସେ 'ସ୍ୱାଧୀନତା ସମ୍ବନ୍ଧରେ' (On Liberty) ନାମକ ଗୋଟିଏ ଶ୍ରେଷ୍ଠ ବହି ଲେଖିଥିଲେ—ତାହା ଖୁବ୍ ଖ୍ୟାତି ଲଭ କଲା । ବାଣୀ-ସ୍ୱାଧୀନତା ଓ ମତପ୍ରକାଶର ସ୍ୱାଧୀନତା ସପକ୍ଷରେ ସେଥିରେ ଯାହା ଲେଖାଅଛି, ସେଥିରୁ ଏକ ଅଂଶ ଏଠି ଉଦ୍ଧାର କରୁଛି—

"କିନ୍ତୁ କୌଣସି ମତପ୍ରକାଶ ବନ୍ଦ କରିବା ଅର୍ଥ ମାନବ ଜାତିକୁ ଲୁଣ୍ଠନ କରିବା—ଭବିଷ୍ୟତ ବଂଶଧର ଏବଂ ପ୍ରଚଳିତ ବଂଶକୁ ଲୁଣ୍ଠନ କରିବା, ଯେଉଁମାନେ ଏହି ମତ ପୋଷଣ କରନ୍ତି, ସେମାନଙ୍କ ଅପେକ୍ଷା ଯେଉଁମାନେ ଏହାର ବିରୋଧ ମତ ପୋଷଣ କରନ୍ତି, ସେମାନଙ୍କୁ ବେଶୀ ଲୁଣ୍ଠନ କରାଯାଏ । ଯଦି ମତ ଠିକ୍ ହୋଇଥାଏ, ତେବେ ଅସତ୍ୟ ପରିବର୍ତ୍ତେ ସତ୍ୟ ପାଇବାର ସୁବିଧାରୁ ତାଙ୍କୁ ବଞ୍ଚିତ କରାଯାଏ; ଯଦି ଭୁଲ ହୋଇଥାଏ, ତେବେ ଯେଉଁ ଜିନିଷ ତାଙ୍କ ପକ୍ଷରେ ଫଳପ୍ରଦ ହୋଇଥାନ୍ତା, ଅଧିକ ସ୍ପଷ୍ଟ ଦୃଷ୍ଟିକୋଣ ଓ ସତ୍ୟର ଅଧିକ ଜୀବନ୍ତ ରୂପ ତାଙ୍କ ଉପରେ ପଡ଼ି ପାରିଥାନ୍ତା—ତାହା ସେ ହରାଇ ବସନ୍ତି । ଏହା ସତ୍ୟ ସହିତ ଅସତ୍ୟର ସଂଘର୍ଷରେ ହିଁ ଉପୁଜିପାରେ । ଏ ବିଷୟରେ ଆମେ ନିଶ୍ଚିତ ଭାବରେ କହିପାରିବା ନାହିଁ ଯେ ଆମେ ଯେଉଁ ମତକୁ ରୋକିଦେବାକୁ

ଯିବୁଁ ଛେ, ତାହା ମିଥ୍ୟା ମତ ଏବଂ ସେ ବିଷୟରେ ଆମେ ନିଶ୍ଚିତ ହେଲେ ସୁଦ୍ଧା ଏହାକୁ ରୋକିବା ପାଇଁ ଚେଷ୍ଟା କରିବା ମଧ୍ୟ ଅନ୍ୟାୟ ।'' ଏପରି ମନୋଭାବ ରକ୍ଷଣଶୀଳ ଧର୍ମୀ କର୍ମୀ ସ୍ୱେଚ୍ଛାଚାରିତା ସହ ଖାପ ଖାଇବ ନାହିଁ । ଏହା ଏକ ଦାର୍ଶନିକ, ଏକ ସତ୍ୟସନ୍ଧିତ୍ସୁର ମନୋଭାବ ।

ଭାବଧାରା କିପରି ଭାବରେ ଉନ୍ନତ କରୁଛି ଏବଂ ଚିନ୍ତା ଜଗତରେ ଗୋଟାଏ ଲେଖାଏଁ ଦୃଷ୍ଟାନ୍ତ ରୂପେ ରହିଯାଇଛି ଏହା ତୋତେ ଦର୍ଶାଇ ଦେବା ନିମନ୍ତେ ମୁଁ ୧୯ଶ ଶତାବ୍ଦୀର ଇଉରୋପର କେତେକ ପ୍ରଧାନ ଚିନ୍ତାଶୀଳ ବ୍ୟକ୍ତିଙ୍କ ନାମ ଉଲ୍ଲେଖ କଲି । କିନ୍ତୁ ଏମାନଙ୍କର ଓ ପ୍ରଥମ ଗଣତନ୍ତ୍ରବାଦୀ ମାନଙ୍କର ପ୍ରଭାବ ସାଧାରଣତଃ ଗୁଣୀ ଅଧିକେ ବୁଦ୍ଧିଜୀବୀ ଶ୍ରେଣୀ ଭିତରେ ସୀମାବଦ୍ଧ ଥିଲା । ଏମାନଙ୍କ ପାଖରୁ କେତେକ ପରିମାଣରେ ଅନ୍ୟମାନଙ୍କ ଆଡ଼କୁ ଛୁଡ଼ିକି ଯାଇଥିଲା । ଯଦିଓ ଜନସାଧାରଣଙ୍କ ଉପରେ ଏହାର ପ୍ରତ୍ୟକ୍ଷ ପ୍ରଭାବ ଖୁବ୍ କମ୍ ପଡ଼ିଥିଲା, ତଥାପି ଏହି ଗଣତାନ୍ତ୍ରିକ ଆଦର୍ଶବାଦର ଅପ୍ରତ୍ୟକ୍ଷ ପ୍ରଭାବ ପଡ଼ିଥିଲା ବେଶୀ । ଏପରି କି କେତେକ ବିଷୟରେ, ଯଥା ଭୋଟ ପାଇଁ ଦାବୀ ପ୍ରଭୃତିର ପ୍ରତ୍ୟକ୍ଷ ପ୍ରଭାବ ଖୁବ୍ ବେଶି ଥିଲା ।

୧୯ଶ ଶତାବ୍ଦୀରୁ ଅଧିକ କାଳ ବିତିବା ସଙ୍ଗେ ସଙ୍ଗେ ଅନ୍ୟ ଆନ୍ଦୋଳନ ଓ ଭାବଧାରାର ବିକାଶ ହେଲା, ଯଥା—ଶ୍ରମିକ ଶ୍ରେଣୀ ଆନ୍ଦୋଳନ ଓ ସାମ୍ୟବାଦ । ପ୍ରଚଳିତ ଗଣତାନ୍ତ୍ରିକ ଧାରଣା ଉପରେ ଏହାର ପ୍ରଭାବ ପଡ଼ିଲା ଏବଂ ଏହା ମଧ୍ୟ ପ୍ରଚଳିତ ଗଣତାନ୍ତ୍ରିକ ଧାରଣାଦ୍ୱାରା ପ୍ରଭାବିତ ହୋଇଥିଲା । କେତେକ ଲୋକ ସାମ୍ୟବାଦକୁ ଗଣତନ୍ତ୍ରର ବଦଳି ବୋଲି ବିଚାରିଲେ; ଅନ୍ୟମାନେ ଏହା ଗଣତନ୍ତ୍ରର ଏକ ଆବଶ୍ୟକୀୟ ଅଂଶ ବୋଲି ମନେ କଲେ । ଆମେ ଦେଖିଛେ ଯେ, ଗଣତନ୍ତ୍ରବାଦୀମାନଙ୍କ ମନରେ ସ୍ୱାଧୀନତା, ସମାନତା ଏବଂ ପ୍ରତ୍ୟେକ ଲୋକର ସମାନ ସୁଖ ଅଧିକାର ଆଦି ଧାରଣା ପୂର୍ଣ୍ଣ ଥିଲା । କିନ୍ତୁ ସେମାନେ ଶୀଘ୍ର ବୁଝିପାରିଲେ ଯେ, ଏହାକୁ କେବଳ ଏକ ମୌଳିକ ଅଧିକାର କରି ରଖିଦେଲେ ସୁଖ ଆସିଯିବ ନାହିଁ । ଅନ୍ୟ ଜିନିଷ ଛଡ଼ା କେତେକ ପରିମାଣରେ ଶାରୀରିକ ସ୍ୱଚ୍ଛନ୍ଦତା ମଧ୍ୟ ଆବଶ୍ୟକ । ଯେଉଁ ଲୋକ ଭୋକ ଉପାସରେ ରହୁଛି, ସେ ସୁଖୀ ହୋଇପାରେନା । ତେଣୁ ସେମାନେ ଭାବିବାକୁ ଲାଗିଲେ ଯେ, ଲୋକଙ୍କ ଭିତରେ ଧନର ନ୍ୟାୟପୂର୍ଣ୍ଣ ବଣ୍ଟନ ଉପରେ ସୁଖ ନିର୍ଭର କରେ । ଏହା ସାମ୍ୟବାଦ ଆଡ଼କୁ ନେଇଯାଏ ଏବଂ ଆମେ ଆଉ ଥରେ ତାହା ଆଲୋଚନା କରିବା ।

୧୯ଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଯେଉଁଠି ପରାଧୀନ ଦେଶ ବା ଲୋକେ ସ୍ୱାଧୀନତା ପାଇଁ ଲଢ଼ାଇ କରୁଥିଲେ, ସେଠି ଗଣତନ୍ତ୍ର ଓ ଜାତୀୟତା ହାତକୁ ହାତ ମିଳାଇ ଚାଲିଥିଲା । ଇଟାଲୀର ମାଜିନି ଏହି ପ୍ରକାର ଗଣତାନ୍ତ୍ରିକ ଦେଶପ୍ରେମର ଜଣେ ପ୍ରତୀକ ଥିଲେ । ସେହି ଶତାବ୍ଦୀର ଶେଷବେଳକୁ ଜାତୀୟତା ଏହି ଗଣତାନ୍ତ୍ରିକ ରୂପ କ୍ରମେ ହରାଇଲା ଏବଂ ଏହା

ଅଧିକ ଉଗ୍ର ଓ ପ୍ରଭୁତ୍ୱବ୍ୟଞ୍ଜକ ହୋଇଗଲା । ରାଷ୍ଟ୍ର ହିଁ ଏକ ଦେବତା ପାଲଟିଲା, ଯାହାକୁ କି ସମସ୍ତଙ୍କୁ ପୂଜା କରିବା ପାଇଁ ପଡ଼ିବ ।

ନୂତନ ଶିଳ୍ପୋଦ୍ୟୋଗର ଅଗ୍ରଗାମୀ ଥିଲେ ଇଂରେଜ ବ୍ୟବସାୟୀମାନେ । ସେମାନେ ଉଚ୍ଚ ଗଣତାନ୍ତ୍ରିକ ନୀତି ଓ ଲୋକଙ୍କ ସ୍ୱାଧୀନତା ଅଧିକାର ପ୍ରଭୃତିରେ ବେଶି ଆଗ୍ରହୀ ନ ଥିଲେ । କିନ୍ତୁ ସେମାନେ ଆବିଷ୍କାର କଲେ ଯେ ଲୋକେ ଅଧିକ ସ୍ୱାଧୀନତା ପାଇଲେ ବ୍ୟବସାୟ ପକ୍ଷରେ ଭଲ । ଏହାଦ୍ୱାରା ଶ୍ରମିକମାନଙ୍କର ଜୀବିକାନିର୍ବାହର ସ୍ତର ବଢିଗଲା । ସେମାନେ କିଛି ସ୍ୱାଧୀନତା ଭୋଗ କରୁଛନ୍ତି ବୋଲି ଏକ ଭୁଲ ଧାରଣା ନେଇ ରହିଲେ ଏବଂ କାର୍ଯ୍ୟରେ ଆହୁରି ନିପୁଣ ହୋଇଗଲେ । ଶିଳ୍ପକାର୍ଯ୍ୟରେ ଦକ୍ଷତା ଅର୍ଜନ କରିବାକୁ ହେଲେ ଲୋକ ଶିକ୍ଷା ଆବଶ୍ୟକ । ବ୍ୟବସାୟୀ ଓ ଶିଳ୍ପପତିମାନେ ଏହାର ଉପଯୋଗିତା ବୁଝି ଏହିସବୁ ଅନୁଗ୍ରହ ଲୋକଙ୍କୁ ଦେବେ ବୋଲି ବଡ଼ ସାଧୁଭାବରେ ସମ୍ମତ ହୋଇଗଲେ । ସେହି ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ ବେଳକୁ ଏକପ୍ରକାର ଶିକ୍ଷା ଇଂଲଣ୍ଡ ଓ ପଶ୍ଚିମ ଇଉରୋପର ଜନସାଧାରଣଙ୍କ ଭିତରେ ଦ୍ରୁତବେଗରେ ପ୍ରସାର ଲାଭ କରିଥିଲା ।

## ୧୩୨ : ସାମ୍ୟବାଦର ଆବିର୍ଭାବ

ଫେବୃୟାରି ୧୩, ୧୯୩୩

ମୁଁ ତତେ ଗଣତନ୍ତ୍ରର ଅଗ୍ରଗତି ସମ୍ବନ୍ଧରେ ଲେଖିଛି; କିନ୍ତୁ ମନେରଖ, ଏହା ଖୁବ୍ କଠୋର ସଂଗ୍ରାମ କରି ଅଗ୍ରଗତି କରୁଥିଲା । ପ୍ରଚଳିତ ଅବସ୍ଥାରେ ଯେଉଁ ଲୋକଙ୍କର ସ୍ୱାର୍ଥ ରହିଛି, ସେମାନେ ପରିବର୍ତ୍ତନ ଚାହାନ୍ତି ନାହିଁ ଏବଂ ସମସ୍ତ ଶକ୍ତି ଲଗାଇ ଏହାର ପ୍ରତିରୋଧ କରନ୍ତି, ଅଥଚ ପ୍ରଗତି କିମ୍ବା କୌଣସି ଉନ୍ନତି କରିବାର ଅର୍ଥ ହେଉଛି ଏପରି ପରିବର୍ତ୍ତନ ଆଣିବା; ଗୋଟିଏ ଅନୁଷ୍ଠାନ କିମ୍ବା ଶାସନପ୍ରଣାଳୀ ହଟିଯାଇ ତା' ସ୍ଥାନରେ ଆଉ ଏକ ଉନ୍ନତତର ବ୍ୟବସ୍ଥା ବସିବ ହିଁ ବସିବ । ଯେଉଁମାନେ ଏପରି ପ୍ରଗତି ଚାହାନ୍ତି, ସେମାନଙ୍କୁ ପୁରୁଣା ଅନୁଷ୍ଠାନ ବା ପୁରୁଣା ସଂସ୍କାର ଉପରେ ଆକ୍ରମଣ କରିବାକୁ ହୁଏ ଓ ପ୍ରଚଳିତ ବ୍ୟବସ୍ଥାକୁ ଏହିପରି ଭାବରେ ଅବିରତ ଅଗ୍ରାହ୍ୟ କରିବାକୁ ପଡ଼େ ଏବଂ ଯେଉଁମାନେ ଏଥିରୁ ଫାଇଦା ଉଠାଉଥାନ୍ତି, ସେମାନଙ୍କ ସହ ସଂଘର୍ଷ କରିବାକୁ ହୁଏ । ପଶ୍ଚିମ-ଇଉରୋପରେ ଶାସକଶ୍ରେଣୀ ପ୍ରତି ପଦରେ ସମସ୍ତ ପ୍ରଗତିର ପ୍ରତିରୋଧ କଲେ । ପ୍ରଗତିକୁ ସ୍ୱୀକାର୍ ନ କଲେ ଏକ ପ୍ରକାଣ୍ଡ ବିପ୍ଳବ ହେବ—ଏହି ଆଶଙ୍କା କରିଯିବାରେ ହିଁ

ଇଂଲଣ୍ଡରେ ସେମାନେ ଆତ୍ମସମର୍ପଣ କଲେ । ମୁଁ ତ ଆଗରୁ କହିଛି ଯେ ଏହି ଅଗ୍ରଗତିର ଆଉ ଏକ କାରଣ ହେଉଛି ନୂଆ ବ୍ୟବସାୟୀଲୋକେ ବିଶ୍ୱରେ ଯେ କେତେକ ପରିମାଣରେ ଗଣତନ୍ତ୍ର ପ୍ରତିଷ୍ଠା ହେଲେ ତାହା ବ୍ୟବସାୟୀ ପକ୍ଷରେ ଅନୁକୂଳ ଓ ଉପଯୋଗୀ ହେବ ।

କିନ୍ତୁ ମୁଁ ପୁଣି ଥରେ ତୋତେ ସ୍ମରଣ କରାଇଦେଉଁ ଯେ ୧୯ଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଏହି ଗଣତାନ୍ତ୍ରିକ ଭାବଧାରା ବହୁପରିମାଣରେ ବୁଦ୍ଧିଜୀବୀ ଲୋକଙ୍କ ଭିତରେ ସୀମାବଦ୍ଧ ଥିଲା । ଶିଳ୍ପୋଦ୍ୟୋଗ ବୃଦ୍ଧି ଫଳରେ ସାଧାରଣ ଲୋକଙ୍କ ଜୀବନରେ ଖୁବ୍ ପରିବର୍ତ୍ତନ ଆସିଗଲା ଏବଂ ଜମିରୁ ସେମାନେ କଳକାରଖାନାକୁ ଆସିଲେ । କଳକାରଖାନା ଶ୍ରମିକଶ୍ରେଣୀ ବୃଦ୍ଧି ପାଇଲା । ଏମାନେ ବିଶେଷତଃ କୋଇଲାଖଣି ନିକଟରେ କଳକାରଖାନା ଥିବା ସହରମାନଙ୍କରେ ଅତି ମଇଳା ଓ ଅସ୍ୱାସ୍ଥ୍ୟକର ସ୍ଥାନରେ ଗଦା ମଡ଼ା ହେଲା ପରି ରହିଲେ । ଏହି ଶ୍ରମିକମାନଙ୍କର ଦ୍ରୁତ ପରିବର୍ତ୍ତନ ହେଉଥିଲା ଏବଂ ସେମାନଙ୍କ ମନରେ ଏକ ନୂତନ ମନୋଭାବର ବିକାଶ ହେଉଥିଲା । ଖାଇବାକୁ ନ ପାଇ ଯେଉଁ କୃଷୀ ଓ କାରିଗରମାନେ କଳକାରଖାନାରେ ଆସି ଭୁକ୍ତ ହେଉଥିଲେ, ଏମାନେ ତାଙ୍କଠାରୁ ସମ୍ପୂର୍ଣ୍ଣ ପୃଥକ୍ ଧରଣର । ଏହିସବୁ କଳକାରଖାନା ବସାଇବାରେ ଇଂଲଣ୍ଡ ନେତୃତ୍ୱ ନେଇଥିବାରୁ ସେ ଦେଶରେ ପ୍ରଥମେ ଏହି କାରଖାନା ଶ୍ରମିକଶ୍ରେଣୀର ଆବିର୍ଭାବ ହେଲା । କାରଖାନା ଭିତରର ଅବସ୍ଥା ଶୋଚନୀୟ ଥିଲା, ଶ୍ରମିକମାନଙ୍କ ଘର ବା କୁଡ଼ିଆ ଅବସ୍ଥା ତ ଆହୁରି ଖରାପ । ସେମାନେ ଖୁବ୍ ଦୁର୍ଦ୍ଦଶାଗ୍ରସ୍ତ ଥିଲେ । ଛୋଟ ଛୋଟ ପିଲା ଓ ସ୍ତ୍ରୀଲୋକମାନଙ୍କୁ ଅନେକ ଘଣ୍ଟା ପର୍ଯ୍ୟନ୍ତ କାମ କରିବାକୁ ହେଉଥିଲା । ତଥାପି ଆଇନଦ୍ୱାରା ଏହି କାରଖାନା ଓ ରହିବା ଘର ଉନ୍ନତ କରିବାର ସମସ୍ତ ଉଦ୍ୟମକୁ ମାଲିକମାନେ ତୀବ୍ର ବିରୋଧ କଲେ । ଯୁକ୍ତି ଦିଆଗଲା—ସମ୍ପତ୍ତିର ଅଧିକାର ଉପରେ ଏହା ଏକ ନିର୍ଲ୍ଲଜ ହସ୍ତକ୍ଷେପ ନୁହେଁ କି ? ଏହି କାରଣ ଦର୍ଶାଇ ବ୍ୟକ୍ତିଗତ ବାସଘର ପରିଷ୍କାର କରିବାକୁ ବାଧ୍ୟତାମୂଳକ କରୁଥିବା ଆଇନର ମଧ୍ୟ ବିରୋଧ କରାଗଲା ।

ଧୀରେ ଅନାହାର ଓ ଅତ୍ୟଧିକ ପରିଶ୍ରମ ଗରିବ ଇଂରେଜ ଶ୍ରମିକମାନଙ୍କ ଜୀବନୀ ଶକ୍ତି ଲୋପ କରୁଥିଲା । ନେପୋଲିୟନ ଅମଳର ଯୁଦ୍ଧ ପରେ ଦେଶରେ ଧନ-କ୍ଷୟ ଏବଂ ଆର୍ଥିକ ଦୁର୍ଗତି ଘଟିଲା—ଏଥିରେ ଶ୍ରମିକମାନେ ଆହୁରି ବେଶି କଷ୍ଟ ଭୋଗିଲେ । ଏ ପରିସ୍ଥିତିରେ ଶ୍ରମିକମାନେ ନିଜକୁ ରକ୍ଷା କରିବା ନିମନ୍ତେ ଏବଂ ଉନ୍ନତ ଅବସ୍ଥା ଲାଗି ଲଢ଼ାଇ କରିବା ପାଇଁ ସମିତିମାନ ଗଢ଼ିବାକୁ ଚାହିଁବା ସ୍ୱାଭାବିକ । ପୂର୍ବେ କାରିଗର ଓ ଦକ୍ଷ ଶ୍ରମିକମାନଙ୍କର ସଙ୍ଘ (Guild) ଥିଲା; କିନ୍ତୁ ସେସବୁ ସମ୍ପୂର୍ଣ୍ଣ ଭିନ୍ନ ଧରଣର । ତଥାପି ଏହି ସଙ୍ଘର ସ୍ମୃତି ହିଁ ନିଜର ସମିତି ଗଢ଼ିବା ପାଇଁ କାରଖାନା ଶ୍ରମିକମାନଙ୍କୁ ପ୍ରବର୍ତ୍ତାଇଥିବ । କିନ୍ତୁ ସେମାନଙ୍କୁ ସେଥିରେ ବାଧା ଦିଆଗଲା । ଫରାସୀ ବିପ୍ଳବଦ୍ୱାରା ଇଂରେଜ ଶାସକଶ୍ରେଣୀ ଏପରି ଆତଙ୍କିତ ହୋଇ ଯାଇଥିଲେ ଯେ ସେମାନେ ଗରିବ ଶ୍ରମିକମାନେ ନିଜର ଆପତ୍ତି

ଅଭିଯୋଗ ବିଷୟରେ ଆଲୋଚନା କରିବା ଲାଗି ଏକତ୍ର ହେବାର ବାଧା ଦେଇ ମଧ୍ୟ ଏ ଆଇନ ପ୍ରଣୟନ କଲେ—ଏହାକୁ ମେଣ୍ଟ ଆଇନ ( Combination Acts ) କହନ୍ତି । 'ଆଇନ ଓ ଶୃଙ୍ଖଳା' ଆଜି ଭାରତରେ ଯେପରି କାମ କରୁଛି, ସେତେବେଳେ ମଧ୍ୟ ଇଂଲଣ୍ଡରେ କର୍ତ୍ତୃତ୍ୱ ଜାରି ରଖିଥିବା ମୁଷ୍ଟିମେୟ ଲୋକଙ୍କର ପକେଟ ପୂର୍ଣ୍ଣ କରିବାରେ ଓ ଉଦ୍ଦେଶ୍ୟ ସିଦ୍ଧି କରିବାରେ ସେହିପରି ଖୁବ୍ କାମ କରିଥିଲା ।

କିନ୍ତୁ ଶ୍ରମିକମାନଙ୍କୁ ଏକତ୍ର ହେବାରେ ବାଧା ଦେବା ପାଇଁ ଆଇନ କରିବାଦ୍ୱାରା ଶ୍ରମିକମାନଙ୍କ ଅବସ୍ଥାର କିଛି ଉନ୍ନତି ହେଲା ନାହିଁ । ଏଥିରେ ସେମାନେ ଉତ୍ତେଜିତ ହେଲେ ଏବଂ ହତାଶ ହୋଇଗଲେ । ସେମାନେ ଗୁପ୍ତ ସମିତି ଗଢ଼ିଲେ ଏବଂ ଗୋପନ ରଖିବା ପାଇଁ ଶପଥ ନେଇ ପରସ୍ପର ସହିତ ଆବଦ୍ଧ ରହିଲେ ଓ ଅଣଆଡ଼ୁଆ ସ୍ଥାନରେ ରାତିଅଧରେ ବୈଠକ କଲେ । କେହି ବିଶ୍ୱାସଘାତକତା କଲେ କିମ୍ବା ଧରା ପଡ଼ିଗଲେ ସେମାନଙ୍କ ବିରୁଦ୍ଧରେ ଷଡ଼ଯନ୍ତ୍ର ମକଦ୍ଦମାମାନ ହେଉଥିଲା ଏବଂ ଭୀଷଣ ଶାସ୍ତି ଦିଆଯାଉଥିଲା । ବେଳେ ବେଳେ କ୍ରୋଧବଶ ହୋଇ ସେମାନେ କଳକବ୍ଜା ଧ୍ୱଂସ କରି ଦେଉଥିଲେ, କଳ-କାରଖାନାରେ ନିଆଁ ଲଗାଇ ଦେଉଥିଲେ ଏବଂ ଏପରି କି ତାଙ୍କର କେତେକ ମାଲିକଙ୍କୁ ମଧ୍ୟ ମାରି ପକାଉଥିଲେ । ଶେଷରେ ୧୮୨୫ରେ ଶ୍ରମିକ ସମିତିମାନଙ୍କ ଉପରୁ କଟକଣା ଆଂଶିକ ଭାବରେ ଉଠିଗଲା ଏବଂ ଶ୍ରମିକ ସଙ୍ଘସବୁ ଗଢ଼ା ହେବାକୁ ଲାଗିଲା । ଭଲ ମଜୁରି ପାଉଥିବା ଦକ୍ଷ (skilled) ଶ୍ରମିକମାନେହିଁ ଏପରି ସଙ୍ଘ ଗଢ଼ିଲେ । ଅନେକ ଦିନ ପର୍ଯ୍ୟନ୍ତ ଅଦକ୍ଷ (unskilled) ଶ୍ରମିକମାନଙ୍କ ଭିତରୁ ଅଧିକାଂଶଙ୍କ ଭିତରେ କୌଣସି ସଂଗଠନ ନ ଥିଲା । ଶ୍ରମିକ ଆନ୍ଦୋଳନ ଏହିରୂପେ ଶ୍ରମିକ ସଙ୍ଘର ଆକାର ଗ୍ରହଣ କଲା—ଏହାର ଉଦ୍ଦେଶ୍ୟ ହେଲା ସାମୂହିକ ଉଦ୍ୟମଦ୍ୱାରା ଶ୍ରମିକମାନଙ୍କର ଅବସ୍ଥାର ଉନ୍ନତି କରିବା । ଶ୍ରମିକମାନଙ୍କର ଏକମାତ୍ର କାର୍ଯ୍ୟକାରୀ ଅସ୍ତ୍ର ହେଲା ଧର୍ମଘଟର ଅଧିକାର ଅର୍ଥାତ୍ କାମ ବନ୍ଦ କରିବା ଏବଂ ଏହା ଫଳରେ କାରଖାନା ଅଚଳ କରିବା । ଏହା ଯେ ଏକ ବଡ଼ ଅସ୍ତ୍ର ଏଥିରେ ସନ୍ଦେହ ନାହିଁ; କିନ୍ତୁ ସେମାନଙ୍କ ମାଲିକମାନଙ୍କ ହାତରେ ଏହାଠୁ ଆହୁରି ଶକ୍ତିଶାଳୀ ଅସ୍ତ୍ର ଥିଲା—ତାହା ହେଉଛି ଶ୍ରମିକମାନଙ୍କୁ ଅନାହାର ରଖି ସେମାନଙ୍କୁ ବଶ୍ୟତା ସ୍ୱୀକାର କରିବାକୁ ବାଧ୍ୟ କରିବା । ତେଣୁ ଶ୍ରମିକମାନେ ଖୁବ୍ ତ୍ୟାଗ ସହି ଶ୍ରମିକଶ୍ରେଣୀର ସଂଗ୍ରାମ ଚଳାଇଲେ ଏବଂ ଏଥିରେ ସାମାନ୍ୟ କିଛି ଲାଭ ହେଉଥିଲା । ପାର୍ଲାମେଣ୍ଟ ଉପରେ ସେମାନଙ୍କର କୌଣସି ପ୍ରତ୍ୟକ୍ଷ ପ୍ରଭାବ ନ ଥିଲା—ଏପରି କି ଭୋଟକ୍ଷମତା ବି ନ ଥିଲା । ୧୮୩୨ ଖ୍ରୀଷ୍ଟାବ୍ଦରେ ବିଖ୍ୟାତ ସଂସ୍କାର ଆଇନ ଯାହାର ବି ଖୁବ୍ ପ୍ରବଳ ପ୍ରତିରୋଧ କରାଯାଇଥିଲା, ତାହା କେବଳ ସଂଗତିସମ୍ପନ୍ନ ମଧ୍ୟବିତ୍ତ ଶ୍ରେଣୀକୁ ଭୋଟ ଅଧିକାର ଦେଇଥିଲା । ଶ୍ରମିକଙ୍କ କଥା ଦୂରେ ଥାଉ, ନିମ୍ନ ମଧ୍ୟବିତ୍ତ ଶ୍ରେଣୀଙ୍କର ବି ଭୋଟ ଅଧିକାର ନଥିଲା ।

ଏଥି ଭିତରେ ମାଞ୍ଚେଷ୍ଟରର କାରଖାନା ମାଲିକଙ୍କ ଭିତରେ ଜଣେ ବ୍ୟକ୍ତି ବାହାରିଲେ—ସେ ଥିଲେ ମାନବହିତୈଷୀ । ଶ୍ରମିକମାନଙ୍କର ଶୋଚନୀୟ ଅବସ୍ଥା ଦେଖି

ଦୁଃଖିତ ହୋଇଥିଲେ । ତାଙ୍କ ନାମ ହେଉଛି ରବର୍ଟ ଓଏନ୍ । ସେ ତାଙ୍କ ନିଜ କାରଖାନାରେ ଅନେକ ସଂସ୍କାର ଆଣିଲେ ଏବଂ ଶ୍ରମିକମାନଙ୍କ ଅବସ୍ଥାରେ ଉନ୍ନତି କରାଇଲେ । ସେ ନିଜ ଶ୍ରେଣୀର ମାଲିକମାନଙ୍କ ଭିତରେ ଗୋଟାଏ ଆନ୍ଦୋଳନ କଲେ ଏବଂ ଶ୍ରମିକମାନଙ୍କ ପ୍ରତି ଭଲ ବ୍ୟବହାର କରିବା ନିମନ୍ତେ ଯୁକ୍ତିଦ୍ୱାରା ସେମାନଙ୍କୁ ବୁଝେଇବାକୁ ଚେଷ୍ଟା କଲେ । ଆଂଶିକରୂପେ ତାଙ୍କରି ହେତୁ ହିଁ ମାଲିକମାନଙ୍କର ଲୋଭ ଓ ସ୍ୱାର୍ଥପରତାରୁ ଶ୍ରମିକମାନଙ୍କୁ ରକ୍ଷାକରିବା ନିମନ୍ତେ ବ୍ରିଟିଶ ପାର୍ଲାମେଣ୍ଟ ପ୍ରଥମ ଆଇନ୍ ପାସ କଲା । ଏହି ଆଇନଟି ହେଉଛି, ୧୮୧୯ର କାରଖାନା ଆଇନ । ଏହି ଆଇନରେ ଧାର୍ଯ୍ୟ ହେଲା ଯେ ନଅ ବର୍ଷ ବୟସ୍କ ଛୋଟ ଛୋଟ ପିଲାମାନଙ୍କୁ ଦିନକରେ ୧୨ ଘଣ୍ଟାରୁ ଅଧିକ ସମୟ କାର୍ଯ୍ୟରେ ଲଗା ହେବ ନାହିଁ । ଶ୍ରମିକମାନଙ୍କୁ ଯେପରି ଭୀଷଣ ଅବସ୍ଥାରେ ରହିବାକୁ ହେଉଥିଲା, ଏହି ଆଇନର ଉପରୋକ୍ତ ଦଫାରୁ ହିଁ ତୁ ତା'ର ଗୋଟାଏ ଧାରଣା କରି ପାରିଥିବୁ ।

କୁହାଯାଏ, ୧୮୩୦ ବେଳକୁ ରବର୍ଟ ଓଏନ୍ ହିଁ ପ୍ରଥମେ "ସାମ୍ୟବାଦ" ଶବ୍ଦ ବ୍ୟବହାର କରିଥିଲେ । ଅବଶ୍ୟ ଧନୀ ଓ ଦରିଦ୍ରଙ୍କ ଭିତରେ ସମତା ଆଣିବା ଏବଂ ଓଣା ଅଧିକେ ସମ୍ପତ୍ତିରୁ ସମାନ ବଣ୍ଟନ କରିବା ଇତ୍ୟାଦି ଭାବଧାରା କିଛି ନୂଆ ନୁହେଁ । ଅତୀତରେ ଅନେକ ଲୋକ ଏହା କହି ଆସିଛନ୍ତି । ଆଦିମ ସମାଜରେ ଏକ ପ୍ରକାର 'କମ୍ୟୁନିଜମ୍' ଥିଲା—ସମଗ୍ର ସଂପ୍ରଦାୟ ବା ଗ୍ରାମ ହିଁ ଜମି ଓ ଅନ୍ୟ ସଂପତ୍ତିର ମାଲିକ ଥିଲା । ଏହାକୁ 'ଆଦିମ କମ୍ୟୁନିଜମ୍' (Primitive Communism) କହନ୍ତି । ଏହା ଭାରତରେ ଓ ଅନ୍ୟାନ୍ୟ ଅନେକ ଦେଶରେ ଦେଖାଯାଏ । କିନ୍ତୁ ଲୋକଙ୍କୁ ସମାନ କରିବାର ଗୋଟାଏ ଅସ୍ପଷ୍ଟ ଅଭିଳାଷ ଅପେକ୍ଷା ନୂତନ ସାମ୍ୟବାଦ ଆଉ କିଛି ବେଶି ବୁଝୁଥିଲା । ଏହା ଥିଲା ଅଧିକ ନିର୍ଦ୍ଦିଷ୍ଟ ଏବଂ ନୂତନ କାରଖାନା ଉତ୍ପାଦନ ବ୍ୟବସ୍ଥାରେ ତାହାକୁ ପ୍ରୟୋଗ କରିବା ପାଇଁ ଉଦ୍ଦେଶ୍ୟ ରଖାଯାଇଥିଲା । ତେଣୁ ଏହାର ଜନ୍ମ ଔଦ୍ୟୋଗିକ ବ୍ୟବସ୍ଥାରୁ ଓଏନଙ୍କ କଳ୍ପନା ଥିଲା—ଶ୍ରମିକମାନଙ୍କର ସହଯୋଗ ସମିତି ସ୍ଥାପନ କରାଯାଉ ଏବଂ ତାଙ୍କ ମତରେ କାରଖାନାରେ ଶ୍ରମିକମାନଙ୍କର ଭାଗ ରହିବା ଉଚିତ । ସେ ଇଂଲଣ୍ଡ ଓ ଆମେରିକାରେ ଆଦର୍ଶ କାରଖାନା ଓ ବସତିମାନ ସ୍ଥାପନା କଲେ ଓ ଏଥିରେ ଅଳ୍ପେ ବହୁତେ ସଫଳତା ପାଇଲେ । କିନ୍ତୁ ତାଙ୍କ ମାଲିକ ଭାଇମାନଙ୍କୁ କିମ୍ବା ସରକାରକୁ ସେ ବଦଳାଇ ପାରିଲେ ନାହିଁ । ଯାହାହେଉ ତାଙ୍କ ଅମଳରେ ତାଙ୍କର ବହୁତ ପ୍ରଭାବ ଥିଲା ଏବଂ ସେ ସାମ୍ୟବାଦ ଶବ୍ଦର ପ୍ରଚଳନ କଲେ—ଏହା ସେହିଦିନୁ ଲକ୍ଷ ଲକ୍ଷ ଲୋକଙ୍କୁ ଆକର୍ଷଣ କରିଛି ।

ଏଥି ଭିତରେ ପୁଞ୍ଜିବାଦୀ ଶିଳ୍ପ ବୃଦ୍ଧିଲାଭ କରୁଥାଏ ଏବଂ ଏହା ସଫଳତା ଲାଭ କରୁଥିବା ସଙ୍ଗେ ସଙ୍ଗେ ଏହା ସହିତ ଶ୍ରମିକଶ୍ରେଣୀ ସମସ୍ୟା ମଧ୍ୟ ଉପୁଜିଲା । ପୁଞ୍ଜିବାଦ ଫଳରେ ଅଧିକରୁ ଅଧିକ ଉତ୍ପାଦନ ହେଲା ଏବଂ ଏହି କାରଣରୁ ଲୋକସଂଖ୍ୟା ମଧ୍ୟ ଜୋର-ସୋରରେ ବଢ଼ିଲା; କାରଣ ଏଥିରେ ଅଧିକ ଲୋକଙ୍କ ଭରଣପୋଷଣ ଓ ଅନ୍ନସଂସ୍ଥାନ

ହୋଇପାରିଲା । ନଗର ବିଭିନ୍ନ ବିଭାଗ ସହି ଜଟିଳ ସହଯୋଗ କରି ପ୍ରକାଣ୍ଡ ବ୍ୟବସାୟ-ମାନ ଗଢ଼ି ଉଠିଲା ଏବଂ ଏହା ସଙ୍ଗେ ସଙ୍ଗେ ଛୋଟ ଛୋଟ ବ୍ୟବସାୟର ପ୍ରତିଯୋଗିତାକୁ ଦମନ କରିଦିଆଗଲା । ଇଂଲଣ୍ଡକୁ ଧନ ବୋହିଆସିଲା; କିନ୍ତୁ ସେଥିରୁ ବେଶି ଖଟାଗଲା ନୂତନ କାରଖାନା, ରେଳ ବା ସେହିପରି ଅନ୍ୟ କିଛି ଉଦ୍ୟମରେ । ଶ୍ରମିକମାନେ ନିଜର ଦଶା ଫେରାଇବା ଲାଗି ଧର୍ମଘଟ କରିଆରେ ଚେଷ୍ଟା କଲେ; କିନ୍ତୁ ସାଧାରଣତଃ ଏସବୁ ବିଫଳ ହେଉଥିଲା । ତାପରେ ସେମାନେ ୧୮୪୦ ବେଳର 'ଚାର୍ଟିଷ୍ଟ' ଆନ୍ଦୋଳନରେ ଯୋଗ ଦେଲେ । ଏହି 'ଚାର୍ଟିଷ୍ଟ' ଆନ୍ଦୋଳନ ବିପ୍ଳବ ବର୍ଷ, ୧୮୪୮ରେ ଭାଙ୍ଗିଗଲା ।

ପୁଞ୍ଜିବାଦର ସଫଳତା ଲୋକଙ୍କ ଆଖି ଝଲସାଇ ଦେଲା ସତ, କିନ୍ତୁ ତଥାପି କେତେକ ଉଗ୍ରପନ୍ଥୀ ଅର୍ଥାତ୍ ଉନ୍ନତ ମତ ପୋଷଣ କରୁଥିବା ଲୋକେ ବା ମାନବହିତୈଷୀ-ମାନେ ଏପରି ଗଳାକଟା ପ୍ରତିଯୋଗିତା ଏବଂ ଦେଶର ଧନବୃଦ୍ଧି ସତ୍ତ୍ୱେ ଏହା ଫଳରେ ଶ୍ରମିକମାନଙ୍କୁ ଯେ କଷ୍ଟଭୋଗ କରିବାକୁ ପଡ଼ୁଥିଲା, ସେଥିରେ ସୁଖୀ ନ ଥିଲେ । ଇଂଲଣ୍ଡ, ଜର୍ମାନୀ ଓ ଫ୍ରାନ୍ସରେ ଏମାନେ ଏହାର ନାନା ପ୍ରତିକାର ପାଞ୍ଚିଲେ । କେତେପ୍ରକାର ସମାଧାନର ପ୍ରସ୍ତାବ ହେଲା ଏବଂ ସେସବୁ ଏକାଠି କରି ତାର ନାମ ରଖାଗଲା—'ସାମ୍ୟବାଦ' **(Socialism)** ବା ସାମୂହିକବାଦ **(Collectivism)** ବା ସାମାଜିକ ଗଣତନ୍ତ୍ର **(Social Democracy)**—ଏହି ପ୍ରତ୍ୟେକଟି ଶବ୍ଦ ଅସ୍ପଷ୍ଟ ଭାବରେ ଏକା କଥାକୁ ବୁଝାଉଥିଲା । ଏହି ସଂସ୍କାରକମାନେ ଗୋଟାଏ ବିଷୟରେ ଏକମତ ଥିଲେ; ତାହା ହେଉଛି ଏହି ଯେ—ଶିଳ୍ପ ଉପରେ ବ୍ୟକ୍ତିଗତ ଅଧିକାର ଓ ନିୟନ୍ତ୍ରଣ ହେତୁ ହିଁ ସବୁ ଗୋଳମାଳ ହେଉଛି । ଯଦି ଏହା ପରିବର୍ତ୍ତେ ରାଷ୍ଟ୍ର **(State)** ଏହାର ମାଲିକ ହୋଇ ନିୟନ୍ତ୍ରଣ କରନ୍ତା ଅଥବା ଅନ୍ତତଃ ଜମି ଓ ପ୍ରଧାନ ଶିଳ୍ପ ଆଦି ଉତ୍ପାଦନର ମୁଖ୍ୟ ସାଧନଗୁଡ଼ିକର ନିୟନ୍ତ୍ରଣ କରନ୍ତା, ତେବେ ଶ୍ରମିକମାନେ ଶୋଷିତ ହେବାର କୌଣସି ଆଶଙ୍କା ରହନ୍ତା ନାହିଁ । ଏହିପରି ଏକପ୍ରକାର ଅସ୍ପଷ୍ଟରୂପେ ଲୋକେ ପୁଞ୍ଜିବାଦୀ ପ୍ରଥା ପରିବର୍ତ୍ତେ ଅନ୍ୟ ଉପାୟ ଖୋଜିଲେ । କିନ୍ତୁ ପୁଞ୍ଜିବାଦୀ ପ୍ରଥା ଲୋପ ହେବା ପାଇଁ ଯାଉନ୍ଥ ନ ଥିଲା, ବରଂ ଏହା ଦିନକୁ ଦିନ ଅଧିକ ଶକ୍ତିଶାଳୀ ହେଉଥିଲା ।

ଏହିସବୁ ସାମ୍ୟବାଦୀ ଭାବ ବୁଦ୍ଧିଜୀବୀମାନେ ଏବଂ ରବର୍ଟ ଓଏନଙ୍କ ଭଳି ଜଣେ କାରଖାନା ମାଲିକ ଆରମ୍ଭ କରିଥିଲେ । କିଛିକାଳ ପାଇଁ ଶ୍ରମିକମାନଙ୍କ ଶ୍ରମିକ ସଙ୍ଘ ଆନ୍ଦୋଳନ ଭିନ୍ନ ରାସ୍ତାରେ ଗତି କରୁଥିଲା—କେବଳ ଅଧିକ ମୂଲ ଓ ଉନ୍ନତ ଅବସ୍ଥା ଦାବୀ ନେଇ । କିନ୍ତୁ ଏହିସବୁ ଭାବଧାରା ଏହାକୁ ସ୍ୱତଃ ପ୍ରଭାବିତ କଲା ଏବଂ ଏହା ମଧ୍ୟ ସେହିପରି ସାମ୍ୟବାଦର ବିକାଶରେ ବହୁତ ପ୍ରଭାବ ପକାଇଲା । ଇଂଲଣ୍ଡ, ଫ୍ରାନ୍ସ ଓ ଜର୍ମାନୀ—ଇଉରୋପର ଏହି ତିନୋଟି ମୁଖ୍ୟ ଶିଳ୍ପୋନ୍ନତ ଦେଶରୁ ପ୍ରତ୍ୟେକଟିରେ ଶ୍ରମିକ ଶ୍ରେଣୀର ପ୍ରକୃତି ଓ ବଳ ଅନୁସାରେ ଏକପ୍ରକାର ସାମ୍ୟବାଦର ଅଭିବୃଦ୍ଧି ହେଲା । ମୋଟାମୋଟି ଇଂରେଜ ସାମ୍ୟବାଦ ହେଲା ଭିନ୍ନ ଭିନ୍ନ ଢଙ୍ଗରେ, ରକ୍ଷଣଶୀଳ ଏବଂ ଏହା କ୍ରମପରିବର୍ତ୍ତିନ

ପ୍ରଣାଳୀ ଓ ଧୀର ପ୍ରଗତିରେ ବିଶ୍ୱାସ କରୁଥିଲା; ଅନ୍ୟ ଦେଶର ସାମ୍ୟବାଦ ଅଧିକ ଅଗ୍ରଗାମୀ ଓ ବୈପ୍ଲବିକ ଥିଲା । ଆମେରିକାର ବିଶାଳତା ହେତୁ ଏବଂ ସେଠାରେ ବହୁ ଶ୍ରମିକର ଆବଶ୍ୟକତା ଥିବାରୁ ସେଠାର ଅବସ୍ଥା ସମ୍ପୂର୍ଣ୍ଣ ଅଲଗା ଧରଣର ଥିଲା । ତେଣୁ ଅନେକ ଦିନ ପର୍ଯ୍ୟନ୍ତ କୌଣସି ଶକ୍ତିଶାଳୀ ଶ୍ରମିକଶ୍ରେଣୀ ଆନ୍ଦୋଳନ ବିକାଶ ପାଇଲା ନାହିଁ ।

ଏହି ଶତାବ୍ଦୀର ମଧ୍ୟଭାଗରୁ ଏକ ପୁରୁଷ ପର୍ଯ୍ୟନ୍ତ ବ୍ରିଟିଶ ଶିଳ୍ପ ହିଁ ଜଗତରେ ପ୍ରାଧାନ୍ୟ ଲାଭ କଲା ଏବଂ ଶିଳ୍ପର ଲାଭ ଓ ଭାରତ ଏବଂ ଅନ୍ୟ ଅଧୀନସ୍ଥ ଦେଶର ଶୋଷଣ ହେତୁ ପ୍ରଚୁର ଧନ ବୋହିଆସିଲା । ଏହି ବିରାଟ ସମ୍ପଦର ଏକ ଅଂଶ ଶ୍ରମିକମାନଙ୍କ ହାତକୁ ବି ଆସିଲା ଏବଂ ସେମାନଙ୍କର ଜୀବନଧାରଣ ସ୍ତର (Standard) ଯେପରି ଉନ୍ନତ ହୋଇଗଲା, ତାହା ସେମାନେ ପୂର୍ବରୁ କେବେ ଜାଣି ନ ଥିଲେ । ସମୃଦ୍ଧି ଆଉ ବିପ୍ଳବ ଏକ ସଙ୍ଗରେ ରହିପାରେନା ଏବଂ ବ୍ରିଟିଶ ଶ୍ରମିକଙ୍କ ଭିତରେ ସେ ପୁରୁଣା ବିପ୍ଳବ ଭାବ ଉଭେଇଗଲା । ଏପରି କି ବ୍ରିଟିଶ ଢାଞ୍ଚା ସାମ୍ୟବାଦ ସବୁଠାରୁ ମାନ୍ଦା (moderate) ହୋଇପଡ଼ିଲା । ଏହାକୁ ଫେବିୟାନିଜମ୍ (Fabianism) କହନ୍ତି—ଏହା ଏକ ପୁରାତନ ରୋମାନ୍ ସେନାପତିଙ୍କ ନାମରୁ ହୋଇଛି । ସେ ସେନାପତି ଶତ୍ରୁ ସହିତ ପ୍ରତ୍ୟକ୍ଷ ସଂଗ୍ରାମ କରୁ ନ ଥିଲେ, ଆସ୍ତେ ଆସ୍ତେ ଶତ୍ରୁଶକ୍ତି କ୍ଷୟ କରିଥିଲେ । ୧୮୬୭ରେ ବ୍ରିଟିଶ ଭୋଟ କ୍ଷମତା ଆହୁରି ବ୍ୟାପକ ହେଲା ଏବଂ ସହରର ଶ୍ରମିକଙ୍କ ଭିତରୁ କେତେକ ମଧ୍ୟ ଭୋଟ କ୍ଷମତା ପାଇଲେ । ଶ୍ରମିକସଂଘସବୁ ଏପରି ଭଲ ଆଚରଣ କରୁଥାନ୍ତି ଓ ସମୃଦ୍ଧିଶାଳୀ ହୋଇଥାନ୍ତି ଯେ ଶ୍ରମିକ ଭୋଟସବୁ ବ୍ରିଟିଶ ଲିବରାଲ (ଉଦାର) ଦଳ ପାଉଥିଲା ।

ସମୃଦ୍ଧି ଲାଭ କରି ଇଂଲଣ୍ଡ ଆତ୍ମତୃପ୍ତ ଅବସ୍ଥାରେ ଥିଲାବେଳେ ଇଉରୋପ ମହାଦେଶରେ ଏକ ନୂତନ ମତକୁ ଅନେକେ ଉତ୍ସାହପୂର୍ଣ୍ଣ ଭାବରେ ଓ ଆନନ୍ଦରେ ସହି ଗ୍ରହଣ କରୁଥାନ୍ତି । ଏହା ହେଉଛି ନୈରାଜ୍ୟବାଦ (Anarchism)—ଏହା କଣ ନ ଜାଣି ଅନେକ ଲୋକ ଏହି ଶବ୍ଦ ଶୁଣି ଆତଙ୍କିତ ହୋଇପଡ଼ନ୍ତି । ନୈରାଜ୍ୟବାଦ ବୋଇଲେ ଏକ ସମାଜ—ଯେଉଁଠି ଯେତେଦୂର ସମ୍ଭବ କୌଣସି କେନ୍ଦ୍ର ସରକାର ରହିବ ନାହିଁ ଏବଂ ବହୁ ପରିମାଣରେ ବ୍ୟକ୍ତିଗତ ସ୍ୱାଧୀନତା ଥିବ । ନୈରାଜ୍ୟବାଦୀ ଭାବ ଏକ ଅସାଧାରଣ ଉଚ୍ଚ ଆଦର୍ଶ; "ନିଃସ୍ୱାର୍ଥ ପରୋପକାର, ଦୃଢ଼ତା ଏବଂ ପରସ୍ପରର ଅଧିକାର ରକ୍ଷାପାଇଁ ସ୍ୱେଚ୍ଛାକୃତ ସମ୍ମାନ ପ୍ରଦର୍ଶନ ଉପରେ ପ୍ରତିଷ୍ଠିତ ସାମୂହିକ ଆଦର୍ଶରେ ବିଶ୍ୱାସ ।" ରାଷ୍ଟ୍ର ବା ଷ୍ଟେଟ୍ ତରଫରୁ କୌଣସି ପ୍ରକାର ବାଧବାଧକତା ବା ବଳପ୍ରୟୋଗ ଆଉ ଏଥିରେ ରହିବ ନାହିଁ । ଥୋରୋ ନାମକ ଜଣେ ଆମେରିକାବାସୀ କହିଛନ୍ତି—"ଯେଉଁ ସରକାର ଆଦୌ ଶାସନ କରେ ନାହିଁ, ତାହା ହିଁ ସର୍ବୋତ୍କୃଷ୍ଟ ଏବଂ ଯେତେବେଳେ ଲୋକେ ଏହି ଅବସ୍ଥା ଲାଗି ପ୍ରସ୍ତୁତ ହୋଇଯିବେ, ସେତେବେଳେ ଏହି ପ୍ରକାର ସରକାର ସେମାନେ ପାଇବେ ।"

ଏହା ଏକ ସୁନ୍ଦର ଆଦର୍ଶ ପରି ମନେହେଉଛି—ପ୍ରତ୍ୟେକ ଲୋକ ପାଇଁ ପୂର୍ଣ୍ଣ ସ୍ୱାଧୀନତା, ପ୍ରତ୍ୟେକର ପରସ୍ପରର ଅଧିକାର ପ୍ରତି ସମ୍ମାନ ପ୍ରଦର୍ଶନ, ସ୍ୱଭାବତଃ ନିଃସ୍ୱାର୍ଥପରତା, ସ୍ୱେଚ୍ଛାକୃତ ସହଯୋଗ—କିନ୍ତୁ ହିଂସା ଓ ସ୍ୱାର୍ଥପରଭାବ ଯୋଗୁଁ ଆଜିକାର ଦୁନିଆ ଏହାଠାରୁ ବହୁତ ଦୂରରେ ରହିଛି। ନୈରାଜ୍ୟବାଦୀମାନେ ଯେ କୌଣସି କେନ୍ଦ୍ର ସରକାର ରହୁଁ ନ ଥିଲେ ବା ଖୁବ୍ କମ୍ ଶାସନ କରୁଥିବା ସରକାର ରହୁଁ ଥିଲେ, ତାହା ଏତେଦିନଯାକେ ଲୋକେ ଯେଉଁ ଏକଚ୍ଛତ୍ର ଓ ସ୍ୱେଚ୍ଛାଚାରୀ ଶାସନ ତଳେ ରହି ଆସିଥିଲେ ତାର ଏକ ପ୍ରତିକ୍ରିୟା ସ୍ୱରୂପ ଉପୁଜିଥିବ ନିଶ୍ଚୟ। ସରକାରସବୁ ସେମାନଙ୍କୁ ଦମନ କରିଛନ୍ତି। ତାଙ୍କ ଉପରେ ଅତ୍ୟାଚାର କରିଛନ୍ତି। ତେଣୁ କୌଣସି ସରକାର ନ ରହୁ। ନୈରାଜ୍ୟବାଦୀମାନେ ମଧ୍ୟ ଅନୁଭବ କଲେ ଯେ ସାମ୍ୟବାଦ ଅଧୀନରେ ମଧ୍ୟ ଷ୍ଟେଟ (ସରକାର) ଉତ୍ପାଦନର ସମସ୍ତ ସାଧନର ମାଲିକ ହେଉଥିବାରୁ ଏହା ବି ସ୍ୱେଚ୍ଛାଚାରୀ ହୋଇଯାଇପାରେ; ତେଣୁ ନୈରାଜ୍ୟବାଦୀମାନେ ଥିଲେ ଏକପ୍ରକାର ସାମ୍ୟବାଦୀ—ସେମାନେ ସ୍ଥାନୀୟ ଓ ବ୍ୟକ୍ତିଗତ ସ୍ୱାଧୀନତା ଉପରେ ବେଶି ଜୋର ଦେଉଥିଲେ। ଅନ୍ୟ ପକ୍ଷରେ ସାମ୍ୟବାଦୀଙ୍କ ଭିତରୁ ଅନେକେ ଏହି ନୈରାଜ୍ୟବାଦକୁ ଏକ ସୁଦୂର ଆଦର୍ଶଭାବରେ ଗ୍ରହଣ କରିବାକୁ ପ୍ରସ୍ତୁତ। କିନ୍ତୁ ତାଙ୍କ ମତରେ କେତେକ କାଳ ପର୍ଯ୍ୟନ୍ତ ସାମ୍ୟବାଦ ସ୍ଥିତିରେ ଏକ କେନ୍ଦ୍ରୀଭୂତ ଓ ଶକ୍ତିଶାଳୀ ରାଷ୍ଟ୍ର ରହିବା ଦରକାର ପଡ଼ିବ। ତେଣୁ ସାମ୍ୟବାଦ ଓ ନୈରାଜ୍ୟବାଦ ଭିତରେ ବହୁତ ପାର୍ଥକ୍ୟ ଥିଲେ ସୁଦ୍ଧା ପରସ୍ପରର ଛାୟା ପ୍ରତ୍ୟେକ ଉପରେ ପଡ଼ିଲା—କ୍ରମେ ଏକ ଅପରକୁ ମଧ୍ୟ ଘୋଡ଼ାଇ ପକାଉଥିଲା।

ଆଧୁନିକ ଶିଳ୍ପ ଫଳରେ ଏକ ସଂଗଠିତ ଶ୍ରମିକଶ୍ରେଣୀର ବିକାଶ ପାଇଲା। ନୈରାଜ୍ୟବାଦର ସ୍ୱରୂପ ଯାହା, ସେଥିରେ ଏହା ଏକ ସୁସଂଗଠିତ ଆନ୍ଦୋଳନ ହୋଇପାରେ ନାହିଁ। ତେଣୁ ଶିଳ୍ପୋନ୍ନତ ଦେଶମାନଙ୍କରେ ନୈରାଜ୍ୟବାଦୀ ଭାବଧାରା ପ୍ରସାର ଲଭିବାର କୌଣସି ଆଶା ନ ଥିଲା; ସେଠି ଶ୍ରମିକ ସଙ୍ଘ ଓ ସେହିପରି ଅନୁଷ୍ଠାନ ଗଢ଼ିଉଠୁଥିଲା। ଇଂଲଣ୍ଡରେ ନୈରାଜ୍ୟବାଦୀଙ୍କ ସଂଖ୍ୟା ଥିଲା କମ୍; ଜର୍ମାନୀରେ ମଧ୍ୟ ସେହିପରି। କିନ୍ତୁ ଶିଳ୍ପ ଉଦ୍ୟୋଗରେ ଅଧିକ ଅନୁନ୍ନତ ଦକ୍ଷିଣ ଓ ପୂର୍ବ ଇଉରୋପରେ ଏହି ଭାବଧାରାର ପ୍ରସାର ପାଇଁ ଉର୍ବର ଭୂମି ଥିଲା। ଆଧୁନିକ ଶିଳ୍ପ ଦକ୍ଷିଣ ଓ ପୂର୍ବାଞ୍ଚଳରେ ବିସ୍ତାର ଲଭ କରିବା ସଙ୍ଗେ ସଙ୍ଗେ ନୈରାଜ୍ୟବାଦ ଦୁର୍ବଳରୁ ଦୁର୍ବଳତର ହୋଇପଡ଼ିଲା। ଆଜି ଏହା ଏକପ୍ରକାର ମୃତ ଜିନିଷ, ମାତ୍ର ଆଜି ସୁଦ୍ଧା ସ୍ପେନ୍ ପରି ଅଶିଳ୍ପପ୍ରଧାନ ଦେଶରେ ଏହା କେତେକ ପରିମାଣରେ ଦେଖାଯାଏ।

ଏକ ଆଦର୍ଶ ଦୃଷ୍ଟିରୁ ନୈରାଜ୍ୟବାଦ ଖୁବ୍ ସୁନ୍ଦର ହୋଇପାରେ। କିନ୍ତୁ କେବଳ ଉଦ୍‌ବ୍ୟକ୍ତ ଓ ଅସନ୍ତୁଷ୍ଟ ଲୋକ ଯେ ଏହାର ଆଶ୍ରୟ ନେଲେ ତାହା ନୁହେଁ, ସ୍ୱାର୍ଥପର ବ୍ୟକ୍ତିବିଶେଷ ମଧ୍ୟ ଏହି ଆଦର୍ଶର ଆବରଣରେ ନିଜର ଲାଭ କରିବାରେ ଲାଗିଲେ। ଏହା ଏକ

ପ୍ରକାର ହିଂସା ଜାତ କଲା—ବର୍ତ୍ତମାନ ଏହି ଶବ୍ଦ ସହ ହିଂସା କଥା ପ୍ରତ୍ୟେକ ମନରେ ଉଠେ ଏବଂ ଏହା ଫଳରେ ଏହି ଆଦର୍ଶର ବଦନାମ ହୋଇଛି । ସମାଜର ଯେପରି ବ୍ୟାପକ ପରିବର୍ତ୍ତନ କରିବାର ଆଶା କରୁଥିଲେ, ତାହା କରିବାକୁ ଅକ୍ଷମ ହୋଇ କେତେକ ନୈରାଜ୍ୟବାଦୀ ନୂଆ ପ୍ରଣାଳୀରେ ପ୍ରଚାର କରିବା ନିମନ୍ତେ ସ୍ଥିର କଲେ । ଏହାକୁ କହନ୍ତି "କାର୍ଯ୍ୟ କରିଆରେ ପ୍ରଚାର"—ସାହସିକ ଦୃଷ୍ଟାନ୍ତର ପ୍ରଭାବ, ଅତ୍ୟାଚାରର ପ୍ରତିରୋଧ କରିବା ପାଇଁ ସାହସିକ କାର୍ଯ୍ୟ ଓ ସେଥିପାଇଁ ନିଜର ଜୀବନତ୍ୟାଗ । ଏହି ଭାବ ଗ୍ରହଣ କରି ବିଭିନ୍ନ ସ୍ଥାନରେ ବିଦ୍ରୋହ ହେଲା । ଯେଉଁମାନେ ଏଥିରେ ଯୋଗ ଦେଲେ, ସେମାନେ ସେତେବେଳେ କୌଣସି ସଫଳତା ଆଶା କରି ନ ଥିଲେ । ନିଜର ଲକ୍ଷ୍ୟ ହାସଲ ନିମନ୍ତେ ଏହି ନୂତନ ଧରଣର ପ୍ରଚାର ଲାଗି ସେମାନେ ସ୍ୱେଚ୍ଛାରେ ନିଜର ଜୀବନ ବିପନ୍ନ କରୁଥିଲେ । ଅବଶ୍ୟ ଏହିସବୁ ବିଦ୍ରୋହ ଦବାଇ ଦିଆଗଲା ଏବଂ ତା'ପରେ ନୈରାଜ୍ୟବାଦୀମାନେ ବ୍ୟକ୍ତିଗତ ଭାବରେ ଆତଙ୍କବାଦ ଆରମ୍ଭ କଲେ—ବୋମା ପକାଇବା, ରାଜା ଓ ଉଚ୍ଚ କର୍ମଚାରୀଙ୍କୁ ହତ୍ୟା କରିବା ଇତ୍ୟାଦି ଆତଙ୍କବାଦୀ କାର୍ଯ୍ୟ । ଏହି ନିର୍ବୋଧ ହିଂସା ଦୁର୍ବଳତା ଓ ହତାଶ ଭାବ ବୃଦ୍ଧିର ସ୍ପଷ୍ଟ ସୂଚନା । ଧୀରେ ଧୀରେ ୧୯ଶ ଶତାବ୍ଦୀ ଶେଷବେଳକୁ ଏକ ଆନ୍ଦୋଳନରୂପେ ନୈରାଜ୍ୟବାଦ ଉଭେଇଗଲା । ବୋମା ପକାଇବା ଏବଂ "କାର୍ଯ୍ୟ କରିଆରେ ପ୍ରଚାର"କୁ ଅନେକ ନେତୃସ୍ଥାନୀୟ ନୈରାଜ୍ୟବାଦୀ ପସନ୍ଦ କଲେ ନାହିଁ, ଏହାକୁ ଅଗ୍ରାହ୍ୟ କଲେ ।

ମୁଁ ତତେ କେତେକ ଜଣାଶୁଣା ନୈରାଜ୍ୟବାଦୀଙ୍କ ନାମ ଦେବି । ମଜାର କଥା ଯେ ଏହି ନୈରାଜ୍ୟବାଦୀ ନେତାମାନଙ୍କ ଭିତରୁ ଅଧିକାଂଶ ଅତିଶୟ ଭଦ୍ର, ଆଦର୍ଶବାଦୀ ଏବଂ ତାଙ୍କର ବ୍ୟକ୍ତିଗତ ଜୀବନ ବେଶ୍ ଆଦରଣୀୟ । ନୈରାଶ୍ୟବାଦୀ ନେତାଙ୍କ ଭିତରୁ ସର୍ବପ୍ରଥମ ହେଉଛନ୍ତି ଜଣେ ଫରାସୀ ଲୋକ—ପିୟରେ ପ୍ରାଉଧନ୍ (Pierre Proudhon) । ସେ ୧୮୦୯ ଠାରୁ ୧୮୬୫ ପର୍ଯ୍ୟନ୍ତ ବଞ୍ଚିଥିଲେ । ତାଙ୍କଠାରୁ ବୟସରେ କମ୍ ନେତା ଥିଲେ ରୁଷ ସାମନ୍ତ ମାଇକେଲ ବାକୁନିନ୍; ସେ ଇଉରୋପର ବିଶେଷତଃ ଦକ୍ଷିଣାଞ୍ଚଳର ଶ୍ରମିକଙ୍କ ଭିତରେ ଖୁବ୍ ଲୋକପ୍ରିୟ ଥିଲେ । ତାଙ୍କର ମାର୍କସ୍‌ଙ୍କ ସହ ସଂଘର୍ଷ ହେଲା । ମାର୍କସ୍ ତାଙ୍କୁ ଓ ତାଙ୍କ ମତାବଲମ୍ବୀ ଅନୁଚରମାନଙ୍କୁ ସେ ଯେଉଁ ଆନ୍ତର୍ଜାତିକ ସଂଘ କରିଥିଲେ, ସେଥିରୁ ତଡ଼ିଦେଲେ । ତୃତୀୟ ବ୍ୟକ୍ତି ହେଉଛନ୍ତି ପିଟର କ୍ରୋପଟ୍‌କିନ—ସେ ଜଣେ ରୁଷିଆବାସୀ ଓ ଜଣେ ରାଜପୁତ୍ର—ସେ ପ୍ରାୟ ଆମ ଅମଳ ପର୍ଯ୍ୟନ୍ତ ବଞ୍ଚିଥିଲେ । ସେ ନୈରାଜ୍ୟବାଦ ଓ ଅନ୍ୟ ବିଷୟରେ କେତେକ ଆଗ୍ରହଜନକ ବହି ଲେଖିଛନ୍ତି । ଚତୁର୍ଥ ଓ ଶେଷ ବ୍ୟକ୍ତି ହେଉଛନ୍ତି ଜଣେ ଇଟାଲୀବାସୀ—ତାଙ୍କ ନାମ ଏରିକୋ ମାଲାଟେଷ୍ଟା —ତାଙ୍କର ବୟସ ୮୦ ବର୍ଷରୁ ବେଶୀ—୧୯ଶ ଶତାବ୍ଦୀର ବଡ଼ ନୈରାଜ୍ୟବାଦୀଙ୍କର ଶେଷ ପ୍ରତୀକ ।

ମାଲାଟେଷ୍ଟାଙ୍କ ସମ୍ବନ୍ଧରେ ଏକ ସୁନ୍ଦର ଗପ ଅଛି, ମୁଁ ତତେ କହିବି । ଇଟାଲୀର

ଏକ ଅଦାଲତରେ ତାଙ୍କର ବିଚାର ହେଉଥିଲା । ସରକାରୀ ଓକିଲ ଯୁକ୍ତି କଲେ ଯେ ମାଲଟେଷ୍ଟାଙ୍କ ପ୍ରଭାବ ସେ ଅଞ୍ଚଳର ଶ୍ରମିକମାନଙ୍କ ଭିତରେ ଖୁବ୍ ବେଶୀ ଥିଲା ଏବଂ ଏଥି ଯୋଗୁଁ ସେମାନଙ୍କ ଆଚରଣରେ ସମ୍ପୂର୍ଣ୍ଣ ପରିବର୍ତ୍ତନ ଘଟିଛି । ଏହାଦ୍ୱାରା ଅପରାଧ ଲୋପ ପାଇଯାଉଛି; ଅପରାଧ ଆଜିକାଲି ଖୁବ୍ କମ୍ ହୋଇଗଲାଣି । ଅପରାଧ ଯଦି ଏକାବେଳକେ ବନ୍ଦ ହୋଇଯାଏ, ତାହାହେଲେ ଆଇନ ଅଦାଲତ ରହି କ'ଣ କରିବ ? ତେଣୁ ମାଲଟେଷ୍ଟାଙ୍କୁ ଜେଲକୁ ପଠାଇବା ଉଚିତ ଏବଂ ତାଙ୍କୁ ୬ ମାସ ଜେଲଦଣ୍ଡ ଦିଆଗଲା ।

ଦୁର୍ଭାଗ୍ୟବଶତଃ ନୈରାଜ୍ୟବାଦ ଆଉ ହିଂସା ଅଧିକ ପରିମାଣରେ ଏକ ହୋଇ-ଯାଉଛି ଏବଂ ଏହା ଯେ ଏକ ଦର୍ଶନ ଓ ଆଦର୍ଶ ଏବଂ ଏଥିରେ ଅନେକ ଲୋକ ଅନୁପ୍ରାଣିତ ହୋଇଛନ୍ତି, ସେକଥା ଲୋକେ ଭୁଲିଯାଇଛନ୍ତି । ଏକ ଆଦର୍ଶ ହିସାବରେ ଏହା ଆମର ବର୍ତ୍ତମାନ ଅସମ୍ପୂର୍ଣ୍ଣ ଦୁନିଆର ବହୁ ଦୂରରେ ଏବଂ ଆମର ଆଧୁନିକ ସଭ୍ୟତା ଏତେ ଜଟିଳ ହୋଇପଡ଼ିଛି ଯେ, ଏହା ଯେଉଁ ସହଜ ପ୍ରତିକାର ଦର୍ଶାଇଛି, ତାହା ପ୍ରୟୋଗ କରିହେବ ନାହିଁ ।

## ୧୩୩ : କାର୍ଲ୍ ମାର୍କସ ଓ ଶ୍ରମିକ ସଂଗଠନର ବିକାଶ

ଫେବୃୟାରୀ ୧୪, ୧୯୩୩

୧୯ଶ ଶତାବ୍ଦୀର ମଧ୍ୟବେଳକୁ ଇଉରୋପୀୟ ଶ୍ରମିକ ଓ ସାମ୍ୟବାଦ ମଞ୍ଚରେ ଏକ ନୂତନ ଚିତ୍ତାକର୍ଷକ ବ୍ୟକ୍ତିଙ୍କର ଆବିର୍ଭାବ ହେଲା; ସେ ହେଉଛନ୍ତି କାର୍ଲ ମାର୍କସ୍ । ଏହାଙ୍କ ନାମ ଏଥିପୂର୍ବରୁ କେତେକ ଠାରେ ଉଲ୍ଲେଖ କରାଯାଇଛି । ସେ ଜଣେ ଜର୍ମାନ ଇହୁଦୀ —୧୮୧୮ରେ ଜନ୍ମ ହୋଇଥିଲେ । ସେ ଆଇନ, ଇତିହାସ ଓ ଦର୍ଶନ ଅଧ୍ୟୟନ କରିଥିଲେ । ସେ ଏକ ସମ୍ବାଦପତ୍ର ପ୍ରକାଶ କରିବାରୁ ଜର୍ମାନ କର୍ତ୍ତୃପକ୍ଷଙ୍କ ସହ ତାଙ୍କର ସଂଘର୍ଷ ହେଲା । ସେ ପାରିସକୁ ଚାଲିଗଲେ, ସେଠାରେ ସେ ନୂତନ ଲୋକଙ୍କ ସଂସ୍ପର୍ଶରେ ଆସିଲେ, ସାମ୍ୟବାଦ ଓ ନୈରାଜ୍ୟବାଦ ସମ୍ବନ୍ଧରେ ନୂତନ ପୁସ୍ତକମାନ ପଢ଼ିଲେ ଏବଂ ସାମ୍ୟବାଦୀ ଭାବ ଗ୍ରହଣ କଲେ । ଏଠାରେ ସେ ଫ୍ରେଡ଼୍ରିକ୍ ଏଙ୍ଗେଲସ୍ ନାମକ ଆଉ ଜଣେ ଜର୍ମାନଙ୍କୁ ଭେଟିଲେ । ଏଙ୍ଗେଲସ ଇଂଲଣ୍ଡରେ ବସବାସ କରିଥାନ୍ତି ଏବଂ କପା ଶିଳ୍ପରେ ଜଣେ ଧନୀ କାରଖାନା-ମାଲିକ ହୋଇଥାଆନ୍ତି । ଏଙ୍ଗେଲସ ମଧ୍ୟ ପ୍ରଚଳିତ ସାମାଜିକ ଅବସ୍ଥା ପ୍ରତି ଅସନ୍ତୁଷ୍ଟ ଥିଲେ ଏବଂ ତାଙ୍କ ଚାରିଆଡ଼େ ସେ ଯେଉଁ ଦାରିଦ୍ର୍ୟ ଓ ଶୋଷଣ ଦେଖୁଥିଲେ, ତାହାର ପ୍ରତିକାର ପାଇଁ ସର୍ବଦା ଚିନ୍ତା କରୁଥିଲେ । ରବର୍ଟ ଓୟେନ୍‌ଙ୍କର ସଂସ୍କାର ଆଣିବା ଧାରଣା ଓ ଉଦ୍ୟମ

ତାଙ୍କ ମନକୁ ପାଇଲା ଏବଂ ସେ ଜଣେ ଓୟେନ୍‌ବାଦୀ (ଓୟେନାଇଟ୍) ହେଲେ—ଓୟେନ୍‌ଙ୍କ ଅନୁଚରମାନେ ଏହି ନାମରେ ପରିଚିତ । ପାରିସରେ କାର୍ଲ୍ ମାର୍କସଙ୍କ ସହ ପ୍ରଥମ ସାକ୍ଷାତରେ ତାଙ୍କ ମତ ବଦଳିଗଲା । ଏହିଦିନଠାରୁ ମାର୍କସ୍ ଓ ଏଙ୍ଗେଲ୍‌ସ ଦୁହେଁ ପରମ ବନ୍ଧୁ ଓ ସହକର୍ମୀ ପାଲଟିଲେ—ଦୁହିଁଙ୍କର ମତ ହେଲା ସମାନ ଏବଂ ଏକ ଉଦ୍ଦେଶ୍ୟ ଲାଗି ଦୁହେଁ ମନପ୍ରାଣ ଦେଇ କାର୍ଯ୍ୟ କଲେ । ଦୁହିଁଙ୍କର ବୟସ ପ୍ରାୟ ସମାନ । ସେମାନଙ୍କର ଏପରି ଘନିଷ୍ଠ ସହଯୋଗ ଥିଲା ଯେ ସେମାନଙ୍କର ଅଧିକାଂଶ ପୁସ୍ତକ ଦୁହିଁଙ୍କର ମିଳିତ ଲେଖା ।

ସେ ସମୟରେ ଫ୍ରାନ୍‌ସରେ ଲୁଇ ଫିଲିପ୍‌ଙ୍କ ରାଜୁତି—ଫରାସୀ ସରକାର ମାର୍କସଙ୍କୁ ପାରିସରୁ ବହିଷ୍କାର କରିଦେଲେ । ସେ ଲଣ୍ଡନକୁ ଚାଲିଯାଇ ସେଠି ଅନେକ ବର୍ଷ ରହିଲେ ଓ ବ୍ରିଟିଶ ଯାଦୁଘରର ପୁସ୍ତକ ଭିତରେ ନିଜକୁ ନିମଗ୍ନ କରି ରଖିଲେ । କଠିନ ପରିଶ୍ରମ କରି ସେ ନିଜ ତଥ୍ୟରେ ପୂର୍ଣ୍ଣତା ଲାଭକଲେ ଏବଂ ସେ ସମ୍ବନ୍ଧରେ ଲେଖିଲେ । ତଥାପି ସାଧାରଣ ଅବସ୍ଥାଠାରୁ ବିଚ୍ଛିନ୍ନ ରହି ଖାଲି ତଥ୍ୟ ବର୍ଣ୍ଣନ କରୁଥିବା ଦାର୍ଶନିକ ବା ଅଧ୍ୟାପକଙ୍କ ଭଳି ସେ ଆଦୌ ନ ଥିଲେ । ସେ ସାମ୍ୟବାଦୀ ଆନ୍ଦୋଳନର ଅସ୍ପଷ୍ଟ ଆଦର୍ଶବାଦକୁ ସ୍ପଷ୍ଟ କରି ତା'ର ପ୍ରକାଶ କରିବା ସଙ୍ଗେ ସଙ୍ଗେ ତାହା ଆଗରେ ନିର୍ଦ୍ଦିଷ୍ଟ, ସୁସ୍ପଷ୍ଟ ଧାରଣା ଓ ଲକ୍ଷ୍ୟ ଥୋଇଲେ ଏବଂ ଆହୁରି ମଧ୍ୟ ଆନ୍ଦୋଳନ ଓ ଶ୍ରମିକ ସଙ୍ଗଠନରେ ମୁଖ୍ୟ ଓ ସକ୍ରିୟ ଭାଗ ନେଇଥିଲେ । ୟୁରୋପର ବିପ୍ଳବ ବର୍ଷ ୧୮୪୮ରେ ଯେଉଁ ସବୁ ଘଟଣା ଘଟିଲା, ସେଥିରେ ସେ ପ୍ରକୃତତଃ ଖୁବ୍ ଆନ୍ଦୋଳିତ ହୋଇଥିଲେ । ସେହି ବର୍ଷ ସେ ଏବଂ ଏଙ୍ଗେଲ୍‌ସ ମିଳିତ ଭାବରେ ଏକ ଇସ୍ତାହାର ପ୍ରକାଶ କଲେ । ତାହା ଖୁବ୍ ପ୍ରସିଦ୍ଧି ଲାଭ କରିଛି । ତାହା ହେଉଛି 'କମ୍ୟୁନିଷ୍ଟ ଇସ୍ତାହାର' ( Communist Manifesto ) । ଏଥିରେ ବିରାଟ ଫରାସୀ ବିପ୍ଳବ ଏବଂ ତତ୍ପରେ ୧୮୩୦ ଓ ୧୮୪୮ରେ ହୋଇଥିବା ବିଦ୍ରୋହମାନଙ୍କ ପଛରେ କି ଭାବଧାରା ଖେଳୁଥିଲା ତାହା ଆଲୋଚନା କରିଥିଲେ ଏବଂ ପ୍ରକୃତ ଅବସ୍ଥାଠାରୁ ତାହା କିପରି ଖାପଛଡ଼ା ଓ ଅସମ୍ପୂର୍ଣ୍ଣ ତାହା ଦର୍ଶାଇ ଦେଇଥିଲେ । ସେତେବେଳେ ସ୍ୱାଧୀନତା, ସମାନତା ଓ ଭ୍ରାତୃତ୍ୱ ପ୍ରଭୃତି ଯେଉଁ ଗଣତାନ୍ତ୍ରିକ ଧ୍ୱନି ଉଠୁଥିଲା ସେମାନେ ତାହାର ସମାଲୋଚନା କରିଥିଲେ ଏବଂ ଦେଖାଇଦେଲେ ଯେ ଏଥିରେ ଲୋକଙ୍କର କିଛି ଲାଭ ନାହିଁ; ଏହା ବୁର୍ଜୋୟା ଷ୍ଟେଟ୍ ରକ୍ଷାପାଇଁ କେବଳ ଗୋଟାଏ ସାଧୁ ଆବରଣ । ତା'ପରେ ସେମାନେ ସଂକ୍ଷେପରେ ନିଜର ସାମ୍ୟବାଦୀ ତଥ୍ୟ ପ୍ରକଟ କରିଛନ୍ତି ଏବଂ ଇସ୍ତାହାର ଶେଷରେ ସମସ୍ତ ଶ୍ରମଜୀବୀଙ୍କୁ ଏହି ନିବେଦନ କରିଛନ୍ତି—"ଦୁନିଆର ଶ୍ରମିକ, ଏକଜୁଟ ହୁଅ । ତୁମର ବନ୍ଧନ ଛଡ଼ା ଆଉ ତମର ହରାଇବାର କିଛି ନାହିଁ, ତମର ଦଖଲ ପାଇଁ ଏକ ଦୁନିଆ ରହିଛି ।"

କାର୍ଯ୍ୟ କରିବା ପାଇଁ ଏହା ଏକ ଆହ୍ୱାନ । ସମ୍ବାଦପତ୍ର, ବୁଲେଟିନ୍‌ଦ୍ୱାରା ଏବଂ ଶ୍ରମିକ ସଙ୍ଗଠନମାନଙ୍କୁ ଏକତ୍ର କରିବାର ଉଦ୍ୟମ ଦ୍ୱାରା ମାର୍କସ୍ ଅବିଶ୍ରାନ୍ତ ପ୍ରଚାରରେ

ଲାଗିଗଲେ । ଇଉରୋପରେ ଏକ ବଡ଼ ସଙ୍କଟ ଆସି ପହଞ୍ଚିପାରେ ବୋଲି ସେ ଅନୁଭବ କଲା ପରି ମନେହେଉଛି ଏବଂ ଏହାର ପୂର୍ଣ୍ଣ ସୁବିଧା ଉଠାଇ ପାରିବା ନିମନ୍ତେ ଶ୍ରମିକମାନେ ଏଥିପାଇଁ ପ୍ରସ୍ତୁତ ହେବାକୁ ଚାହୁଁଥିଲେ । ତାଙ୍କର ସାମ୍ୟବାଦ ତଥ୍ୟ ଅନୁସାରେ ପୁଞ୍ଜିବାଦୀ ପ୍ରଥାରେ ପ୍ରକୃତରେ ସଙ୍କଟ ଘଟିବାକୁ ବାଧ୍ୟ । ୧୮୫୪ରେ ନିଉୟର୍କର ଏକ ସମ୍ବାଦପତ୍ରରେ ମାର୍କସ୍ ଲେଖିଛନ୍ତି—

"ତଥାପି ଆମର ଭୁଲିବା ଉଚିତ ନୁହେଁ ଯେ ଇଉରୋପରେ ଏକ ଷଷ୍ଠ ଶକ୍ତି ଅଛି; କୌଣସି କୌଣସି ମୁହୂର୍ତ୍ତରେ ପାଞ୍ଚଟି ତଥାକଥିତ 'ପ୍ରଧାନ ଶକ୍ତି' ସବୁ ଉପରେ ନିଜର ପ୍ରାଧାନ୍ୟ ବିସ୍ତାର କରୁଛି ଏବଂ ସେମାନଙ୍କୁ ଥରେଇ ଦେଇଛି, ଏହି ଶକ୍ତି ହେଉଛି ବିପ୍ଳବ । ନିଶ୍ଚଳ ଅବସର ଭିତରେ ଦୀର୍ଘକାଳ ବାସ କଲା ପରେ ଏହା ଏବେ ପୁଣି ସଙ୍କଟ ଓ ଅନାହାର ଯୋଗୁଁ ଯୁଦ୍ଧକ୍ଷେତ୍ରକୁ ଡାକରା ହୋଇ ଆସିଛି······କେବଳ ଏକ ସଙ୍କେତର ଆବଶ୍ୟକ ଅଛି ଏବଂ ଷଷ୍ଠ ଓ ପ୍ରଧାନ ଇଉରୋପୀୟ ଶକ୍ତି ଅଲମ୍ପିଆନ୍‌ର କପାଳରୁ ମିନର୍ଭା ପରି ହାତରେ ତରବାରି ଧରି ଏକ ଉଜ୍ଜ୍ୱଳ ପୋଷାକ ପିନ୍ଧି ବାହାରି ପଡ଼ିବ । ଆସନ୍ନ ଇଉରୋପ ଯୁଦ୍ଧ ହିଁ ସଙ୍କେତ ଦେବ ।"

ଇଉରୋପରେ ଆସନ୍ନ ବିପ୍ଳବ ସମ୍ବନ୍ଧରେ ମାକର୍ସଙ୍କ ଭବିଷ୍ୟତବାଣୀ ଠିକ୍ ବୋଲି ପ୍ରମାଣିତ ହେଲା ନାହିଁ । ତାଙ୍କ ଲେଖାର ୬୦ ବର୍ଷ ପରେ ଘଟିଲା ଏବଂ ପୃଥିବୀ-ଯୁଦ୍ଧବେଳେ ଇଉରୋପର ଏକ ଅଂଶରେ ବିପ୍ଳବ ସଂଘଟିତ ହେଲା । ୧୮୭୧ରେ ପାରିସ କମ୍ୟୁନରେ ଏକ ଉଦ୍ୟମ ହୋଇଥିଲା, କିନ୍ତୁ ଆମେ ଦେଖିଛେ ଏହାକୁ କିପରି ନିର୍ଦ୍ଦୟ ଭାବରେ ଦମନ କରାଗଲା ।

୧୮୬୪ରେ ଲଣ୍ଡନରେ ବିଭିନ୍ନ ଲୋକଙ୍କୁ ମାକର୍ସ ଏକତ୍ର କରିପାରିଥିଲେ । ଅନେକ ଦଳ ଥିଲେ—ସେଗୁଡ଼ିକ ଅସ୍ପଷ୍ଟ ଭାବରେ ନିଜକୁ ସାମ୍ୟବାଦୀ ବୋଲି କହୁଥିଲେ । ଏକ ପକ୍ଷରେ ବିଦେଶୀ ଶାସନ ଅଧୀନରେ ଥିବା କେତେକ ଇଉରୋପୀୟ ଦେଶର ଦେଶଭକ୍ତ ଓ ଗଣତନ୍ତ୍ରବାଦୀମାନେ ଥିଲେ—ସେମାନଙ୍କ ପକ୍ଷରେ ସାମ୍ୟବାଦ ହେଉଛି ଅତି ସୁଦୂର ବ୍ୟାପାର ଏବଂ ସେମାନେ ତତ୍‌କ୍ଷଣାତ୍ ଜାତୀୟ ସ୍ୱାଧୀନତାରେ ଅଧିକ ଆଗ୍ରହୀ ଥିଲେ । ଅନ୍ୟ ପକ୍ଷରେ ନୈରାଜ୍ୟବାଦୀମାନେ ସଙ୍ଗେ ସଙ୍ଗେ ଯୁଦ୍ଧ କରିବାକୁ ପ୍ରସ୍ତୁତ ଥିଲେ । ମାର୍କସ୍‌ଙ୍କ ବ୍ୟତୀତ ନୈରାଜ୍ୟବାଦୀ ନେତା ବାକୁନିନ୍ ଜଣେ ଉଲ୍ଲେଖଯୋଗ୍ୟ ବ୍ୟକ୍ତି । ଅନେକ ବର୍ଷ ସାଇବେରିଆରେ ଜେଲଶାସ୍ତି ଭୋଗିବା ପରେ ଏହି ବୈଠକର ତିନି ବର୍ଷ ପୂର୍ବରୁ ସେ ସେଠୁ ପଳାଇ ଆସିଥାନ୍ତି । ମୁଖ୍ୟ ଭାବରେ ଦକ୍ଷିଣ ଇଉରୋପ, ଇଟାଲୀ ଓ ସ୍ପେନ ପ୍ରଭୃତି ଲାଟିନ ଦେଶମାନଙ୍କରୁ ବାକୁନିନଙ୍କ ଅନୁଚରମାନେ ଆସିଥିଲେ—ଏସବୁ ଦେଶ ଶିଳ୍ପୋନ୍ନତିରେ ପଛରେ ପଡ଼ିଥିଲା ଏବଂ ଅନୁନ୍ନତ ଥିଲା । ସେମାନେ ଅକର୍ମା ଶିକ୍ଷିତ ଏବଂ ଅନ୍ୟ ବିପ୍ଳବୀସବୁ—ପ୍ରଚଳିତ ସାମାଜିକ ବ୍ୟବସ୍ଥାରେ ଯେ କୌଣସି ସ୍ଥାନ ପାଇପାରିଲେ ନାହିଁ । ବିଶେଷ ଭାବରେ ଜର୍ମାନୀର ଶ୍ରମିକମାନଙ୍କ ଅବସ୍ଥା ଭଲ ଥିଲା ଏବଂ ମାର୍କସ୍‌ଙ୍କ

ଅନୁଚରମାନେ ଶିଳ୍ପୋନ୍ନତ ଦେଶମାନଙ୍କରୁ ଅଧିକ ଆସିଥିଲେ । ତେଣୁ ମାର୍କସ୍ ହେଲେ କ୍ରମବର୍ଦ୍ଧିଷ୍ଣୁ, ସଙ୍ଗଠିତ ଏବଂ ଅପେକ୍ଷାକୃତ ସଙ୍ଗତିସମ୍ପନ୍ନ ଶ୍ରମିକ ଶ୍ରେଣୀର ପ୍ରତିନିଧି ଏବଂ ବାକୁନିନ୍ ହେଲେ ଅପେକ୍ଷାକୃତ ଦରିଦ୍ର, ଅସଂଗଠିତ ଶ୍ରମିକ, ଶିକ୍ଷିତ ଓ ଅସନ୍ତୁଷ୍ଟ ଲୋକଙ୍କର ପ୍ରତିନିଧି । କାର୍ଯ୍ୟ କରିବାର ମୁହୂର୍ତ୍ତ ପହଞ୍ଚିବା ପର୍ଯ୍ୟନ୍ତ ତାଙ୍କର ସାମ୍ୟବାଦୀ ତଥ୍ୟ ଅନୁସାରେ ଶ୍ରମିକମାନଙ୍କର ଶିକ୍ଷା ଓ ଧୈର୍ଯ୍ୟର ସହ ସଙ୍ଗଠନର ପକ୍ଷପାତୀ ଥିଲେ ମାର୍କସ୍ । ଏପରି ମୁହୂର୍ତ୍ତ ଶୀଘ୍ର ଆସିବ ବୋଲି ସେ ବିଶ୍ୱାସ କରୁଥିଲେ । ବାକୁନିନ୍ ଓ ତାଙ୍କ ଅନୁଚରମାନେ ତତ୍‌କ୍ଷଣାତ୍ ସଂଗ୍ରାମର ପକ୍ଷପାତୀ ଥିଲେ । ମୋଟାମୋଟି ମାର୍କ୍ସ ଜିତିଲେ । 'ଏକ ଅନ୍ତର୍ଜାତୀୟ ଶ୍ରମିକ ଲୋକଙ୍କ ସମିତି' ସ୍ଥାପିତ ହେଲା—ଏହା ହେଲା ପ୍ରଥମ ଶ୍ରମିକ 'ଅନ୍ତର୍ଜାତୀୟ' । ଏହି ନାମରେ ଏହାକୁ ଡାକନ୍ତି ।

ତିନି ବର୍ଷ ପରେ ୧୮୬୭ରେ ମାର୍କ୍ସଙ୍କ ବହି ଡାସ୍ କାପିଟାଲ ବା 'କାପିଟାଲ' ଜର୍ମାନ ଭାଷାରେ ପ୍ରକାଶିତ ହେଲା । ଲଣ୍ଡନରେ ଦୀର୍ଘକାଳ ପରିଶ୍ରମର ଏହା ହେଲା ଫଳ ଏବଂ ଏଥିରେ ପ୍ରଚଳିତ ଅର୍ଥନୀତି ତଥ୍ୟର ସେ ସମାଲୋଚନା କରି ବିଶ୍ଳେଷଣ କରିଥିଲେ ଏବଂ ବିସ୍ତୃତ ଭାବରେ ନିଜର ସାମ୍ୟବାଦୀ ତଥ୍ୟ ବୁଝାଇଥିଲେ । ଏହା ଏକ ଖାଣ୍ଟି ବୈଜ୍ଞାନିକ କାର୍ଯ୍ୟ । ସେ ଧୀରସ୍ଥିରରେ ଓ ବୈଜ୍ଞାନିକ ଭାବରେ ସକଳ ପ୍ରକାର ଅସ୍ପଷ୍ଟତା ଓ ଆଦର୍ଶବାଦ ଏଡ଼ାଇଦେଇ ଇତିହାସ ଓ ଅର୍ଥନୀତିର ଉନ୍ନତି ବିଷୟରେ ଲେଖିଲେ । ବିଶେଷ ଭାବରେ ବଡ଼ ମେସିନ୍‌ରେ ହୋଇଥିବା ଔଦ୍ୟୋଗିକ ସଭ୍ୟତା ସମ୍ବନ୍ଧରେ ସେ ଆଲୋଚନା କରିଥିଲେ ଏବଂ ମାନବସମାଜରେ ଶ୍ରେଣୀମାନଙ୍କର କ୍ରମବିକାଶ, ଇତିହାସ ଓ ସଂଘର୍ଷ ବିଷୟରେ କେତେକ ନିର୍ଦ୍ଦିଷ୍ଟ ଓ ସୁଦୂରଗାମୀ ସିଦ୍ଧାନ୍ତରେ ସେ ପହଞ୍ଚିଲେ । ତେଣୁ ଏହି ନୂତନ ସୁସ୍ପଷ୍ଟ ଓ ଶକ୍ତିଶାଳୀ ଭାବରେ ଯୁକ୍ତିଦ୍ୱାରା ପ୍ରତିବାଦ ମାର୍କସ୍‌ଙ୍କର ସାମ୍ୟବାଦକୁ 'ବୈଜ୍ଞାନିକ ସାମ୍ୟବାଦ' ବୋଲି କହନ୍ତି । ଏପର୍ଯ୍ୟନ୍ତ ଯେଉଁ ଅସ୍ପଷ୍ଟ 'ଇଉଟୋପିୟାନ୍' (Utopian) ଅର୍ଥାତ୍ କଳ୍ପନାପ୍ରସୂତ ବା 'ଆଦର୍ଶବାଦୀ' (Idealistic) ଢଙ୍ଗର ସାମ୍ୟବାଦ ଥିଲା, ଏହା ତାହାର ବିପରୀତ । ମାର୍କ୍ସଙ୍କ 'କ୍ୟାପିଟାଲ' ପଢ଼ିବା ସହଜ ନୁହେଁ; ବାସ୍ତବିକ ଏପରି କଠିନ ପୁସ୍ତକ ଖୁବ୍ କମ୍ ଅଛି । କିନ୍ତୁ ସେ ଯାହାହେଉ, ଏହା ପୁସ୍ତକମାନଙ୍କ ଭିତରେ ଏପରି ଏକ ଅସଲ ବହି ଯାହା କି ବହୁସଂଖ୍ୟକ ଲୋକଙ୍କର ଚିନ୍ତାଧାରା ସ୍ପର୍ଶ କରିଛି । ସେମାନଙ୍କର ସମସ୍ତ ଆଦର୍ଶବାଦ ପରିବର୍ତ୍ତନ କରିଦେଇଛି ଏବଂ ଏହିରୂପେ ମାନବର ଉନ୍ନତିରେ ପ୍ରଭାବ ପକାଇଛି ।

୧୮୭୧ରେ ପାରିସ କମ୍ୟୁନ୍‌ର ଦୁର୍ଗତି ବେଳ ପହଞ୍ଚିଲା—ଏହା ବୋଧହୁଏ ପ୍ରଥମ ସଚେତନ ସାମ୍ୟବାଦୀ ବିପ୍ଳବ । ଏଥିରେ ଇଉରୋପୀୟ ସରକାର ସବୁ ଆତଙ୍କିତ ହୋଇ-ଗଲେ ଏବଂ ଶ୍ରମିକ ଆନ୍ଦୋଳନ ପ୍ରତି ଅତ୍ୟନ୍ତ କଡ଼ା ହେଲେ । ତତ୍ପର ବର୍ଷ ମାର୍କସ୍‌ଙ୍କ ସ୍ଥାପିତ ଶ୍ରମିକ 'ଅନ୍ତର୍ଜାତୀୟ'ର ଏକ ବୈଠକ ହେଲା ଏବଂ ଏହାର କେନ୍ଦ୍ରସ୍ଥଳୀ ସେ ନିଉୟର୍କକୁ ଉଠାଇନେଲେ । ମାର୍କସ୍ ସମ୍ଭବତଃ ବାକୁନିନ୍‌ଙ୍କ ନୈରାଜ୍ୟବାଦୀ ଅନୁଚରଙ୍କ

ପ୍ରଭାବରୁ ରକ୍ଷାପାଇବା ପାଇଁ ଏହା କଲେ ଏବଂ ସମ୍ଭବତଃ ପାରିସ କମ୍ୟୁନ୍ ହେତୁ ଇଉରୋପୀୟ ଶକ୍ତିମାନେ ଯେ କ୍ରୋଧାନଳ ହୋଇଛନ୍ତି ସେଥିରୁ ଟିକିଏ ନିରାପଦରେ ରହିପାରିବେ ବୋଲି ଭାବିଲେ । କିନ୍ତୁ ଅସଲ କର୍ମକେନ୍ଦ୍ରରୁ ଏତେ ଦୂରରେ ରହିବା ଅନ୍ତର୍ଜାତୀୟ ପକ୍ଷରେ ସମ୍ଭବ ନୁହେଁ । ଇଉରୋପରେ ହିଁ ଏହାର ସମସ୍ତ ପ୍ରଭାବ ଥିଲା ଏବଂ ଇଉରୋପରେ ବି ଏହା ଏକ କଠିନ ସମସ୍ୟା ଦେଇ ଗତି କରୁଥିଲା । ତେଣୁ ପ୍ରଥମ ଅନ୍ତର୍ଜାତୀୟ ଧୀରେ ଧୀରେ ଲୋପ ପାଇଗଲା ।

ମାର୍କସ୍‌ବାଦ ବା ମାର୍କସୀୟ ସାମ୍ୟବାଦ ଇଉରୋପୀୟ ସାମ୍ୟବାଦୀ ବିଶେଷତଃ ଜର୍ମାନୀରେ ଓ ଅଷ୍ଟ୍ରିଆରେ ବିସ୍ତାର ଲାଭ କଲା—ଏଠି ସାଧାରଣତଃ ଏହା "ସୋସିଆଲ ଡେମୋକ୍ରେସି" (Social Democracy) ବୋଲି ପରିଚିତ ଥିଲା । ଯାହାହେଉ ଇଂଲଣ୍ଡରେ ଏହା ବିଶେଷରୂପେ ଅଦ୍ଭୁତ ହେଲା ନାହିଁ । ସେତେବେଳେ ଇଂଲଣ୍ଡ ଅତ୍ୟନ୍ତ ସମୃଦ୍ଧିଶାଳୀ ଦେଶ; ସୁତରାଂ କୌଣସି ଉନ୍ନତ ସାମାଜିକ ମତବାଦ ପାଇଁ ସୁଯୋଗ ନ ଥିଲା । ଫେବିୟାନ ସୋସାଇଟି ହିଁ ବ୍ରିଟିଶ ମାର୍କା ସାମ୍ୟବାଦର ପ୍ରତୀକ ଥିଲା, ସୁଦୂର ପରିବର୍ତ୍ତନ ଉଦ୍ଦେଶ୍ୟରେ ଏହାର କାର୍ଯ୍ୟକ୍ରମ ଅତି ମାମୁଳି ଥିଲା । ଶ୍ରମିକମାନଙ୍କ ସହ ଫେବିୟାନ୍‌ମାନଙ୍କର କୌଣସି ସମ୍ପର୍କ ନ ଥିଲା । ଏମାନେ ଥିଲେ ଉନ୍ନତ ଉଦାରନୈତିକ ବୁଦ୍ଧିଜୀବୀ । ପ୍ରଥମ ଫେବିୟାନ୍‌ଙ୍କ ଭିତରେ ଜର୍ଜ ବର୍ଣ୍ଣାଡ଼ଶ ଜଣେ । ଆଉ ଜଣେ ଖ୍ୟାତନାମା ଫେବିୟାନ୍ ସିଡ଼ନି ଉଏବ୍‌ଙ୍କର ଏହି ଲେଖାରୁ ଫେବିୟାନମାନଙ୍କ ନୀତି ଜଣାପଡ଼େ— "ଧୀର କାର୍ଯ୍ୟର ଅନିବାର୍ଯ୍ୟ ଫଳ ।"

ପାରିସ କମ୍ୟୁନ୍ ପରେ ପୁଣି ଏକ ସକ୍ରିୟ ସଂଗଠନ ହେବା ନିମନ୍ତେ ଫ୍ରାନ୍‌ସରେ ସାମ୍ୟବାଦ ବଳ ଅର୍ଜନ କରିବା ପାଇଁ ପୁଣି ବାର ବର୍ଷ ଲାଗିଗଲା । କିନ୍ତୁ ଏହା ଏଠି ଏକ ନୂଆ ଆକାର ଧାରଣ କଲା—ଯାହା ହେଉଛି ନୈରାଜ୍ୟବାଦ ଓ ସାମ୍ୟବାଦର ଏକ ସମ୍ମିଶ୍ରଣ । ଏହାକୁ 'ସିଣ୍ଡିକାଲିଜ୍‌ମ' (Syndicalism) କହନ୍ତି—ଫରାସୀ ଶବ୍ଦ 'ସିନ୍ଦିକାତ୍' (ଅର୍ଥାତ୍ ଶ୍ରମିକ ଲୋକଙ୍କ ଅନୁଷ୍ଠାନ ବା ଶ୍ରମିକ ସଙ୍ଘ)ରୁ ଏହାର ଉତ୍ପତ୍ତି । ସାମ୍ୟବାଦୀ ତଥ୍ୟ ହେଉଛି—ଷ୍ଟେଟ (ରାଷ୍ଟ୍ର) ସମଗ୍ର ସମାଜର ପ୍ରତିନିଧିରୂପେ ଉତ୍ପାଦନ ପ୍ରଣାଳୀ ଯଥା ଭୂମି, କଳକାରଖାନା ଇତ୍ୟାଦିର ମାଲିକ ହେବ ଓ ତାହା ନିୟନ୍ତ୍ରଣ କରିବ । ଏହି ସମାଜୀକରଣ କେତେ ଦୂର କରିବାକୁ ହେବ, ସେ ସମ୍ବନ୍ଧରେ ମତଭେଦ ଥିଲା । ଏକଥା ସ୍ପଷ୍ଟ ଯେ ଛୋଟ ଛୋଟ ହାତହତିଆର ଏବଂ ଘରୋଇ ବ୍ୟବହାର୍ଯ୍ୟ ମେସିନ୍ ଆଦି ବ୍ୟକ୍ତିଗତ ଜିନିଷକୁ ସମାଜୀକରଣ କରିବା ଅସଙ୍ଗତ କଥା । କିନ୍ତୁ ସାମ୍ୟବାଦୀମାନେ ଏଥିରେ ଏକମତ ଯେ ଅନ୍ୟ ଲୋକଙ୍କ ଶ୍ରମରେ ବ୍ୟକ୍ତିଗତ ଲାଭ ପାଇଁ ଯାହା ବ୍ୟବହାର କରାଯାଏ, ସେସବୁ ଜିନିଷ ସମାଜୀକରଣ ହେବା ଉଚିତ; ଅର୍ଥାତ୍ ଏହା ରାଷ୍ଟ୍ରର ସମ୍ପତ୍ତି ହେବା ଦରକାର । ନୈରାଜ୍ୟବାଦୀଙ୍କ ପରି ସିଣ୍ଡିକାଲିଷ୍ଟମାନେ 'ରାଷ୍ଟ୍ର'କୁ ପସନ୍ଦ କରୁ ନ ଥିଲେ ଏବଂ ଏହାର କ୍ଷମତା ସୀମାବଦ୍ଧ କରିବାକୁ ଚାହୁଁଥିଲେ । ସେମାନେ ଚାହାନ୍ତି ଯେ-

ପ୍ରତ୍ୟେକ ଶିଳ୍ପ ସେହି କାରଖାନାରେ ନିଯୁକ୍ତ ଶ୍ରମିକ ଅର୍ଥାତ୍ ଏହାର ସିଣ୍ଡିକେଟ୍ ନିୟନ୍ତ୍ରଣ କରିବ । ଏହାର ମତଲବ ହେଉଛି ବିଭିନ୍ନ ସିଣ୍ଡିକେଟ୍ ସାଧାରଣ ପରିଷଦକୁ ପ୍ରତିନିଧି ପଠାଇବେ । ଏହି ସଭା ସମଗ୍ର ଦେଶର ସମସ୍ୟାପ୍ରତି ଦୃଷ୍ଟି ଦେବ ଏବଂ ସାଧାରଣ ବ୍ୟାପାରରେ ଏହା ଏକପ୍ରକାର ପାର୍ଲାମେଣ୍ଟ ଭାବରେ କାମ କରିବ, ଶିଳ୍ପର ଆଭ୍ୟନ୍ତରୀଣ ବ୍ୟବସ୍ଥାରେ ହସ୍ତକ୍ଷେପ କରିବାର କ୍ଷମତା ଏହାର ରହିବ ନାହିଁ । ଏପରି ଅବସ୍ଥା ଆଣିବା ପାଇଁ ସିଣ୍ଡିକାଲିଷ୍ଟମାନେ ସାଧାରଣ ଧର୍ମଘଟ କରିବାକୁ କହନ୍ତି; ଏଥିରେ ଦେଶର ସାଧାରଣ ଜୀବନ ଅଚଳ ହୋଇଯିବ ଏବଂ ଏହିପରି ଭାବରେ ସେମାନେ ତାଙ୍କ ଉଦ୍ଦେଶ୍ୟ ହାସଲ କରି ପାରିବେ । ମାର୍କସବାଦୀମାନେ ସିଣ୍ଡିକାଲିଜମ୍‌କୁ ଆଦୌ ପସନ୍ଦ କରନ୍ତି ନାହିଁ । କିନ୍ତୁ ବିଚିତ୍ର କଥା (ମାର୍କସ୍‌ଙ୍କ ମୃତ୍ୟୁ ପରେ) ସିଣ୍ଡିକାଲିଷ୍ଟମାନେ ମାର୍କସ୍‌ଙ୍କୁ ସେମାନଙ୍କ ମତର ଲୋକ ବୋଲି ମଣୁଥିଲେ ।

ଠିକ୍ ୫୦ ବର୍ଷ ପୂର୍ବେ ୧୮୮୩ରେ ମାର୍କସ୍‌ଙ୍କର ମୃତ୍ୟୁ ହେଲା । ସେତେବେଳକୁ ଇଂଲଣ୍ଡ, ଜର୍ମାନୀ ଓ ଅନ୍ୟ ଶିଳ୍ପୋନ୍ନତ ଦେଶମାନଙ୍କରେ ଶକ୍ତିଶାଳୀ ଶ୍ରମିକ ସଂଘମାନ ଗଢ଼ି ଉଠିଥିଲା । ବ୍ରିଟିଶ ଶିଳ୍ପ ବହୁତ ଧନ ଖୁବ୍ ଲାଭ ଉଠାଇଲା ଏବଂ ଜର୍ମାନୀ ଓ ଆମେରିକାର ପ୍ରତିଯୋଗିତା ବଢ଼ିବାରୁ ଏହାର ପତନ ଆରମ୍ଭ ହେଲା । ଆମେରିକାର ଅବଶ୍ୟ ଖୁବ୍ ପ୍ରାକୃତିକ ସୁବିଧା ଥିଲା ଯାହା କି ଦ୍ରୁତ ଶିଳ୍ପବୃଦ୍ଧିରେ ସାହାଯ୍ୟ କରିଥିଲା । ଜର୍ମାନୀରେ ଏକ ରାଜନୀତିକ ଏକଛତ୍ର ଶାସନ (ଏଠି ଏକ ଦୁର୍ବଳ ଓ କ୍ଷମତାହୀନ ପାର୍ଲାମେଣ୍ଟ ଥିଲା) ଏବଂ ଔଦ୍ୟୋଗିକ ଉନ୍ନତି, ଏ ଉଭୟର ବିଚିତ୍ର ସମ୍ମିଶ୍ରଣ ଥିଲା । ଜର୍ମାନ ସରକାର ବିସ୍‌ମାର୍କଙ୍କ ଅଧୀନରେ ଏବଂ ତାପରେ ଅନେକ ପ୍ରକାରେ ଶିଳ୍ପ ଉନ୍ନତିରେ ସାହାଯ୍ୟ କଲା ଏବଂ ସାମାଜିକ ସଂସ୍କାରଦ୍ୱାରା ଶ୍ରମିକମାନଙ୍କ ଅବସ୍ଥା ଉନ୍ନତ କରି ସେମାନଙ୍କୁ ନାନାପ୍ରକାର ହାତ କରିବା ଲାଗି ଚେଷ୍ଟା କଲା । ସେହିରୂପେ ଇଂରେଜ ଉଦାରନୈତିକମାନେ ମଧ୍ୟ କେତେକ ପରିମାଣରେ ସମାଜ ସଂସ୍କାର ଆଇନ ପାସ୍ କଲେ । ଖାଦ୍ୟ ଶସ୍ତା ସମସ୍ତ କମାଇ ଦିଆଗଲା ଏବଂ କେତେକ ପରିମାଣରେ ଶ୍ରମିକଙ୍କ ଅବସ୍ଥା ଭଲ ଆଡ଼କୁ ଆସିଲା । ଯେଉଁ ପର୍ଯ୍ୟନ୍ତ ସମୃଦ୍ଧିଶାଳୀ ଅବସ୍ଥା ଥିଲା, ଏହି ପ୍ରଣାଳୀ କାର୍ଯ୍ୟ କରୁଥିଲା ଏବଂ ଇଂରେଜ ଶ୍ରମିକ-ମାନେ ମାନି ହୋଇ ରହିଲେ ଏବଂ ଲିବରାଲ ବା ଉଦାରନୈତିକମାନଙ୍କୁ ବରାବର ଭୋଟ ଦେଉଥିଲେ । କିନ୍ତୁ ୧୮୮୦ ବେଳକୁ ଅନ୍ୟ ଦେଶମାନଙ୍କର ପ୍ରତିଯୋଗିତା ଫଳରେ ଏହି ଦୀର୍ଘ ସମୃଦ୍ଧିଶାଳୀ କାଳର ଅନ୍ତ ହେଲା ଏବଂ ଇଂଲଣ୍ଡରେ ବାଣିଜ୍ୟ ଦୁର୍ଗତି ଦେଖାଦେଲା ଏବଂ ଶ୍ରମିକମାନଙ୍କର ମଜୁରୀ କମିଗଲା । ତେଣୁ ପୁଣି ଥରେ ଶ୍ରମିକଶ୍ରେଣୀ ଭିତରେ ଜାଗରଣ ଏବଂ ବୈପ୍ଳବିକ ମନୋଭାବ ଦେଖାଦେଲା । ଇଂଲଣ୍ଡରେ ଅନେକ ଲୋକ ମାର୍କସ-ବାଦ ପ୍ରତି ଦୃଷ୍ଟି ନିକ୍ଷେପ କଲେ ।

୧୮୮୯ରେ 'ଶ୍ରମିକ ଆନ୍ତର୍ଜାତିକ' ଗଢ଼ିବା ନିମନ୍ତେ ପୁଣି ଏକ ଉଦ୍ୟମ ହେଲା । ଅନେକ ଶ୍ରମିକ ସଂଘ ଓ ଶ୍ରମିକ ଦଳ ଏବେ ଶକ୍ତିଶାଳୀ ଓ ସ୍ୱଚ୍ଛଳ ଅବସ୍ଥାପନ୍ନ ହୋଇଗଲେ

ଏବଂ ବହୁସଂଖ୍ୟକ ବେତନଭୋଗୀ କର୍ମଚାରୀ ନିଯୁକ୍ତ କରି ପାରୁଥିଲେ । ୧୮୮୯ରେ ଗଢ଼ା ହୋଇଥିବା ଏହି ଆନ୍ତର୍ଜାତିକକୁ (ମୋର ମନେହୁଏ ଏହାକୁ "ଶ୍ରମିକ ଓ ସାମ୍ୟବାଦୀ ଆନ୍ତର୍ଜାତିକ" କହନ୍ତି) "ଦ୍ୱିତୀୟ ଆନ୍ତର୍ଜାତିକ" କହନ୍ତି । ଏହା ୨୫ ବର୍ଷ କାଳ ବଞ୍ଚି ରହିଲା । ଶେଷରେ ମହା ସମରରେ ଏହାର ପରୀକ୍ଷା ହୋଇଗଲା ଏବଂ ଏହା ଠିକ୍ କାମ କରିପାରିଲା ନାହିଁ । ଏହି ଆନ୍ତର୍ଜାତିକ ଭିତରୁ ଅନେକ ଲୋକ ପରେ ତାଙ୍କ ଦେଶରେ ଉଚ୍ଚ ରାଜପଦବୀ ଗ୍ରହଣ କରିଥିଲେ । କେତେକ ନିଜର ବ୍ୟକ୍ତିଗତ ଉନ୍ନତି ନିମନ୍ତେ ଶ୍ରମିକ ଆନ୍ଦୋଳନକୁ ବ୍ୟବହାର କଲେ ଏବଂ ପରେ ଏହାକୁ ଛାଡ଼ିଦେଲେ । ସେମାନେ ପ୍ରଧାନ ମନ୍ତ୍ରୀ, ସଭାପତି ଓ ଏହିପରି ସବୁ ହେଲେ; ଜୀବନର କୃତିତ୍ୱ ଲାଭ କଲେ; କିନ୍ତୁ ଯେଉଁ ଲକ୍ଷ ଲକ୍ଷ ଲୋକ ତାଙ୍କୁ ଉପରକୁ ଉଠିବାରେ ସାହାଯ୍ୟ କରିଥିଲେ ଓ ତାଙ୍କଠାରେ ବିଶ୍ୱାସ ରଖିଥିଲେ, ସେମାନଙ୍କୁ ଛାଡ଼ିଦେଲେ ଏବଂ ସେମାନଙ୍କ ଅବସ୍ଥା ପୂର୍ବପରି ରହିଲା । ଏହି ନେତାମାନେ ଏପରି କି ଯେଉଁମାନେ ମାର୍କସଙ୍କ ନାମ ଧରି ଚାଲୁଥିଲେ କିମ୍ବା ଉଗ୍ର ସିଣ୍ଡି-କାଲିଷ୍ଟ ଥିଲେ, ସେମାନେ ପାର୍ଲାମେଣ୍ଟରେ ପ୍ରବେଶ କଲେ କିମ୍ବା ଶ୍ରମିକସଂଘର ଉଚ୍ଚ ବେତନପ୍ରାପ୍ତ ମୁଖ୍ୟକର୍ତ୍ତା ହେଲେ ଏବଂ କୌଣସି ବିପଦସଂକୁଳ କାର୍ଯ୍ୟ କରି ନିଜର ସ୍ୱଚ୍ଛନ୍ଦ ସ୍ଥିତିରେ ଆଞ୍ଚ ଆଣିବା ସେମାନଙ୍କ ପକ୍ଷରେ ଅଧିକରୁ ଅଧିକ କଷ୍ଟକର ବୋଧ ହେଲା; ତେଣୁ ସେମାନେ ନୀରବ ହୋଇଗଲେ ଏବଂ ଏପରି କି ଯେତେବେଳେ ଶ୍ରମିକ ଜନତା ହତାଶାରେ ବିପ୍ଳବୀ ହେବାକୁ ବାଧ୍ୟ ହେଲେ ଏବଂ ସଂଘର୍ଷ ପାଇଁ ଦାବୀ କଲେ, ସେତେବେଳେ ଏମାନେ ତାଙ୍କୁ ଦବାଇ ରଖିବାର ଚେଷ୍ଟା କଲେ । ଜର୍ମାନୀର ସୋସିଅଲ୍ ଡେମୋକ୍ରାଟ୍‌ମାନେ (ଯୁଦ୍ଧ ପରେ) ପ୍ରଜାତନ୍ତ୍ରର ସଭାପତି ଓ ଚାନ୍ସେଲର ହେଲେ, ଫ୍ରାନସରେ ସାଧାରଣ ଧର୍ମଘଟ ପ୍ରଚାର କରୁଥିବା ଉଗ୍ର ସିଣ୍ଡିକାଲିଷ୍ଟ ବ୍ରିୟାଣ୍ଡ ଏଗାର ଥର ପ୍ରଧାନ ମନ୍ତ୍ରୀ ହୋଇ-ଥିଲେ ଏବଂ ନିଜର ପୁରୁଣା ସାଥୀମାନଙ୍କର ଧର୍ମଘଟ ଦମନ କଲେ; ଇଂଲଣ୍ଡରେ ରାମ୍‌ସେ ମାକ୍‌ଡୋନାଲ୍ ପ୍ରଧାନ ମନ୍ତ୍ରୀ ହେଲେ ଏବଂ ଯେଉଁ ଶ୍ରମିକ ଦଳ ତାଙ୍କୁ ପ୍ରଧାନ ମନ୍ତ୍ରୀ କଲା, ତାକୁ ଛାଡ଼ିଦେଲେ । ସୁଇଡେନ, ଡେନମାର୍କ, ବେଲ୍‌ଜିୟମ ଓ ଅଷ୍ଟ୍ରିଆରେ ସେହିପରି ହେଲା । ପଶ୍ଚିମ ଇଉରୋପରେ ଆଜି ଭରି ହୋଇଛନ୍ତି ଡିକ୍‌ଟେଟର ଏବଂ ଏପରି କ୍ଷମତାପନ୍ନ ଲୋକ ଯେଉଁମାନେ ପ୍ରଥମାବସ୍ଥାରେ ସାମ୍ୟବାଦୀ ଥିଲେ; କିନ୍ତୁ ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ମାନ୍ଦା ହୋଇଗଲେ ଏବଂ ନିଜର ଲକ୍ଷ୍ୟ ପ୍ରତି ସେମାନଙ୍କ ପୁରୁଣା ଉତ୍ସାହ ହରାଇଲେ ଏବଂ ବେଳେବେଳେ ନିଜର ପୂର୍ବତନ ସହକର୍ମୀଙ୍କ ବିରୁଦ୍ଧରେ ବି ଗଲେ । ଇଟାଲୀର ଡ୍ୟୁସ୍ (Duce) ମୁସୋଲିନୀ ଜଣେ ପୁରାତନ ସାମ୍ୟବାଦୀ; ପୋଲଣ୍ଡର ଡିକ୍‌ଟେଟର ପିଲ୍‌ସୁଡ୍‌ସ୍କି ମଧ୍ୟ ସେଇଆ ।

ଏହିପରି ନିଜର ନେତା ଓ ମୁଖ୍ୟକର୍ମୀମାନଙ୍କ ଦୋଷ ହେତୁରୁ ଶ୍ରମିକ ଆନ୍ଦୋଳନ ଏବଂ ପ୍ରାୟ ପ୍ରତ୍ୟେକ ଜାତୀୟ ସ୍ୱାଧୀନତା ଆନ୍ଦୋଳନ କ୍ଷତି ସହିଛି । ସେମାନେ କିଛିଦିନ ପରେ କ୍ଳାନ୍ତ ହୋଇପଡ଼ନ୍ତି; ଅସଫଳତାରେ ଶ୍ରାନ୍ତ ହୋଇ ପଡ଼ନ୍ତି ଏବଂ ଶକ୍ତିଧରର ଅପାର

ମୁକ୍ତ ଆଉ ବେଶି ଦିନ ତାଙ୍କ ପ୍ରାଣକୁ ସ୍ପନ୍ଦିତ କରେ ନାହିଁ, ସେମାନେ ନିଷ୍ଫଳ ହୋଇ-ଯାଆନ୍ତି ଏବଂ ତାଙ୍କର ଉତ୍ସାହ ଉନ୍ମାଦନା ଭାଙ୍ଗିଯାଏ । ଏମାନଙ୍କ ଭିତରୁ ଅଧିକ ଉଚ୍ଚାଭିଳାଷୀ ବା ନ୍ୟାୟାନ୍ୟାୟ ବିଚାର ନ କରୁଥିବା ଲୋକେ ଅନ୍ୟ ପକ୍ଷକୁ ଚାଲିଯାଆନ୍ତି ଏବଂ ଯେଉଁ-ମାନଙ୍କ ସହିତ ସେମାନେ ଏତେଦିନ ବିରୋଧ କରି ଆସୁଥିଲେ ଓ ଲଢ଼ୁଥିଲେ ତାଙ୍କ ସହିତ ବ୍ୟକ୍ତିଗତ ଭାବରେ ସନ୍ଧି କରନ୍ତି । ଲୋକ ଯେ କୌଣସି କାର୍ଯ୍ୟ କରିବାକୁ ଇଚ୍ଛା କରେ, ସେଥିପାଇଁ ନିଜ ମନକୁ ବାଗେଇ ନେବା ବଡ଼ ସହଜ । ଏତଦ୍ୱାରା ଆନ୍ଦୋଳନର କ୍ଷତି ହୁଏ ଓ ତାହା କ୍ଷଣକାଳ ପାଇଁ ପଛେଇଯାଏ; କାରଣ ଯେଉଁମାନେ ଶ୍ରମିକମାନଙ୍କ ସହ ଲଢ଼ନ୍ତି ଓ ଜାତିକୁ ଦବାଇବାର ଚେଷ୍ଟା କରନ୍ତି, ଏହା ଜଣାଶୁଣା କଥା ଯେ ସେମାନେ ନାନା ପ୍ରଲୋଭନ ଓ ମଧୁର ବାର୍ତ୍ତାଦ୍ୱାରା ବ୍ୟକ୍ତିବିଶେଷକୁ ନିଜ ଆଡ଼କୁ ଟାଣିନେବା ଲାଗି ଚେଷ୍ଟା କରନ୍ତି । କିନ୍ତୁ ବ୍ୟକ୍ତିବିଶେଷର ରୁଚି ବା ସୁନ୍ଦର ଶବ୍ଦପ୍ରୟୋଗରେ ଶ୍ରମିକ ଜନତାର କିମ୍ବା ସ୍ୱାଧୀନ ହେବା ଲାଗି ଚେଷ୍ଟା କରୁଥିବା ପରାଧୀନ ଜାତିର ଦଶା ଫେରେ ନାହିଁ । ତେଣୁ ଏପରି ବର୍ଜନ ଓ ବାଧା ସତ୍ତ୍ୱେ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ପାଇଁ ସଂଗ୍ରାମ ଚାଲିବା ଅନିବାର୍ଯ୍ୟ ।

୧୮୮୯ରେ ଆରମ୍ଭ ହୋଇଥିବା ଦ୍ୱିତୀୟ ଆନ୍ତର୍ଜାତିକର ଲୋକବଳ ଓ ମର୍ଯ୍ୟାଦା ବୃଦ୍ଧି ହେଲା । କେତେ ବର୍ଷ ପରେ ସେମାନେ ମାଲଟେଷ୍ଟାଙ୍କ ନେତୃତ୍ୱରେ ଥିବା ନୈରାଜ୍ୟ-ବାଦୀମାନଙ୍କୁ ତଡ଼ିଦେଲେ; କାରଣ ସେମାନେ ପାର୍ଲମେଣ୍ଟ ଭୋଟର ସୁଯୋଗ ନେବାକୁ ଚାହିଁଲେ ନାହିଁ । ଆନ୍ତର୍ଜାତିକରେ ଥିବା ସାମ୍ୟବାଦୀମାନଙ୍କ କାର୍ଯ୍ୟଦ୍ୱାରା ଦେଖାଗଲା ଯେ ସେମାନେ ତାଙ୍କ ପୁରୁଣା ସାଥୀମାନଙ୍କ ସହ ସାଧାରଣ ସଂଗ୍ରାମରେ ଯୋଗ ଦେବା ଅପେକ୍ଷା ପାର୍ଲିଆମେଣ୍ଟରେ ଯୋଗ ଦେବାଟା ବେଶି ପସନ୍ଦ କଲେ । ଇଉରୋପରେ ଯୁଦ୍ଧ ଲାଗିଲେ ସାମ୍ୟବାଦୀଙ୍କର କି କର୍ତ୍ତବ୍ୟ ହେବା ଦରକାର, ସେ ସମ୍ବନ୍ଧରେ ଖୁବ୍ ଦାମ୍ଭିକ ଘୋଷଣା-ମାନ ସେମାନେ କରିଥିଲେ । ସାମ୍ୟବାଦୀଙ୍କର କାର୍ଯ୍ୟ କୌଣସି ଏକ ଦେଶରେ ସୀମାବଦ୍ଧ ହୁଏ ନାହିଁ । ଜାତୀୟବାଦୀ କହିଲେ ସାଧାରଣତଃ ଯାହା ବୁଝାଏ, ସେ ଅର୍ଥରେ ସେମାନେ ଜାତୀୟବାଦୀ ନୁହନ୍ତି । ସେମାନେ କହିଲେ, ସେମାନେ ଯୁଦ୍ଧର ବିରୋଧ କରିବେ । କିନ୍ତୁ ୧୯୧୪ରେ ଯେତେବେଳେ ଯୁଦ୍ଧ ପଡ଼ିଆସିଲା, ଦ୍ୱିତୀୟ ଆନ୍ତର୍ଜାତିକର ସାରା ସଂଗଠନ ଭାଙ୍ଗି ପଡ଼ିଲା ଏବଂ ପ୍ରତ୍ୟେକ ଦେଶରେ ସାମ୍ୟବାଦୀ ଓ ଶ୍ରମିକ ଦଳ ଏବଂ ଏପରି କି କ୍ରୋପଟ୍-କିନ୍ଙ୍କ ପରି ନୈରାଜ୍ୟବାଦୀମାନେ ମଧ୍ୟ ଉଗ୍ର ଜାତୀୟବାଦୀ ପାଲଟିଲେ ଏବଂ ଅନ୍ୟ ଯେ କୌଣସି ଲୋକ ପରି ସେମାନେ ଅନ୍ୟ ଦେଶକୁ ଘୃଣା କରିବାକୁ ଲାଗିଲେ । କେବଳ ଅଳ୍ପ ସଂଖ୍ୟକ ଲୋକ ଯୁଦ୍ଧର ପ୍ରତିରୋଧ କରିଥିଲେ ଏବଂ ଫଳସ୍ୱରୂପ ସେମାନଙ୍କୁ ନାନାପ୍ରକାର ନିର୍ଯ୍ୟାତନା, ଦୀର୍ଘ ଜେଲଦଣ୍ଡ ଆଦି ଭୋଗ କରିବାକୁ ପଡ଼ିଲା ।

ଯୁଦ୍ଧ ଶେଷ ହେବା ପରେ ୧୯୧୯ରେ ମସ୍କୋଠାରେ ଲେନିନ୍ ଏକ ନୂତନ ଶ୍ରମିକ ଆନ୍ତର୍ଜାତିକ ଆରମ୍ଭ କଲେ । ଏହା ପୁରାପୁରି କମ୍ୟୁନିଷ୍ଟ ଅନୁଷ୍ଠାନ ଏବଂ କେବଳ ଜଣାଶୁଣା

କମ୍ୟୁନିଷ୍ଟ ଏଥିରେ ଯୋଗ ଦେଇପାରିଲେ । ଏହା ଏବେ ରହିଛି ଏବଂ ଏହାକୁ 'ତୃତୀୟ ଆନ୍ତର୍ଜାତିକ' କହନ୍ତି । ପୁରୁଣା ଦ୍ୱିତୀୟ ଆନ୍ତର୍ଜାତିକର ଅବଶିଷ୍ଟ ବ୍ୟକ୍ତି ମଧ୍ୟ ଧୀରେ ଧୀରେ ଯୁଦ୍ଧ ପରେ ଏକାଠି ହେଲେ । କେତେକ ମସ୍କୋରେ ତୃତୀୟ ଆନ୍ତର୍ଜାତିକରେ ନିଜକୁ ମିଶାଇ ଦେଲେ, କିନ୍ତୁ ଅଧିକାଂଶ ମସ୍କୋକୁ ପସନ୍ଦ କଲେ ନାହିଁ; ଏହାର ନୀତିକୁ ଖୁବ୍ ଘୃଣା କଲେ ଏବଂ ଏହାର ପାଖ ମାଡ଼ିବା ପାଇଁ ବି ଅସ୍ୱୀକାର କଲେ । ସେମାନେ ଦ୍ୱିତୀୟ ଆନ୍ତର୍ଜାତିକର ପୁନରୁଦ୍ଧାର କଲେ । ଏହା ମଧ୍ୟ ଏବେ ରହିଛି । ତେଣୁ ଏବେ ଦୁଇଟି ଆନ୍ତର୍ଜାତିକ ଶ୍ରମିକ ସଂଗଠନ ରହିଛି । ଏହା ସଂକ୍ଷେପରେ ଦ୍ୱିତୀୟ ଓ ତୃତୀୟ ଆନ୍ତର୍ଜାତିକ-ରୂପେ ପରିଚିତ । ଆଶ୍ଚର୍ଯ୍ୟ କଥା, ଉଭୟେ ମାର୍କସବାଦ ମାନି ଚଳନ୍ତି ବୋଲି ଦାବି କରନ୍ତି; କିନ୍ତୁ ଦୁହେଁ ତାହାର ଅଲଗା ଅଲଗା ଅର୍ଥ କରନ୍ତି, ଅଥଚ ସେମାନେ ସାଧାରଣ ଶତ୍ରୁ ପୁଞ୍ଜିବାଦ ଅପେକ୍ଷା ପରସ୍ପରକୁ ଅଧିକ ଘୃଣା କରନ୍ତି ।

ଏହିସବୁ ଆନ୍ତର୍ଜାତିକରେ ପୃଥିବୀର ସମସ୍ତ ଶ୍ରମିକ ସଂଘ ଓ ଶ୍ରମିକ ଶ୍ରେଣୀ ସଂଗଠନ ନାହିଁ । ଅନେକ ସଂଗଠନ ଏହି ଉଭୟରୁ କୌଣସିଟିରେ ଯୋଗ ଦେଇ ନାହାନ୍ତି । ଆମେରିକା ଶ୍ରମିକ ସଂଘଗୁଡ଼ିକ ଅଲଗା ରହିଲେ । କାରଣ ସେମାନଙ୍କ ଭିତରୁ ଅଧିକାଂଶ ଭାରି ରକ୍ଷଣଶୀଳ । ଭାରତୀୟ ଶ୍ରମିକ ସଂଘସବୁ ମଧ୍ୟ ଏହି ଦୁଇ ଆନ୍ତର୍ଜାତିକରୁ କେଉଁଥିରେ ଯୋଗ ଦେଇ ନାହିଁ ।

ସମ୍ଭବତଃ ତୁ 'ଆନ୍ତର୍ଜାତିକ' ଗୀତ ଜାଣୁ । ସମଗ୍ର ଦୁନିଆରେ ଏହା ଶ୍ରମିକ ଓ ସାମ୍ୟବାଦୀଙ୍କର ସଙ୍ଗୀତରୂପେ ସ୍ୱୀକୃତ ହୋଇଛି ।

---

## ୧୩୪ : ମାର୍କସ୍‌ବାଦ

ଫେବୃୟାରି ୧୬, ୧୯୩୩

ମାର୍କସ୍‌ଙ୍କର ଯେଉଁ ଭାବଧାରା ଇଉରୋପୀୟ ସାମ୍ୟବାଦ ଜଗତରେ ଏପରି ଶୃଙ୍ଖଳା ସୃଷ୍ଟି କରିଥିଲା, ସେ ସମ୍ବନ୍ଧରେ ତୋତେ ଗତ ଚିଠିରେ କହିବାର ଇଚ୍ଛା ଥିଲା । କିନ୍ତୁ ଚିଠିଟି ଲମ୍ବା ହୋଇଗଲା ଏବଂ ସେଥିପାଇଁ ପରେ ଲେଖୁଛି । ଏ ବିଷୟରେ ଲେଟିବା

କିଛି ସହଜ ନୁହେଁ; ମୁଁ ବି ଏଥିରେ ବିଶେଷଜ୍ଞ ନୁହେଁ ଏବଂ ଏପରି ଅବସ୍ଥା ଯେ ବିଶେଷଜ୍ଞ ଓ ପଣ୍ଡିତମାନଙ୍କ ଭିତରେ ବି ମତଭେଦ ହୁଏ । ମୁଁ କେବଳ ମାର୍କସ୍‌ବାଦ ସମ୍ବନ୍ଧରେ କେତେକ ପ୍ରଧାନ ବିଶେଷତ୍ୱ ବତାଇବି ଏବଂ କଷ୍ଟକର ଅଂଶମାନ ବାଦ ଦେବି । ଏଥିରୁ ତୁ ଏକ ଅପୂର୍ଣ୍ଣ ଚିତ୍ର ପାଇବୁ, କିନ୍ତୁ ପ୍ରତ୍ୟେକ ଜିନିଷର ପୂର୍ଣ୍ଣ ଓ ବିସ୍ତୃତ ଚିତ୍ର ଦେବାଟା ତ ମୋର ଉଦ୍ଦେଶ୍ୟ ନୁହେଁ !'

ମୁଁ ତ କହିଛି ସାମ୍ୟବାଦ ଅନେକ ପ୍ରକାରର । ଯାହାହେଉ ଏ ବିଷୟରେ ସମସ୍ତେ ଏକମତ ଯେ ଏହାର ଲକ୍ଷ୍ୟ ହେଉଛି ଭୂମି, ଖଣି, କାରଖାନା ଇତ୍ୟାଦି ଉତ୍ପାଦନର ସାଧନ ଓ ରେଲଓ୍ୱେ, ବ୍ୟାଙ୍କ ଇତ୍ୟାଦି ବଣ୍ଟନର ସାଧନ—ସବୁକୁ ରାଷ୍ଟ୍ର ନିୟନ୍ତ୍ରଣ କରିବ । ମୂଳକଥା ହେଉଛି ଏହିସବୁ ସାଧନ ବା ସଙ୍ଗଠନକୁ କିମ୍ବା ଅନ୍ୟମାନଙ୍କର ଶ୍ରମକୁ ନିଜର ବ୍ୟକ୍ତିଗତ ସୁବିଧା ସକାଶେ କୌଣସି ବ୍ୟକ୍ତିବିଶେଷ ଉପଯୋଗ କରିବାକୁ ଅନୁମତି ଦିଆଯିବ ନାହିଁ । ଆଜି ଏଥିରୁ ଅଧିକାଂଶ ଉପରେ ବ୍ୟକ୍ତିଗତ ଅଧିକାର ଓ ଲୁଣ୍ଠନ ଚାଲିଛି; ତା ଫଳରେ କେତେକ ଲୋକ ଉନ୍ନତି କରୁଛନ୍ତି ଓ ଧନୀ ହେଉଛନ୍ତି, ଅଥଚ ସମଗ୍ର ସମାଜ ଅଧିକ ପରିମାଣରେ କଷ୍ଟ ଭୋଗୁଛି, ଜନସାଧାରଣ ଗରିବ ହୋଇ ରହୁଛନ୍ତି । ଆହୁରି ମଧ୍ୟ ଆଜିକାଲି ଉତ୍ପାଦନ ସାଧନର ମାଲିକ ଓ ନିୟନ୍ତ୍ରଣ କରୁଥିବା ଲୋକଙ୍କ ଶକ୍ତି ପରସ୍ପର ଭିତରେ ଗଳାକଟା ପ୍ରତିଯୋଗିତା ଲାଗି ଲଢ଼ାଇ କରି ବହୁ ପରିମାଣରେ ନଷ୍ଟ ହେଉଛି । ଯଦି ଏହି ବ୍ୟକ୍ତିଗତ ଲଢ଼ାଇ ପରିବର୍ତ୍ତେ ଏକ ବିବେଚନାସମ୍ମତ ଉତ୍ପାଦନ ବ୍ୟବସ୍ଥା କରି-ଯାଆନ୍ତା ଏବଂ ସୁଚିନ୍ତିତ ରୀତିରେ ବଣ୍ଟନ ହୁଅନ୍ତା, ତେବେ ବୃଥା ଓ ବେଦରକାରୀ ପ୍ରତିଯୋଗିତା ହୁଅନ୍ତା ନାହିଁ ଏବଂ ବିଭିନ୍ନ ଶ୍ରେଣୀ ଓ ଲୋକଙ୍କ ଭିତରେ ବର୍ତ୍ତମାନ ଧନର ଯେଉଁ ବିରାଟ ବୈଷମ୍ୟ ରହିଛି, ତାହା ଉଭେଇ ଯାଆନ୍ତା । ତେଣୁ ଉତ୍ପାଦନ, ବଣ୍ଟନ ଓ ଅନ୍ୟାନ୍ୟ ପ୍ରଧାନ ପ୍ରଧାନ କାର୍ଯ୍ୟ ବ୍ୟାପକ ଭାବରେ ସମାଜୀକରଣ କିମ୍ବା ରାଷ୍ଟ୍ରଦ୍ୱାରା ପରିଚାଳିତ ହେବା ଦରକାର ଅର୍ଥାତ୍ ସମୁଦାୟ ଲୋକସମାଜଦ୍ୱାରା । ଏହା ହେଉଛି ସାମ୍ୟବାଦର ମୂଳ ଭାବ ।

ସାମ୍ୟବାଦ ଅଧୀନରେ ରାଷ୍ଟ୍ର ବା ସରକାରର ସ୍ୱରୂପ କିପରି ହେବ ଏହା ଏକ ଅଲଗା ପ୍ରଶ୍ନ । ଏହା ଖୁବ୍ ଗୁରୁତ୍ୱପୂର୍ଣ୍ଣ ବିଷୟ ହୋଇଥିଲେ ସୁଦ୍ଧା ଆମେ ବର୍ତ୍ତମାନ ପାଇଁ ତାହା ଆଲୋଚନା କରିବା ନାହିଁ ।

ସାମ୍ୟବାଦର ଆଦର୍ଶ ସମ୍ବନ୍ଧରେ ଏକମତ ହେଲା ପରେ, ତା' ପରକଥା ହେଉଛି ଏହା କିପରି ହାସଲ କରାଯିବ । ଏହିଠାରେ ହିଁ ସାମ୍ୟବାଦୀମାନଙ୍କର ପରସ୍ପର ସହିତ ମତଭେଦ ହୁଏ ଏବଂ ଅନେକ ଦଳ ବିଭିନ୍ନ ପନ୍ଥା ଦେଖାନ୍ତି । ମୋଟାମୋଟି ତାଙ୍କୁ ଦୁଇ ଶ୍ରେଣୀରେ ଭାଗ କରାଯାଇପାରେ (୧) ଧୀର ପରିବର୍ତ୍ତନକାମୀ ଦଳ—ଏମାନେ ପାଦେ ପାଦେ ଆଗକୁ ଯିବାକୁ ଚାହାନ୍ତି ଏବଂ ପାର୍ଲାମେଣ୍ଟ ଜରିଆରେ କାର୍ଯ୍ୟ କରିବାକୁ ଚାହାନ୍ତି,

ବ୍ରିଟିଶ ଶ୍ରମିକ ଦଳ ଓ ଫେବିୟାନମାନେ ଏହି ଦଳର; (୨) ବିପ୍ଳବୀଦଳ—ଏମାନେ ପାର୍ଲାମେଣ୍ଟ କରିଆରେ ଫଳଲାଭ ହେବ ବୋଲି ବିଶ୍ୱାସ କରନ୍ତି ନାହିଁ । ଏହି ଦଳମାନଙ୍କ ଭିତରୁ ଅଧିକାଂଶ ମାର୍କସବାଦୀ ।

ଏହି ପ୍ରଥମୋକ୍ତ କ୍ରମପରିବର୍ତ୍ତନକାମୀ (Evolutionary) ଦଳଙ୍କ ସଂଖ୍ୟା ଖୁବ୍ କମ୍, ଏପରି କି ଇଂଲଣ୍ଡରେ ଯେଉଁମାନେ ଅଛନ୍ତି, ସେମାନେ ବି ଦୁର୍ବଳ ହୋଇଯାଉଛନ୍ତି ଏବଂ ଲିବରାଲ ଦଳ ଓ ଅନ୍ୟ ଅସାମ୍ୟବାଦୀ ଦଳଙ୍କ ସହିତ ଏମାନଙ୍କର ଯାହା ପାର୍ଥକ୍ୟ ଥିଲି ତାହା କ୍ରମେ ଲୋପ ହୋଇ ଆସିଲାଣି । ସୁତରାଂ ସାଧାରଣ ସାମ୍ୟବାଦୀ ନୀତିକୁ ବର୍ତ୍ତମାନ ମାର୍କସ୍‌ବାଦ ବୋଲି ଧରାଯାଇପାରେ । କିନ୍ତୁ ମାର୍କସ୍‌ବାଦୀଙ୍କ ଭିତରେ ଇଉରୋପରେ ଦୁଇଟି ପ୍ରଧାନ ବିଭାଗ ରହିଛି—ଏକ ପକ୍ଷରେ ରୁଷର କମ୍ୟୁନିଷ୍ଟ ଏବଂ ଅନ୍ୟ ପକ୍ଷରେ ଜର୍ମାନୀ, ଅଷ୍ଟ୍ରିଆ ଓ ଅନ୍ୟ ଦେଶମାନଙ୍କରେ ଥିବା ପୁରୁଣା ସୋସିଆଲ ଡେମୋକ୍ରାଟ୍ । ଦୁହିଁଙ୍କ ଭିତରେ ଆଦୌ ଭଲ ସମ୍ବନ୍ଧ ନାହିଁ । ମହାସମର ଓ ତା'ପରେ ନିଜର କଥାନୁସାରେ କାର୍ଯ୍ୟ କରିବାରେ ବିଫଳ ହେବାରୁ ଏହି ସୋସିଆଲ ଡେମୋକ୍ରାଟ୍-ମାନେ ତାଙ୍କର ପୂର୍ବ ପ୍ରତିଷ୍ଠା ବହୁପରିମାଣରେ ହରାଇଛନ୍ତି । ସେମାନଙ୍କ ଭିତରୁ ଅନେକ ନିଷ୍ଠାବାନ୍ ଲୋକ କମ୍ୟୁନିଷ୍ଟଙ୍କ ପଟକୁ ଯାଇଛନ୍ତି; ତଥାପି ସେମାନେ ତେବେ ସୁଦ୍ଧା ପଶ୍ଚିମ ଇଉରୋପର ବିରାଟ ଶ୍ରମିକ ସଂଘ ଅନୁଷ୍ଠାନମାନ ଆୟତ୍ତରେ ରଖି ପାରିଛନ୍ତି । ରୁଷର ସଫଳତା ଯୋଗୁଁ କମ୍ୟୁନିଜିମ୍ ଏକ ଅଗ୍ରଗାମୀ ନୀତି ହୋଇ ରହିଛି । ଆଜି ଇଉରୋପ ଓ ସମଗ୍ର ଦୁନିଆରେ ଏହା ପୁଞ୍ଜିବାଦର ପ୍ରଧାନ ବିରୋଧୀ ରୂପେ ଠିଆ ହୋଇଛି ।

ତାହାହେଲେ ଏ ମାର୍କସ୍‌ବାଦ କଅଣ ? ଏହା ହେଉଛି ଇତିହାସ, ରାଜନୀତି, ଅର୍ଥନୀତି, ମାନବଜୀବନ ଓ ମାନବର ଅଭିଳାଷ ବ୍ୟାଖ୍ୟା କରିବାର ଏକ ପନ୍ଥା । ଏହା ଏକ ତଥ୍ୟ, କାର୍ଯ୍ୟ ପାଇଁ ଏକ ଆହ୍ୱାନ ମଧ୍ୟ । ମନୁଷ୍ୟଜୀବନର ଅଧିକାଂଶ କାର୍ଯ୍ୟକଳାପ ବିଷୟରେ ଏହି ଦର୍ଶନ କିଛି ନା କିଛି ପଥ ଦର୍ଶାଇଦିଏ । ମନୁଷ୍ୟର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ଇତିହାସକୁ ଏକ ବିରାଟ ଯୁକ୍ତିସଂଗତ ବ୍ୟବସ୍ଥାରେ ପରିଣତ କରି ଓ ଏଥିରେ ଯେ ଅନିବାର୍ଯ୍ୟ ଫଳ ନିହିତ ରହିଛି, ତାହା ଦର୍ଶାଇଦେବା ପାଇଁ ମାର୍କସ୍‌ବାଦ ଏକ ଉଦ୍ୟମ । ମନୁଷ୍ୟ ଜୀବନ ଏପରି ଯୁକ୍ତିସଂଗତ କି ନା ଏବଂ ଏପରି କଡ଼ାକଡ଼ି ନିୟମ ଓ ବ୍ୟବସ୍ଥା ଉପରେ ନିର୍ଭର କରି ରହିଛି କି ନା, ତାହା ତେତେ ସୁସ୍ପଷ୍ଟ ବୋଧହୁଏ ନାହିଁ ଏବଂ ଅନେକେ ଏଥିରେ ସନ୍ଦେହ ପ୍ରକାଶ କରିଛନ୍ତି । କିନ୍ତୁ ମାର୍କସ ଜଣେ ବୈଜ୍ଞାନିକ ଭାବରେ ଅତୀତ ଇତିହାସ ନିରୀକ୍ଷଣ କରିଥିଲେ ଓ ଏଥିରୁ ନିର୍ଦ୍ଦିଷ୍ଟ ସିଦ୍ଧାନ୍ତରେ ପହଞ୍ଚିଥିଲେ । ସେ ଦେଖିଲେ ଯେ ଆଦିମ କାଳରୁ ମଣିଷ ଜୀବନଧାରଣ ଲାଗି ସଂଗ୍ରାମ କରୁଛି; ପ୍ରକୃତି ଓ ନିଜର ମଣିଷ ଭାଇ ବିରୁଦ୍ଧରେ ବି ଏ ସଂଗ୍ରାମ ଚାଲିଛି । ମଣିଷ ଖାଦ୍ୟ ଓ ଜୀବନର ଅନ୍ୟ ଆବଶ୍ୟକୀୟ ଜିନିଷ ପାଇବା ନିମନ୍ତେ କାର୍ଯ୍ୟ କରୁଛି ଏବଂ ଏହା କରିବା ପ୍ରଣାଳୀ କାଳର

ଗତି ସଙ୍ଗେ ସଙ୍ଗେ କ୍ରମେ ପରିବର୍ତ୍ତିତ ହୋଇଯାଉଛି; ଅଧିକ ଜଟିଳ ଓ ଉନ୍ନତ ହେଉଛି । ମାର୍କସ୍‌ଙ୍କ ମତରେ ଏହି ଜୀବିକାର୍ଜନ ଲାଗି ଉତ୍ପାଦନ ପ୍ରଣାଳୀ ହିଁ ପ୍ରତ୍ୟେକ ଯୁଗରେ ମଣିଷଜୀବନରେ ତଥା ସମାଜର ଗଠନରେ ସର୍ବାପେକ୍ଷା ଗୁରୁତ୍ୱପୂର୍ଣ୍ଣ ଜିନିଷ । ଏଗୁଡ଼ିକ ଇତିହାସର ପ୍ରତ୍ୟେକ କାଳରେ ପ୍ରାଧାନ୍ୟ ବିସ୍ତାର କରିଛି ଏବଂ ସେହି କାଳରେ ସମସ୍ତ କାର୍ଯ୍ୟକଳାପ ଓ ସାମାଜିକ ସମ୍ପର୍କକୁ ପ୍ରଭାବିତ କରିଛି ଏବଂ ଏଗୁଡ଼ିକ ପରିବର୍ତ୍ତିନ ହେବା ସଙ୍ଗେ ସଙ୍ଗେ ତା ପଛେ ପଛେ ବଡ଼ ଐତିହାସିକ ଓ ସାମାଜିକ ପରିବର୍ତ୍ତନମାନ ବି ହୋଇଛି । ଏହି ଶଠିଗୁଡ଼ିକରେ ଏହିସବୁ ପରିବର୍ତ୍ତନର ଫଳାଫଳ ସମ୍ବନ୍ଧରେ ଆମେ କେତେକ ପରିମାଣରେ ଆଲୋଚନା କରିଛେଁ । ଦୃଷ୍ଟାନ୍ତ ସ୍ୱରୂପ, ଯେତେବେଳେ ପ୍ରଥମେ କୃଷି ପ୍ରଚଳନ ହେଲା, ଏହା ଏକ ବିରାଟ ପରିବର୍ତ୍ତନ ଆଣିଦେଲା । ଯାଯାବରମାନେ ବସତି କରି ରହିଲେ । ଗ୍ରାମ ଓ ସହରସବୁ ବୃଦ୍ଧି ପାଇଲା ଏବଂ କୃଷିରେ ବେଶି ଶସ୍ୟ ଆମଦାନୀ ହେବାରୁ କିଛି ବଳକା ରହିଗଲା; ଲୋକସଂଖ୍ୟା ବଢ଼ିଲା, ସମ୍ପଦ ଓ ଅବସର ମିଳିଲା; ଏହା ଫଳରେ କଳା ଓ ହସ୍ତଶିଳ୍ପର ଉଦୟ ହେଲା । ଆଉ ଏକ ସୁସ୍ପଷ୍ଟ ଦୃଷ୍ଟାନ୍ତ ହେଉଛି, ଶିଳ୍ପ ବିପ୍ଳବ—ଉତ୍ପାଦନ ପାଇଁ ବଡ଼ ବଡ଼ ଯନ୍ତ୍ରପାତି ବ୍ୟବହୃତ ହେବା ଫଳରେ ଆଉ ଏକ ବିରାଟ ପରିବର୍ତ୍ତନ ଦେଖାଦେଲା । ଏହିପରି ଅନେକ ଦୃଷ୍ଟାନ୍ତ ରହିଛି ।

ଇତିହାସର ନିର୍ଦ୍ଦିଷ୍ଟ କାଳରେ ଉତ୍ପାଦନ ପ୍ରଣାଳୀ ସହିତ ଲୋକଙ୍କର ଉନ୍ନତି ବି ଏକ ନିର୍ଦ୍ଦିଷ୍ଟ ଅବସ୍ଥାରେ ପହଞ୍ଚେ । ଉତ୍ପାଦନର ଏହି କାର୍ଯ୍ୟ ସଙ୍ଗେ ସଙ୍ଗେ ଏବଂ ଏହାର ଫଳ ସ୍ୱରୂପ ଲୋକଙ୍କର ପରସ୍ପର ସହ ଏକ ନିର୍ଦ୍ଦିଷ୍ଟ ସମ୍ବନ୍ଧ (ଯଥା: ଦାସମାଲିକ, ଭୂସ୍ୱାମୀ, ବିଭିନ୍ନ ଇତ୍ୟାଦି) ସ୍ଥାପିତ ହୁଏ ଏବଂ ଏହା ଉତ୍ପାଦନ ପ୍ରଣାଳୀ ସହ ଖାପ ଖାଏ ଓ ତାହାର ଅନୁସାରେ ହୁଏ । ଏହି ସମ୍ବନ୍ଧ ହିଁ ସମାଜର ଆର୍ଥିକ ବ୍ୟବସ୍ଥାର ରୂପ । ଏହି ଅର୍ଥନୈତିକ ଭିତ୍ତି ଉପରେ ଆଇନ, ରାଜନୀତି, ସାମାଜିକ ଆଚାର ବିଚାର, ଧାରଣା ଓ ଅନ୍ୟସବୁ ଜିନିଷ ଗଢ଼ିଉଠେ । ଅତଏବ ମାର୍କସ୍‌ଙ୍କର ଏହି ମତ ଅନୁସାରେ ଉତ୍ପାଦନ ପ୍ରଣାଳୀ ପରିବର୍ତ୍ତନ ହେବା ସଙ୍ଗେ ସଙ୍ଗେ ଆର୍ଥିକ ବ୍ୟବସ୍ଥା ବଦଳିଯାଏ ଏବଂ ତାହା ପରେ ପରେ ମନୁଷ୍ୟର ଭାବଧାରା, ଆଇନ, ରାଜନୀତି ଇତ୍ୟାଦିରେ ବି ପରିବର୍ତ୍ତନ ଘଟେ ।

ମାର୍କସ୍‌ଙ୍କ ଦୃଷ୍ଟିରେ ଇତିହାସ ହେଉଛି ବିଭିନ୍ନ ଶ୍ରେଣୀ ଭିତରେ ସଂଗ୍ରାମର ବିବରଣୀ ମାତ୍ର । ସମଗ୍ର ମାନବସମାଜର ଅତୀତ ଓ ବର୍ତ୍ତମାନ ଇତିହାସ ହେଉଛି "ଶ୍ରେଣୀସଂଗ୍ରାମର ଇତିହାସ ।" ଯେଉଁ ଶ୍ରେଣୀ ଉତ୍ପାଦନ ପ୍ରଣାଳୀ ନିୟନ୍ତ୍ରଣ କରେ, ତାହା ହିଁ କର୍ତ୍ତୃତ୍ୱ ବିସ୍ତାର କରେ । ଏହା ଅନ୍ୟ ଶ୍ରେଣୀମାନଙ୍କର ଶ୍ରମ ଲୁଣ୍ଠନ କରେ ଓ ଏଥିରୁ ଲାଭ ଉଠାଏ, ଯେଉଁମାନେ ପରିଶ୍ରମ କରନ୍ତି, ସେମାନେ ତାଙ୍କ ଶ୍ରମର ପୂର୍ଣ୍ଣ ମୂଲ୍ୟ ପାଆନ୍ତି ନାହିଁ । ସେମାନେ ନିଜର ନିତାନ୍ତ ଆବଶ୍ୟକତା ପାଇଁ ଏହାର ଏକ ଅଂଶ ମାତ୍ର ପାଆନ୍ତି; ଆଉ ଅବଶିଷ୍ଟ ବଳକା ସବୁ ଶୋଷଣ କରୁଥିବା ଶ୍ରେଣୀ ହାତକୁ ଯାଏ । ଏହିରୂପେ ଏହି ବଳକା

ମୂଲ୍ୟ ପାଇ ଶୋଷକ ଶ୍ରେଣୀ ଅଧିକ ସମ୍ପଦଶାଳୀ ହୁଏ । ଏହି ଉତ୍ପାଦନ ନିୟନ୍ତ୍ରଣ କରୁଥିବା ଶ୍ରେଣୀ ରାଷ୍ଟ୍ର ଓ ସରକାରକୁ ଆୟତ୍ତରେ ରଖେ । ସୁତରାଂ ରାଷ୍ଟ୍ରର ପ୍ରଥମ ଉଦ୍ଦେଶ୍ୟ ହୁଏ ଶାସକଶ୍ରେଣୀକୁ ରକ୍ଷାକରିବା । ମାର୍କସ୍ କହନ୍ତି, "ସମଗ୍ର ଶାସକଶ୍ରେଣୀର କାର୍ଯ୍ୟ ପରି-ଚାଳନା କରିବା ଲାଗି ରାଷ୍ଟ୍ର ଏକ କାର୍ଯ୍ୟକାରୀ ସମିତି ମାତ୍ର ।" ଏହି ଉଦ୍ଦେଶ୍ୟରେ ଆଇନ ତିଆରି ହୁଏ ଏବଂ ଶିକ୍ଷା, ଧର୍ମ ଓ ଅନ୍ୟ ଉପାୟଦ୍ୱାରା ଲୋକଙ୍କ ମନରେ ଏହି ଧାରଣା ଜାତ କରିଦିଆଯାଏ ଯେ ଏହି ଶ୍ରେଣୀର ପ୍ରାଧାନ୍ୟ କରିବା ହେଉଛି ଯଥାର୍ଥ ଓ ସ୍ୱାଭାବିକ । ଏହି ଉପାୟଦ୍ୱାରା ସରକାର ଓ ଆଇନର ଶ୍ରେଣୀ-ପ୍ରକୃତିକୁ ଘୋଡ଼ାଇବା ପାଇଁ ସବୁ ପ୍ରକାର ଉଦ୍ୟମ କରାଯାଏ; ତାହା ହେଲେ ଯେଉଁସବୁ ଶ୍ରେଣୀ ଶୋଷିତ ହେଉଛନ୍ତି ସେମାନେ ପ୍ରକୃତ ଅବସ୍ଥା ଜାଣିପାରିବେ ନାହିଁ ଏବଂ ଆଉ ଅସନ୍ତୁଷ୍ଟ ହେବେ ନାହିଁ । ଯଦି କୌଣସି ଲୋକ ଅସନ୍ତୁଷ୍ଟ ହୋଇ ଏହି ବ୍ୟବସ୍ଥାକୁ ଚ୍ୟାଲେଞ୍ଜ କରେ, ତେବେ ସେ ସମାଜ ଓ ନୈତିକତାର ଶତ୍ରୁ ଏବଂ ବହୁକାଳର ପ୍ରତିଷ୍ଠିତ ଆଚାର ବିଚାରକୁ ମୂଳୋତ୍ପାଟନ କରିବାକୁ ଚାହେଁ ବୋଲି କୁହାଯାଏ ଏବଂ ରାଷ୍ଟ୍ରଦ୍ୱାରା ତାକୁ ଦମନ କରାଯାଏ ।

କିନ୍ତୁ ସମସ୍ତ ଉଦ୍ୟମ ସତ୍ତ୍ୱେ ଗୋଟିଏ ଶ୍ରେଣୀ ସ୍ଥାୟୀ ଭାବରେ ପ୍ରାଧାନ୍ୟ କରି ରହିପାରିବ ନାହିଁ । ଯେଉଁସବୁ ଉପାଦାନ ଏହାକୁ ପ୍ରାଧାନ୍ୟ ଦେଇଥାଏ ସେଗୁଡ଼ିକ ହିଁ ଏହା ବିରୁଦ୍ଧରେ କାର୍ଯ୍ୟ କରେ । ଏହା ଶାସକ ଓ ଶୋଷକ ଶ୍ରେଣୀ ହୋଇ ରହିଥିଲା । କାରଣ ତତ୍କାଳୀନ ପ୍ରଚଳିତ ଉତ୍ପାଦନର ସାଧନକୁ ଏହା ନିୟନ୍ତ୍ରଣ କରୁଥିଲା । ଏବେ ଉତ୍ପାଦନର ନୂତନ ଉପାୟ ବାହାରିବା ସଙ୍ଗେ ସଙ୍ଗେ ଯେଉଁ ସବୁ ନୂତନ ଶ୍ରେଣୀ ଏହା ନିୟନ୍ତ୍ରଣ କରନ୍ତି, ସେମାନେ ପ୍ରଧାନ ହୋଇ ଉଠନ୍ତି ଏବଂ ଶୋଷିତ ହେବାର ବିରୋଧ କରନ୍ତି । ନୂତନ ଭାବଧାରା ମଣିଷକୁ ଆଲୋଡ଼ନ କରେ । ଏହି ଆଦର୍ଶଗତ ବିପ୍ଳବ ପୁରୁଣା ଭାବଧାରା ଓ ଧର୍ମାବନ୍ଧା ନୀତିର ବନ୍ଧନ ଭାଙ୍ଗିଯାଏ ଏବଂ ତା ପରେ ଏହି ଜାଗ୍ରତ ଶ୍ରେଣୀ ଓ କ୍ଷମତାକୁ ଦୃଢ଼ତାର ସହିତ ଜାବୁଡ଼ି ଧରିଥିବା ପୁରୁଣା ଶ୍ରେଣୀଙ୍କ ଭିତରେ ସଂଗ୍ରାମ ହୁଏ । ନୂତନ ଶ୍ରେଣୀର ଜୟଲାଭ ଅବଶ୍ୟମ୍ଭାବୀ ହୋଇପଡ଼େ; କାରଣ ଏହା ଏବେ ଆର୍ଥିନୀତିକ କ୍ଷମତା ନିୟନ୍ତ୍ରଣ କରିଥାଏ ଏବଂ ପୁରାତନ ଶ୍ରେଣୀର କାର୍ଯ୍ୟ ଇତିହାସରେ ଶେଷ ହୋଇଯାଇଥିବାରୁ ତାହା ଲୁଭେଇ-ଯାଏ ।

ଏହି ନୂତନ ଶ୍ରେଣୀର ବିଜୟ ରାଜନୀତିକ ଓ ଆର୍ଥିନୀତିକ ଉଭୟ କ୍ଷେତ୍ରରେ ହୁଏ; ଏହା ନୂତନ ଉତ୍ପାଦନ ପ୍ରଣାଳୀର ବିଜୟର ପ୍ରତୀକ । ଏଇଥିରୁ ସମଗ୍ର ସାମାଜିକ ବ୍ୟବସ୍ଥାର ପରିବର୍ତ୍ତନ ହୁଏ; ନୂତନ ଭାବଧାରା ନୂଆ ରାଜନୀତିକ ବ୍ୟବସ୍ଥା ଆଇନ ଆଚାର ବିଚାର ପ୍ରତ୍ୟେକ ଜିନିଷ ପ୍ରଭାବିତ ହୁଏ । ଏହି ନୂତନ ଶ୍ରେଣୀ ଏବେ ତା ଅଧୀନରେ ଥିବା ଅନ୍ୟ ଶ୍ରେଣୀମାନଙ୍କର ଶୋଷକ ପାଲଟିଯାଏ; ଏମାନଙ୍କ ଭିତରୁ କୌଣସି ଗୋଟିଏ ଶ୍ରେଣୀଦ୍ୱାରା ତଡ଼ା ହେବାର ପାଳି ନ ପଡ଼ିବାଯାଏ ଏହା ଚାଲିଥାଏ । ଏହିରୂପେ ସଂଗ୍ରାମ ଲାଗିରହେ ଏବଂ କୌଣସି ଗୋଟିଏ ଶ୍ରେଣୀ ଅନ୍ୟ ଶ୍ରେଣୀକୁ ଶୋଷଣ କରିବା ବନ୍ଦ ନ ହେବା ପର୍ଯ୍ୟନ୍ତ

ଏହା ଅବଶ୍ୟ ଚାଲିଥିବ । କେବଳ ଯେତେବେଳେ ଶ୍ରେଣୀସବୁ ଲୋପ ହୋଇଯିବ ଏବଂ ଗୋଟିଏ ମାତ୍ର ଶ୍ରେଣୀ ରହିବ, ସେତେବେଳେ ଯାଇ ସଂଗ୍ରାମର ଅନ୍ତ ହେବ, କାରଣ ସେତେବେଳେ ଶୋଷଣ ପାଇଁ ଆଉ ସୁଯୋଗ ରହିବ ନାହିଁ । ଏହି ଶ୍ରେଣୀ ତ ଆଉ ନିଜକୁ ଶୋଷଣ କରିବ ନାହିଁ । ବର୍ତ୍ତମାନ ଯେପରି ଅବିରାମ ସଂଗ୍ରାମ ଓ ପ୍ରତିଯୋଗିତା ଚାଲିଛି, ତା ପରିବର୍ତ୍ତେ ସମାଜରେ ସାମ୍ୟ ଓ ପୂର୍ଣ୍ଣ ସହଯୋଗ କେବଳ ସେତେବେଳେ ଯାଇ ଆସିପାରିବ । ବଳ ପ୍ରୟୋଗ କରିବା, ଯାହା କି ରାଷ୍ଟ୍ରର ପ୍ରଧାନ କାର୍ଯ୍ୟ ହୋଇଛି, ତାହା ଆଉ ସେତେବେଳେ ଦରକାର ପଡ଼ିବ ନାହିଁ; କାରଣ ବଳ ପ୍ରୟୋଗ କରିବା ନିମନ୍ତେ କୌଣସି ଶ୍ରେଣୀ ନ ଥିବ । ତେଣୁ ଧୀରେ ଧୀରେ ରାଷ୍ଟ୍ର ଆପଣା ଛାଏଁ "ମିଳେଇଯିବ" ଏବଂ ଏହିପରି ଭାବରେ ନୈରାଜ୍ୟବାଦ ଆଦର୍ଶ ମଧ୍ୟ ନିକଟ ହୋଇଯିବ ।

ତେଣୁ ମାର୍କସ୍ ଇତିହାସକୁ ଅନିବାର୍ଯ୍ୟ ଶ୍ରେଣୀ ସଂଗ୍ରାମଦ୍ୱାରା ହେଉଥିବା କ୍ରମବିକାଶର ପ୍ରଧାନ ପ୍ରକ୍ରିୟାରୂପେ ଦେଖୁଥିଲେ । ବହୁ ପରିମାଣରେ ବିସ୍ତୃତ ବିବରଣୀ ଓ ଦୃଷ୍ଟାନ୍ତ ସହ ସେ ଦେଖାଇଦେଲେ ଅତୀତରେ ଏହା କିପରି ହୋଇଛି, ବଡ଼ ମେସିନ୍ ଆଗମନରେ ସାମନ୍ତ ଯୁଗ ପରିବର୍ତ୍ତିତ ହୋଇ କିପରି ପୁଞ୍ଜିବାଦୀ ଯୁଗ ଆରମ୍ଭ ହୋଇଛି ଏବଂ ସାମନ୍ତ ଶ୍ରେଣୀ ସ୍ଥାନରେ ବୁର୍ଜୋୟା ଶ୍ରେଣୀ ଆସିଛି । ତାଙ୍କ କଥାନୁସାରେ ବର୍ତ୍ତମାନ ଯୁଗରେ ବୁର୍ଜୋୟା ଓ ଶ୍ରମିକ ଶ୍ରେଣୀ ଭିତରେ ଚାଲିଥିବା ଶ୍ରେଣୀ ସଂଗ୍ରାମ ହେଉଛି ଶେଷ ଶ୍ରେଣୀ ସଂଗ୍ରାମ । ପୁଞ୍ଜିବାଦ ଆପେ ହିଁ ଏହି ଶ୍ରେଣୀ ସୃଷ୍ଟି କରୁଛି ଏବଂ ତାର ବଳ ଓ ସଂଖ୍ୟା ବୃଦ୍ଧି କରୁଛି; ଶେଷରେ ଏହା ହିଁ ତାକୁ ଅଭିଭୂତ କରିବ ଏବଂ ଶ୍ରେଣୀହୀନ ସମାଜ ଓ ସାମ୍ୟବାଦ ପ୍ରତିଷ୍ଠା କରିବ ।

ଇତିହାସକୁ ଏହିପରି ଦୃଷ୍ଟିରେ ଦେଖିବାଟା ମାର୍କସ୍ ଯେପରି ଭାବରେ ବୁଝାଇଲେ, ଏହାକୁ "ଇତିହାସର ଭୌତିକବାଦୀ ଧାରଣା" ବୋଲି କହନ୍ତି । ଏହାକୁ 'ଭୌତିକବାଦୀ' କହନ୍ତି; କାରଣ ଏହା 'ଆଦର୍ଶବାଦୀ' ନୁହେଁ, ଏହି 'ଆଦର୍ଶବାଦୀ' ଶବ୍ଦଟିକୁ ମାର୍କସଙ୍କ ଅମଳର ଦାର୍ଶନିକମାନେ ଏକ ବିଶେଷ ଅର୍ଥରେ ବହୁଳ ବ୍ୟବହାର କରିଥିଲେ । ସେତେବେଳେ କ୍ରମବିକାଶର ଧାରଣା ଲୋକପ୍ରିୟ ହେଉଥିଲା । ମୁଁ ତଳେ କହିଛି—ଅନ୍ତତଃ ଜୀବର ଉତ୍ପତ୍ତି ଓ ପ୍ରଗତି ସମ୍ପର୍କରେ ଏପରି କ୍ରମବିକାଶ ଧାରଣା ଡାରଉଇନ୍ ଲୋକଙ୍କ ମନରେ ପୂରାଇ ଦେଇଥିଲେ । କିନ୍ତୁ ଏଥିରେ ମନୁଷ୍ୟର ସାମାଜିକ ସମ୍ବନ୍ଧ କୌଣସି ପ୍ରକାରେ ପରିସ୍ଫୁଟ ହେଉ ନ ଥିଲା । କେତେକ ଦାର୍ଶନିକ ମାନବ ପ୍ରଗତିଧାରାକୁ ମନ ଉନ୍ନତିର ଅସ୍ପଷ୍ଟ ଆଦର୍ଶବାଦୀ ଧାରଣାଦ୍ୱାରା ବୁଝାଇବାକୁ ଚେଷ୍ଟା କରିଥିଲେ । ମାର୍କସ୍ କହିଲେ, ଏହା ଏକ ଭୁଲ ବାଟ । ତାଙ୍କ ମନରେ ଅସାର ଅସ୍ପଷ୍ଟ କଳ୍ପନା ଏବଂ ଆଦର୍ଶବାଦ ଅତି ବିପଜ୍ଜନକ । କାରଣ ଏପରି ଭାବରେ ବାସ୍ତବ ଭିତ୍ତି ନ ଥିବା ସକଳପ୍ରକାର ଜିନିଷର କଳ୍ପନା ଲୋକେ କରିବାର ସମ୍ଭାବନା ରହିଛି । ତେଣୁ ସେ ଏକ ବୈଜ୍ଞାନିକ ଉପାୟରେ

ସମସ୍ତ ଘଟଣା ପରୀକ୍ଷା କରିବାରେ ଲଗିଲେ । ତେଣୁ ଏହି "ଭୌତିକବାଦୀ" ଶବ୍ଦର ପ୍ରୟୋଗ ହୋଇଛି ।

ମାର୍କସ୍ ବର୍ବର ଶୋଷଣ ଓ ଶ୍ରେଣୀସଂଗ୍ରାମ କଥା କହିଛନ୍ତି । ଆମ ଚାରିଆଡ଼େ ଯେଉଁ ଅନ୍ୟାୟ ରହିଛି ତାହା ଦେଖି ଆମ ଭିତରୁ ଅନେକ ରାଗି ଯାଆନ୍ତି ଓ ଉତ୍ତେଜିତ ହୋଇ ପଡ଼ନ୍ତି । କିନ୍ତୁ ମାର୍କସ୍‌ଙ୍କ ମତରେ ଏହା କ୍ରୋଧ କରିବାର ବା ସାଧୁ ଉପଦେଶ ଦେବାର ବିଷୟ ନୁହେଁ । ଶୋଷଣ ଲାଗି ଶୋଷଣ କରିବା ଲୋକ ଦୋଷୀ ନୁହେଁ । ଐତିହାସିକ ପ୍ରଗତିର ଏକ ସ୍ୱାଭାବିକ ପରିଣତି ସ୍ୱରୂପ ଏକ ଶ୍ରେଣୀ ଉପରେ ପ୍ରାଧାନ୍ୟ କରୁଛି ଏବଂ ଉପଯୁକ୍ତ ମୁହୂର୍ତ୍ତରେ ଅନ୍ୟ ବ୍ୟବସ୍ଥା ଏହାର ସ୍ଥାନ ନେଉଛି । ଯଦି କୌଣସି ବ୍ୟକ୍ତି ପ୍ରାଧାନ୍ୟ ଲଭିଥିବା ଶ୍ରେଣୀର ଲୋକ ହୋଇଥିବାରୁ ସେହି ହିସାବରେ ଶୋଷଣ କରୁଥାଏ, ତେବେ ତାହା ପକ୍ଷରେ ଏହା ଏକ ମହାପାପ ନୁହେଁ । ସେ ଏକ ବ୍ୟବସ୍ଥାର ଅଙ୍ଗ ମାତ୍ର ଏବଂ ତାକୁ ଗାଳିଗୁଲଜ କରିବା ନିରର୍ଥକ । ଆମେ ବ୍ୟକ୍ତିବିଶେଷ ଓ ପ୍ରଥା ଭିତରେ ଥିବା ଏହି ପାର୍ଥକ୍ୟ ଭୁଲିଯାଉ । ଭାରତ ବ୍ରିଟିଶ ସାମ୍ରାଜ୍ୟବାଦ ଅଧୀନରେ ରହିଛି ଏବଂ ଆମେ ଆମର ସମସ୍ତ ଶକ୍ତି ଦେଇ ଏହି ସାମ୍ରାଜ୍ୟବାଦ ସହିତ ଲଢ଼େଇ କରୁଛେ । କିନ୍ତୁ ଯେଉଁ ଇଂରେଜ ଲୋକେ ଭାରତରେ ଏହି ବ୍ୟବସ୍ଥାକୁ ସମର୍ଥନ କରୁଛନ୍ତି, ସେମାନଙ୍କୁ ଦୋଷ ଦେବାର ନୁହେଁ । ସେମାନେ ଏକ ପ୍ରକାଣ୍ଡ ଯନ୍ତ୍ରର ଛୋଟ ଛୋଟ ଦାନ୍ତ ପରି; ସେହି ଯନ୍ତ୍ରର ଗତିରେ କୌଣସି ପ୍ରକାରେ ପରିବର୍ତ୍ତନ କରିବା ଲାଗି ସମ୍ପୂର୍ଣ୍ଣ ଶକ୍ତିହୀନ । ସେହିପରି ଭାବରେ ଆମ ଭିତରୁ କେତେକ ଲୋକ ଜମିଦାରୀ ପ୍ରଥାକୁ ପୁରୁଣାକାଳିଆ ଓ ପ୍ରଜା ପକ୍ଷରେ ଅଧିକ କ୍ଷତିକାରକ ବୋଲି ମନେ କରିପାରୁ, ଯାହା ତଳେ ପ୍ରଜା ଭୀଷଣ ଭାବରେ ଶୋଷିତ ହୁଏ । କିନ୍ତୁ ତାହାର ଅର୍ଥ ନୁହେଁ ଯେ କୌଣସି ବ୍ୟକ୍ତିବିଶେଷ ଜମିଦାର ଏଥିପାଇଁ ଦୋଷୀ; ଯେଉଁ ପୁଞ୍ଜିବାଦୀମାନଙ୍କୁ ସର୍ବଦା ଶୋଷକ ବୋଲି ଦୋଷ ଦିଆଯାଏ ତାଙ୍କ କଥା ବି ସେଇଆ । ସର୍ବଦା ଦୋଷ ହେଉଛି ବ୍ୟବସ୍ଥାର, ବ୍ୟକ୍ତିବିଶେଷର ନୁହେଁ ।

ମାର୍କସ୍ ଏହି ଶ୍ରେଣୀ-ସଂଗ୍ରାମ ପ୍ରଚାର କରି ନ ଥିଲେ । ସେ ଦେଖାଇ ଦେଲେ ଯେ ପ୍ରକୃତିରେ ଏହା ରହିଛି ଏବଂ ସବୁ କାଳରେ କୌଣସି ନା କୌଣସି ଭାବରେ ଏହା ରହି ଆସିଛି । ତାଙ୍କର "କାପିଟାଲ" (Capital) ଲେଖିବାର ଉଦ୍ଦେଶ୍ୟ ହେଉଛି "ଆଧୁନିକ ସମାଜର ଅର୍ଥନୈତିକ ନିୟମର ଗତିକୁ ପଦାରେ ପକାଇ ଦେବା ।" ଏହି ଆବରଣ ଖୋଲି ଦେବାରୁ ସମାଜରେ ବିଭିନ୍ନ ଶ୍ରେଣୀ ଭିତରେ ଯେ ଭୀଷଣ ସଂଗ୍ରାମ ଚାଲିଛି ତାହା ଦୃଷ୍ଟିଗୋଚର ହେଲା । ଏହି ସଂଘର୍ଷ ସର୍ବଦା ଶ୍ରେଣୀ-ସଂଘର୍ଷରୂପେ ସ୍ପଷ୍ଟ ଭାବରେ ଜଣା ପଡ଼େ ନାହିଁ, କାରଣ ପ୍ରାଧାନ୍ୟ ଲଭିଥିବା ଶ୍ରେଣୀ ସର୍ବଦା ନିଜର ଶ୍ରେଣୀ ପ୍ରକୃତିକୁ ଲୁଚାଇବା ପାଇଁ ଚେଷ୍ଟା କରେ । କିନ୍ତୁ ଯେତେବେଳେ ପ୍ରଚଳିତ ବ୍ୟବସ୍ଥା ଉପରେ ଧକ୍କା ବାଜେ, ସେତେବେଳେ ଏହା ସମସ୍ତ ଛଳନା ଫୋପାଡ଼ି ଦିଏ, ଏହାର ପ୍ରକୃତ ରୂପ ବାହାରିପଡ଼େ ଏବଂ ଶ୍ରେଣୀଙ୍କ ଭିତରେ ପ୍ରକାଶ୍ୟ ଯୁଦ୍ଧ ହୁଏ । ଏହା ଯେତେବେଳେ ଘଟେ, ସେତେବେଳେ

ଗଣତନ୍ତ୍ରର ଆକାର, ସାଧାରଣ ଆଇନ ଓ ପଦ୍ଧତି ସବୁ ଉଭେଇଯାଏ । କେତେକ ଲୋକ କହନ୍ତି, ଏହି ଶ୍ରେଣୀ-ସଂଗ୍ରାମ ଭୁଲ ବୁଝିବା ହେତୁ କମ୍ବା ଆନ୍ଦୋଳନକାରୀମାନଙ୍କ ବଦମାସିଯୋଗୁଁ ହୋଇଥାଏ, କିନ୍ତୁ ପ୍ରକୃତରେ ଏହା ସମାଜରେ ନିହିତ ଥିବାର ଦେଖାଯାଏ ଏବଂ ସ୍ୱାର୍ଥ ସଂଘାତ ଭଲରୂପେ ବୁଝାପଡ଼ିବା ସଙ୍ଗେ ସଙ୍ଗେ ଏହା ପ୍ରକୃତରେ ବୃଦ୍ଧି ପାଏ ।

ମାର୍କସ୍‌ଙ୍କର ଏହି ତଥ୍ୟକୁ ଭାରତର ପ୍ରଚଳିତ ଅବସ୍ଥା ସହିତ ତୁଳନା କରିବା । ବ୍ରିଟିଶ ସରକାର ବହୁ କାଳରୁ ଦାବୀ କରି ଆସୁଛି ଯେ ଭାରତରେ ତାର ଶାସନ ନ୍ୟାୟ ଓ ଭାରତୀୟ ଲୋକଙ୍କର ମଙ୍ଗଳ ଉପରେ ପ୍ରତିଷ୍ଠିତ ଏବଂ ଏଥିରେ ସନ୍ଦେହ ନାହିଁ ଯେ ଅତୀତରେ ଆମ ଦେଶରେ ଅନେକ ଲୋକ ଏହି କଥାରେ କିଛିତ୍ସି ସତ୍ୟ ଅଛି ବୋଲି ବିଶ୍ୱାସ କରୁଥିଲେ । କିନ୍ତୁ ଏବେ ଏକ ମହାନ୍ ଘୋର ଜନଆନ୍ଦୋଳନଦ୍ୱାରା ଶାସନ ଗୁରୁତର ଭାବରେ ଆଘାତପ୍ରାପ୍ତ ହେବାରୁ ଏହାର ପ୍ରକୃତ ସ୍ୱରୂପର ଅସଭ୍ୟତା ଓ ନଗ୍ନତା ପ୍ରକାଶ ପାଇ ଯାଇଛି ଏବଂ ଯେ କୌଣସି ଲୋକ ଦେଖି ପାରିବ ଯେ ବାସ୍ତବରେ ଏହି ସାମ୍ରାଜ୍ୟବାଦୀ ଶୋଷଣ ସଙ୍ଗୀନ୍ ଉପରେ ନିର୍ଭର କରି ରହିଛି । ଏହାର ସମସ୍ତ ବାହାର ଦେଖାସୁନ୍ଦର ରୂପ ଓ କୋମଳ ଶବ୍ଦର ଆବରଣ ଦୂର ହୋଇ ଯାଇଛି । ସ୍ପେସାଲ ଅର୍ଡିନାନ୍ସ, ବକ୍ତୃତା, ସଭା ଓ ସମ୍ବାଦପତ୍ର ଆଦିର ଅତି ସାଧାରଣ ଅଧିକାର ଦମନ ହିଁ ଦେଶର ସାଧାରଣ ଆଇନ ଓ ଧାରା ହୋଇ ପଡ଼ିଲାଣି । ବର୍ତ୍ତମାନ ଥିବା କର୍ତ୍ତୃତ୍ୱକୁ ଯେତେ ଅଧିକ ବିରୋଧ କରାଯିବ, ଏହା ତେତେ ବେଶି ଘଟିବ । ଗୋଟିଏ ଶ୍ରେଣୀଦ୍ୱାରା ଅନ୍ୟ ଶ୍ରେଣୀ ଉପରେ ଗୁରୁତର ଆଘାତ ହେବାର ଆଶଙ୍କା ବେଳେ ବି ସେହିପରି ହୁଏ । ଆଜି ଆମ ଦେଶରେ କୃଷକ ଓ ଶ୍ରମିକଙ୍କୁ ଏବଂ ସେମାନଙ୍କ ପାଇଁ ଯେଉଁମାନେ କାମ କରୁଛନ୍ତି ସେମାନଙ୍କୁ ଯେଉଁ ନିର୍ମମ ଶାସ୍ତି ଦିଆଯାଉଛି, ସେଥିରେ ଏହା ପ୍ରମାଣିତ ହେଉଛି ।

ଏହିରୂପେ ମାର୍କସ୍‌ଙ୍କର ଇତିହାସର ତଥ୍ୟ ହେଉଛି ସଦା ପରିବର୍ତ୍ତନଶୀଳ ଓ ଉନ୍ନତ ସମାଜ । ଏଥିରେ କୌଣସି ସ୍ଥିରତା ନାହିଁ । ଏହା ଏକ କ୍ରିୟାକର୍ମ କଳ୍ପନା । ଯାହା ଘଟୁ ପଛକେ, ଏକ ସାମାଜିକ ବ୍ୟବସ୍ଥା ସ୍ଥାନରେ ଆଉ ଗୋଟିଏ ଆସିବା ସଙ୍ଗରେ ଏହା ଅଗ୍ରସର ହେବ ହିଁ ହେବ । କିନ୍ତୁ ଯେତେବେଳେ ଏକ ସାମାଜିକ ବ୍ୟବସ୍ଥା ନିଜର କାମ ଶେଷ କରିଦିଏ ଏବଂ ପୂର୍ଣ୍ଣ ପରିମାଣରେ ବୃଦ୍ଧି ଲଭ କରେ, କେବଳ ସେତେବେଳେ ଯାଇ ଏହା ଲୋପ ପାଇଯାଏ । ସମାଜ ଯେତେବେଳେ ଏହାର ଆଗରୁ ବଢ଼ିଯାଏ ସେତେବେଳେ ଏହା କେବଳ ପୁରାତନ ସମାଜର ପୋଷାକ ଛିଣ୍ଡାଇଦିଏ ଏବଂ ନୂତନ ଓ ବଡ଼ ପୋଷାକ ପିନ୍ଧେ, କାରଣ ପୁରୁଣା ପୋଷାକ ଭିଡ଼ିହୋଇ ଦେହକୁ ବାନ୍ଧିରଖିଥାଏ ।

ମାର୍କସ୍‌ଙ୍କ ମତରେ ମଣିଷକୁ ଏହି ଉନ୍ନତିର ପ୍ରଧାନ ଐତିହାସିକ ପ୍ରକ୍ରିୟାରେ ସାହାଯ୍ୟ କରିବାକୁ ହିଁ ପଡ଼ିବ । ସମସ୍ତ ପୂର୍ବ ଅବସ୍ଥା ଅତିକ୍ରମ ହୋଇ ଯାଇଛି । ପୁଞ୍ଜିବାଦୀ ବୁର୍ଜୋୟା ଶ୍ରେଣୀ ଓ ଶ୍ରମିକ ଶ୍ରେଣୀଙ୍କ ଭିତରେ ଶେଷ ଶ୍ରେଣୀ-ସଂଗ୍ରାମ ଏବେ ହେଉଛି ।

(ଅବଶ୍ୟ ଯେଉଁସବୁ ଅଧିକ ଶିଳ୍ପୋନ୍ନତ ଦେଶରେ ପୁଞ୍ଜିବାଦ ପୂର୍ଣ୍ଣ ଉନ୍ନତି ଲାଭ କରିଛି; ସେଠି ଏହା ହୋଇଛି । ଯେଉଁସବୁ ଦେଶରେ ପୁଞ୍ଜିବାଦ ଉନ୍ନତି ଲାଭ କରିନାହିଁ, ତାହା ପଛରେ ପଡ଼ିଛି ଏବଂ ଶ୍ରେଣୀ ସେମାନଙ୍କର ସଂଗ୍ରାମ ଏକପ୍ରକାର ମିଶ୍ରିତ ଓ ଭିନ୍ନ ଧରଣର । କିନ୍ତୁ ପୃଥିବୀର ଅଧିକରୁ ଅଧିକ ପରସ୍ପର ସହିତ ସଂପୃକ୍ତ ହେବା ସଙ୍ଗେ ସଙ୍ଗେ ଏହି ସଂଗ୍ରାମର କେତେକ ଦିଗ ମଧ୍ୟ ଏଠାରେ ଦେଖାଯାଏ) । ମାର୍କସ କହିଥିଲେ ଯେ ପୁଞ୍ଜିବାଦ ଭୁଶୁଡ଼ି ନପଡ଼ିବା ପର୍ଯ୍ୟନ୍ତ ବିପଦ ଉପରେ ବିପଦ, ସଙ୍କଟ ପରେ ସଙ୍କଟର ସମ୍ମୁଖୀନ ହେଉଥିବ; କାରଣ ସ୍ଥିତିବ୍ୟବସ୍ଥାର ଅଭାବ ହିଁ ଏହାର ଜନ୍ମଗତ ଦୋଷ । ମାର୍କସ ଏହା ଲେଖିବା ଷାଠିଏ ବର୍ଷରୁ ଅଧିକ ହେଲାଣି ଏବଂ ସେହିଦିନୁ ପୁଞ୍ଜିବାଦ ଅନେକ ସଙ୍କଟର ସମ୍ମୁଖୀନ ହେଲାଣି । କିନ୍ତୁ ଶେଷ ହେବା ତ ଦୂରର କଥା, ଏହା ସଙ୍କଟରୁ ବଞ୍ଚି ରହିଛି ଏବଂ କେବଳ ରୁଷ ଛଡ଼ା ଅନ୍ୟତ୍ର ଅଧିକ ଶକ୍ତିଶାଳୀ ହୋଇଛି । ରୁଷରେ ଏହା ଆଉ ନାହିଁ । ଏବେ ମୁଁ ଲେଖିଲାବେଳେ ସମଗ୍ର ଦୁନିଆ ଏଥିରେ ଗୁରୁତର ଭାବରେ ପୀଡ଼ିତ ହେଲା ପରି ବୋଧ ହେଉଛି ଏବଂ ଏହାର ଆରୋଗ୍ୟର ସମ୍ଭାବନା ବିଷୟରେ ଚିକିତ୍ସକମାନେ ସନ୍ଦେହ ଜ୍ଞାପନ କରୁଛନ୍ତି ।

ବୁଝାଯାଏ, ଆମ ଅମଳ ପର୍ଯ୍ୟନ୍ତ ପୁଞ୍ଜିବାଦ ଯେଉଁ କାରଣରୁ ବଞ୍ଚି ରହିପାରିଲା, ତାହା ମାର୍କସ୍ ପୂର୍ଣ୍ଣରୂପେ ବିଚାର କରି ନ ଥିଲେ । ଏହା ହେଉଛି ଶିଳ୍ପୋନ୍ନତ ପାଶ୍ଚାତ୍ୟ ଦେଶମାନଙ୍କଦ୍ୱାରା ଉପନିବେଶମାନଙ୍କର ଶୋଷଣ । ଏହା ପୁଞ୍ଜିବାଦକୁ ନୂତନ ଜୀବନ ଓ ସମୃଦ୍ଧି ଦାନ କଲା, ଅବଶ୍ୟ ଗରିବ ଦେଶସବୁର ଶୋଷଣରେ ହିଁ ଏହା ସମ୍ଭବ ହେଲା ।

ଆଜିକାଲିକା ପୁଞ୍ଜିବାଦୀ ବ୍ୟବସ୍ଥାରେ ଧନୀଦ୍ୱାରା ଦରିଦ୍ରର, ପୁଞ୍ଜିପତିଦ୍ୱାରା ଶ୍ରମିକର ଯେଉଁ ଶୋଷଣ ଚାଲିଛି, ଆମେ ବରାବର ନିନ୍ଦା କରୁଥାଉଁ । ଏହା ଯେ ସତ୍ୟ ଏଥିରେ ସନ୍ଦେହ ନାହିଁ; କିନ୍ତୁ ପୁଞ୍ଜିପତିର ଦୋଷ ଯୋଗୁଁ ନୁହେଁ, ଯେଉଁ ବ୍ୟବସ୍ଥା ଉପରେ ଏହି ଶୋଷଣ ପ୍ରତିଷ୍ଠିତ ହୋଇଛି ତାହା ଯୋଗୁ ହିଁ ଏହି ଶୋଷଣ ଚାଲିଛି । ପୁଞ୍ଜିବାଦ ଅଧୀନରେ ଏହା ଏକ ନୂଆ ଜିନିଷ ବୋଲି ଆମର ବିଚାରିବା ଉଚିତ ନୁହେଁ । ଅତୀତ ଯୁଗରେ ସମସ୍ତ ବ୍ୟବସ୍ଥା ଅଧୀନରେ ଶୋଷଣ ହିଁ ଗରିବ ଓ ଶ୍ରମିକର ଭାଗ୍ୟରେ ସର୍ବଦା ଘଟିଆସିଛି । ବାସ୍ତବିକ ଏହା ବୁଝାଯାଇ ପାରେ ଯେ ପୁଞ୍ଜିବାଦୀ ଶୋଷଣ ସତ୍ତ୍ୱେ ଅତୀତର ଯେ କୌଣସି କାଳ ଅପେକ୍ଷା ଆଜିର ଅବସ୍ଥା ଭଲ । କିନ୍ତୁ ଏହା କିଛି ବାହୁଲ୍ୟ କଥା ନୁହେଁ ।

ଲେନିନ୍ ହିଁ ମାର୍କସ୍‌ବାଦର ସର୍ବାପେକ୍ଷା ବଡ଼ ଆଧୁନିକ ବ୍ୟାଖ୍ୟାକାରକ । ସେ ଯେ କେବଳ ଏହାର ବ୍ୟାଖ୍ୟା କରିଥିଲେ ଓ ବୁଝାଇଥିଲେ ତାହା ନୁହେଁ, ସେ ଏଥିପାଇଁ ଲାଗି ପଡ଼ିଥିଲେ ମଧ୍ୟ । ତଥାପି ସେ ମାର୍କସ୍‌ବାଦ ଏକ ମୂଳ ନିର୍ଦ୍ଦିଷ୍ଟ ସିଦ୍ଧାନ୍ତ ଏବଂ ତାହାର ବ୍ୟତିକ୍ରମ ହୋଇପାରେ ନା ବୋଲି ନ ବିଚାରିବା ଲାଗି ସେ ଆମକୁ ସତର୍କ କରାଇ ଦେଇଛନ୍ତି । ଏହାର ମୌଳିକ ସିଦ୍ଧାନ୍ତ ଉପଲବ୍ଧି କରିଥିବାରୁ ସେ ଚଳନ୍ତାହିନ ଭାବରେ

ପ୍ରତ୍ୟେକ ସ୍ଥାନ୍‌ରେ ଏହା ପ୍ରୟୋଗ କରିବାକୁ ବା ଗ୍ରହଣ କରିବାକୁ ପ୍ରସ୍ତୁତ ନ ଥିଲେ । ସେ କହିଛନ୍ତି—

"କୌଣସି ଭାବରେ ଆମେ ମାର୍କସ୍‌ବାଦୀ ତଥ୍ୟକୁ ଏକ ପୂର୍ଣ୍ଣ ଓ ଅଖଣ୍ଡନୀୟ ତଥ୍ୟ ରୂପେ ଗ୍ରହଣ କରିନାହୁଁ, ଅପରନ୍ତୁ ଆମେ ଉପଲବ୍ଧି କରୁଛୁ ଯେ ଏହା ତଥ୍ୟବିଜ୍ଞାନର ଆଧାର । ସାମ୍ୟବାଦୀମାନେ ଯଦି ଜୀବନର ପଛରେ ପଡ଼ିବାକୁ ନ ଚାହାନ୍ତି, ତେବେ ଏହି ବିଜ୍ଞାନକୁ ସେମାନେ ସବୁଦିଗରେ ଉନ୍ନତ କରିବା ଦରକାର । ଆମେ ମନେକରୁ ଯେ ମାର୍କସ୍‌ବାଦୀ ତଥ୍ୟକୁ ସ୍ୱାଧୀନ ଭାବରେ ଅଧ୍ୟୟନ କରିବା ରୁଷ ସାମ୍ୟବାଦୀଙ୍କ ପକ୍ଷରେ ବିଶେଷରୂପେ ଆବଶ୍ୟକ, କାରଣ ଏହି ତଥ୍ୟ କେତେ ସାଧାରଣ ପଥପ୍ରଦର୍ଶକ ଭାବ ଦିଏ, ଉଦାହରଣ ସ୍ୱରୂପ ଏହା ଫ୍ରାନ୍‌ସ ଅପେକ୍ଷା ଇଂଲଣ୍ଡରେ ଅଲଗା ଭାବରେ, ଜର୍ମାନୀ ଅପେକ୍ଷା ଫ୍ରାନ୍‌ସରେ ଭିନ୍ନ ଢଙ୍ଗରେ ଏବଂ ରୁଷ ଅପେକ୍ଷା ଜର୍ମାନୀରେ ସ୍ୱତନ୍ତ୍ର ରୂପେ ପ୍ରୟୋଗ କରା-ଯାଇପାରେ ।"

ଏହି ଚିଠିରେ ମୁଁ ତତେ ମାର୍କସ୍‌ଙ୍କ ତଥ୍ୟ ବିଷୟରେ କିଛି କହିବାକୁ ଚେଷ୍ଟା କରିଛି, କିନ୍ତୁ ମୋର ଏହି ଚାଲି ପକାଇବାଟା ତୋ ପକ୍ଷରେ ବିଶେଷ ଲାଭ ହେବ କି ନା ଏବଂ ଏହା ତୋ ମନରେ କୌଣସି ପରିଷ୍କାର ଧାରଣା ଦେବ କି ନା ମୁଁ ଜାଣେ ନାହିଁ । ଏହି ତଥ୍ୟ ସବୁ ଜାଣିବା ଭଲ; କାରଣ ଆଜି ଏହା ଏକ ବିରାଟ ଜନତାକୁ ଗତିଶୀଳ କରିଛି ଏବଂ ସେ ସବୁ ଆମ ନିଜ ପକ୍ଷରେ ମଧ୍ୟ ହିତାତ୍ମକ ହୋଇପାରେ । ଏକ ମହାନ୍ ଜାତି ରୁଷ ଏବଂ ସୋଭିଏଟ୍ ଇଉନିଅନର ଅନ୍ୟ ଅଞ୍ଚଳ ସବୁ ମାର୍କସଙ୍କୁ ନିଜର ପ୍ରଧାନ ଅଗ୍ରଦୂତ ରୂପେ ପ୍ରତିଷ୍ଠିତ କରାଇଛନ୍ତି ଏବଂ ଆଜି ପୃଥିବୀର ଘୋର ଦୁର୍ଗତି ବେଳେ ବହୁ ଲୋକ ପ୍ରତିକାର ପାଇବା ପାଇଁ ତାଙ୍କଠୁଁ ପ୍ରେରଣା ପାଇବାର ଆଶା ରଖୁଛନ୍ତି ।

ଇଂରେଜ କବି ଟେନିସନ୍‌ଙ୍କର କେତେ ଧାଡ଼ି ଉଦ୍ଧାର କରି ମୁଁ ଏହା ଶେଷ କରିବି—

"ନୂତନର ଅଭିଷେକ ପାଇଁ ପୁରାତନ ଛାଡ଼େ ତା ଆସନ,
ପୁରାତନ ବ୍ୟବସ୍ଥା ବଦଳେ ନୂତନର ଗଢ଼େ ସିଂହାସନ,
ନାନାରୂପେ ନାନାଭାବେ ପ୍ରଭୁ ପୂର୍ଣ୍ଣ କରେ ତାର ଅଭିଳାଷ,
ସୁବ୍ୟବସ୍ଥା ସ୍ଥାଣୁ ହୋଇଗଲେ ସୃଷ୍ଟି କାଳେ କରିଦେବ ଧ୍ୱଂସ !"

(ଅନୁବାଦକ—ଚିତ୍ତରଞ୍ଜନ)

---

## ୧୩୫ : ଇଂଲଣ୍ଡରେ ଭିକ୍‌ଟୋରିଆ ଯୁଗ

ଫେବୃୟାରି ୨୨, ୧୯୩୩

ସାମ୍ୟବାଦୀ ବିଚାରଧାରାର ଅଭିବୃଦ୍ଧି ସମ୍ବନ୍ଧରେ ଗତ ଚିଠିରେ ଲେଖିଲାବେଳେ ଇଂରେଜ ଢାଞ୍ଚା ସାମ୍ୟବାଦ ସବୁଠୁ ବେଶି ମାଡ଼ା ଧରଣର ଥିଲା ବୋଲି ମୁଁ ତତେ ଦର୍ଶାଇ ଦେଇଛି। ସେତେବେଳେ ଇଉରୋପରେ ଯେଉଁସବୁ ଆଦର୍ଶବାଦର ପ୍ରଚଳନ ଥିଲା, ସେଥିରେ ଏହା ସର୍ବାପେକ୍ଷା କମ୍ ବିପ୍ଳବୀ ଥିଲା ଏବଂ ଅବସ୍ଥା ଉନ୍ନତ କ୍ରମରେ ଅତି ଧୀର ମନ୍ଥର ଭାବରେ ପାଦପକାଇ ପରିବର୍ତ୍ତନ ଆଣି ଦେବ ବୋଲି ଆଶା କରୁଥିଲା। ବେଳେ ବେଳେ ଯେତେବେଳେ ବେପାର ଖରାପ ହୋଇଯାଉଥିଲା, ଦୁର୍ଗତି ପଡ଼ୁଥିଲା, ଅକର୍ମୀ ସଂଖ୍ୟା ବୃଦ୍ଧି ହେଉଥିଲା, ମଜୁରି କମି ଯାଉଥିଲା ଏବଂ ଲୋକେ କଷ୍ଟ ପାଉଥିଲେ, ସେତେବେଳେ ଇଂଲଣ୍ଡରେ ବି ଏକ ବିପ୍ଳବ-ତରଙ୍ଗ ଉଠୁଥିଲା; କିନ୍ତୁ ଭଲ ଅବସ୍ଥା ଫେରି ଆସିବା ସଙ୍ଗେ ସଙ୍ଗେ ଏହା ଦବି ଯାଉଥିଲା। ୧୯ଶ ଶତାବ୍ଦୀରେ ଇଂରେଜ ଚରିତ୍ରର ଏହି ମାଡ଼ା ନୀତି ଇଂଲଣ୍ଡର ସମୃଦ୍ଧି ସହିତ ଘନିଷ୍ଠ ରୂପେ ସମ୍ପୃକ୍ତ, କାରଣ ସମୃଦ୍ଧି ଓ ବିପ୍ଳବରେ କିଛି ସାମଞ୍ଜସ୍ୟ ନାହିଁ। ବିପ୍ଳବ ଅର୍ଥ ହେଉଛି ଏକ ମହାନ୍ ପରିବର୍ତ୍ତନ ଏବଂ ଯେଉଁମାନେ ପ୍ରଚଳିତ ଅବସ୍ଥାରେ ଭଲ ରୂପେ ସନ୍ତୁଷ୍ଟ ଅଛନ୍ତି, ପରିବର୍ତ୍ତନ ହେବାର ସୁଦୂର ସମ୍ଭାବନା ପାଇଁ ବିପଦସଂକୁଳ ଓ ଦୁଃସାହସିକ କାର୍ଯ୍ୟ ଭିତରେ ପଶିବାକୁ ସେମାନଙ୍କର ଅଭିଳାଷ ରହେ ନାହିଁ।

ବାସ୍ତବିକ ଊନବିଂଶ ଶତାବ୍ଦୀ ଥିଲା ଇଂଲଣ୍ଡର ଶ୍ରେଷ୍ଠତ୍ୱ ଲାଭ କରିବାର ଶତାବ୍ଦୀ। ୧୮ଶ ଶତାବ୍ଦୀର ଶିଳ୍ପ-ବିପ୍ଳବ ହେବା ହେତୁ ଏବଂ ଅନ୍ୟ ଦେଶଠୁ ଆଗରୁ ନୂତନ କଳକାରଖାନା ନିର୍ମାଣ କରି ପାରିଥିବା ହେତୁ ତାହା ଯେଉଁ ନେତୃତ୍ୱ କରିଥିଲା, ତାହା ୧୯ଶ ଶତାବ୍ଦୀର ଅଧିକ କାଳ ପର୍ଯ୍ୟନ୍ତ ରହି ଆସିଥିଲା। ମୁଁ କହିଛି, ଏହା ଥିଲା ଇଉରୋପ କାରଖାନା ଏବଂ ସୁଦୂର ଦେଶମାନଙ୍କରୁ ଧନ ଏଠିକି ବୁହା ହୋଇ ଆସିଲା। ଭାରତ ଓ ଅନ୍ୟ ଉପନିବେଶମାନଙ୍କୁ ଶୋଷଣ କରି ସେ ବହୁ ପରିମାଣରେ ଅର୍ଥ ଲାଭ କଲା ଏବଂ ତାର ମର୍ଯ୍ୟାଦା ଅଧିକ ଭାବରେ ବଢ଼ିଲା। ଇଉରୋପର ପ୍ରାୟ ପ୍ରତ୍ୟେକ ଦେଶରେ ପରିବର୍ତ୍ତନ ହେଉଥିବା ବେଳେ କୌଣସି ବିପ୍ଳବ ବିନା ଇଂଲଣ୍ଡ ଚାଲିଥିଲା ପରି ବୋଧ ହେଲା ତାହା ପର୍ବତ ପରି ଶକ୍ତ ଓ କଠିନ ହୋଇ ରହିଲା। ଥରକୁ ଥର ସଂକଟ ହୋଇଛି; କିନ୍ତୁ ଆଉ କିଛି ଅଧିକା ଲୋକଙ୍କୁ ଭୋଟ ଅଧିକାର ଦେଇ ତାହା ଅତିକ୍ରମ କରାଯାଇଛି। ଇତ୍ୟବସରରେ ଆମେ ଦେଖିଛେ, ଫ୍ରାନ୍‌ସରେ ଅତି ଦ୍ରୁତଗତିରେ ଗୋଟିଏ ପରେ ଗୋଟିଏ ପ୍ରଜାତନ୍ତ୍ର ଓ ସାମ୍ରାଜ୍ୟ ହେଉଥାଏ, ପୁଣି ଭାଙ୍ଗୁଥାଏ; ଦୀର୍ଘକାଳ ବିଚ୍ଛିନ୍ନ ରହିବା ପରେ ସମଗ୍ର ଅଞ୍ଚଳକୁ ଏକତ୍ର କରି ଇଟାଲିରେ ଏକ ନୂତନ ଜାତିର ଉଦୟ ହେଲା; ଜର୍ମାନୀରେ ଏକ ନୂତନ ସାମ୍ରାଜ୍ୟ ବାହାରିଲା। ବେଲ୍‌ଜିୟମ୍, ଡେନ୍‌ମାର୍କ ଓ ଗ୍ରୀସ୍ ପରି ଛୋଟ ଛୋଟ ଦେଶର ମଧ୍ୟ ଅନେକ ଭାବରେ ପରିବର୍ତ୍ତନ ହେଲା। ଇଉରୋପର ସର୍ବାପେକ୍ଷା ପୁରାତନ ହାପ୍‌ସବର୍ଗ ରାଜବଂଶର କେନ୍ଦ୍ର ଅଷ୍ଟ୍ରିଆ ବାରମ୍ବାର ଫ୍ରାନ୍‌ସ, ଇଟାଲି ଏବ

ପ୍ରୁସିଆ ଦ୍ୱାରା ପରାସ୍ତ ହୋଇ ନତମସ୍ତକ ହେଲା । କେବଳ ପୂର୍ବରେ ରୁଷ ହିଁ ଅପରିବର୍ତ୍ତିତାବସ୍ଥା ପରି ଦେଖାଯାଉଥିଲା । ଏକଚ୍ଛତ୍ର ଶାସକ ଜାର ମହାନ୍ ମୋଗଲ ପରି ସେଠି ଶାସନ କରୁଥାନ୍ତି । କିନ୍ତୁ ଶିଳ୍ପୋଦ୍ୟୋଗ ଦୃଷ୍ଟିରେ ରୁଷ ଥିଲା ଅତ୍ୟନ୍ତ ଅନୁନ୍ନତ ଓ ଏକ କୃଷିପ୍ରଧାନ ଦେଶ; ନୂତନ ଭାବଧାରା ଓ ନୂତନ ଶିଳ୍ପର ହାଉଆ ଏ ପର୍ଯ୍ୟନ୍ତ ତାକୁ ସ୍ପର୍ଶ କରି ନ ଥାଏ ।

ଇଂଲଣ୍ଡର ସମ୍ପଦ, ସାମ୍ରାଜ୍ୟ ଏବଂ ନୌଶକ୍ତି ଯୋଗୁଁ ଏହା ଇଉରୋପ ଓ ପୃଥିବୀରେ ଏକାଧିପତ୍ୟ ବିସ୍ତାର କରିବା ଅବସ୍ଥାରେ ଥିଲା । ସେ ଏକ ମୁଖ୍ୟ ଦେଶ ରୂପେ ରହିଥିଲା ଏବଂ ସମଗ୍ର ଜଗତରେ ତାର ଶୁଣ୍ଢ ବିସ୍ତାର ହୋଇଥିଲା । ଆମେରିକା ଯୁକ୍ତରାଷ୍ଟ୍ର ଏବେ ସୁଦ୍ଧା ନିଜ ଅଭାବ ଅସୁବିଧା ନେଇ ବ୍ୟସ୍ତ ରହିଥିଲା ଏବଂ ବିଶ୍ୱ ବ୍ୟାପାର ଅପେକ୍ଷା ନିଜର ଆଭ୍ୟନ୍ତରୀଣ ଉନ୍ନତିରେ ଅଧିକ ବ୍ୟାପୃତ ଥିଲା । ଯାନବାହାନ ପ୍ରଣାଳୀରେ ଅଦ୍ଭୁତ ପରିବର୍ତ୍ତନମାନ ହେଲା—ଏହା ଦୁନିଆଁକୁ ଛୋଟ ଏବଂ ଅଧିକ ନିକଟତର କରିପକାଇଲା ପରି ମନେହେଲା । ଏହା ସୁଦୂର ଦେଶମାନଙ୍କ ଉପରେ ନିଜର କର୍ତ୍ତୃତ୍ୱ ଦୃଢ଼ କରିବାରେ ଇଂଲଣ୍ଡକୁ ପୁଣି ସାହାଯ୍ୟ କଲା । ଏସବୁ ପରିବର୍ତ୍ତନ ସତ୍ତ୍ୱେ ଇଂଲଣ୍ଡର ସରକାର ସେହିପରି ରହିଥିଲା । ସେଠାରେ ଏକ ବୈଧାନିକ ରାଜତନ୍ତ୍ର ରହିଥିଲା; ଏହି ବ୍ୟବସ୍ଥାରେ ଜଣେ ଶାସକ ଥାନ୍ତି ଯାହାଙ୍କର ପ୍ରାୟ କୌଣସି କ୍ଷମତା ନ ଥାଏ ଏବଂ ପାର୍ଲାମେଣ୍ଟ ହିଁ ଅସଲ ଶକ୍ତି ବୋଲି ଧରାଯାଏ । ପାର୍ଲାମେଣ୍ଟ ପ୍ରଥମେ କେତେକ ମୁଷ୍ଟିମେୟ ଜମିଦାର ଓ ଧନୀ ବଣିକମାନଙ୍କ ଭୋଟରେ ନିର୍ବାଚିତ ହେଉଥିଲା, କିନ୍ତୁ ଯେତେବେଳେ ସଙ୍କଟ ଉପୁଜୁଥିଲା, ଗଣ୍ଡଗୋଳ ଏଡ଼ାଇବା ପାଇଁ ଏହି ଶତାବ୍ଦୀ ଭିତରେ ଅଧିକ ଲୋକଙ୍କୁ ଭୋଟ କ୍ଷମତା ଦିଆଗଲା ।

ଏହି ଶତାବ୍ଦୀର ଅନେକ କାଳ ପର୍ଯ୍ୟନ୍ତ ଭିକ୍ଟୋରିଆ ଇଂଲଣ୍ଡର ରାଣୀ ଥିଲେ । ସେ ଜର୍ମାନିର ହାନୋଭର ବଂଶର । ଅଷ୍ଟାଦଶ ଶତାବ୍ଦୀରେ ଇଂରେଜ ରାଜସିଂହାସନକୁ ଏଥିରୁ ଅନେକ ରାଜା ଯାଇଛନ୍ତି । ସେ ୧୮ ବର୍ଷ ବୟସରେ ସିଂହାସନ ପାଇଲେ ଏବଂ ଏହି ଶତାବ୍ଦୀ ଅର୍ଥାତ୍ ୧୯୦୦ ଶେଷ ପର୍ଯ୍ୟନ୍ତ ୬୩ ବର୍ଷ ରାଜୁତି କରିଥିଲେ । ଇଂଲଣ୍ଡରେ ଏହି ଦୀର୍ଘକାଳକୁ ପ୍ରାୟ 'ଭିକ୍ଟୋରିଆ ଯୁଗ' ବୋଲି ଧରାଯାଏ । ରାଣୀ ଭିକ୍ଟୋରିଆ ଇଉରୋପରେ ଓ ଅନ୍ୟତ୍ର ଅନେକ ପରିବର୍ତ୍ତନ ଦେଖିପାରିଥିଲେ, ଯେଉଁଠି କି ପୁରାତନ ଐତିହାସିକ ଘଟଣାସବୁ ହଟିଯାଇଛି ଓ ତା ସ୍ଥାନରେ ନୂତନ ଆସି ପହଞ୍ଚିଛି । ସେ ଇଉରୋପରେ ବିପ୍ଳବ, ଫ୍ରାନ୍ସରେ ପରିବର୍ତ୍ତନ ଏବଂ ଇଟାଲୀ ରାଜ୍ୟ ଓ ଜର୍ମାନ ସାମ୍ରାଜ୍ୟର ଉଦୟ ଦେଖିଥିଲେ । ମଲାବେଳକୁ ସେ ଇଉରୋପର ଏବଂ ଇଉରୋପୀୟ ରାଜାରାଜୁଡ଼ାଙ୍କର ଏକପ୍ରକାର ବୁଢ଼ୀମା ହୋଇଯାଇଥିଲେ । ଭିକ୍ଟୋରିଆଙ୍କ ସମସାମୟିକ ଆଉ ଜଣେ ଇଉରୋପୀୟ ଶାସକ ବି ସେହିପରି ଥିଲେ । ସେ ହେଉଛନ୍ତି ଅଷ୍ଟ୍ରିଆର ହାପ୍ସବର୍ଗ ବଂଶର ରାଜା ଫ୍ରାନ୍ସିସ ଜୋସେଫ୍ । ୧୮୪୮ ବିପ୍ଳବ ବର୍ଷ ସେ ଯେତେବେଳେ ଅଷ୍ଟ୍ରିଆ-ହଙ୍ଗେରୀ ସିଂହାସନରେ ବସିଲେ, ସେତେବେଳେ ତାଙ୍କ ବୟସ ମଧ୍ୟ ୧୮ ବର୍ଷ ହୋଇଥିଲା । ସେ ୬୮ ବର୍ଷ ପର୍ଯ୍ୟନ୍ତ ରାଜୁତି କଲେ ଏବଂ ତାଙ୍କ ଅଧୀନରେ ଅଷ୍ଟ୍ରିଆ, ହଙ୍ଗେରୀ ଓ ଅନ୍ୟ ଅଞ୍ଚଳସବୁ ଏକତ୍ର କରି ରଖି ପାରିଥିଲେ । କିନ୍ତୁ ପୃଥିବୀବ୍ୟାପୀ ଯୁଦ୍ଧରେ ତାଙ୍କର ଓ ତାଙ୍କ ସାମ୍ରାଜ୍ୟର ଅନ୍ତ ହୋଇଗଲା ।

ଭିକ୍ଟୋରିଆ ଅଧିକ ଭାଗ୍ୟବତୀ ଥିଲେ । ତାଙ୍କ ରାଜୁତ୍ୱ ଭିତରେ ଇଂଲଣ୍ଡର କ୍ଷମତା ବଢ଼ିବାର ଏବଂ ସାମ୍ରାଜ୍ୟ ବିସ୍ତାର ଲାଭ କରିବାର ସେ ଦେଖିଲେ । ସେ ସିଂହାସନରେ ବସିଲାବେଳକୁ କାନାଡ଼ାରେ ଗୋଳମାଳ ଦେଖା ଦେଇଥିଲା । ଉପନିବେଶରେ ପ୍ରକାଶ୍ୟ ବିଦ୍ରୋହ ହୋଇଥିଲା ଏବଂ ଅନେକ ଉପନିବେଶବାସୀ ଇଂଲଣ୍ଡରୁ ସମ୍ପର୍କ ତୁଟାଇ ପଡ଼ୋଶୀ ଆମେରିକା ଯୁକ୍ତରାଷ୍ଟ୍ରସହ ଯୋଗ ଦେବାକୁ ଚାହୁଁଥିଲେ । କିନ୍ତୁ ଆମେରିକା ଯୁଦ୍ଧରୁ ଇଂଲଣ୍ଡ ଏକ ଶିକ୍ଷା ପାଇଥିଲା ଏବଂ କାନାଡ଼ାବାସୀଙ୍କି ଅଧିକ ପରିମାଣରେ ସ୍ୱାୟତ୍ତ ଶାସନ ଦେଇ ସେମାନଙ୍କୁ ସନ୍ତୁଷ୍ଟ କରିବା ଦିଗରେ ଧାଇଁଲା । ଅଳ୍ପ କେତେଦିନ ପରେ ଏହା ଏକ ପୂର୍ଣ୍ଣ ସ୍ୱାୟତ୍ତ-ଶାସିତ ଡୋମିନିୟନ୍‌ରେ ପରିଣତ ହେଲା । ସାମ୍ରାଜ୍ୟରେ ଏହା ଏକ ନୂତନ ପ୍ରକାର ପରୀକ୍ଷା; କାରଣ ସ୍ୱାଧୀନତା ଓ ସାମ୍ରାଜ୍ୟ ପରସ୍ପର ପରସ୍ପରର ବିରୋଧୀ, କିନ୍ତୁ ପରିସ୍ଥିତି ଏହା କରିବା ପାଇଁ ଇଂଲଣ୍ଡକୁ ବାଧ୍ୟ କଲା ଅନ୍ୟଥା କାନଡ଼ାଟି ହାତରୁ ଚାଲିଯାଇଥାନ୍ତା । କାନାଡ଼ାର ବେଶୀ ସଂଖ୍ୟକ ଲୋକ ଇଂରେଜ ବଂଶଜ ହୋଇ-ଥିବାରୁ ମାତୃଦେଶ ସହିତ ଏକ ବଳିଷ୍ଠ, ସ୍ୱେଚ୍ଛାପ୍ରଣୋଦିତ ବନ୍ଧନ ଥିଲା । ଏହି ନୂତନ ଦେଶ ଏକ ବିଶାଳ ଅନୁନ୍ନତ ରାଜ୍ୟ, ଲୋକସଂଖ୍ୟା ଖୁବ୍ କମ୍ । ତେଣୁ ଇଂରେଜ କଲ କାରଖାନା ମାଲିକଙ୍କ ଉପରେ ଓ ଉନ୍ନତି ପାଇଁ ଇଂଲଣ୍ଡର ଧନ ଉପରେ ଏହା ବହୁ ପରିମାଣରେ ନିର୍ଭର କରୁଥିଲା । ତେଣୁ ସେତେବେଳେ ଦୁଇ ଦେଶର ସ୍ୱାର୍ଥ ଭିତରେ କୌଣସି ବିବାଦ ନ ଥିଲା ଏବଂ ତାଙ୍କ ଭିତରେ ଯେଉଁ ବିଚିତ୍ର ଓ ନୂତନ ଧରଣର ସମ୍ବନ୍ଧ ଥିଲା, ସେଥିରେ ବିଶେଷ ଆଞ୍ଚ ଲାଗି ନ ଥିଲା ।

ଏହି ଶତାବ୍ଦୀର ବାହାରେ ଥିବା ବ୍ରିଟିଶ ବସତିଗୁଡ଼ିକୁ ପରେ ସ୍ୱାୟତ୍ତ ଶାସନ ଦେବା ପ୍ରଣାଳୀଟା ଅଷ୍ଟ୍ରେଲିଆ ପ୍ରତି ବି ପ୍ରଯୁକ୍ତ୍ୟ କରାଗଲା । ପ୍ରାୟ ଏହି ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ଏହା ଏକ କଏଦୀ ବସତି ଥିଲା । ଏହି ଶତାବ୍ଦୀ ଶେଷବେଳକୁ ସାମ୍ରାଜ୍ୟ ଭିତରେ ଅଷ୍ଟ୍ରେଲିଆ ଏକ ସ୍ୱାଧୀନ ଡୋମିନିୟନ୍ (ଉପନିବେଶ) ହୋଇପାରିଲା ।

ଅନ୍ୟ ପକ୍ଷରେ, ଭାରତରେ ବ୍ରିଟିଶ କର୍ତ୍ତୃତ୍ୱ ଦୃଢ଼ତର ହେଲା ଏବଂ ଯୁଦ୍ଧ ପରେ ଯୁଦ୍ଧ କରାଯାଇ ବ୍ରିଟିଶ ଭାରତୀୟ ସାମ୍ରାଜ୍ୟକୁ ବିସ୍ତୃତ କରାଗଲା । ଭାରତ ହେଲା ବ୍ରିଟିଶର ପଦାନତ ରାଜ୍ୟ । ଏଠାରେ ସ୍ୱାୟତ୍ତ ଶାସନର ନାମଗନ୍ଧ ରହିଲା ନାହିଁ । ୧୮୫୭ର ବିପ୍ଳବକୁ ଦମନ କରି ଦିଆଗଲା ଏବଂ ସାମ୍ରାଜ୍ୟର ସମସ୍ତ ଚାପ ଭାରତକୁ ସହିବାକୁ ହେଲା । ଇଂଲଣ୍ଡଦ୍ୱାରା ନାନା ପ୍ରକାରରେ ସେ କିପରି ଶୋଷିତ ହେଲା, ତାହା ମୁଁ ଅନ୍ୟସ୍ଥ ଦେଇଛି । ଭାରତ ଅବଶ୍ୟ ବ୍ରିଟେନର ସାମ୍ରାଜ୍ୟ ଥିଲା ଏବଂ ପୃଥିବୀରେ ଏହା ଘୋଷଣା କରିବା ନିମନ୍ତେ ରାଣୀ ଭିକ୍ଟୋରିଆ ଭାରତର ସାମ୍ରାଜ୍ଞୀ ଉପାଧି ଗ୍ରହଣ କଲେ, କିନ୍ତୁ ଭାରତ ଛଡ଼ା ପୃଥିବୀର ବିଭିନ୍ନ ଅଂଶରେ ବ୍ରିଟେନ୍‌ର ଅନେକ ଶ୍ରେଷ୍ଠ ଶ୍ରେଷ୍ଠ ଅଧୀନ ଦେଶ ଥିଲା ।

ଏହିରୂପେ ବ୍ରିଟିଶ ସାମ୍ରାଜ୍ୟ ଦୁଇ ପ୍ରକାର ଦେଶର ଏକ ବିଚିତ୍ର ସମଷ୍ଟି ହେଲା— ସ୍ୱାୟତ୍ତ ଶାସିତ ରାଜ୍ୟ ଯାହା ପରେ ସ୍ୱାଧୀନ ଡୋମିନିୟନ୍ ହେଲା ଏବଂ ଅଧୀନ ରାଜ୍ୟ ଓ ପ୍ରୋଟେକ୍‌ଟରେଟ (ରକ୍ଷିତ ଦେଶ) । ପ୍ରଥମୋକ୍ତ ଦେଶସବୁ ଅଳ୍ପଅଧିକେ ଏକ ପରିବାରର ସଭ୍ୟ ଥିଲେ ଏବଂ ମାତୃଦେଶ ଇଂଲଣ୍ଡକୁ ନିଜର ମୁରବି ବୋଲି ସ୍ୱୀକାର କରୁଥିଲେ;

ଶେଷୋକ୍ତ ଦେଶଗୁଡ଼ିକ ନିର୍ଦ୍ଦିଷ୍ଟରୂପେ ସାମ୍ରାଜ୍ୟ ଶାସକର ଗ୍ଭକର ଓ ଦାସ ଥିଲେ, ସେଗୁଡ଼ିକୁ ଘୃଣା କରାଯାଉଥିଲା, ଖରାପ ବ୍ୟବହାର କରାଯାଉଥିଲା ଏବଂ ଶୋଷଣ କରା-ହେଉଥିଲା । ସ୍ୱାୟତ୍ତଶାସିତ ଦେଶମାନଙ୍କରେ ବ୍ରିଟିଶ ଜାତି ଅଥବା ଅନ୍ୟ ଇଉରୋପୀୟ-ମାନେ ଓ ତାଙ୍କର ବଂଶଧର ବାସ କରୁଥିଲେ, ଅଧୀନସ୍ଥ ରାଜ୍ୟମାନଙ୍କରେ ଅଣବ୍ରିଟିଶ, ଅଣଇଉରୋପୀୟ ଲୋକସବୁ ରହିଥିଲେ । ବ୍ରିଟିଶ ସାମ୍ରାଜ୍ୟର ଦୁଇ ଭାଗର ଏହି ପାର୍ଥକ୍ୟ ଆଜିପର୍ଯ୍ୟନ୍ତ ରହିଛି ।

ଇଂଲଣ୍ଡ ନିଜର ସଂପଦ ଓ ସାମ୍ରାଜ୍ୟରେ ଊଣା ଅଧିକେ ଏକ ସନ୍ତୁଷ୍ଟ ଦେଶ ଥିଲା —ଅବଶ୍ୟ ସଂପୂର୍ଣ୍ଣ ରୂପେ ସନ୍ତୁଷ୍ଟ ରାଜ୍ୟ ନ ଥିଲା, କାରଣ ସାମ୍ରାଜ୍ୟବାଦୀ ପ୍ରବୃତ୍ତି କେବେ କୌଣସି ସୀମାରେ ସନ୍ତୁଷ୍ଟ ହୁଏନା ଏବଂ ସର୍ବଦା ବିସ୍ତାର ଲାଭ କରିବାକୁ ଗ୍ଭହେଁ; ତଥାପି ଇଂଲଣ୍ଡର ପ୍ରଧାନ ଚିନ୍ତା ହେଲା ଆଉ ଅଧିକା ନେବା ନୁହେଁ, ଯାହା ପାଇଛି ତାକୁ ରକ୍ଷା କରିବା । ବିଶେଷରୂପେ ଭାରତ ହେଲା ତା'ର ସର୍ବଶ୍ରେଷ୍ଠ ଅଧିକୃତ ବସ୍ତୁ; ତାହାକୁ ଶେଷ ପର୍ଯ୍ୟନ୍ତ ରଖିବାକୁ ତାର ଇଚ୍ଛା । ଭାରତରୂପୀ ସମ୍ପଦ ରକ୍ଷା ଏବଂ ପୂର୍ବର ସମୁଦ୍ର-ପଥ ନିରାପଦ ରଖିବା—ଏହାକୁ କେନ୍ଦ୍ର କରି ତା'ର ବୈଦେଶିକ ନୀତି ସ୍ଥିର ହୋଇ ଗ୍ଭଲିଛି । ଏହା ଇଜିପ୍ଟରେ ହସ୍ତକ୍ଷେପ କଲା ଏବଂ ଶେଷରେ ଏହି କାରଣରୁ ଏହା ଉପରେ ପ୍ରାଧାନ୍ୟ କଲା; ସେହିପରି ପାରସ୍ୟ (ଇରାନ) ଓ ଆଫଗାନିସ୍ଥାନରେ ହସ୍ତକ୍ଷେପ କଲା । ଏକ ଚତୁର ଖେଲ ଖେଳି ସୁଏଜ କେନାଲ କମ୍ପାନୀର ଅଂଶ ଖରିଦ କଲା ଏବଂ ଏହିରୂପେ କେନାଲ ଉପରେ କର୍ତ୍ତୃତ୍ୱ ହାସଲ କଲା ।

୧୯ଶ ଶତାବ୍ଦୀର ଅଧିକାଂଶ କାଳ ପର୍ଯ୍ୟନ୍ତ ଇଉରୋପ ମହାଦେଶର ଶକ୍ତିଗୁଡ଼ିକ ଲାଗି ତାର କିଛି ଭାବନା ନ ଥିଲା, କାରଣ ସେମାନେ ନିଜ ନିଜ ଗୋଲମାଲରେ ବ୍ୟସ୍ତ ଥିଲେ ଏବଂ ସର୍ବଦା ଆପଣା ଭିତରେ ଲଢ଼ାଇ କରୁଥିଲେ । ଗୋଟିଏ ଦେଶକୁ ଅନ୍ୟଦେଶ ବିରୁଦ୍ଧରେ ଲଗାଇ ଏବଂ ଇଉରୋପୀୟ ଦେଶମାନଙ୍କର ପ୍ରତିଦ୍ୱନ୍ଦ୍ୱିତାର ସୁବିଧା ଉଠାଇ ଇଂଲଣ୍ଡ ତାର ଚିରାଚରିତ ସମତୁଲ ରଖିବା ନୀତି ଅନୁସାରେ କାର୍ଯ୍ୟ କଲା । ତୃତୀୟ ନେପୋଲିୟନ୍ ଖୁବ୍ ବିପଜ୍ଜନକ ପରି ମନେହେଲେ, କିନ୍ତୁ ତାଙ୍କର ପତନ ହେଲା ଏବଂ ଫ୍ରାନ୍ସ ପୁଣି ଉଠିବାକୁ ସମୟ ଲାଗିଲା । ଜର୍ମାନୀ ଏବେ ଗୁଲିବା ଶିଖୁଥିଲା; ଏହାକୁ ବଡ଼ ପ୍ରତିଯୋଗୀ ବୋଲି ଗଣା ହି ଯାଉ ନ ଥିଲା । କିନ୍ତୁ ଗୋଟିଏ ଦେଶ ବ୍ରିଟିଶ ସାମ୍ରାଜ୍ୟକୁ ଗ୍ଭଲେଞ୍ଜ କଲା ପରି ବୋଧ ହେଲା, ତାହା ହେଉଛି ଜାର-ଶାସିତ ରୁଷ । ଏହା ଅନୁନ୍ନତ ରୁଷ, ତଥାପି ମାନଚିତ୍ରରେ ଏହା ଏକ ବିଶାଳ ଦେଶ ଥିଲା । ଇଂଲଣ୍ଡ ଯେପରି ଭାରତ ଓ ଦକ୍ଷିଣ ଏସିଆରେ ବିସ୍ତାର ଲାଭ କଲା, ରୁଷ ମଧ୍ୟ ଉତ୍ତର ଓ ମଧ୍ୟଏସିଆରେ ବ୍ୟାପିଲା ଏବଂ ତାର ସୀମାନ୍ତ ଭାରତଠାରୁ ଦୂରରେ ନ ଥିଲା । ଏହି ନିକଟବର୍ତ୍ତୀ ସୀମାନ୍ତ ହେତୁ ବ୍ରିଟିଶ-ମାନଙ୍କୁ ବରାବର କୋକୁଆଭୟ ହେଉଥିଲା । ଭାରତ କଥା ଲେଖିଲାବେଳେ ଆଫଗାନିସ୍ଥାନ ଓ ଆଫଗାନ ଯୁଦ୍ଧ ସମ୍ବନ୍ଧରେ ମୁଁ ତତେ ଆଗରୁ କହିଛି । କେବଳ ଜାର ଶାସିତ ରୁଷ ଭୟ ଯୋଗୁଁ ଏହା ହୋଇଥିଲା ବୋଲି କହିଲେ ଚଳେ ।

ଇଉରୋପରେ ମଧ୍ୟ ଇଂଲଣ୍ଡ ଓ ରୁଷ ମଧ୍ୟରେ ବିବାଦ ଲାଗିଲା । ରୁଷ ଏପରି ଏକ

ଭଲ ସମୁଦ୍ର ବନ୍ଦର ଖୋଜୁଥିଲା, ଯାହା ବର୍ଷସାରା ଖୋଲା ରହିବ ଏବଂ ଶୀତ ଦିନେ ବରଫାଚ୍ଛନ୍ନ ହୋଇ ବନ୍ଦ ହେବ ନାହିଁ । ତାର ବିଶାଳ ରାଜ୍ୟ ଥାଇ ସୁଦ୍ଧା ସମସ୍ତ ବନ୍ଦର ଉତ୍ତର ମେରୁ ସାଗରର (Arctic sea) ଏକପ୍ରକାର ନିକଟରେ ଥିଲା ଏବଂ ବର୍ଷର କେତେକ ଅଂଶ ବରଫାଚ୍ଛନ୍ନ ହୋଇ ରହୁଥିଲା । ସମୁଦ୍ର ପାଇବାରେ ଭାରତ ଓ ଆଫଗାନିସ୍ଥାନଦ୍ୱାରା ବ୍ରିଟିଶ ତାକୁ ବାଧା ଦେଲା, ପାରସ୍ୟରେ ମଧ୍ୟ ସେହିପରି । ତୁର୍କୀ ବସ୍ଫରସ ଓ ଡାର୍ଡ଼ାନାଲିସ ଦଖଲ କରିବାଦ୍ୱାରା ଏହାର କୃଷ୍ଣସାଗର ପଥ ସଙ୍କୀର୍ଣ୍ଣ ହୋଇଗଲା । ଅତୀତରେ ସେ କନ୍‌ଷ୍ଟାଣ୍ଟିନୋପଲ୍ ନେବାକୁ ଚେଷ୍ଟା କରିଥିଲା, କିନ୍ତୁ ତୁର୍କି ଦେଶକୁ ପରାସ୍ତ କରିବା ତା ପକ୍ଷରେ କଠିନ ଥିଲା । ଏବେ ତୁର୍କି ଦୁର୍ବଳ ହୋଇ ପଡ଼ିଥିଲା ଏବଂ ଈପ୍‌ସିତ ବସ୍ତୁ ହାତରେ ପଡ଼ିଲା ପରି ମନେହେଲା । ରୁଷ ଏହାକୁ ନେବା ନିମନ୍ତେ ଚେଷ୍ଟା କଲା, କିନ୍ତୁ ଇଂଲଣ୍ଡ ତା' ବାଟରେ ଛିଡ଼ା ହେଲା ଏବଂ ସମ୍ପୂର୍ଣ୍ଣରୂପେ ଆପଣା ସ୍ୱାର୍ଥ ଦୃଷ୍ଟିରୁ ସେ ତୁର୍କିବାସୀଙ୍କ ପକ୍ଷ ସମର୍ଥକ ହୋଇ ବାହାରି ପଡ଼ିଲା । ୧୮୫୪ରେ କ୍ରିମିଆ ଯୁଦ୍ଧ ଏବଂ ତା ପରେ ଆଉ ଏକ ଯୁଦ୍ଧର ଭୟ ହେତୁ ରୁଷ ଅଟକି ରହିଗଲା ।

୧୮୫୪-୧୮୫୬ ବ୍ୟାପୀ କ୍ରିମିଆ ଯୁଦ୍ଧରେ ହିଁ ଫ୍ଲରେନସ ନାଇଟିଙ୍ଗେଲ ଅଣ୍ଡିତମାନଙ୍କର ଶୁଶ୍ରୂଷା ସକାଶେ ଏକ ନାରୀ ସ୍ୱେଚ୍ଛାସେବକ ବାହିନୀ ନେଇ ଯାଇଥିଲେ । ସେ ସମୟରେ ଏହା କରିବା ଏକ ଅସାଧାରଣ କଥା ଥିଲା, କାରଣ ଭିକ୍ଟୋରିଆ ଯୁଗର ମଧ୍ୟବିତ୍ତ ଘରର ସ୍ତ୍ରୀ ଲୋକମାନେ ଘର କୋଣରେ ରହୁଥିଲେ । ସେମାନଙ୍କ ସମ୍ମୁଖରେ ଫ୍ଲରେନ୍‌ସ ନାଇଟିଙ୍ଗେଲ୍ କର୍ମଠ ସେବାର ଏକ ନୂତନ ଦୃଷ୍ଟାନ୍ତ ରଖିଲେ ଏବଂ ଘର ଭିତରୁ ଅନେକଙ୍କୁ ବାହାରକୁ ଟାଣି ଆଣିଲେ । ନାରୀ ଆନ୍ଦୋଳନର ପ୍ରଗତିରେ ତାଙ୍କର ଏକ ପ୍ରଧାନ ସ୍ଥାନ ରହିଛି ।

ବ୍ରିଟେନରେ ଯେଉଁ ପ୍ରକାର ସରକାର ଅଛି ତାକୁ ଶାସନତାନ୍ତ୍ରିକ ରାଜତନ୍ତ୍ର ବା "ରାଜପଦ ଯୁକ୍ତ ପ୍ରଜାତନ୍ତ୍ର" କହନ୍ତି । ଏହାର ଅର୍ଥ ହେଉଛି ମୁକୁଟଧାରୀ ରାଜା ହାତରେ ପ୍ରକୃତ କ୍ଷମତା ନ ଥାଏ; ପାର୍ଲିଆମେଣ୍ଟ ଯେଉଁ ଯେଉଁ ମନ୍ତ୍ରୀଙ୍କ ହାତରେ ଦାୟିତ୍ୱ ଦେଇଥାଏ, ସେ ତାଙ୍କର ମୁଖପାତ୍ର ହୋଇ ରହିଥାନ୍ତି । ରାଜମାତକ ଭାବରେ ସେ ରାଜା ମନ୍ତ୍ରୀମାନଙ୍କ ହାତରେ ଠିକ୍ ଏକ କ୍ରୀଡ଼ାପୁତ୍ତଳି ବୋଲି ମନେ କରାଯାଏ; କୁହାଯାଏ ସେ ହେଉଛନ୍ତି "ରାଜମାତା ଉପରେ ।" ପ୍ରକୃତରେ ଦେଖିବାକୁ ଗଲେ କୌଣସି ବୁଦ୍ଧିମାନ ବା ବଳବତୀ ଇଚ୍ଛା ଥିବା ବ୍ୟକ୍ତି କେବଳ କ୍ରୀଡ଼ାପୁତ୍ତଳି ହୋଇ ପାରିବ ନାହିଁ ଏବଂ ଇଂରେଜ ରାଜା ବା ରାଣୀଙ୍କର ସାଧାରଣ ବ୍ୟାପାରରେ ହସ୍ତକ୍ଷେପ କରିବାର ଯଥେଷ୍ଟ ସୁବିଧା ରହିଛି । ଏହା ସାଧାରଣତଃ ପଛପଟେ ରହି କରାଯାଏ ଏବଂ ଦୀର୍ଘକାଳ ପର୍ଯ୍ୟନ୍ତ ଲୋକେ ପ୍ରାୟ ଏସବୁ କିଛି ଜାଣି ପାରନ୍ତି ନାହିଁ । ପ୍ରକାଶ୍ୟରେ କୌଣସି ହସ୍ତକ୍ଷେପ କଲେ ବୋଧହୁଏ ତାହାର ଖୁବ୍ ବିରୋଧ ହୋଇପାରେ ଏବଂ ରାଜପଦ ବିପଦ-ମୁଖରେ ପଡ଼ିପାରେ । କୌଣସି ଶାସନତାନ୍ତ୍ରିକ ରାଜ୍ୟର ଗୋଟିଏ ଗୁଣ ଅବଶ୍ୟ ଥିବା ଦରକାର, ତାହା ହେଉଛି କୌଶଳ; ତା ପାଖରେ ଏହି ଗୁଣଟି ଥିଲେ ସେ ଶାସନ ଚଳାଇପାରିବ ଏବଂ ଅନେକ ପ୍ରକାରରେ ନିଜର ପ୍ରଭାବ ପକାଇ ପାରିବ ।

ଶାସନତାନ୍ତ୍ରିକ ତଥା ଆଇନ ଦୃଷ୍ଟିରୁ ପ୍ରଜାତନ୍ତ୍ରର ସଭାପତିମାନଙ୍କର (ଆମେରିକା ଯୁକ୍ତରାଷ୍ଟ୍ରର ସଭାପତିଙ୍କ ପରି) ପାର୍ଲିଆମେଣ୍ଟାରି ଦେଶର ରାଜାମାନଙ୍କ ଅପେକ୍ଷା ବହୁତ ବେଶି କ୍ଷମତା ରହିଛି, କିନ୍ତୁ ପ୍ରଥମୋକ୍ତ ବ୍ୟକ୍ତି ବାରମ୍ବାର ପରିବର୍ତ୍ତିତ ହୁଅନ୍ତି ଓ ଦ୍ୱିତୀୟ ଦୀର୍ଘକାଳ ପର୍ଯ୍ୟନ୍ତ ରହନ୍ତି ଏବଂ କୌଣସି ବିଶେଷ ଦିଗରେ ବିଶ୍ୱରର, ଅବଶ୍ୟ ନୀରବରେ, କୌଣସି ଏକ ନିର୍ଦ୍ଦିଷ୍ଟ ଦିଗରେ ପ୍ରଭାବ ପକାଇ ପାରନ୍ତି । ସାମାଜିକ ଛାପ ପକାଇବାର ଏବଂ ଚକ୍ରାନ୍ତ କରିବାର ଅସଂଖ୍ୟ ସୁଯୋଗ ରାଜନ୍ୟମାନଙ୍କର ଥାଏ, କାରଣ ସାମାଜିକ ଜଗତରେ ସେ ହେଉଛନ୍ତି ସର୍ବେସର୍ବା । ବାସ୍ତବିକ ରାଜଦରବାର ପ୍ରଭୁତ୍ୱ, ପରମ୍ପରା, ପ୍ରଥା, ଉପାଧି ଓ ଶ୍ରେଣୀଗତ ବାୟୁମଣ୍ଡଳରେ ପରିପୂର୍ଣ୍ଣ ଏବଂ ତାହା ସମଗ୍ର ଦେଶ ଆଗରେ ଏକ ଷ୍ଟାଣ୍ଡାର୍ଡ଼ ବା ସ୍ତର ରଖିଦିଏ । ଏହା ସାମାଜିକ ସମାନତା ଓ ଶ୍ରେଣୀବିଲୋପ ସହିତ ଖାପ ଖାଏ ନାହିଁ; ଏଥିରେ ସନ୍ଦେହ ନାହିଁ ଯେ ଇଂଲଣ୍ଡର ରାଜସଭା ଇଂରେଜମାନଙ୍କର ମନୋଭାବ ଗଢ଼ିବାରେ ଏବଂ ସମାଜର ଶ୍ରେଣୀ ବିଭାଗକୁ ସ୍ୱୀକାର କରି ନେବାରେ ବହୁତ ପ୍ରଭାବ ପକାଏ ଅଥବା ଏହା କହିଲେ ବୋଧହୁଏ ଠିକ୍ ହେବ ଯେ, ଯଦିଓ ପୃଥିବୀର ପ୍ରାୟ ଅନ୍ୟ ସବୁ ବଡ଼ ଦେଶମାନଙ୍କରୁ ରାଜତନ୍ତ୍ରୀ ଅନୁଷ୍ଠାନ ଲୋପ ପାଇଥିଲେ ସୁଦ୍ଧା ଏହି ଗୋଟିଏ ଶ୍ରେଣୀ ଅପର ଶ୍ରେଣୀ ଉପରେ ରହିବା କଥା ମାନି ନିଆଯାଇ ଥିବାରୁ ଇଂଲଣ୍ଡରେ ରାଜସଭା ତିଷ୍ଠି ରହି ପାରିଛି । ଏକ ପୁରୁଣା ପ୍ରବଚନ ଅଛି—"ପ୍ରତ୍ୟେକ ଇଂରେଜ କୌଣସି ନା କୌଣସି ପ୍ରଭୁକୁ ଭଲ ପାଏ" ଏବଂ ଏଥିରେ ବହୁତ ସତ୍ୟତା ରହିଛି । ଇଉରୋପ ଓ ଆମେରିକାରେ ଏବଂ ଜାପାନ ଓ ଭାରତ ଛଡ଼ା ଏସିଆର ଅନ୍ୟ କେଉଁଠାରେ ଇଂଲଣ୍ଡ ପରି ଶ୍ରେଣୀ ବିଭାଗ ଏପରି ତୀବ୍ର ନୁହେଁ । ଇଂଲଣ୍ଡ ରାଜନୀତିକ ଗଣତନ୍ତ୍ର ଓ ଶିଳ୍ପୋନ୍ନତିରେ ଅତୀତରେ ଏତେ ଆଗୁଆ ହୋଇ କିପରି ଯେ ସାମାଜିକ କ୍ଷେତ୍ରରେ ଏପରି ଅନୁନ୍ନତ ଓ ମୌଳିକ ଭାବରେ ରକ୍ଷଣଶୀଳ ହୋଇ ରହିଛି; ତାହା ବାସ୍ତବିକ ଅଦ୍ଭୁତ କଥା ।

ବ୍ରିଟିଶ ପାର୍ଲାମେଣ୍ଟକୁ "ପାର୍ଲାମେଣ୍ଟଗୁଡ଼ିକର ଜନନୀ" ବୋଲି କୁହାଯାଏ । ଏହା ଦୀର୍ଘକାଳ ହେଲା ସମ୍ମାନଜନକ ଭାବରେ ରହିଛି ଏବଂ ଅନେକ ବିଷୟରେ ରାଜାର ଏକଛତ୍ର ଅଧିକାର ବିରୁଦ୍ଧରେ ଲଢ଼ାଇ କରିବାରେ ଏହା ଅଗ୍ରଦୂତ ହୋଇ ଆସିଛି । ଏହି ଏକଛତ୍ର ଶାସନ ସ୍ଥଳରେ ପାର୍ଲାମେଣ୍ଟର ମୁଷ୍ଟିମେୟ ଲୋକଙ୍କ ଶାସନ ରହିଲା, ଅର୍ଥାତ୍ ଶ୍ରେଷ୍ଠ ଜମିଦାର ଓ ଶାସକ ଶ୍ରେଣୀଙ୍କର ଶାସନ ପ୍ରଚଳିତ ହେଲା । ତା ପରେ କ୍ରମେ ବିଜାଇ ଗଣତନ୍ତ୍ର ଆସିଲା ଏବଂ ଅନେକ ଭିଡ଼ାଓଟରା ପରେ 'ହାଉସ୍ ଅଫ୍ କମନ୍‌ସ' (ପାର୍ଲାମେଣ୍ଟର ଲୋକପ୍ରତିନିଧି ସଭା)କୁ ଭୋଟ ଦେଇ ସଭ୍ୟ ନିର୍ବାଚନ କରିବାର ଅଧିକାର ଅଧିକ ସଂଖ୍ୟକ ଲୋକ ପାଇଲେ । କାର୍ଯ୍ୟତଃ ଏଥିରେ ପ୍ରକୃତ ଗଣତାନ୍ତ୍ରିକ ନିୟନ୍ତ୍ରଣ ହେଲା ନାହିଁ, ପାର୍ଲାମେଣ୍ଟ ଧନୀ ଶିଳ୍ପପତିମାନଙ୍କର ନିୟନ୍ତ୍ରଣରେ ଚାଲିଲା । ଗଣତନ୍ତ୍ର ବଦଳରେ ମୁଷ୍ଟିମେୟ ବ୍ୟକ୍ତିଙ୍କ ଶାସନ କାଏମ୍ ହେଲା ।

ଶାସନ ଓ ଆଇନ ତିଆରି କାମ କରିବା ପାଇଁ ବ୍ରିଟିଶ ପାର୍ଲାମେଣ୍ଟ ଗୋଟାଏ ଅଦ୍ଭୁତ ପ୍ରଥା ଗ୍ରହଣ କଲା । ଏହା ହେଉଛି ଦୁଇ ଦଳ ପ୍ରଥା । ଦୁଇ ଦଳ ଭିତରେ ବିଶେଷ କିଛି ପାର୍ଥକ୍ୟ ନ ଥିଲା, କୌଣସି ବିରୋଧୀ ନୀତି ସେମାନଙ୍କର ନ ଥିଲା । ଦୁଇଟିଯାକ

ଧନୀ ଲୋକଙ୍କ ଦଳ ସେ କି ପ୍ରଚଳିତ ସମାଜ ବ୍ୟବସ୍ଥାକୁ ଗ୍ରହଣ କରୁଥିଲେ—ଗୋଟିଏ ଦଳରେ ପୁରାତନ ଜମିଦାର ଶ୍ରେଣୀଙ୍କ ଭିତରୁ ଅଧିକ ସଂଖ୍ୟାରେ ଥିଲେ ଏବଂ ଅନ୍ୟଟିରେ ଧନୀ କାରଖାନା ମାଲିକଙ୍କ ସଂଖ୍ୟା ଥିଲା ବେଶୀ । କେବଳ ନାମରେ ହିଁ ଅଲଗା, କାର୍ଯ୍ୟ ଏକ । ସେମାନଙ୍କୁ ଟୋରି ଓ ହୁଇଗ ବୋଲି କୁହା ଯାଉଥିଲା, ପରେ ୧୯ଶ ଶତାବ୍ଦୀରେ ତାଙ୍କୁ 'କଞ୍ଜରଭେଟିଭ' (ରକ୍ଷଣଶୀଳ ବା ଜାଠ) ଓ ଲିବରାଲ୍ (ଉଦାରପନ୍ଥୀ) କୁହାଗଲା ।

ଅନ୍ୟ ଇଉରୋପୀୟ ଦେଶମାନଙ୍କରେ ସମ୍ପୂର୍ଣ୍ଣ ଅଲଗା ଅବସ୍ଥା ଥିଲା ଏବଂ ବିଭିନ୍ନ କାର୍ଯ୍ୟପନ୍ଥା ଓ ଆଦର୍ଶବାଦ ଯେଉଁ ଦଳସବୁ ଉଗ୍ରାହ ସହକାରେ ପାର୍ଲାମେଣ୍ଟ ଓ ବାହାରେ ପରସ୍ପର ସହିତ ଲଢ଼ୁଥିଲେ । କିନ୍ତୁ ଇଂଲଣ୍ଡରେ ଏହା ପାରିବାରିକ ବ୍ୟାପାର ପରି ଥିଲା ଓ ବିରୋଧ ଏକପ୍ରକାର ସହଯୋଗ ଭଳି ହେଉଥିଲା ଏବଂ ପ୍ରତ୍ୟେକ ଦଳ ନିଜ ପାଳି ଅନୁଯାରେ ଶାସନକ୍ଷମତା ପାଉଥିଲେ ଓ ବିରୋଧୀ ଦଳ ହିସାବରେ ରହୁଥିଲେ । ଦୁଇଟି ଯାକ ବଡ଼ ଦଳ ଧନୀ ଲୋକଙ୍କ ଦଳ ହୋଇଥିବାରୁ ଧନୀ ଓ ଗରିବଙ୍କ ଭିତରେ ଶ୍ରେଣୀ ସଂଘର୍ଷ ଓ ପ୍ରକୃତ ବିବାଦ ପାର୍ଲାମେଣ୍ଟରେ ପ୍ରତିଫଳିତ ହେଉ ନ ଥିଲା । ଲୋକଙ୍କ ମନରେ ଉତ୍ତେଜନା ଆଣିବା ପାଇଁ ସେପରି କିଛି ଗୁରୁତର ଧାର୍ମିକ ସମସ୍ୟା ନ ଥିଲା କିମ୍ବା କୌଣସି ଗୋଷ୍ଠୀଗତ ବା ଜାତୀୟ ପ୍ରଶ୍ନ ନ ଥିଲା (ଯେପରି ପ୍ରଶ୍ନ କି ଇଉରୋପର ମହାଦେଶୀୟ ଅଞ୍ଚଳରେ ଥିଲା) । ଏହି ଶତାବ୍ଦୀ ଶେଷ ଆଡ଼କୁ ଆଇରିସ୍ ଜାତୀୟବାଦୀ ସଭ୍ୟଙ୍କଦ୍ୱାରା ପ୍ରକୃତ ଉତ୍ତେଜନା ଟିକିଏ ଅଣା ଯାଇଥିଲା ଯାହା ସେଠିକ, କାରଣ ସେମାନଙ୍କ ପକ୍ଷରେ ଆଇରିଲାଣ୍ଡର ସ୍ୱାଧୀନତା ଏକ ଜାତୀୟ ପ୍ରଶ୍ନ ଥିଲା ।

ଏପରି ଦୁଇଟି ବଡ଼ ଦଳ ଯେତେବେଳେ ପାର୍ଲାମେଣ୍ଟ ସଭ୍ୟ ପାଇଁ ପ୍ରାର୍ଥୀ ଛିଡ଼ା କରନ୍ତି, ସେତେବେଳେ କୌଣସି ସ୍ୱାଧୀନ ବ୍ୟକ୍ତିବିଶେଷ ବା ଶ୍ରେଷ୍ଠ ଦଳ ପକ୍ଷରେ ନିର୍ବାଚିତ ହେବା କଷ୍ଟକର ହୋଇପଡ଼େ । ଗଣତନ୍ତ୍ର ଓ ଭୋଟ ଥିବା ସତ୍ତ୍ୱେ ଏଥିରେ ଗରିବ ଭୋଟରର କିଛି କହିବାର ନ ଥାଏ । ସେ ହୁଏତ କୌଣସି ଗୋଟିଏ ଦଳର ପ୍ରାର୍ଥୀଙ୍କି ଭୋଟ ଦେବ ନଚେତ୍ ଘରେ ରହିବ ଓ ଆଦୌ ଭୋଟ ଦେବ ନାହିଁ ଏବଂ ପାର୍ଲିଆମେଣ୍ଟରେ ଦଳର ସଭ୍ୟମାନଙ୍କର ଖୁବ୍ କମ୍ ସ୍ୱାଧୀନତା ଥାଏ । ସେମାନଙ୍କୁ ଦଳପତିଙ୍କ ହୁକୁମ ମାନି ଭୋଟ ଦେବାକୁ ପଡ଼ିବ ଏବଂ ସେମାନେ ଆଉ କିଛି କରିପାରିବେ ନାହିଁ । କାରଣ ଏହି ଭାବରେ ହିଁ କେବଳ ସେମାନେ ଦଳର ଦୃଢ଼ତା ବଢ଼ାଇ ପାରିବେ ଓ ବିରୋଧୀ ଦଳକୁ ପରାସ୍ତ କରିବା ନିମନ୍ତେ ଶକ୍ତି ଅର୍ଜନ କରିବେ ଏବଂ ଏହିରୂପେ ମନ୍ତ୍ରୀପଦ ପାଇପାରିବେ । ଗୋଟାଏ ପ୍ରକାରେ ଏହି ଦୃଢ଼ତା ଓ ଏକତା ଭଲ, କିନ୍ତୁ ପ୍ରକୃତ ଗଣତନ୍ତ୍ର ଠାରୁ ଏହା ବହୁ ଦୂରରେ ।

ଆମେ ଦେଖିଲେ ଯେଉଁ ଇଂଲଣ୍ଡକୁ ଗଣତାନ୍ତ୍ରିକ ପ୍ରଗତିର ଦୃଷ୍ଟାନ୍ତ ସ୍ୱରୂପ ଅନେକ ସମୟରେ ଧରାଯାଏ, ସେଠାରେ ଗଣତନ୍ତ୍ର ଖୁବ୍ ସଫଳ ହୋଇ ନଥିଲା । ସରକାରର ବଡ଼ ସମସ୍ୟା ହେଉଛି ଲୋକଙ୍କୁ ଶାସନ କରିବା ନିମନ୍ତେ ଉତ୍କୃଷ୍ଟ ଲୋକ କିପରି ନିର୍ବାଚିତ ହେବେ; ଏହି ସମସ୍ୟାର ସନ୍ତୋଷଜନକ ସମାଧାନ ହୋଇ ନଥିଲା । ଏଠାରେ ଚଳନ୍ତି ଗଣତନ୍ତ୍ରର ଅର୍ଥ ହେଲା ବହୁତ ଚିତ୍କାର କରିବା ଓ ସାଧାରଣ ବକ୍ତୃତା ଦେବା ଏବଂ

ବିଚାର ଭୋଟରକୁ ଏକ ବ୍ୟକ୍ତିକୁ ଭୋଟ ଦେବାପାଇଁ ପ୍ରବର୍ତ୍ତାଇବା ସେ ତାଙ୍କ ବିଷୟରେ କିଛି ନ ଜାଣି ପାରନ୍ତି । ସାଧାରଣ ନିର୍ବାଚନକୁ ସାଧାରଣ ନିଲମ ବୋଲି ବର୍ଣ୍ଣନା କରାଯାଇଛି, ଯେଉଁଠି ସମସ୍ତପ୍ରକାର ପ୍ରତିଶ୍ରୁତି ଦିଆଯାଏ । ଯାହାହେଉ, ଏହି ସବୁ ଦୋଷ ସତ୍ତ୍ୱେ ଏହି ନକଲି ଗଣତନ୍ତ୍ର ଇଂଲଣ୍ଡରେ ଚାଲିଲା; କାରଣ ଇଂଲଣ୍ଡ ସମୃଦ୍ଧିଶାଳୀ ଥିଲା ଏବଂ ଏହି ସମୃଦ୍ଧି ହିଁ ପ୍ରଚଳିତ ବ୍ୟବସ୍ଥା ଭାଙ୍ଗି ଯିବାରେ ବାଧା ଦେଲା ଏବଂ କେତେକ ପରିମାଣରେ ସନ୍ତୋଷ ଆଣିଦେଲା ।

୧୯ଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଇଂରେଜ ରାଜନୈତିକ ଦଳମାନଙ୍କରେ ଡିସରେଲି ଓ ଗ୍ଲାଡ୍‌ଷ୍ଟୋନ ଏହି ଦୁଇ ଜଣ ପ୍ରଧାନ ନେତା ଥିଲେ । ଡିସରେଲିଙ୍କ ନାମ ପରେ ଆର୍ଲ ଅଫ୍ ବିକନ୍‌ସଫିଲ୍ଡ଼ ହେଲା । ସେ ଜାତିଦଳର ନେତା ଥିଲେ ଏବଂ ଅନେକ ଥର ପ୍ରଧାନମନ୍ତ୍ରୀ ହୋଇଥିଲେ । ଏହା ତାଙ୍କ ପକ୍ଷରେ ଏକ ଅପୂର୍ବ କାର୍ଯ୍ୟ, କାରଣ ସେ ଥିଲେ ଜଣେ ଇହୁଦୀ ଓ ସେପରି କିଛି ପ୍ରତିଷ୍ଠାବାନ ଲୋକଙ୍କ ସହିତ ତାଙ୍କର ସମ୍ବନ୍ଧ ନ ଥିଲା, ଆଉ ମଧ୍ୟ ଇଂରେଜମାନେ ଇହୁଦୀଙ୍କୁ ଭଲ ପାଆନ୍ତି ନାହିଁ । କିନ୍ତୁ କେବଳ ନିଜର ଦକ୍ଷତା ଓ ଅଧ୍ୟବସାୟ ବଳରେ ସେ ତାଙ୍କ ପ୍ରତି ଥିବା ସଂସ୍କାରଗତ ବିରୋଧ ଭାବକୁ ଜୟ କଲେ ଏବଂ ଆଗକୁ ନିଜର ବାଟ କାଢ଼ି ଚାଲିଲେ । ସେ ଜଣେ ବଡ଼ ସାମ୍ରାଜ୍ୟବାଦୀ ଥିଲେ ଏବଂ ସେହି ହିଁ ଭିକ୍ଟୋରିଆଙ୍କୁ ଭାରତର ସାମ୍ରାଜ୍ଞୀ କରାଇଥିଲେ । ଗ୍ଲାଡ଼ଷ୍ଟୋନ ଏକ ପୁରାତନ ଧନୀ ଇଂରେଜ ପରିବାରର ଲୋକ । ସେ ଲିବରାଲ (ଉଦାରପନ୍ଥୀ) ଦଳର ନେତା ହେଲେ । ସେ ମଧ୍ୟ ଅନେକ ଥର ପ୍ରଧାନମନ୍ତ୍ରୀ ହୋଇଥିଲେ । ସାମ୍ରାଜ୍ୟବାଦ ଓ ବୈଦେଶିକ ନୀତି ବିଷୟ ବିଚାର କଲେ ଗ୍ଲାଡ଼ଷ୍ଟୋନ ଓ ଡିସରେଲିଙ୍କ ଭିତରେ କୌଣସି ପ୍ରଭେଦ ନ ଥିଲା । କିନ୍ତୁ ନିଜ ସାମ୍ରାଜ୍ୟବାଦ ବିଷୟରେ ଡିସରେଲି ଖୋଲାଖୋଲି କହୁଥିଲେ; କିନ୍ତୁ ଗ୍ଲାଡ଼ଷ୍ଟୋନ ଇଂରେଜଲୋକ ଯେପରି ହୋଇଥାନ୍ତି ସେହିପରି ଏହାକୁ ସୁନ୍ଦର ବାକ୍ୟ ଓ ନୀତିପୂର୍ଣ୍ଣ ବ୍ୟାଖ୍ୟାନର ଆବରଣ ଦେଉଥିଲେ ଏବଂ କହୁଥିଲେ ଯେ ସେ ଯାହା କରୁଛନ୍ତି ସେଥିରେ ଭଗବାନ ହିଁ ତାଙ୍କର ପ୍ରଧାନ ପରାମର୍ଶଦାତା । ସେ ବଲ୍‌କାନ୍‌ରେ ତୁର୍କିର ଅତ୍ୟାଚାର ବିରୁଦ୍ଧରେ ଗୋଟାଏ ବଡ଼ ଅଭିଯାନ ଆରମ୍ଭ କଲେ ଏବଂ ଡିସରେଲି କେବଳ ବିରୋଧ କରିବା ପାଇଁ ତୁର୍କିମାନଙ୍କ ପକ୍ଷ ନେଇଥିଲେ । ପ୍ରକୃତରେ ଦେଖିବାକୁ ଗଲେ ତୁର୍କି ଓ ତା ଅଧୀନରେ ଥିବା ବଲ୍‌କାନ୍‌ର ବିଭିନ୍ନ ଜାତି ଉଭୟଙ୍କୁ ଦୋଷ ଦେବାର କଥା; ସେମାନେ ଯଥାକ୍ରମେ ପରସ୍ପର ପ୍ରତି ଅତି ଭୟାନକ ନରହତ୍ୟା ଓ ଅତ୍ୟାଚାର କରିବାକୁ ଲାଗିଥିଲେ । ଗ୍ଲାଡ଼୍‌ଷ୍ଟୋନ୍ ଆୟର୍ଲାଣ୍ଡକୁ ସ୍ୱାୟତ୍ତ ଶାସନ ଦେବା ପକ୍ଷରେ ଗଲେ । ସେ ସଫଳ ହେଲେ ନାହିଁ ଏବଂ ଇଂରେଜମାନଙ୍କ ବିରୋଧ ଏତେ ପ୍ରବଳ ହେଲା ଯେ ଲିବରାଲ ଫାଟିଗଲା ଏବଂ ଏହାର ଏକ ଅଂଶ ଜାତିଙ୍କ ସହିତ ଯୋଗଦେଲା; ଏମାନଙ୍କୁ ଏବେ ଇଉନିୟନିଷ୍ଟ କହନ୍ତି; କାରଣ ସେମାନେ ଆୟର୍ଲାଣ୍ଡ ସହିତ ମିଶ୍ରଣ (ଇଉନିୟନ) ଯେମିତି ରହୁ ବୋଲି ଚାହୁଁଥିଲେ, କିନ୍ତୁ ଏ ସମ୍ବନ୍ଧରେ ଭିକ୍ଟୋରିଆ ଯୁଗର ଅନ୍ୟାନ୍ୟ ଘଟଣା ବିଷୟରେ ମୁଁ ପର ଚିଠିରେ କହିବି ।

---

# ୧୩୭ : ଇଂଲଣ୍ଡ ଦୁନିଆର ସାହୁକାର ପାଲଟିଲା

ଫେବୃୟାରି ୨୩, ୧୯୩୩

ଇଂଲଣ୍ଡ ନିଜର ଶିଳ୍ପ ଏବଂ ଉପନିବେଶ ଓ ଅଧୀନସ୍ଥ ଦେଶମାନଙ୍କର ଶୋଷଣ ହେତୁ ୧୯ଶ ଶତାବ୍ଦୀରେ ସମୃଦ୍ଧିଶାଳୀ ହେଲା । ବିଶେଷ ଭାବରେ ସ୍ୱଦେଶୀ ଶିଳ୍ପ ଉପରେ ତାର କ୍ରମବର୍ଦ୍ଧିଷ୍ଣୁ ସମ୍ପଦ ପ୍ରତିଷ୍ଠିତ ଥିଲା—"ମୂଳ" ଶିଳ୍ପ ବୋଲି ତାକୁ କୁହାଯାଇପାରେ । ଏହା ହେଉଛି ତୁଳା, କୋଇଲା, ଲୁହା ଏବଂ ଜାହାଜ ତିଆରି । ଏହା ସ୍ୱରକଙ୍କେ ଏବଂ ଏହାଛଡ଼ା ମଧ୍ୟ ଆହୁରି କେତେକ ଗୁରୁ ଓ ଲଘୁ ଶିଳ୍ପ ବି ଗଢ଼ିଉଠିଲା । ବଡ଼ ବଡ଼ ବ୍ୟବସାୟୀ ଓ ବ୍ୟାଙ୍କିଙ୍ଗ୍ ଗୃହସବୁ ତିଆରି ହେଲା । ବ୍ରିଟିଶ ବଣିକ-ଜାହାଜ ପୃଥିବୀର ପ୍ରାୟ ପ୍ରତ୍ୟେକ ଭାଗରେ ଦେଖିବାକୁ ମିଳିଲା - ଖାଲି ବ୍ରିଟିଶ ମାଲ ଯେ ବୋହି ନେଉଥିଲା ତାହା ନୁହେଁ, ଅନ୍ୟ ଶିଳ୍ପୋନ୍ନତ ଦେଶତିଆରି ଜିନିଷ ବି ନେଉଥିଲା । ସେମାନେ ପୃଥିବୀର ବେପାର ଜିନିଷ ବୋହିବାରେ ମୁଖ୍ୟ ହେଲେ । ଲଣ୍ଡନରେ ଲୟଡର ବିରାଟ ଜୀବନବୀମା ( Insurance ) ଅଫିସ ପୃଥିବୀ ଜାହାଜର କେନ୍ଦ୍ର ହେଲା । ଏହି ଶିଳ୍ପ ଓ ବେପାର ପାର୍ଲମେଣ୍ଟରେ ପ୍ରାଧାନ୍ୟ କଲା ।

ସମ୍ପଦ ଦେଶକୁ ବୋହି ଆସିଲା ଏବଂ ଉଚ୍ଚ ଓ ମଧ୍ୟବିତ୍ତ ଶ୍ରେଣୀ ଅଧିକରୁ ଅଧିକ ଧନୀ ହେଲେ; ଏଥିରୁ କେତେକାଂଶ ଶ୍ରମିକଶ୍ରେଣୀଙ୍କ ପାଖରେ ବି ପହଞ୍ଚିଲା ଏବଂ ସେମାନଙ୍କର ଜୀବନଧାରଣ ମାପ ବା ଷ୍ଟାଣ୍ଡାର୍ଡ ବଢ଼ିଲା । ଧନୀ ଯେତେବେଳେ ସମ୍ପଦ ପାଉଥିଲେ ତାହା କ'ଣ ହେବ ? ତାକୁ ବ୍ୟବହାର ନ କରି ରଖିବା ନିର୍ବୋଧତା ଏବଂ ପ୍ରତ୍ୟେକ ଲୋକ ଶିଳ୍ପ ଉନ୍ନତି କରିବାରେ ବଡ଼ ଆଗ୍ରହୀ ହେଲେ ଏବଂ ତେଣୁ ଅଧିକରୁ ଅଧିକ ଜିନିଷ ଉତ୍ପନ୍ନ ହେଲା ଏବଂ ଅଧିକରୁ ଅଧିକ ଲାଭ ବି ପାଇଲେ । ଏହି ଧନରୁ ଅଧିକ ଅଂଶ ଇଂଲଣ୍ଡ ଓ ସ୍କଟଲଣ୍ଡରେ ହେଉଥିବା ନୂତନ କାରଖାନା, ରେଲବାଇ ଏବଂ ସେହିପରି ଅନ୍ୟ କାର୍ଯ୍ୟରେ ଲାଗୁଥିଲା । କିଛି ଦିନ ପରେ ବହୁସଂଖ୍ୟକ କଳକାରଖାନା ଯେତେବେଳେ ହୋଇଗଲା ଏବଂ ଦେଶ ସମ୍ପୂର୍ଣ୍ଣରୂପେ ଶିଳ୍ପୋନ୍ନତ ହୋଇଗଲା, ସେତେବେଳେ ଅଧିକ ପ୍ରତି-ଯୋଗିତା ହେତୁ ଲାଭ ପରିମାଣ କମିବା ସ୍ୱାଭାବିକ । ଧନ ଥିବା ପୁଞ୍ଜିବାଦୀମାନେ ଅଧିକ ଲାଭପ୍ରଦ କ୍ଷେତ୍ରରେ ଟଙ୍କା ଖଟାଇବା ନିମନ୍ତେ ବିଦେଶ ପ୍ରତି ନଜର ପକାଇଲେ ଏବଂ ଯଥେଷ୍ଟ ସୁଯୋଗ ବି ପାଇଲେ । ସମଗ୍ର ଦୁନିଆରେ ରେଲ ତିଆରି ହେଉଥାଏ; ତାର ( Cable ) ଟେଲିଗ୍ରାଫ୍ ଲାଇନ ଓ କାରଖାନା ବସୁଥାଏ । ଇଉରୋପ, ଆମେରିକା, ଅଫ୍ରିକା ଓ ବ୍ରିଟିଶ ଅଧୀନସ୍ଥ ଦେଶମାନଙ୍କରେ ହେଉଥିବା ନୂତନ ଉଦ୍ୟମମାନଙ୍କ ପାଇଁ ବ୍ରିଟେନରୁ ବଳକା ଧନସ୍ରୋତ ଗଲା । ଆମେରିକା ଯୁକ୍ତରାଷ୍ଟ୍ରରେ ପ୍ରାକୃତିକ ସମ୍ପଦ ପ୍ରଚୁର

ଥିବାରୁ ସେ ଦ୍ରୁତବେଗରେ ଉନ୍ନତି ଲାଭ କରୁଥିଲା ଏବଂ ସେମାନଙ୍କର ରେଲବାଇ ପ୍ରତିଷ୍ଠାରେ ବହୁ ପରିମାଣରେ ବ୍ରିଟିଶ ଧନ ଲାଗିଗଲା । ଦକ୍ଷିଣ ଆମେରିକା ଓ ବିଶେଷ ଭାବରେ ଆର୍ଜେଣ୍ଟିନାରେ ବ୍ରିଟିଶ ପ୍ରକାଣ୍ଡ ଗୃହ ଆବାଦର ଅଧିକାଂଶ ଥିଲେ । କାନାଡ଼ା ଓ ଅଷ୍ଟ୍ରେଲିଆ ବ୍ରିଟିଶ ପୁଞ୍ଜିରେ ଗଢ଼ାହେଲା । ଚୀନରେ ସୁବିଧା ହାସଲ କରିବା ପାଇଁ ଯୁଦ୍ଧ ବିଷୟରେ ତଳେ କହୁଛୁ । ଭାରତରେ ଅବଶ୍ୟ ବ୍ରିଟିଶ ପ୍ରାଧାନ୍ୟ ଲାଭଥିଲେ ଏବଂ ରେଲ ଓ ଅନ୍ୟାନ୍ୟ କାର୍ଯ୍ୟ ପାଇଁ ନିଜ ସର୍ତ୍ତ ଅନୁସାରେ ଧନ ଋଣ ଦେଲେ ।

ଏହିରୂପେ ଇଂଲଣ୍ଡ ପୃଥିବୀର ମହାଜନ ହେଲା ଏବଂ ଲଣ୍ଡନ ହେଲା ପୃଥିବୀର ଟଙ୍କା ବଜାର । କିନ୍ତୁ ମନେକରିବା ଯେ ଏହାର ଅର୍ଥ ହେଉଛି ବସ୍ତା ବସ୍ତା ପୂର୍ଣ୍ଣ ସୁନା, ରୂପା କିମ୍ବା ଚଳନ୍ତି ଟଙ୍କା ଅନ୍ୟ ଦେଶକୁ ଧାର ଦେଲାବେଳେ ପଠାଯାଉଥିଲା । ଆଧୁନିକ ବ୍ୟବସାୟ ଏପରି କରାଯାଏନା କିମ୍ବା ସ୍ୱିଶଆଡ଼କୁ ପଠାଯିବା ପାଇଁ ପ୍ରଚୁର ସୁନା ଓ ରୂପା ବି ନାହିଁ । ନିର୍ବୋଧ ଲୋକେ ସୁନା ଓ ରୂପାକୁ ବହୁ ଗୁରୁତ୍ୱ ଦିଅନ୍ତି, କିନ୍ତୁ ଏହା କେବଳ ବିନିମୟ ଓ ମାଲ ବଣ୍ଟନ କରିବାର ଏକ ପ୍ରଣାଳୀ ମାତ୍ର । କୌଣସି ପ୍ରକାରେ ଜଣେ ଏହାକୁ ଖାଇପାରିବ ନାହିଁ, ପିନ୍ଧି ପାରିବ ନାହିଁ କିମ୍ବା ବ୍ୟବହାର କରିପାରିବ ନାହିଁ – କେବଳ ଗହଣା ହୋଇପାରେ, ମାତ୍ର ଏଥିରେ କାହା'ରି କିଛି ଲାଭ ହୁଏନା । ଯେଉଁ ମାଲ ବ୍ୟବହାର କରି-ହେବ, ତାହା ଅଧିକାରରେ ଥିବା ହିଁ ପ୍ରକୃତ ଧନ । ତେଣୁ ଇଂଲଣ୍ଡ କିମ୍ବା ବ୍ରିଟିଶ ପୁଞ୍ଜିପତି-ମାନେ ଟଙ୍କା ଆଗଉଛି ଦେଲେ, ଅର୍ଥ ସେମାନେ କୌଣସି ବିଦେଶୀ ଶିଳ୍ପ ବା ରେଲଓଏରେ ଧନ ଖଟାଇଲେ ଓ ନଗଦ ଟଙ୍କା ଦେବା ପରିବର୍ତ୍ତେ ବ୍ରିଟିଶ ମାଲ ପଠା ହେଲା । ଏହିରୂପେ ବ୍ରିଟିଶ କଳକାରଖାନା କିମ୍ବା ରେଲବାଇର ବସ୍ତୁସବୁ ବିଦେଶକୁ ପଠାଗଲା । ଏହା ବ୍ରିଟିଶ ଶିଳ୍ପକୁ ସାହାଯ୍ୟ କଲା ଏବଂ ଏହା ସଙ୍ଗେ ସଙ୍ଗେ ଖୁବ୍ ସୁନ୍ଦର ମୁନାଫା ପାଇବା ପାଇଁ ବ୍ରିଟିଶ ମୂଳଧନ ଖଟାଉଥିବା ଲୋକଙ୍କୁ ତାଙ୍କ ଧନ ଖଟାଇବା ନିମନ୍ତେ ସୁଯୋଗ ଦେଲା ।

ମହାଜନୀ ଏକ ଲାଭଜନକ ବ୍ୟବସାୟ । ଇଂଲଣ୍ଡ ଯେତେ ଅଧିକ ଏ ବ୍ୟବସାୟ ଧରିଲା ସେତେ ଧନୀ ହେଲା, ଏକ ପ୍ରକାଣ୍ଡ ଅବସରଭୋଗୀ ଶ୍ରେଣୀ ଗଢ଼ି ଉଠିଲା—ସେମାନେ ଏହିସବୁ ବ୍ୟବସାୟରୁ ମୁନାଫା ଓ ଲାଭାଂଶ ଉପରେ ସମ୍ପୂର୍ଣ୍ଣରୂପେ ଚଳିଲେ । କୌଣସି ଜିନିଷ ଉତ୍ପନ୍ନ କରିବା ନିମନ୍ତେ ତାଙ୍କୁ କାମ କରିବାକୁ ପଡ଼ୁ ନ ଥିଲା । ସେମାନେ କୌଣସି ରେଲ କମ୍ପାନୀ, ଗୃହ ଆବାଦ କିମ୍ବା ଅନ୍ୟ କାର୍ଯ୍ୟରେ କେତେକ ଅଂଶ ଖରିଦ କରୁଥିଲେ ଏବଂ ନିୟମିତ ରୂପେ ଲାଭାଂଶ ଆସିବାକୁ ଲାଗିଲା । ଫରାସୀ, ଋଭିଏ, ଇଟାଲୀ ଓ ସୁଇଜରଲଣ୍ଡ ପରି ଅନେକ ବାଞ୍ଛନୀୟ ସ୍ଥାନରେ ଏହି ଅବସରଭୋଗୀ ଶ୍ରେଣୀଙ୍କ ଇଂରେଜ ଉପନିବେଶ ଗଢ଼ିଉଠିଲା; କିନ୍ତୁ ସେମାନଙ୍କ ଭିତରୁ ଅଧିକାଂଶ ଇଂଲଣ୍ଡରେ ଥିଲେ ।

ଏହି ଯେଉଁସବୁ ଦେଶ ଏପରି ଭାବରେ ଇଂଲଣ୍ଡରୁ ଧନ ଧାର କରିଥିଲେ, ସେମାନେ ସେଥିଲାଗି କପରି ସୁଧ ଦେଲେ ବା ଭାଗ ଦେଇଥିଲେ ? ସେମାନେ ତାହା ଆଉ ସୁନା ଓ ରୂପାରେ ପଠାଇ ପାରନ୍ତି ନାହିଁ । ବର୍ଷକୁ ବର୍ଷ ଏପରି ଦେବାପାଇଁ ତାଙ୍କ ପାଖରେ ପ୍ରଚୁର ସୁନା ରୂପା ବି ନ ଥିଲା । ତେଣୁ ସେମାନେ ଜିନିଷରେ ଦେଲେ—କିନ୍ତୁ ତିଆରି ଜିନିଷ ଯେ ପଠାଇଲେ ତାହା ନୁହେଁ; କାରଣ ଇଂଲଣ୍ଡ ନିଜେ ତ ଏକ ମୁଖ୍ୟ ତିଆରି କରିବା ଦେଶ ଥିଲା; ତେଣୁ ଏମାନେ ଖାଦ୍ୟପଦାର୍ଥ ଓ କଞ୍ଚାମାଲ ପଠାଇ ପରିଶୋଧ କଲେ । ଗହମ, ଚିନି, କଫି, ମାଂସ, ଫଳ, ମଦ, ତୁଳା, ପଶମ ଇତ୍ୟାଦିର ଅବିରାମ ସ୍ରୋତ ଇଂଲଣ୍ଡକୁ ଚାଲିଲା ।

ଦୁଇ ଦେଶରେ ବାଣିଜ୍ୟ ମାଲ ବଦଳି ନିୟମରେ ହୁଏ, କୌଣସି ଏକ ଦେଶ ପକ୍ଷରେ କେବଳ ସବୁ କିଣିବା ଓ ଆଉ ଏକ ପକ୍ଷରେ ସର୍ବଦା ବିକିବା ସମ୍ଭବ ନୁହେଁ । ଏପରି ଚେଷ୍ଟା ଯଦି କରାଯାଆନ୍ତା, ତେବେ ସୁନା ବା ରୂପା ଭାବରେ ଦେବାକୁ ପଡ଼ନ୍ତା ଏବଂ ଅଳ୍ପ ଦିନ ପରେ ଆଉ ସୁନା ବା ରୂପା ରହନ୍ତା ନାହିଁ କିମ୍ବା ଏକପାଖିଆ ବେପାର ଆପେ ଆପେ ବନ୍ଦ ହୋଇଯାଆନ୍ତା । ପରସ୍ପର ସହିତ ବେପାରରେ ନେଣ ଦେଣ ହୁଏ—ଏହା ନିଜକୁ ଏଥିରେ ଚଳାଇନିଏ । ବେଳେ ବେଳେ ଗୋଟିଏ ଦେଶ ପକ୍ଷରେ ସୁବିଧାଜନକ ହୁଏ ତ ବେଳେ ବେଳେ ଅନ୍ୟ ଦେଶ ପକ୍ଷରେ । ଆମେ ଯଦି ୧୯ଶ ଶତାବ୍ଦୀରେ ଇଂଲଣ୍ଡର ବେପାରକୁ ପରୀକ୍ଷା କରିବା, ତେବେ ଦେଖିବା ମୋଟାମୋଟି ତାହା ପଠାଇବା ଅପେକ୍ଷା ଅଧିକ ଜିନିଷ ପାଇଛି । ଅର୍ଥାତ୍ ଯଦିଓ ତାହା ପ୍ରଚୁର ପରିମାଣରେ ମାଲ ରପ୍ତାନି କରିଛି, ପ୍ରକୃତରେ ଅଧିକ ମୂଲ୍ୟର ଜିନିଷସବୁ ଆମଦାନି କରିଛି—ପ୍ରଭେଦ ହେଉଛି ଯେ ତିଆରି ଜିନିଷ ରପ୍ତାନି କରିଛି ଏବଂ ପ୍ରଧାନତଃ ଖାଦ୍ୟପଦାର୍ଥ ଓ କଞ୍ଚାମାଲ ଆମଦାନି କରିଛି । ଏହିରୂପେ ସେ ବିକିବା ଅପେକ୍ଷା ଅଧିକ କିଣିଲା ପରି ଜଣାପଡ଼େ । ବ୍ୟବସାୟ କରିବାର ଏହା ଭଲ ଉପାୟ ପରି ମନେ ହୁଏ ନାହିଁ । କିନ୍ତୁ ପ୍ରକୃତରେ ଦେଖିବାକୁ ଗଲେ ଅଧିକ ଆମଦାନିଟା ଯେଉଁ ଟଙ୍କା କରଜ ଦେଇଥିଲା ତାହାର ସୁଧ ଅନୁସାରେ ହିସାବ କରି ଧରାଯାଏ । ଏହା ହେଉଛି ଖାତକ-ଦେଶ ଏବଂ ଭାରତ ପରି ଅଧୀନସ୍ଥ ଦେଶମାନେ ଦେଇଥିବା କର ।

ମୂଳଧନ ଖଟାଇବା ଟଙ୍କାର ସବୁ ଲାଭ ଇଂଲଣ୍ଡକୁ ଆସିଲା ନାହିଁ । ଖାତକ-ଦେଶମାନେ ବହୁତ ରଖିଲେ ଏବଂ ବ୍ରିଟିଶ ପୁଞ୍ଜିପତିମାନେ ପୁନର୍ବାର ଖଟାଇଲେ । ଏହା ଫଳରେ ଆଉ ତଟକା ଧନ ବା ମାଲ ଇଂଲଣ୍ଡକୁ ପଠା ନ ହୋଇ ସୁଦ୍ଧା ବିଦେଶରେ ବ୍ରିଟିଶ ମୂଳଧନର ମୋଟ ପରିମାଣ ବଢ଼ି ବଢ଼ି ଚାଲିଲା । ଭାରତରେ ଇଂରେଜମାନେ ରେଲ, କେନାଲ ଓ ଅସଂଖ୍ୟ ଅନ୍ୟ କାର୍ଯ୍ୟରେ ଯେଉଁ ପ୍ରଭୂତ ଅର୍ଥ ଖଟାଇଛନ୍ତି, ସେସବୁ ଆମକୁ ବାରମ୍ବାର ସ୍ମରଣ କରାଇ ଦିଆହୁଏ ଏବଂ ଏହି ହିସାବରେ ବହୁ ଟଙ୍କା ଇଂଲଣ୍ଡଠାରୁ ଭାରତ

“ଋଣ” କରିଛି ବୋଲି ଧରାଯାଏ । ଅନେକ ପ୍ରକାରେ ଭାରତୀୟମାନେ ଏହା ଆପତ୍ତି କରନ୍ତି; କିନ୍ତୁ ଆମେ ବର୍ତ୍ତମାନ ତା ଭିତରକୁ ଯିବା ନାହିଁ । କିନ୍ତୁ ଲକ୍ଷ୍ୟ କରିବାର କଥା ଯେ ପ୍ରକାଣ୍ଡ ମୂଳଧନ ହିଁ ଇଂଲଣ୍ଡରୁ ଟଙ୍କା ପୁଞ୍ଜି ଆସି ଲାଗି ନ ଥିଲା । ଭାରତରେ ଯେଉଁ ଲାଭ ହୋଇଥିଲା, ତାହା ହିଁ ମୂଳଧନ କରି ଖଟାଇ ଦିଆଯାଇଛି । ମୁଁ ଉପରେ କହିଛି, ପଲାସି ଯୁଦ୍ଧ ଓ କ୍ଲାଇଭଙ୍କ ଅମଳରେ ପ୍ରକାଣ୍ଡ ପରିମାଣରେ ସୁନା ଓ ଧନ ପ୍ରକୃତରେ ଭାରତରୁ ଇଂଲଣ୍ଡକୁ ନିଆ ହୋଇଥିଲା । ତା ପରେ ଭାରତର ଶୋଷଣ ଭିନ୍ନ ଓ ସ୍ପଷ୍ଟ ରୂପ ଧାରଣ କଲା ଏବଂ ଲାଭର ଏକାଂଶ ଏ ଦେଶରେ ଲାଗିଲା ।

ଇଂଲଣ୍ଡ ଦେଖିଲା ଯେ ପୃଥିବୀରେ ମହାଜନୀ ବ୍ୟବସାୟ ଚଳାଇବାର ଏକମାତ୍ର ସମ୍ଭବ ଉପାୟ ହେଉଛି ଜିନିଷ ଆକାରରେ ସୁଧଆଦାୟ ଗ୍ରହଣ କରିବା । ମୁଁ ଯେତେ ଉପରେ ଯେପରି ଦେଖାଇଦେଲି, ସେ ସୁନା ଦାବୀ କରି ପାରିଲା ନାହିଁ । ଏହାର ଦୁଇଟି ବଡ଼ ଫଳ ହେଲା । ଇଂଲଣ୍ଡ ନିଜ ଲୋକଙ୍କ ପାଇଁ ବାହାରୁ ଖାଦ୍ୟପଦାର୍ଥ ଆଣିବାକୁ ଦେଲା ଏବଂ ତାର କୃଷିକୁ କ୍ଷତିଗ୍ରସ୍ତ ହେବାକୁ ଦେଲା । ସେ ସ୍ୱଦେଶରେ ଧନୀ କରିବା ପାଇଁ କଳକାରଖାନାରେ ଜିନିଷ ତିଆରି କରିବାରେ ମନଦେଲା ଏବଂ କୃଷକମାନଙ୍କ ଅବସ୍ଥା ପ୍ରତି ଅବହେଳା ଦେଖାଇଲା । ସେ ଯଦି ବିଦେଶରୁ ଶସ୍ତା ମାଲ ପାଇବ, ତେବେ ତାହା ନିଜ ଦେଶରେ କରିବା କଷ୍ଟ କାହିଁକି କରିବ ? ଶିଳ୍ପଦ୍ୱାରା ଯଦି ସେ ଅଧିକ ଲାଭ କରିପାରିଲା ତେବେ କୃଷି ବିଷୟରେ ମୁଣ୍ଡ ଘୂରାଇବ ବା କାହିଁକି ? ତେଣୁ ଇଂଲଣ୍ଡ ଏକ ଖାଣ୍ଟି ଶିଳ୍ପୋନ୍ନତ ଦେଶ ହେଲା ଏବଂ ଖାଦ୍ୟ ପାଇଁ ବିଦେଶ ଉପରେ ନିର୍ଭର କଲା ।

ଦ୍ୱିତୀୟ ଫଳ ହେଲା ଏହି ଯେ ସେ ଅବାଧ ବାଣିଜ୍ୟ ନୀତି ଗ୍ରହଣ କଲା, ଅର୍ଥାତ୍ ତାର ବନ୍ଦରକୁ ଆସୁଥିବା ବିଦେଶୀ ଜିନିଷ ଉପରେ ଟିକସ ବସାଇଲା ନାହିଁ କିମ୍ବା ଅତି ଅଳ୍ପ ଟିକସ ବସାଇଲା । ସେ ଏକ ମୁଖ୍ୟ ଶିଳ୍ପୋନ୍ନତ ଦେଶ ହୋଇଥିବାରୁ ତିଆରି ମାଲରେ କୌଣସି ପ୍ରତିଯୋଗିତାକୁ ଅନେକ ଦିନ ପର୍ଯ୍ୟନ୍ତ ତାର ଭୟ କରିବାର କିଛି ନ ଥିଲା । ତେଣୁ ବିଦେଶୀ ଜିନିଷ ଉପରେ ଟିକସ ବସାଇବା ଅର୍ଥ ସେ ଦେଶକୁ ଯେଉଁ ବିଦେଶୀ ଖାଦ୍ୟ ଓ କଞ୍ଚାମାଲ ଆସୁଛି ତା ଉପରେ ଟିକସ ବସାଇବା । ଏହାଦ୍ୱାରା ଲୋକଙ୍କର ଖାଦ୍ୟ ଏବଂ ନିଜର ତିଆରି ମାଲର ଦାମ ବଢ଼ି ଯାଇଥାନ୍ତା । ଏହାଛଡ଼ା ଚଢ଼ା ଟିକସ ବସାଇ ଯଦି ବିଦେଶୀ ମାଲ ଆସିବାରେ ସେ ବାଧା ଦିଏ, ତେବେ ବିଦେଶୀ ଖାତକ ରାଜ୍ୟସବୁ ତାଙ୍କ ଋଣ କିପରି ପରିଶୋଧ କରନ୍ତେ ? ସେମାନେ କେବଳ ମାଲ ପଠାଇ ପରିଶୋଧ କରିପାରନ୍ତି । ଏହି କାରଣରୁ ଅନ୍ୟ ସମସ୍ତ ଦେଶ ‘ସଂରକ୍ଷଣ କର’ (Protectionist) ସପକ୍ଷରେ ଥିଲେ, ଅର୍ଥାତ୍ ନିଜ ଦେଶକୁ ବିଦେଶୀ ମାଲ ଆସିବାରେ ଟିକସ ବସାଇ ନିଜର ବଢ଼ୁଥିବା ଶିଳ୍ପକୁ ରକ୍ଷା କରୁଥିବା ବେଳେ ଇଂଲଣ୍ଡ ଅବାଧ ବାଣିଜ୍ୟ ନୀତି ଗ୍ରହଣ କଲା । ଯୁକ୍ତରାଷ୍ଟ୍ର, ଫ୍ରାନ୍ସ ଓ ଜର୍ମାନୀ ଆଦି ରାଜ୍ୟ ସଂରକ୍ଷଣବାଦୀ ଥିଲେ ।

୧୯ଶ ଶତାବ୍ଦୀରେ କୃଷିକୁ ଅବହେଳା କରି ଶିଳ୍ପରେ ଦୃଷ୍ଟି କେନ୍ଦ୍ରୀଭୂତ କରିବା, ବାହାରୁ ଖାଦ୍ୟଦ୍ରବ୍ୟ ଆଣିବା ଓ ବିଦେଶରୁ ଆସୁଥିବା ପଦାର୍ଥରେ ସ୍ୱଚ୍ଛନ୍ଦରେ ବାସ କରିବା ନୀତି ଇଂଲଣ୍ଡ ପକ୍ଷରେ ଲାଭଜନକ ଓ ଗ୍ରହଣୀୟ ହେଲା । କିନ୍ତୁ ଏଥିରେ ବିପଦ କି ଥିଲା, ତାହା ଏବେ ସ୍ପଷ୍ଟ ଦେଖାଯାଉଛି । ଏହି ନୀତି ଇଂଲଣ୍ଡର ଶିଳ୍ପପ୍ରାଧାନ୍ୟ ଓ ତାର ପ୍ରକାଣ୍ଡ ବିଦେଶୀ ବେପାର ଉପରେ ପ୍ରତିଷ୍ଠିତ ଥିଲା; କିନ୍ତୁ ଯଦି କର୍ତ୍ତୃତ୍ୱ ଚାଲିଯାଏ ଏବଂ ତାର ବିଦେଶୀ ବେପାର କମିଯାଏ, ସେତେବେଳେ ଅବସ୍ଥା କ'ଣ ହେବ ? ତାର ଖାଦ୍ୟ ପାଇଁ ସେ କୁଆଡ଼ୁ ପଇସା ଦେବ ? ଖାଦ୍ୟ ପାଇଁ ପାଉଣା ଦେଇପାରିଲେ ସୁଦ୍ଧା ଯଦି ଏକ ଶକ୍ତିଶାଳୀ ଶତ୍ରୁ ଅନ୍ତରାୟ ହୋଇ ରହେ, ତେବେ ସେ ବାହାରୁ ତାହା ଆଣିବ କିପରି ? ଗତ ବିଶ୍ୱଯୁଦ୍ଧବେଳେ ଇଂଲଣ୍ଡର ଲୋକେ ପ୍ରାୟ ଅଧାପେଟ ହୋଇ ରହୁଥିଲେ; କାରଣ ବାହାରୁ ଖାଦ୍ୟ ଯୋଗାଣ ପ୍ରାୟ ବନ୍ଦ ହୋଇଗଲା । ଏହାଠାରୁ ବଡ଼ ବିପଦ ହେଲା ବିଦେଶର ପ୍ରତିଯୋଗିତା ହେତୁ ତାର ବିଦେଶୀ ବେପାର କ୍ରମେ ମାନ୍ଦା ପଡ଼ିଗଲା । ୧୮୮୦-୯୦ ସମୟ ଭିତରେ ଆମେରିକା ଯୁକ୍ତରାଷ୍ଟ୍ର ଓ ଜର୍ମାନୀ ଯେତେବେଳେ ବିଦେଶୀ ବଜାର ଖୋଜିଲେ, ସେତେବେଳେ ଏହି ପ୍ରତିଯୋଗିତା ଆହୁରି ସ୍ପଷ୍ଟ ହୋଇଗଲା । ଧୀରେ ଧୀରେ ଅନ୍ୟ ଦେଶସବୁ ଶିଳ୍ପୋନ୍ନତ ହେଲେ ଓ ଏହି ବିଦେଶୀ ବଜାର ସନ୍ଧାନରେ ଲାଗିଲେ ଏବଂ ଆଜି ସମଗ୍ର ପୃଥିବୀ ପ୍ରାୟ କେତେକ ପରିମାଣରେ ଶିଳ୍ପୋନ୍ନତ ହୋଇଯାଇଛି । ପ୍ରତ୍ୟେକ ଦେଶ ନିଜର ଦରକାରୀ ମାଲ ତିଆରି କରିବାର ଚେଷ୍ଟା କରୁଛି ଏବଂ ବିଦେଶୀ ମାଲ ନ ଆଣିବା ଲାଗି ଚେଷ୍ଟା କରୁଛି । ଭାରତ ବିଦେଶୀ ଲୁଗା ଆଣିବାକୁ ଚାହେଁ ନା । ତାହାହେଲେ ଲାଙ୍କାଶାୟାର କ'ଣ କରିବ ଏବଂ ଅନ୍ୟ ଯେଉଁସବୁ ବ୍ରିଟିଶ ଶିଳ୍ପ ବିଦେଶୀ ବେପାର ଉପରେ ନିର୍ଭର କରୁଛନ୍ତି ତାଙ୍କ ଦଶା କ'ଣ ହେବ ?

ଏହି ପ୍ରଶ୍ନର ଜବାବ ଦେବା ଇଂଲଣ୍ଡ ପକ୍ଷରେ କଠିନ ଏବଂ ଭବିଷ୍ୟତରେ ଆହୁରି କଷ୍ଟକର ସମୟ ଆସିବା ଭଳି ମନେହେଉଛି । ତାର ଅବସ୍ଥା ଯେପରି ସେଥିରେ ନିଜ ଦେଶରେ ଆବଦ୍ଧ ରହି ନିଜର ଖାଦ୍ୟ ଓ ଅନ୍ୟ ଆବଶ୍ୟକୀୟ ଜିନିଷ ଉତ୍ପନ୍ନ କରି ଆତ୍ମନିର୍ଭରଶୀଳ ହେବା କି ସମ୍ଭବ ନୁହେଁ । ଆଧୁନିକ ଜଗତ ଆଜି ବହୁତ ବେଶୀ ଜଟିଳ ହୋଇଗଲାଣି ଏବଂ ସେ ନିଜକୁ ବିଚ୍ଛିନ୍ନ କରିପାରିଲେ ସୁଦ୍ଧା ନିଜର ଅତ୍ୟଧିକ ଲୋକସଂଖ୍ୟା ପାଇଁ ପ୍ରଚୁର ଖାଦ୍ୟ ଉତ୍ପନ୍ନ ହୋଇପାରିବା ସନ୍ଦେହଜନକ । କିନ୍ତୁ ଏସବୁ ଆଜିକାଲିକା ସମସ୍ୟା; ୧୯ଶ ଶତାବ୍ଦୀରେ ଏହାର କୌଣସି ଗୁରୁତ୍ୱ ନ ଥିଲା । ତେଣୁ ଇଂଲଣ୍ଡ ତାର ଭବିଷ୍ୟତ ସହିତ ଏପରି ଜୁଆ ଖେଳିଲା ଏବଂ ଅବିଚ୍ଛେଦ୍ୟ ପ୍ରାଧାନ୍ୟ ଉପରେ ଭରସା କରି ରହିଲା । ଏହା ଏକ ବଡ଼ ଖେଳ ଏବଂ ବାଜି ମଧ୍ୟ ଖୁବ୍ ବଡ଼—ହୁଏତ ପୃଥିବୀର ମୁଖ୍ୟ ଦେଶ ହେବ ନଚେତ୍ ଭାଙ୍ଗି ପଡ଼ିବ । ତା ପକ୍ଷରେ ଆଉ ମଝିମଝିକା ବାଟ କିଛି ନ ଥିଲା; କିନ୍ତୁ ଭିକ୍ଟୋରିଆ ଯୁଗର ମଧ୍ୟବିତ୍ତ ଶ୍ରେଣୀର ଇଂରେଜମାନଙ୍କଠିଁ ଆତ୍ମବିଶ୍ୱାସ ବା ଆତ୍ମବଡ଼ିମାର ଅଭାବ ନ ଥିଲା । ଦୀର୍ଘକାଳ ସମୃଦ୍ଧି ଓ ସଫଳତା, ଶିଳ୍ପ ବ୍ୟବସାୟରେ ନେତୃତ୍ୱ ହେତୁ ଅବଶିଷ୍ଟ ମାନବଜାତି ଅପେକ୍ଷା

ହଚତର ସୋପାନରେ ଚନ୍ଦ୍ରପାଶବ ବୋଲି ସେ ବିଶ୍ୱାସ କରିଥିଲେ । ସବୁ ବିଦେଶୀଙ୍କୁ ସେ ହେୟଜ୍ଞାନ କଲେ । ଏସିଆ ଓ ଆଫ୍ରିକାର ଅଧିବାସୀ ତ ଅବଶ୍ୟ ଅନୁନ୍ନତ ଓ ବର୍ବର ! ଯେପରିକ ମନୁଷ୍ୟ ସମାଜର ଅନୁନ୍ନତ ଜାତିକୁ ଉନ୍ନତ କରିବା ଏବଂ ଶାସନ କରିବା ପାଇଁ ଇଂରେଜଙ୍କର ଜନ୍ମଗତ ବିଚକ୍ଷଣତା ଖଟାଇବା ଲାଗି ଏହି ଦେଶଗୁଡ଼ିକ ସୃଷ୍ଟି କରାଯାଇଥିଲା ! ଏପରିକି ମହାଦେଶୀୟ ଇଉରୋପର ଲୋକମାନଙ୍କୁ ସୁଦ୍ଧା ଅଜ୍ଞ ଓ କୁସଂସ୍କାରପୂର୍ଣ୍ଣ ବିଦେଶୀ ବୋଲି ମନେ କରାଯାଉଥିଲା । ଇଂରେଜମାନେ 'ହିଁ କେବଳ ବିଶ୍ୱ ଜାତି ଯେ କି ସଭ୍ୟତାର ଚୂଡ଼ାନ୍ତରେ ପହଞ୍ଚିଛନ୍ତି ଏବଂ ଅବଶିଷ୍ଟ ଦୁନିଆଠାରୁ ବଡ଼ ବୋଲି ବିବେଚିତ ହେଉଥିବା ଇଉରୋପର ଅଗ୍ରଦୂତ ରୂପେ ଇଂଲଣ୍ଡ ରହିଥାଏ । ବ୍ରିଟିଶ ସାମ୍ରାଜ୍ୟ ଏକ ଅର୍ଦ୍ଧ ଐଶ୍ୱରିକ ଅନୁଷ୍ଠାନ, ଏହା ସେ ଜାତିର ବଡ଼ପଣିଆର ପ୍ରମାଣ ସ୍ୱରୂପ ହେଲା । ଲର୍ଡ଼ କର୍ଜନ ୩୦ ବର୍ଷ ପୂର୍ବେ ଭାରତର ଭାଇସରାୟ ଥିଲେ ଏବଂ ତାଙ୍କ ଅମଳରେ ସେ ଜଣେ ଦକ୍ଷ ଇଂରେଜ ଥିଲେ । ଈଶ୍ୱରଙ୍କ କୃପାରୁ ବ୍ରିଟିଶ ସାମ୍ରାଜ୍ୟର ପ୍ରଭାବ ପୃଥିବୀରେ ସବୁଠାରୁ ବେଶି ବୋଲି ଯେଉଁମାନେ ବିଶ୍ୱାସ କରନ୍ତି, ସେହିମାନଙ୍କୁ ସେ ତାଙ୍କ ରଚିତ ଗୋଟିଏ ପୁସ୍ତକ ଉତ୍ସର୍ଗ କରିଛନ୍ତି ।

ଭିକ୍ଟୋରିଆ ଯୁଗର ଇଂରେଜଙ୍କ ସମ୍ବନ୍ଧରେ ମୁଁ ଏହିସବୁ ଲେଖିଛି । ଏହା ଏକପ୍ରକାର ଟାଣି ଓଟାରି ଆଣିଲା ପରି ଏବଂ ଅସାଧାରଣ କଥା ପରି ମନେ ହୋଇପାରେ । ତୁ ହୁଏତ ମନେକରିପାରୁ ଯେ ମୁଁ ସେମାନଙ୍କୁ ପରିହାସ କରି ଆମୋଦ କରୁଛି । କୌଣସି ବିଚାରବନ୍ତ ଲୋକ ଯେ ଏପରି ଭାବରେ ଆଚରଣ କରିବ ଏବଂ ଏପରି ଅଦ୍ଭୁତ, ଅହଙ୍କାରୀ ଓ ଆତ୍ମବଡ଼ିମା ମନୋଭାବ ଗ୍ରହଣ କରିବ, ଏହା ପ୍ରକୃତରେ ଅଦ୍ଭୁତ । କିନ୍ତୁ ଯେଉଁ କଥାରେ ଜାତୀୟ ଗୋଷ୍ଠୀମାନଙ୍କର ମିଥ୍ୟା ଅଭିମାନ ସନ୍ତୋଷ ଲାଭ କରେ ଏବଂ ସୁବିଧା ହୁଏ ଯେପରି ସବୁକଥାରେ ସେମାନେ ପ୍ରାୟ ବିଶ୍ୱାସ କରନ୍ତି । ଏପରି କୁତ୍ସିତ ଓ ଅସଭ୍ୟ ଭାବରେ ନିଜର ପଡ଼ୋଶୀମାନଙ୍କ ସହ ଆଚରଣ କରିବା ନିମନ୍ତେ ବ୍ୟକ୍ତିବିଶେଷ କେବେହେଁ ଚିନ୍ତା କରିପାରିବ ନାହିଁ, କିନ୍ତୁ ଦେଶମାନଙ୍କର ସେପରି କିଛି ଅନୁଶୋଚନା ନ ଥାଏ । ଦୁର୍ଭାଗ୍ୟବଶତଃ ଆମେ ସମସ୍ତେ ସେହି ଭାବରେ ଗଢ଼ା ଏବଂ ଆମ ନିଜର ଜାତୀୟ ଗୁଣ ଗାନ କରି ଭୁଲୁ । ଭିକ୍ଟୋରିଆ ଯୁଗର ଇଂରେଜମାନେ ଯେଉଁ ଧରଣର ଥିଲେ, ଊଣା ଅଧିକେ ସେପରି ଲୋକ ପ୍ରାୟ ସବୁଠି ଅଛନ୍ତି । ସମଗ୍ର ଇଉରୋପୀୟ ଦେଶ ଏହି ପ୍ରକାରର, ଆମେରିକା ଓ ଏସିଆରେ ମଧ୍ୟ ସେଇଆ ।

ଶିଳ୍ପଗତ ପୁଞ୍ଜିବାଦର ବୃଦ୍ଧି ହେତୁ ଇଂଲଣ୍ଡ ଓ ପଶ୍ଚିମ-ଇଉରୋପର ବୃଦ୍ଧି ହେଲା । ଅବିଶ୍ରାନ୍ତ ଲାଭ ଖୋଜିବା ଲାଗି ଏହି ପୁଞ୍ଜିବାଦ ଅଗ୍ରସର ହେଲା । ଲୁଟତ୍ୱ ଓ ମୁନାଫା କେବଳ ଏହି ଦେବତାହିଁ ଲୋକଙ୍କ ପୂଜା ପାଇଲେ; କାରଣ ପୁଞ୍ଜିବାଦର ଧର୍ମ ବା ନୈତିକତା

ସହିତ କିଛି ସମ୍ପର୍କ ନାହିଁ । ବିଂଶଶତାବ୍ଦୀ ଓ ଦେଶ ଦେଶ ଭିତରେ ଏହା ହିଁ ଗଲାକଣ୍ଠା ପ୍ରତିଯୋଗିତା ନୀତି—ଅପାରଗ ହିଁ ପଛରେ ପଡ଼ିବ । ଧର୍ମପ୍ରତି ସହନଶୀଳ ଭାବ ତାଙ୍କର ଥିଲା ବୋଲି ଭିକ୍ଟୋରିଆ ଯୁଗର ଲୋକେ ଗର୍ବ ଅନୁଭବ କରନ୍ତି । ସେମାନେ ପ୍ରଗତି ଓ ବିଜ୍ଞାନରେ ବିଶ୍ୱାସ କରୁଥିଲେ ଏବଂ ସେମାନଙ୍କର ବ୍ୟବସାୟରେ କୃତିତ୍ୱ ଏବଂ ସାମ୍ରାଜ୍ୟ ପ୍ରମାଣ କରିଦେଲା ଯେ କେବଳ ସେହିମାନେ ହିଁ ସଂଗ୍ରାମ ପରେ ବଞ୍ଚିପାରିଛନ୍ତି । ତାରିଭିତରେ ଏପରି କହିବ ନ ଥିଲେ କି ? ଧର୍ମ ସଂକ୍ରାନ୍ତରେ ସେମାନେ ପ୍ରକୃତରେ ଉଦାସୀନ ଥିଲେ । ଆର. ଏଚ. ଟନି ନାମକ ଜଣେ ଇଂରେଜ ଲେଖକ ଏ ସମ୍ବନ୍ଧରେ ବରଂ ଭଲରୂପେ ଲେଖିଛନ୍ତି । ସେ କହନ୍ତି — ଭଗବାନଙ୍କ ସାଂସାରିକ ବ୍ୟାପାରରୁ ଦୂରରେ ତାଙ୍କ ସ୍ଥାନରେ ରଖି ଦିଆଯାଇଥିଲା । "ସ୍ୱର୍ଗ ଓ ପୃଥିବୀ ଉଭୟରେ ଗୋଟାଏ ସୀମାବଦ୍ଧ ରାଜତନ୍ତ୍ର ଥିଲା ।" ଏହା ହିଁ ଥିଲା ସମୃଦ୍ଧିଶାଳୀ ବୁର୍ଜୋୟା ଶ୍ରେଣୀର ଦୃଷ୍ଟିକୋଣ; କିନ୍ତୁ ଜନସାଧାରଣ ଯେପରି ବିପ୍ଳବ ଭାବଧାରାରୁ ଦୂରରେ ରହିବେ, ଏହି ଆଶାରେ ଗିର୍ଜାକୁ ଯିବା ଓ ଧର୍ମକୁ ତାଙ୍କ ଭିତରେ ଉତ୍ସାହିତ କରାଗଲା । ଧର୍ମରେ ସହନଶୀଳତା ଥିଲା ବୋଲି ଯେ ଅନ୍ୟ ସବୁକଥାରେ ସହନଶୀଳତା ଥିଲା, ତାହା ନୁହେଁ । ଯେଉଁସବୁ କଥାକୁ ଅଧିକାଂଶ ଲୋକ ଗୁରୁତ୍ୱପୂର୍ଣ୍ଣ ବୋଲି ମନେ କରୁଥିଲେ, ସେଥିରେ ସହନଶୀଳତା ନ ଥିଲା ଏବଂ କିଛି ଚାପ ପଡ଼ିଲେ ସବୁ ସହନଶୀଳତା କୁଆଡ଼େ ଅନ୍ତର୍ହିତ ହୋଇଯାଉଥିଲା । ଭାରତରେ ବ୍ରିଟିଶ ସରକାର ଧର୍ମ ପ୍ରତି ଖୁବ୍ ସହନଶୀଳ ଭାବ ଦେଖାଇଛୁ ଏବଂ ଏଥିଲାଗି ନିଜ ଗୁଣ ଗାଉ ରହିଛନ୍ତି । ପ୍ରକୃତରେ ଦେଖିବାକୁ ଗଲେ ଧର୍ମର ଅବସ୍ଥା କଣ ହେଉଛି ସେଥିପ୍ରତି ଏହା ଧ୍ୟାନଦେଲେ ଖାତିର କରେନା । କିନ୍ତୁ ଯଦି କେହି ଏହାର ରାଜନୀତି ବା କାର୍ଯ୍ୟକୁ ଟିକିଏ ସମାଲୋଚନା କଲା, ସେଥିରେ ସେ ଗରମ ହୋଇଉଠେ; ସେତେବେଳେ ଆଉ ସହନଶୀଳତାର ଅପବାଦ ତାକୁ କେହି ଦେଇପାରିବ ନାହିଁ । ଯେତେ ବେଶି ଜୋର ପଡ଼ିବ ସେତେ ପତନ ହେବ । ଯଦି କଥାର ଜୋର ପଡ଼ିଲା, ତେବେ ସରକାର ସକଳ ପ୍ରକାର ସହନଶୀଳ ଛଳନା ଫୋପାଡ଼ିଦିଏ ଏବଂ ପ୍ରକାଶ୍ୟ ଓ ନଗ୍ନ ଆତଙ୍କବାଦ ଚଳାଏ । ଆମେ ଭାରତରେ ଆଜି ଏହା ଦେଖୁଥାଉଁ । କିଛି ସମୟ ତଳେ ମୁଁ କାଗଜରେ ପଢ଼ିଲି ଯେ ଗୋଟିଏ ବାର ତେର ବର୍ଷର ବାଳକକୁ ଜଣେ ବ୍ରିଟିଶ କର୍ମଚାରୀଙ୍କ ଧମକଦେଇ ଚିଠି ଲେଖିଥିବା ହେତୁ ଆଠବର୍ଷ ସଶ୍ରମ କାରାଦଣ୍ଡ ହୋଇଛି ।

ପୁଞ୍ଜିବାଦୀ ଶିଳ୍ପର ବୃଦ୍ଧି ଫଳରେ ଅନେକ ପରିବର୍ତ୍ତନ ହେଲା । ପୁଞ୍ଜିବାଦ ଅଧିକ ବିରାଟ ଆକାରରେ କାର୍ଯ୍ୟ କରିବାକୁ ଲାଗିଲା; ଛୋଟ ଅପେକ୍ଷା ବଡ଼ ବଡ଼ ଉଦ୍ୟୋଗମାନ ଅଧିକ କର୍ମପଟୁ ଓ ଲାଭଜନକ ହେଲା । ତେଣୁ ସମସ୍ତ ଶିଳ୍ପକୁ ଏକତ୍ର ନିୟନ୍ତ୍ରଣ କରିବା ଲାଗି ବଡ଼ ବଡ଼ ମେଣ୍ଟ (Combine) ଓ ଟ୍ରଷ୍ଟ (Trust) ମାନ ଗଢ଼ିଉଠିଲା ଏବଂ ଶେଷକୁ ଛୋଟ ଛୋଟ ସ୍ୱତନ୍ତ୍ର ଉତ୍ପାଦନ ଓ କାରଖାନାକୁ ଗ୍ରାସ କରିଦେଲା । ଏହା ଆଗରେ ପୁରୁଣା 'ବ୍ୟକ୍ତିଗତ ଉଦ୍ୟମ' ଭାବଧାରା ମିଳେଇଗଲା । କାରଣ ଏବେ ବ୍ୟକ୍ତିବିଶେଷ ପକ୍ଷରେ ଆଗୁଆ ହୋଇ କିଛି

କରିବା ପାଇଁ ଅତି ଅଳ୍ପ ସୁବିଧା ବା ସୁଯୋଗ ରହିଲା । ଶକ୍ତିଶାଳୀ ମେଣ୍ଟ ଓ କର୍ପୋରେସନ-ଗୁଡ଼ିକ ସରକାରମାନଙ୍କ ଉପରେ କର୍ତ୍ତୃତ୍ୱ କଲେ ।

ପୁଞ୍ଜିବାଦରୁ ଆଉ ଏକ ଶୋଷଣତନ୍ତ୍ର ସାମ୍ରାଜ୍ୟବାଦ ଜାତହେଲା । ୧୯ଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଶିଳ୍ପୋନ୍ନତ ଶକ୍ତିମାନଙ୍କ ମଧ୍ୟରେ ପ୍ରତିଯୋଗିତା ବଢ଼ିବାରୁ ସେମାନେ ବଜାର ଓ କଞ୍ଚାମାଲ ପାଇଁ ଦୂରକୁ ଦୃଷ୍ଟି ପକାଇଲେ । ସମଗ୍ର ଦୁନିଆରେ ସାମ୍ରାଜ୍ୟ ପାଇଁ ଭୀଷଣ ଟଣାଓଟରା ଚାଲିଲା । ଏସିଆ ଅର୍ଥାତ୍ ଭାରତ, ଚୀନ, ଦୂର ଭାରତ ଓ ଇରାନରେ ଯାହାସବୁ ଘଟିଲା, ତାହା ଟିକିଏ ବିସ୍ତୃତ ଭାବରେ ମୁଁ ତତେ କହିଛି । ଇଉରୋପୀୟ ଶକ୍ତିଗୁଡ଼ିକ ଏବେ ଶାଗୁଣା ପରି ଆଫ୍ରିକା ଉପରେ ପଡ଼ିଲେ ଏବଂ ନିଜ ଭିତରେ ତାକୁ ବାଣ୍ଟିନେଲେ । ଏଠି ମଧ୍ୟ ଇଂଲଣ୍ଡ ସବୁଠୁଁ ଅଧିକ ଭାଗ ନେଲା; ସେ ପାଇଲା ଉତ୍ତରରେ ଇଜିପ୍ଟ ଏବଂ ପୂର୍ବ, ପଶ୍ଚିମ ଓ ଦକ୍ଷିଣରେ ବିରାଟ ଅଞ୍ଚଳମାନ । ଫ୍ରାନ୍ସ ମଧ୍ୟ ମଜାରେ ରହିଲା । ଏହି ଲୁଣ୍ଠନ ଦ୍ରବ୍ୟରେ ଇଟାଲୀ ବି ଭାଗୀଦାର ହେବାକୁ ଚାହୁଁଥିଲା । କିନ୍ତୁ ସମସ୍ତେ ଦେଖି ଆଶ୍ଚର୍ଯ୍ୟ ହେଲେ ଯେ ସେ ଆବିସିନିଆଠାରୁ ଭୀଷଣ ଭାବରେ ପ୍ରହାର ଖାଇଲା । ଜର୍ମାନୀ ଗୋଟିଏ ଅଂଶ ପାଇଲା; କିନ୍ତୁ ସନ୍ତୁଷ୍ଟ ନ ଥିଲା । ପ୍ରତ୍ୟେକ ସ୍ଥାନରେ ସାମ୍ରାଜ୍ୟବାଦର ଗର୍ଜନ, ଧମକ ଓ ତ୍ରାସ ପ୍ରଖର ଥିଲା । ବ୍ରିଟିଶ ସାମ୍ରାଜ୍ୟବାଦର ବିଖ୍ୟାତ ଇଂରେଜ କବି ରୁଡ଼୍ୟାର୍ଡ଼୍ କିପଲିଙ୍କ "ଗୋରା ଲୋକର ବୋଝ" (Whiteman's Burden) ସଙ୍ଗୀତ ଗାନ କଲେ । ଫ୍ରାନ୍ସ କହିଲା ଏମାନଙ୍କୁ ସଭ୍ୟ କରିବା ତାହାର ମତଲବ । ଜର୍ମାନୀ ମଧ୍ୟ ତାଙ୍କର ସେହି ସଭ୍ୟତା ବିସ୍ତାର କରିବାକୁ ଯାଉଥିଲା । ତେଣୁ ଏହି ସଭ୍ୟକାମୀ, ଉନ୍ନତିକାମୀ ଓ ଅନ୍ୟ ଲୋକଙ୍କ ବୋଝ ସହୁଥିବା ଲୋକେ ଏକ ପୂର୍ଣ୍ଣ ତ୍ୟାଗଭାବ ଦେଖାଇଲେ ଏବଂ ବାଦାମୀ, ହଳଦିଆ ଓ କଳା ଜାତି ଲୋକଙ୍କ ପିଠିରେ ସବାର ହେଲେ । କଳା ଲୋକର ବୋଝ ସମ୍ବନ୍ଧରେ ଆଉ କେହି ଗାନ କଲେ ନାହିଁ ।

ଏହିସବୁ ପ୍ରତିଦ୍ୱନ୍ଦୀ ସାମ୍ରାଜ୍ୟବାଦ ସକାଶେ ପୃଥିବୀଟା କିଛି ବିଶେଷ ବଡ଼ ନୁହେଁ । ପ୍ରଚଣ୍ଡ ପୁଞ୍ଜିବାଦୀ ପ୍ରେରଣା ବଜାର ପାଇଁ ପ୍ରତ୍ୟେକ ଦେଶକୁ ଆଗକୁ ଠେଲିଲା ଏବଂ ଅନେକ ସମୟରେ ପରସ୍ପର ସହ ସଂଘର୍ଷ ଉପୁଜିଲା । କେତେଥର ଇଂଲଣ୍ଡ ଓ ଫ୍ରାନ୍ସ ଉଭୟଙ୍କର ଭାଗ୍ୟ ସମାନ ଅବସ୍ଥାରେ ଥିଲା ପରି ମନେହେଲା । କିନ୍ତୁ ପ୍ରକୃତ ସ୍ୱାର୍ଥର ସଂଘର୍ଷ ହେଲା ଇଂରେଜ ଓ ଜର୍ମାନୀ ଶିଳ୍ପ ଭିତରେ । ଶିଳ୍ପ ଓ ଜାହାଜ ତିଆରିରେ ଜର୍ମାନ ଇଂରେଜର ସମକକ୍ଷ ହୋଇଥିଲା ଏବଂ ପ୍ରତ୍ୟେକ ବଜାରରେ ଯାଇ ହାଜର ହେଉଥିଲା । କିନ୍ତୁ ସେ ଦେଖିଲା ଯେ ପୃଥିବୀର ସର୍ବୋତ୍କୃଷ୍ଟ ଅଞ୍ଚଳ ଇଂଲଣ୍ଡ ଆଗରୁ ଅଧିକାର କରିସାରିଲାଣି । ଗର୍ବୀ ଉଚ୍ଚାଭିଳାଷୀ ଜର୍ମାନ ଜାତି ଅନ୍ୟ ସମସ୍ତଙ୍କ ପଛରେ ପଡ଼ିଥିବା ହେତୁ ସେମାନଙ୍କ ସହ ସାହସ ସହକାରେ ସଂଗ୍ରାମ କରିବା ପାଇଁ ବାହାରିପଡ଼ିଲା । ସମଗ୍ର ଇଉରୋପ ପ୍ରସ୍ତୁତ ହେଲା ଏବଂ ସୈନ୍ୟ ଓ ନୌବାହିନୀ ବୃଦ୍ଧି ପାଇଲା । ବିଭିନ୍ନ ଦେଶ ଭିତରେ ମିତ୍ରତା ହେଲା—ଦୁଇଟି

ସଶସ୍ତ୍ର ଶକ୍ତି ହୋଇ ପରସ୍ପରର ସମ୍ମୁଖୀନ ହେବା ପର୍ଯ୍ୟନ୍ତ ଏହା ଚାଲିଲା । ଏହା ହେଉଛି ଜର୍ମାନୀ, ଅଷ୍ଟ୍ରିଆ ଓ ଇଟାଲୀର ତ୍ରିଶକ୍ତି ମେଣ୍ଟ ଏବଂ ଫ୍ରାନ୍ସ ଓ ରୁଷର ଦ୍ୱିଶକ୍ତି ମେଣ୍ଟ—ଇଂଲଣ୍ଡ ଲୁଗ୍ଲୁଚ୍ଛିଗ୍ର ଭାବରେ ଏମାନଙ୍କ ସହିତ ସଂପୃକ୍ତ ।

ଏଥିଭିତରେ ଶତାବ୍ଦୀ ଶେଷବେଳକୁ ଦକ୍ଷିଣ ଆଫ୍ରିକାରେ ଇଂଲଣ୍ଡର ଏକ ଶ୍ରେଷ୍ଠ ଯୁଦ୍ଧ ଲାଗିଲା । ଟ୍ରାନ୍ସଭାଲର ବୁଅର୍ ପ୍ରଜାତନ୍ତ୍ରରେ ସୁନାର ଆବିଷ୍କାର ହେତୁ ୧୮୯୯ରେ ଏ ଯୁଦ୍ଧ ଲାଗିଲା । ଇଉରୋପର ଏହି ପ୍ରଧାନ ଶକ୍ତି ବିରୁଦ୍ଧରେ ବୁଅରମାନେ ସାହସ ଓ ଧୈର୍ଯ୍ୟର ସହ ତିନିବର୍ଷକାଳ ଲଢ଼ିଲେ । ସେମାନଙ୍କୁ ଦମନ କରାଗଲା ଓ ସେମାନଙ୍କୁ ପରାଜୟ ସ୍ୱୀକାର କରିବାକୁ ପଡ଼ିଲା । କିନ୍ତୁ ଅଳ୍ପଦିନ ପରେ (ସେତେବେଳେ ଲିବରାଲ୍ ଦଳ ମନ୍ତ୍ରୀ-ମଣ୍ଡଳ ଗଢ଼ିଥିଲା) ଏମାନଙ୍କୁ ପୂର୍ଣ୍ଣ ସ୍ୱାୟତ୍ତଶାସନ ଦେଇ ଏକ ବୁଦ୍ଧିମାନ ଓ ଉଦାର କାର୍ଯ୍ୟ କଲା । କିଛିଦିନ ପରେ ସମଗ୍ର ଦକ୍ଷିଣ ଆଫ୍ରିକା ବ୍ରିଟିଶ ସାମ୍ରାଜ୍ୟର ଏକ ସ୍ୱାଧୀନ ଡୋମିନିୟନ ହେଲା ।

## ୧୩୭ : ଆମେରିକାରେ ଗୃହଯୁଦ୍ଧ

ଫେବୃୟାରୀ ୨୭, ୧୯୩୩

ପୁରାତନ ଜଗତର ସଂଘର୍ଷ ଓ ଷଡ଼ଯନ୍ତ୍ର, ରାଜା ଓ ବିପ୍ଳବ, ଘୃଣା ଓ ଜାତୀୟତା ଆଦି ଆଲୋଚନା କରିବାରେ ଆମର ଅନେକ ସମୟ ଗଲା । ଏବେ ଆଟଲାଣ୍ଟିକ ପାର ହୋଇ ଆମେରିକାର ନୂତନ ଦୁନିଆକୁ ଯିବା ଏବଂ ଇଉରୋପ ହାତରୁ ରକ୍ଷା ପାଇ ଏହା କିପରି ଉନ୍ନତି କଲା ଦେଖିବା । ବିଶେଷ ଭାବରେ ଆମେରିକା ଯୁକ୍ତରାଷ୍ଟ୍ର ଆମର ଦୃଷ୍ଟି ଆକର୍ଷଣ କରେ । ଖୁବ୍ ଶ୍ରେଷ୍ଠ ଅବସ୍ଥାରୁ ସେମାନେ ବଢ଼ି ବଢ଼ି ବର୍ତ୍ତମାନ ପୃଥିବୀରେ ବଡ଼ ହୋଇ ଉଠିଲେଣି । ଇଂଲଣ୍ଡର ଆଜି ଆଉ ସେ ପୂର୍ବ ଶ୍ରେଷ୍ଠ ସ୍ଥାନ ନାହିଁ; ସେ ପୃଥିବୀର ମହାଜନ ନୁହେଁ, ଇଉରୋପର ଅନ୍ୟ ଶକ୍ତିମାନଙ୍କ ପରି ଏକ ଅଧମର୍ଣ୍ଣ ଖାତକ ବା ଋଣଗ୍ରସ୍ତ ଦେଶ ହେଲାଣି । ଭଲ ଓ ଉଦାର ବ୍ୟବହାର ଲାଗି ଯୁକ୍ତରାଷ୍ଟ୍ରକୁ ନିବେଦନ କରୁଛି । ମହାଜନ ହେବାର ଭାଗ୍ୟ ଆମେରିକାର ପଡ଼ିଛି, ଧନସ୍ରୋତ ସେଠିକି ଚାଲିଛି ଏବଂ ସେଠି ଅଦ୍ଭୁତ ପ୍ରକାରେ ଲକ୍ଷପତି ସୃଷ୍ଟି ହେଉଛନ୍ତି । କିନ୍ତୁ ପୁରାତନ ମିଡାସ † ପରି ସୁନାଭଣ୍ଡାର

† ଫ୍ରିଜିଆର ଜଣେ କାଳ୍ପନିକ ରାଜା—ତାଙ୍କର ଏପରି ଶକ୍ତି ଥିଲା ଯେ ସେ ଯେଉଁ ଜିନିଷକୁ ଛୁଇଁ ଦେଉଥିଲେ, ତାହା ସୁନା ହୋଇଯାଉଥିଲା ।

ହେତୁ ଯେ ସେଠା ଅଧିବାସୀ ଆନନ୍ଦ ପାଉଛନ୍ତି ଏହା ନୁହେଁ—ଲକ୍ଷପତି ଥାଇ ମଧ୍ୟ ଆଜ ସେଠାକାର ଜନସାଧାରଣ ଅଭାବ ଓ ଦାରିଦ୍ର୍ୟରେ ସଡ଼ୁଛନ୍ତି ।

୧୭୭୬ରେ ସମୁଦ୍ର ଉପକୂଳସ୍ଥ ଯେଉଁ ତେରଗୋଟି ରାଜ୍ୟ ଇଂଲଣ୍ଡରୁ ସମ୍ପର୍କ ଛୁଟାଇଲେ, ତାର ଲୋକସଂଖ୍ୟା ୪୦ ଲକ୍ଷ ହେବ । ଆଜ କେବଳ ନିଉୟର୍କ ସହରର ଲୋକସଂଖ୍ୟା ଏହାର ଦୁଇଗୁଣ ହେଲାଣି ଓ ସମଗ୍ର ଯୁକ୍ତରାଷ୍ଟ୍ରର ଲୋକସଂଖ୍ୟା ୧,୨୫୦,୦୦୦,୦୦୦ । ଏହି ଉପନିବେଶରେ ଆହୁରି ଅନେକ ରାଜ୍ୟ ଯୋଗ ଦେଇଛନ୍ତି ଏବଂ ଏହି ମହାଦେଶ ପ୍ରଶାନ୍ତ ମହାସାଗର ପର୍ଯ୍ୟନ୍ତ ବିସ୍ତାର ଲାଭକରିଛି । ୧୯ଶ ଶତାବ୍ଦୀରେ ଏହି ବିରାଟ ଦେଶର ଉନ୍ନତି ହେଲା, କେବଳ ଆକୃତି ଓ ଲୋକସଂଖ୍ୟାରେ ନୁହେଁ, ଆଧୁନିକ ଶିଳ୍ପ, ବାଣିଜ୍ୟ, ସମ୍ପଦ ଓ ପ୍ରଭାବରେ ମଧ୍ୟ । ଏହି ରାଜ୍ୟକୁ ବହୁତ ବିପଦ ଓ ବିଘ୍ନ ମଧ୍ୟ ଦେଇ ଯିବାକୁ ହେଲା । ଇଉରୋପ ସହ କେତେକ ଯୁଦ୍ଧ ଓ ସଂଘର୍ଷ ଲାଗିଲା । କିନ୍ତୁ ସବୁଠାରୁ ସାଙ୍ଘାତିକ ହେଲା ଉତ୍ତର ଓ ଦକ୍ଷିଣ ରାଜ୍ୟମାନଙ୍କ ଭିତରେ ଲାଗିଥିବା ଧ୍ୱଂସକାରୀ ଗୃହଯୁଦ୍ଧ ବେଳ ।

ଆମେରିକା ସ୍ୱାଧୀନ ହେବାର କେତେବର୍ଷ ପରେ ଫ୍ରାନ୍ସରେ ବିପ୍ଳବ ହେଲା । ତା ପରେ ପରେ ନେପୋଲିୟନୀୟ ଯୁଦ୍ଧସବୁ ଲାଗିଲା । ନେପୋଲିୟନ ଓ ଇଂଲଣ୍ଡ ଉଭୟେ ପରସ୍ପରର ବାଣିଜ୍ୟ ନଷ୍ଟ କରିବାକୁ ଚେଷ୍ଟା କଲେ ଏବଂ ଏହା କରିବାକୁ ଯାଇ ଯୁକ୍ତରାଷ୍ଟ୍ର ସହ ସଂଘର୍ଷରେ ପଡ଼ିଥିଲେ । ଆମେରିକାର ବହିଃବାଣିଜ୍ୟ ସମ୍ପୂର୍ଣ୍ଣରୂପେ ଅଚଳ ହୋଇଗଲା ଏବଂ ଏହା ଫଳରେ ୧୮୧୨ରେ ଇଂଲଣ୍ଡ ସହ ଆଉ ଏକ ଯୁଦ୍ଧ ହେଲା । ଏହି ଦୁଇ ବର୍ଷ ଯୁଦ୍ଧ ଫଳରେ ବିଶେଷ କିଛି ଘଟିଲା ନାହିଁ । ଯୁଦ୍ଧ ସରିଥିଲାବେଳେ ଯେତେବେଳେ ନେପୋଲିୟନଙ୍କୁ ନେଇ ଏଲବାରେ ରଖିଦେଲେ ଏବଂ ଇଂଲଣ୍ଡର ସବୁ ଅଡ଼ୁଆ ତୁଟିଲା, ବ୍ରିଟିଶ କୌଣସି ପ୍ରକାରେ ଆମେରିକା ରାଜଧାନୀ ଓ୍ୱାଶିଙ୍ଗ୍ଟନ ଅଧିକାର କଲେ, ସେମାନେ 'କାପିଟାଲ' (ଯେଉଁଥିରେ କଂଗ୍ରେସ ଅଧିବେଶନ ହୁଏ), ସଭାପତିମାନଙ୍କ ବାସସ୍ଥାନ 'ହ୍ୱାଇଟ୍ ହାଉସ' ଆଦି ପ୍ରଧାନ କୋଠାମାନ ଧ୍ୱଂସ କଲେ ଓ ପୋଡ଼ି ପକାଇଲେ । ଶେଷରେ ବ୍ରିଟିଶ ପରାସ୍ତ ହେଲେ ।

ଏହି ଯୁଦ୍ଧ ପୂର୍ବରୁ ମଧ୍ୟ ଦକ୍ଷିଣରେ ଏକ ବିସ୍ତୃତ ଅଞ୍ଚଳ ଏଥିରେ ଯୋଗ ହୋଇଥାଏ । ଏହା ହେଉଛି ପୁରାତନ ଫରାସୀ ଉପନିବେଶ ଲୁଇସିଆନା । ବ୍ରିଟିଶର ନୌଆକ୍ରମଣରୁ ରକ୍ଷା କରିବା ସମ୍ଭବ ନ ହେବାରୁ ନେପୋଲିୟନ ଆମେରିକାକୁ ଏହା ବିକ୍ରୀ କରିଦେଇଥିଲେ । କେତେବର୍ଷ ପରେ ୧୮୨୨ରେ ସ୍ପେନଠାରୁ ଫ୍ଲୋରିଡ଼ା କ୍ରୟ କଲେ ଏବଂ ୧୮୪୮ରେ ମେକ୍ସିକୋ ସହ ଯୁଦ୍ଧରେ ସଫଳ ହେବାରୁ କାଲିଫୋର୍ଣ୍ଣିଆ ସହ ଦକ୍ଷିଣ-ପଶ୍ଚିମାଞ୍ଚଳରେ ଥିବା ରାଜ୍ୟମାନ ଏଥିରେ ମିଶିଲା । ପଶ୍ଚିମାଞ୍ଚଳର ଅନେକ ସହରର ଏବେ ମଧ୍ୟ ସ୍ପେନ ନାମକରଣ

ରହିଛି ଏବଂ ସ୍ପେନ୍‌ବାସୀ ବା ସ୍ପେନ୍‌ଭାଷାଭାଷୀ ମେକ୍‌ସିକାନ୍‌ମାନେ ଯେବେ ଯେ ଏହାକୁ ଶାସନ କରୁଥିଲେ, ଏହା ତାହା ସ୍ମରଣ କରାଇଦିଏ । ସିନେମାରାଜ୍ୟର ବଡ଼ ସହର ଲସ୍ ଆଞ୍ଜେଲସ୍ (Los Angeles) ଓ ସାନଫ୍ରାନ୍‌ସିସ୍କୋ ନାମ ସହିତ ସମସ୍ତେ ପରିଚିତ ।

ଇଉରୋପରେ ପୁନଃ ପୁନଃ ବିପ୍ଳବ ଓ ଦମନ ପ୍ରଚେଷ୍ଟା ଚାଲିଥିଲାବେଳେ ଯୁକ୍ତରାଷ୍ଟ୍ର ପଶ୍ଚିମ ଦିଗକୁ ବିସ୍ତାର ଲାଭ କରୁଥାଏ । ଇଉରୋପରେ ଦମନ ହେତୁ ଲୋକେ ରାଜ୍ୟ ଛାଡ଼ି ଏଠାକୁ ଚାଲିଲେ ଏବଂ ବିସ୍ତୃତ ଅଞ୍ଚଳ ଓ ଉଚ୍ଚ ମଜୁରି ମିଳିବାର ଶୁଣି ଅନେକ ଇଉରୋପୀୟ ଦେଶରୁ ବହୁସଂଖ୍ୟକ ଲୋକ ଆକୃଷ୍ଟ ହେଲେ । ଲୋକସଂଖ୍ୟା ପଶ୍ଚିମକୁ ପ୍ରସାର ଲଭିବା ସଙ୍ଗେ ସଙ୍ଗେ ନୂତନ ରାଜ୍ୟ ଗଢ଼ାହେଲା ଏବଂ ସଂଘଦେଶ ସହିତ ମିଶିଗଲା ।

ଆରମ୍ଭରୁ ହିଁ ଉତ୍ତର ଓ ଦକ୍ଷିଣ ରାଜ୍ୟମାନଙ୍କ ଭିତରେ ଯଥେଷ୍ଟ ପାର୍ଥକ୍ୟ ଥିଲା । ଉତ୍ତରାଞ୍ଚଳ ଶିଳ୍ପୋନ୍ନତ ଥିଲା ଏବଂ ବଡ଼ ବଡ଼ ନୂଆ ଯନ୍ତ୍ରଶିଳ୍ପ ଦ୍ରୁତବେଗରେ ବିସ୍ତାର ଲାଭ କଲା, ଦକ୍ଷିଣରେ ବଡ଼ ବଡ଼ ଆବାଦୀ ଭୂମି ଥିଲା ଓ ଦାସ-ଶ୍ରମିକ ଖଟାଇ କାମ କରାଯାଉଥିଲା । ଦାସ ପ୍ରଥା ଆଇନାନୁମୋଦିତ ଥିଲା, କିନ୍ତୁ ଉତ୍ତରରେ ଏହାର ପ୍ରଚଳନ ନ ଥିଲା ଏବଂ ଏହାର କିଛି ମହତ୍ତ୍ୱ ନ ଥିଲା । ଦକ୍ଷିଣାଞ୍ଚଳ ମୁଖ୍ୟଭାବରେ ଦାସ-ଶ୍ରମିକଙ୍କ ଉପରେ ନିର୍ଭର କରୁଥିଲା । ଅବଶ୍ୟ ଆଫ୍ରିକାର ନିଗ୍ରୋମାନେ ହିଁ ଦାସ ହେଉଥିଲେ । କୌଣସି ଗୋରା ଲୋକ ଦାସ ନ ଥିଲେ । ସ୍ୱାଧୀନତା ଘୋଷଣାପତ୍ରରେ କୁହାହୋଇଥିଲା, "ପ୍ରତ୍ୟେକ ଲୋକ ସମାନ ହୋଇ ଜନ୍ମଗ୍ରହଣ କରିଛନ୍ତି"; କିନ୍ତୁ ଏହା ଗୋରାଙ୍କ ପ୍ରତି ପ୍ରଯୁଜ୍ୟ ହେଲା, କଳାଙ୍କ ପ୍ରତି ନୁହେଁ ।

ଆଫ୍ରିକାରୁ କିପରି ଏ ନିଗ୍ରୋମାନେ ଅଣାହେଲେ, ତାହା ଅତି ଶୋଚନୀୟ କାହାଣୀ । ୧୬ଶ ଶତାବ୍ଦୀର ପ୍ରଥମ ଭାଗରେ ଦାସ-ବ୍ୟବସାୟ (Slave trade) ଆରମ୍ଭ ହୋଇଥିଲା ଏବଂ ୧୮୬୩ ପର୍ଯ୍ୟନ୍ତ ଦାସ-ଯୋଗାଣ ଖୋଲାମେଲା ଚାଲିଥିଲା । ପ୍ରଥମେ ବାଣିଜ୍ୟ-ନୌକାସବୁ ପଶ୍ଚିମ-ଆଫ୍ରିକା ଉପକୂଳରେ (ଏହାର ଏକ ଅଂଶକୁ ଏବେ ସୁଦ୍ଧା "ଦାସ ଉପକୂଳ"—Slave Coast ବୋଲି କହନ୍ତି) ଯେତେ ସହଜରେ ହୋଇପାରିଲା ସେତେ ସହଜ ଭାବରେ ଆଫ୍ରିକାବାସୀଙ୍କୁ ଉଠାଇନେଇ ଆମେରିକାକୁ ବୋହିନେଲେ । ଆଫ୍ରିକା-ବାସୀଙ୍କ ଭିତରେ ଖୁବ୍ କମ୍ ଦାସତ୍ୱ ଥିଲା, କେବଳ ଯୁଦ୍ଧବନ୍ଦୀ କିମ୍ବା ଋଣଗ୍ରସ୍ତମାନଙ୍କୁ ଏପରି ବ୍ୟବହାର କରାଯାଇଥିଲା । ଦେଖାଗଲା ଯେ ଆଫ୍ରିକାନ୍‌ମାନଙ୍କୁ ଆମେରିକା ନେଇ ଦାସରୂପେ ବିକ୍ରୀ କରିବା ଅତ୍ୟନ୍ତ ଲାଭଜନକ ବ୍ୟବସାୟ ହେଲା । ଦାସ-ବେପାର ବଢ଼ିଲା ଏବଂ ଇଂରେଜ, ସ୍ପେନ ଓ ପର୍ତ୍ତୁଗୀଜମାନେ ମୁଖ୍ୟ ଭାବରେ ଏହି ବେପାରଲାଗି ଧନ ସାହାଯ୍ୟ କଲେ । ଏଥିପାଇଁ ବିଶେଷ ଜାହାଜ ତିଆରି ହେଲା । ଏହାକୁ ଦାସ-ବେପାରୀ ବୋଲି କୁହା ହେଉଥିଲା । ପୋତ ଭିତରର ଫାଙ୍କ ସ୍ଥାନରେ ଲମ୍ବା କୋଠରି କରାଗଲା । ଏହି ଲମ୍ବା କୋଠରିରେ ଅଭାଗା ନିଗ୍ରୋମାନଙ୍କୁ ଜଞ୍ଜିରରେ ବାନ୍ଧିଦେଇ ଶୁଆଇ ଦିଆଯାଉଥିଲା; ଜଣେ ଲେଖାଏଁ ଏକାଠି

ବନ୍ଧା ହୋଇଥାନ୍ତି । ଆଟଲାଣ୍ଟିକ ପାର ହେବା ପାଇଁ ଜଳଯାତ୍ରାରେ ଅନେକ ସପ୍ତାହ, ବେଳେ ବେଳେ ମାସ ମାସ ଲାଗିଯାଉଥିଲା । ଏହି ସମସ୍ତ ସମୟ ନିଗ୍ରୋମାନେ ଗଦାମଡ଼ା ହେଲା ପରି ସେହି ସଂକୀର୍ଣ୍ଣ କୋଠରିରେ ପଡ଼ିଥାନ୍ତି ଏବଂ ପ୍ରତ୍ୟେକଙ୍କୁ ସାଢ଼େ ପାଞ୍ଚଫୁଟ ଦୀର୍ଘ ଓ ୧୬ ଇଞ୍ଚ ଚଉଡ଼ା ସ୍ଥାନ ଦିଆଯାଏ ।

ଦାସ-ବେପାରରେ ଲିଭରପୁଲ ଏକ ପ୍ରଧାନ ସହର ହେଲା । ୧୭୧୩ ବେଳକୁ ଇଉଟ୍ରେକ୍‌ଟ ସନ୍ଧିରେ ଆଫ୍ରିକା ଓ ସ୍ପେନ୍-ଅଧିକୃତ ଆମେରିକା ଭିତରେ ଦାସମାନଙ୍କୁ ନେବାର ସୁବିଧା ଇଂଲଣ୍ଡ ସ୍ପେନ୍‌ଠାରୁ ହାସଲ କଲା । ଏହା ପୂର୍ବରୁ ମଧ୍ୟ ଆମେରିକାରେ ଥିବା ଇଂରେଜ-ଅଧିକୃତ ଅଞ୍ଚଳକୁ ଇଂଲଣ୍ଡ ଦାସ ଯୋଗାଉଥିଲା । ଏହିରୂପେ ଆଫ୍ରିକା-ଆମେରିକା ଦାସ ବେପାରକୁ ୧୮ଶ ଶତାବ୍ଦୀରେ ଇଂରେଜଙ୍କର ଏକଚାଟିଆ କରିବାକୁ ଏକ ଉଦ୍ୟମ ହୋଇଥିଲା । ୧୭୩୦ରେ ଏହି ବେପାରରେ ଲିଭରପୁଲ ୧୫ଟି ଜାହାଜ ଲଗାଇଲା । ସଂଖ୍ୟା କ୍ରମେ ବଢ଼ି ବଢ଼ି ଚାଲିଲା; ଶେଷରେ ଦାସ ବେପାରରେ ୧୭୯୨ ବେଳକୁ ଲିଭରପୁଲରେ ୧୩୨ଟି ଜାହାଜ ନିଯୁକ୍ତ କରାଗଲା । ଶିଳ୍ପ ବିପ୍ଳବର ଆରମ୍ଭବେଳେ ଇଂଲଣ୍ଡର ଲାଙ୍କାଶାୟାରରେ ତୁଳା-ସୂତାକଟା ଶିଳ୍ପର ଖୁବ୍ ଉନ୍ନତି ହୋଇଥିଲା ଏବଂ ଯୁକ୍ତରାଷ୍ଟ୍ରରେ ଅଧିକ ଦାସ ପାଇଁ ଚାହିଦା ହେଲା । କାରଣ ଲାଙ୍କାଶାୟାର କଳମାନଙ୍କରେ ଯେଉଁ ତୁଳା ବ୍ୟବହାର କରାଯାଉଥିଲା, ତାହା ଆମେରିକାର ଦକ୍ଷିଣ ରାଜ୍ୟର ବଡ଼ ତୁଳାଆବାଦୀ ଅଞ୍ଚଳରୁ ଆସୁଥିଲା । ଏହି ତୁଳା ଆବାଦୀ-ଭୂମି ଦ୍ରୁତ ବେଗରେ ବ୍ୟାପିଲା, ଆଫ୍ରିକାରୁ ଅଧିକ ଦାସ ଅଣା ହେଲା ଏବଂ ନିଗ୍ରୋଙ୍କ ସଂଖ୍ୟା ବଢ଼ାଇବା ନିମନ୍ତେ ପ୍ରତ୍ୟେକ ପ୍ରକାର ଉଦ୍ୟମ କରାଗଲା । ୧୭୯୦ରେ ଯୁକ୍ତରାଷ୍ଟ୍ରରେ ୬୯୭,୦୦୦ ଦାସ ଥିଲେ, ୧୮୬୧ ବେଳକୁ ସେ ସଂଖ୍ୟା ୪,୦୦୦,୦୦୦ ହୋଇଗଲା ।

୧୯ଶ ଶତାବ୍ଦୀର ପ୍ରଥମାବସ୍ଥାରେ ଦାସପ୍ରଥା ବିରୁଦ୍ଧରେ ବ୍ରିଟିଶ ପାର୍ଲାମେଣ୍ଟ କଡ଼ା ଆଇନ୍ ପାଶ୍ କଲା । ଇଉରୋପର ଅନ୍ୟ ଦେଶ ଓ ଆମେରିକାରେ ବି ହେଲା । କିନ୍ତୁ ଦାସ ବେପାରକୁ ଏପରି ବେଆଇନ କରାଯାଇ ସୁଦ୍ଧା ନିଗ୍ରୋମାନଙ୍କୁ ଆଫ୍ରିକାରୁ ଆମେରିକାକୁ ନିଆ ଯାଉଥାଏ; ପ୍ରଭେଦ ଏତିକ ଯେ ସେମାନଙ୍କୁ ଆହୁରି କଦର୍ଯ୍ୟ ଭାବରେ ନିଆହେଲା । ସେମାନଙ୍କୁ ପ୍ରକାଶ୍ୟ ଭାବରେ ନିଆଯାଇ ପାରୁ ନ ଥିଲା; ତେଣୁ କାଠପଟା ତଳେ ଲୁଚାଇ ନିଆଗଲା ଗୋଟିକ ଉପରେ ଗୋଟିଏ ଲଦି । ଜଣେ ଆମେରିକାନ୍ ଲେଖକ କହିଛନ୍ତି – "ବେଳେ ବେଳେ ଜଣକ କୋଳରେ ଜଣେ, ଜଣକ ଗୋଡ଼ ଉପରେ ଅନ୍ୟର ଗୋଡ଼ ପଡ଼ିଥାଏ ଠିକ୍ ଭିଡ଼ ଗାଡ଼ିମାନଙ୍କରେ ଚଢ଼ିବା ଭଳି ।" ଏହାର ଭୀଷଣ ରୂପ ଅନୁମାନ କରିବା କଷ୍ଟକର ।

ଅବସ୍ଥା ଏପରି ଖରାପ ଥିଲା ଯେ ୪।୫ ଥର ଯାତ୍ରା ପରେ ଦାସ-ଜାହାଜସବୁ ବନ୍ଦ ରଖାଗଲା । କିନ୍ତୁ ପ୍ରଚୁର ଲାଭ ହେଉଥିଲା ଏବଂ ୧୮ଶ ଶତାବ୍ଦୀ ଶେଷ ଓ ୧୯ଶ ଶତାବ୍ଦୀ

ଆରମ୍ଭ ବେଳକୁ ଯେତେବେଳେ ବେପାର ଅତୁଚ୍ଚ ଅବସ୍ଥାରେ ଥିଲା ସେତେବେଳେ ପ୍ରତିବର୍ଷ ଆଫ୍ରିକାର ଦାସ ଉପକୂଳରୁ ୧୦୦,୦୦୦ ଦାସ ନିଆହେଉଥିଲା । ମନେ ରଖିଥିବୁ, ଏତିକି ସଂଖ୍ୟାରେ ବୋହିନେବା ନିମନ୍ତେ ନିଗ୍ରୋମାନଙ୍କୁ ଧରିବା ପାଇଁ ଆହୁରି ଅଧିକ ସଂଖ୍ୟକ ଲୋକଙ୍କୁ ହତ୍ୟା କରିବାକୁ ପଡ଼ୁଥିଲା ।

୧୯ଶ ଶତାବ୍ଦୀର ପ୍ରଥମ ଭାଗରେ ବା ତାର ଆଖପାଖ ବେଳକୁ ସବୁ ପ୍ରଧାନ ଦେଶଗୁଡ଼ିକ ଏ ବେପାରକୁ ବେଆଇନ କରିଦେଲେ । ଏପରି କି ଯୁକ୍ତରାଷ୍ଟ୍ର ବି ସେହିପରି କଲା । କିନ୍ତୁ ଦାସ-ବେପାର ବେଆଇନ ହେଲେ ସୁଦ୍ଧା ଆମେରିକାରେ ଦାସପ୍ରଥା ଆଇନସଙ୍ଗତ ହେଲା; ଅର୍ଥାତ୍ ପୁରୁଣା ଦାସମାନେ ଦାସ ହୋଇ ରହିଲେ । ଦାସତ୍ୱ ଆଇନାନୁମୋଦିତ ଥିବାରୁ ବେପାର ନିଷେଧ ସତ୍ତ୍ୱେ ଦାସବେପାର ଚାଲୁ ରହିଲା । ବ୍ରିଟେନ୍ ବି ଦାସତ୍ୱ କାରବାର ଛାଡ଼ିଲା । ତାପରେ ଦାସ-ବେପାରର ପ୍ରଧାନ ବନ୍ଦର ହେଲା ନିଉୟର୍କ ।

ଏହି ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ଅନେକ ବର୍ଷ ଲାଗି ଏହି ବେପାରର ବନ୍ଦର ନିଉୟର୍କ ଥିଲେ ସୁଦ୍ଧା ଉତ୍ତରାଞ୍ଚଳ ଦାସତ୍ୱ ବିରୁଦ୍ଧରେ ଥିଲା । ଅନ୍ୟ ପକ୍ଷରେ କୃଷିକାର୍ଯ୍ୟ ସକାଶେ ଦକ୍ଷିଣରେ ଦାସ ଦରକାର ହେଉଥିଲା । କେତେକ ରାଜ୍ୟ ଦାସତ୍ୱ ଲୋପ କଲେ, ଅନ୍ୟମାନେ ରଖିଲେ । ଅନେକ ସମୟରେ ନିଗ୍ରୋମାନେ ଦାସତ୍ୱ ଚଳୁଥିବା ରାଜ୍ୟ ଛାଡ଼ି ଦାସପ୍ରଥା ନ ଥିବା ରାଜ୍ୟକୁ ପଳାଇ ଯାଉଥିଲେ ଏବଂ ଏହା ଯୋଗୁ ବିବାଦ ହେଉଥିଲା ।

ଉତ୍ତର ଓ ଦକ୍ଷିଣର ଅର୍ଥନୀତିକ ସ୍ୱାର୍ଥ ପରସ୍ପରଠାରୁ ଅଲଗା ଥିଲା ଏବଂ ୧୮୩୦ ମସିହା ବେଳେ ଟାରିଫ୍ ଓ ଆମଦାନି ରପ୍ତାନି ଶୁଳ୍କ ନେଇ ବିବାଦ ହେଉଥିଲା । ୟୁନିୟନରୁ ଅଲଗା ହୋଇଯିବାର ଧମକ ବି ଦିଆଯାଉଥିଲା । ରାଜାମାନେ ନିଜର ଅଧିକାର ପାଇଁ ଉତ୍କଣ୍ଠା କରୁଥିଲେ ଏବଂ କେନ୍ଦ୍ର ସରକାର ଏଥିରେ ବେଶି ହସ୍ତକ୍ଷେପ କରିବା ପସନ୍ଦ କରୁ ନ ଥିଲା । ଦେଶରେ ଦୁଇଟି ଦଳ ଦେଖାଗଲା, ଏକ ଦଳ ଷ୍ଟେଟଗୁଡ଼ିକର କର୍ତ୍ତୃତ୍ୱ ସପକ୍ଷରେ ଥିଲେ, ଅନ୍ୟ ଦଳ ଗୋଟିଏ ଶକ୍ତ କେନ୍ଦ୍ର ସରକାର ଦାବୀ କରୁଥିଲେ । ଏହିସବୁ ଭିନ୍ନମତ ହେତୁ ଉତ୍ତର ଓ ଦକ୍ଷିଣ ଭିତରେ ପରସ୍ପର ପାର୍ଥକ୍ୟ ବଢ଼ିଗଲା ଏବଂ ଯେତେବେଳେ ନୂତନ ରାଜ୍ୟ ଇଉନିୟନରେ ଯୋଗ ଦେଉଥିଲା, ସେତେବେଳେ ଏହା କେଉଁ ପକ୍ଷ ସମର୍ଥନ କରିବ, ଏ ପ୍ରଶ୍ନ ଉଠୁଥିଲା । କେଉଁ ପକ୍ଷରେ ଅଧିକ ସଂଖ୍ୟକ ହେବ ? ଇଉରୋପରୁ ଲୋକ ଚାଲିଆସୁଥିବାରୁ ଉତ୍ତରର ଲୋକସଂଖ୍ୟା ଦ୍ରୁତବେଗରେ ବଢ଼ୁଥିଲା ଏବଂ ଏଥିରୁ ଦକ୍ଷିଣାଞ୍ଚଳ ଲୋକଙ୍କର ଭୟ ହେଲା ଯେ ଉତ୍ତରର ଲୋକସଂଖ୍ୟା ବେଶି ହୋଇଯିବ ଏବଂ ସେମାନେ ପ୍ରତ୍ୟେକ ପ୍ରଶ୍ନରେ କମ୍ ଭୋଟ ପାଇବେ । ତେଣୁ ଉତ୍ତର ଓ ଦକ୍ଷିଣ ଭିତରେ ବିବାଦ ବଢ଼ିଲା ।

ଏଥି ଭିତରେ ଦାସତ୍ୱପ୍ରଥାର ସମ୍ପୂର୍ଣ୍ଣ ଲୋପ ନିମନ୍ତେ ଗୋଟାଏ ଆନ୍ଦୋଳନ ଉତ୍ତରରେ ଦେଖାଦେଲା । ଏହାର ସପକ୍ଷରେ ଯେଉଁମାନେ ଥିଲେ ସେମାନଙ୍କୁ 'ଉଚ୍ଛେଦକ'

ବା 'ଆବୋଲିସନିଷ୍ଟ' ( Abolitionist ) କହୁଥିଲେ ଏବଂ ଏହାର ପ୍ରଧାନ ନେତା ଥିଲେ ଉଇଲିୟମ ଲଏଡ ଗାରିସନ୍ । ୧୮୩୧ରେ ଦାସତ୍ୱବିରୋଧୀ ଆନ୍ଦୋଳନ ସମର୍ଥନ କରିବା ନିମନ୍ତେ ଗାରିସନ ( 'ଲିବରେଟର୍'-ମୁକ୍ତିଦାତା ) ନାମକ ଏକ କାଗଜ ବାହାର କଲେ । ଏହି କାଗଜର ପ୍ରଥମ ସଂଖ୍ୟାରେ ହିଁ ସେ ପରିଷ୍କାର କରିଦେଲେ ଯେ ଏ ସମସ୍ୟାରେ ସେ ଆଦୌ ସାଲିସ କରିବେ ନାହିଁ କିମ୍ବା ଏ ସମ୍ବନ୍ଧରେ କୋହଳ ହେବେ ନାହିଁ । ସେହି ସଂଖ୍ୟାର କେତେକ ବାକ୍ୟ ଖୁବ୍ ପ୍ରସିଦ୍ଧି ଲାଭକରିଛି ଏବଂ ସେଗୁଡ଼ିକ ମୁଁ ଏଠି ଦେଉଛି :—

"ମୁଁ ସତ୍ୟ ପରି କଠୋର ହେବି ଏବଂ ନ୍ୟାୟ ପରି ସାଲିସବିରୋଧୀ ହେବି । ଏହି ବିଷୟରେ ମୁଁ ନରମ ଭାବରେ ଚିନ୍ତା କରିବାକୁ, କହିବାକୁ ବା ଲେଖିବାକୁ ଚାହେଁନା । ନା ! ନା ! ଯେଉଁ ଲୋକର ଘର ପୋଡ଼ିଯାଉଛି ବରଂ ତାକୁ ଆସ୍ତେକରି ବିପଦସଙ୍କେତ ଧ୍ୱନି ଦେବାକୁ କହିପାର; ବଦମାସ ହାତରୁ ନିଜ ସ୍ତ୍ରୀକୁ ଧୀରେ ସୁସ୍ଥେ ରକ୍ଷା କରିବା ପାଇଁ ତାକୁ ଜୁଏତ କହିପାର; କୌଣସି ଶିଶୁ ନିଆଁରେ ପଡ଼ିଥିଲାବେଳେ ସେଥିରୁ ତାକୁ ଆସ୍ତେ ଆସ୍ତେ କାଢ଼ିନେବା ପାଇଁ ତା'ର ମାଆକୁ ବରଂ କହିପାର; ମାତ୍ର ଆମେ ଆଜ ଯେଉଁ ଲକ୍ଷ୍ୟ ପାଇଁ ଧାଇଁଛୁ, ସେଥିରେ ନରମ ହେବାକୁ ମତେ କହନା । ମୁଁ ସ୍ଥିରସଂକଳ୍ପ କରିଛି, ମୁଁ ଦ୍ୱିଧା କରିବି ନାହିଁ ମୁଁ କ୍ଷମା ଦେବି ନାହିଁ ମୁଁ ଇଞ୍ଚେ ହେଲେ ପଛକୁ ଘୁଞ୍ଚିବି ନାହିଁ— ଏବଂ ମୋ କଥା ଲୋକେ ଶୁଣିବେ ।"

ଏପରି ସାହସିକ ମନୋବୃତ୍ତି ଅତି ଅଳ୍ପ ସଂଖ୍ୟକ ଲୋକଙ୍କ ଭିତରେ ରହିଥିଲା । ଦାସତ୍ୱକୁ ବିରୋଧ କରୁଥିବା ଅଧିକାଂଶ ଲୋକ ଯେଉଁଠି ଦାସତ୍ୱ ପ୍ରଚଳନ ଥିଲା ସେଠି ହସ୍ତକ୍ଷେପ କରିବାକୁ ଚାହୁଁ ନ ଥିଲେ । ତଥାପି ଉତ୍ତର ଓ ଦକ୍ଷିଣ ଭିତରେ ବିବାଦ ବଢ଼ିଲା—କାରଣ ସେମାନଙ୍କର ବିଭିନ୍ନ ଅର୍ଥନୈତିକ ସ୍ୱାର୍ଥରୁ ଏହା ଉପୁଜିଥିଲା ଓ ଶୁଳ୍କ ପ୍ରଶ୍ନରେ ବିଶେଷ ଭାବରେ ବିବାଦ ଲାଗିଲା ।

୧୮୬୦ରେ ଆବ୍ରାହମ୍ ଲିଙ୍କନ୍ ଯୁକ୍ତରାଷ୍ଟ୍ରର ସଭାପତି ନିର୍ବାଚିତ ହେଲେ ଏବଂ ତାଙ୍କର ନିର୍ବାଚନ ହିଁ ଦକ୍ଷିଣାଞ୍ଚଳକୁ ବିଚ୍ଛିନ୍ନ ହେବାର ଏକ ସଙ୍କେତ ହୋଇଗଲା । ସେ ଦାସତ୍ୱର ବିରୋଧୀ ଥିଲେ, କିନ୍ତୁ ସେ ମଧ୍ୟ ପରିଷ୍କାର କହିଦେଲେ ଯେ ଯେଉଁଠି ଦାସତ୍ୱ ରହିଛି ସେଠି ହସ୍ତକ୍ଷେପ କରିବେ ନାହିଁ । ଏହାକୁ ନୂତନ ରାଜ୍ୟରେ ପ୍ରସାର ଲାଭିବାକୁ ଦେବା ବା ଏହାକୁ ଆଇନସଙ୍ଗତ କରିବା ଲାଗି ସେ ପ୍ରସ୍ତୁତ ନ ଥିଲେ । ଏହି ପ୍ରତିଶ୍ରୁତିରେ ଦକ୍ଷିଣ ରାଜ୍ୟମାନେ ସନ୍ତୁଷ୍ଟ ହେଲେ ନାହିଁ, ରାଜ୍ୟ ପରେ ରାଜ୍ୟ ଇଉନିୟନରୁ ବାହାରିଗଲେ । ଯୁକ୍ତରାଷ୍ଟ୍ର ଖଣ୍ଡ ଖଣ୍ଡ ହୋଇଯାଉଥିଲା । ନୂଆ ସଭାପତିଙ୍କ ସମ୍ମୁଖରେ ଏପରି ଭୀଷଣ ଅବସ୍ଥା ମାଡ଼ିଥିଲା । ଦକ୍ଷିଣକୁ ନିଜପଟକୁ ଆଣି ଏହି ଦେଶ ଭଙ୍ଗା ବନ୍ଦ କରିବା ନିମନ୍ତେ

ସେ ଆଉ ଏକ ଉଦ୍ୟମ କଲେ । ଦାସତ୍ୱ ଚଳାଇବାରେ ଅନୁମତି ଦେବା ସପକ୍ଷରେ ସେ ତାଙ୍କୁ ସମସ୍ତ ପ୍ରକାର ନିର୍ଭର ବାଣୀ ଶୁଣାଇଲେ । ସେ ମଧ୍ୟ କହିଲେ ଯେ (ଯେଉଁଠି ଏହାର ପ୍ରଚଳନ ଅଛି ) ଏହାକୁ ଶାସନବିଧାନର ଏକ ଅଙ୍ଗ କରିଦେବ, ତାହାହେଲେ ଏହା ସ୍ଥାୟୀ ହୋଇଯିବ । ପ୍ରକୃତରେ ଶାନ୍ତି ନିମନ୍ତେ ସେ ଯେତେଦୂର ସମ୍ଭବ ସେତେଦୂର ଯିବାକୁ ବରଂ ପ୍ରସ୍ତୁତ ଥିଲେ; କିନ୍ତୁ ଗୋଟିଏ କଥାରେ ସେ ରାଜି ହେଲେ ନାହିଁ, ତାହା ହେଉଛି ଉତ୍ତରାଞ୍ଚଳକୁ ଭାଙ୍ଗିଦେବା । କୌଣସି ରାଜ୍ୟର ଉତ୍ତରାଞ୍ଚଳରୁ ବାହାରିଯିବା ଅଧିକାରକୁ ସେ ସମ୍ପୂର୍ଣ୍ଣରୂପେ ଅସ୍ୱୀକାର କରିଦେଲେ ।

ଗୃହଯୁଦ୍ଧ ଏଡ଼ାଇବାଲାଗି ଲିଙ୍କନ୍‌ଙ୍କ ଉଦ୍ୟମ ବିଫଳ ହେଲା । ଦକ୍ଷିଣ ବାହାରିଯିବା ଲାଗି ସ୍ଥିର କରିଥିଲେ ଏବଂ ଏଗାରଟି ରାଜ୍ୟ ସେପରି କରିଥିଲେ, କେତେକ ପାଖଆଖ ରାଜ୍ୟ ଏଥି ସହିତ ସହାନୁଭୂତି ଦେଖାଉଥିଲେ । ଚାଲିଯାଉଥିବା ରାଜ୍ୟଗୁଡ଼ିକ ନିଜକୁ "କନ୍‌ଫେଡରେଟ୍ ଷ୍ଟେଟ୍‌ସ" (ସମ୍ମିଳିତ ରାଜ୍ୟ) ବୋଲି କହୁଥିଲେ ଏବଂ ଜାଫରସନ୍ ଡେଭିସଙ୍କୁ ନିଜର ସଭାପତି ନିର୍ବାଚନ କଲେ । ୧୮୬୧ ଏପ୍ରିଲ ମାସରେ ଗୃହଯୁଦ୍ଧ ଆରମ୍ଭ ହେଲା ଏବଂ ଏହା ଚାରିବର୍ଷ ଚାଲିଲା ଏହିକାଳ ଭିତରେ ଭାଇ ଭାଇ ବିରୁଦ୍ଧରେ ଓ ବନ୍ଧୁ ବନ୍ଧୁ ବିରୁଦ୍ଧରେ ଲଢ଼ିଲେ । ଯୁଦ୍ଧ ଚାଲିଥିବାରୁ ପ୍ରକାଣ୍ଡ ସେନା-ବାହିନୀ ଗଢ଼ିଉଠିଲା । ଉତ୍ତରର ଅନେକ ସୁବିଧା ଥିଲା । ଏହାର ଲୋକସଂଖ୍ୟା ଖୁବ୍ ବେଶୀ ଓ ଅଧିକ ଧନ ଥିଲା । ଏକ ଶିଳ୍ପଅଞ୍ଚଳ ହୋଇଥିବାରୁ ଏହାର ସାଜ ସରଞ୍ଜାମ ଥିଲା ବେଶୀ ଓ ଅଧିକ ରେଲବାଟ ମଧ୍ୟ ଥିଲା । କିନ୍ତୁ ଦକ୍ଷିଣରେ ଭଲ ଯୋଦ୍ଧା ଓ ସେନାପତି ଥିଲେ; ସେମାନଙ୍କ ଭିତରୁ ଜେନେରାଲ ଲି'ଙ୍କ ନାମ ଉଲ୍ଲେଖଯୋଗ୍ୟ ଏବଂ ପ୍ରଥମ ବିଜୟ ଦକ୍ଷିଣର ହେଲା । ଅବଶେଷରେ ଦକ୍ଷିଣର ଶକ୍ତି କ୍ଷୟ ହୋଇଗଲା । ଉତ୍ତରାଞ୍ଚଳର ନୌବାହିନୀ ଉପଦ୍ୱୀପ ବଜାରରୁ ଦକ୍ଷିଣକୁ ସମ୍ପୂର୍ଣ୍ଣରୂପେ କାଟିଦେଲା, ଏବଂ ତୂଳା ଓ ତମାଖୁ ରପ୍ତାନି ହୋଇ ପାରିଲା ନାହିଁ । ଦକ୍ଷିଣ ଏଥିରେ ପଙ୍ଗୁ ହୋଇପଡ଼ିଲା; କିନ୍ତୁ ଲଙ୍କାଶାୟାର ଉପରେ ଏହାର ମାରାତ୍ମକ ଫଳ ଫଳିଲା—ତୂଳା ଅଭାବରୁ ସେଠି ଅନେକ ମିଲ୍ କାମ ବନ୍ଦ ହୋଇଗଲା । ଲଙ୍କାଶାୟାରରେ ବେକାର ହୋଇଯାଉଥିବା ଶ୍ରମିକଙ୍କ ଭିତରେ ଘୋର ଦୁର୍ଦ୍ଦଶା ପଡ଼ିଲା ।

ଯୁଦ୍ଧ ସଂକ୍ରାନ୍ତରେ ସାଧାରଣତଃ ଇଂରେଜ ଲୋକମତ ଦକ୍ଷିଣ ସପକ୍ଷରେ ଥିଲା, ଅଥବା ଅନ୍ତତଃ ଧନୀଶ୍ରେଣୀମାନେ ଦକ୍ଷିଣ ସପକ୍ଷରେ ଥିଲେ । ଅଗ୍ରଗାମୀ ଦଳ ଉତ୍ତର ପକ୍ଷରେ ଥିଲେ ।

ଏହି ଗୃହଯୁଦ୍ଧର ପ୍ରଧାନ କାରଣ ଦାସପ୍ରଥା ନୁହେଁ । ମୁଁ ତଳେ କହିଛି, ଯେଉଁଠି ପ୍ରଚଳିତ ରହିଛି ସେଠି ତାହା ରଖିବା ନିମନ୍ତେ ଲିଙ୍କନ୍ ବରାବର ନିର୍ଭର ବାଣୀ ଶୁଣାଇଥିଲେ ।

ପ୍ରକୃତ ଗୋଳମାଳ ହେଲା ଉତ୍ତର ଓ ଦକ୍ଷିଣର ବିଭିନ୍ନ ଓ ବିରୋଧୀ ଅର୍ଥନୀତିକ ସ୍ୱାର୍ଥ ହେତୁ ଏବଂ ଶେଷରେ ଇଉନିୟନକୁ ବଜାୟ ରଖିବା ନିମନ୍ତେ ଲିଙ୍କନ୍ ଲଢେଇ କଲେ । ଏପରିକି ଯୁଦ୍ଧ ଆରମ୍ଭ ହୋଇଯିବା ପରେ ସୁଦ୍ଧା ଦାସତ୍ୱ ବିଷୟରେ ଲିଙ୍କନ୍ କିଛି ସ୍ପଷ୍ଟ ଘୋଷଣା କରି ନ ଥିଲେ; କାରଣ ଉତ୍ତରାଞ୍ଚଳରେ ଏହା ସପକ୍ଷରେ ନ ଥିବା ଅନେକ ଲୋକ ବିଗିଡ଼ିଯିବେ ବୋଲି ସେ ଭୟ କରୁଥିଲେ । ଯୁଦ୍ଧ ଚାଲିଥିବାରୁ ସେ ଅଧିକ ନିର୍ଦ୍ଦିଷ୍ଟ ହୋଇଗଲେ । ସେ ପ୍ରଥମେ ପ୍ରସ୍ତାବ କଲେ ଯେ ମାଲିକମାନଙ୍କୁ କ୍ଷତିପୂରଣ ଦେଇ କଂଗ୍ରେସ ଦାସମାନଙ୍କୁ ମୁକ୍ତକରୁ । ପରେ ଏହି କ୍ଷତିପୂରଣ ଦେବା କଥା ସେ ଛାଡ଼ିଲେ ଏବଂ ଶେଷରେ ୧୮୬୨ ମସିହା ସେପ୍ଟେମ୍ବରରେ ସେ 'ମୁକ୍ତି ଘୋଷଣାପତ୍ର' ବାହାର କଲେ । ଏଥିରେ ଘୋଷଣା ହେଲା, ଯେଉଁସବୁ ରାଜ୍ୟ ସରକାର ବିରୁଦ୍ଧରେ ବିଦ୍ରୋହ କରିଛନ୍ତି, ସେ ଦେଶମାନଙ୍କର ଦାସମାନେ ୧୮୬୩ ମସିହ ଜାନୁୟାରୀ ପହିଲି ପରେ ମୁକ୍ତ ହେବେ । ଏପରି ଘୋଷଣା କରିବାର ପ୍ରଧାନ କାରଣ ବୋଧହୁଏ ଥିଲା, ଯୁଦ୍ଧରେ ଦକ୍ଷିଣକୁ ଦୁର୍ବଳ କରିଦେବା ପାଇଁ । ଏହା ଫଳରେ ୪,୦୦୦,୦୦୦ ଦାସ ମୁକ୍ତହେଲେ ଏବଂ ଏଥିରେ କନ୍‌ଫେଡ଼େରେଟ୍ ଷ୍ଟେଟ୍‌ମାନଙ୍କରେ ଯେ ଗୋଳମାଳ ହେବାର ଆଶା କରାଯାଉଥିଲା ଏଥିରେ ସନ୍ଦେହ ନାହିଁ ।

ଦକ୍ଷିଣାଞ୍ଚଳ ସମ୍ପୂର୍ଣ୍ଣରୂପେ କ୍ଳାନ୍ତ ହୋଇଗଲେ ପରେ ୧୮୬୫ରେ ଗୃହଯୁଦ୍ଧ ଶେଷ ହେଲା । ଯେକୌଣସି ବେଳେ ଯୁଦ୍ଧ ଏକ ଭୀଷଣ ବ୍ୟାପାର; କିନ୍ତୁ ଗୃହଯୁଦ୍ଧ ତା'ଠାରୁ ଆହୁରି ଅଧିକ ଭୀଷଣ । ଏହି ଚାରିବର୍ଷ ଭୟାନକ ଯୁଦ୍ଧର ଅଧିକାଂଶ ବୋଝ ସଭାପତି ଲିଙ୍କନ୍‌ଙ୍କ ଉପରେ ପଡ଼ିଥିଲା ଏବଂ ସମସ୍ତ ପ୍ରକାର ହତାଶା ଓ ବିପତ୍ତି ସତ୍ତ୍ୱେ ଧୈର୍ଯ୍ୟ ଧରି ଲାଗିବାପାଇଁ ତାଙ୍କର ଯେଉଁ ଦୃଢ଼ ନିଷ୍ଠା ଥିଲା ମୁଖ୍ୟତଃ ତାହା ଯୋଗୁଁ ହିଁ ବିଜୟ ହାସଲ ହୋଇପାରିଥିଲା । ଖାଲି ଜିତିବା ତାଙ୍କର ଇଚ୍ଛା ନଥିଲା, ଯେତେଦୂର ସମ୍ଭବ କମ ଶତ୍ରୁତା ସୃଷ୍ଟି ହୋଇ ଏହା ଯେପରି ହୋଇପାରେ ସେଥିଲାଗି ସେ ଚେଷ୍ଟା କରିଥିଲେ । ତାହା ହେଲେ ଯେଉଁ ଇଉନିୟନ ଲାଗି ସେ ଯୁଦ୍ଧ କରୁଛନ୍ତି, ତାହା ବାସ୍ତବରେ ହୃଦୟର ମିଳନ ହେବ ଏବଂ ବଳ ପ୍ରୟୋଗ ନୁହେଁ । ତେଣୁ ଯୁଦ୍ଧରେ ଜୟ କରିସାରି ସେ ପରାଜିତ ଦକ୍ଷିଣ ଅଞ୍ଚଳ ପ୍ରତି ଉଦାର ଭାବ ଦେଖାଇଲେ; କିନ୍ତୁ କେତେଦିନ ଭିତରେ ଗୋଟାଏ ପାଗଳା ଲୋକ ତାଙ୍କୁ ଗୁଳିକରି ମାରିଦେଲା ।

ଆମେରିକାର ସର୍ବଶ୍ରେଷ୍ଠ ବୀରଙ୍କ ଭିତରେ ଆବ୍ରାହାମ ଲିଙ୍କନ୍ ଜଣେ । ପୃଥିବୀର ମହାନ୍ ଲୋକଙ୍କ ପର୍ଯ୍ୟାୟରେ ତାଙ୍କର ସ୍ଥାନ ରହିଛି । ସେ ଖୁବ୍ ଗ୍ରେଟ ଅବସ୍ଥାରୁ ଉପରକୁ ଉଠିଥିଲେ, ସେ ସ୍କୁଲରେ ଖୁବ୍ କମ ପଢ଼ିଥିଲେ; ଯାହା ବା ଶିକ୍ଷା ସେ ପାଇଥିଲେ ତାହା ବେଶି ଭାବରେ ତାଙ୍କ ନିଜ ଶ୍ରମରେ; ତଥାପି ସେ ଏକ ବଡ଼ ରାଜନୀତିଜ୍ଞ ଓ ବଡ଼ ବକ୍ତା ହୋଇପାରିଲେ ଏବଂ ଏକ ମହାନ୍ ସଙ୍କଟ ଭିତରେ ଦେଶକୁ ଚଳାଇନେଲେ ।

ଲିଙ୍କନ୍ ଦକ୍ଷିଣାଞ୍ଚଳରେ ଗୋରାମାନଙ୍କ ପ୍ରତି ଯେପରି ଉଦାର ହୋଇଥାନ୍ତେ ତାଙ୍କ ମୃତ୍ୟୁପରେ ଆମେରିକାନ୍ କଂଗ୍ରେସ ସେପରି ହେଲା ନାହିଁ । ଅନେକ ପ୍ରକାରେ ଦକ୍ଷିଣରୁ ଗୋରାମାନଙ୍କୁ ଶାସ୍ତି ଦିଆଗଲା ଏବଂ ଅନେକଙ୍କଠାରୁ ସେମାନଙ୍କ ଭୋଟ କ୍ଷମତା ଛଡ଼ାଇ ନିଆଗଲା । ଅନ୍ୟ-ପକ୍ଷରେ ନାଗରିକ ଭାବରେ ନିଗ୍ରୋମାନଙ୍କୁ ପୂର୍ଣ୍ଣ ନାଗରିକ କ୍ଷମତା ଦିଆଗଲେ ଏବଂ ଆମେରିକାନ ଶାସନବିଧାନର ଏହା ଅଙ୍ଗ ହେଲା । ଏହା ମଧ୍ୟ ଧାର୍ଯ୍ୟ କରାଗଲା ଯେ ଜାତି, ବର୍ଣ୍ଣ ବା ପୂର୍ବ ଦାସତ୍ୱ ନିମନ୍ତେ କୌଣସି ଷ୍ଟେଟ କୌଣସି ଲୋକଙ୍କୁ ଭୋଟ ଅଧିକାରରୁ ବଞ୍ଚିତ କରିପାରିବ ନାହିଁ ।

ନିଗ୍ରୋମାନେ ଏବେ ଆଇନସଙ୍ଗତ ଭାବରେ ମୁକ୍ତହେଲେ ଏବଂ ତାଙ୍କର ଭୋଟ ଅଧିକାର ହେଲା । କିନ୍ତୁ ଏଥିରେ ତାଙ୍କର କିଛି ଲାଭ ହେଲା ନାହିଁ; କାରଣ ସେମାନଙ୍କର ଆର୍ଥିକ ସ୍ଥିତି ପୂର୍ବବତ୍ ରହିଥିଲା । ମୁକ୍ତ ନିଗ୍ରୋମାନଙ୍କର କୌଣସି ସମ୍ପତ୍ତି ନ ଥିଲା ଏବଂ ତାଙ୍କୁ ନେଇ କଣ କରାଯିବ ଏହା ଏକ ସମସ୍ୟା ହେଲା । କେତେକ ନିଗ୍ରୋ ଉତ୍ତରାଞ୍ଚଳର ସହରମାନଙ୍କୁ ପଳାଇଗଲେ; କିନ୍ତୁ ଅଧିକାଂଶ ଯେଉଁଠି ଥିଲେ ସେଠାରେ ରହିଲେ, ପୂର୍ବରୁ ତାଙ୍କ ଗୋରା ପ୍ରଭୁମାନଙ୍କର ହାତମୁଠାରେ ଯେପରି ଥିଲେ ସେହିପରି ରହିଲେ । ଦିନମଜୁରିଆ ରୂପେ ସେମାନେ ତୁଳା ଚାଷଜମିରେ କାମ କଲେ—ଗୋରା ଖାମିନ୍ଦମାନେ ଯାହା ମୂଲ ଦେଉଥିଲେ ସେମାନଙ୍କୁ ତାହା ନେବାକୁ ପଡ଼ୁଥିଲା । ନିଗ୍ରୋମାନଙ୍କୁ ପ୍ରତ୍ୟକ୍ଷଭାବରେ ଆତଙ୍କ ଦ୍ୱାରା ଦବାଇରଖିବା ପାଇଁ ଦକ୍ଷିଣାଞ୍ଚଳର ଗୋରାମାନେ ନିଜେ ସଂଗଠିତ ହେଲେ । ଏକ ଅସାଧାରଣ ଗୁପ୍ତ ଅନୁଷ୍ଠାନ ଗଢ଼ାହେଲା—ଏହାର ନାମ "କୁ କ୍ଲକ୍ସ କ୍ଲାନ" ଏବଂ ଏହାର ସଭ୍ୟମାନେ ଗୁପ୍ତବେଶରେ ନିଗ୍ରୋମାନଙ୍କ ଭିତରେ ଆତଙ୍କ ସୃଷ୍ଟି କଲେ ଏବଂ ନିର୍ବାଚନରେ ଭୋଟ ଦେବାରେ ବାଧାଦେଲେ ।

ଗତ ଅର୍ଦ୍ଧ ଶତାବ୍ଦୀରେ ନିଗ୍ରୋମାନେ କିଛି ଉନ୍ନତି କରିଛନ୍ତି । ଅନେକେ ସଂପତ୍ତିର ମାଲିକ ହେଲେଣି ଏବଂ ସେମାନଙ୍କର କେତେକ ସୁନ୍ଦର ଶିକ୍ଷା ଅନୁଷ୍ଠାନ ବି ଅଛି । ତଥାପି ସେମାନେ ନିର୍ଦ୍ଦିଷ୍ଟରୂପେ ଏକ ପରାଧୀନ ଜାତି ହୋଇ ରହିଛନ୍ତି । ଯୁକ୍ତରାଷ୍ଟ୍ରରେ ଏପରି ଲୋକ ପ୍ରାୟ ୧୨,୦୦୦,୦୦୦ ଅଛନ୍ତି - ସମଗ୍ର ଲୋକସଂଖ୍ୟାର ଶତକଡ଼ା ପ୍ରାୟ ୧୦ ଭାଗ । ଉତ୍ତରର କେତେକ ଅଞ୍ଚଳ ପରି ଯେଉଁଠି ସେମାନେ ଅଳ୍ପସଂଖ୍ୟାରେ ଅଛନ୍ତି, ସେଠି ଚଳି ଯାଉଛନ୍ତି; କିନ୍ତୁ ସେମାନଙ୍କର ସଂଖ୍ୟା ବଢ଼ିବା ସଙ୍ଗେ ସଙ୍ଗେ ତାଙ୍କ ଉପରେ ଖୁବ୍ ଚାପ ଦିଆଯାଉଛି ଏବଂ ପୂର୍ବତନ ଦାସଙ୍କ ଅପେକ୍ଷା ସେମାନଙ୍କର ଅବସ୍ଥା କିଛି ଭଲ ନୁହେଁ, ଏହାହିଁ ସେମାନେ ଅନୁଭବ କରୁଛନ୍ତି ।

ପ୍ରତ୍ୟେକ ସ୍ଥାନରେ ସେମାନଙ୍କୁ ଅଲଗା କରାଯାଉଛି ଏବଂ ହୋଟେଲ, ଭୋଜନାଳୟ, ଗିର୍ଜା, କଲେଜ, ପାର୍କ, ଗାଧୋଇବା ପାଇଁ ସମୁଦ୍ରକୂଳ, ଟ୍ରାମ ଏବଂ ଏପରିକି ଦୋକାନମାନଙ୍କରେ ସୁଦ୍ଧା ଗୋରାମାନଙ୍କଠାରୁ ଦୂରରେ ରଖାଯାଏ । ରେଲରେ 'ଜିମ୍ କ୍ରୋ

କାର୍‌ସ୍’ ନାମକ ସ୍ପେଶାଲ ଗାଡ଼ିରେ ତାଙ୍କୁ ଯାତ୍ରା କରିବାକୁ ହୁଏ । ଆଇନ ଅନୁସାରେ ଗୋରା ଓ ନିଗ୍ରୋଙ୍କ ଭିତରେ ବିବାହ ନିଷେଧ । ବାସ୍ତବିକ ସକଳ ପ୍ରକାର ଅଦ୍ଭୁତ ଆଇନ୍ ରହିଛି । ଏପରିକି ୧୯୨୬ ମସିହାରେ ଭର୍ଜିନିଆ ରାଜ୍ୟରେ ଏକ ଆଇନ୍ ପାଶ୍ ହୋଇ ଏକ ଆସନରେ ଗୋରା ଓ କଳା ଲୋକ ବସିବା ନିଷେଧ କରାଯାଇଛି ।

ବେଳେ ବେଳେ ଗୋରା ଓ ନିଗ୍ରୋମାନଙ୍କ ଭିତରେ ଭୀଷଣ ଜାତିଗତ ଦଙ୍ଗାମାନ ହୋଇଯାଉଛି । ଦକ୍ଷିଣରେ ବିନା ବିଚାରରେ ଶାସ୍ତି ଦେବାର ବହୁ ଘଟଣା ଦେଖାଯାଏ; ଅର୍ଥାତ୍ କୌଣସି ଜନତା କିଛି ଅପରାଧ ପାଇଁ ଗୋଟିଏ ବ୍ୟକ୍ତିକୁ ଧରିଲେ ତାକୁ ମାରିପକାନ୍ତି । ଗୋରା ଜନତାଙ୍କ ଦ୍ୱାରା ନିଗ୍ରୋମାନେ ସାଧାରଣରେ ପୋଡ଼ାହେବାର ଘଟଣାସବୁ ଏବେ ଘଟିଛି ।

ସମଗ୍ର ଆମେରିକା ଓ ବିଶେଷତଃ ଦକ୍ଷିଣସ୍ଥ ଷ୍ଟେଟମାନଙ୍କରେ ନିଗ୍ରୋଙ୍କ ଅବସ୍ଥା ଅତି ଖରାପ । ଅନେକ ସମୟରେ ଶ୍ରମିକ ନ ମିଳିଲେ ନିରପରାଧ ନିଗ୍ରୋମାନଙ୍କୁ ଦକ୍ଷିଣର କେତେକ ଷ୍ଟେଟରେ କୌଣସି ଏକ ମନଗଢ଼ା ଅଭିଯୋଗରେ ଜେଲକୁ ପଠାଇ ଦିଆଯାଏ ଏବଂ ବନ୍ଦୀ ଶ୍ରମିକଙ୍କୁ ବ୍ୟକ୍ତିଗତ କଣ୍ଟ୍ରାକ୍‌ଟରମାନଙ୍କୁ ଭଡ଼ା ଦିଆଯାଏ । ଏହା ଅତ୍ୟନ୍ତ ଖରାପ; କିନ୍ତୁ ଏଥିରେ ଯାହା ଅବସ୍ଥା ଘଟେ, ତାହା ବଡ଼ ଭୟାନକ । ତେଣୁ ଆମେ ଦେଖୁଛୁ ଯେ କେବଳ ଆଇନଗତ ସ୍ୱାଧୀନତାରେ ବିଶେଷ କିଛି ଫାଇଦା ହୁଏନା ।

ତୁ ହାରିଏଟ୍ ବିଚର ଷ୍ଟୋଙ୍କର "ଟମ୍ କକାଙ୍କ କୁଟୀର" ( Uncle Tom's Cabin ) କଥା ପଢ଼ିଛୁ ବା ଶୁଣିଛୁ କି ? ଦକ୍ଷିଣ ଅଞ୍ଚଳର ଦାସ-ବେପାର ସମ୍ବନ୍ଧରେ ଏହି ବହି ଲେଖା ଏବଂ ଏଥିରେ ଅତି ବିମର୍ଷ କାହାଣୀ ବର୍ଣ୍ଣନା ରହିଛି । ଗୃହଯୁଦ୍ଧ ହେବାର ଦଶ ବର୍ଷ ପୂର୍ବରୁ ଏହା ବାହାରିଥିଲା ଏବଂ ଆମେରିକା ଲୋକଙ୍କୁ ଦାସତ୍ୱ ବିରୁଦ୍ଧରେ ଉଠାଇବାରେ ଖୁବ୍ ପ୍ରଭାବିତ କରିଥିଲା ।

## ୧୩୮ : ଆମେରିକାର ଅଦୃଶ୍ୟ ସାମ୍ରାଜ୍ୟ

ଫେବୃୟାରୀ ୨୮, ୧୯୩୩

ଗୃହଯୁଦ୍ଧ ଫଳରେ ଆମେରିକାରେ ଅନେକ ଯୁବକ ପ୍ରାଣଦାନ କଲେ ଏବଂ ଋଣଭାର ଅଧିକ ବଢ଼ିଲା; କିନ୍ତୁ ଦେଶ ନୂଆ ଓ ଶକ୍ତିପୂର୍ଣ୍ଣ ଥିଲା, କ୍ରମେ ବୃଦ୍ଧି ପାଇବାକୁ ଲାଗିଲା । ଏହାର ପ୍ରାକୃତିକ ସମ୍ପଦ ପ୍ରଚୁର ଥିଲା ଏବଂ ଖଣିଜପଦାର୍ଥରେ ବିଶେଷ ଭାବରେ ପରିପୂର୍ଣ୍ଣ ଥିଲା । କୋଇଲା, ଲୁହା, ପେଟ୍ରୋଲିୟମ—ଆଧୁନିକ ଶିଳ୍ପ ଓ ସଭ୍ୟତାର ଭିତ୍ତି ଏହି

ଧନୋଟି ଖଣିଜ ଦେଶରେ ପ୍ରଚୁର ପରିମାଣରେ ଥିଲା । ଜଳଶକ୍ତି ବି ପ୍ରଚୁର ଥିଲା, ସେଥିରୁ ବିଦ୍ୟୁତ୍‌ଶକ୍ତି ଜାତ ହୋଇପାରିଲା, ନାଏଗ୍ରା ଜଳପ୍ରପାତ ଏହାର ଏକ ଦୃଷ୍ଟାନ୍ତ । ଏକ ବିଶାଳ ଦେଶ, ତାହା ତୁଳନାରେ ଲୋକସଂଖ୍ୟା ଅଳ୍ପ ଏବଂ ପ୍ରତ୍ୟେକ ବ୍ୟକ୍ତିପାଇଁ ପ୍ରଗତି ଲାଗି ପ୍ରଚୁର ସୁବିଧା ଥିଲା । ଏହିରୂପେ ଏକ ଖଣିଜ ଦିଆର କିମ୍ବା ଶିଳ୍ପୋନ୍ନତ ଦେଶରୂପେ ବୃଦ୍ଧି ପାଇବାଲାଗି ଏହାର ସକଳ ସୁବିଧା ଥିଲା ଏବଂ ଦ୍ରୁତଗତିରେ ଏହା ସେପରି ହେବାକୁ ଲାଗିଲା । ୧୮୮୦ ବେଳକୁ ବିଦେଶ ବଜାରରେ ବ୍ରିଟିଶ ଶିଳ୍ପ ସହ ଆମେରିକା ଶିଳ୍ପ ପ୍ରତିଯୋଗିତା କରିବାକୁ ଆରମ୍ଭ କଲା । ଶହେବର୍ଷ ହେଲା ବିଦେଶୀ ବେପାରରେ ବ୍ରିଟେନ ଯେଉଁ ସହଜ କର୍ତ୍ତୃତ୍ୱ କରିଥିଲା, ଆମେରିକା ଓ ଜର୍ମାନୀ ତାହା ବନ୍ଦ କରିଦେଲେ ।

ଅନ୍ୟଦେଶରୁ ଲୋକ ଏଠାକୁ ଚାଲିଆସିଲେ । ଇଉରୋପର ସବୁପ୍ରକାର ଲୋକ—ଜର୍ମାନ, ସ୍କାଣ୍ଡେନେଭିଆନ୍, ଆଇରିଶ୍, ଇଟାଲିଆନ, ଇହୁଦୀ ଓ ପୋଲାଣ୍ଡବାସୀ ଇତ୍ୟାଦି ଆସିଲେ; ଅନେକେ ନିଜ ଦେଶରେ ରାଜନୀତିକ ଜୁଲୁମ ଯୋଗୁ ତଡ଼ାଖାଇ ଆସିଲେ ଏବଂ ଅନେକେ ଉନ୍ନତ ଅବସ୍ଥାରେ ରହିବାପାଇଁ ଆସି ପହଞ୍ଚିଲେ । ଇଉରୋପର ଲୋକସଂଖ୍ୟା ବହୁତ ବେଶି ହୋଇଯାଇଥିଲା; ବଳକା ଲୋକସବୁ ଆମେରିକାକୁ ଧାଇଁଲେ । ବିଭିନ୍ନ ଜାତି, ଦେଶ, ଭାଷା ଓ ଧର୍ମର ଏକ ଅପୂର୍ବ ମିଶ୍ରଣ ହେଲା । ଇଉରୋପରେ ପ୍ରତ୍ୟେକେ ଅଲଗା ଥିଲେ, ନିଜ ନିଜର ଶ୍ରେଷ୍ଠ ଦୁନିଆରେ ବାସ କରୁଥିଲେ, ଅନ୍ୟମାନଙ୍କ ପ୍ରତି ଘୃଣା ଓ ବିରୋଧ ପୂର୍ଣ୍ଣମାତ୍ରାରେ ଥିଲା । କିନ୍ତୁ ଏଠି ସମସ୍ତେ ଏକଜ ଏକ ନୂଆ ବାୟୁମଣ୍ଡଳ ଭିତରେ ପଡ଼ିଲେ; ପୁରୁଣା ଘୃଣା ପ୍ରତି କେହି ନଜର ଦେଲେ ନାହିଁ । ବାଧ୍ୟତାମୂଳକ ଓ ଏକାଭଳି ଶିକ୍ଷାପ୍ରଣାଳୀ ଦ୍ୱାରା ସେମାନଙ୍କର ନିଜ ଜାତିଗତ ମନୋଭାବ ଦୂର ହୋଇଗଲା ଏବଂ ଏହି ଜାତି ଗୋଳଘାଣ୍ଟ ଭିତରୁ ଆମେରିକାନ୍ ଶ୍ରେଣୀ ବାହାରିଲା । ପୁରୁଣା ଆଙ୍ଗ୍ଲୋସାକ୍ସନ ଜାତିମାନେ ଏବେ ସୁଦ୍ଧା ନିଜକୁ ବଡ଼ଲୋକ (ଧନୀ) ବୋଲି ଭାବୁଥିଲେ; ସେମାନେ ସମାଜପତି ଥିଲେ । ଏହା ପଛକୁ ଥିଲେ ଉତ୍ତର ଇଉରୋପର ଜାତିସବୁ । ଦକ୍ଷିଣ ଇଉରୋପ ବିଶେଷତଃ ଇଟାଲୀ ଲୋକଙ୍କୁ ଏହି ଉତ୍ତର ଇଉରୋପୀୟାନ୍‌ମାନେ ଘୃଣାଦୃଷ୍ଟିରେ ଦେଖୁଥିଲେ ଏବଂ ହେୟଦୃଷ୍ଟିରେ "ଡାଗୋସ୍" ବୋଲି ଡାକୁଥିଲେ । ନିଗ୍ରୋମାନେ ଅବଶ୍ୟ ସମ୍ପୂର୍ଣ୍ଣ ଅଲଗା ଥିଲେ । ସେମାନେ ଏହି ସ୍ତରର ତଳେ ଥିଲେ ଏବଂ କୌଣସି ଗୋରା ଜାତି ସହ ମିଶୁ ନ ଥିଲେ । ପଶ୍ଚିମ ଉପକୂଳରେ କେତେକ ଚୀନା, ଜାପାନୀ ଓ ଭାରତୀୟ ଥିଲେ; ଶ୍ରମିକପାଇଁ ଚାହିଦା ବଢ଼ିଥିଲାବେଳେ ସେମାନେ ଆସିଥିଲେ । ଏସିଆରୁ ଆସିଥିବା ଏହି ଜାତିମାନେ ମଧ୍ୟ ଅନ୍ୟମାନଙ୍କଠାରୁ ଅଲଗା ହୋଇ ରହୁଥିଲେ ।

ବିସ୍ତୃତ ରେଲ ଓ ଟେଲିଗ୍ରାଫ୍ ତାର ଫଳରେ ଏହି ବିଶାଳ ଦେଶ ଏକଜ ହୋଇପାରିଲା । ଆଗକାଳରେ ଏହା ହେବା ସମ୍ଭବ ନ ଥିଲା, ସେତେବେଳେ ଗୋଟିଏ ଅଞ୍ଚଳରୁ

ଅନ୍ୟ ଅଞ୍ଚଳକୁ ଯିବା ନିମନ୍ତେ ସପ୍ତାହ ସପ୍ତାହ ଓ ମାସ ମାସ ଲାଗିଯାଉଥିଲା । ଆମେ ଦେଖିଚେ ଅତୀତରେ ଏସିଆ ଓ ଇଉରୋପରେ ବଡ଼ ବଡ଼ ସାମ୍ରାଜ୍ୟସବୁ ଥିଲା । ଯାତାୟାତ ପଥ ଓ ଯାନବାହନର ଅସୁବିଧା ହେତୁ ଏ ସବୁ ଏକାନ୍ତ ସଯୋଗ ହୋଇପାରୁ ନ ଥିଲା । ସାମ୍ରାଜ୍ୟର ବିଭିନ୍ନ ଅଂଶ କାର୍ଯ୍ୟତଃ ସ୍ୱତନ୍ତ୍ର ଥିଲେ, ନିଜର ଅଲଗା ଅଲଗା ଜୀବନ କଟାଉଥିଲେ । ସେମାନେ କେବଳ ସମ୍ରାଟଙ୍କର କର୍ତ୍ତୃତ୍ୱ ସ୍ୱୀକାର କରୁଥିଲେ ଓ ତାଙ୍କୁ କର ଦେଉଥିଲେ । ଏକ ମୁଖିଆ ଅଧୀନରେ ବିଭିନ୍ନ ଦେଶର ବଡ଼ ହୁଗୁଳା ସମ୍ମିଳନ ହେଉଥିଲା । ସେମାନଙ୍କ ଭିତରେ ମୋଟାଏ ସାଧାରଣ ଦୃଷ୍ଟିକୋଣ କିଛି ନ ଥିଲା । ଯାହା ହେଉ ଯୁକ୍ତରାଷ୍ଟ୍ର ରେଳ, ଅନ୍ୟ ଗମନାଗମନ ଉପାୟ ଏବଂ ଏକାଭଳିଆ ଶିକ୍ଷା ଯୋଗୁଁ ବିଭିନ୍ନ ଜାତି ଭିତରେ ଗୋଟାଏ ସାଧାରଣ ଦୃଷ୍ଟିକୋଣ ସୃଷ୍ଟି କରାଇପାରିଲା । କ୍ରମେ ବିଭିନ୍ନ ଜାତିସବୁ ଏକ ସାଧାରଣଗୋଷ୍ଠୀରେ ମିଶିଗଲେ । ଏହି ଧାରା ପୂର୍ଣ୍ଣ ହୋଇ ନାହିଁ, ଆଜି ବି ଚାଲିଛି । ଏପରି ବିସ୍ତୃତ ପରିମାଣରେ ମିଶିଯିବାର ଦୃଷ୍ଟାନ୍ତ ଆଉ ଇତିହାସରେ ନାହିଁ ।

ଇଉରୋପୀୟ ଗୋଳମାଳ ଓ ଇଉରୋପୀୟ ଶକ୍ତିମାନଙ୍କର ଚକ୍ରାନ୍ତରୁ ଅଲଗା ରହିବାପାଇଁ ଯୁକ୍ତରାଷ୍ଟ୍ର ଚେଷ୍ଟାକଲା ଏବଂ ଇଉରୋପ ମଧ୍ୟ ଆମେରିକାର ଉତ୍ତର ଓ ଦକ୍ଷିଣ ସବୁ ଅଞ୍ଚଳରୁ ଅଲଗା ହୋଇ ରହୁ ଏହା ସେମାନେ ଚାହୁଁଥିଲେ । ଇଉରୋପୀୟ ଶକ୍ତି—"ପବିତ୍ର ମିଳନ"—ସ୍ପେନର ସାମ୍ରାଜ୍ୟ ରକ୍ଷା କରିବାପାଇଁ ଦକ୍ଷିଣ ଆମେରିକାରେ ଯେ ହସ୍ତକ୍ଷେପ କରୁଥିଲେ ସେଥିସକାଶେ ଯୁକ୍ତରାଷ୍ଟ୍ରର ସଭାପତି ମନ୍ରୋ ଯେଉଁ ଆଦେଶ ଧାର୍ଯ୍ୟ କରିଥିଲେ ସେ ସମ୍ବନ୍ଧରେ ମୁଁ ତତେ କହିଛି—ଏହାକୁ "ମନ୍ରୋ ଡକ୍ଟ୍ରିନ୍" କହନ୍ତି । ମନ୍ରୋ ଘୋଷଣା କଲେ ଯେ ସମଗ୍ର ଆମେରିକାରେ କୌଣସି ଇଉରୋପୀୟ ଶକ୍ତିର ସଶସ୍ତ୍ର ହସ୍ତକ୍ଷେପ ଯୁକ୍ତରାଷ୍ଟ୍ର ଆଦୌ ସହ୍ୟ କରିପାରିବ ନାହିଁ । ଏହି ଘୋଷଣା ହେତୁ ନୂତନ ଦକ୍ଷିଣ ଆମେରିକା ସାଧାରଣତନ୍ତ୍ର ଇଉରୋପୀୟ ଶକ୍ତିମାନଙ୍କ କବଳରୁ ରକ୍ଷା ପାଇଲା । ଏଥିଲେ ଥରେ ପ୍ରାୟ ଇଂଲଣ୍ଡ ସହ ଯୁଦ୍ଧ ଲାଗିଯାଇଥିଲା । କିନ୍ତୁ ଆଜିକି ଶହେବର୍ଷରୁ ଅଧିକ ହେବ ଆମେରିକା ସଫଳତାର ସହ ଏହି ନୀତି ରଖିଆସିଛି ।

ଦକ୍ଷିଣ ଆମେରିକା ଉତ୍ତରଠାରୁ ଅତ୍ୟନ୍ତ ପୃଥକ୍ ଏବଂ ଶହେବର୍ଷ ଭିତରେ ଏହି ପାର୍ଥକ୍ୟ ଊଣା ହୋଇ ନାହିଁ । ଉତ୍ତରରେ କାନାଡ଼ା ଅଧିକଭାବରେ ଯୁକ୍ତରାଷ୍ଟ୍ରପରି ହେଉଛି । କିନ୍ତୁ ଦକ୍ଷିଣ ପ୍ରଜାତନ୍ତ୍ରସବୁ ସେପରି ନୁହେଁ । ମୁଁ ତତେ ଥରେ ଯାହା କହିଥିଲି ଦକ୍ଷିଣ ଆମେରିକାର ଏହିସବୁ ପ୍ରଜାତନ୍ତ୍ର ଏବଂ ଉତ୍ତର ଆମେରିକାରେ ଅନ୍ତର୍ଭୁକ୍ତ ଥିଲେ ସୁଦ୍ଧା ମେକ୍ସିକୋ ଲାଟିନ୍ ପ୍ରଜାତନ୍ତ୍ର । ଯୁକ୍ତରାଷ୍ଟ୍ର ଓ ମେକ୍ସିକୋ ସୀମାନ୍ତ ହିଁ ଦୁଇଟି ବିଭିନ୍ନ ଜାତି ଓ କୃଷ୍ଟିକୁ ବିଭକ୍ତ କରିଛି । ଏହାର ଦକ୍ଷିଣକୁ କେନ୍ଦ୍ର ଆମେରିକା ଆରମ୍ଭ ଏବଂ ସମଗ୍ର ଦକ୍ଷିଣ ଆମେରିକା ମହାଦେଶରେ ସ୍ପେନ ଓ ପର୍ତ୍ତୁଗାଲ ଭାଷା ହିଁ ଲୋକଙ୍କର ଭାଷା ।

ସ୍ପାନିଶ୍ ଭାଷା ହିଁ ପ୍ରକୃତରେ ପ୍ରାଧାନ୍ୟ ଲାଭକରିଛି—ମୋର ବିଶ୍ୱାସ, ପର୍ତ୍ତୁଗୀଜ୍ କେବଳ ବ୍ରାଜିଲରେ ହିଁ ପ୍ରଚଳିତ । ଦକ୍ଷିଣ ଆମେରିକା ହେତୁ ସ୍ପାନିଶ୍ ଭାଷା ଅଳ୍ପ ପୃଥିବୀର ଏକ ପ୍ରଧାନ ଭାଷା ହୋଇପାରିଛି । ସମ୍ଭବତଃ ରେଡ୍‌ଇଣ୍ଡ ଏବେ ସୁଦ୍ଧା ସ୍ପେନରୁ ଲାଟିନ ଆମେରିକା ପାଏ । ଯୁକ୍ତରାଷ୍ଟ୍ର ଓ କାନାଡ଼ାରେ ଯେପରି ଜାତିଗତ ଭେଦଭାବ ଦେଖାଯାଏ ଏଠାରେ ସେପରି ନାହିଁ । ସ୍ପାନିଶ୍ ଲୋକ ଏବଂ ସେଠାର ମୂଳ ଅଧିବାସୀ ରେଡ୍ ଇଣ୍ଡିୟାନ୍ ଏବଂ କେତେକ ପରିମାଣରେ ନିଗ୍ରୋମାନଙ୍କ ଭିତରେ ଆନ୍ତର୍ବିବାହ ଫଳରେ ଏକ ମିଶ୍ରିତ ଜାତି ସୃଷ୍ଟି ହୋଇଯାଇଛି ।

ଶହେ ବର୍ଷର ସ୍ୱାଧୀନତା ସତ୍ତ୍ୱେ, ଦକ୍ଷିଣରେ ଲାଟିନ ପ୍ରଜାତନ୍ତ୍ରରେ ପୁରାପୁରି ଶାନ୍ତି ନାହିଁ । ବେଳେ ବେଳେ ସେଠି ବିପ୍ଳବ ହୋଇଛି, ସାମରିକ ଉତ୍‌ଥାନର ହୋଇଛନ୍ତି ଏବଂ ସେଠାର ସଦା ପରିବର୍ତ୍ତନଶୀଳ ରାଜନୀତି ଓ ଶାସନର ଗତି ଜାଣିବା ସହଜ ନୁହେଁ । ଦକ୍ଷିଣ ଆମେରିକାର ତିନୋଟି ମୁଖ୍ୟ ରାଜ୍ୟ ହେଉଛି—ଆର୍ଜେଣ୍ଟିନା, ବ୍ରାଜିଲ ଏବଂ ଚିଲି —ଏହି ରାଜ୍ୟର ପ୍ରଥମ ଅକ୍ଷରରୁ ଏହାକୁ ଏ. ବି. ସି. ବୋଲି କହନ୍ତି । ଉତ୍ତର ଆମେରିକାରେ ମେକ୍‌ସିକୋ ଏକ ମୁଖ୍ୟ ଲାଟିନ୍ ଆମେରିକା ଦେଶ ।

ମନ୍ରୋ ଡକ୍‌ଟ୍ରିନ୍ ହେତୁ ଲାଟିନ ଆମେରିକାରେ ଇଉରୋପୀୟ ଶକ୍ତିର ହସ୍ତକ୍ଷେପ କରିବାରେ ଯୁକ୍ତରାଷ୍ଟ୍ର ବାଧା ଦେଇପାରିଲା । କିନ୍ତୁ ସେମାନେ ଧନଶାଳୀ ହେବା ସଙ୍ଗେ ସଙ୍ଗେ ବିସ୍ତାର ପାଇଁ ନୂତନ କ୍ଷେତ୍ର ସେମାନେ ବାହାରେ ଖୋଜିଲେ । ସ୍ୱାଭାବିକରୂପେ ନଜର ପ୍ରଥମେ ପଡ଼ିଲା ଲାଟିନ୍ ଆମେରିକା ଉପରେ । ପୁରୁଣା ଢଙ୍ଗରେ ସାମ୍ରାଜ୍ୟ ଗଢ଼ିଲା ପରି ସେମାନେ ବଳପୂର୍ବକ ଏଥିରୁ କୌଣସି ଦେଶ ଦଖଲ କରିବା ନିମନ୍ତେ ଉଦ୍ୟମ କଲେ ନାହିଁ । ସେମାନେ ଏଠିକି ମାଲ ପଠାଇଲେ ଓ ବଜାର ଦଖଲ କଲେ । ଦକ୍ଷିଣରେ ରେଳବାଇ, ଖଣି ଓ ଅନ୍ୟାନ୍ୟ ନୂତନ ଉଦ୍ୟମରେ ସେମାନେ ଧନ ଖଟାଇଲେ । ସେମାନେ ସରକାରକୁ ଟଙ୍କା ଧାରଦେଲେ ଏବଂ ବିପ୍ଳବବେଳେ ସମସ୍ତ ସମୟରେ ଯୁଦ୍ଧରତ ଦଳମାନଙ୍କୁ ଟଙ୍କା ଧାର ବି ଦେଲେ । "ସେମାନେ" ବୋଇଲେ ହେଉଛି, ଆମେରିକାର ପୁଞ୍ଜିପତି ଓ ବ୍ୟାଙ୍କରମାନେ; କିନ୍ତୁ ତାଙ୍କ ପଶ୍ଚାତ୍‌ରେ ସମର୍ଥନ ଥାଏ ଆମେରିକା ସରକାରର । ଯେଉଁ ଧନ ସେମାନେ ଧାର ଦେଇଥିଲେ ବା ଖଟାଇଥିଲେ ତାହା ଜରିଆରେ ଧୀରେ ଧୀରେ ଦକ୍ଷିଣ ଓ ମଧ୍ୟ-ଆମେରିକାର ଅନେକ ଛୋଟ ଛୋଟ ରାଜ୍ୟର ସରକାର ଏହି ବ୍ୟାଙ୍କରଙ୍କ କବଳକୁ ଆସିଲା । ଏହି ବ୍ୟାଙ୍କରମାନେ ଗୋଟିଏ ଦଳକୁ ଧନ ବା ଅସ୍ତ୍ରଶସ୍ତ୍ର ଆଗରୁ ଦେଇ ଏବ ଅନ୍ୟକୁ ନ ଦେଇ ବିପ୍ଳବ ବି ସୃଷ୍ଟି କରୁଥିଲେ । ଏହି ବ୍ୟାଙ୍କର ଓ ପୁଞ୍ଜିପତିଙ୍କ ପଛରେ ଯୁକ୍ତରାଷ୍ଟ୍ରର ଏତେ ବଡ଼ ସରକାର ଥାଏ, ତେଣୁ ଏହି କ୍ଷୁଦ୍ର ଓ ଦୁର୍ବଳ ଦକ୍ଷିଣ ଆମେରିକା ଦେଶଗୁଡ଼ିକ ଆଉ କ'ଣ କରିପାରନ୍ତେ ? ବେଳେବେଳେ ଶୃଙ୍ଖଳା ରକ୍ଷାକରିବ ବାହାନାରେ ପ୍ରକୃତରେ ଯୁକ୍ତରାଷ୍ଟ୍ର ସରକାର ଏହି ରାଜ୍ୟର ଏକଦଳକୁ ସାହାଯ୍ୟ କରିବା ନିମନ୍ତେ ସେନା ପଠାଉଥିଲେ ।

ଏହିପରି ଭାବରେ ଦକ୍ଷିଣର ଏହି ଶ୍ରେଷ୍ଠ ଶ୍ରେଷ୍ଠ ରାଜ୍ୟମାନଙ୍କ ଉପରେ ଆମେରିକା ପୁଞ୍ଜିପତିଙ୍କର ପୂରା କର୍ତ୍ତୃତ୍ୱ ହୋଇଗଲା—ସେମାନେ ବ୍ୟାଙ୍କ, ରେଲଓ୍ୱେ ଓ ଖଣିସବୁ ଚଳାଇଲେ ଏବଂ ନିଜର ସୁବିଧାଲାଗି ଶୋଷଣ ବି କଲେ । ଏପରିକି ଲାଟିନ୍ ଆମେରିକାର ବଡ଼ ବଡ଼ ରାଜ୍ୟମାନଙ୍କରେ ମୂଳଧନ ଓ ଟଙ୍କା ଉପରେ ପ୍ରାଧାନ୍ୟ ସକାଶେ ଏମାନଙ୍କର ବହୁତ ପ୍ରଭାବ ପଡ଼ିଥିଲା; ଅର୍ଥାତ୍ ଏହି ଦେଶମାନଙ୍କରୁ ଯୁକ୍ତରାଷ୍ଟ୍ର ସଂପଦ ଅର୍ଥାତ୍ ଏହାର ଅନେକ ଅଂଶ ସଂଯୋଗ କରିନେଲା । ଏହା ଲକ୍ଷ୍ୟ କରିବା ଯୋଗ୍ୟ—ଏହା ଏକ ନୂତନ ପ୍ରକାର ସାମ୍ରାଜ୍ୟ, ଆଧୁନିକ ଧରଣର ସାମ୍ରାଜ୍ୟ । ଏହା ଅଦୃଶ୍ୟ ଓ ଅର୍ଥନୀତିକ ଏବଂ କୌଣସି ସୁସ୍ପଷ୍ଟ ବାହ୍ୟ ଚିହ୍ନ ନ ଥାଇ ଶୋଷଣ କରେ ଓ ପ୍ରାଧାନ୍ୟ କରେ । ଦକ୍ଷିଣ ଆମେରିକା ପ୍ରଜାତନ୍ତ୍ରସବୁ ରାଜନୀତିକ ଦୃଷ୍ଟିରେ ଏବଂ ଆନ୍ତର୍ଜାତିକ ଦୃଷ୍ଟିରେ ମୁକ୍ତ ଓ ସ୍ୱାଧୀନ । ମାନଚିତ୍ରରେ ସେଗୁଡ଼ିକ ବିଶାଳ ରାଜ୍ୟ ଏବଂ ସେଗୁଡ଼ିକ କୌଣସି ପ୍ରକାରେ ପରାଧୀନ ନୁହନ୍ତି ବୋଲି ଦେଖାଇବାର କିଛି ନାହିଁ; ଅଥଚ ଅଧିକାଂଶ ରାଜ୍ୟରେ ଯୁକ୍ତରାଷ୍ଟ୍ରର ପୁଞ୍ଜି କର୍ତ୍ତୃତ୍ୱ ରହିଛି ।

ଆମର ଇତିହାସ ପ୍ରତି ସଂକ୍ଷିପ୍ତ ଦୃଷ୍ଟିରେ ବିଭିନ୍ନ ଯୁଗରେ ନାନା ପ୍ରକାରର ସାମ୍ରାଜ୍ୟବାଦ ଆମେ ଦେଖିଲେ । ପ୍ରଥମେ ଯୁଦ୍ଧରେ ଏକ ଦେଶ ଅନ୍ୟ ପ୍ରକାରର ସାମ୍ରାଜ୍ୟ-ବାଦ ଆମେ ଦେଖିଲେ । ପ୍ରଥମେ ଯୁଦ୍ଧରେ ଏକ ଦେଶ ଅନ୍ୟ ଦେଶ ଜୟ କରିବା ଅର୍ଥ ଥିଲା ଯେ ବିଜେତା ବିଜିତ ଦେଶ ଓ ସେଠା ଅଧିବାସୀଙ୍କ ପ୍ରତି ମନଇଚ୍ଛା ବ୍ୟବହାର କରିପାରନ୍ତି । ସେମାନେ ଦେଶ ଓ ଅଧିବାସୀଙ୍କି ସଂଯୋଗ କରୁଥିଲେ—ଅର୍ଥାତ୍ ବିଜିତ ଲୋକେ ଦାସ ହେଉଥିଲେ । ଏହା ଥିଲା ସାଧାରଣ ରୀତି । ବାବିଲୋନିୟାନମାନଙ୍କ ଦ୍ୱାରା ପରାସ୍ତ ହେବାରୁ ଇହୁଦୀମାନଙ୍କୁ କିପରି ବନ୍ଦୀ କରାଯାଇଥିଲା ଏହା ବାଇବଲରେ ପଢ଼ିବାକୁ ମିଳେ ଏବଂ ଏପରି ଅନେକ ଦୃଷ୍ଟାନ୍ତ ରହିଛି । କ୍ରମେ ଏହା ସ୍ଥାନରେ ଆଉ ଏକ ଧରଣର ସାମ୍ରାଜ୍ୟବାଦ ଆସିଲା—ଏଥିରେ କେବଳ ଦେଶକୁ ସଂଯୋଗ କରାଗଲା ଏବଂ ଲୋକେ ଦାସ ହୋଇ ରହିଲେ । ସନ୍ଦେହ ନାହିଁ ଯେ ସେମାନେ ଆବିଷ୍କାର କଲେ ଯେ ଟିକସ ଏବଂ ଅନ୍ୟ ଶୋଷଣ ଉପାୟ ଦ୍ୱାରା ଏଥିରୁ ଧନ କମାଇବା ସହଜ ଥିଲା । ଏହି ପ୍ରକାର ସାମ୍ରାଜ୍ୟବାଦ ହିଁ ଆମ ଭିତରୁ ଅଧିକାଂଶ ଜାଣନ୍ତି—ଭାରତରେ ବ୍ରିଟିଶ ସାମ୍ରାଜ୍ୟ ଏହିପରି ଏବଂ ଆମେ ମନେକରୁ ଯେ ବ୍ରିଟିଶଙ୍କ ହାତରେ ଯଦି ଭାରତର ପ୍ରକୃତ ରାଜନୀତିକ ନିୟନ୍ତ୍ରଣ ନ ଥାନ୍ତା, ତାହାହେଲେ ଭାରତ ସ୍ୱାଧୀନ ହୋଇଥାଆନ୍ତା । କିନ୍ତୁ ଏପରି ଧରଣର ସାମ୍ରାଜ୍ୟ ଅନ୍ତ ହୋଇଯାଉଛି ଏବଂ ଏହା ସ୍ଥାନରେ ଅଧିକ ଉନ୍ନତ ଓ ପୋଖତ ଧରଣର ସାମ୍ରାଜ୍ୟ ଦେଖା-ଦେଉଛି । ଏହି ଶେଷ ଧରଣର ସାମ୍ରାଜ୍ୟରେ ଦେଶ ସୁଦ୍ଧା ସଂଯୋଗ କରାଯାଏନା; ଏହା କେବଳ ଧନ କିମ୍ବା ସେ ଦେଶର ଧନଉତ୍ପାଦନକାରୀ ଯନ୍ତ୍ରକୁ ସଂଯୋଗ କରିନିଏ । ଏହା କରିବାଦ୍ୱାରା ସମ୍ପୂର୍ଣ୍ଣ ଭାବରେ ନିଜର ସୁବିଧାଲାଗି ଏହା ଦେଶକୁ ଶୋଷଣ କରିପାରେ ଏବଂ ଅଧିକ ଭାବରେ ଏହାକୁ ଆୟତ୍ତରେ ରଖିପାରେ ଏବଂ ତାହା ସଙ୍ଗେ ସଙ୍ଗେ ଦେଶକୁ ଶାସନ

କରିବା ବା ଦମନ କରିବାର କୌଣସି ଦାୟିତ୍ୱ ବୋହିବାକୁ ପଡ଼େ ନାହିଁ । ଫଳସ୍ୱରୂପ ସେ ଦେଶ ଏବଂ ସେଠାର ଅଧିବାସୀ ବିଶେଷ କିଛି ଗୋଳମାଳ ନ କରି କର୍ତ୍ତୃତ୍ୱରେ ଆସନ୍ତି ଏବଂ ସେମାନଙ୍କୁ ଅଧିକ ଉପରେ ନିୟନ୍ତ୍ରଣ କରାଯାଇପାରେ ।

ଏହିରୂପେ କାଳକ୍ରମେ ସାମ୍ରାଜ୍ୟବାଦ ନିଜକୁ ସଜାଡ଼ି ନେଇ ଠିକଣା କରିଛି ଏବଂ ଆଧୁନିକ ଧରଣର ସାମ୍ରାଜ୍ୟ ହେଉଛି ଅଦୃଶ୍ୟ ଅର୍ଥନୀତିକ ସାମ୍ରାଜ୍ୟ ଯେତେବେଳେ ଦାସତ୍ୱ ଲୋପହେଲା ଏବଂ ପରେ ସାଆନ୍ତିଆ ଧରଣର ଅର୍ଦ୍ଧଦାସତ୍ୱ ବି ଗଲା, ସେତେବେଳେ ଲୋକେ ସ୍ୱାଧୀନ ହେବେ ବୋଲି ମନେ କରାଗଲା । ଯାହାହେଉ ଅଳ୍ପଦିନ ପରେ ଦେଖାଗଲା ଯେ ଯେଉଁମାନଙ୍କ ହାତରେ ଧନ କ୍ଷମତା ରହିଛି, ଲୋକେ ଏବେ ସୁଦ୍ଧା ତାଙ୍କ ଦ୍ୱାରା ଶୋଷିତ ଓ ପରିଚାଳିତ ହେଉଛନ୍ତି । ଦାସ ଓ ଅର୍ଦ୍ଧଦାସରୁ ଲୋକେ ମଜୁର-ଦାସ ହେଲେ; ସେମାନଙ୍କ ପାଖରୁ ସ୍ୱାଧୀନତା ବହୁଦୂରରେ ଥିଲି । ଏହି ରାଜ୍ୟମାନଙ୍କର ଅବସ୍ଥା ବି ସେହିପରି । ଲୋକେ ଭାବନ୍ତି ଯେ ଏକ ଦେଶର ଅନ୍ୟ ଦେଶ ଉପରେ ପ୍ରାଧାନ୍ୟ ହିଁ ଏକମାତ୍ର ଗୋଳମାଳର କାରଣ ଏବଂ ଯଦି ଏହା ଦୂର ହୋଇଯାଏ ତେବେ ସ୍ୱାଧୀନତା ଆପେ ଆପେ ଆସିଯିବ, କିନ୍ତୁ ଏହା ଯେ ଘଟିବ ସେପରି ନୁହେଁ । କାରଣ ଆମେ ଦେଖୁଛେ ରାଜନୀତିକ ଦୃଷ୍ଟିରେ ସ୍ୱାଧୀନ ଦେଶସବୁ ଅର୍ଥନୀତିକ ପ୍ରାଧାନ୍ୟ ହେତୁ ଅନ୍ୟ ଦେଶର ସମ୍ପୂର୍ଣ୍ଣ ହାତମୁଠାରେ ରହିଯାଆନ୍ତି । ଭାରତରେ ବ୍ରିଟିଶ ସାମ୍ରାଜ୍ୟରେ ଏକଥା ସୁସ୍ପଷ୍ଟ । ବ୍ରିଟେନର ଭାରତ ଉପରେ ରାଜନୀତିକ କର୍ତ୍ତୃତ୍ୱ ରହିଛି । ଏହି ଦୃଶ୍ୟମାନ ସାମ୍ରାଜ୍ୟ ସଙ୍ଗେ ସଙ୍ଗେ ଏବଂ ଏହାର ଏକ ଆବଶ୍ୟକୀୟ ଅଙ୍ଗରୂପେ ବ୍ରିଟେନର ଭାରତ ଉପରେ ଆର୍ଥିକ ପ୍ରାଧାନ୍ୟ ବି ରହିଛି । ଖୁବ୍ ସମ୍ଭବ ଭାରତ ଉପରୁ ବ୍ରିଟେନର ଏହି ଦୃଶ୍ୟମାନ କର୍ତ୍ତୃତ୍ୱ ଦୂରହେବା ବେଶି ଡେରି ନାହିଁ ଏବଂ ତଥାପି ଏକ ଅଦୃଶ୍ୟ ସାମ୍ରାଜ୍ୟ ପରି ଆର୍ଥିକ କର୍ତ୍ତୃତ୍ୱ ରହିପାରେ । ଏହା ଯଦି ହୁଏ, ତେବେ ବ୍ରିଟେନ ଦ୍ୱାରା ଭାରତର ଅର୍ଥନୀତିକ ଶୋଷଣ ଚାଲିଥିବ ।

ପ୍ରାଧାନ୍ୟ କରୁଥିବା ଶକ୍ତି ପକ୍ଷରେ ଅର୍ଥନୀତିକ ସାମ୍ରାଜ୍ୟବାଦ ହିଁ ପ୍ରାଧାନ୍ୟ କରିବାର ସବୁଠାରୁ ଅଳ୍ପ କଷ୍ଟଦାୟକ ଉପାୟ । ରାଜନୀତିକ କର୍ତ୍ତୃତ୍ୱ ହେତୁ ଯେପରି ପରିମାଣରେ ଅସନ୍ତୋଷ ଦେଖାଯାଏ, ଏଥିରେ ସେପରି ହୁଏ ନାହିଁ; କାରଣ ଅନେକେ ଏହା ଦେଖି ପାରନ୍ତି ନାହିଁ । କିନ୍ତୁ ଯେତେବେଳେ ଦଂଶନଟା ଅନୁଭୂତ ହୁଏ, ସେତେବେଳେ ଏହାର ମନ୍ଦଫଳ ଲୋକେ ଦେଖିପାରନ୍ତି ଏବଂ ଅସନ୍ତୋଷ ଜାହିର କରନ୍ତି । ବର୍ତ୍ତମାନ ଲାଟିନ ଆମେରିକାରେ ଯୁକ୍ତରାଷ୍ଟ୍ର ପ୍ରତି ସେପରି ଶ୍ରଦ୍ଧା ନାହିଁ ଏବଂ ଉତ୍ତର ଆମେରିକା ପ୍ରାଧାନ୍ୟର ବିରୋଧ କରିବା ନିମନ୍ତେ ଲାଟିନ୍-ଆମେରିକାନ୍ ଲୋକେ ଏକଜୁଟ ହୋଇ ଗୋଟାଏ ଗୋଷ୍ଠୀ କରିବା ନିମନ୍ତେ ଅନେକ ଉଦ୍ୟମ ହୋଇଛି । ସେମାନେ ନିଜ ଦେଶର ବାରମ୍ବାର ଘଟୁଥିବା ରାଜପ୍ରାସାଦ ବିପ୍ଲବ ଓ ପରସ୍ପର ଝଗଡ଼ାରୁ ତ୍ରାହି ନ ପାଇବା ପର୍ଯ୍ୟନ୍ତ ବିଶେଷ କିଛି ହେବାର ସମ୍ଭାବନା ନାହିଁ ।

ଯୁକ୍ତରାଷ୍ଟ୍ରର ବର୍ଦ୍ଧିଷ୍ଣୁମାନ ସାମ୍ରାଜ୍ୟ ଫିଲିପାଇନ ଦ୍ୱୀପପୁଞ୍ଜ ପର୍ଯ୍ୟନ୍ତ ବିସ୍ତାର ଲାଭକଲା । ଆମେରିକା ସ୍ପେନ୍ ସହିତ ଏକ ଯୁଦ୍ଧ ପରେ ଏହା ଦଖଲ କଲା, ସେ ବିଷୟ ପୂର୍ବର ଏକ ସ୍ଥଳରେ ମୁଁ କହିଛି । ୧୮୯୮ରେ ଆଟଲାଣ୍ଟିକ କ୍ୟୁବା ଦ୍ୱୀପରେ ଏହି ଯୁଦ୍ଧ ଆରମ୍ଭ ହେଲା । କ୍ୟୁବା ସ୍ୱାଧୀନ ହେଲା; କିନ୍ତୁ ନାମକୁ ମାତ୍ର । କ୍ୟୁବା ଓ ହେଟି ଉପରେ ଆମେରିକାର କର୍ତ୍ତୃତ୍ୱ ରହିଲା ।

ପ୍ରାୟ ୧୨ ବର୍ଷ ପୂର୍ବେ ପାନାମା କେନାଲ ଖୋଲାଗଲା । ଏହା ମଧ୍ୟ ଆମେରିକାରେ ଏକ ସଙ୍କୀର୍ଣ୍ଣ ଧାର ଏବଂ ଆଟଲାଣ୍ଟିକ ସହ ପ୍ରଶାନ୍ତ ମହାସାଗରକୁ ଯୋଗକରେ । ସୁଏଜ୍ କେନାଲ ତିଆରି କରିଥିବା ଫର୍ଡିନାଣ୍ଡ ଡି ଲେସେପ୍ସ ପ୍ରାୟ ୫୦ ବର୍ଷ ତଳେ ଏହି ଯୋଜନା କରିଥିଲେ । କିନ୍ତୁ ସେ ବିପଦରେ ପଡ଼ିଲେ ଏବଂ ଆମେରିକାନମାନେ ଏହି କେନାଲ ତିଆରି କଲେ । ମେଲେରିଆ ଓ ପୀତଜ୍ୱର ଆଦିରେ ସେମାନେ ଖୁବ୍ କଷ୍ଟ ଭୋଗିଲେ, କିନ୍ତୁ ସେଠି ଏହି ରୋଗକୁ ଶେଷ କରିବା ନିମନ୍ତେ ସେମାନେ ଲାଗିପଡ଼ିଲେ ଏବଂ କୃତକାର୍ଯ୍ୟ ହେଲେ । ଯେଉଁସବୁ ଉତ୍ପତ୍ତି ସ୍ଥାନରେ ମେଲେରିଆ ମଶା ଓ ଅନ୍ୟ ରୋଗଜୀବାଣୁ ଜନ୍ମହୁଅନ୍ତି ତାକୁ ଦୂର କରିଦେଲେ ଏବଂ କେନାଲ ଅଞ୍ଚଳକୁ ସମ୍ପୂର୍ଣ୍ଣ ସ୍ୱାସ୍ଥ୍ୟଜନକ କରିଦେଲେ । କେନାଲଟି କ୍ଷୁଦ୍ର ପାନାମା ପ୍ରଜାତନ୍ତ୍ର ରାଜ୍ୟରେ ଅବସ୍ଥିତ; କିନ୍ତୁ ଏହା ଯୁକ୍ତରାଷ୍ଟ୍ର ଓ କ୍ଷୁଦ୍ର ପ୍ରଜାତନ୍ତ୍ର ଉଭୟଙ୍କ ଅଧୀନରେ ରହିଛି । ଆମେରିକା ପକ୍ଷରେ ଏହା ଏକ ମହାନ୍ ଆଶୀର୍ବାଦ, ନଚେତ କେତେଦୂର ବୁଲି ଦକ୍ଷିଣ ଆମେରିକାକୁ ଯାଉଥିଲା । ତଥାପି ସୁଏଜ୍ କେନାଲ ପରି ପାନାମା କେନାଲର ଗୁରୁତ୍ୱ ସେତେ ବେଶି ନୁହେଁ ।

ତେଣୁ ଯୁକ୍ତରାଷ୍ଟ୍ର ଦିନକୁ ଦିନ ବଳବାନ୍, ସମ୍ପଦଶାଳୀ ହେଲା ଏବଂ ଅନ୍ୟ ଜିନିଷ ଭିତରେ ଲକ୍ଷପତି ଓ ଗଗନଚୁମ୍ବୀ ପ୍ରାସାଦମାନ ପ୍ରସ୍ତୁତ ହେଲା । ସେମାନେ ଅନେକ ଭାବରେ ଇଉରୋପ ସହିତ ପ୍ରତିଯୋଗିତା କଲେ ଏବଂ ତାକୁ ବଳିପଡ଼ିଲେ । ଶିଳ୍ପ ଦିଗରେ ସେମାନେ ପୃଥିବୀର ମୁଖ୍ୟ ଜାତି ହେଲେ ଏବଂ ସେଠା ଶ୍ରମିକଙ୍କର ଜୀବନଧାରଣ ଷ୍ଟାଣ୍ଡାର୍ଡ଼ ଅନ୍ୟ ଯେକୌଣସି ସ୍ଥାନ ଅପେକ୍ଷା ଉଚ୍ଚତର ହେଲା । ୧୯ଶ ଶତାବ୍ଦୀରେ ଇଂଲଣ୍ଡ ପରି ଏଠାରେ ଏହି ସମୃଦ୍ଧି ଯୋଗୁ ସାମ୍ୟବାଦୀ ଓ ଅନ୍ୟ ଅଗ୍ରଗାମୀ ମତବାଦ ସମର୍ଥନ ପାଇଲା ନାହିଁ । ଅଳ୍ପ କେତେକଙ୍କୁ ବାଦ୍ ଦେଲେ ଆମେରିକାନ୍ ଶ୍ରମିକ ଅତ୍ୟନ୍ତ ମାନ୍ଦା ଓ ରକ୍ଷଣଶୀଳ । ଏମାନେ ଅପେକ୍ଷାକୃତ ଭଲ ମଜୁରି ପାଆନ୍ତି । ଏକ ସନ୍ଦେହଜନକ ଉନ୍ନତି କାମନାରେ ଏହା କାହିଁକି ବର୍ତ୍ତମାନ ସ୍ୱାଚ୍ଛନ୍ଦ୍ୟକୁ ଛାଡ଼ିବ ? ଇଟାଲିୟାନ ଓ ଘଣା ବ୍ୟକ୍ତିକରୂପେ କଥିତ "ଡାଗୋସ୍"ମାନେ ହିଁ ମୁଖ୍ୟତଃ ଏଠାରେ ଶ୍ରମିକ । ଏମାନେ ଦୁର୍ବଳ ଓ ଅସଂଗଠିତ ଏବଂ ଏମାନଙ୍କୁ ଘୃଣାଦୃଷ୍ଟିରେ ଦେଖାଯାଏ । ଏପରିକି ଉଚ୍ଚ ବେତନଭୋଗୀ କର୍ମିପଟୁ ଶ୍ରମିକମାନେ ମଧ୍ୟ ନିଜକୁ ଏହି "ଡାଗୋସ"ମାନଠାରୁ ସ୍ୱତନ୍ତ୍ରଶ୍ରେଣୀ ବୋଲି ବିଚାରନ୍ତି ।

ଆମେରିକାର ରାଜନୀତିରେ ଦୁଇଟି ଦଳ ଗଢ଼ି ଉଠିଲେ—ପ୍ରଜାତନ୍ତ୍ରବାଦୀ (ରିପବ୍ଲିକାନ) ଓ ଗଣତନ୍ତ୍ରବାଦୀ (ଡେମୋକ୍ରାଟିକ୍)। ଇଂଲଣ୍ଡ ପରି ଏବଂ ଏପରିକି ଇଂଲଣ୍ଡଠାରୁ ଆହୁରି ବେଶୀ ଏହି ଦଳଗୁଡ଼ିକ ଧନିକ ଶ୍ରେଣୀର ପ୍ରତିନିଧି ଏବଂ ଏ ଦୁହିଁଙ୍କ ଭିତରେ ନୀତିଗତ ପାର୍ଥକ୍ୟ କିଛି ନାହିଁ।

ପୃଥିବୀଯୁଦ୍ଧ ବେଳକୁ ଏପରି ଅବସ୍ଥା ଥିଲା ଏବଂ ଶେଷରେ ଯୁଦ୍ଧ ସମୁଦ୍ର ଭିତରକୁ ଆମେରିକାକୁ ଟାଣିନେଲା।

## ୧୩୯ : ଆୟର୍ଲଣ୍ଡ ଓ ଇଂଲଣ୍ଡ ଭିତରେ ୭୦୦ ବର୍ଷ ବ୍ୟାପୀ ସଂଘର୍ଷ

ମାର୍ଚ୍ଚ ୪, ୧୯୩୩

ଚାଲ, ପୁଣି ଥରେ ଆଟଲାଣ୍ଟିକ ପାର ହୋଇ ପୁରାତନ ଜଗତକୁ ଯିବା। ସମୁଦ୍ର ବା ଆକାଶ ପଥରେ କୌଣସି ଯାତ୍ରୀ ପ୍ରଥମେ ଆୟର୍ଲଣ୍ଡକୁ ଦେଖେ; ତେଣୁ ଆମେ ଏଠି ପ୍ରଥମେ ରହିବା। ଇଉରୋପର ସୁଦୂର ପଶ୍ଚିମରେ ଏହି ସବୁଜ ଓ ସୁନ୍ଦର ଦ୍ୱୀପଟି ଆଟଲାଣ୍ଟିକ ମହାସାଗର ଭିତରକୁ ପ୍ରବେଶ କରିଛି। ଏହା ଏକ କ୍ଷୁଦ୍ର ଦ୍ୱୀପ। ପୃଥିବୀ ଇତିହାସର ପ୍ରଧାନ ସ୍ରୋତଠାରୁ ଦୂରରେ ରହିଛି; କିନ୍ତୁ ଏହା କ୍ଷୁଦ୍ର ହୋଇଥିବାରୁ ରୋମାଞ୍ଚ-ପୂର୍ଣ୍ଣ ଏବଂ ଗତ କେତେ ଶତାବ୍ଦୀ ହେଲା ଜାତୀୟ ସ୍ୱାଧୀନତା ସଂଗ୍ରାମରେ ଅଜେୟ ସାହସ ଓ ତ୍ୟାଗର ଭାବ ଦେଖାଇଆସିଛି। ତାର ଏକ ଶକ୍ତିଶାଳୀ ପଡ଼ୋଶୀ ବିରୁଦ୍ଧରେ ଏହି ସଂଗ୍ରାମରେ ଆୟର୍ଲଣ୍ଡ ବିସ୍ମୟଜନକ ଧୈର୍ଯ୍ୟ ଦେଖାଇଛି। ଏହି ବିବାଦ ୭୫୦ ବର୍ଷ ପୂର୍ବେ ଆରମ୍ଭ ହୋଇଥିଲା ଏବଂ ଆଜି ସୁଦ୍ଧା ଏହା ଶାନ୍ତ ହୋଇ ନାହିଁ। ଭାରତ, ଚୀନ ଓ ଅନ୍ୟତ୍ର ବ୍ରିଟିଶ ସାମ୍ରାଜ୍ୟବାଦ କାର୍ଯ୍ୟ କରୁଥିବାର ଆମେ ଦେଖିଛେ। କିନ୍ତୁ ଆଦ୍ୟମୁକାଳରୁ ଆୟର୍ଲଣ୍ଡକୁ ଏହାର ଚାପ ସହିବାକୁ ପଡ଼ିଛି। ତଥାପି ତାହା କେତେକ ସ୍ୱେଚ୍ଛାକୃତ ଭାବରେ ଏହାକୁ ମାନି ନେଇ ନାହିଁ ଏବଂ ପ୍ରାୟ ପ୍ରତ୍ୟେକ ପୁରୁଷରେ ଇଂଲଣ୍ଡ ବିରୁଦ୍ଧରେ ବିଦ୍ରୋହ ହୋଇଛି। ତାର ସାହସିକ ସନ୍ତାନମାନେ ସ୍ୱାଧୀନତା ପାଇଁ ଲଢ଼ାଇକରି ମରିଛନ୍ତି କିମ୍ବା ଇଂରେଜ ଅଧିକାରୀମାନଙ୍କ ଦ୍ୱାରା ଫାଶି ପାଇଛନ୍ତି। ନିଜ ଦେଶକୁ ସେମାନେ ଏତେ ଭଲ ପାଆନ୍ତି—ଅଥଚ ବହୁସଂଖ୍ୟକ ଲୋକ ଘର ଛାଡ଼ି ଚାଲିଯାଇଛନ୍ତି ଓ ବିଦେଶରେ ରହିଛନ୍ତି। ଇଂଲଣ୍ଡ ସହିତ ଲଢ଼ାଇ କରୁଥିବା ବିଦେଶୀ ସେନାଙ୍କ ସହିତ ଅନେକ ଯୋଗ ଦେଇଛନ୍ତି, ତାହାହେଲେ ତାଙ୍କ ନିଜର ମାତୃଭୂମି ଉପରେ ଯେଉଁ ଦେଶ ପ୍ରାଧାନ୍ୟ କରୁଛି ଓ

ଉଚ୍ଚାକାଂକ୍ଷା କରୁଛି ତାହା ବିରୁଦ୍ଧରେ ଶକ୍ତି ପ୍ରୟୋଗର ଏକ ସୁଯୋଗ ପାଇବ । ଆୟର୍ଲାଣ୍ଡର ନିର୍ବାସିତ ଲୋକେ ଅନେକ ଦୂର ଦେଶମାନଙ୍କରେ ବ୍ୟାପି ରହିଲେ ଏବଂ ସେମାନେ ଯେଉଁଠିକି ଗଲେ ତାଙ୍କ ସାଥିରେ ଆୟର୍ଲାଣ୍ଡର ହୃଦୟକୁ ନେଇଗଲେ ।

ଅଭାଗା ବ୍ୟକ୍ତିବିଶେଷ ଏବଂ ଅତ୍ୟାଚାରିତ ଓ ଯୁଦ୍ଧରତ ଦେଶ—ଯେଉଁମାନେ ବର୍ତ୍ତମାନ ଅବସ୍ଥାରେ ଅସନ୍ତୁଷ୍ଟ ରହିଥାନ୍ତି ଓ ସେଥିରୁ ଆନନ୍ଦ ପାଆନ୍ତି ନାହିଁ, ସେମାନେ ଅତୀତ ପ୍ରତି ଦୃଷ୍ଟିପାତ କରନ୍ତି ଏବଂ ସେଥିରୁ ସାନ୍ତ୍ୱନା ପାଇବାର ଚେଷ୍ଟା କରନ୍ତି । ସେମାନେ ଅତୀତର ବଢ଼େଇ କରନ୍ତି ଏବଂ ବିଲୁପ୍ତ ମହାନତା କଥା ଚିନ୍ତାକରି ସେଥିରେ ସନ୍ତୋଷ ପାଆନ୍ତି । ବର୍ତ୍ତମାନ ଯେତେବେଳେ ଛିନ୍ନଛିନ୍ନ ହୋଇଥାଏ, ସେତେବେଳେ ଅତୀତ ଏକ ଆଶ୍ରୟସ୍ଥଳ ହୁଏ ଆରାମ ଓ ପ୍ରେରଣା ଦାନକରେ । ପୁରୁଣା ଅସୁବିଧାସବୁ ଯନ୍ତ୍ରଣା ଦିଏ ଏବଂ ଭୁଲି ହୁଏନା । ଏପରି ସର୍ବଦା ପଶ୍ଚାତ୍ ପ୍ରତି ଦୃଷ୍ଟି ପକାଇବା ଏକ ଜାତି ପକ୍ଷରେ ଉନ୍ନତିର ଚିହ୍ନ ନୁହେଁ । ସ୍ୱାସ୍ଥ୍ୟବାନ ମଣିଷ ଓ ସ୍ୱାସ୍ଥ୍ୟସମ୍ପନ୍ନ ଦେଶସବୁ ବର୍ତ୍ତମାନର ହିଁ କାର୍ଯ୍ୟ କରନ୍ତି ଏବଂ ଭବିଷ୍ୟତ ପ୍ରତି ଦୃଷ୍ଟି ପକାନ୍ତି । କିନ୍ତୁ ମଣିଷ ବା ଜାତି ସ୍ୱାଧୀନ ନ ହୋଇଥିଲେ ସ୍ୱାସ୍ଥ୍ୟବାନ ହୋଇପାରିବ ନାହିଁ ଏବଂ କେତେ ସେ ବା ଏପରି ଜାତି ଅତୀତ ପ୍ରତି ଦୃଷ୍ଟି ପକାଇବା ସ୍ୱାଭାବିକ ଏବଂ ଆଂଶିକ ଭାବରେ ଅତୀତରେ ହିଁ ବାସ କରନ୍ତି ।

ଆୟର୍ଲାଣ୍ଡ ଏବେ ପୁରୁଣା ଅତୀତରେ ରହିଛି ଏବଂ ଆଇରିଶ୍ ଲୋକେ ଆଗକାଳର ସ୍ୱାଧୀନ ନ ଥିବା ବେଳର ସ୍ମୃତିକୁ ମୂଲ୍ୟବାନ ମନେକରି ରଖନ୍ତି ଏବଂ ସ୍ୱାଧୀନତା ପାଇଁ ସେମାନଙ୍କର ସଂଗ୍ରାମ ଓ ପ୍ରୟାତନ ଅଭିଯୋଗସବୁ ବିଶ୍ୱବର ସ୍ମରଣ ରଖିଛନ୍ତି । ଅତୀତକୁ ଖ୍ରୀଷ୍ଟ ପରେ ୬ଷ୍ଠ ଶତାବ୍ଦୀରେ ଆଜି ୧୪୦୦ ବର୍ଷ ପୂର୍ବକୁ ସେମାନେ ନଜର ପକାନ୍ତି—ଯେତେବେଳେ ଆୟର୍ଲାଣ୍ଡ ପଶ୍ଚିମ ଇଉରୋପର ଶିକ୍ଷାକେନ୍ଦ୍ର ଥିଲା ଏବଂ ଦୂର-ଦୂରାନ୍ତରୁ ଛାତ୍ରମାନେ ସେଠିକି ଆସୁଥିଲେ । ରୋମ ସାମ୍ରାଜ୍ୟର ପତନ ହେଲା ଏବଂ ଗଥ୍ ଓ ହୁଣମାନେ ରୋମ ସଭ୍ୟତାକୁ ଧ୍ୱଂସ କଲେ । କଥିତ ଅଛି ଯେ ଏହି ସମୟରେ ଇଉରୋପରେ ସଂସ୍କୃତି ପୁନରୁଦ୍ଧାର ହେବା ପର୍ଯ୍ୟନ୍ତ ଆୟର୍ଲାଣ୍ଡ ହିଁ ସଂସ୍କୃତି ଦୀପ ଜଳାଇ ରଖିଥିଲା । ବହୁ ଆଗରୁ ଆୟର୍ଲାଣ୍ଡରେ ଖ୍ରୀଷ୍ଟଧର୍ମ ପ୍ରସାର ହୋଇଥିଲା । ଆୟର୍ଲାଣ୍ଡର ପୃଷ୍ଠପୋଷକ ଋଷି ସେଣ୍ଟ ପାଟ୍ରିକ୍ ଏହା ଆଣିଥିଲେ ବୋଲି ଧରାଯାଏ । ଆୟର୍ଲାଣ୍ଡରୁ ଏହା ଇଂଲଣ୍ଡର ଉତ୍ତରକୁ ବିସ୍ତାର ଲାଭକଲା । ଆୟର୍ଲାଣ୍ଡରେ ଅନେକ ମଠ (Monasteries) ସ୍ଥାପିତ ହେଲା ଏବଂ ଭାରତରେ ଆଶ୍ରମ ଓ ବୌଦ୍ଧ ମଠମାନଙ୍କ ପରି ଏହା ମଧ୍ୟ ଶିକ୍ଷାକେନ୍ଦ୍ର ହେଲା - ଏଠ ଅନେକ ସମୟରେ ଖୋଲା ଆକାଶ ତଳେ ଶିକ୍ଷା ଦିଆ ଯାଉଥିଲା । ଖ୍ରୀଷ୍ଟଧର୍ମ ହିଦେନ୍ (Heathen) ବା ବିଧର୍ମୀଙ୍କ ଭିତରେ ପ୍ରଚାର କରିବା କ୍ରମରେ ଏହି ମଠରୁ ପାଦ୍ରୀମାନେ ଉତ୍ତର ଓ ପଶ୍ଚିମ ଇଉରୋପକୁ ଯାଉଥିଲେ । ସୁନ୍ଦର ହସ୍ତଲିପିସବୁ ଲେଖାଗଲା ଏବଂ ଆଇରିଶ୍ ମଠମାନଙ୍କର ସନ୍ନ୍ୟାସୀଙ୍କଦ୍ୱାରା ଏହା ପ୍ରକଟିତ

ହେଲା । ଓ ନ୍ଲନ୍‌ରେ ଏହିପରି ଏକ ସୁନ୍ଦର ହସ୍ତଲିପି ରଖାହୋଇଛି-- ଏହାକୁ "ବୁକ୍ ଅଫ୍ କେଲ୍‌ସ" (Book of Kells) କହନ୍ତି—ଏହା ବୋଧହୁଏ ବାରଶହ ବର୍ଷ ପୂର୍ବର ଲେଖା ।

୬ଷ୍ଠ ଶତାବ୍ଦୀଠାରୁ ଏହି ୦୦ ବା ୫୦୦ ବର୍ଷ କାଳକୁ ଅନେକ ଆଇରିଶ ଲୋକେ ଆୟର୍ଲଣ୍ଡ ପକ୍ଷରେ ଏକପ୍ରକାର ସୁବର୍ଣ୍ଣଯୁଗ ବୋଲି ବିଚାରନ୍ତି—ଏହି ସମୟରେ ଗେଲିକ୍ (Gaelic) ସଂସ୍କୃତି ଖୁବ୍ ଉନ୍ନତ ଥିଲା । ସମ୍ଭବତଃ କାଳର ଦୂରତା ହିଁ ଏହି ପୁରୁଣା ଦିନକୁ ଆହୁରି ମୁଗ୍ଧକର କରିପକାଏ ଏବଂ ଯାହା ପ୍ରକୃତରେ ଥିଲା ତାହା ଅପେକ୍ଷା ଅଧିକ ବଡ଼ ବୋଧହୁଏ । ସେତେବେଳେ ଆୟର୍ଲଣ୍ଡ ଅନେକ ଜାତିରେ ବିଭକ୍ତ ହୋଇଗଲା ଏବଂ ଏହି ଜାତିମାନେ ବରାବର ନିଜ ଭିତରେ ସଂଗ୍ରାମ କରୁଥାନ୍ତି । ଭାରତପରି ଆୟର୍ଲଣ୍ଡର ଦୁର୍ବଳତା ହେଉଛି ପରସ୍ପର ଭିତରେ ବିବାଦ । ତାପରେ ଆସିଲେ ଡେନ୍‌ସ (Danes) । ଡେନ୍‌ମାର୍କ ଲୋକ ଓ ନର୍ସମେନ ସ୍କାଣ୍ଡିନେଭିଆବାସୀ (Norsemen) ଏବଂ ଇଂଲଣ୍ଡ ଓ ଫ୍ରାନ୍‌ସପରି ସେମାନେ ଆଇରିଶ୍ ଲୋକଙ୍କୁ ହଇରାଣ କଲେ ଏବଂ ବିସ୍ତୃତ ଅଞ୍ଚଳସବୁ ଦଖଲ କଲେ । ୧୧ଶ ଶତାବ୍ଦୀ ଆରମ୍ଭରେ ଆଇରିଶ୍ ରାଜା ବ୍ରାୟାନ୍ ବୋରୁମା ପ୍ରସିଦ୍ଧି ଲାଭ କଲେ, ଡେନ୍‌ସଙ୍କୁ ପରାସ୍ତ କଲେ ଏବଂ କିଛିକ୍ଷଣ ପାଇଁ ଆୟର୍ଲଣ୍ଡକୁ ଏକତ୍ର କଲେ; କିନ୍ତୁ ତାଙ୍କର ମୃତ୍ୟୁପରେ ଦେଶ ପୁଣି ବିଭକ୍ତ ହୋଇଗଲା ।

ତୋର ମନେଥିବ ୧୧ଶ ଶତାବ୍ଦୀରେ ବିଜେତା ଉଇଲିୟମ୍‌ଙ୍କ ନେତୃତ୍ୱରେ ନରମାନ୍‌ମାନେ ଇଂଲଣ୍ଡ ଜୟ କରିଥିଲେ । ଏକଶହ ବର୍ଷ ପରେ ଏହି ଆଙ୍ଗ୍ଲୋ-ନରମାନ୍‌ମାନେ ଆୟର୍ଲଣ୍ଡ ଆକ୍ରମଣ କଲେ । ସେମାନେ ଯେଉଁ ଅଂଶ ଦଖଲ କଲେ ତାହାକୁ "ପେଲ" କହନ୍ତି । ଏଥିରୁ ବୋଧହୁଏ ଗୋଟାଏ ସାଧାରଣ ଉକ୍ତି "ବିୟଣ୍ଡ ଦ ପେଲ" ଅର୍ଥାତ୍ ସୁବିଧାଭୋଗୀ ଶ୍ରେଣୀ ବା ଏକ ସାମାଜିକଗୋଷ୍ଠୀ ବାହାରେ ବୋଲି ବ୍ୟବହାର ହୋଇଛି । ୧୧୬୯ରେ ଏହି ଆଙ୍ଗ୍ଲୋ-ନରମାନ୍ ଅଭିଯାନ ପୁରୁଣା ଗେଲିକ୍ ସଭ୍ୟତା ଉପରେ କ୍ରୂର ଆଘାତ କଲା ଏବଂ ଆଇରିଶ୍ ଜାତିମାନଙ୍କ ସହ ବରାବର ସଂଗ୍ରାମର ଏହା ହିଁ ଆରମ୍ଭ ମାତ୍ର । ଏହି ଯୁଦ୍ଧ ଶହ ଶହ ବର୍ଷ ଧରି ଚାଲିଲା ଏବଂ ଏଥିରେ ଚରମ ବର୍ବରତା ଓ କ୍ରୂରତା ଦେଖାଯାଇଥିଲା । ଇଂରେଜ ଜାତି (ଆଙ୍ଗ୍ଲୋ-ନରମାନଙ୍କୁ ଏବେ ଏହି ନାମରେ ଡକାଯାଇ ପାରେ) ଆଇରିଶ୍‌ମାନଙ୍କୁ ଏକପ୍ରକାର ଅର୍ଦ୍ଧବର୍ବର ଜାତିଦୃଷ୍ଟିରେ ଦେଖନ୍ତି । ଜାତିରେ ପାର୍ଥକ୍ୟ ରହିଛି—ଇଂରେଜମାନେ ଆଙ୍ଗ୍ଲୋ-ସାକ୍‌ସନ ଏବଂ ଆଇରିଶ୍ ହେଉଛନ୍ତି କେଲ୍‌ଟସ; ପରେ ଧର୍ମରେ ପାର୍ଥକ୍ୟ ହେଲା—ଇଂରେଜ ଓ ସ୍କଟ୍‌ମାନେ ପ୍ରୋଟେଷ୍ଟାଣ୍ଟ ହେଲେ ଏବଂ ଆଇରିଶ୍‌ମାନେ ରୋମାନ୍ କାଥଲିକରେ ବିଶ୍ୱାସ ରଖିଲେ । ତେଣୁ ଏହି ଆଙ୍ଗ୍ଲୋ-ଆଇରିଶ୍ ଯୁଦ୍ଧରେ ଜାତିଗତ ଓ ଧର୍ମ ସଂକ୍ରାନ୍ତ ଯୁଦ୍ଧର ତିକ୍ତତା ଭରିଥିଲା । ଏହି ଦୁଇଜାତି ମିଶିବାରେ ଇଂରେଜମାନେ ଜାଣିଶୁଣି ବାଧା ଦେଲେ । ଇଂରେଜ ଓ ଆଇରିଶ୍‌ଙ୍କ ମଧ୍ୟରେ ଅନ୍ତର୍ବିବାହ ନିଷେଧ କରି ଏକ ଆଇନ ମଧ୍ୟ ପାସ୍ ହେଲା (ଏହାକୁ କିଲ୍‌କେନି ଆଇନ କହନ୍ତି ।)

ଆୟର୍ଲଣ୍ଡରେ ବିଦ୍ରୋହ ପରେ ବିଦ୍ରୋହ ହେଲା ଏବଂ ପ୍ରତ୍ୟେକ ବିଦ୍ରୋହ ଅତି ନିଷ୍ଠୁର ଭାବରେ ଦମନ କରାଗଲା । ଆଇରିଶ୍‌ମାନେ ସ୍ୱାଭାବିକଭାବେ ସେମାନଙ୍କର ବିଦେଶୀ ଶାସକ ଅତ୍ୟାଚାରୀଙ୍କୁ ଘୃଣା କଲେ ଏବଂ ସୁଯୋଗ ପାଇବା ମାତ୍ରକେ ବିଦ୍ରୋହ କରି ଉଠୁଥିଲେ ଏବଂ ଏହା ବ୍ୟତୀତ ପୁରୁଣା କଥା ଯେଉଁଭଳି ପ୍ରଚଳିତ ଅଛି ;"ଇଂଲଣ୍ଡର ବିପଦରେ ଆୟର୍ଲଣ୍ଡର ସୁଯୋଗ" ଏବଂ ରାଜନୀତିକ ଓ ଧାର୍ମିକ ଉଭୟ କାରଣରୁ ଇଂଲଣ୍ଡର ଶତ୍ରୁ ଫ୍ରାନ୍ସ ଓ ସ୍ପେନର ଆୟର୍ଲଣ୍ଡ ଅନେକ ସମୟରେ ପକ୍ଷ ଗ୍ରହଣ କରିଛି । ଏଥିରେ ଇଂରେଜମାନେ ଖୁବ୍ ରାଗି ଯାଇଛନ୍ତି ଏବଂ ସେମାନଙ୍କ ପଛରେ ଛୁରୀ ମାରିଲାପରି ବୋଧକଲେ ଏବଂ ସକଳପ୍ରକାର ଅତ୍ୟାଚାର କରି ଏହାର ପ୍ରତିଶୋଧ ନେଲେ ।

ରାଣୀ ଏଲିଜାବେଥ୍‌ଙ୍କ ସମୟରେ (୧୬ଶ ଶତାବ୍ଦୀରେ) ଆଇରିଶ୍ ଜାତିଙ୍କ ଭିତରେ ଇଂରେଜ ଜମିଦାର ପ୍ରବେଶ କରାଇ ସେମାନଙ୍କୁ ଦବାଇରଖି ତାଙ୍କର ବିରୋଧ ଭାଙ୍ଗିବା ନିମନ୍ତେ ସ୍ଥିର କରାଗଲା । ତେଣୁ ଜମିସବୁ ବାଜ୍ୟାପ୍ତ ହେଲା ଏବଂ ପୁରୁଣା ଆଇରିଶ୍ ଜମିଦାର ଶ୍ରେଣୀ ସ୍ଥାନରେ ବିଦେଶୀ ରହିଲେ । ଏହିରୂପେ ବାସ୍ତବରେ ଆୟର୍ଲଣ୍ଡ ଏକ କୃଷକ ଦେଶ ହୋଇଗଲା ଏବଂ ବିଦେଶୀ ଜମିଦାର ସେଠି ରହିଲେ । ଶହ ଶହ ବର୍ଷ ଗତ ହୋଇଗଲେ ସୁଦ୍ଧା ଏହି ଜମିଦାରମାନେ ଆଇରିଶ୍ ଲୋକଙ୍କ ପାଖରେ ସେହିପରି ବିଦେଶୀ ହୋଇ ରହିଲେ ।

ରାଣୀ ଏଲିଜାବେଥ୍‌ଙ୍କ ପରବର୍ତ୍ତୀ ରାଜା ଇଂଲଣ୍ଡର ପ୍ରଥମ ଜେମସ୍ ଆଇରିଶ୍ ଲୋକଙ୍କ ଦମ୍ଭ ଭାଙ୍ଗିଦେବା ଉଦ୍ୟମରେ ଆଉ ଟିକିଏ ଆଗକୁ ଗଲେ । ସେ ଆୟର୍ଲଣ୍ଡରେ ବିଧିବଦ୍ଧରୂପେ ବିଦେଶୀ ଉପନିବେଶ କରିବା ନିମନ୍ତେ ସ୍ଥିର କଲେ ଏବଂ ସେହି ଉଦ୍ଦେଶ୍ୟରେ ୧୭ଶ ଶତାବ୍ଦୀରେ ଆୟର୍ଲଣ୍ଡର ଉତ୍ତରାଞ୍ଚଳ ଅଲଷ୍ଟରରେ ଥିବା ପ୍ରାୟ ସମସ୍ତ ଭୂମି ଇଂରେଜ ରାଜାଙ୍କଦ୍ୱାରା ବାଜ୍ୟାପ୍ତ ହୋଇଗଲା । ମୋଫତ୍‌ରେ ଜମି ମିଳିଲା ଏବଂ ଇଂଲଣ୍ଡ ଓ ସ୍କଟଲଣ୍ଡରୁ ଦଳ ଦଳ ହୋଇ ଲୋକ ଆସିଲେ । ଏହି ଇଂରେଜ ଓ ସ୍କଟିଶ୍ ଲୋକଙ୍କ ଭିତରୁ ଅନେକେ ଜମି ପାଇଲେ ଏବଂ କୃଷକ ଭାବରେ ସେଠାରେ ବସତି ସ୍ଥାପନ କଲେ । ଏହି ବସତି ବାନ୍ଧିବାରେ ଲଣ୍ଡନ ସହରକୁ ମଧ୍ୟ ସାହାଯ୍ୟ କରିବା ନିମନ୍ତେ କୁହାଗଲେ ଏବଂ ନୂତନ "ଅଲଷ୍ଟର ଆବାଦୀ" ନିମନ୍ତେ ଲଣ୍ଡନରେ ଏକ ବିଶେଷ ସମିତି ଗଢ଼ାହେଲା । ଏହି କାରଣରୁ ଉତ୍ତରରେ ଡେରୀ ନଗରକୁ ଲଣ୍ଡନଡେରୀ ବୋଲି କହନ୍ତି ।

ତେଣୁ ଆୟର୍ଲଣ୍ଡରେ ଅଲଷ୍ଟର ବ୍ରିଟେନର ଏକ ଅଂଶ ହୋଇ ରହିଲା ଏବଂ ଆଇରିଶ୍‌ମାନେ ଏଥିରେ ଯେ ଖୁବ୍ ଅସନ୍ତୋଷ ପ୍ରକାଶ କଲେ ଏଥିରେ ବିସ୍ମୟ ହେବାର କିଛି ନାହିଁ । ଏହି ନୂତନ ଅଲଷ୍ଟୋରାଇଟ୍‌ମାନେ ପୁଣି ଆଇରିଶ୍‌ଙ୍କୁ ଘୃଣା କଲେ ଏବଂ ନୀଚ ଦୃଷ୍ଟିରେ ସେମାନଙ୍କୁ ଦେଖିଲେ । ଆୟର୍ଲଣ୍ଡକୁ ଏପରି ଦୁଇଟି ବିରୋଧୀ ଦଳରେ ଭାଙ୍ଗିଦେବା —ଆହା ! ଇଂଲଣ୍ଡ ପକ୍ଷରେ କିପରି ଅଦ୍ଭୁତ ଓ ଚତୁର ସାମ୍ରାଜ୍ୟବାଦୀ କାର୍ଯ୍ୟ ! ପ୍ରାୟ ୩୦୦ ବର୍ଷ ବିତିଗଲେ ମଧ୍ୟ ଏହି ଅଲଷ୍ଟର ସମସ୍ୟା ଏବେସୁଦ୍ଧା ସମାଧାନ ହୋଇ ନାହିଁ ।

ଅଲଷ୍ଟରରେ ବଦାଚ ହେବାର ଅଳ୍ପଦିନ ପରେ ପ୍ରଥମ ଚାର୍ଲସ ଓ ପାର୍ଲିଆମେଣ୍ଟ ଭିତରେ ଇଂଲଣ୍ଡରେ ଗୃହଯୁଦ୍ଧ ଆରମ୍ଭ ହେଲା । ପାର୍ଲିଆମେଣ୍ଟ ପକ୍ଷରେ ପିଉରିଟାନ୍ (Puritan) ଓ ପ୍ରୋଟେଷ୍ଟାଣ୍ଟମାନେ ରହିଲେ ଏବଂ କାଥଲିକ ଆୟର୍ଲାଣ୍ଡ ସ୍ୱାଭାବିକରୂପେ ରାଜାଙ୍କ ପକ୍ଷ ନେଲା, ଅଲଷ୍ଟର ପାର୍ଲିଆମେଣ୍ଟକୁ ସମର୍ଥନ କଲା । କାରଣ ନ ଥାଇ ନୁହେଁ, ପିଉରିଟାନମାନେ ତାଙ୍କ କାଥଲିକ ଧର୍ମକୁ ନାଶ କରିଦେବେ ବୋଲି ଆଇରିଶ୍‌ଙ୍କର ଭୟ ଜାତ-ହେଲା ଏବଂ ୧୬୪୧ରେ ସେମାନେ ମହାନ୍ ବିଦ୍ରୋହ କରିଉଠିଲେ । ଆଗ ବିଦ୍ରୋହ ଅପେକ୍ଷା ଏହା ଅଧିକ ଭୀଷଣ ହେଲା ଏବଂ ବର୍ବର ଭାବରେ ଏହାର ଦମନ କରାଗଲା । ଆଇରିଶ୍ କାଥଲିକମାନେ ନିଷ୍ଠୁର ଭାବରେ ପ୍ରୋଟେଷ୍ଟାଣ୍ଟମାନଙ୍କୁ ହତ୍ୟା କଲେ । କ୍ରମୱେଲ ଭୀଷଣ ପ୍ରତିଶୋଧ ନେଲେ । ଅନେକ ଆଇରିଶ୍ ଓ ବିଶେଷ ଭାବରେ କାଥଲିକ ଧର୍ମଯାଜକଙ୍କୁ ହତ୍ୟା କରାଗଲା ଏବଂ କ୍ରମୱେଲ ନାମ ଶୁଣିଲେ ଆୟର୍ଲାଣ୍ଡ ଲୋକେ ଏବେ ସୁଦ୍ଧା ବିଗଡ଼ନ୍ତି ।

ଏହି ଜୁଲୁମ ଓ ନିଷ୍ଠୁରତା ସତ୍ତ୍ୱେ ଏକ ପୁରୁଷ ପରେ ପୁଣି ବିଦ୍ରୋହ ଓ ଗୃହଯୁଦ୍ଧ ଆରମ୍ଭ ହେଲା – ଏଥିରୁ ଦୁଇଟି ଘଟଣା ମହତ୍ତ୍ୱଜନକ ଲଣ୍ଡନ୍‌ଡେରୀ ଓ ଲିମେରିକ୍‌ର ଅବରୋଧ । ୧୬୮୮ରେ କାଥଲିକ ଆଇରିଶ୍ ଅଲଷ୍ଟରରେ ପ୍ରୋଟେଷ୍ଟାଣ୍ଟ ଲଣ୍ଡନ୍‌ଡେରୀ ଅଧିକାର କଲା ଏବଂ ରକ୍ଷାକାରୀଙ୍କ ପାଖରେ ଖାଦ୍ୟ ନ ଥାଇ ଏବଂ ଖାଇବା ବିନା ସେମାନେ ମରୁଥିବା ଅବସ୍ଥାରେ ଥାଇ ସୁଦ୍ଧା ବୀରତ୍ୱର ସହିତ ଏହା ରକ୍ଷା କରିବାକୁ ଚେଷ୍ଟାକଲେ । ସୁଦୀର୍ଘ କାଳ ଅବରୋଧ ଓ ଯନ୍ତ୍ରଣା ପରେ ଇଂରେଜ ଜାହାଜସବୁ ଶେଷକୁ ଖାଦ୍ୟ ଓ ସାହାଯ୍ୟ ଆଣିଲେ । ୧୬୯୦ରେ ଲିମେରିକ୍‌ର ଅବସ୍ଥା ଅନ୍ୟରୂପ ହେଲା—ଇଂରେଜମାନେ କାଥଲିକ ଆଇରିଶ୍‌ଙ୍କୁ ଅବରୋଧ କଲେ । ଏହି ଅବରୋଧ ବେଳେ ପ୍ରଧାନ ଯୋଦ୍ଧା ଥିଲେ ପାଟ୍ରିକ ସାର୍ସଫିଲ୍‌ଡ – ଯେ ଭୀଷଣ ଅସୁବିଧା ଥାଇ ସୁଦ୍ଧା ଅଦ୍ଭୁତ ପ୍ରକାରେ ଲିମେରିକ ରକ୍ଷା କରିଥିଲେ । ଏପରିକି ଆଇରିଶ୍ ସ୍ତ୍ରୀଲୋକ ମଧ୍ୟ ଏହି ଦେଶରକ୍ଷା ଯୁଦ୍ଧରେ ଯୋଗ ଦେଇଥିଲେ ଏବଂ ଆୟର୍ଲାଣ୍ଡର ମଫସଲ ଅଞ୍ଚଳରେ ସାର୍ସଫିଲ୍‌ଡ ଓ ତାଙ୍କର ବୀରଦଳଙ୍କ ସମ୍ବନ୍ଧରେ ଏବେ ସୁଦ୍ଧା ଲୋକ ସଙ୍ଗୀତ ଗାନ କରାଯାଏ । ଶେଷରେ ସାର୍ସଫିଲ୍‌ଡ ଲିମେରିକ୍ ଛାଡ଼ିଲେ; କିନ୍ତୁ ବ୍ରିଟିଶଙ୍କ ସହ ଏକ ସମ୍ମାନଜନକ ସନ୍ଧି ପରେ ଏହା ହେଲା । ଏହି ଲିମେରିକ୍ ସନ୍ଧିରେ ଏକ ସର୍ତ୍ତ ଥିଲା ଯେ ଆଇରିଶ୍ କାଥଲିକମାନଙ୍କୁ ପୂର୍ଣ୍ଣ ନାଗରିକ ଓ ଧାର୍ମିକ ସ୍ୱାଧୀନତା ଦିଆଯିବ ।

ଲିମେରିକ ସନ୍ଧି ଇଂରେଜମାନେ ଭାଙ୍ଗିଲେ ଅଥବା ଆୟର୍ଲାଣ୍ଡର ଇଂରେଜ ଭୂମିପତି (Land owner) ପରିବାରସବୁ ଏହା କଲେ । ଏହି ପ୍ରୋଟେଷ୍ଟାଣ୍ଟ ପରିବାରସବୁ ଡବ୍‌ଲିନ୍‌ରେ ଏକ ଅଧୀନସ୍ଥ ପାର୍ଲିଆମେଣ୍ଟ ନିୟନ୍ତ୍ରଣ କରୁଥିଲେ—ଯେମାନେ କାଥଲିକମାନଙ୍କୁ ନାଗରିକ ବା ଧାର୍ମିକ ସ୍ୱାଧୀନତା ଦେବାକୁ ଅସ୍ୱୀକାର କଲେ । ଏହା ପରିବର୍ତ୍ତେ କାଥଲିକ-ମାନଙ୍କୁ ଶାସ୍ତି ଦେଇ ଏବଂ ଆଇରିଶ୍ ପଶମ ବେପାର କାର୍ଖାନାଣି ଧ୍ୱଂସ କରିବା ନିମନ୍ତେ ବିଶେଷ ଆଇନ ପାଶ୍ କଲେ । ପ୍ରଜାମାନଙ୍କୁ ନିର୍ଦ୍ଦୟ ଭାବରେ ଦମନ କରାଗଲା ଓ ଜମିରୁ

ହ୍ଛେଦ କରିଗଲ । ମନେରଖ ଏଠାର ଲୋକସଂଖ୍ୟାର ଏକ ବହୁଭାଗ ବିରୁଦ୍ଧରେ ଏହି କାର୍ଯ୍ୟ ମୁଷ୍ଟିମେୟ ବିଦେଶୀ ପ୍ରୋଟେଷ୍ଟାଣ୍ଟ ଜମିଦାରମାନଙ୍କ ଦ୍ୱାରା ହୋଇଥିଲା—ଅଧିବାସୀ କାଥଲିକ ଥିଲେ ଏବଂ ଏମାନଙ୍କ ଭିତରୁ ଅଧିକାଂଶ ପ୍ରଜା ଥିଲେ । କିନ୍ତୁ ଏହି ଇଂରେଜ ଜମିଦାରଙ୍କ ହାତରେ ସମସ୍ତ କ୍ଷମତା ଥିଲା ଏବଂ ଏହି ଜମିଦାରମାନେ ଇଲାକାରୁ ବହୁଦୂରରେ ଯାଇ ବାସ କରୁଥିଲେ ଏବଂ ସେମାନଙ୍କ ଏଜେଣ୍ଟ ଓ କରସଂଗ୍ରହକାରୀଙ୍କ କ୍ରୁର ପୀଡ଼ନରେ ପ୍ରଜାମାନଙ୍କୁ ଗ୍ରାସିଦେଲେ ।

କ୍ରମେଲଙ୍କ କାହାଣୀ ବହୁ ପୁରାତନ; କିନ୍ତୁ ଗୋଟାଏ ପରିଷ୍ଟ ଜବାବ ଭାଙ୍ଗିବା ଦ୍ୱାରା ସେଉଁ ଉଗ୍ରତା ଓ କ୍ରୋଧ ଦେଖାଦେଲା, ତାହା ଏବେ ସୁଦ୍ଧା ଦବିଯାଇ ନାହିଁ ଏବଂ ଏପରିକି ଆଜି ମଧ୍ୟ ଆଇରିଶ୍ ଜାତୀୟବାଦୀଙ୍କ ମନରେ ଆୟର୍ଲାଣ୍ଡରେ ଇଂରେଜଙ୍କ ବିଶ୍ୱାସ-ଘାତକତାପୂର୍ଣ୍ଣ କାର୍ଯ୍ୟସବୁ ଭିତରେ କ୍ରମେଲଙ୍କ ହିଁ ପ୍ରଧାନ ହୋଇ ରହିଛି । ସେତେବେଳେ ଏହି ଚୁକ୍ତିଭଙ୍ଗ, ଧାର୍ମିକ ଅସହିଷ୍ଣୁତା ଓ ଅତ୍ୟାଚାର ଏବଂ ଜମିଦାରଙ୍କ କ୍ରୁରତା ହେତୁ ବହୁ-ସଂଖ୍ୟକ ଆଇରିଶ୍ ଅନ୍ୟ ଦେଶକୁ ଚାଲିଗଲେ । ଆଇରିଶ୍ ଯୁବକଙ୍କ ଭିତରୁ ବଡ଼ ବଡ଼ ଲୋକ ବିଦେଶକୁ ଗଲେ ଏବଂ ସେଉଁ ଦେଶ ଇଂଲଣ୍ଡ ସହିତ ଲଢ଼ାଇ କରୁଥିଲା, ସେଥିରେ ଯୋଗ ଦେବାପାଇଁ ନିଜକୁ ଅର୍ପଣ କଲେ । ଯେଉଁଠି ଇଂଲଣ୍ଡ ବିରୁଦ୍ଧରେ ଯୁଦ୍ଧ ଲାଗୁଥିଲା, ସେଠି ଏହି ଆଇରିଶ୍ ଲୋକଙ୍କୁ ନିଶ୍ଚୟ ଦେଖିବାକୁ ମିଳେ । "ଗଲିଭର ଟ୍ରାଭେଲ" (Gullivers travels)ର ଲେଖକ ଜୋନାଥେନସୁଇଫ୍ଟ ଏହି ସମୟରେ ବାସ କରୁଥିଲେ । ( ସେ ୧୬୬୭ରୁ ୧୭୪୫ ପର୍ଯ୍ୟନ୍ତ ବଞ୍ଚିଥିଲେ) ସେ ତାଙ୍କ ଆଇରିଶ୍ ଲୋକଙ୍କୁ ଯେଉଁସବୁ ପରାମର୍ଶ ଦେଉଥିଲେ ସେଥିରୁ ଇଂରେଜଙ୍କ ବିରୁଦ୍ଧରେ ତାଙ୍କର କ୍ରୋଧର କିଛିତ ଆଭାସ ମିଳେ । ସେ କହିଥିଲେ, "କେବଳ କୋଇଲା ଛଡ଼ା ଆଉ ପ୍ରତ୍ୟେକ ଇଂରେଜୀ ଜିନିଷ ପୋଡ଼ିଦିଅ ।" ଡବଲିନ୍‌ରେ ତାଙ୍କ କବର ସେଣ୍ଟ୍ ପାଟ୍ରିକ କାଥେଡ୍ରାଲରେ ଯାହା ଲେଖା ରହିଛି ତାହା ଅନ୍ତର ଉଗ୍ରତାପୂର୍ଣ୍ଣ । ସମ୍ଭବତଃ ସମାଧି ଉପରେ ଏହା ଲେଖିବାକୁ ସେ ନିଜେ ଆଗରୁ ଲେଖି ଯାଇଥିଲେ—

ଜନାଥନ ସୁଇଫ୍ଟ—
ଡିରେଣ ବର୍ଷ ବ୍ୟାପୀ ଏ ମନ୍ଦିରେ ପୁରୋଧା ପଣ୍ଡିତ,
ତାଙ୍କର ଜୀବନ ଏହି ମାଟି ତଳେ ଅଛି ଶାନ୍ତ ସୁପ୍ତ,
ଏହି ପୁଣ୍ୟ ଧୂଳି ତଳେ ହେଲା ଯାର ସମାଧି ରଚନା,
ନାହିଁ ଶକ୍ତି—ବନ୍ୟ ଅପମାନ ତା' ଅନ୍ତରେ ଦେବାକୁ ଯନ୍ତ୍ରଣା,
ଯାଅ ପାନ୍ଥ—ଯଦି ପାର ତାର ପଥ ଅନୁଗମ ଆଜ
ଯୁଦ୍ଧ କଲା ମୁକ୍ତିରକ୍ଷା ଲାଗି ମଣିଷ ଯେ ବୀରବେଶ ସାଜ ।"

(ଇଂରେଜୀ କବିତାରୁ ଅନୂଦିତ—ଚିତ୍ତରଞ୍ଜନ ଦାସଙ୍କଦ୍ୱାରା)

୧୯୭୪ରେ ଆମେରିକାନ୍ ସ୍ୱାଧୀନତା ଯୁଦ୍ଧ ଆରମ୍ଭ ହୋଇଗଲା ଏବଂ ଆଟଲାଣ୍ଟିକ ପାରକୁ ବ୍ରିଟିଶ ସେନା ପଠାଇବାକୁ ପଡ଼ିଲା । ଏଣେ ଆୟର୍ଲାଣ୍ଡରେ ବାସ୍ତବିକ କୌଣସି ବ୍ରିଟିଶ ସେନା ନ ଥିଲେ ଏବଂ ଫରାସୀ ଆକ୍ରମଣ ହେବା କଥା ଉଠିଥିଲା, କାରଣ ଫ୍ରାନ୍ସ ମଧ୍ୟ ଇଂଲଣ୍ଡ ବିରୁଦ୍ଧରେ ଯୁଦ୍ଧଘୋଷଣା କରିଥିଲା । ତେଣୁ ଆଇରିଶ୍ କାଥଲିକ ଓ ପ୍ରୋଟେଷ୍ଟାଣ୍ଟ ଉଭୟେ ଦେଶରକ୍ଷା ନିମନ୍ତେ ସ୍ୱେଚ୍ଛାସେବକ ସଂଗ୍ରହ କଲେ । କେତେକଣ ପାଇଁ ସେମାନେ ତାଙ୍କର ପୁରାତନ ବିବାଦସବୁ ଭୁଲିଗଲେ ଏବଂ ଏକତ୍ର ସହଯୋଗ କରିବାଦ୍ୱାରା ନିଜର ଶକ୍ତିର ପରିଚୟ ପାଇଲେ । ଇଂଲଣ୍ଡକୁ ଆଉ ଏକ ବିଦ୍ରୋହର ସମ୍ମୁଖୀନ ହେବାର ଆଶଙ୍କା ହେଲା ଏବଂ ଆମେରିକା ଯେପରି କରୁଥିଲା, ସେପରି ଆୟର୍ଲାଣ୍ଡ ମଧ୍ୟ ସମ୍ପର୍କ ତୁଟାଇ ଦେଇପାରେ ବୋଲି ଭୟକରି ଇଂରେଜମାନେ ଆୟର୍ଲାଣ୍ଡକୁ ଏକ ସ୍ୱାଧୀନ ପାର୍ଲିଆମେଣ୍ଟ ମଞ୍ଜୁର କଲେ । ଏହିରୂପେ ନାମକୁ ମାତ୍ର ଆୟର୍ଲାଣ୍ଡ ଇଂଲଣ୍ଡରୁ ମୁକ୍ତ ହେଲା; କିନ୍ତୁ ଏକା ରାଜା ଅଧୀନରେ ରହିଲା । କିନ୍ତୁ ଆଇରିଶ୍ ପାର୍ଲିଆମେଣ୍ଟ ସେହିପରି ପୁରୁଣା ଜମିଦାର-ପ୍ରାଧାନ୍ୟ ଭିତରେ ସଙ୍କୀର୍ଣ୍ଣ ଆବେଷ୍ଟନୀ ହୋଇ ରହିଲା—ପ୍ରୋଟେଷ୍ଟାଣ୍ଟଙ୍କ ଭିତରେ ସୀମାବଦ୍ଧ ହେଲା—ଏହିମାନେ ପୂର୍ବେ ଅଶାନ୍ତକାଳରେ କାଥଲିକଙ୍କୁ ଏପରି କଷ୍ଟ ଦେଇଥିଲେ । କାଥଲିକମାନଙ୍କୁ ଏବେ ମଧ୍ୟ ନାନାସ୍ଥାନରେ ଶାସ୍ତି ଦିଆଯାଉଥିଲା । କେବଳ ପାର୍ଥକ୍ୟ ଏତିକି ଯେ ପ୍ରୋଟେଷ୍ଟାଣ୍ଟ ଓ କାଥଲିକଙ୍କ ଭିତରେ ଟୋଟାଏ ଭଲଭାବ ଜାତ ହେବାର ଦେଖାଗଲା । ଏହି ପାର୍ଲିଆମେଣ୍ଟର ନେତା ଥିଲେ ହେନ୍‌ରି ଗ୍ରାଟନ୍—ସେ ନିଜେ ଜଣେ ପ୍ରୋଟେଷ୍ଟାଣ୍ଟ—କାଥଲିକମାନଙ୍କର ଆଇନାନୁସାରେ ଥିବା କଟକଣା ସେ ଦୂର କରିବାକୁ ଚାହିଁଲେ । ସେ ଖୁବ୍ ଅଳ୍ପ ପରିମାଣରେ ଏହା କରିବାରେ କୃତିତ୍ୱ ଲାଭକଲେ ।

ଏଥି ଭିତରେ ଫରାସୀ ବିପ୍ଳବ ଘଟିଲା ଏବଂ ଏଥିରେ ଆୟର୍ଲାଣ୍ଡ ମନରେ ବଡ଼ ଆଶା ଜାଗ୍ରତ ହେଲା । ନୂଆ ବିଚାର ତଥା, କାଥଲିକ ଓ ପ୍ରୋଟେଷ୍ଟାଣ୍ଟ ଉଭୟେ ଏହାର ସ୍ୱାଗତ କଲେ—ଏ ଉଭୟଙ୍କ ଭିତରେ ଧୀରେ ଧୀରେ ଘନିଷ୍ଠତର ସମ୍ବନ୍ଧ ହେଉଥାଏ । ଏମାନଙ୍କୁ ଏକତ୍ର କରିବାପାଇଁ ଓ କାଥଲିକମାନଙ୍କୁ ମୁକ୍ତ କରିବା ନିମନ୍ତେ "ମିଳିତ ଆଇରିଶ୍ ଲୋକେ" (United Irishmen) ନାମକ ଏକ ଅନୁଷ୍ଠାନ ଆରମ୍ଭ ହେଲା । "ମିଳିତ ଆଇରିଶ୍ ଲୋକ"ଙ୍କୁ ସରକାର ପସନ୍ଦ କଲା ନାହିଁ ଏବଂ ଏହା ଦବାଇ ଦିଆଗଲା । ତେଣୁ ଅନିବାର୍ଯ୍ୟରୂପେ ବେଳେବେଳେ ହେଉଥିବା ବିଦ୍ରୋହ ପୁଣି ୧୭୯୮ରେ ଆରମ୍ଭ ହେଲା । ଆଗର କେତେକ ବିଦ୍ରୋହ ପରି ଅଳସ୍ଥାନ ଓ ଦେଶର ଅଂଶ ଭିତରେ ଏହା ଏକ ଧାର୍ମିକ ଯୁଦ୍ଧ ନ ଥିଲା; ଏହା ଏକ ଜାତୀୟ ଜାଗରଣ—କେତେକ ପରିମାଣରେ ଉଭୟେ ଏଥିରେ ଯୋଗ ଦେଇଥିଲେ । ଇଂଲଣ୍ଡ ଏହି ଜାଗରଣକୁ ଦବାଇଦେଲା ଏବଂ ଏହି ଜାଗରଣର ଆଇରିଶ ବୀର୍‌ ଉଲ୍‌ଫ ଟୋନେଙ୍କୁ ବିଶ୍ୱାସଘାତକ ବୋଲି ଫାଶି ଦିଆଗଲା ।

ତେଣୁ ଏହା ସୁସ୍ପଷ୍ଟ ଯେ ଆୟର୍ଲଣ୍ଡକୁ ଏକ ସ୍ୱାଧୀନ ପାର୍ଲିଆମେଣ୍ଟ ଦେବା ଦ୍ୱାରାହିଁ ଆଇରିଶ୍ ଲୋକଙ୍କ ଅବସ୍ଥାର କିଛି ପାର୍ଥକ୍ୟ ଘଟିଲା ନାହିଁ । ସେତେବେଳେ ଇଂରେଜ ପାର୍ଲିଆମେଣ୍ଟ ବି ଏକ ସଂକୀର୍ଣ୍ଣ ଓ ଦୂଷିତ ବ୍ୟାପାର ଥିଲା—"ପକେଟ ବରୋ" ଓ ସେହିପରି ଅବସ୍ଥାରେ ସଭ୍ୟ ନିର୍ବାଚିତ ହେଉଥିଲେ ଏବଂ କ୍ଷୁଦ୍ର ଭୂସ୍ୱାମୀ ଶ୍ରେଣୀ ଓ କେତେକ ଧନୀ ବଣିକମାନେ ହିଁ ଏହା ନିୟନ୍ତ୍ରଣ କରୁଥିଲେ । ଆଇରିଶ୍ ପାର୍ଲିଆମେଣ୍ଟର ଏ ସବୁ ଦୋଷ ଥିଲା ଏବଂ ଆହୁରି ପୁଣି ଏକ କାଥଲିକ ଦେଶରେ ମୁଷ୍ଟିମେୟ ପ୍ରୋଟେଷ୍ଟାଣ୍ଟଙ୍କ ଭିତରେ ଏହା ସୀମାବଦ୍ଧ ଥିଲା । ଏହା ହୋଇ ସୁଦ୍ଧା ବ୍ରିଟିଶ ଗଭର୍ଣ୍ଣମେଣ୍ଟ ଆଇରିଶ ପାର୍ଲିଆମେଣ୍ଟକୁ ଲାଞ୍ଚ ଦେବାଲାଗି ଓ ଆୟର୍ଲଣ୍ଡକୁ ବ୍ରିଟେନ ସହଯୋଗ କରିବା ନିମନ୍ତେ ସ୍ଥିର କଲା । ଆୟର୍ଲଣ୍ଡରେ ଏହାର ତୀବ୍ର ବିରୋଧ ହେଲା, କିନ୍ତୁ ଡବଲିନ୍ ପାର୍ଲିଆମେଣ୍ଟର ସଭ୍ୟମାନଙ୍କୁ ପ୍ରଚୁର ଲାଞ୍ଚ ଦେବା ହେତୁ ସଭ୍ୟମାନେ ନିଜେ ନିଜ ପାର୍ଲିଆମେଣ୍ଟର ଅସ୍ତିତ୍ୱ ଲୋପ ନିମନ୍ତେ ଭୋଟ ଦେଇଦେଲେ । ୧୮୦୦ରେ ଇଉନିୟନର ଏକ ଆଇନ (Act of Union) ପାଶ୍ ହେଲା ଏବଂ ଏହିରୂପେ ଗ୍ରାଟନଙ୍କ କ୍ଷଣସ୍ଥାୟୀ ପାର୍ଲିଆମେଣ୍ଟ କାଳ ପୂରିଲା ଏବଂ ତା ପରିବର୍ତ୍ତେ ଲଣ୍ଡନରେ ବ୍ରିଟିଶ ପାର୍ଲିଆମେଣ୍ଟକୁ କେତେକ ଆଇରିଶ୍ ସଭ୍ୟ ପଠାଯିବାର ବ୍ୟବସ୍ଥା ହେଲା ।

ଏହି ଦୂଷିତ ଆଇରିଶ ପାର୍ଲିଆମେଣ୍ଟ ଶେଷ ହେବାଦ୍ୱାରା ବୋଧହୁଏ ବିଶେଷ କ୍ଷତି ହେଲାନାହିଁ—କେବଳ ପରେ ହୁଏତ ଏହା କିଛି ଉନ୍ନତି ଆଡକୁ ଯାଇପାରିଥାନ୍ତା । ମାତ୍ର "ଇଉନିଅନ ଆଇନ" ପ୍ରକୃତରେ ଏକ କ୍ଷତି କଲା ଏବଂ ସମ୍ଭବତଃ ଏହା କରିବା ଏଥିର ଉଦ୍ଦେଶ୍ୟ ଥିଲା । ଏଥିରେ ଉତ୍ତର ଓ ଦକ୍ଷିଣ ପ୍ରୋଟେଷ୍ଟାଣ୍ଟ ଓ କାଥଲିକଙ୍କ ଭିତରେ ଏକତା ଆଣିବା ପାଇଁ ଯେ ଆନ୍ଦୋଳନ ହେଉଥିଲା, ତାହା ଅନ୍ତ କରିବାରେ କୃତକାର୍ଯ୍ୟ ହେଲେ । ପ୍ରୋଟେଷ୍ଟାଣ୍ଟ ଅଲଷ୍ଟାର ପୁନର୍ବାର ଆୟର୍ଲଣ୍ଡର ଅବଶିଷ୍ଟ ଅଞ୍ଚଳରୁ ବିଚ୍ଛିନ୍ନ ହେଲା ଏବଂ ଦୁଇ ଅଞ୍ଚଳ ପରସ୍ପର ପ୍ରତି ବିଦ୍ୱେଷୀ ପାଲଟିଲେ । ଦୁହିଁଙ୍କ ଭିତରେ ଆଉ ଏକ ପାର୍ଥକ୍ୟ ପରିଲକ୍ଷିତ ହେଲା । ଇଂଲଣ୍ଡ ପରି ଅଲଷ୍ଟାରରେ ଆଧୁନିକ ଶିଳ୍ପ ଆରମ୍ଭ ହେଲା । ଆୟର୍ଲଣ୍ଡର ଅବଶିଷ୍ଟ ଅଞ୍ଚଳ କୃଷିପ୍ରଧାନ ହୋଇ ରହିଲା ଏବଂ ଜମିପ୍ରଥା ଓ ବସ୍ତିନର ପ୍ରଦେଶ ତ୍ୟାଗ କରୁଥିବା ଲୋକଙ୍କ ସଂଖ୍ୟା ବଢ଼ିବାରୁ କୃଷିରେ ମଧ୍ୟ ବିଶେଷ ଉନ୍ନତ ହୋଇପାରିଲା ନାହିଁ । ଏହି ଭାବରେ ଉତ୍ତର ଶିଳ୍ପୋନ୍ନତ ହେଉଥିଲାବେଳେ ଦକ୍ଷିଣ ଓ ପୂର୍ବ ଏବଂ ବିଶେଷଭାବରେ ପଶ୍ଚିମାଞ୍ଚଳ ଶିଳ୍ପଦିଗରେ ଅନୁନ୍ନତ ଓ ମଧ୍ୟକାଳୀନ ହୋଇ ରହିଲା ।

"ଇଉନିଅନ ଆଇନ" ବିରୁଦ୍ଧରେ ଯେ ପ୍ରତିବାଦ ଉଠି ନ ଥିଲା ତାହା ନୁହେଁ । ଏହି ନିଷ୍ଫଳ ଜାଗରଣର ନେତା ଥିଲେ ରବର୍ଟ ଏମେଟ୍—ସେ ଜଣେ ବିଚକ୍ଷଣ ଯୁବାପୁରୁଷ—ତାଙ୍କ ଦେଶର ଅନ୍ୟ ଅନେକ ଯୁବକଙ୍କ ପରି ସେ ମଧ୍ୟ ଫାଶିଖୁଣ୍ଟରେ ନିଜର ଜୀବନ ଦାନକଲେ ।

ବ୍ରିଟିଶ କମନ୍ସ ସଭାକୁ ଆଇରିଶ ସଭ୍ୟ ଗଲେ । କିନ୍ତୁ କାଥଲିକମାନେ ଯାଇ-ପାରିଲେ ନାହିଁ । ଆୟର୍ଲାଣ୍ଡ ବା ଇଂଲଣ୍ଡ କୌଣସିଠାରେ ଏପରି କରିବା ନିମନ୍ତେ କାଥଲିକ-ମାନଙ୍କୁ ଅନୁମତି ଦିଆଯାଇ ନ ଥିଲା । ୧୮୨୯ରେ ଏହି ଅକ୍ଷମତା ଦୂର ହେଲା ଏବଂ କାଥଲିକମାନେ ବ୍ରିଟିଶ ପାର୍ଲିଆମେଣ୍ଟରେ ବସି ପାରିଲେ । ଆଇରିଶ ନେତା ଡାନିଏଲ ଓ କନେଲ ଏହି କଟକଣା ଦୂର କରିବାରେ କୃତକାର୍ଯ୍ୟ ହୋଇଥିଲେ ଏବଂ ସେହିହେତୁ ତାଙ୍କୁ "ମୁକ୍ତିଦାତା" ବୋଲି କହନ୍ତି । ଆଉ ଏକ ପରିବର୍ତ୍ତନ ଧୀରେ ଧୀରେ ହେଲା—ତାହା ହେଉଛି ଭୋଟାଧିକାରର ପ୍ରସାର—ଏଥିରେ ଅଧିକରୁ ଅଧିକ ଲୋକ ଭୋଟ ପାଇଲେ । ଆୟର୍ଲାଣ୍ଡ ଏବେ ଇଂଲଣ୍ଡରେ ମିଶିଯିବାରୁ ଏକା ଆଇନ ଉଭୟ ଦେଶରେ ଚଳିଲା । ତେଣୁ ୧୮୩୨ର ମହାନ୍ ସଂସ୍କାର ଆଇନ ଆୟର୍ଲାଣ୍ଡ ଓ ବ୍ରିଟେନ୍ ଉଭୟ ଦେଶ ପ୍ରତି ପ୍ରଯୁଜ୍ୟ ହେଲା । ପରେ ସେହିପରି ଭୋଟାଧିକାର (ଫ୍ରାଞ୍ଚାଇଜ୍ ବିଲ୍) ମଧ୍ୟ ଏହି ଭାବରେ ବ୍ରିଟିଶ କମନ୍ସ ସଭାରେ ଆଇରିଶ ସଭ୍ୟଙ୍କ ରୂପ ବି ବଦଳାଇ ଦେଲା । ଜମିଦାରଙ୍କ ପ୍ରତିନିଧି ହେବା ପରିବର୍ତ୍ତେ ସଭ୍ୟ କାଥଲିକ କୃଷକ ଓ ଆଇରିଶ ଜାତୀୟବାଦର ପ୍ରତିନିଧିତ୍ୱ କଲେ ।

ଜମିଦାର ପ୍ରାଧାନ୍ୟ ଓ କରଭାରରେ ପୀଡ଼ିତ ହୋଇ ଦାରିଦ୍ର୍ୟ ଅବସ୍ଥାରେ ଆଇରିଶ ପ୍ରଜାର ପ୍ରଧାନ ଖାଦ୍ୟପଦାର୍ଥ ହେଲା ବିଲାତି ଆଳୁ । ସେମାନେ ପ୍ରକୃତରେ ବିଲାତି ଆଳୁ ଖାଇ ବଞ୍ଚୁଥିଲେ ଏବଂ ଆଜିକାଲିକାର ଭାରତୀୟ କୃଷକଙ୍କ ପରି ତାଙ୍କ ପାଖରେ ଗଚ୍ଛିତ କିଛି ନ ଥିଲା, କାହାରି ଉପରେ ଆଶ୍ରା କରିବାର ନ ଥିଲା । ସେମାନେ ଠିକ୍ ମରିବା ଅବସ୍ଥାରେ ରହୁଥିଲେ ଏବଂ କୌଣସି ପ୍ରକାର ପ୍ରତିରୋଧ ଶକ୍ତି ତାଙ୍କଠି ରହିଲା ନାହିଁ । ୧୮୪୬ରେ ବିଲାତି ଆଳୁ ଗଛ ନଷ୍ଟ ହୋଇ ଗଲା ଏବଂ ଫଳରେ ଗୋଟାଏ ବଡ଼ ଦୁର୍ଭିକ୍ଷ ହେଲା; କିନ୍ତୁ ଦୁର୍ଭିକ୍ଷ ପରେ ଖଜଣା ନ ଦେବା ହେତୁ ଜମିଦାରମାନେ ତାଙ୍କ ପ୍ରଜାଙ୍କୁ ତଡ଼ିଦେଲେ । ବହୁସଂଖ୍ୟକ ଆଇରିଶ ଲୋକ ନିଜ ଦେଶ ଛାଡ଼ି ଆମେରିକା ଓ ଅନ୍ୟ ଦେଶକୁ ପଳାଇଗଲେ ଏବଂ ଆୟର୍ଲାଣ୍ଡ ଏକପ୍ରକାର ଲୋକସଂଖ୍ୟାନ୍ୟୁନ ଦେଶ ହୋଇଗଲା । ଅନେକ ଜମି ଆଉ ଚାଷ ହୋଇ ପାରିଲା ନାହିଁ—ଚରାଭୂମି ହୋଇ ରହିଲା ।

ଏପରି ଭାବରେ କୃଷି କର୍ମ ହେଉଥିବା ଶସ୍ୟଜାତ ଜମି ସବୁ ମେଣ୍ଢାଙ୍କ ଚରାଭୂମିରେ ପରିଣତ ହେବା ସ୍ଥିତି ଆୟର୍ଲାଣ୍ଡରେ ୧୦୦ ବର୍ଷରୁ ଅଧିକ କାଳ ଏବଂ ଆମ ଅମଳ ପର୍ଯ୍ୟନ୍ତ ଚାଲିଲା । ଏହାର ପ୍ରଧାନ କାରଣ ହେଉଛି, ଇଂଲଣ୍ଡରେ ପଶମ ଜିନିଷ ତିଆରି ପାଇଁ କାରଖାନା ବୃଦ୍ଧି ହେଲା । ଅଧିକ କଳକାରଖାନା ବସିଲା, ଅଧିକ ଉତ୍ପାଦନ ବଢ଼ିଲା ଏବଂ ଅଧିକ ପଶମ ଦରକାର ପଡ଼ିଲା । ଚାଷପୋଯୋଗୀ ଜମିରେ ଲୋକେ କାର୍ଯ୍ୟ କରିବା ଅପେକ୍ଷା ମେଣ୍ଢାଙ୍କ ଲାଗି ଚରାଭୂମି କରିବା ଆୟର୍ଲାଣ୍ଡ ଜମିଦାରମାନଙ୍କ ପକ୍ଷରେ ଅଧିକ ଲାଭଜନକ ହେଲା । ଚରାଭୂମି ପାଇଁ ଖୁବ୍ ଅଳ୍ପ ମୂଲିଆ ଦରକାର – କେବଳ ମେଣ୍ଢା ଜଗିବା ପାଇଁ ମୁଷ୍ଟିମେୟ ଲୋକ ଲୋଡ଼ା । ଏହିରୂପେ ଚାଷୀ-ମୂଲିଆ ବଳକା ହୋଇ ପଡ଼ିଲେ ଏବଂ

ଜମିଦାରମାନେ ତାଙ୍କୁ ଘରଦ୍ୱାରରୁ ତଡ଼ିଦେଲେ । ସେଣୁ ଆୟର୍ଲାଣ୍ଡରେ ପ୍ରକୃତରେ ଅଳ୍ପ ଲୋକସଂଖ୍ୟା ହୋଇ ସୁଦ୍ଧା ଏଠି "ବଳକା" ଶ୍ରମିକ ମିଳିଲେ ଏବଂ ଲୋକସଂଖ୍ୟା ନ୍ୟୂନ ହେବା ସ୍ଥିତ ରହିଲା । ଆୟର୍ଲାଣ୍ଡ କେବଳ "ଶିଳ୍ପୋନ୍ନତ" ଇଂଲଣ୍ଡକୁ କଞ୍ଚାମାଲ ଯୋଗାଇବା ଅଞ୍ଚଳ ହୋଇ ରହିଲା । ଏହି ଘରଦ୍ୱାର ଜମିକୁ ଚରଭୂମିରେ ପରିଣତ କରିବା ସ୍ଥିତ ଏବେ ଠିକ୍ ବିପରୀତ ହୋଇଛି ଏବଂ ପୁନର୍ବାର ହଳ ତାର ପୁରୁଣା ସ୍ଥାନରେ ପହଞ୍ଚିଲାଣି । ବିଚିତ୍ର କଥା, ଏହା ଫଳରେ ୧୯୩୨ରେ ଆୟର୍ଲାଣ୍ଡ ଓ ଇଂଲଣ୍ଡ ଭିତରେ ଏକ ବେପାର ଯୁଦ୍ଧ ହୋଇଥିଲା । ପ୍ରବାସୀ (Absentee) ଜମିଦାରୀ ପ୍ରଥା ଅଧୀନରେ ଅଭାଗା ପ୍ରଜାଙ୍କର ଦୁଃଖର କାରଣ ହେଲା ଜମିସମସ୍ୟା — ୧୯ଶ ଶତାବ୍ଦୀରେ ଦୀର୍ଘକାଳ ପର୍ଯ୍ୟନ୍ତ ଜମି ସମସ୍ୟା ହିଁ ଆୟର୍ଲାଣ୍ଡରେ ପ୍ରଧାନ ପ୍ରଶ୍ନ ହୋଇଥିଲା । ଶେଷରେ ବ୍ରିଟିଶ ଗଭର୍ଣ୍ଣମେଣ୍ଟ ବାଧ୍ୟତାପୂର୍ବକ ଏହି ଜମିଦାରମାନଙ୍କ ଜମି ଖରିଦ କରି ଓ ତାପରେ ପ୍ରଜାଙ୍କୁ ତାହା ଦେଇ ଜମିଦାରମାନଙ୍କୁ ସମ୍ପୂର୍ଣ୍ଣରୂପେ ତଡ଼ିବା ପାଇଁ ସ୍ଥିର କଲା । ଅବଶ୍ୟ ଜମିଦାରମାନଙ୍କର ଏଥିରେ ଆଦୌ କ୍ଷତି ହେଲାନାହିଁ । ସେମାନେ ତାଙ୍କର ପୁରା ଦାମ ସରକାରଠାରୁ ପାଇଲେ । ପ୍ରଜାମାନେ ଜମି ପାଇଲେ; କିନ୍ତୁ ଏହା ସହିତ ମୂଲ୍ୟର ବୋଝ ମଧ୍ୟ ତାଙ୍କ ଉପରେ ପଡ଼ିଲା । ସେମାନଙ୍କୁ ଏହି ଜମିର ମୂଲ୍ୟ ଏକାବେଳକେ ନୁହେଁ, ଗ୍ରେଟ ବାର୍ଷିକ ହାରରେ ଦେବାକୁ ପଡ଼ିଲା ।

୧୭୯୮ରେ ଜାତୀୟ ଜାଗରଣ ପରେ ୧୦୦ ବର୍ଷରୁ ଅଧିକ କାଳ ପର୍ଯ୍ୟନ୍ତ ଆୟର୍ଲାଣ୍ଡରେ କିଛି ବଡ଼ ବିଦ୍ରୋହ ହୋଇ ନ ଥିଲା । ପୂର୍ବ ଶତାବ୍ଦୀମାନଙ୍କରେ ଯେପରି ହୋଇଥିଲା, ସେପରି ନୁହେଁ — ୧୯ଶ ଶତାବ୍ଦୀର ଆୟର୍ଲାଣ୍ଡ ସାମୂହିକ ବିଦ୍ରୋହରୁ ମୁକ୍ତ ଥିଲା । କିନ୍ତୁ ସେଠାରେ ସନ୍ତୋଷ ଭାବ ହେତୁ ଏହା ହୋଇ ନ ଥିଲା । ଗତ ଜାଗରଣ, ଭୀଷଣ ଦୁର୍ଭିକ୍ଷ ଏବଂ ଲୋକସଂଖ୍ୟା କମିଯିବା ହେତୁ ଶକ୍ତି କ୍ଷୟ ହୋଇଥିଲା । ଏହି ଶତାବ୍ଦୀର ଶେଷାର୍ଦ୍ଧ ବେଳକୁ ବ୍ରିଟିଶ ପାର୍ଲିଆମେଣ୍ଟରେ ଆଇରିଶ ସଭ୍ୟମାନେ କିଛି କରି ପାରିବେ ବୋଲି ଆଶାପୋଷଣ କରି ଲୋକଙ୍କ ଦୃଷ୍ଟି କେତେକ ପରିମାଣରେ ସେଆଡ଼େ ଗଲା । ମାତ୍ର ତଥାପି ସାମରିକ ଜାଗରଣ ସ୍ପୃହାଟା ଜୀବିତ ରଖିବା ନିମନ୍ତେ କେତେକ ଆଇରିଶ ଲୋକ ପସନ୍ଦ କଲେ । ସେମାନେ ଭାବିଲେ, କେବଳ ଏହି ରୂପେ ହିଁ ଆୟର୍ଲାଣ୍ଡର ଆତ୍ମା ସ୍ୱଚ୍ଛ ଏବଂ ଅକଳଙ୍କ ହୋଇ ରହିପାରିବ । ଆମେରିକାକୁ ପଳାଇଯାଇ ସେଠାରେ ବାସ କରୁଥିବା ଆଇରିଶମାନେ ଆୟର୍ଲାଣ୍ଡର ସ୍ୱାଧୀନତା ପାଇଁ ସେଠାରେ ଏକ ସମିତି ଆରମ୍ଭ କଲେ । ଏମାନଙ୍କୁ "ଫେନିୟାନ" କହନ୍ତି — ଆୟର୍ଲାଣ୍ଡରେ ଏମାନେ ଛୋଟ ଛୋଟ ଜାଗରଣ ଆରମ୍ଭ କଲେ । କିନ୍ତୁ ଜନସାଧାରଣଙ୍କ ସହିତ ଏହାର ସମ୍ପର୍କ ନ ଥିଲା ଏବଂ ଫେନିୟାନମାନଙ୍କୁ ଶୀଘ୍ର ଦମନ କରି ଦିଆଗଲା ।

ଏହା ଲମ୍ବା ହୋଇଗଲାଣି — ମୁଁ ବର୍ତ୍ତମାନ ଏହା ଶେଷ କରିବି । କିନ୍ତୁ ଆୟର୍ଲାଣ୍ଡର କାହାଣୀ ତଥାପି ଶେଷ ହୋଇ ନାହିଁ ।

# ୧୧୦ : ଆୟର୍ଲାଣ୍ଡରେ ହୋମରୁଲ ଓ ସିନଫେନ ଆନ୍ଦୋଳନ

ମାର୍ଚ୍ଚ ୯, ୧୯୮୭

ଏକୋଇଶତମ ଶତାବ୍ଦୀର ଶେଷଭାଗରେ ଦୁର୍ଭିକ୍ଷ ଓ ଅନ୍ୟ ବିପଦ ଯୋଗୁଁ ଏହି ଉପାୟରେ ସ୍ୱାଧୀନତା ଅର୍ଜନ କରିବା ଲାଗି ଆୟର୍ଲାଣ୍ଡ ଟିକିଏ ଥକିପଡ଼ିଥିଲା । ୧୯ଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ବ୍ରିଟିଶ ପାର୍ଲିଆମେଣ୍ଟରେ ଭୋଟାଧିକାର ପ୍ରସାରିତ ହେବାରୁ ଅନେକ ଜାତୀୟତାବାଦୀ ଆଇରିଶ ସଭ୍ୟ ବ୍ରିଟିଶ କମନ୍ସ୍ ସଭାକୁ ନିର୍ବାଚିତ ହେଲେ । ଲୋକେ ଆଶା କରିବାକୁ ଲାଗିଲେ, ବୋଧହୁଏ ଆଇରିଶ ସ୍ୱାଧୀନତା ଲାଗି ଏମାନେ କିଛି କରି ପାରନ୍ତି । ପୁରୁଣାକାଳର ସଶସ୍ତ୍ର ବିଦ୍ରୋହ ପନ୍ଥା ବଦଳରେ ସେମାନେ ପାର୍ଲିଆମେଣ୍ଟାରୀ କାର୍ଯ୍ୟକୁ ଅନାଇ ରହିଲେ ।

ଉତ୍ତରରେ ଅଲଷ୍ଟର ଓ ଆୟର୍ଲାଣ୍ଡର ଅବଶିଷ୍ଟ ଅଞ୍ଚଳ ଭିତରେ ଫାଙ୍କ ଆହୁରି ବଢ଼ିଗଲା । ଜାତିଗତ ଓ ଧର୍ମଗତ ପାର୍ଥକ୍ୟ ଥାଏ ଏବଂ ଏହା ସାଙ୍ଗକୁ ଅର୍ଥନୀତିକ ଅସମାନତା ଆହୁରି ସ୍ପଷ୍ଟ ପରିଲକ୍ଷିତ ହେଲା । ଇଂଲଣ୍ଡ ଓ ସ୍କଟଲଣ୍ଡ ପରି ଅଲଷ୍ଟର ଶିଳ୍ପୋନ୍ନତ ହେଲା ଏବଂ ବଡ଼ ବଡ଼ କାରଖାନାରେ ଉତ୍ପାଦନ ହେବାକୁ ଲାଗିଲା । ଦେଶର ଅବଶିଷ୍ଟାଂଶ କୃଷିପ୍ରଧାନ, ମଧ୍ୟକାଳୀନ, ଲୋକସଂଖ୍ୟାନ୍ୟୂନ ଓ ଦାରିଦ୍ର୍ୟ ଅବସ୍ଥାରେ ଥିଲା । ଆୟର୍ଲାଣ୍ଡକୁ ଦୁଇ ଭାଗରେ ବିଭକ୍ତ କରିବାର ପୁରାତନ ନୀତି ଇଂଲଣ୍ଡରେ ଭଲରୂପେ ସଫଳ ହେଲା । ବାସ୍ତବିକ ଏହା ଏପରି ଭଲରୂପେ କାର୍ଯ୍ୟ କଲା ଯେ ପରବର୍ତ୍ତୀ ବର୍ଷରେ ଏହି ଅସୁବିଧା ଦୂର କରିବା ପାଇଁ ଇଂଲଣ୍ଡ ନିଜେ ଚେଷ୍ଟା କରି ହୋଇପାରିଲା ନାହିଁ । ଆଇରିଶ ସ୍ୱାଧୀନତାରେ ପ୍ରଧାନ ପ୍ରତିବନ୍ଧକ ହେଲା ଅଲଷ୍ଟର । ସ୍ୱାଧୀନ ଆୟର୍ଲାଣ୍ଡ ଦେଶରେ ପ୍ରୋଟେଷ୍ଟାଣ୍ଟ ଅଲଷ୍ଟର ଦରିଦ୍ର କାଥଲିକ ଆୟର୍ଲାଣ୍ଡରେ ହଜମ ହୋଇଯିବାର ଆଶଙ୍କା ଥିଲା ।

ବ୍ରିଟିଶ ପାର୍ଲିଆମେଣ୍ଟ ଓ ଆୟରଲାଣ୍ଡ "ହୋମରୁଲ" (ସ୍ୱାୟତ୍ତ ଶାସନ) ଏହି ଦୁଇଟି ନୂତନ ଶବ୍ଦ ବ୍ୟବହୃତ ହେଲା । ଆୟରଲାଣ୍ଡ ଦାବୀକୁ ଏବେ ସ୍ୱାୟତ୍ତ ଶାସନ ବୋଲି କୁହାଗଲା । ୭୦୦ ବର୍ଷ ପୁରାତନ ସ୍ୱାଧୀନତା ଦାବୀ ଅପେକ୍ଷା ଏହା ବହୁତ କମ ଓ ସେଥିରୁ ବହୁତ ପ୍ରଭେଦ ଏଥିରେ ଥିଲା । ଏହାର ଅର୍ଥ ସ୍ଥାନୀୟ ବ୍ୟାପାର ସମ୍ବନ୍ଧରେ ବିଚାର କରିବା ପାଇଁ ଏକ ଅଧୀନସ୍ଥ ଆଇରିଶ ପାର୍ଲିଆମେଣ୍ଟ ରହିବ; ବ୍ରିଟିଶ ପାର୍ଲିଆମେଣ୍ଟ କେତେକ ଗୁରୁତର ବ୍ୟାପାର ସବୁ ବିଷୟର ନିୟନ୍ତ୍ରଣ କରୁଥିବ । ପୁରୁଣା ସ୍ୱାଧୀନତା ଦାବୀକୁ ଏପରି ପାଣିଫଟାଇ ଦେବାରେ ଅନେକ ଆଇରିଶ ଲୋକ ସମ୍ମତ ହୋଇ ନ ଥିଲେ । କିନ୍ତୁ ଦେଶ ବିଦ୍ରୋହ ଓ ବିବାଦରେ କ୍ଳାନ୍ତ ହୋଇପଡ଼ିଥିଲା ଏବଂ ବିଦ୍ରୋହଲାଗି କେତେକ ନିଷ୍ଫଳ ଉଦ୍ୟମରେ ଯୋଗଦେବାକୁ ଅସ୍ୱୀକାର କଲା ।

ବ୍ରିଟିଶ କମନ୍ସ ସଭାରେ ଷ୍ଟୁଆର୍ଟ ପାର୍ନେଲ ଜଣେ ଆଇରିଶ ସଭ୍ୟ ଥିଲେ । ହ୍ୱିଗ ଓ ଟୋରି କୌଣସି ଦଳ ଆୟର୍ଲାଣ୍ଡ ପ୍ରତି ଆଦୌ ଦୃଷ୍ଟି ଦେଉ ନାହାନ୍ତି ବୋଲି ବୁଝିପାରି ସେମାନଙ୍କର ଶୁଦ୍ଧ ପାର୍ଲିଆମେଣ୍ଟାରି ଖେଳ ଚଳାଇବାରେ ସେମାନଙ୍କ ପକ୍ଷରେ ସହଜ ନ କରିଦେବା ପାଇଁ ସ୍ଥିର କଲେ ଆଉ କେତେକ ଆଇରିଶ ସଭ୍ୟଙ୍କ ସହ ଲମ୍ବା ବକ୍ତୃତା ଓ କେବଳ ବିଳମ୍ବ କରିବା ନିମନ୍ତେ ଅନ୍ୟ କୌଶଳସବୁ ଖଟାଇ ସେ ପାର୍ଲିଆମେଣ୍ଟାରି କାମରେ ବାଧାଦେବାକୁ ଆରମ୍ଭ କଲେ । ଏହିସବୁ କୌଶଳରେ ଇଂରେଜ ଲୋକେ ବଡ଼ ବିରକ୍ତ ହୋଇଗଲେ । ସେମାନେ କହିଲେ, ଏହା ପାର୍ଲିଆମେଣ୍ଟାରି ବା ବିଧିସଙ୍ଗତ ଓ ଭଦ୍ରସଙ୍ଗତ ନୁହେଁ । କିନ୍ତୁ ଏହିସବୁ ସମାଲୋଚନା ପାର୍ନେଲଙ୍କ କାର୍ଯ୍ୟରେ ଆଞ୍ଚ ଆଣିପାରି ନ ଥିଲା । ସେ ଇଂରେଜ ଲୋକଙ୍କ ତିଆରି ଆଇନ ଅନୁସାରେ ଭଦ୍ର ଇଂରେଜ ପାର୍ଲିଅମେଣ୍ଟାରି ଖେଳ ଖେଳିବା ପାଇଁ ପାର୍ଲିଆମେଣ୍ଟକୁ ଆସି ନ ଥିଲେ । ସେ ଆୟର୍ଲାଣ୍ଡର ସେବା କରିବା ନିମନ୍ତେ ଆସିଥିଲେ ଏବଂ ଯଦି ସାଧାରଣ ଭାବରେ ସେ ଏହା ନ କରି ପାରିଲେ, ତେବେ ଅସାଧାରଣ ଉପାୟ ଗ୍ରହଣ କରିବା ସମ୍ପୂର୍ଣ୍ଣ ଯଥାର୍ଥ ବୋଲି ବିଚାରିଲେ । ଯାହାହେଉ, ଆୟର୍ଲାଣ୍ଡ ପ୍ରତି ଦୃଷ୍ଟି ଆକର୍ଷଣ କରାଇବାରେ ସେ କୃତକାର୍ଯ୍ୟ ହେଲେ ।

ବ୍ରିଟିଶ କମନ୍ସ ସଭାରେ ପାର୍ନେଲ ଆଇରିଶ ସ୍ୱାୟତ୍ତ ଶାସନ ଦଳର ନେତା ହେଲେ ଏବଂ ଦୁଇ ପୁରୁଣା ବ୍ରିଟିଶ ଦଳ ପକ୍ଷରେ ଏହି ଦଳ ଏକ ବିରକ୍ତିକର ବିଷୟ ହୋଇ-ପଡ଼ିଲା । ଏହି ଦୁଇଦଳର ସଂଖ୍ୟା ଅନେକ ଅଧିକେ ସମାନ ଥିଲା—ଆଇରିଶ ସ୍ୱାୟତ୍ତ ଶାସନ ଦଳ ଯେକୌଣସି ପକ୍ଷରେ ଗଲେ ଗୋଟାଏ ପାର୍ଥକ୍ୟ ଜନ୍ମାଇ ଦେଇପାରେ । ଏହିପରି ଭାବରେ ଆଇରିଶ ସମସ୍ୟା ସବୁଦା ଆଗରେ ରହିଲା । ଶେଷରେ ଆୟର୍ଲାଣ୍ଡକୁ ସ୍ୱାୟତ୍ତ ଶାସନ ଦେବାଲାଗି ଗ୍ଲାଡ଼ଷ୍ଟୋନ ସମ୍ମତ ହେଲେ ଏବଂ ୧୮୮୬ରେ କମନ୍ସ ସଭାରେ ସେ ଏକ ସ୍ୱାୟତ୍ତ ଶାସନ ବିଲ ଆଗତ କଲେ । ଏହା ଏକ ଅତି ମାମୁଲି ପ୍ରକାରର ସ୍ୱାୟତ୍ତ ଶାସନ ଆଇନ ଥିଲା; କିନ୍ତୁ ଏହା ହୋଇ ସୁଦ୍ଧା ଗୋଟାଏ ଝଡ଼ ସୃଷ୍ଟି କଲା । ଅବଶ୍ୟ ଟୋରିମାନେ ଏହାର ସମ୍ପୂର୍ଣ୍ଣ ବିରୋଧୀ ଥିଲେ । ଏପରିକି ଗ୍ଲାଡ଼ଷ୍ଟୋନଙ୍କ ନିଜଦଳ ମଧ୍ୟ ଏହାକୁ ପସନ୍ଦ କଲେ ନାହିଁ ଏବଂ ଏହି ଦଳ ଦୁଇଭାଗରେ ବିଭକ୍ତ ହୋଇଗଲା – ଏକ ଦଳ ପ୍ରକୃତରେ ଟୋରିଙ୍କ ସହ ଯୋଗଦେଲେ; ଏମାନେ ଆୟର୍ଲାଣ୍ଡକୁ ଯୋଗକରିବା ସପକ୍ଷରେ ଥିବାରୁ ଏମାନଙ୍କୁ "ଇଉନିୟନିଷ୍ଟ" କୁହାହେଉଥିଲା । ସ୍ୱାୟତ୍ତ ଶାସନ ଆଇନର ପତନ ହେଲା ଏବଂ ତାହା ସଙ୍ଗେ ସଙ୍ଗେ ଗ୍ଲାଡ଼ଷ୍ଟୋନଙ୍କର ମଧ୍ୟ ପତନ ହେଲା ।

ସାତବର୍ଷ ପରେ ୧୮୯୩ରେ ୮୪ ବର୍ଷ ବୟସରେ ଗ୍ଲାଡ଼ଷ୍ଟୋନ ପୁଣି ପ୍ରଧାନମନ୍ତ୍ରୀ ହେଲେ । ସେ ପୁଣି ଦ୍ୱିତୀୟ ସ୍ୱାୟତ୍ତ ଶାସନ ବିଲ ଆଗତ କଲେ ଏବଂ ଅତି ଅଳ୍ପ ଅଧିକ ଭୋଟରେ ଏହା କମନ୍ସ ସଭାରେ ପାସ୍ ହୋଇଗଲା । କିନ୍ତୁ ଆଇନ ହେବା ପୂର୍ବରୁ ସବୁ

ବିଲ ଲର୍ଡସଭାରେ ପାଶ୍ ହେବାକୁ ପଡ଼େ ଏବଂ ଲର୍ଡସଭାରେ ଜାଠ ଓ ପ୍ରତିକ୍ରିୟାପନ୍ଥୀ ପୂର୍ଣ୍ଣ ଥିଲେ । ଏହା ନିତାନ୍ତ ସହଜ ନୁହେଁ । ଏହା କେତେକ ବଡ଼ ଭୂସ୍ୱାମୀଙ୍କର ବଂଶ ପରମ୍ପରା ହିଁ—ତାଙ୍କ ସାଥିକୁ କେତେକ ବିଶପ୍ ବି ରହୁଥିଲେ । କମନ୍ସ ସଭାରେ ଯେଉଁ ସ୍ୱାୟତ୍ତ ଶାସନ ବିଲ୍ ପାଶ୍ ହୋଇଥିଲା ଲର୍ଡସଭାରେ ତାହା ଅଗ୍ରାହ୍ୟ ହୋଇଥିଲା ।

ତେଣୁ ଆୟର୍ଲଣ୍ଡ ଯାହା ଚାହୁଁଥିଲା ତାହା ଆଣିବାରେ ଶାସନତାନ୍ତ୍ରିକ ବା ପାର୍ଲିଆମେଣ୍ଟାରୀ ଉଦ୍ୟମ ସବୁ ବିଫଳ ହେଲା । ତଥାପି ସେମାନେ କୃତକାର୍ଯ୍ୟ ହୋଇ-ପାରନ୍ତି ବୋଲି ଆଶା ପୋଷଣ କରି ଆଇରିଶ-ଜାତୀୟତାବାଦୀ ଦଳ ବା ସ୍ୱାୟତ୍ତ ଶାସନ ଦଳ ପାର୍ଲିଆମେଣ୍ଟରେ କାର୍ଯ୍ୟ କରିବାରେ ଲାଗିଲେ ଏବଂ ମୋଟାମୋଟି ଆୟର୍ଲଣ୍ଡ ଲୋକଙ୍କର ସେମାନଙ୍କ ଉପରେ ବିଶ୍ୱାସ ଥିଲା । କିନ୍ତୁ ଅନେକ ଲୋକ ଏପରି ଥିଲେ, ଯେଉଁମାନେ ଏହି ପନ୍ଥା ଓ ବ୍ରିଟିଶ ପାର୍ଲିଆମେଣ୍ଟରୁ ବିଶ୍ୱାସ ହରାଇଥିଲେ । ସଙ୍କୀର୍ଣ୍ଣ ଅର୍ଥରେ ରାଜନୀତି ଶବ୍ଦର ଯାହା ଅର୍ଥ ବୁଝାଏ, ସେପରି ରାଜନୀତିରେ ଅନେକ ଆଇରିଶ ଲୋକ ବିରକ୍ତ ହୋଇ-ଗଲେ ଏବଂ ସଂସ୍କୃତିଗତ ଓ ଅର୍ଥନୀତିକ କାର୍ଯ୍ୟକଳାପରେ ନିଜକୁ ନିଯୁକ୍ତ କଲେ । ବିଂଶ ଶତାବ୍ଦୀର ଆରମ୍ଭ କାଳରେ ଆୟର୍ଲଣ୍ଡରେ ଏକ ସାଂସ୍କୃତିକ ପୁନରୁଦ୍ଧାର ହେଲା ଏବଂ ବିଶେଷ ଭାବରେ ଗେଲିକ ଭାଷା ବ୍ୟବହାର କରିବା ପାଇଁ ପୁନର୍ବାର ଉଦ୍ୟମ କରାଗଲା—ଏହା ଦେଶରେ ପୁରୁଣା ଭାଷା ଏବଂ ପଶ୍ଚିମାଞ୍ଚଳର ମଫସଲ ଜିଲ୍ଲାମାନଙ୍କରେ ଅଦ୍ୟାବଧି ପ୍ରଚଳିତ ଅଛି । ଏହି କେଲଟିକ୍ ଭାଷାରେ ଏକ ସମୃଦ୍ଧିଶାଳୀ ସାହିତ୍ୟ ଥିଲା; କିନ୍ତୁ ଶତାବ୍ଦୀ ଶତାବ୍ଦୀ ଧରି ଇଂରେଜ ପ୍ରାଧାନ୍ୟ ଏହାକୁ ସହରରୁ ତଡ଼ିଦେଲା ଏବଂ ଏହା କ୍ରମେ ଲୋପ ପାଇଗଲା । ଆଇରିଶ ଜାତୀୟତାବାଦୀମାନେ ବୋଧକଲେ ଯେ ଆୟର୍ଲଣ୍ଡ ନିଜର ଭାଷା ମଧ୍ୟଦେଇ ତାହାର ପୁରାତନ ସଂସ୍କୃତି ଓ ଆତ୍ମରକ୍ଷା କରିପାରିବ । ତେଣୁ ସେମାନେ ପଶ୍ଚିମାଞ୍ଚଳର ଗ୍ରାମମାନଙ୍କରୁ ଏହାକୁ ବାହାର କରିବା ନିମନ୍ତେ କଠିନ ପରିଶ୍ରମ କଲେ ଏବଂ ଏହାକୁ ଏକ ଜୀବନ୍ତ ଭାଷା କରିବାକୁ ଲାଗିଲେ । ଏହି ଉଦ୍ଦେଶ୍ୟରେ ଏକ ଗେଲିକ୍‌ଲିଗ ସ୍ଥାପିତ ହେଲା । ପ୍ରତ୍ୟେକ ସ୍ଥାନରେ ଏବଂ ବିଶେଷତଃ ସମସ୍ତ ପରାଧୀନ ଦେଶରେ ଜାତୀୟ ଆନ୍ଦୋଳନ ଦେଶର ଭାଷା ଉପରେ ଭିତ୍ତିକରି ଚାଲେ । ବିଦେଶୀ ଭାଷାକୁ ଭିତ୍ତି କରି କୌଣସି ଆନ୍ଦୋଳନ ଜନସାଧାରଣଙ୍କ ପାଖରେ ପହଞ୍ଚିପାରିବ ନାହିଁ କିମ୍ବା ଚେର ମାଡ଼ି-ପାରିବ ନାହିଁ । ଆୟର୍ଲଣ୍ଡରେ ଇଂରେଜୀ ଭାଷା ପ୍ରାୟ ବିଦେଶୀ ଭାଷା ନ ଥିଲା; ଏହାକୁ ପ୍ରାୟ ସମସ୍ତେ ଜାଣିଥିଲେ ଏବଂ କହୁଥିଲେ; ନିଃସନ୍ଦେହ ଗେଲିକ ଭାଷା ଅପେକ୍ଷା ଏହା ଭଲ ରୂପେ ଜଣାଥିଲା । ତଥାପି ଆଇରିଶ ଜାତୀୟତାବାଦୀମାନେ ଗେଲିକ୍ ଭାଷାର ପୁନରୁଦ୍ଧାର କରିବା ଆବଶ୍ୟକ ବୋଲି ବିଚାରିଲେ—ତାହାହେଲେ ପୁରାତନ ସଂସ୍କୃତି ସହିତ ସେମାନେ ସମ୍ପର୍କ ହରାଇବେ ନାହିଁ ।

ଯେତେବେଳେ ଆୟର୍ଲାଣ୍ଡରେ ଗୋଟାଏ ଧାରଣା ଥିଲା ଯେ ଶକ୍ତି ଭିତରୁ ଆସେ, ବାହାରୁ ନୁହେଁ । ପାର୍ଲିଆମେଣ୍ଟରେ କେବଳ ରାଜନୀତିକ କାର୍ଯ୍ୟ ଯୋଗୁ ହତୋତ୍ସାହ ଭାବ ଆସି ଯାଉଥିଲା ଏବଂ ସେହି ହେତୁ ଦୃଢ଼ ଭିତ୍ତି ଉପରେ ଦେଶକୁ ଗଢ଼ିବା ନିମନ୍ତେ ଉଦ୍ୟମ କରାଗଲା । ବିଂଶ ଶତାବ୍ଦୀର ପ୍ରଥମଭାଗରେ ଏହି ନୂତନ ଆୟର୍ଲାଣ୍ଡର ପୁରାତନଠାରୁ ଅନେକ ପ୍ରଭେଦ ଥିଲା ଏବଂ ଅନେକ ଦିଗରେ ପୁନରଭ୍ୟୁଦୟ ପରିଲକ୍ଷିତ ହେଲା । ସାହିତ୍ୟ ଓ ସଂସ୍କୃତି ଦିଗରେ ଉନ୍ନତି କଥା ମୁଁ ଆଗରୁ କହିଛି—ସେହିପରି ଅର୍ଥନୀତିକ କ୍ଷେତ୍ରରେ ମଧ୍ୟ ସହଯୋଗ ନୀତି ଅନୁସାରେ କୃଷକମାନଙ୍କୁ ସଂଗଠନ କରିବାର ଉଦ୍ୟମ ସଫଳ ହୋଇଥିଲା ।

କିନ୍ତୁ ଏ ସବୁ ପଛରେ ସ୍ୱାଧୀନତା ପ୍ରତି ଆକାଙ୍କ୍ଷା ରହିଥିଲା ଏବଂ ଯଦିଓ ବ୍ରିଟିଶ ପାର୍ଲିଆମେଣ୍ଟରେ ଥିବା ଆଇରିଶ୍ ଜାତୀୟବାଦୀ ଦଳ ପ୍ରତି ଆଇରିଶ ଲୋକଙ୍କର ବିଶ୍ୱାସ ଥିଲପରି ବୋଧ ହେଉଥିଲା; ତଥାପି ସେମାନଙ୍କଠାରେ ବିଶ୍ୱାସ ଦୋହଲିଗଲା । ସେମାନେ କେବଳ ରାଜନୀତିଜ୍ଞ—ଖାଲି ବକ୍ତୃତା ଦେବାର ପ୍ରିୟ ଏବଂ କୌଣସି କାର୍ଯ୍ୟ କରିବାରେ ଅକ୍ଷମ - ଏହି ଦୃଷ୍ଟିରେ ସେମାନଙ୍କୁ ଦେଖିବାକୁ ଲାଗିଲେ । ଅବଶ୍ୟ ପୁରାତନ ଫେନିୟାନ ଓ ଅନ୍ୟ ସ୍ୱାଧୀନତାରେ ଆସ୍ଥା ଥିବା ଦଳସବୁ ଏହି ବ୍ୟବସ୍ଥା ସଭିବାଲା ଓ ତାଙ୍କର ସ୍ୱାୟତ୍ତ ଶାସନରେ କେବେହେଁ ବିଶ୍ୱାସ କରୁ ନ ଥିଲେ । ମାତ୍ର ଏବେ ନୂତନ ଓ ଯୁବକ ଆୟର୍ଲାଣ୍ଡ ମଧ୍ୟ ପାର୍ଲିଆମେଣ୍ଟରୁ ଦୃଷ୍ଟି ହଟାଇନେବାକୁ ଲାଗିଲା । ଆତ୍ମନିର୍ଭରଶୀଳତାର ଭାବ ପ୍ରସରିଲା; ରାଜନୀତିରେ କାହିଁକି ଏହା ପ୍ରୟୋଗ କରା ନ ଯିବ ? ପୁଣି ସଶସ୍ତ୍ର ବିଦ୍ରୋହ ଭାବ ଲୋକଙ୍କ ମନରେ ଖେଳିବାକୁ ଆରମ୍ଭ କଲା । କିନ୍ତୁ ଏହି ଯୁଦ୍ଧ କରିବା ପ୍ରବୃତ୍ତିକୁ ଏକ ନୂତନ ରୂପ ଦିଆଗଲା । ଜଣେ ଯୁବକ ଆଇରିଶ ଆର୍ଥର ଗ୍ରିଫିଥ୍ ଏକ ନୂତନ ନୀତି ପ୍ରଚାର କରିବାକୁ ଆରମ୍ଭ କଲେ—ଏହାକୁ ସିନ୍‌ଫେନ୍ (Sinn fein) ବୋଲି କହନ୍ତି—ଏହାର ଠିକ୍ ଅର୍ଥ ହେଉଛି "ଆମେ ନିଜେ" ।

ଏହି ଶବ୍ଦରୁ ଏହା ପଛରେ ଥିବା ନୀତିର ଧାରଣା ଜନ୍ମେ । ସିନ୍‌ଫେନମାନେ ଚାହିଁଲେ ଆୟର୍ଲାଣ୍ଡ ନିଜ ଉପରେ ନିର୍ଭର କରୁ ଏବଂ ସାହାଯ୍ୟ ବା ଦାନ ପାଇଁ ଇଂଲଣ୍ଡକୁ ନ ଅନାଉ; ସେମାନେ ଜାତିର ଶକ୍ତି ଦେଶ ଭିତରୁ ହିଁ ଗଢ଼ିବାକୁ ଚାହୁଁଥିଲେ । ସେମାନେ ଗେଲିକ ଆନ୍ଦୋଳନ ଓ ସଂସ୍କୃତିର ପୁନରୁଦ୍ଧାରକୁ ସମର୍ଥନ କଲେ । ରାଜନୀତିରେ ଯେଉଁ ବୃଥା ପାର୍ଲିଆମେଣ୍ଟାରି କାର୍ଯ୍ୟ କରାଯାଉଥିଲା, ସେମାନେ ତାହା ନାପସନ୍ଦ କଲେ ଏବଂ ଏଥିରେ କିଛି ଆଶା ରଖିଲେ ନାହିଁ । ଅନ୍ୟପକ୍ଷରେ ସେମାନେ ସଶସ୍ତ୍ର ବିଦ୍ରୋହ କାର୍ଯ୍ୟୋପଯୋଗୀ ବୋଲି ବିଚାରିଲେ ନାହିଁ । ସେମାନେ ପାର୍ଲିଆମେଣ୍ଟାରି କାର୍ଯ୍ୟପନ୍ଥା ବିରୋଧରେ ବ୍ରିଟିଶ ସରକାର ସହ ଏକପ୍ରକାର ଅସହଯୋଗ କରି "ପ୍ରତ୍ୟକ୍ଷ ସଂଗ୍ରାମ" (Direct action)ର ପ୍ରଚାର କଲେ । ଆର୍ଥର ଗ୍ରିଫିଥ୍ ହଙ୍ଗେରୀର ଦୃଷ୍ଟାନ୍ତ ଦେଲେ ।

ସେଠି ଏକେପୁରୁଷ ପୂର୍ବେ ନିଷ୍କ୍ରିୟ ପ୍ରତିରୋଧ (ପାସିଭ୍ ରେଜିଷ୍ଟାନ୍ସ) ନୀତି କୃତକାର୍ଯ୍ୟ ହୋଇଥିଲା ଏବଂ ଇଂଲଣ୍ଡଠାରୁ ଜୋରପୂର୍ବକ ଆଦାୟ କରିବା ପାଇଁ ସେହି ନୀତି ଗ୍ରହଣ କରିବା ନିମନ୍ତେ ପ୍ରଚାର କଲେ ।

ଗତ ୧୩ ବର୍ଷ ଭିତରେ ଭାରତରେ ନାନାପ୍ରକାର ଅସହଯୋଗରେ ଆମେ ବହୁତ କାମ କରିଛେ ଏବଂ ଆମ ପୂର୍ବରୁ ଘଟିଥିବା ଆଇରିଶ୍ ଆନ୍ଦୋଳନ ସହିତ ଏହାକୁ ତୁଳନା କଲେ ମଉଜ ଲାଗେ । ସମଗ୍ର ଦୁନିଆ ଜାଣେ ଯେ ଆମର ଆନ୍ଦୋଳନର ଭିତ୍ତି ହେଲା ଅହିଂସା । ଆୟର୍ଲଣ୍ଡରେ ସେପରି କିଛି ମୂଳଭିତ୍ତି ବା ପୃଷ୍ଠଭୂମିକା ନ ଥିଲା; ତଥାପି ଶାନ୍ତିପୂର୍ଣ୍ଣ ନିଷ୍କ୍ରିୟ ପ୍ରତିରୋଧରେ ହିଁ ପ୍ରସ୍ତାବିତ ଅସହଯୋଗର ଶକ୍ତି ନିହିତ ଥିଲା । ଏହି ସଂଗ୍ରାମ ଶାନ୍ତିପୂର୍ଣ୍ଣ ଭାବରେ ହେବାର ଥିଲା ।

ସିନ୍‌ଫେନ୍ ଭାବ ଆସ୍ତେ ଆସ୍ତେ ଆୟର୍ଲଣ୍ଡର ଯୁବକଙ୍କ ଭିତରେ ପ୍ରସାର ଲାଭ କଲା । ସେମାନଙ୍କ ସକାଶେ ଆୟର୍ଲଣ୍ଡରେ ହଠାତ୍ ନିଆଁ ଧରି ନ ଥିଲା । ତଥାପି ଅନେକ ଲୋକ ପାର୍ଲିମେଣ୍ଟରୁ କିଛି ଆଶା କରୁଥିଲେ—ବିଶେଷତଃ ୧୯୦୬ରେ ବହୁତ ଅଧିକସଂଖ୍ୟକ ଭାବରେ ମାଡ଼ାଦଳ ପୁନର୍ବାର ନିର୍ବାଚିତ ହୋଇଥାଆନ୍ତି । କମନ୍ସ ସଭାରେ ବହୁମତ ଥାଇ ସୁଦ୍ଧା ଲର୍ଡ଼ସଭାରେ ମାଡ଼ାମାନଙ୍କୁ ଏକ ସ୍ଥାୟୀ ଜାଠ ଓ ଇଉନିୟନିଷ୍ଟଙ୍କର ଦମ୍ଭ ଅଧୀନ ହେବାକୁ ପଡ଼ିଲା ଏବଂ ଶୀଘ୍ର ଉଭୟଙ୍କ ଭିତରେ ସଂଘର୍ଷ ଫଳରେ ଲର୍ଡ଼ମାନଙ୍କର କ୍ଷମତା ଭାଙ୍ଗି ଦିଆଗଲା । ଆର୍ଥିକ ବ୍ୟାପାରରେ କୌଣସି ବିଲକୁ ଲର୍ଡ଼ସଭା ଆପତ୍ତି କଲେ; କ୍ରମାନ୍ୱୟ ଭାବରେ କମନ୍ସ ସଭାର ତିନୋଟି ବୈଠକରେ ସେହି ବିଲ ପାଶ୍ କରାଇ ସେମାନଙ୍କ ହସ୍ତକ୍ଷେପରୁ ରକ୍ଷା ମିଳିଲା । ଏହିପରି ଭାବରେ ୧୯୧୧ରେ ଏକ ପାର୍ଲିଆମେଣ୍ଟ ଆଇନ କରି ମାଡ଼ାମାନେ ଲର୍ଡ଼ସଭାର ଦାନ୍ତ ଉପାଡ଼ିଦେଲେ । କିନ୍ତୁ ତଥାପି ଯଥେଷ୍ଟ କ୍ଷମତା ଦେଇ ଧରିରହିବା ପାଇଁ ଓ ହସ୍ତକ୍ଷେପ କରିବା ନିମନ୍ତେ ଲର୍ଡ଼ମାନେ ରହିଲେ ।

ଲର୍ଡ଼ମାନଙ୍କର ଅନିବାର୍ଯ୍ୟ ବାଧା ପାଇଁ ବ୍ୟବସ୍ଥା କରି ମାଡ଼ାମାନେ ତାଙ୍କର ତୃତୀୟ ସ୍ୱାୟତ୍ତ ଶାସନ ବିଲ ଆଗତ କଲେ ଏବଂ ୧୯୧୩ ମସିହାରେ କମନ୍ସ ସଭାରେ ଏହା ପାଶ୍ ହୋଇଗଲା । ଯେପରି ଆଶା କରାଯାଉଥିଲା ଲର୍ଡ଼ମାନେ ଏହାକୁ ଫୋପାଡ଼ିଦେଲେ ଏବଂ ତାପରେ କ୍ରମାନ୍ୱୟେ ତିନୋଟି ବୈଠକ କରି କମନ୍ସରେ ଏହା ପାଶ୍ କରାଇବାର ଦୀର୍ଘ-ପନ୍ଥା ଗ୍ରହଣ କରାଗଲା । ୧୯୧୪ରେ ଏହା ଆଇନ ହେଲା ଏବଂ ଏହା ଅଲଷ୍ଟର ସମେତ ସମଗ୍ର ଆୟର୍ଲଣ୍ଡ ପ୍ରତି ପ୍ରଯୁଜ୍ୟ ହେଲା ।

ଶେଷରେ ଆୟର୍ଲାଣ୍ଡ ସ୍ୱାୟତ୍ତ ଶାସନ ପାଇଲା ପରି ବୋଧହେଲା, କିନ୍ତୁ ଏଥିରେ ଅନେକ 'କିନ୍ତୁ' ଥିଲା । ୧୯୧୨ ଓ ୧୯୧୩ରେ ପାର୍ଲିଆମେଣ୍ଟରେ ସ୍ୱାୟତ୍ତ ଶାସନ ଆଲୋଚିତ ହେଉଥିବାବେଳେ ଅଦ୍ଭୁତ ଘଟଣାସବୁ ଆୟର୍ଲାଣ୍ଡ ଉତ୍ତରରେ ଘଟୁଥିଲା । ଅଲଷ୍ଟର

ନେତାମାନେ ଘୋଷଣା କଲେ ଏହା ଆଇନ ହୋଇଗଲେ ସୁଦ୍ଧା ସେମାନେ ଗ୍ରହଣ କରିବେ ନାହିଁ ଏବଂ ଏହାର ପ୍ରତିରୋଧ କରିବେ । ସେମାନେ ବିଦ୍ରୋହ କଥା ଉଠାଇଲେ ଏବଂ ସେଥିପାଇଁ ପ୍ରସ୍ତୁତ ହେଲେ । ଏପରି ମଧ୍ୟ କୁହାଗଲା ଯେ ସ୍ୱାୟତ୍ତଶାସନ ବିରୁଦ୍ଧରେ ଲଢ଼ାଇ କରିବା ନିମନ୍ତେ ସେମାନେ ବିଦେଶୀ ଶକ୍ତି ଅର୍ଥାତ୍ ଜର୍ମାନୀର ସାହାଯ୍ୟ ନେବାକୁ ଦ୍ୱିଧା କରିବେ ନାହିଁ । ଏହା ପ୍ରକାଶ୍ୟ ଓ ଅତ୍ୟନ୍ତ କୃତଘ୍ନତା । ଆହୁରି ମଜାର କଥା ହେଉଛି, ଇଂଲଣ୍ଡ ରକ୍ଷଣଶୀଳ ଦଳର ନେତାମାନେ ଏହି ବିଦ୍ରୋହମୂଳକ ଆନ୍ଦୋଳନକୁ ଆଶୀର୍ବାଦ କଲେ ଏବଂ ଅନେକ ଏହାକୁ ସାହାଯ୍ୟ କଲେ । ଏହା ସୁସ୍ପଷ୍ଟ ଦେଖାଗଲା ଯେ ତଥାକଥିତ "ଉଚ୍ଚ ଶ୍ରେଣୀ" ବା ଶାସକ ଶ୍ରେଣୀ ସାଧାରଣ ଭାବରେ ଅଲଷ୍ଟରର ସପକ୍ଷ ଥିଲେ ଏବଂ ଏହି ଶ୍ରେଣୀରୁ ଯେତେ ସେନାବିଭାଗ କର୍ମଚାରୀ ଥିଲେ ତାଙ୍କ ଭିତରୁ ଅନେକେ ମଧ୍ୟ ସେହିପରି ଥିଲେ । ଅସ୍ତ୍ର-ଶସ୍ତ୍ର ଲୁଚାଇ ଅଣାଗଲା ଏବଂ ପ୍ରକାଶ୍ୟ ଭାବରେ ସ୍ୱେଚ୍ଛାସେବକମାନଙ୍କର ଡ୍ରିଲ ବା କସରତ୍ କରାଗଲା । ବେଲ ଫାଷ୍ଟରେ ସରକାର ଶାସନ ଭାର ନେବାପାଇଁ ଅଲଷ୍ଟରରେ ଏକ ଅସ୍ଥାୟୀ ସରକାର ମଧ୍ୟ ଗଢ଼ାହେଲା । ଦେଖିଲେ ଆନନ୍ଦ ଲାଗେ ଅଲଷ୍ଟରରେ ଏହି "ବିଦ୍ରୋହୀ"-ମାନଙ୍କ ଭିତରୁ ଜଣେ ମୁଖ୍ୟ ଲୋକ ଥିଲେ ଏଫ୍. ଇ. ସ୍ମିଥ । ସେ ପାର୍ଲିଆମେଣ୍ଟର ରକ୍ଷଣଶୀଳ ଦଳର ଜଣେ ଖ୍ୟାତନାମା ସଭ୍ୟ—ସେ ପରେ ଲର୍ଡ଼ ବର୍କନ୍ ହେଡ୍ ହେଲେ । ଭାରତ ସଚିବ ଓ ଆହୁରି ଅନେକ ଉଚ୍ଚପଦବୀ ସେ ପାଇଥିଲେ ।

ବିଦ୍ରୋହ ଇତିହାସରେ ସାଧାରଣ ଘଟଣା ଏବଂ ବିଶେଷ ଭାବରେ ଆୟର୍ଲାଣ୍ଡରେ ଏହାର ପୂର୍ଣ୍ଣ ଭାଗ ଥିଲା । ତଥାପି ଅଲଷ୍ଟରର ବିଦ୍ରୋହ ଲାଗି ଏପରି ଆୟୋଜନରେ ଆମର ବିଶେଷ ଆଗ୍ରହ ରହିଛି; କାରଣ ଯେଉଁ ଦଳ ନିଜର ଶାସନତାନ୍ତ୍ରିକ ଓ ରକ୍ଷଣଶୀଳ ରୂପକୁ ରକ୍ଷା କରିବାରେ ଗର୍ବ ଅନୁଭବ କରନ୍ତି, ସେହି ଦଳ ହିଁ ଏହା ପଶ୍ଚାତରେ ଥିଲା । ଏହି ଦଳ ହିଁ ସର୍ବଦା "ଆଇନ ଓ ଶୃଙ୍ଖଳା" କଥା ଉଠାଏ ଏବଂ ଆଇନ ଓ ଶୃଙ୍ଖଳା ନ ମାନି ଯେଉଁମାନେ ଅପରାଧ କରନ୍ତି ସେମାନଙ୍କୁ ଗୁରୁତର ଶାସ୍ତି ଦେବା ସପକ୍ଷରେ ଏମାନେ ଯାଆନ୍ତି; ଅଥଚ ଏହି ଦଳର ମୁଖିଆ ସଭ୍ୟମାନେ ପ୍ରକାଶ୍ୟ ରାଜଦ୍ରୋହ ପ୍ରଚାର କଲେ, ସଶସ୍ତ୍ର ବିଦ୍ରୋହ ପାଇଁ ପ୍ରସ୍ତୁତ ହେଲେ ଓ ସାଧାରଣ ଲୋକ ଧନ ସାହାଯ୍ୟ କଲେ । ଆହୁରି ମଜାର କଥା ହେଉଛି, ଯେଉଁ ପାର୍ଲିଆମେଣ୍ଟ ସ୍ୱାୟତ୍ତ ଶାସନ ବିଲ୍ ଆଲୋଚନା କରୁଥିଲା ଏବଂ ପରେ ପାଶ୍ କଲା ଏହି ପ୍ରସ୍ତାବିତ ବିଦ୍ରୋହ ସେ ପାର୍ଲିଆମେଣ୍ଟ ବିରୁଦ୍ଧରେ ଯାଉଥିଲା । ଏହିରୂପେ ଗଣତନ୍ତ୍ରର ଅସଲ ମୂଳଦୁଆକୁ ଏଥିରେ ଆକ୍ରମଣ କରାଗଲା ଏବଂ ଇଂରେଜ ଲୋକଙ୍କର ଯେଉଁ ପୁରୁଣା ଆସ୍ଫାଳନ ଯେ ସେମାନେ ଆଇନ ଶାସନ ଓ ଶାସନତାନ୍ତ୍ରିକ କାର୍ଯ୍ୟରେ ବିଶ୍ୱାସ କରନ୍ତି, ଏହା ଅକାରଣ ବୋଲି ପ୍ରମାଣିତ ହୋଇଗଲା ।

୧୯୧୨-୧୪ର ଅଲଷ୍ଟର ବିଦ୍ରୋହ ଏହିସବୁ ଛଳନା ଓ ଉଚ୍ଚ ଘୋଷିତ ବାକ୍ୟାବଳୀ ଉପରୁ ଆବରଣ ହଟାଇଦେଲା ଏବଂ ଗଭର୍ଣ୍ଣମେଣ୍ଟ ଓ ଆଧୁନିକ ଗଣତନ୍ତ୍ରର

ବାସ୍ତବ ପ୍ରକୃତି ପଦାରେ ପକାଇଦେଲା । ଯେପର୍ଯ୍ୟନ୍ତ "ଆଇନ ଓ ଶୃଙ୍ଖଳା" ଅର୍ଥ ଥିଲା, ଶାସକ ଶ୍ରେଣୀର ସ୍ୱାର୍ଥ ଓ ସୁବିଧାର ସଂରକ୍ଷଣ, ସେତେବେଳ ପର୍ଯ୍ୟନ୍ତ ଆଇନ ଓ ଶୃଙ୍ଖଳା ବାଞ୍ଛନୀୟ ବିବେଚିତ ହେଲା; ଯେପର୍ଯ୍ୟନ୍ତ ଗଣତନ୍ତ୍ର ଏହିସବୁ ସୁବିଧା ଓ ସ୍ୱାର୍ଥରେ ହାତ ନ ଦେବ, ସେପର୍ଯ୍ୟନ୍ତ ଗଣତନ୍ତ୍ର ସହ୍ୟ କରାଯିବ । କିନ୍ତୁ ଯଦି ଏହିସବୁ ବିଶେଷ ସୁବିଧା ଉପରେ ଚଢ଼ାଉ ହୁଏ, ତେବେ ଏହି ଶ୍ରେଣୀ ଯୁଦ୍ଧ କରିବେ । ତେଣୁ "ଆଇନ ଓ ଶୃଙ୍ଖଳା" ଏକ ସୁନ୍ଦର ଶବ୍ଦାବଳୀ—ଶାସକବର୍ଗଙ୍କ ପାଖରେ ଏହାର ଅର୍ଥ ହେଉଛି ନିଜର ସ୍ୱାର୍ଥ । ଏହା ପରିଷ୍କାର କରିଦେଲା ଯେ ବ୍ରିଟିଶ ଗଭର୍ଣ୍ଣମେଣ୍ଟ ଏକଶ୍ରେଣୀର ସରକାର ଏବଂ ଏପରିକି ପାର୍ଲିଆ-ମେଣ୍ଟରେ ଅଧିକ ସଂଖ୍ୟକ ଏହାକୁ ତଡ଼ିଦେବା ପାଇଁ ଇଚ୍ଛା କଲେ ମୁଦ୍ଧା କରିବା ସେତେ ସହଜ ନୁହେଁ । ଯଦି ଏପରି ବହୁସଂଖ୍ୟକ ଦଳ ଏକ ସାମ୍ୟବାଦୀ ଆଇନ ପାଶ୍ କରିବାର ଚେଷ୍ଟା କରନ୍ତି ଓ ସେଥିରେ ତାଙ୍କ ସୁବିଧା କମ ହୋଇଯାଏ, ତେବେ ଗଣତନ୍ତ୍ର ନୀତି ସତ୍ତ୍ୱେ ସେମାନେ ଏହା ବିରୁଦ୍ଧରେ ଲଢ଼ାଇ କରିବେ । ଏହା ମନେରଖିବା ଭଲ; କାରଣ ସବୁ ଦେଶରେ ଏହା ଘଟେ ଏବଂ ପବିତ୍ର ବାକ୍ୟାବଳୀ ଓ ପ୍ରତିଧ୍ୱନି କରୁଥିବା ଶବ୍ଦ କୁହୁଡ଼ିରେ ଆମେ ଏହି ବାସ୍ତବତାଟା ଭୁଲିଯାଇପାରୁ । ଏହି ସମ୍ବନ୍ଧରେ ଦକ୍ଷିଣ ଆମେରିକା ପ୍ରଜାତନ୍ତ୍ର—ଯେଉଁଠି ବରାବର ବିପ୍ଳବ ହୁଏ ଏବଂ ଅଟଳ ସରକାର ଥିବା ଇଂଲଣ୍ଡ ମଧ୍ୟରେ ସାରଗତ ପାର୍ଥକ୍ୟ କିଛି ନାହିଁ । ଶାସକ ଶ୍ରେଣୀ ଭିତରକୁ ପ୍ରବେଶ କରିଥିବାରୁ ଏବଂ ଅନ୍ୟ କୌଣସି ଶ୍ରେଣୀ ଏ ପର୍ଯ୍ୟନ୍ତ ତାଙ୍କୁ ଅନ୍ତର କରିବା ନିମନ୍ତେ ସେପରି ଶକ୍ତିଶାଳୀ ନ ହୋଇଥିବାରୁ ଏହି ଦୃଢ଼ତା ରହିଛି । ୧୯୧୧ରେ ସେମାନଙ୍କର ଏକ ଅଂଶ ଲର୍ଡସଭା ଦୁର୍ବଳ ହୋଇଗଲା; ସେମାନେ ଉତ୍ସୁକ୍ତ ହୋଇଗଲେ ଏବଂ ଅଲଷ୍ଟର ଏକ ବିଦ୍ରୋହ ପାଇଁ ଛଳନା ରୂପେ ନିଆଗଲା ।

ଭାରତରେ ଅବଶ୍ୟ ଏହି ମନୋମୁଗ୍ଧକର "ଆଇନ ଓ ଶୃଙ୍ଖଳା" ଶବ୍ଦ ଦୁଇଟି ଆମେ ପ୍ରତ୍ୟହ ଏବଂ ଦିନକରେ ଅନେକଥର ଶୁଣୁ । ସେହିହେତୁ ଏହାର ପ୍ରକୃତ ଅର୍ଥ କଣ ଏହା ମନେରଖିବା ଭଲ । ଆମେ ବି ସ୍ମରଣ କରିପାରୁ ଯେ ଆମର ଜଣେ ଉପଦେଷ୍ଟା ଭାରତ ସଚିବ ଅଲଷ୍ଟର ବିଦ୍ରୋହର ନେତା ଥିଲେ ।

ତେଣୁ ଅଲଷ୍ଟର ଅସ୍ତ୍ରଶସ୍ତ୍ର ଓ ସ୍ୱେଚ୍ଛାସେବକ ସହ ବିଦ୍ରୋହ ଲାଗି ପ୍ରସ୍ତୁତ ହେଲା ଏବଂ ସରକାର ନିସ୍ତବ୍ଧ ଭାବରେ ଦେଖୁଥାଏ । ଏପରି ଆୟୋଜନ ବିରୁଦ୍ଧରେ କୌଣସି ଅର୍ଡିନାନ୍ସ ଘୋଷଣା ହେଲା ନାହିଁ । କିଛିଦିନ ପରେ ସମଗ୍ର ଆୟର୍ଲଣ୍ଡ ଅଲଷ୍ଟରକୁ ଅନୁକରଣ କରିବାକୁ ଲାଗିଲା ଏବଂ "ଜାତୀୟ ସ୍ୱେଚ୍ଛାସେବକ" ସଂଗଠିତ କଲା; କିନ୍ତୁ ଏମାନଙ୍କର ଉଦ୍ଦେଶ୍ୟ ହେଲା ସ୍ୱାୟତ୍ତ ଶାସନ ଲାଗି ଲଢ଼ାଇ କରିବା ଓ ଦରକାର ପଡ଼ିଲେ ଅଲଷ୍ଟର ବିରୁଦ୍ଧରେ ମଧ୍ୟ ଯୁଦ୍ଧ କରିବା । ତେଣୁ ବିରୋଧୀ ସୈନ୍ୟଦଳ ଆୟର୍ଲଣ୍ଡରେ ଗଢ଼ିଉଠିଲା । ବିଚିତ୍ର କଥା ଯେ ଯେଉଁ ବ୍ରିଟିଶ କର୍ତ୍ତାମାନେ ଅଲଷ୍ଟର ବିଦ୍ରୋହ ଲାଗି ସ୍ୱେଚ୍ଛାସେବକମାନଙ୍କର

ଅସ୍ତ୍ରଶସ୍ତ୍ର ସଜ୍ଜିତ ହେବା ଦେଖି ଆଖିପିଛୁଳା ପକାଇ ଚାଲିଯାଉଥିଲେ, ସେମାନେ ଏହି "ଜାତୀୟ ସ୍ୱେଚ୍ଛାସେବକ"ଙ୍କୁ ଦବାଇବା କମନ୍ତେ ଜାଗ୍ରତ ହୋଇଉଠିଲେ—ଯଦିଓ ସ୍ୱାୟତ୍ତ ଶାସନ ଆଇନ ବିରୁଦ୍ଧରେ ସ୍ୱେଚ୍ଛାସେବକ ଦଳ ଯାଉ ନ ଥିଲେ ।

ଏହି ଦୁଇପ୍ରକାର ସ୍ୱେଚ୍ଛାସେବକଙ୍କ ଭିତରେ ଆୟର୍ଲଣ୍ଡରେ ସଂଘର୍ଷ ହେବା ଅନିବାର୍ଯ୍ୟ ପରି ମନେହେଲା ଏବଂ ଏହାର ଅର୍ଥ ଗୃହଯୁଦ୍ଧ । ଠିକ୍ ସେତିକିବେଳେ ୧୯୧୪ ଅଗଷ୍ଟ ମାସରେ ଏକ ବଡ଼ ଯୁଦ୍ଧ, ପୃଥିବୀ-ଯୁଦ୍ଧ ଆରମ୍ଭ ହେଲା ଏବଂ ଏହା ଆଗରେ ଆଉ ସବୁ ଅତି ଗୌଣ ହୋଇ କୁଆଡ଼େ ଲୁଚିଗଲା । ବାସ୍ତବିକ ସ୍ୱାୟତ୍ତ ଶାସନ ବିଲ ଆଇନରେ ଧାର୍ଯ୍ୟ ହେଲା; କିନ୍ତୁ ତାହା ସଙ୍ଗେ ସଙ୍ଗେ ଯୋଗ କରିହେଲା ଯେ ଯୁଦ୍ଧ ପୂର୍ବରୁ ଏହା କାର୍ଯ୍ୟକାରୀ ହେବ ନାହିଁ; ତେଣୁ ସ୍ୱାୟତ୍ତ ଶାସନ ପୂର୍ବପରି ସୁଦୂରରେ ରହିଲା ଏବଂ ଏହି ଯୁଦ୍ଧ ଶେଷ ହେବା ପୂର୍ବରୁ ଆୟର୍ଲଣ୍ଡରେ ଅଭୁତ ଅନେକ ଘଟଣା ଘଟିଗଲା ।

ପୃଥିବୀ-ଯୁଦ୍ଧ ଆରମ୍ଭ ପର୍ଯ୍ୟନ୍ତ ମୁଁ ବିଭିନ୍ନ ଦେଶର ବିବରଣୀ ବର୍ଣ୍ଣନା କରି ଆସୁଛି । ଆୟର୍ଲଣ୍ଡରେ ଆମେ ସେହି ଅବସ୍ଥାରେ ପହଞ୍ଚିଲେଣି ଏବଂ ତେଣୁ ବର୍ତ୍ତମାନ ପାଇଁ ଆମେ ବନ୍ଦ କରିବା । କିନ୍ତୁ ମୁଁ ଏଠି ଶେଷ କରିବା ପୂର୍ବରୁ ଛୋଟେ ଗୋଟିଏ କଥା କହିବି । ଅଲଷ୍ଟରର ବିଦ୍ରୋହର ନେତାମାନଙ୍କୁ ତାଙ୍କର କାର୍ଯ୍ୟକଳାପ ଲାଗି ଶାସ୍ତି ଦେବା ପରିବର୍ତ୍ତେ ଅଳ୍ପଦିନ ପରେ ବ୍ରିଟିଶ ଗଭର୍ଣ୍ଣମେଣ୍ଟ ଅଧୀନରେ ତାଙ୍କ ମନ୍ତ୍ରିମଣ୍ଡଳରେ ମନ୍ତ୍ରୀପଦ ଓ ଉଚ୍ଚ ପଦବୀସବୁ ଦିଆଗଲା ।

# ୧୪୧ : ବ୍ରିଟେନର ଇଜିପ୍ଟ ଅଧିକାର ଓ କର୍ତ୍ତୃତ୍ୱ ପ୍ରତିଷ୍ଠା

ମାର୍ଚ୍ଚ ୧୧, ୧୯୩୩

ଆମେରିକାରୁ ଲମ୍ବା ଜୁଡ଼ାମାର ଆଟଲାଣ୍ଟିକ ପାର ହୋଇ ଆମେ ଆୟର୍ଲଣ୍ଡକୁ ଆସିଲେ । ଏବେ ପୁଣି ତୃତୀୟ ମହାଦେଶ ଆଫ୍ରିକାକୁ ଓ ବ୍ରିଟିଶ ସାମ୍ରାଜ୍ୟବାଦର ଆଉ ଏକ ଶିକାର ଇଜିପ୍ଟକୁ ଯିବା । କେତେକ ଚିଠିରେ ଇଜିପ୍ଟର ଆଗ ଇତିହାସ ସମ୍ବନ୍ଧରେ ଉଲ୍ଲେଖ କରାଯାଇଥିଲା । ମୋର ନିଜ ଅଜ୍ଞତା ହେତୁ ସେଗୁଡ଼ିକ ସଂକ୍ଷିପ୍ତ ଓ ଛିନ୍ନ ବିଚ୍ଛିନ୍ନ ହୋଇଥିଲା । ଏ ସମ୍ବନ୍ଧରେ ମୁଁ ଆଗରୁ ଯାହା ଜାଣିଥିଲି ତାହା ଅପେକ୍ଷା ଅଧିକ ଜାଣିଲେ ସୁଦ୍ଧା ବର୍ତ୍ତମାନ ଆଉ ପୁଣି ଆଗକାଳକୁ ଫେରିଯାଇ ପାରିବି ନାହିଁ । ଶେଷରେ ଆମେ ଊନବିଂଶ ଶତାବ୍ଦୀର ବିବରଣୀ ପ୍ରାୟ ଶେଷ କରିଛେ ଏବଂ ବିଂଶ ଶତାବ୍ଦୀର

ଦ୍ୱାରରେ ଆସି ହାଜର ହେଲେଣି ଏବଂ ଏଇଠି ଆମେ ରହିବା । ସବୁବେଳେ ଟାଇମ ଆଗ ପଛକୁ ଯାଇ ପାରିବା ନାହିଁ । ଏହାଛଡ଼ା ମୁଁ ଯଦି ପ୍ରତ୍ୟେକ ଦେଶର ଅତୀତ କାହାଣୀ କହିବାକୁ ଆରମ୍ଭ କରେ, ତେବେ ଏ ଚିଠି କ'ଣ ଶେଷ ହୋଇ-ପାରିବ ?

ତଥାପି ତୋତେ ଏପରି ଧାରଣା ଦେବ ନାହିଁ ଯେ ଇଜିପ୍ଟର ଇତିହାସ ଉଣା ଅଧିକେ ଶୂନ୍ୟ ଥିଲି । କାରଣ ପୁରାତନ ଜାତିମାନଙ୍କ ଭିତରେ ଇଜିପ୍ଟ ଗୋଟିଏ ଏବଂ ଅନ୍ୟ ଯେ କୌଣସି ଦେଶ ଅପେକ୍ଷା ଆହୁରି ଅତୀତକୁ ଆମକୁ ନେଇଯାଏ । ଏହାର ଯୁଗ ଶ୍ରେଷ୍ଠ ଶ୍ରେଷ୍ଠ ଶତାବ୍ଦୀରେ ଗଣାଯାଇ ପାରିବ ନାହିଁ, ହଜାର ହଜାର ବର୍ଷ ଧରିବାକୁ ହେବ । ବିସ୍ମୟଜନକ ଓ ଭୟୋଦ୍ରେକକ ଅବଶେଷସବୁ ଏବେ ସୁଦ୍ଧା ସୁଦୂର ଅତୀତକୁ ସ୍ମରଣ କରାଇଦିଏ । ଇଜିପ୍ଟରେ ହିଁ ପ୍ରତ୍ନତତ୍ତ୍ୱ ଗବେଷଣା ପ୍ରଥମେ ଓ ବିସ୍ତୃତ ଭାବରେ ହୋଇଥିଲି ଏବଂ ବାଲୁକା ମଧ୍ୟରୁ ଯେଉଁ ପ୍ରସ୍ତର ସ୍ମୃତିସ୍ତମ୍ଭ ଓ ଅନ୍ୟ ଅବଶେଷସବୁ ଖୋଳି ବାହାର କରାଯାଇଛି, ସେଥିରେ ବହୁ ପୁରାକାଳରେ ଇଜିପ୍ଟ ସତେଜ ଓ ଜୀବନ୍ତ ଥିବା ଅବସ୍ଥାର କାହାଣୀସବୁ ମିଳିଲି । ଏହି ଖୋଳିବା ଓ ଆବିଷ୍କାର କାର୍ଯ୍ୟ ଏବେ ସୁଦ୍ଧା ଚାଲିଛି ଏବଂ ଇଜିପ୍ଟର ପୁରାତନ ଇତିହାସରେ ନୂତନ ପୃଷ୍ଠାସବୁ ଯୋଗ କରୁଛି । ଏହା କେବେ ଆରମ୍ଭ ହେଲି ଓ କିପରି ଆରମ୍ଭ ହେଲି ଆମେ ତଥାପି କହିପାରିବା ନାହିଁ । ପ୍ରାୟ ୭୦୦୦ ବର୍ଷ ପୂର୍ବେ ନୀଳ ଉପତ୍ୟକାରେ ସଭ୍ୟ ଲୋକେ ବାସ କରୁଥିଲେ । ସେମାନଙ୍କର ସାଂସ୍କୃତିକ ପ୍ରଗତିର ଦୀର୍ଘ ଇତିହାସ ରହିଛି । ସେମାନେ ଚିତ୍ର-ଭାଷା ବା Hieroglyphics (ହାଇରୋଗ୍ଲାଫିକ୍ସ)ରେ ଲେଖୁଥିଲେ; ସେମାନେ ସୁନ୍ଦର ମାଟିପାତ୍ର ଓ ବାସନ ତିଆରି କରୁଥିଲେ ଏବଂ ସୁନା, ତମ୍ବା, ହାତୀଦାନ୍ତର ବଢ଼ିଆ ପାତ୍ରସବୁ ତିଆରି କଲେ ଓ ଶ୍ୱେତପ୍ରସ୍ତର ଖୋଳିଲେ ।

ଏପରିକି ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀରେ ମାସିଡୋନିଆର ଆଲେକ୍ଜାଣ୍ଡର ଇଜିପ୍ଟ ଆକ୍ରମଣ କରିବା ପୂର୍ବରୁ ସେଠି ୩୧ଟି ଇଜିପ୍ଟ ବଂଶ ରାଜୁତି କରି ସାରିଥିବାର କୁହାଯାଏ । ଏହି ଦୀର୍ଘ ୪୦୦୦ ବା ୫୦୦୦ ବର୍ଷ ଆଗକାଳରୁ ନିର୍ମିତ କେତେକ ପୁରୁଷ ଓ ନାରୀଙ୍କ ଅଦ୍ଭୁତ ଚିତ୍ର ଏବେ ସୁଦ୍ଧା ଠିଆହୋଇ ରହିଛି ଏବଂ ଆଜି ବି ସେଗୁଡ଼ିକ ପ୍ରାୟ ଜୀବନ୍ତ ପରି ମନେ ହୁଏ । କାର୍ଯ୍ୟକ୍ଷମ ନରନାରୀ, ବିଶାଳ ମନ୍ଦିର ନିର୍ମାତା, ବଡ଼ ବଡ଼ କଳ୍ପନାବିଳାସୀ ଓ ଭାବୁକ, ଯୋଦ୍ଧା, ସ୍ୱେଚ୍ଛାଚାରୀ ଓ ଅତ୍ୟାଚାରୀ, ଗର୍ବୀ ଓ ଅହଙ୍କାରୀ ଶାସକ, ସୁନ୍ଦରୀ ସ୍ତ୍ରୀ ଆଦିଙ୍କ ଛବି ରହିଛି । ଦୀର୍ଘ କ୍ରମାନୁଗତିକ ଭାବରେ ଲକ୍ଷ ଲକ୍ଷ ସଂଖ୍ୟାରେ ଫାରୋ (Pharaohs) —ଇଜିପ୍ଟର ପୁରାତନ ରାଜବଂଶକୁ କହନ୍ତି—ଅନୁବାଦକ) ଆମକୁ ଅତିକ୍ରମ କରିଯାନ୍ତି । ନାରୀଙ୍କର ପୂର୍ଣ୍ଣ ସ୍ୱାଧୀନତା ଥିଲି ଏବଂ କେତେକ ଶାସକ ହୋଇଥିଲେ । ଏହା ଏକ ପୁରୋହିତପ୍ରାଧାନ୍ୟ ଦେଶ ଏବଂ ଇଜିପ୍ଟ ଲୋକେ ସର୍ବଦା ଭବିଷ୍ୟତ ଓ ଅପର ଦୁନିଆ

କଥା ଭାବନ୍ତୁ । ଏହି ପିରାମିଡ଼ଗୁଡ଼ିକ ଗୋଟି ଏବଂ ଶ୍ରମିକମାନଙ୍କ ପ୍ରତି ଖୁବ୍ ନିଷ୍ଠୁର ବ୍ୟବହାର କରି ତିଆରି ହୋଇଥିଲା—ଫାରୋ ନରପତିମାନଙ୍କ ଭବିଷ୍ୟତ ସୁରକ୍ଷିତ କରିବା ପାଇଁ ଏକ ପ୍ରକାର ଏହି ବ୍ୟବସ୍ଥା ଥିଲା । ମମିଗୁଡ଼ିକ (ମସଲାଦ୍ୱାରା ସୁରକ୍ଷିତ ଶବଦେହ—ଅନୁବାଦକ) ରଖିବାର ଉଦ୍ଦେଶ୍ୟ ହେଉଛି ଭବିଷ୍ୟତରେ ନିଜର ଶରୀରକୁ ସୁରକ୍ଷିତ କରିବା । ଏହାସବୁ ବରଂ ଅନ୍ଧକାର, କଠୋର ଓ ନିରାନନ୍ଦ ପରି ମନେହୁଏ । ତାପରେ ଆମେ ମଣିଷଙ୍କ ପାଇଁ ପରଚୂଳା (Wig) ଦେଖିବାକୁ ପାଉ; କାରଣ ସେମାନେ ମୁଣ୍ଡ ଲଣ୍ଡା କରୁଥିଲେ । ଏହା ମଧ୍ୟ ପିଲାଙ୍କ ଖେଳ ପାଇଁ ବ୍ୟବହୃତ ହେଉଥିଲା । ତାପରେ ଖେଳକଣ୍ଢେଇ, ପେଣ୍ଡୁ ଏବଂ ହାଲୁଥିବା ଅଙ୍ଗ ଥିବା ଛୋଟ ଛୋଟ ପଶୁ ଖେଳନା ଆଜି ଦେଖିବାକୁ ମିଳେ । ଏହିସବୁ ଖେଳନା ପୁରାତନ ଇଜିପ୍ଟବାସୀଙ୍କର ମାନବିକ ପ୍ରକୃତିର ଚିତ୍ର ସ୍ମରଣ କରାଇଦିଏ ଏବଂ ବହୁକାଳର କଥା ହୋଇ ସୁଦ୍ଧା ଆମ କାଳର ଅବସ୍ଥା ପରି ମନେହୁଏ ।

ଖ୍ରୀଷ୍ଟପୂର୍ବ ୬ଷ୍ଠ ଶତାବ୍ଦୀରେ ବୁଦ୍ଧଙ୍କ ଅମଳ ବେଳକୁ ପର୍ସିଆନ୍‌ମାନେ ଇଜିପ୍ଟ ଜୟ କଲେ ଏବଂ ସେମାନଙ୍କର ବିଶାଳ ସାମ୍ରାଜ୍ୟର ଏହା ଏକ ପ୍ରଦେଶ କଲେ । ଏହା ନୀଳନଦୀଠାରୁ ସିନ୍ଧୁନଦୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଏମାନେ ହେଉଛନ୍ତି "ଅଚେମେନିଡ଼" ରାଜା । ଏମାନଙ୍କର ରାଜଧାନୀ ଥିଲା ପର୍ସେପଲିସ୍ । ସେ ଗ୍ରୀସକୁ ବଶ କରିବା ନିମନ୍ତେ ଚେଷ୍ଟାକରି ବିଫଳ ହୋଇଥିଲେ ଏବଂ ସେମାନେ ନିଷ୍ପତ୍ତିମୂଳକ ଭାବରେ ଆଲେକଜାଣ୍ଡରଙ୍କ ଦ୍ୱାରା ପରାସ୍ତ ହୋଇଥିଲେ । ପର୍ସିଆନ୍‌ମାନଙ୍କ କଠୋର ଶାସନରୁ ଏକପ୍ରକାର ଜଣେ ମୁକ୍ତିଦାତା ଭାବରେ ଆଲେକଜାଣ୍ଡରଙ୍କୁ ଇଜିପ୍ଟରେ ସ୍ୱାଗତ କଲେ । ସେ ଆଲେକ୍‌ଜାଣ୍ଡ୍ରିଆ ସହରରେ ନିଜର ସ୍ମୃତିସ୍ତମ୍ଭ ରଖିଯାଇଛନ୍ତି—ଏହା ଶିକ୍ଷା ଓ ଗ୍ରୀକ୍ ସଂସ୍କୃତିର ପ୍ରସିଦ୍ଧ କେନ୍ଦ୍ର ହେଲା ।

ତୋର ମନେଥିବ ଆଲେକଜାଣ୍ଡରଙ୍କ ମୃତ୍ୟୁ ପରେ ତାଙ୍କ ସାମ୍ରାଜ୍ୟ ସେନାପତି-ମାନଙ୍କ ଭିତରେ ବିଭକ୍ତ ହୋଇଗଲା ଏବଂ ଇଜିପ୍ଟ ଟଲେମୀଙ୍କ ଭାଗରେ ପଡ଼ିଲା । ଟଲେମୀମାନେ ଶୀଘ୍ର ଏହି ଜଳବାୟୁରେ ନିଜକୁ ମିଶାଇନେଲେ ଏବଂ ପର୍ସିଆନମାନଙ୍କ ପରି ନ ହୋଇ ଇଜିପ୍ଟର ରୀତିନୀତି ଗ୍ରହଣ କରିଗଲେ । ସେମାନେ ଇଜିପ୍ଟବାସୀ ପରି ଆଚରଣ କଲେ ଏବଂ ପୁରୁଣା ଫାରୋବଂଶର ଲୋକ ପରି ସେମାନଙ୍କୁ ଲୋକେ ଗ୍ରହଣ କରିଗଲେ । ଏହି ଟଲେମୀଙ୍କ ଭିତରେ ଅନ୍ତିମ ରାଣୀ ଥିଲେ କ୍ଲିଓପାଟ୍ରା ଏବଂ ତାଙ୍କର ମୃତ୍ୟୁ ପରେ ଖ୍ରୀଷ୍ଟୀୟାନ ଯୁଗ ଆରମ୍ଭରେ କେତେକ ବର୍ଷ ପୂର୍ବରୁ ଇଜିପ୍ଟ ରୋମାନ ସାମ୍ରାଜ୍ୟର ପ୍ରଦେଶ ହୋଇ ରହିଲା ।

ରୋମ ଖ୍ରୀଷ୍ଟଧର୍ମ ଗ୍ରହଣ କରିବା ବହୁପୂର୍ବରୁ ଇଜିପ୍ଟ ଏହା ଗ୍ରହଣ କରିଥିଲା ଏବଂ ଇଜିପ୍ଟବାସୀ ଖ୍ରୀଷ୍ଟୀୟାନମାନଙ୍କୁ ରୋମାନମାନେ ଶାସ୍ତି ଦେଲେ ଏବଂ ସେମାନଙ୍କୁ

ମରୁଭୂମିରେ ଲୁଚିବାକୁ ପଡ଼ିଲା । ମରୁଭୂମିରେ ଗୁପ୍ତ ମଠସବୁ ଗଢ଼ିଉଠିଲା ଏବଂ ସେକାଳର ଖ୍ରୀଷ୍ଟିୟାନ ଜଗତ ଏହି ତପସ୍ୱୀମାନଙ୍କ କୃତ ଅନେକ ଯାଦୁକର କାର୍ଯ୍ୟର ଅଦ୍ଭୁତ ଓ ରହସ୍ୟପୂର୍ଣ୍ଣ କାହାଣୀରେ ପୂର୍ଣ୍ଣ ଥିଲା । କନଷ୍ଟାଣ୍ଟିନୋପଲ ଖ୍ରୀଷ୍ଟଧର୍ମ ସ୍ୱୀକାର କଲା ପରେ ଏହା ଯେତେବେଳେ ରୋମାନ ସାମ୍ରାଜ୍ୟର ସରକାରୀ ଧର୍ମ ହେଲା, ସେତେବେଳେ ଅଖ୍ରୀଷ୍ଟିୟାନ-ମାନଙ୍କୁ କଷ୍ଟକର ଶାସ୍ତି ଦେଇ ଇଜିପ୍ଟ ଖ୍ରୀଷ୍ଟିୟାନମାନେ ପ୍ରତିଶୋଧ ନେବାକୁ ଚେଷ୍ଟା କଲେ, ଅଥବା ଯେଉଁମାନେ ପୁରୁଣା ଇଜିପ୍ଟର ଧର୍ମକୁ ଗ୍ରହଣ କରୁଥିଲେ ସେମାନଙ୍କୁ ପୌତ୍ତଳିକ ବୋଲି କୁହାଯାଉଥିଲା । ଆଲେକ୍‌ଜାଣ୍ଡ୍ରିଆ ଏବେ ବିଖ୍ୟାତ ଖ୍ରୀଷ୍ଟିୟାନ ଶିକ୍ଷା କେନ୍ଦ୍ର ହୋଇଗଲା; କିନ୍ତୁ ଇଜିପ୍ଟରେ ଖ୍ରୀଷ୍ଟଧର୍ମ ସରକାରୀ ଧର୍ମ ହୋଇଥିବାରୁ ଏହା ଏକ ସମ୍ପ୍ରଦାୟର ଧର୍ମ ହୋଇଗଲା ଏବଂ ପ୍ରଭୁତ୍ୱ ପାଇବା ନିମନ୍ତେ ଦଳଗୁଡ଼ିକ ପରସ୍ପର ଭିତରେ ଝଗଡ଼ା କରୁଥିଲେ ଓ ଲଢ଼ାଇ କରୁଥିଲେ । ଏହି ଚକ୍ରାନ୍ତ ବିବାଦସବୁ ଏପରି ଉତ୍ପାତ ଜନକ ହେଲା ଯେ ସାଧାରଣତଃ ଲୋକେ ଏହି ସମସ୍ତ ଖ୍ରୀଷ୍ଟିୟାନ ସମ୍ପ୍ରଦାୟ ଉପରେ ବିରକ୍ତ ହୋଇଗଲେ ଏବଂ ୭ମ ଶତାବ୍ଦୀରେ ଆରବମାନେ ଯେତେବେଳେ ନୂତନ ଧର୍ମ ଘେନି ଆସିଲେ, ସେତେବେଳେ ଇଜିପ୍ଟ ଲୋକେ ତାହାର ସ୍ୱାଗତ କଲେ । ଇଜିପ୍ଟ ଓ ଉତ୍ତର ଆମେରିକାରେ ଆରବ ବିଜୟ ଏତେ ସହଜ ହେବାର ଏହା ହିଁ ଏକ କାରଣ । ପୁନର୍ବାର ଖ୍ରୀଷ୍ଟିୟାନ୍‌ମାନେ ଏକ ଦଣ୍ଡଭୋଗୀ ସମ୍ପ୍ରଦାୟ ହେଲେ ଏବଂ କ୍ରୂରଭାବରେ ସେମାନଙ୍କୁ ଦମନ କରାଗଲା ।

ଏହିପରି ଇଜିପ୍ଟ ଖଲିଫା ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହେଲା । ଆରବ ଭାଷା ଓ ଆରବ ସଂସ୍କୃତି ଦ୍ରୁତବେଗରେ ବିସ୍ତାର ଲାଭକଲା—ଏପରିକି ପୁରୁଣା ଇଜିପ୍ଟ ଭାଷାକୁ ଦବାଇଦେଲା । ୨୦୦ ବର୍ଷ ପରେ ୯ମ ଶତାବ୍ଦୀରେ ବାଗଦାଦ ଖଲିଫା ଦୁର୍ବଳ ହୋଇ ପଡ଼ିବାରୁ ତୁର୍କି ଗଭର୍ଣ୍ଣରଙ୍କ ଅଧୀନରେ ଇଜିପ୍ଟ ଅର୍ଦ୍ଧସ୍ୱାଧୀନ ଦେଶ ହେଲା । ୩୦୦ ବର୍ଷ ପରେ କ୍ରୁଜେଡ଼ରେ ମୁସଲମାନ ବୀର ସାଲାଦିନ ନିଜକୁ ଇଜିପ୍ଟର ସୁଲତାନ ଘୋଷଣା କଲେ । ସାଲାଦିନଙ୍କ ପରେ ତାଙ୍କର ଜଣେ ପରବର୍ତ୍ତୀ ସୁଲତାନ କକେସସ୍ ଅଞ୍ଚଳରୁ ତୁର୍କି ଦାସସବୁ ଆଣିଲେ ଏବଂ ସେମାନଙ୍କୁ ନିଜର ସୈନ୍ୟ କଲେ । ଏହି ଗୋରା ଦାସମାନଙ୍କୁ ମେମେଲୁକ କୁହାଯାଉଥିଲା—ଏହାର ଅର୍ଥ ହେଉଛି ଦାସ । ସେନା ପାଇଁ ସହଜ ସହ ସେମାନଙ୍କୁ ବଛାଗଲା ଏବଂ ଏକେ ସୁନ୍ଦର ଲୋକସମଷ୍ଟି ଥିଲେ ସେମାନେ । କେତେବର୍ଷ ଭିତରେ ମେମେଲୁକମାନେ ବିଦ୍ରୋହ କଲେ ଏବଂ ତାଙ୍କର ଭିତରୁ ଜଣକୁ ଇଜିପ୍ଟର ସୁଲତାନ କଲେ । ଏହିପରି ଭାବରେ ଇଜିପ୍ଟରେ ମେମେଲୁକ ରାଜତ୍ୱ ଆରମ୍ଭ ହେଲା । ଏହା ଅଠେଇ ଶତାବ୍ଦୀ ପର୍ଯ୍ୟନ୍ତ ଚାଲିଲା ଏବଂ ଅର୍ଦ୍ଧସ୍ୱାଧୀନ ଭାବରେ ପ୍ରାୟ ୩୦୦ ବର୍ଷରୁ ଅଧିକ ସମୟ ପର୍ଯ୍ୟନ୍ତ ରହିଲା । ଏହିରୂପେ ଏହି ବିଦେଶୀ ସେନାମାନେ ୫୦୦ ବର୍ଷରୁ ଅଧିକ କାଳ ପର୍ଯ୍ୟନ୍ତ ଇଜିପ୍ଟରେ ପ୍ରାଧାନ୍ୟ କଲେ—ଇତିହାସରେ ଏହା ଏକ ଅପୂର୍ବ ଓ ଅଲୌକିକ ଦୃଷ୍ଟାନ୍ତ ।

ମୂଳ ମେମେଲୁକ୍‌ମାନେ ଯେ କିଛି ଗୋଟାଏ ବଂଶପରମ୍ପରା ଜାତି ବା ଇଜିପ୍ଟରେ ଶ୍ରେଣୀ ସୃଷ୍ଟି କଲେ, ତାହା ନୁହେଁ । କକେସସ୍‌ର ଗୋରା ଜାତିଙ୍କ ଭିତରେ ସର୍ବୋତ୍କୃଷ୍ଟ ଗୋରା ଦାସମାନଙ୍କୁ ବାଛିନେଇ ସେମାନେ ବରାବର ନିଜର ସଂଖ୍ୟା ବୃଦ୍ଧି କଲେ । ଏହି କକେସସ୍ ଜାତିସବୁ ଆର୍ଯ୍ୟ ଏବଂ ତେଣୁ ମେମେଲୁକମାନେ ବି ଆର୍ଯ୍ୟ ଥିଲେ । ଏହି ବିଦେଶୀ ଲୋକେ ଇଜିପ୍ଟ ଭୂମିରେ ଟିକିଲେ ନାହିଁ ଏବଂ ଏକପୁରୁଷ ପରେ ଲୋପ ପାଇଗଲେ । କିନ୍ତୁ ନୂଆ ମେମେଲୁକ ଆସୁଥିବାରୁ ସେମାନଙ୍କ ସଂଖ୍ୟା ଏବଂ ବିଶେଷତ୍ୱରେ ଏହି ଶ୍ରେଣୀର ଶକ୍ତି ଓ ଜୀବନୀ ଜାଗ୍ରତ ରହିଲା । ଏହିରୂପେ ଏମାନେ ଏକ ବଂଶପରମ୍ପରା ଶ୍ରେଣୀ ହୋଇ ନ ଥିଲେ, କିନ୍ତୁ ଯାହାହେଉ ସେମାନେ ଏକ ଆଭିଜାତ୍ୟ ଓ ଶାସକ ଶ୍ରେଣୀ ହେଲେ—ଏହା ଦୀର୍ଘକାଳ ପର୍ଯ୍ୟନ୍ତ ରହିଥିଲା ।

୧୬ଶ ଶତାବ୍ଦୀର ପ୍ରଥମ ଭାଗରେ କନ୍‌ଷ୍ଟାଣ୍ଟିନୋପଲର ତୁର୍କି ଅଟୋମାନ ସୁଲତାନ ଇଜିପ୍ଟ ଜୟ କଲେ ଏବଂ ଶେଷ ମେମେଲୁକ ସୁଲତାନଙ୍କୁ ଝୁଲାଇଦେଲେ । ଇଜିପ୍ଟ ଅଟୋମାନ ସାମ୍ରାଜ୍ୟର ଏକ ପ୍ରଦେଶ ହୋଇଗଲା; କିନ୍ତୁ ତଥାପି ମେମେଲୁକମାନେ ଶାସକ କୁଳୀନ ସମ୍ପ୍ରଦାୟ ହୋଇ ରହିଲେ । ପରେ ଇଉରୋପରେ ତୁର୍କି ଦୁର୍ବଳ ହୋଇଯିବାରୁ ଇଜିପ୍ଟରେ ମେମେଲୁକମାନେ ଯେପରି ଚାହିଁଲେ କାର୍ଯ୍ୟ କଲେ; ଯଦିଓ କାଗଜ କଲମରେ ଇଜିପ୍ଟ ଅଟୋମାନ ସାମ୍ରାଜ୍ୟର ଶାଖା ହୋଇ ରହିଥିଲା । ୧୮ଶ ଶତାବ୍ଦୀ ଶେଷବେଳକୁ ନେପୋଲିୟନ ଯେତେବେଳେ ଇଜିପ୍ଟକୁ ଆସିଲେ, ସେ ମେମେଲୁକମାନଙ୍କୁ ଭେଟିଲେ ଓ ପରାସ୍ତ କଲେ । ମେମେଲୁକ ସର୍ଦ୍ଦାର ଜଣେ କିପରି ଫରାସୀ ସେନା ପର୍ଯ୍ୟନ୍ତ ଚାଲିଗଲା, ମଧ୍ୟ ଯୁଗ ଢଙ୍ଗରେ ଓ ବୀରତ୍ୱ ଦେଖାଇବା କାଳପରି ତାହା ସହିତ ଏକାକୀ ଯୁଦ୍ଧ କରିବା ପାଇଁ କିପରି ଆହ୍ୱାନ କଲା ସେ କାହାଣୀ ମୁଁ ଆଗରୁ ଲେଖିଥିଲି - ତୋର ମନେଥିବ ।

ଏହିରୂପେ ଆମେ ୧୯ଶ ଶତାବ୍ଦୀରେ ପହଞ୍ଚିଲେ । ଏହି ଶତାବ୍ଦୀର ପ୍ରଥମାର୍ଦ୍ଧରେ ଜଣେ ଆଲବେନିୟାନ୍ ତୁର୍କି ମହମ୍ମଦ୍ ଆଲି ଇଜିପ୍ଟରେ କର୍ତ୍ତୃତ୍ୱ କଲେ—ସେ ଦେଶର ଗଭର୍ଣ୍ଣର ବା ଖେଦିଭ ହେଲେ—ଏହି ତୁର୍କି ଗଭର୍ଣ୍ଣରମାନଙ୍କୁ "ଖେଦିଭ" କହୁଥିଲେ । ମହମ୍ମଦ୍ ଆଲି ଆଧୁନିକ ଇଜିପ୍ଟର ପ୍ରତିଷ୍ଠାତା ବୋଲି ଧରାଯାଏ । ତାଙ୍କର ପ୍ରଥମ କାର୍ଯ୍ୟ ହେଲା ବିଶ୍ୱାସଘାତକ ଭାବରେ ମେମେଲୁକମାନଙ୍କୁ ହତ୍ୟା କରି ମେମେଲୁକମାନଙ୍କର କ୍ଷମତା ଭାଙ୍ଗିଦେବା । ସେ ମଧ୍ୟ ଇଜିପ୍ଟରେ ଏକ ଇଂରେଜୀ ସେନାକୁ ପରାସ୍ତ କଲେ ଏବଂ କେବଳ ବାହ୍ୟରକ୍ଷା ପାଇଁ ତୁର୍କି ସୁଲତାନଙ୍କର ବଶ୍ୟତା ସ୍ୱୀକାର କରି ନିଜକୁ ଦେଶର ସର୍ବେସର୍ବା ବୋଲି ଘୋଷଣା କଲେ । ସେ କୃଷକମାନଙ୍କ (ମେମେଲୁକ ନୁହନ୍ତି) ଭିତରୁ ଲୋକ ଆଣି ଏକ ନୂତନ ଇଜିପ୍ଟ ସେନା ଗଠନକଲେ; ସେ ନୂତନ କେନାଲ ଖୋଳିଲେ ଏବଂ କପାଚାଷକୁ ଉତ୍ସାହିତ କଲେ । ଏହା ହିଁ ଇଜିପ୍ଟର ପ୍ରଧାନ ଶିଳ୍ପ ହେଲା । ଏପରିକି

କନ୍‌ଷ୍ଟାଣ୍ଟିନୋପଲ ଦଖଲ କରି ତାଙ୍କ ନାମକୁମାତ୍ର ପ୍ରଭୁଙ୍କୁ ତଡ଼ିଦେବାର ଧମକ ଦେଲେ; କିନ୍ତୁ ସେ ତାହା କରି ନ ଥିଲେ ଏବଂ କେବଳ ସିରିଆକୁ ଇଜିପ୍ଟରେ ଯୋଗ କଲେ ।

୮୦ ବର୍ଷ ବୟସରେ ୧୮୪୯ରେ ମହମ୍ମଦ୍ ଆଲି ମଲେ । ତାଙ୍କ ଉତ୍ତରାଧିକାରୀ ସବୁ ଦୁର୍ବଳ, ବିଳାସୀ ଓ ଅକ୍ଷମ ଥିଲେ । କିନ୍ତୁ ସେମାନେ ଯାହା ଥିଲେ ତାହା ଅପେକ୍ଷା ଭଲ ହୋଇଥିଲେ ସୁଦ୍ଧା ଆନ୍ତର୍ଜାତୀୟ ଧନପତିଙ୍କ ପୀଡ଼ନ ଓ ଇଉରୋପୀୟ ସାମ୍ରାଜ୍ୟବାଦ-ସବୁର ଲୋଭ ବିରୁଦ୍ଧରେ ଛିଡ଼ାହେବା ତାଙ୍କ ପକ୍ଷରେ କଷ୍ଟକର ହୋଇଥାଆନ୍ତା । ବିଦେଶୀ ବିଶେଷରୂପେ ଇଂରେଜ ଓ ଫରାସୀ ମହାଜନମାନେ ଖେଦିଭମାନଙ୍କୁ ଅତି ଉଚ୍ଚ ଦରରେ ଟଙ୍କା ଧାର ଦେଲେ । ଅଧିକାଂଶ ଧନ ବ୍ୟକ୍ତିଗତ ଖରଚ ପାଇଁ ନେଉଥିଲେ ଏବଂ ଏହା ଠିକ୍ ସମୟରେ ଆଦାୟ ନ ହୋଇପାରିବାରୁ ଯୁଦ୍ଧ ଜାହାଜସବୁ ସୁଧ ଆଦାୟ କରିବା ନିମନ୍ତେ ଆସି ପହଞ୍ଚିଲ । ଆନ୍ତର୍ଜାତିକ ଚକ୍ରାନ୍ତର ଏହା ଏକ ଅସାଧାରଣ କାହାଣୀ; ଅନ୍ୟ ଏକ ଦେଶରେ ପ୍ରାଧାନ୍ୟ ଓ ଲୁଣ୍ଠନ ପାଇଁ ଧନପତି ଓ ସରକାରମାନେ ପରସ୍ପର କିପରି ହାତ ମିଳାଇ କାର୍ଯ୍ୟ କଲେ ଏଥିରୁ ଦେଖାଯାଏ । କେତେକ ଖେଦିଭଙ୍କର ଅକ୍ଷମତା ସତ୍ତ୍ୱେ ଇଜିପ୍ଟ ପ୍ରଚୁର ଉନ୍ନତି କରିଥିଲା । ବାସ୍ତବିକ ୧୮୭୬ ଜାନୁୟାରୀ ମାସରେ ପ୍ରଧାନ ଇଂରେଜ ସମ୍ବାଦପତ୍ର "ଟାଇମ୍‌ସ" ଏ ସମ୍ବନ୍ଧରେ ଲେଖିଥିଲେ—"ପ୍ରଗତିର ଏକ ଅପୂର୍ବ ଦୃଷ୍ଟାନ୍ତ ଇଜିପ୍ଟରେ ଦେଖିବାକୁ ମିଳେ । ଅନ୍ୟ ଦେଶମାନେ ୫୦୦ ବର୍ଷରେ ଯାହା ଉନ୍ନତି କରିଛନ୍ତି, ଏଠି ସତୁରି ବର୍ଷରେ ତାହା ହୋଇପାରିଛି । କିନ୍ତୁ ଏସବୁ ସତ୍ତ୍ୱେ ବିଦେଶି ଋଣଦାତାମାନେ ତାଙ୍କର ଭାଗ ପାଇବା ପାଇଁ ଜୋର ଦେଲେ ଏବଂ ବାହାରେ ଏହି ଦେଶ ଦେବାଳିଆ ହୋଇ-ଯାଇଛି ବୋଲି ଜଣାଇ ବିଦେଶୀଙ୍କ ହସ୍ତକ୍ଷେପ ଦରକାର ବୋଲି କହିଲେ । ବିଦେଶୀ ସରକାରସବୁ ବିଶେଷତଃ ଇଂରେଜ ଓ ଫରାସୀ ଏଥିରେ ହସ୍ତକ୍ଷେପ କରିବା ପାଇଁ ଅତ୍ୟନ୍ତ ବ୍ୟଗ୍ର ଥିଲେ । ସେମାନେ ଗୋଟାଏ ପେଖନା ଖୋଜୁଥିଲେ; କାରଣ ଇଜିପ୍ଟ ତାଙ୍କ ପକ୍ଷରେ ଏକ ଅତି ଲୋଭନୀୟ ଗ୍ରାସ—ଏହାକୁ ସେମିତି ଛାଡ଼ି ଦିଆଯାଇ ପାରେ ନାହିଁ । ଆହୁରି ଇଜିପ୍ଟ ଭାରତ ପଥରେ ଅବସ୍ଥିତ ।

ଇତ୍ୟବସରେ ବେଠି ଓ ଅତ୍ୟନ୍ତ ଅମାନସିକ କାର୍ଯ୍ୟରେ ତିଆରି ହୋଇଥିବା ସୁଏଜ କେନାଲ ୧୮୬୯ରେ ବାଣିଜ୍ୟ ଲାଗି ଖୋଲି ଦିଆଗଲା । (ଖ୍ରୀଷ୍ଟପୂର୍ବ ୧୪୦୦ ବର୍ଷ ବେଳକୁ ପୁରୁଣା ଇଜିପ୍ଟ ବଂଶମାନଙ୍କ ଅମଳରେ ଲୋହିତସାଗର ଓ ଭୂମଧ୍ୟସାଗର ଭିତରେ ଏହିପରି ଏକ କେନାଲ ଥିବାର ଦେଖାଯାଏ ଶୁଣି **ତୁ** ହୁଏ ତ ଖୁସି ହେବୁ ) ଏହି କେନାଲ ଖୋଲାହେବା ସଙ୍ଗେ ସଙ୍ଗେ ଇଉରୋପ ଓ ଏସିଆ ଏବଂ ଅଷ୍ଟ୍ରେଲିଆରୁ ସୁଏଜ ପର୍ଯ୍ୟନ୍ତ ସବୁ ବାଣିଜ୍ୟ ବୁଲିଲା ଏବଂ ଇଜିପ୍ଟର ଗୁରୁତ୍ୱ ଆହୁରି ଅଧିକ ବଢ଼ିଗଲା । ଭାରତ ଓ ପ୍ରାଚ୍ୟଦେଶରେ ତାର ଜୀବନ୍ତ ସ୍ୱାର୍ଥ ଯୋଗୁଁ ଇଂଲଣ୍ଡ ପକ୍ଷରେ ଏହି କେନାଲ ଓ ଇଜିପ୍ଟର କର୍ତ୍ତୃତ୍ୱ କରିବା

ଅତ୍ୟନ୍ତ ଜରୁରୀ ହୋଇପଡ଼ିଲା । ୧୮୭୫ରେ ଇଂରେଜ ପ୍ରଧାନମନ୍ତ୍ରୀ ଡିସରେଲି ଦେଦ୍ଦୀଭିଆ ଖେଦିବମାନଙ୍କଠାରୁ ଅତି ଅଳ୍ପ ମୂଲ୍ୟରେ ସୁଏଜ କେନାଲ ଅଂଶଯାକ କିଣିନେଇ ମାତ୍ର କରିଦେଲେ । ଏପରି ସ୍ଥାନରେ ମୂଳଧନ ଖଟାଇବା ତ ଭଲ, ଅଧିକନ୍ତୁ ମଧ୍ୟ ଏହାଦ୍ୱାରା କେନାଲ ଉପରେ ବ୍ରିଟିଶ ଗଭର୍ଣ୍ଣମେଣ୍ଟର ଖୁବ୍ ପ୍ରଭୁତ୍ୱ ରହିଲା । କେନାଲରେ ଇଜିପ୍ଟର ଆଉ ଅବଶିଷ୍ଟ ଅଂଶସବୁ ଫରାସୀ ଧନପତିମାନେ ଖରିଦ କରିନେଲେ; ତେଣୁ ଏହି କେନାଲ ଉପରେ କାର୍ଯ୍ୟତଃ ଇଜିପ୍ଟର କୌଣସି ଆର୍ଥିକ କର୍ତ୍ତୃତ୍ୱ ରହିଲା ନାହିଁ । ଏହି ଅଂଶମାନଙ୍କରୁ ବ୍ରିଟିଶ ଓ ଫରାସୀମାନେ ପ୍ରଚୁର ଲଭ୍ୟାଂଶ ପାଇଛନ୍ତି ଏବଂ ଏହା ସଙ୍ଗେ ସଙ୍ଗେ କେନାଲକୁ ନିୟନ୍ତ୍ରଣ କରୁଛନ୍ତି ଓ ଇଜିପ୍ଟ ଉପରେ ଶକ୍ତ କର୍ତ୍ତୃତ୍ୱ ରଖିଛନ୍ତି । ୧୯୩୨ରେ କେବଳ ବ୍ରିଟିଶ ସରକାର ତାର ମୂଳଧନ ୪୦ ଲକ୍ଷ ପାଉଣ୍ଡ ଉପରେ ୩୫ ଲକ୍ଷ ପାଉଣ୍ଡ ଲାଭ ପାଇଥିଲା ।

ବ୍ରିଟିଶ ଗଭର୍ଣ୍ଣମେଣ୍ଟ ଏହି ଦେଶର ଅଧିକ ନିୟନ୍ତ୍ରଣ ଲାଗି ଚେଷ୍ଟା କରିବା ଅନିବାର୍ଯ୍ୟ; ତେଣୁ ୧୮୭୯ରେ ଇଜିପ୍ଟର ଆଭ୍ୟନ୍ତରୀଣ ବ୍ୟାପାରରେ ସେମାନେ ବରାବର ହସ୍ତକ୍ଷେପ କରିବାକୁ ଲାଗିଲେ ଏବଂ ନିଜର ଧନପତିମାନଙ୍କ ହାତରେ ନିୟନ୍ତ୍ରଣ ଦେଲେ । ଅନେକ ଇଜିପ୍ଟବାସୀ ଏଥିରେ ଅସନ୍ତୋଷ ପ୍ରକାଶ କରିବା ସ୍ୱାଭାବିକ ଏବଂ ଇଜିପ୍ଟରୁ ବିଦେଶୀ ହସ୍ତକ୍ଷେପ ଦୂର କରିବା ନିମନ୍ତେ ଦୃଢ଼ସଙ୍କଳ୍ପ ହୋଇ ଏକ ଜାତୀୟବାଦୀ ଦଳ ଗଢ଼ିଉଠିଲା । ଏହାର ନେତା ଥିଲେ ଜଣେ ଯୁବକ ଯୋଦ୍ଧା ଆରବୀ ପାଶା—ତାଙ୍କର ପିତାମାତା ଗରିବ ଶ୍ରମଜୀବୀ ଶ୍ରେଣୀର ଥିଲେ ଏବଂ ସେ ସଇନ୍ୟ ଭାବରେ ଇଜିପ୍ଟସେନାରେ ଯୋଗ ଦେଇ-ଥିଲେ । ତାଙ୍କର ପ୍ରଭାବ ବଢ଼ିଲା ଏବଂ ସେ ଯୁଦ୍ଧମନ୍ତ୍ରୀ ହେଲେ । ସେତେବେଳେ ସେ ଇଂରେଜ ଓ ଫରାସୀ ନିୟନ୍ତାମାନଙ୍କ ନିର୍ଦ୍ଦେଶ ମାନିବାକୁ ଅସ୍ୱୀକାର କରିଦେଲେ । ବିଦେଶୀ ହୁକୁମକୁ ଏପରି ବଶ୍ୟତା ସ୍ୱୀକାର କରିବା ନିମନ୍ତେ ଅସ୍ୱୀକାରର ଜବାବ ବ୍ରିଟିଶ ଯୁଦ୍ଧରେ ଦେଲା ଏବଂ ୧୮୮୨ରେ ବ୍ରିଟିଶ ନୌସେନା ଆଲେକ୍‌ଜାଣ୍ଡ୍ରିଆ ସହରରେ ବୋମା ପକାଇଲେ ଏବଂ ଏହାକୁ ପୋଡ଼ିଦେଲେ । ଏହିରୂପେ ପାଶ୍ଚାତ୍ୟ ସଭ୍ୟତାର ବଡ଼ପଣିଆ ଜାହିର କରି ଏବଂ ସ୍ଥଳଭାଗରେ ଇଜିପ୍ଟ ସେନାକୁ ପରାଜିତ କରି ବ୍ରିଟିଶ ଏବେ ଇଜିପ୍ଟର କର୍ତ୍ତୃତ୍ୱ ହାତକୁ ନେଲେ ।

ଏହିପରି ଭାବରେ ବ୍ରିଟିଶଙ୍କର ଇଜିପ୍ଟ ଦଖଲ ଆରମ୍ଭ ହେଲା । ଆନ୍ତର୍ଜାତିକ ଆଇନ ଅନୁସାରେ ଏହା ଏକ ଅସାଧାରଣ ସ୍ଥିତି । ଇଜିପ୍ଟ ତୁର୍କି ରାଜ୍ୟର ଏକ ଅଂଶ ବା ପ୍ରଦେଶ ଥିଲା । ଇଂଲଣ୍ଡର ତୁର୍କି ସହିତ ବନ୍ଧୁତା ସମ୍ବନ୍ଧ ଥିଲା ବୋଲି ଧରା ଯାଉଥିଲା; ଅଥଚ ସେ ଚୁପ୍‌ଚାପ ଏହିସବୁ ରାଜ୍ୟଗୁଡ଼ିକର ଏକ ଅଂଶ ଦଖଲ କରିଗଲା । ତାହାର ଏକ ଏଜେଣ୍ଟ ଏଠି ରହିଲା । ସେ ପ୍ରତ୍ୟେକର ପ୍ରଭୁ ହେଲା—ଭାରତର ଭାଇସରୟ ପରି ଜଣେ ମହାନ୍ ମୋଗଲ ହୋଇ ରହିଲା ଏବଂ ଏପରିକି ବ୍ରିଟିଶ ଏଜେଣ୍ଟ ଆଗରେ ଖେଦିଭ ଓ ତାର

ମନ୍ତ୍ରୀମାନେ କ୍ଷମତାସୀନ ଥିଲେ । ପ୍ରଥମ ବ୍ରିଟିଶ ଏଜେଣ୍ଟ ହେଲେ ମେଜର ବେରିଙ୍ଗ—ସେ ୨୫ ବର୍ଷ ପର୍ଯ୍ୟନ୍ତ ଇଜିପ୍ଟ ଶାସନ କଲେ ଏବଂ ଲର୍ଡ଼ କ୍ରୋମର ହେଲେ । କ୍ରୋମର ଏକ ସ୍ୱେଚ୍ଛାତନ୍ତ୍ରୀ ଭାବରେ ଇଜିପ୍ଟ ଶାସନ କଲେ । ତାଙ୍କର ପ୍ରଥମ କାମ ହେଲା ବିଦେଶୀ ଧନପତି ଓ ଅଂଶଧାରୀମାନଙ୍କୁ ଲଭ୍ୟାଂଶ ଦେବା । ଏହା ସାଧମତ କରାଗଲା ଏବଂ ଇଜିପ୍ଟର ଆର୍ଥିକ ସ୍ଥିତି ଭଲ ବୋଲି ଭାରି ପ୍ରଶଂସା ଶୁଣାଗଲା । ଭାରତ ପରି କେତେକ ପରିମାଣରେ ଶାସନ କୁଶଳତା ମଧ୍ୟ ଏଠାରେ ହେଲା । କିନ୍ତୁ ୨୫ ବର୍ଷ ଶେଷବେଳକୁ ବି ଇଜିପ୍ଟର ଋଣ ପ୍ରଥମେ ଯେତିକି ଥିଲା, ସେତିକି ରହିଥିଲା । ବାସ୍ତବିକ ଶିକ୍ଷା ପାଇଁ କିଛି କରାଯାଇ ନ ଥିଲା ଏବଂ କ୍ରୋମର ବି ଏକ ଜାତୀୟ ବିଶ୍ୱବିଦ୍ୟାଳୟ ଆରମ୍ଭ କରିବା ବନ୍ଦ କରି ଦେଇଥିଲେ । ୧୮୯୧'ରେ ଲର୍ଡ଼ ସାଲିସବରୀଙ୍କ ନିକଟକୁ ସେ ଲେଖିଥିବା ଏକ ଚିଠିର ବାକ୍ୟରୁ ତାଙ୍କର ଦୃଷ୍ଟିକୋଣ ବିଚାର କରାଯାଇପାରେ । ସେତେବେଳେ ସାଲିସବରୀ ଇଂଲଣ୍ଡର ପ୍ରଧାନମନ୍ତ୍ରୀ ଥିଲେ । ସେ ଲେଖିଲେ, ଖେଦିଭ ଇଜିପ୍ଟବାସୀ ପରି ବ୍ୟବହାର କରୁଛି । ଲର୍ଡ଼ କ୍ରୋମରଙ୍କ ଦୃଷ୍ଟିରୁ ଜଣେ ଇଜିପ୍ଟବାସୀ ପକ୍ଷରେ ଇଜିପ୍ଟବାସୀ ପରି ଆଚରଣ କରିବା ଏକ ଅପରାଧ ବୋଲି ଗଣ୍ୟ କରାଯାଉଥିଲା; ଠିକ୍ ଯେପରି ଜଣେ ଭାରତୀୟ ପକ୍ଷରେ ଭାରତବାସୀ ପରି ଆଚରଣ କରିବା ହେତୁ ଇଂରେଜମାନେ ପରିହାସ କରନ୍ତି ଓ ଶାସ୍ତି ଦିଅନ୍ତି ।

ଫରାସୀ ଇଜିପ୍ଟରେ ବ୍ରିଟିଶ କର୍ତ୍ତୃତ୍ୱକୁ ପସନ୍ଦ କଲେ ନାହିଁ, ଏହି ଲୁଟରେ ସେମାନେ କିଛି ଭାଗ ପାଇ ନ ଥିଲେ । ଅନ୍ୟ ଇଉରୋପୀୟ ଶକ୍ତିସବୁ ବି ଏହା ପସନ୍ଦ କଲେ ନାହିଁ ଏବଂ କହିବା ଅନାବଶ୍ୟକ ଯେ ଇଜିପ୍ଟବାସୀ ଏହା ଆଦୌ ପସନ୍ଦ କଲେ ନାହିଁ । ବ୍ୟସ୍ତ ନ ହେବା ପାଇଁ ବ୍ରିଟିଶ ଗଭର୍ଣ୍ଣମେଣ୍ଟ ପ୍ରତ୍ୟେକଙ୍କୁ କହିଲା—କାରଣ ସେମାନେ କହିଲେ ଯେ ଇଜିପ୍ଟରେ ଅଳ୍ପକ୍ଷଣ ପାଇଁ ସେମାନେ ରହିଛନ୍ତି ଓ ଶୀଘ୍ର ଛାଡ଼ିଆସିବେ । ସରକାରୀ ଭାବରେ ବାରମ୍ବାର ବ୍ରିଟିଶ୍ ଗଭର୍ଣ୍ଣମେଣ୍ଟ ଘୋଷଣା କଲା ଯେ ସେମାନେ ଇଜିପ୍ଟ ଛାଡ଼ିଆସିବେ । ଏହିପରି ସରକାରୀ ଘୋଷଣା ପରିଶେଷରେ କମ୍ବା ବେଶି କରାହୋଇଥିଲା; ଏହାର ହିସାବ ମନେ ରଖିବା କଷ୍ଟକର । ତଥାପି ବ୍ରିଟିଶ ଆସନ ଜମାଇ ବସିରହିଲେ ଏବଂ ଏବେ ବି ରହିଛନ୍ତି ।

୧୯୦୪ ରେ ଅନେକ ବିବାଦୀୟ ସମସ୍ୟାର ବ୍ରିଟିଶ ଓ ଫରାସୀଙ୍କ ଭିତରେ ଚୁକ୍ତି ହେଲା । ଫରାସୀମାନେ ମରକ୍କୋ ଉପରେ ମୁକ୍ତହସ୍ତ ପ୍ରସାର କରିବାକୁ ବ୍ରିଟିଶ ରାଜି ହେଲେ ଏବଂ ଏହା ବଦଳରେ ବ୍ରିଟିଶର ଇଜିପ୍ଟ ଦଖଲକୁ ମଧ୍ୟ ସ୍ୱୀକାର କରିବାକୁ ଫରାସୀ ରାଜି ହେଲେ । ଏହା ଗୋଟାଏ ଦେଣ୍ ନେଣ ଦେଣ ବ୍ୟାପାର ହେଲା—କେବଳ ଯେଉଁ ତୁର୍କି ଏତେବେଳ ପର୍ଯ୍ୟନ୍ତ ବି ମାଲିକଶକ୍ତି ରୂପେ ରହିଥିଲା, ତାକୁ ପରାମର୍ଶ କରାଗଲା ନାହିଁ ଏବଂ ଇଜିପ୍ଟ ଲୋକଙ୍କୁ ପଚାରିବା ପ୍ରଶ୍ନ ତ ମୂଳରୁ ଉଠୁ ନାହିଁ ।

ଏହିକାଳର ଆଉ ଏକ ଦେଖିବାର ଜିନିଷ ହେଉଛି, ବିଦେଶୀଙ୍କ ଉପରେ ଇଜିପ୍ଟ କଚେରୀଗୁଡ଼ିକର କୌଣସି କ୍ଷମତା ନ ଥିଲା । ଏହି ଅଦାଲତସବୁ ଭଲ ବୋଲି

ଧର୍ମଘାତି ନ ଥିଲା ଏବଂ ବିଦେଶୀମାନେ ନିଜ କୋର୍ଟରେ ବିଚାର ହେବା ଯୋଗ୍ୟ । ତେଣୁ ଯାହା କହନ୍ତି, "ଏକ୍‌ସ୍ତ୍ରା ଟେରିଟୋରିଅଲ" ପଞ୍ଚାୟତରୁ ବହିଲା—ଏଥିରେ ବିଦେଶୀ ବିଚାରପତି ରହିଲେ ଏବଂ ସେମାନଙ୍କ ଭିତରେ ବିଦେଶୀ ସ୍ୱାର୍ଥ ହିଁ ଥିଲା । ଏହି ପଞ୍ଚାୟତର ଜଣେ ବିଦେଶୀ ବିଚାରପତି ଏହା ସମ୍ବନ୍ଧରେ ଲେଖିଛନ୍ତି, "ଏହି ଅଦାଲତର ବିଚାର ଏ ଦେଶକୁ ଶୋଷଣ କରୁଥିବା ବିଦେଶୀ ଶାସକମାନଙ୍କର ଖୁବ୍ ସେବା କରିଛି ।" ମୋର ବିଶ୍ୱାସ, ଅଧିକାଂଶ ଟିକସ ଦାଉରୁ ଇଜିପ୍‌ଟରେ ଥିବା ବିଦେଶୀମାନେ ବି ରକ୍ଷା ପାଇଥିଲେ । ଟିକସ ଦେବାକୁ ପଡ଼ିବ ନାହିଁ, ଯେଉଁ ଦେଶରେ ବାସ କରୁଛ, ସେଠାର କୋର୍ଟ ବା ଆଇନ ଖାଟିବ ନାହିଁ ଏବଂ ତାହା ସଙ୍ଗେ ସଙ୍ଗେ ସେ ଦେଶ ଶୋଷଣ କରିବା ନିମନ୍ତେ ସକଳ ସୁବିଧା ମିଳିବ—ଆଉ ମଜାର କଥା କଣ ହୋଇପାରେ ?

ଏହିପରି ବ୍ରିଟେନ ଇଜିପ୍‌ଟ ଶାସନ ଓ ଶୋଷଣ କଲା ଏବଂ ତାର ଏଜେଣ୍ଟ ଓ ପ୍ରତିନିଧିମାନେ ନିଜ ଆବାସରେ ଏକେଛତ୍ର ସମ୍ରାଟଙ୍କ ପରି ଆଡ଼ମ୍ବର ଓ ବିଳାସରେ ବାସ କଲେ । ସ୍ୱାଭାବିକ ରୂପେ ଜାତୀୟତା ବୃଦ୍ଧି ପାଇଲା ଏବଂ ସଂସ୍କାର ଆନ୍ଦୋଳନ ହେଲା । ୧୯ଶ ଶତାବ୍ଦୀରେ ପ୍ରଧାନ ଇଜିପ୍‌ଟ ସଂସ୍କାରକ ହେଉଛନ୍ତି ଜମାଲୁଦ୍ଦିନ ଆଫଗାନୀ—ସେ ଜଣେ ଧାର୍ମିକ ନେତା—ବର୍ତ୍ତମାନ ଅବସ୍ଥା ସହି ମିଳାଇ ଇସଲାମକୁ ଆଧୁନିକ କରିବା ନିମନ୍ତେ ସେ ଚେଷ୍ଟାକଲେ । ସେ ପ୍ରଚାର କଲେ ଯେ ସକଳ ପ୍ରକାର ପ୍ରଗତି ଇସଲାମ ସହିତ ଖାପ ଖୁଆଇ ପାରେ । ଭାରତରେ ହିନ୍ଦୁ-ଧର୍ମକୁ ଆଧୁନିକ କରିବା ନିମନ୍ତେ ଉଦ୍ୟମ ହେଲା ପରି ଇସଲାମକୁ ଆଧୁନିକ କରିବା ତାଙ୍କର ଏ ଉଦ୍ୟମ ଥିଲା । କେତେକ ମୂଳ ଉପଦେଶକୁ ବିଚାର କରି ଏବଂ ସେଥିରେ ପୁରାତନ ଗୋଡ଼ାମି ଓ ରକ୍ଷଣଶୀଳତାର ନୂତନ ଅର୍ଥ ଓ ବ୍ୟାଖ୍ୟା ବାହାର କରି ଏପରି ଉଦ୍ୟମଗୁଡ଼ିକ ହୋଇଥିଲା । ଏହାଙ୍କ କଥାନୁସାରେ ଆଧୁନିକ ଜ୍ଞାନ ଓ ପୁରାତନ ଧାର୍ମିକ ଜ୍ଞାନର ସହଯୋଗ ହୋଇଛି ବା ଏହାର ବ୍ୟାଖ୍ୟାହୋଇ ବାହାରିଛି । ଏହି ପ୍ରଣାଳୀ ନିଶ୍ଚୟ ବୈଜ୍ଞାନିକ ପ୍ରଣାଳୀଠାରୁ ସଂପୂର୍ଣ୍ଣ ପୃଥକ । ବୈଜ୍ଞାନିକ ରୀତିରେ କୌଣସି ପୂର୍ବ ସିଦ୍ଧାନ୍ତକୁ ଧରି ନ ନେଇ ସାହସର ସହିତ ଅଗ୍ରସର ହେବାକୁ ହୁଏ । ଯାହାହେଉ, ଜମାଲଉଦ୍ଦିନଙ୍କର ଖୁବ ବେଶି ପ୍ରଭାବ ଖାଲି ଇଜିପ୍‌ଟରେ ନୁହେଁ, ଅନ୍ୟ ଆରବୀୟ ଦେଶ-ମାନଙ୍କରେ ବି ଥିଲା ।

ବିଦେଶୀ ବେପାର ବୃଦ୍ଧି ସଙ୍ଗେ ସଙ୍ଗେ ଇଜିପ୍‌ଟରେ ଏକ ନୂତନ ମଧ୍ୟବିତ୍ତ ଶ୍ରେଣୀ ଉଠିଲା ଏବଂ ନୂତନ ଜାତୀୟତାର ଏହି ଶ୍ରେଣୀ ହିଁ ମେରୁଦଣ୍ଡ ହେଲା । ଏହି ଶ୍ରେଣୀର ଆଧୁନିକ ଇଜିପ୍‌ଟ ନେତାଙ୍କ ଭିତରେ ଶ୍ରେଷ୍ଠ ଲୋକ ସୟଦ ଜଗଲୁଲ ପାଶା ବାହାରିଲେ । ଇଜିପ୍‌ଟ ପ୍ରଧାନତଃ ଏକ ମୁସଲମାନ ଦେଶ; କିନ୍ତୁ ତଥାପି ସେଠି ପ୍ରଚୁରସଂଖ୍ୟକ 'କୋପ୍ଟ' ଅଛନ୍ତି—ଏମାନେ ଖ୍ରୀଷ୍ଟିୟାନ । ପୁରୁଣା ଇଜିପ୍‌ଟବାସୀଙ୍କ ଭିତରେ ଏହି କୋପ୍‌ଟମାନେ ହିଁ ସର୍ବାପେକ୍ଷା ପବିତ୍ର । ନୂତନ ମଧ୍ୟବିତ୍ତ ଶ୍ରେଣୀରେ ମୁସଲମାନ ଓ କୋପ୍‌ଟ ଉଭୟ ଥିଲେ ଏବଂ

ଯୌଥକାର୍ଯ୍ୟର କଥା ସେମାନଙ୍କ ମଧ୍ୟରେ କିଛୁ ବିରୋଧୀଭାବ ନାହିଁ। ବ୍ରିଟିଶ ସେମାନଙ୍କ ଭିତରେ ବିବାଦ ସୃଷ୍ଟି କରିବା ପାଇଁ ଚେଷ୍ଟା କରିଥିଲେ, କିନ୍ତୁ ସେମାନେ ସଫଳ ହୋଇ-ପାରିଲେ ନାହିଁ। ଜାତୀୟବାଦୀ ଦଳକୁ ବିଭକ୍ତ କରିଦେବା ପାଇଁ ବ୍ରିଟିଶ ମଧ୍ୟ ଚେଷ୍ଟାକଲେ। ଭାରତ ପରି ଏଠି ମଧ୍ୟ ବେଳେବେଳେ ସେମାନଙ୍କ ସହିତ ସହଯୋଗ କରିବାପାଇଁ ମଡରେଟଙ୍କ ଭିତରୁ କେତେକଙ୍କୁ ସେମାନେ ପାଇ ପାରୁଥିଲେ। କିନ୍ତୁ ଏ ବିଷୟ ପରେ ଆଉ ଏକ ଚିଠିରେ ମୁଁ କହିବି।

୧୯୧୪ ଅଗଷ୍ଟରେ ପୃଥିବୀଯୁଦ୍ଧ ଆରମ୍ଭ ବେଳକୁ ଇଜିପ୍ଟର ଅବସ୍ଥା ଏହା ଥିଲା। ତିନି ମାସ ପରେ ତୁର୍କି, ଇଂଲଣ୍ଡ, ଫ୍ରାନ୍ସ ଓ ସେମାନଙ୍କ ମିତ୍ରଶକ୍ତି ବିରୁଦ୍ଧରେ ଜର୍ମାନୀ ସହିତ ଯୋଗ ଦେଲା। ତାହାପରେ ଇଂଲଣ୍ଡ ପ୍ରକୃତରେ ଇଜିପ୍ଟକୁ ସଂଯୋଗ କରିବା ନିମନ୍ତେ ସ୍ଥିର କଲା। ମାତ୍ର କେତେକ ଅସୁବିଧା ଦେଖାଦେଲା ଏବଂ ତା ବଦଳରେ ଇଜିପ୍ଟ ଏକ ବ୍ରିଟିଶ ସଂରକ୍ଷଣ ବା 'ପ୍ରୋଟେକ୍ଟରେଟ' ବୋଲି ଘୋଷଣା କରାଗଲା।

ଇଜିପ୍ଟ ବିଷୟରେ ଏତିକି। ୧୯ଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଆଫ୍ରିକାରେ ତ ଅବଶିଷ୍ଟ ଅଞ୍ଚଳ ମଧ୍ୟ ଇଉରୋପୀୟ ସାମ୍ରାଜ୍ୟବାଦ କବଳରେ ପଡ଼ିଲା। ବସ୍ତୁତ ଲୋକ ଗୁଡ଼ିଲେ ଏବଂ ଇଉରୋପୀୟ ଶକ୍ତିଙ୍କ ଭିତରେ ଏହି ବିଶାଳ ମହାଦେଶ ବଣ୍ଟା ହୋଇଥିଲା। ସେମାନେ ଶାଗୁଣା ପରି ଏହା ଉପରେ ପଡ଼ିଗଲେ; ବେଳେ ବେଳେ ପରସ୍ପର ଉପରେ ବି ପଡ଼ିଯାଉ-ଥିଲେ। କେହି ପ୍ରାୟ ବାଧା ପାଇଲେ ନାହିଁ; କିନ୍ତୁ ଇଟାଲି ୧୮୯୬ରେ ଆବିସିନିଆରେ ପରାସ୍ତ ହେଲା। ଆଫ୍ରିକା ମୁଖ୍ୟ ଭାବରେ ବ୍ରିଟିଶ ଓ ଫରାସୀଙ୍କ ଅଧୀନରେ ରହିଲା ଏବଂ କେତେକ ଅଞ୍ଚଳ ବେଲଜିୟମ ଓ ଇଟାଲି ପର୍ତ୍ତୁଗୀଜଙ୍କ ନିୟନ୍ତ୍ରଣରେ ରହିଲା। ଜର୍ମାନମାନେ ଯୁଦ୍ଧରେ ପରାସ୍ତ ହେବା ପର୍ଯ୍ୟନ୍ତ ବି ସେଠି ଥିଲେ। କେବଳ ଦୁଇଟି ସ୍ୱାଧୀନ ଦେଶ ରହିଲା— ପୂର୍ବରେ ଆବିସିନିଆ ଏବଂ ପଶ୍ଚିମ ଉପକୂଳରେ ଛୋଟ ଲାଇବେରିଆ। ମରକ୍କୋ ଫରାସୀ ଓ ସ୍ପେନ ପ୍ରଭାବରେ ରହିଥିଲା।

ଏହି ବିସ୍ତୃତ ଅଞ୍ଚଳ ଦଖଲ କରିବା କାହାଣୀ ଦୀର୍ଘ ଏବଂ ଦୁଃଖଦାୟକ। ଏହା ଏବେସୁଦ୍ଧା ଶେଷ ହୋଇ ନାହିଁ। ଏହି ମହାଦେଶକୁ ଶୋଷଣ କରିବା ପାଇଁ ଏବଂ ବିଶେଷତଃ ରବର ବାହାର କରିବା ନିମନ୍ତେ ଯେଉଁ ଉପାୟ ଗ୍ରହଣ କରାଗଲା, ତାହା ଅତ୍ୟନ୍ତ ଖରାପ। ଅନେକ ବର୍ଷ ପୂର୍ବେ ବେଲଜିୟାନ୍ କଙ୍ଗୋରେ ଯେଉଁସବୁ ଅତ୍ୟାଚାର କରାଯାଉଥିଲା, ତାର କାହାଣୀ ଶୁଣି ତଥାକଥିତ ସଭ୍ୟ ଜଗତରେ ଗୋଟାଏ ଆତଙ୍କର ଢେଉ ଦେଖାଗଲା। କଳା ଲୋକର ବୋଝ ଅତ୍ୟନ୍ତ ଭୀଷଣ।

ଆଫ୍ରିକା ଅନ୍ଧାର ମହାଦେଶ ରୂପେ ଜଣା—୧୯ଶ ଶତାବ୍ଦୀର ଶେଷବେଳକୁ ଏହାର ଅଭ୍ୟନ୍ତର ଅଞ୍ଚଳ ପ୍ରାୟ ଅଜଣା ଭୂମି ହୋଇ ରହିଥିଲା। ଏହି ରହସ୍ୟ-ପରିପୂର୍ଣ୍ଣ

ଭୂମିକୁ ମାନଚିତ୍ରରେ ଠିକ୍‌ରୂପେ ଦେଖାଇବା ନିମନ୍ତେ ଏହି ଦେଶରେ ଅନେକ ଦୁଃସାହସିକ ଓ ଉତ୍ତେଜନାପୂର୍ଣ୍ଣ ଯାତ୍ରାସବୁ କରିବାକୁ ପଡ଼ିଥିଲା । ସ୍କଟିସ୍ ପାଦ୍ରୀ ଡେଭିଡ୍ ଲିଭିଙ୍ଗଷ୍ଟୋନ୍ ଜଣେ ଶ୍ରେଷ୍ଠ ଆବିଷ୍କାରକ । ଅନେକ ବର୍ଷ ପର୍ଯ୍ୟନ୍ତ ସେ ଏହି ମହାଦେଶ ଭିତରେ ଛପି ରହିଥିଲେ ଏବଂ ବାହାର ଦୁନିଆ ତାଙ୍କର କୌଣସି ସମ୍ବାଦ ପାଇ ନ ଥିଲା । ତାଙ୍କ ସହିତ ହେନ୍‌ରି ଷ୍ଟାନ୍‌ଲିଙ୍କ ନାମ ଶୁଣାଯାଏ—ସେ ଜଣେ ସାମ୍ବାଦିକ ଓ ଆବିଷ୍କାରକ । ସେ ଡେଭିଡ଼ଙ୍କୁ ଖୋଜିବା ଲାଗି ବାହାରିଲେ ଏବଂ ଶେଷରେ ମହାଦେଶ ଭିତରେ ହିଁ ତାଙ୍କୁ ଖୋଜି ବାହାର କଲେ ।

## ୧୪୨ : ଇଉରୋପର ବ୍ୟାଧିଗ୍ରସ୍ତ ଅଙ୍ଗ—ତୁର୍କି

ମାର୍ଚ୍ଚ ୧୪, ୧୯୩୩

ଇଜିପ୍‌ଟରୁ ଭୂମଧ୍ୟସାଗର ପାର ହୋଇ ଗୋଟିଏ ଲମ୍ଫ ପାହୁଣ୍ଡ ପକାଇଲେ ତୁର୍କିରେ ପହଞ୍ଚିବା ସ୍ୱାଭାବିକ । ୧୯ଶ ଶତାବ୍ଦୀରେ ଇଉରୋପରେ ଅଟୋମାନ୍ ତୁର୍କି ସାମ୍ରାଜ୍ୟ କ୍ରମେ ଭାଙ୍ଗି ପଡ଼ିଲା । ଏହି କ୍ରମଧାରାରେ ପତନ ପୂର୍ବ ଶତାବ୍ଦୀରୁ ଆରମ୍ଭ ହୋଇଥିଲା । ସମ୍ଭବତଃ ଭିଏନା ଉପରେ ତୁର୍କ ଅବରୋଧ ଏବଂ ତୁର୍କ ଡରବାଣ୍ଡି ଆଗରେ କିଛିକ୍ଷଣ ସକାଶେ କିପରି ଇଉରୋପ ଭୟକମ୍ପିତ ହୋଇଥିଲା—ମୁଁ ଲେଖିଥିଲି ତୋର ବୋଧହୁଏ ମନେଥିବ । ପଶ୍ଚିମରେ ସାଧୁ ଖ୍ରୀଷ୍ଟିଆନମାନେ ତୁର୍କ "ଭଗବାନଙ୍କର ଚାବୁକ" ବୋଲି ବିଚାରିଲେ—ଖ୍ରୀଷ୍ଟିଆନମାନଙ୍କୁ ତାଙ୍କ ପାପ ସକାଶେ ଶାସ୍ତି ଦେବା ନିମନ୍ତେ ପ୍ରେରିତ ହୋଇଛି । କିନ୍ତୁ ଭିଏନା ଦ୍ୱାରରେ ତୁର୍କର ଶେଷ ପରାଜୟ ହିଁ ସ୍ରୋତର ଗତି ବଦଳାଇଦେଲା ଏବଂ ସେହି ଦିନଠାରୁ ଇଉରୋପରେ ତୁର୍କ କେବଳ ଆତ୍ମରକ୍ଷା ପାଇଁ ଲାଗିରହିଲା । ଦକ୍ଷିଣ-ପଶ୍ଚିମ ଇଉରୋପରେ ଯେଉଁସବୁ ଦେଶ ସେମାନେ ପରାଧୀନ କରିଥିଲେ, ସେଗୁଡ଼ିକ ତାଙ୍କ ପକ୍ଷରେ କଣ୍ଟକ ହେଲା । ସେଗୁଡ଼ିକ ହଜମ କରିବା ନିମନ୍ତେ ଉଦ୍ୟମ ହେଲା ନାହିଁ ଏବଂ ସମ୍ଭବତଃ ଉଦ୍ୟମ ହୋଇଥିଲେ ସୁଦ୍ଧା ଏହା ସମ୍ଭବ ହୋଇ ନ ଥାନ୍ତା । ତୁର୍କର ଗୁରୁ ଶାସନଭାର ସହିତ ଜାତୀୟତା ଭାବଧାରାର ସଂଘର୍ଷ ହେଲା । ଉତ୍ତର-ପୂର୍ବରେ ଜାର୍-ଶାସିତ ରୁଷ ବଢ଼ି ହେବାରେ ଲାଗିଥାଏ ଏବଂ ତୁର୍କ ରାଜ୍ୟମାନଙ୍କରେ କଠୋର ଆଘାତ କରୁଥାଏ । ଏହା ତୁର୍କର ପରମ୍ପରାଗତ ଓ ଚିରଶତ୍ରୁ ହେଲା ଏବଂ ପ୍ରାୟ ୨୦୦ ବର୍ଷ ପର୍ଯ୍ୟନ୍ତ ସେମାନଙ୍କ ବିରୁଦ୍ଧରେ ଅବିଶ୍ରାନ୍ତ ଯୁଦ୍ଧ ଲାଗିଲା - ଶେଷରେ ଜାର ଓ ସୁଲତାନ ଦୁହିଁଙ୍କର ଏକତ୍ର ଅଧୋଗତି ହେଲା ଓ ତାଙ୍କ ସହ ସେମାନଙ୍କ ସାମ୍ରାଜ୍ୟ ବିଲୋପ ହେଲା ।

ସାମ୍ରାଜ୍ୟ ହିସାବରେ ଅଟୋମାନ୍ ସାମ୍ରାଜ୍ୟ ଦୀର୍ଘକାଳ ରହିଥିଲା । ଏସିଆ-ମାଇନରରେ ଦୀର୍ଘକାଳ ରହିବା ପରେ ୧୩୬୧ରେ ଇଉରୋପରେ ଏହା ସ୍ଥାପିତ ହେଲା । ଯଦିଓ ୧୪୫୩ ପର୍ଯ୍ୟନ୍ତ କନ୍‌ଷ୍ଟାଣ୍ଟିନୋପଲ ତୁର୍କି ହାତରେ ପଡ଼ି ନ ଥିଲା, ତଥାପି ଏହି ତାରିଖର ବହୁ ପୂର୍ବରୁ ଏହାର ଚତୁର୍ଦ୍ଦିଗ ସମଗ୍ର ଅଞ୍ଚଳ ତାଙ୍କ ହାତକୁ ଯାଇଥିଲା । ପଶ୍ଚିମ ଏସିଆରେ ତୈମୁରର ଆବିର୍ଭାବ ହେତୁ ଏବଂ ୧୪୦୨ରେ ଅଙ୍ଗୋରା ତୁର୍କି ସୁଲତାନଙ୍କୁ ସେ ଭୀଷଣଭାବରେ ପରାଜୟ କରିଥିବା ହେତୁ କିଛିଦିନ ସକାଶେ ଏହି ପ୍ରଧାନ ନଗର ରକ୍ଷା ପାଇଗଲା । କିନ୍ତୁ ତୁର୍କି ଶୀଘ୍ର ଏଥିରୁ ଉଦ୍ଧୁରିଗଲା । ୧୩୬୧ରୁ ଆମ ଅମଳ ପର୍ଯ୍ୟନ୍ତ ଅଟୋମାନ୍ ସାମ୍ରାଜ୍ୟ ଶେଷ ହେବାକୁ ସାଢ଼େ ପାଞ୍ଚ ଶତାବ୍ଦୀରୁ ଅଧିକ ବର୍ଷ ଲାଗିଗଲା ଏବଂ ଏହା ଏକ ଦୀର୍ଘକାଳ ।

ତଥାପି ମଧ୍ୟଯୁଗ ଲୋପ ହେଲାପରେ ୟୁରୋପରେ ଯେଉଁ ନୂତନ ଅବସ୍ଥା ବୃଦ୍ଧି ପାଉଥିଲା ତୁର୍କି ସେଥିରେ ଖାପ ଖାଇ ଯାଇନାହିଁ । ବେପାର ବଣିଜ ବୃଦ୍ଧି ପାଇଲା ଓ ଇଉରୋପରେ ଜିନିଷ ତିଆରି ହେଉଥିବା ସହରମାନଙ୍କରେ ଅଧିକ ପରିମାଣରେ ଉତ୍ପାଦନ ସଂଗଠିତ ହେଉଥାଏ । ଏ ପ୍ରକାର ଜିନିଷ ପ୍ରତି ତୁର୍କି ଆକୃଷ୍ଟ ହେଲା ନାହିଁ । ତୁର୍କିବାସୀ ସୁନ୍ଦର ଯୋଦ୍ଧା, ଭୀଷଣ ଲଢ଼ୁଆ ଓ ଶୃଙ୍ଖଳିତ—ଅବକାଶ ବେଳେ ଆରାମରେ ଦିନ କାଟନ୍ତି; କିନ୍ତୁ ଜାଗିଲେ ଭୀଷଣ ଓ ନିଷ୍ଠୁର ହୋଇପଡ଼ନ୍ତି । ଯଦିଓ ତୁର୍କିବାସୀ ସହରରେ ବସବାସ କଲେ ଏବଂ ସୁନ୍ଦର କୋଠାମାନ କରି ତାର ସୌନ୍ଦର୍ଯ୍ୟ ବୃଦ୍ଧି କଲେ, ତଥାପି ପୁରୁଣା ଯାଯାବର ଢଙ୍ଗ ସେମାନଙ୍କର ଥିଲା ଏବଂ ସେହି ଅନୁସାରେ ତାଙ୍କ ଜୀବନ ଗଢ଼ାହେଉଥିଲା । ତୁର୍କି ଦେଶରେ ଏପରି ଭାବରେ ଚଳିବା ସମ୍ଭବତଃ ଖୁବ୍ ଉପଯୋଗୀ; କିନ୍ତୁ ଇଉରୋପ ଓ ଏସିଆ ମାଇନରର ନୂତନ ପାରିପାର୍ଶ୍ୱିକ ଅବସ୍ଥା ସହିତ ଏହା ଖାପ ଖାଇଲା ନାହିଁ । ନୂତନ ପାରିପାର୍ଶ୍ୱିକ ଅବସ୍ଥାରେ ନିଜକୁ ମିଳାଇଦେବାକୁ ତୁର୍କି ଅସ୍ୱୀକାର କଲା ଏବଂ ତେଣୁ ଦୁଇ ବିଭିନ୍ନ ବ୍ୟବସ୍ଥା ଭିତରେ ବରାବର ବିବାଦ ଲାଗିରହିଲା ।

ଅଟୋମାନ୍ ସାମ୍ରାଜ୍ୟ ଇଉରୋପ, ଏସିଆ ଓ ଆଫ୍ରିକା ତିନି ମହାଦେଶକୁ ଯୋଗ କରିଥିଲା, ପ୍ରାଚ୍ୟ ପାଶ୍ଚାତ୍ୟ ଭିତରେ ସମସ୍ତ ବାଣିଜ୍ୟପଥ ତାହା ଅଧୀନରେ ଥିଲା । ତୁର୍କି ଲୋକଙ୍କର ଯଦି ବେପାର କରିବା ଇଚ୍ଛା ଥାଆନ୍ତା ଏବଂ ଏଥି ସକାଶେ ଆବଶ୍ୟକୀୟ କ୍ଷମତା ଥାଆନ୍ତା, ତେବେ ସେମାନେ ତାଙ୍କର ଅନୁକୂଳ ଅବସ୍ଥାର ସୁବିଧା ଉଠାଇଥାଆନ୍ତେ ଏବଂ ଏକ ମହାନ୍ ବେପାରୀ ଜାତି ହୋଇପାରିଥାଆନ୍ତେ । କିନ୍ତୁ ସେମାନଙ୍କର ସେପରି କିଛି ଅଭିଳାଷ ବା ଦକ୍ଷତା ନ ଥିଲା ଏବଂ ସେମାନେ ପଥ ଛୁଡ଼ି ଏହି ବେପାରକୁ ନିରୁତ୍ସାହିତ କରିବାକୁ ବାହାରିଲେ । ଏହାର କାରଣ ହେଉଛି ସମ୍ଭବତଃ ଅନ୍ୟ ଲୋକ ଏଥିରେ ଲାଭବାନ ହେବାଟା ସେମାନେ ଭଲପାଉ ନ ଥିଲେ । ଆଂଶିକ ଭାବରେ ଏହି ପୁରୁଣା ବଣିକପଥ ବନ୍ଦ ହୋଇଯିବାରୁ ଇଉରୋପର ନୌଚାଳନା କରୁଥିବା ଓ ବାଣିଜ୍ୟ କରୁଥିବା ଲୋକସବୁ ପୂର୍ବଖଣ୍ଡକୁ ଅନ୍ୟ ପଥ ଖୋଜିବାରେ ଲାଗିଲେ ଏବଂ ଏହା ଫଳରେ ପଶ୍ଚିମରେ କଲମ୍ବସ ଓ

ପୂର୍ବରେ ଡ୍ରକେ ( Daig ) ଓ ଭାସ୍କୋଡଗାମା ନୂତନ ପଥ ଆବିଷ୍କାର କରି ବାହାର କଲେ । କିନ୍ତୁ ତୁର୍କି ଲୋକେ ଏସବୁ ପ୍ରତି ଉଦାସୀନ ରହିଲେ ଏବଂ କେବଳ ଶୃଙ୍ଖଳା ଓ ସାମରିକ ଦକ୍ଷତା ବଳରେ ହିଁ ସେମାନଙ୍କ ସାମ୍ରାଜ୍ୟ ନିୟନ୍ତ୍ରଣ କଲେ । ଏହା ବଳରେ ଅଟୋମାନ୍ ସାମ୍ରାଜ୍ୟର ଇଉରୋପୀୟ ଅଞ୍ଚଳସବୁରେ ବାଣିଜ୍ୟ ଓ ଧନ ଉତ୍ପାଦନକାରୀ କାର୍ଯ୍ୟକଳାପସବୁ ଧୀରେ ଧୀରେ ମଳିନ ପଡ଼ିଗଲା । ଆଂଶିକ ଭାବରେ ଜାତିଗତ ଓ ଧର୍ମଗତ ବିବାଦ ଏହି କାରଣରୁ ହୋଇ ନ ଥିଲା । ତୁର୍କିବାସୀ ଓ ବଲକାନରେ ଥିବା ଖ୍ରୀଷ୍ଟୀୟାନ ଲୋକଙ୍କ ଭିତରେ କ୍ରୁସେଡ୍ ଓ ତା ପୂର୍ବରୁ ଲାଗିଥିବା ପୁରୁଣା ଧର୍ମସଂକ୍ରାନ୍ତ କଳହ ସେହିପରି ରହିଲା । ଦୁଇଟି ଜାତୀୟବାଦର ବୃଦ୍ଧିରେ ଅଗ୍ନିରେ ଇନ୍ଧନ ଦିଆହେଲା ଏବଂ ବରାବର ଗୋଳମାଳ ହେଲା । ଅଟୋମାନ୍ ରାଜ୍ୟଗୁଡ଼ିକର ଇଉରୋପୀୟ ଅଂଶସବୁ କିପରି କ୍ରମେ ଅଧୋଗତି ଆଡ଼କୁ ଗତିକଲା ତାର ଏକ ଦୃଷ୍ଟାନ୍ତ ତଳେ ଦିଏ; ପୂର୍ବକାଳର ପ୍ରସିଦ୍ଧ ସହର ଏଥେନ୍ସ ୧୮୨୧ରେ ଗ୍ରୀସ୍ ସ୍ୱାଧୀନ ହେଲାବେଳକୁ ଏକ ଗ୍ରାମ ଥିଲା ଏବଂ ସେଥିରେ ପ୍ରାୟ ୨୦୦୦ ଲୋକ ବାସ କରୁଥିଲେ । (ଏବେ ୧୦୦ ବର୍ଷ ପରେ ଏଥେନ୍ସର ଲୋକସଂଖ୍ୟା ୫୦୦,୦୦୦ରୁ ଅଧିକ ହୋଇଗଲାଣି ।)

ଏହିସବୁ ବାଣିଜ୍ୟ ଓ ଧନ ଉତ୍ପନ୍ନକାରୀ କାର୍ଯ୍ୟ ବନ୍ଦ ହେବାଦ୍ୱାରା ତୁର୍କି ଶାସକମାନଙ୍କ ପକ୍ଷରେ ଅମଙ୍ଗଳଜନକ ହେଲା । ସାମ୍ରାଜ୍ୟର ଅଙ୍ଗ ପ୍ରତ୍ୟଙ୍ଗ ଦୁର୍ବଳ ଓ ଦରିଦ୍ର ହେବା ସଙ୍ଗେ ସଙ୍ଗେ ସାମ୍ରାଜ୍ୟର ହୃଦୟ ମଧ୍ୟ ଦୁର୍ବଳ ହୋଇପଡ଼ିଲା ଏବଂ କଷ୍ଟ ଭୋଗିଲା । ବାସ୍ତବିକ ବିସ୍ମୟର କଥା ଯେ ଏହିସବୁ ସଂଘର୍ଷ ଓ ବିପଦ ସତ୍ତ୍ୱେ ସାମ୍ରାଜ୍ୟ ଏତେଦିନ ପର୍ଯ୍ୟନ୍ତ ତିଷ୍ଠି ପାରିଥିଲା ।

"ଜାନିସେରିଜ୍" (janissaris) ହିଁ କେତେକ ଶହ ବର୍ଷ ପର୍ଯ୍ୟନ୍ତ ଅଟୋମାନ୍ ସୁଲତାନମାନଙ୍କର ବଳ ଥିଲେ । ଏହା ହେଉଛି ଏକ ତୁର୍କି ସେନାବାହିନୀ—ଖ୍ରୀଷ୍ଟୀୟାନ ଦାସଙ୍କୁ ନେଇ ଗଠିତ । ପିଲାକାଳୁ ଏମାନଙ୍କୁ ଯତ୍ନର ସହିତ ଶିକ୍ଷା ଦିଆଯାଏ । ଏହି ଜାନିସେରିଜ୍ ଯୋଗୁଁ ଇଜିପ୍ଟର ମେମେଲୁକଙ୍କ କଥା ମନେପଡ଼େ; କିନ୍ତୁ ଏମାନଙ୍କ ଭିତରେ ଗୋଟାଏ ପାର୍ଥକ୍ୟ ଥିଲା । ଯଦିଓ ତୁର୍କିସେନାର ଏମାନେ ରତ୍ନ ଥିଲେ, ତଥାପି ଇଜିପ୍ଟ ପରି ସେମାନେ ଶାସକଗୋଷ୍ଠୀ ହୋଇ ନ ଥିଲେ । କିନ୍ତୁ ମେମେଲୁକଙ୍କପରି ସେମାନେ ଏକ ବଂଶପରମ୍ପରା ଜାତି ବି ହୋଇ ନ ଥିଲେ । ଦାସ ଭାବରେ ସେମାନଙ୍କୁ ଅନୁଗ୍ରହ ଦେଖାଯାଉଥିଲା—ବଡ଼ ବଡ଼ ପଦବୀ ଓ ଚାକିରି ସେମାନଙ୍କ ଲାଗି ରକ୍ଷିତ ହେଉଥିଲା । ଯାହାହେଉ ସେମାନଙ୍କର ସନ୍ତାନମାନେ ସ୍ୱାଧୀନ ମୁସଲମାନ ହେଲେ ଏବଂ ଦୀର୍ଘକାଳ ପର୍ଯ୍ୟନ୍ତ ସେମାନେ ଏହି ଅନୁଗୃହୀତ ସେନାରେ ରହି ପାରି ନ ଥିଲେ; କାରଣ କେବଳ ଦାସଙ୍କର ଏଥିରେ ସ୍ଥାନ ଥିଲା । ନୂତନ ଗୋରା ଖ୍ରୀଷ୍ଟିୟାନ ଦାସମାନଙ୍କ ଭିତରୁ ସେନା ସଂଗ୍ରହ ସର୍ବଦା କରାଯାଉଥିଲା । ଏହା ଅତି ଅସାଧାରଣ ମନେ ହେଉଥିବ, ନୁହେଁ କି ? କିନ୍ତୁ

ମନେରଖ, ଦାସ ଶବ୍ଦର ଆଜି ଯେ ଅର୍ଥ ହୋଇଛି ସେକାଳରେ ଇସଲାମ ଦେଶମାନଙ୍କରେ ସେହି ଅର୍ଥ ନ ଥିଲା । ଦାସମାନେ କେବଳ ଆଇନାନୁସାରେ ଓ ନାମମାତ୍ର ଦାସ ଥିଲେ; କିନ୍ତୁ ଉଚ୍ଚ ସ୍ୱୀକୃତି ସେମାନଙ୍କୁ ମିଳୁଥିଲା । ଭାରତରେ ଦିଲ୍ଲୀର ଦାସରାଜାଙ୍କ କଥା ତୋର ମନେ ପଡ଼ିପାରେ; ଇଜିପ୍ଟର ଚାଲାଦିନ ବି ଜଣେ ଦାସ ଥିଲେ । ତୁର୍କିଙ୍କ ଦୃଷ୍ଟିକୋଣ ଯେପରି ଜଣାପଡ଼ୁଛି—ଶାସକଶ୍ରେଣୀ ଶିକ୍ଷା ଦେଇ ଯଥାସମ୍ଭବ କର୍ମକୁଶଳ କରିବା ଦିଗରେ ଥିଲା । ପ୍ରତ୍ୟେକ ଶିକ୍ଷକ ଜାଣିଲାପରି ସେମାନେ ବୁଝିଥିଲେ ଯେ କୌଣସି ଲୋକକୁ ଶିକ୍ଷା ଦେବାର ଉତ୍କୃଷ୍ଟ ସମୟ ହେଉଛି ତାହାର ବାଲ୍ୟକାଳଠାରୁ ଆରମ୍ଭ କରିବା । ସମ୍ଭବତଃ ମୁସଲମାନ ପ୍ରଜାଙ୍କର ସନ୍ତାନମାନଙ୍କୁ ନେଇଯିବା ଓ ସେମାନଙ୍କୁ ଧର୍ମଗୁରୁରୂପେ ତାଙ୍କ ମାତାଙ୍କଠାରୁ ବିଚ୍ଛିନ୍ନ କରିଦେବା ବା ସେମାନଙ୍କ ଦାସ କରିବା ବୋଧହୁଏ ଏତେ ସହଜ ନ ଥିଲା । ତେଣୁ ସେମାନେ ଖ୍ରୀଷ୍ଟିୟାନ୍ ପିଲାମାନଙ୍କୁ ସଂଗ୍ରହ କଲେ ଏବଂ ସୁଲତାନଙ୍କ ଦାସ ଆଢ଼ୁଆରେ ସେମାନଙ୍କୁ ରଖିଲେ ଓ କଠୋର ଶିକ୍ଷା ଦେଲେ । ଅବଶ୍ୟ ଏହି ଛୋଟ ପିଲାମାନେ ବଡ଼ ହେଲାବେଳକୁ ମୁସଲମାନ ପାଲଟିଲେ ।

ଏହି ପ୍ରଥା ସୁଲତାନଙ୍କ ପ୍ରତି ବି ପ୍ରୟୋଗ ହୋଇଥିଲା । ସୁଲତାନ ସାଧାରଣ ଭାବରେ ବିବାହ କରୁ ନ ଥିଲେ । ଅତି ସହୃର ସହିତ ନିର୍ବାଚିତ ଦାସବାଳିକା ତାଙ୍କ ଘରକୁ ପଠାଯାଏ ଏବଂ ସେମାନେ ତାଙ୍କ ସନ୍ତାନର ମାତା ହୁଅନ୍ତି । ତେଣୁ ୧୮ଶ ଶତାବ୍ଦୀର ପ୍ରଥମ ଭାଗ ପର୍ଯ୍ୟନ୍ତ ସମସ୍ତ ଅଟୋମାନ ସୁଲତାନ ଦାସମାତାଙ୍କ ସନ୍ତାନ ଥିଲେ ଏବଂ ଦାସ ପରିବାରର ଯେ କୌଣସି ଲୋକପରି ସେମାନଙ୍କୁ ମଧ୍ୟ ସେହିପରି କଠୋର ଶିକ୍ଷା ଓ କଠିନ ଶୃଙ୍ଖଳା ମଧ୍ୟଦେଇ ଯିବାକୁ ହେଉଥିଲା ।

ସୁଲତାନଙ୍କଠାରୁ ଆରମ୍ଭ କରି ତଳ ପର୍ଯ୍ୟନ୍ତ ଏହି ସମସ୍ତ ଦାସ ବାଛିବାରେ ସେମାନଙ୍କୁ ଶୃଙ୍ଖଳା ଓ ବିଶିଷ୍ଟ କାର୍ଯ୍ୟ ନିମନ୍ତେ ଶିକ୍ଷା ଦେବାରେ କେତେକ ପରିମାଣରେ ବିଜ୍ଞାନ ବି ଥିଲା । ବିଶେଷ ବିଭାଗରେ ଏହା ଫଳରେ କର୍ମକୁଶଳତା ଦେଖାଦେଲା ଏବଂ ବରାବର ନୂତନ ଦାସଙ୍କ ଭିତରୁ ନୂତନ ରକ୍ତ ଆସି ଏଥିରେ ମିଶିଲା ଏବଂ କୌଣସି ବଂଶପରମ୍ପରା ଶାସକଗୋଷ୍ଠୀ ବୃଦ୍ଧି ପାଇ ପାରିଲା ନାହିଁ । ସମ୍ଭବତଃ ଏହି ପ୍ରଥା ଉପରେ ହିଁ ସାମ୍ରାଜ୍ୟର ପ୍ରଥମ ଶକ୍ତି ନିର୍ଭର କରୁଥିଲା । କିନ୍ତୁ ଏହା ସୁସ୍ପଷ୍ଟ ଯେ ଇଉରୋପୀୟ ବା ଏସିଆ ଅବସ୍ଥାଠାରୁ ଏହା ସମ୍ପୂର୍ଣ୍ଣ ଭିନ୍ନ । ଏହା ସାମନ୍ତପ୍ରଥାଠାରୁ ସମ୍ପୂର୍ଣ୍ଣ ପୃଥକ ଥିଲା ଏବଂ ଯେଉଁ ପ୍ରଥା ଇଉରୋପରେ ସାମନ୍ତବାଦ ସ୍ଥାନ ଅଧିକାର କରୁଥିଲା ଏହା ତାହାଠାରୁ ବହୁଦୂରରେ ଥିଲା । ଏହି ପ୍ରଥାରେ ଏବଂ ବିଶେଷ ବେପାର ଓ ବାଣିଜ୍ୟ ନ ଥିବାରୁ କୌଣସି ପ୍ରକୃତ ମଧ୍ୟବିତ୍ତ ଶ୍ରେଣୀ ଉଠିଇ ପାରିଲା ନାହିଁ । ୧୬ଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ ପରେ ଏହି ପ୍ରଥା ତାର ଆଦିମ ପବିତ୍ରତା ସହ ରହିପାରି ନ ଥିଲା—ଏତେବେଳେ ଦାସ ପରିବାରରେ ବଂଶପରମ୍ପରା ଭାବ ପଶିଲା ଏବଂ ପରିବାରର ପୁତ୍ରମାନେ ହିଁ ସେଠି ବାସ କରିପାରିଲେ ଏବଂ ତାଙ୍କ ପିତାଙ୍କ କାର୍ଯ୍ୟ

ପାଇ ପାରିଲେ । ଆହୁରି ଅନେକ ଭାବରେ ମଧ୍ୟ କ୍ରମେ ଏହି ପ୍ରଥା ଦୁର୍ବଳ ହୋଇଗଲା । କିନ୍ତୁ ଏହାର ପୃଷ୍ଠଭୂମିକା ରହିଥିଲା ଏବଂ ଏଥିଯୋଗୁଁ ଶତାବ୍ଦୀ ଶତାବ୍ଦୀ ଧରି ଘନିଷ୍ଠ ସମ୍ପର୍କ ସତ୍ତ୍ୱେ ତୁର୍କି ଇଉରୋପଠାରୁ ସମ୍ପୂର୍ଣ୍ଣ ପୃଥକ ଓ ଇଉରୋପରେ ଅପରିଚିତ ଭାବରେ ରହିଲା । ତୁର୍କି ଦେଶ ଭିତରେ ମଧ୍ୟ ବିଦେଶୀ ସଂପ୍ରଦାୟସବୁ ନିଜ ନିଜର ଆଇନ ଓ ଗୋଷ୍ଠୀ ନେଇ ସଂପୂର୍ଣ୍ଣ ଅଲଗା ହୋଇ ରହିଲେ ।

ମୁଁ ଯେତେ ଏହି ଅସାଧାରଣ ତୁର୍କି ପ୍ରଥା ସମ୍ବନ୍ଧରେ ଏତେ ଅଧିକ କହିବାର କାରଣ ହେଉଛି ଏହା ଅନୁପମ ଥିଲା ଏବଂ ଅଟୋମାନ ସାମ୍ରାଜ୍ୟ ଗଢ଼ିବାରେ ଏହା ସାହାଯ୍ୟ କରିଥିଲା । ଏହା ଅବଶ୍ୟ ବର୍ତ୍ତମାନ ଆଉ ନାହିଁ, ଏହା ଏକ ଇତିହାସର ବସ୍ତୁ ହୋଇ ରହିଛି ।

ଗତ ଦୁଇଶହ ବର୍ଷର ତୁର୍କି ଇତିହାସ ହେଉଛି କ୍ରମେ ଅଗ୍ରସର ହେଉଥିବା ରୁଷ ବିରୁଦ୍ଧରେ ଓ ପରାଧୀନ ଜାତିମାନଙ୍କ ବିଦ୍ରୋହ ବିରୁଦ୍ଧରେ ସଂଗ୍ରାମ । ଗ୍ରୀସ, ରୁମାନିଆ, ସର୍ବିଆ, ବୁଲଗେରିଆ, ମଣ୍ଟେନିଗ୍ରୋ ଓ ବୋସନିଆ—ଏସବୁ ବଲକାନ ଦେଶ ଏବଂ ଅଟୋମାନ୍ ସାମ୍ରାଜ୍ୟର ଅଙ୍ଗ । ଆମେ ଦେଖିଲେ ୧୮୨୯ରେ ଇଂଲଣ୍ଡ, ଫ୍ରାନ୍ସ ଓ ରୁଷ ସାହାଯ୍ୟରେ ଗ୍ରୀସ୍ ସଂପର୍କ ତୁଟାଇଦେଲା । ରୁଷ ଏକ ସ୍ଲାଭ (slave) ଦେଶ ଏବଂ ବଲକାନରେ ବୁଲଗେରିଆ ଓ ସର୍ବିଆ ମଧ୍ୟ ତାହା । ଏହି ବଲକାନ ସ୍ଲାଭମାନଙ୍କର ରକ୍ଷକ ରୂପେ ଦେଖାଇହେବା ନିମନ୍ତେ ଜାରଶାସିତ ରୁଷ ଚେଷ୍ଟାକଲା । ରୁଷର ପ୍ରକୃତ ଲୋଲୁପ-ଦୃଷ୍ଟି ଥିଲା କନ୍‌ଷ୍ଟାଣ୍ଟିନୋପଲ ଉପରେ ଏବଂ ସାମ୍ରାଜ୍ୟର ସେହି ପୁରାତନ ରାଜଧାନୀକୁ ଦଖଲ୍ କରିବା ନିମନ୍ତେ ଏହାର ସମସ୍ତ କୂଟନୀତିକ ଖେଳର ଉଦ୍ଦେଶ୍ୟ ଥିଲା—ଜାର ବାଇଜାଣ୍ଟାଇନ୍ ସମ୍ରାଟମାନଙ୍କର ଉତ୍ତରାଧିକାରୀ ବୋଲି ନିଜକୁ ବିଶ୍ୱାସ କରୁଥିଲା । ୧୬୩୦ରେ ରୁଷ-ତୁର୍କି ଯୁଦ୍ଧ ଆରମ୍ଭ ହେଲା ଏବଂ ମଝିରେ ମଝିରେ କିଛିକାଳ ବ୍ୟବଧାନରେ ୧୬୬୮, ୧୭୯୨, ୧୮୦୭, ୧୮୨୮, ୧୮୫୩, ୧୮୭୭ ପର୍ଯ୍ୟନ୍ତ ଏହା ଚାଲିଥିଲା ଏବଂ ଶେଷ ହେଲା ୧୯୧୮ରେ । ୧୭୭୪ରେ ରୁଷ ତୁର୍କିଠାରୁ କ୍ରିମିଆ ପାଇଲା ଏବଂ କୃଷ୍ଣସାଗରରେ ପହଞ୍ଚିଲା । କିନ୍ତୁ ଏଥିରେ କିଛି ଲାଭ ହେଲା ନାହିଁ; କାରଣ କୃଷ୍ଣସାଗର ମୁହଁ ବନ୍ଦକରି ଠିକ ମୂଳରେ କନ୍‌ଷ୍ଟାଣ୍ଟିନୋପଲ ରହିଥିଲା । ୧୭୯୨ ଓ ୧୮୦୭ କନଷ୍ଟାଣ୍ଟିନୋପଲ ଆଡ଼କୁ ରୁଷ ସୀମା ମାଡ଼ିଗଲା ଏବଂ ତୁର୍କ ସୀମା ପଛକୁ ହଟିଲା । ଗ୍ରୀକ୍ ସ୍ୱାଧୀନତା ଯୁଦ୍ଧବେଳେ ତୁର୍କ ଅନ୍ୟତ୍ର ପୂର୍ଣ୍ଣ ମାତ୍ରାରେ ବ୍ୟସ୍ତ ଥିଲାବେଳେ ତାହା ଉପରେ ଆକ୍ରମଣ କରି ଜାର ଫାଇଦା ଉଠାଇବାକୁ ଚେଷ୍ଟା କଲା । ଇଂଲଣ୍ଡ ଓ ଅଷ୍ଟ୍ରିଆ ହସ୍ତକ୍ଷେପ କରି ନ ଥିଲେ କନଷ୍ଟାଣ୍ଟିନୋପ୍ଲକୁ ରୁଷ ଦଖଲ କରିଥାନ୍ତା ।

ରୁଷ ହାତରୁ ଇଂଲଣ୍ଡ ଓ ଅଷ୍ଟ୍ରିଆ କାହିଁକି ତୁର୍କିକୁ ରକ୍ଷା କଲେ ? ତୁର୍କ ପ୍ରତି ପ୍ରୀତିଯୋଗୁଁ ନୁହେଁ; ମାତ୍ର ରୁଷର ପ୍ରତିଦ୍ୱନ୍ଦ୍ୱିତା ଓ ଭୟ ଯୋଗୁଁ ଏସିଆରେ ଓ ଅନ୍ୟତ୍ର ରୁଷ

ଓ ଇଂଲଣ୍ଡ ଭିତରେ ପରମ୍ପରାଗତ ପ୍ରତିଦ୍ୱନ୍ଦିତା ସମ୍ବନ୍ଧରେ ମୁଁ ପୂର୍ବରୁ କହିଛି । ଭାରତ ଦଖଲ ଦ୍ୱାରା ବ୍ରିଟିଶ ରାଜ୍ୟ ଠିକ୍ ରୁଷ ସୀମାନ୍ତ ପର୍ଯ୍ୟନ୍ତ ଆସିଗଲା ଏବଂ ଭାରତ ପ୍ରତି ଜାରଶାସିତ ରୁଷ କଣ କରିବ ଏଥିଲାଗି ସେମାନେ ବରାବର ରାତିରେ ସ୍ୱପ୍ନ ଦେଖିବାକୁ ଲାଗିଲେ । ତେଣୁ ତା ଉପରେ ପ୍ରତିବନ୍ଧକ ପକାଇବା ଏବଂ ତାର ଶକ୍ତି ବଢ଼ିବାରେ ବାଧା ଦେବା ହିଁ ଏମାନଙ୍କର ନୀତି ହେଲା । କନ୍‌ଷ୍ଟାଣ୍ଟିନୋପଲ ଦଖଲ ଦ୍ୱାରା ରୁଷ ଭୂମଧ୍ୟସାଗରରେ ଏକ ଭଲ ବନ୍ଦର ପାଇଥାନ୍ତା ଏବଂ ଭାରତ ପଥ ନିକଟରେ ଏକ ନୌଯୁଦ୍ଧବାହିନୀ ଜାହାଜ ରଖିବାକୁ ସମର୍ଥ ହୋଇ ପାରିଥାନ୍ତା । ଏହା ଏକ ମହା ବିପଦ ହୋଇଥାନ୍ତା ଏବଂ ତେଣୁ ତୁର୍କିକୁ ଦମନ କରିବାରେ ଇଂଲଣ୍ଡ ପୁନଃପୁନଃ ରୁଷକୁ ବାଧା ଦେଲା । ରୁଷକୁ ଦୂରରେ ରଖିବାରେ ଅଷ୍ଟ୍ରିଆର ମଧ୍ୟ ସ୍ୱାର୍ଥ ଥିଲା । ଅଷ୍ଟ୍ରିଆ ଏବେ ଗୋଟିଏ ଶ୍ରେଷ୍ଠ ଦେଶ ହୋଇଯାଇଛି; କିନ୍ତୁ କେତେକ ବର୍ଷ ପୂର୍ବେ ଏହା ଏକ ବିରାଟ ସାମ୍ରାଜ୍ୟ ଥିଲା—ବଲକାନ୍ ଏଥିରେ ଯୋଗ ଦେଇଥିଲା ଏବଂ ତୁର୍କି ଖଣ୍ଡ ଖଣ୍ଡ ହେବାପରେ ବଲକାନ ଦେଶମାନଙ୍କରୁ ବହୁତ ଭାଗ ନେବାକୁ ଏହା ଚାହୁଁଥିଲା । ତେଣୁ ରୁଷକୁ ଦୂରରେ ରଖିବା ଏହାର ଇଚ୍ଛା ଥିଲା ।

ବିଚରା ତୁର୍କି ବଡ଼ ଖରାପ ଅବସ୍ଥାରେ ପଡ଼ିଲା । ତାର ଶକ୍ତିଶାଳୀ ପଡ଼ୋଶୀମାନେ ତା ଉପରେ କିଛି ବିପଦ ପଡ଼ିବ, ସେମାନେ ତା ଉପରେ ମାଡ଼ି ବସିବେ ଏବଂ ଖଣ୍ଡ ଖଣ୍ଡ କରିଦେବେ—ଏଥିଲାଗି ଗୃଧ୍ରି ବସିଥାନ୍ତି । ତୁର୍କିକୁ ଲକ୍ଷ୍ୟକରି ୧୮୫୦ରେ ରୁଷର ଜାର ବ୍ରିଟିଶ ରାଷ୍ଟ୍ରଦୂତଙ୍କୁ କହିଥିଲେ, "ଆମ ହାତରେ ଜଣେ ପୀଡ଼ିତଲୋକ ଅଛି—ଅତ୍ୟନ୍ତ ରୋଗଗ୍ରସ୍ତ ଲୋକ । ···ଆମ ହାତରେ ସେ ହଠାତ୍ ମରିଯାଇପାରେ ।" ଏହି କଥା ପ୍ରସିଦ୍ଧ ହୋଇପଡ଼ିଲା ଏବଂ ଏହିଦିନଠାରୁ ତୁର୍କି ହେଲା "ଇଉରୋପର ପୀଡ଼ିତ ଲୋକ" । କିନ୍ତୁ ଏହି ରୋଗଗ୍ରସ୍ତ ଲୋକ ମରିବା ନିମନ୍ତେ ଦୀର୍ଘକାଳ ଲାଗିଲା ।

ସେହିବର୍ଷ ୧୮୫୩ରେ ତୁର୍କିକୁ ଶେଷ କରିଦେବା ପାଇଁ ଜାର ଆଉ ଏକ ଉଦ୍ୟମ କଲା । ଏହା ଫଳରେ କ୍ରିମିୟାଯୁଦ୍ଧ ହେଲା ଏବଂ ଇଂଲଣ୍ଡ ଓ ଫ୍ରାନ୍‌ସ ରୁଷର ଗତିରୋଧ କଲେ । ୨୧ ବର୍ଷ ପରେ ୧୮୭୭ରେ ଜାର ପୁନର୍ବାର ତୁର୍କି ଆକ୍ରମଣ କଲା ଏବଂ ତାକୁ ପରାସ୍ତ କଲା; କିନ୍ତୁ ପୁଣି କେତେକ ପରିମାଣରେ ବିଦେଶୀ ହସ୍ତକ୍ଷେପ ଦ୍ୱାରା ହିଁ ତୁର୍କି ରକ୍ଷା ପାଇଲା, ଅନ୍ତତଃ ରୁଷ ହାତରୁ କନଷ୍ଟାଣ୍ଟିନୋପଲ ରକ୍ଷା ପାଇଲା । ତୁର୍କିର ଭାଗ୍ୟ ବିଚାର କରିବାପାଇଁ ୧୮୭୮ରେ ବର୍ଲିନରେ ଏକ ପ୍ରସିଦ୍ଧ ଆନ୍ତର୍ଜାତିକ ସମ୍ମିଳନୀ ହେଲା । ସେଠାରେ ବିସମାର୍କ, ଡିସରେଲୀ ଓ ଇଉରୋପର ଅନ୍ୟାନ୍ୟ ମୁଖ୍ୟ ରାଜନୀତିଜ୍ଞଙ୍କହିରୁ ଥିଲେ ଏବଂ ସେମାନେ ପରସ୍ପରକୁ ଧମକ ଦେଲେ ଓ ପରସ୍ପର ବିରୁଦ୍ଧରେ ଚକ୍ରାନ୍ତ କଲେ । ଇଂଲଣ୍ଡ ଏକ ପ୍ରକାର ରୁଷ ସହିତ ଯୁଦ୍ଧ ଆରମ୍ଭ କରିବା ଅବସ୍ଥାରେ ପହଞ୍ଚିଲା—ରୁଷ ଏପରି ଅବସ୍ଥାରେ ବାଟକୁ ଆସିଲା । ବର୍ଲିନ ସନ୍ଧି ଫଳରେ ବୁଲଗେରିଆ, ସର୍ବିଆ, ରୁମାନିଆ ଓ ମଣ୍ଟେନେଗ୍ରୋ ପ୍ରଭୃତି ବଲକାନ୍ ରାଜ୍ୟ ସ୍ୱାଧୀନ ହେଲେ; ଅଷ୍ଟ୍ରିଆ ବୋସନିଆ ଓ ହର୍ଜେଗୋଭିନା ଦଖଲ

କଲା । (ସେ ଦୁଇଟି ରାଜ୍ୟ ନାମକୁ ମାତ୍ର ତୁର୍କି କର୍ତ୍ତୃତ୍ୱ ଅଧୀନରେ ରହିଥିଲା) ଏବଂ ତୁର୍କିର ପକ୍ଷ ଗ୍ରହଣ କରିଥିବାରୁ କମିସନ ବା ଦସ୍ତୁରି ହିସାବରେ ତୁର୍କିଠାରୁ ବ୍ରିଟେନ୍ ସାଇପ୍ରସ ଦ୍ୱୀପ ନେଲା ।

ତା ପରବର୍ତ୍ତୀ ରୁଷ-ତୁର୍କି ଯୁଦ୍ଧ ୩୬ ବର୍ଷ ପରେ ୧୯୧୪ରେ ମହାସମରର ଅଂଶ ରୂପେ ହୋଇଥିଲା ।

ଏଥିଭିତରେ ତୁର୍କିରେ ପ୍ରଭୂତ ଭାବରେ ପରିବର୍ତ୍ତନ ହୋଇଛି । ୧୭୭୪ରେ ରୁଷଦ୍ୱାରା ପରାଜୟ ହେତୁ ତୁର୍କି ପ୍ରଥମ ଧକ୍କା ପାଇଲା ଏବଂ ତୁର୍କିବାସୀ ବୁଝିପାରିଲେ ଯେ ଇଉରୋପର ଅବଶିଷ୍ଟ ଅଞ୍ଚଳରୁ ଏହା ବହୁତ ପଛରେ ପଡ଼ିରହିଛି । ଏକ ସେନାବାହୀ (Military) ଜାତି ହୋଇଥିବାରୁ ତାଙ୍କ ମନରେ ପ୍ରଥମ କଥାଉଠିଲା ଯେ ସେନାବାହିନୀକୁ ଆଧୁନିକ କରିବାକୁ ପଡ଼ିବ । କେତେକ ପରିମାଣରେ ଏହା କରାଗଲା ଏବଂ ନୂତନ କର୍ମଚାରୀ ଶ୍ରେଣୀଙ୍କ ଜରିଆରେ ପାଶ୍ଚାତ୍ୟ ଭାବଧାରା ତୁର୍କିରେ ପ୍ରବେଶ କଲା । ମୁଁ ତ ଡତେ କହିଛି, ସେଠି ମଧ୍ୟବିତ୍ତ ଶ୍ରେଣୀ କିଛି ନ ଥିଲେ ଏବଂ ଅନ୍ୟ କୌଣସି ସଂଗଠିତ ଶ୍ରେଣୀ ବି ନ ଥିଲେ । ୧୮୫୩-୫୬ର କ୍ରିମିୟାଯୁଦ୍ଧ ପରେ ପାଶ୍ଚାତ୍ୟକରଣ ନିମନ୍ତେ ପ୍ରକୃତ ଉଦ୍ୟମ ହେଲା । ଶାସନତାନ୍ତ୍ରିକ ସରକାର ସପକ୍ଷରେ (ଏହାର ଅର୍ଥ ସୁଲତାନର ଏକଛତ୍ର ଶାସନ ପରିବର୍ତ୍ତେ ଏକ ଗଣତାନ୍ତ୍ରିକ ଆସେମ୍ବ୍ଲି ରହିବ) ଆନ୍ଦୋଳନ ବୃଦ୍ଧି ପାଇଲା । ଏହାର ନେତା ଥିଲେ ମିଧାତ୍ ପାଶା । ଗୋଟାଏ ଶାସନବିଧାନ ଆଣିବା ସପକ୍ଷରେ ୧୮୭୬ରେ କନଷ୍ଟାଣ୍ଟିନୋପଲରେ ଦଙ୍ଗାମାନ ହୋଇଥିଲା ଏବଂ ସୁଲତାନ ଏହା ମଞ୍ଜୁର କଲେ—କେବଳ ବୁଲଗେରିଆରେ ବିଦ୍ରୋହ ଓ ରୁଷ ଯୁଦ୍ଧ ହେତୁ ଏହାକୁ ତତ୍‌କ୍ଷଣାତ୍ ବନ୍ଦ କରିଦେବା ପାଇଁ ଏହା କରାଗଲା । ଯୁଦ୍ଧରେ ଅଧିକ ବ୍ୟୟ କୌଣସି ମୌଳିକ ଅର୍ଥନୀତିକ ପରିବର୍ତ୍ତନ ଉପରେ ସଂସ୍କାର ନ ହେବାରୁ ତୁର୍କି ସରକାର ଦେବାଳିଆ ହୋଇଗଲା; ଫଳସ୍ୱରୂପ ପାଶ୍ଚାତ୍ୟ ଧନପତିଙ୍କଠାରୁ ଧନ ଧାର କରିବାକୁ ପଡ଼ିଲା ଏବଂ ଏମାନେ ରାଜସ୍ୱର ଏକାଂଶ ଉପରେ ନିୟନ୍ତ୍ରଣ କଲେ । ତେଣୁ ପାଶ୍ଚାତ୍ୟକରଣ ଓ ସଂସ୍କାର କରିବା ଉଦ୍ୟମ କୃତକାର୍ଯ୍ୟ ହେଲା ନାହିଁ । ସାମ୍ରାଜ୍ୟର ପୁରାତନ ବ୍ୟବସ୍ଥା ସହିତ ଏହା ଖାପଖାଇବା କଷ୍ଟକର ଥିଲା ।

ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଗୋଟାଏ ଶାସନ ସଂସ୍କାର ନିମନ୍ତେ ଦୃଢ଼ ଦାବୀ ହେଲା । ପୂର୍ବପରି ସାମରିକ କର୍ମଚାରୀମାନେ ହିଁ କେବଳ ଏକ ସଙ୍ଗଠିତ ଦଳ ଥିଲେ ଏବଂ ସେମାନଙ୍କ ଭିତରେ ହିଁ "ଯୁବକ ତୁର୍କି ଦଳ" ନାମରେ ନୂତନ ଦଳ ଶୀଘ୍ର ବିସ୍ତାର ଲାଭ କଲା । ଗୁପ୍ତ "ମିଳନ ଓ ପ୍ରଗତି" ଗଢ଼ାହେଲା ଏବଂ ସେନା ଭିତରୁ ଅଧିକ ଅଂଶକୁ ନିଜ ଦଳକୁ ଆଣିପାରିବା ପରେ, ୧୮୭୬ର ପୁରଣା ଶାସନବିଧାନ ଫେରାଇ ଆଣିବା ନିମନ୍ତେ ସେମାନେ ୧୯୦୮ରେ ସୁଲତାନଙ୍କୁ ବାଧ୍ୟ କଲେ । ଏଥିରେ ଖୁବ୍ ଉଲ୍ଲାସ ଜାତ ହେଲା ।

ଏପର୍ଯ୍ୟନ୍ତ ଯେଉଁ ତୁର୍କି ଆର୍ମେନିଆନ୍ ଓ ଅନ୍ୟ ଜାତି ପରସ୍ପରକୁ ହତ୍ୟା କରିଥିଲେ ସେମାନେ ପରସ୍ପରକୁ ଆଲିଙ୍ଗନ କଲେ ଏବଂ ନୂତନ ଯୁଗ ଆରମ୍ଭ ଦେଖି ଆନନ୍ଦାଶ୍ରୁ ବୁହାଇଲେ — ଏହି ଯୁଗରେ ସମସ୍ତେ ସମାନ ହେବେ ଏବଂ ପରାଧୀନ ଜାତିମାନେ ପୂର୍ଣ୍ଣ ଅଧିକାର ପାଇପାରିବେ । ଏହି ରକ୍ତପାତବିହୀନ ବିପ୍ଳବର ପ୍ରଧାନ ଯୋଦ୍ଧା ଥିଲେ ଏନଭେରବେ । ସେ ଏକ ସୁନ୍ଦର ଓ ଅହଙ୍କାରୀ; କିନ୍ତୁ ଦାମ୍ଭିକ ଓ ଦୁଃସାହସିକ ଲୋକ ଥିଲେ । ମୋସ୍ତାଫା କେମାଲ ପରେ ତୁର୍କିର ରକ୍ଷକ ହେଲେ । ସେ ମଧ୍ୟ ତୁର୍କିର ଜଣେ ଯୁବକ ନେତା ଥିଲେ; କିନ୍ତୁ ଏନ୍‌ଭେରବେଙ୍କ ତୁଳନାରେ ସେ ପଛରେ ପଡ଼ିଥିଲେ ଏବଂ ଦୁହେଁ ପରସ୍ପରକୁ ଭଲ ପାଉ ନ ଥିଲେ ।

ଯୁବକ ତୁର୍କି ଦଳଙ୍କ କାମ ସହଜରେ ହୋଇ ନ ଥିଲା । ସୁଲତାନ ତାଙ୍କୁ ହଇରାଣ କଲା ଏବଂ ରକ୍ତପାତ ହେଲା; ସୁଲତାନକୁ ଗାଦିଚ୍ୟୁତ କରାଗଲା ଓ ତା ସ୍ଥାନରେ ଆଉ ଜଣେ ରହିଲା । ଆର୍ଥିକ ଅସୁବିଧା ପଡ଼ିଥିଲା ଏବଂ ବିଦେଶୀ ଶତ୍ରୁମାନଙ୍କୁ ସେନ ବି ହଇରାଣରେ ପଡ଼ିବାକୁ ହେଲା । ଅଷ୍ଟ୍ରିଆ ଏହି ଗୋଳମାଳିଆ ଅବସ୍ଥାର ସୁବିଧା ନେଇ ବୋସନିଆ ଓ ହର୍ଜେଗୋଭିନିଆ ସଂଯୋଗ କରିବାର ଘୋଷଣା କରିଦେଲା (୧୮୭୮ରେ ବର୍ଲିନ ସନ୍ଧିପରେ ସେ ଏହା ଦଖଲ କରିଥିଲା) । ଇଟାଲୀ ବଳପୂର୍ବକ ଉତ୍ତର ଆଫ୍ରିକାରେ ଟ୍ରିପଲୀ ଦଖଲ କଲା ଏବଂ ଯୁଦ୍ଧ ଘୋଷଣା କଲା । ତୁର୍କି ହାତରେ ଭଲ ନୌବାହିନୀ ନ ଥିବାରୁ ସେ ବିଶେଷ କିଛି କରିପାରି ନ ଥିଲା ଏବଂ ଇଟାଲୀ ଦାବୀ ମାନିବାକୁ ପଡ଼ିଲା । ଏହା ସେମାନେ କରିପାରିଛନ୍ତି କି ନାହିଁ – ଏପରି ସମୟରେ ଆଉ ଏକ ନୂତନ ବିପଦ ନିଜ ଦେଶରେ ଦେଖାଦେଲା । ବୁଲଗେରିଆ, ସର୍ବିଆ, ଗ୍ରୀସ୍ ଓ ମଣ୍ଟେନିଗ୍ରୋ ଆଦି ଦେଶ ଇଉରୋପରୁ ତୁର୍କିକୁ ତଡ଼ି ଲୁଣ୍ଠନର ଭାଗୀଦାର ହେବାପାଇଁ ବ୍ୟଗ୍ର ଥିଲେ ଏବଂ କାଳ ଅନୁକୂଳ ଦେଖି ସେମାନେ ଏକତ୍ର ହୋଇ ଏକ ବଲକାନ୍ ଲିଗ ଗଠନ କଲେ ଓ ୧୯୧୨ ମସିହା ଅକ୍ଟୋବରମାସରେ ତୁର୍କି ଆକ୍ରମଣ କଲେ । ତୁର୍କି ବଡ଼ କ୍ଳାନ୍ତ ଓ ଅସଙ୍ଗଠିତ ହୋଇପଡ଼ିଥିଲା । ଶାସନତନ୍ତ୍ରବାଦୀ ଓ ପ୍ରତିକ୍ରିୟାପନ୍ଥୀଙ୍କ ଭିତରେ କ୍ଷମତା ଲାଗି ବିବାଦ ଲାଗିଥିଲା । ବଲକାନ୍ ଲିଗ୍ ସମ୍ମୁଖରେ ଏହାର ସମ୍ପୂର୍ଣ୍ଣ ଭାବରେ ପତନ ହୋଇଥିଲା ଏବଂ ପ୍ରଭୂତ କ୍ଷତି ଘଟିଲା । ଏହିରୂପେ କେତେମାସ ଭିତରେ ପ୍ରଥମ ବଲକାନ୍ ଯୁଦ୍ଧ ଶେଷ ହେଲା ଏବଂ ତୁର୍କି ଇଉରୋପରୁ ସମ୍ପୂର୍ଣ୍ଣରୂପେ ବିତାଡ଼ିତ ହେଲା । କେବଳ କନଷ୍ଟାଣ୍ଟିନୋପଲ ରହିଥିଲା, ଏପରିକି ସର୍ବାପେକ୍ଷା ପୁରାତନ ଇଉରୋପୀୟ ସହର ଆଡ୍ରିଆନୋପ୍ଲ ତୁର୍କି ଇଚ୍ଛା ବିରୁଦ୍ଧରେ ତାହାଠାରୁ ଛଡ଼ାଇ ନିଆଗଲା ।

ଯାହାହେଉ ଅତିଶୀଘ୍ର ଲୁଣ୍ଠିତ ଦ୍ରବ୍ୟ ବାଣ୍ଟିବାରେ ବିଜେତାଙ୍କ ଭିତରେ ଝଗଡ଼ା ଲାଗିଲା ଏବଂ ବୁଲଗେରିଆ ହଠାତ୍ ବିଶ୍ୱାସଘାତକ ଭାବରେ ତାର ପୂର୍ବ ମିତ୍ରମାନଙ୍କ ଉପରେ ଆକ୍ରମଣ କଲା । ସେତେବେଳେ ପରସ୍ପର ମଧ୍ୟରେ ହତ୍ୟାକାଣ୍ଡ ଲାଗିଲା ଏବଂ ଏହି

ଗୋଲମାଲରୁ ଫାଇଦା ଉଠାଇବା ନିମନ୍ତେ ପୂର୍ବରୁ ଅଲଗା ହୋଇ ରହିଥିବା ରୁମାନିଆ ମଧ୍ୟ ଏଥିରେ ଯୋଗଦେଲା । ଫଳ ସ୍ୱରୂପ ବୁଲଗେରିଆ ଯାହା ପାଇଥିଲା ତାହା ହରାଇଲା ଏବଂ ରୁମାନିଆ, ଗ୍ରୀସ୍ ଓ ସର୍ବିଆ ଦେଶର ଅନେକ ବିସ୍ତୃତ ହେଲା । ତୁର୍କି ମଧ୍ୟ ଆଡ୍ରିଆନୋପ୍ଲ ଫେରି ପାଇଲା । ବଲକାନ ଲୋକଙ୍କର ପରସ୍ପର ପ୍ରତି ଏପରି ଘୃଣା ଭାବ ଅତି ଆଶ୍ଚର୍ଯ୍ୟ-ଦାୟକ । ବଲକାନ ରାଜ୍ୟଗୁଡ଼ିକ ଛୋଟ, କିନ୍ତୁ ଅନେକବେଳେ ଏଗୁଡ଼ିକ ହିଁ ଇଉରୋପର ଝଞ୍ଜାର କେନ୍ଦ୍ରସ୍ଥଳ ହୋଇଛନ୍ତି ।

୧୯୦୯ରେ ଯୁବକ ତୁର୍କିଦଳ ଯେଉଁ ସୁଲତାନଙ୍କୁ ଗାଦିଚ୍ୟୁତ କଲେ ସେ ଜଣେ ମଜାଦାର ଲୋକ । ତାଙ୍କର ନାମ ହେଉଛି ଦ୍ୱିତୀୟ ଅବଦୁଲ ହମିଦ ଏବଂ ୧୮୭୬ରେ ସେ ସିଂହାସନ ପାଇଲେ । ସଂସ୍କାର ଓ ନୂତନ ପ୍ରଥା ପ୍ରବର୍ତ୍ତନ କରିବାରେ ତାଙ୍କର ଶ୍ରଦ୍ଧା ନ ଥିଲା, କିନ୍ତୁ ସେ ନିଜ ଢଙ୍ଗରେ ଦକ୍ଷ ଥିଲେ ଏବଂ ପ୍ରଧାନ ଶକ୍ତିମାନଙ୍କୁ ପରସ୍ପର ବିରୁଦ୍ଧରେ ଲଗାଇଦେବାରେ କ୍ଷମତା ଟିକିଏ ଥିଲା । ତୋର ମନେଥିବ, ସମସ୍ତ ଅଟୋମାନ ସୁଲତାନ ହେଉଛନ୍ତି ଖଲିଫା ଅର୍ଥାତ୍ ଇସଲାମର ଧର୍ମଗୁରୁ । ଅବଦୁଲ ହମିଦ ଏକ ପାନ୍-ଇସଲାମିକ (Pan-Islamic) ଅର୍ଥାତ୍ ଅଖିଳ ଇସଲାମ ଆନ୍ଦୋଳନ ଗଢ଼ିବାର ଚେଷ୍ଟାକରି ଏହି ଅବସ୍ଥାର ସୁବିଧା ଉଠାଇବାକୁ ଚେଷ୍ଟାକଲେ—ଏହାର ଅର୍ଥ ହେଉଛି ଏହି ଆନ୍ଦୋଳନରେ ଅନ୍ୟ ଦେଶର ମୁସଲମାନମାନେ ଯୋଗ ଦେଇପାରିବେ । ତାହାହେଲେ ସେ ସେମାନଙ୍କର ସମର୍ଥନ ପାଇବେ । କେତେକ ବର୍ଷ ପର୍ଯ୍ୟନ୍ତ ଇଉରୋପ ଓ ଏସିଆରେ ଏହି "ପାନ-ଇସଲାମ" କଥା ଉଠିଲା । କିନ୍ତୁ ଏହାର କୌଣସି ଦୃଢ଼ଭିତ୍ତି ନ ଥିଲା ଓ ମହାସମରରେ ଏହା ସମ୍ପୂର୍ଣ୍ଣରୂପେ ଲୋପ ପାଇଗଲା । ତୁର୍କିର ଜାତୀୟବାଦ "ପାନ୍-ଇସଲାମ" ବିରୁଦ୍ଧରେ ଥିଲା ଏବଂ ଏ ଦୁହିଁଙ୍କ ଭିତରେ ଜାତୀୟତା ହିଁ ଅଧିକ ବଳବାନ୍ ହେଲା ।

ସୁଲତାନ ଅବଦୁଲ ହମିଦ୍ ଇଉରୋପରେ ଅତ୍ୟନ୍ତ ଅପ୍ରିୟ ହୋଇ ଉଠିଲେ; କାରଣ ବୁଲଗେରିଆ, ଆର୍ମେନିଆ ଓ ଅନ୍ୟତ୍ର ନରହତ୍ୟା ଓ ଦୁରାଚାର ପାଇଁ ତାଙ୍କୁ ହିଁ ଦାୟୀ ବୋଲି ଧରା ଯାଉଥିଲା । ଗ୍ଲାଡ଼ଷ୍ଟୋନ୍ ତାଙ୍କୁ "ପ୍ରଧାନ ହତ୍ୟାକାରୀ" ବୋଲି କହୁଥିଲେ ଏବଂ ଏହି ସବୁ ଅତ୍ୟାଚାର ବିରୁଦ୍ଧରେ ଇଂଲଣ୍ଡରେ ଗୋଟାଏ ବଡ଼ ଆନ୍ଦୋଳନ ଜାରି କଲେ । ତୁର୍କିବାସୀ ଏହାଙ୍କ ରାଜତ୍ୱ ଇତିହାସରେ ସବୁଠାରୁ ଦୁଃଖପୂର୍ଣ୍ଣ ବୋଲି ଗଣୁଥିଲେ । ବଲକାନ୍ ରାଜ୍ୟ ଓ ଆର୍ମେନିଆରେ ନରହତ୍ୟା ଓ ପୈଶାଚିକ କାଣ୍ଡ ଘଟିବାକୁ ଲାଗିଲା ଏବଂ ଉଭୟ ପକ୍ଷ ଏଥିରେ ବ୍ରତୀ ହେଲେ । ତୁର୍କିବାସୀଙ୍କୁ ହତ୍ୟା କରିବାରେ ବଲକାନ୍ ଓ ଆର୍ମେନିୟାନ୍-ମାନେ ଯେପରି ଦୋଷୀ, ତୁର୍କି ସେମାନଙ୍କୁ ହତ୍ୟା କରିବାରେ ସେହିପରି ଅପରାଧୀ । ଏହି ଲୋକଚରିତର ରଙ୍ଗୀନତମ ଅଞ୍ଚଳ ଭିତରେ ଶତ ଶତ ବର୍ଷ ଧରି ଜାତିଗତ ଓ ଧାର୍ମିକ ଦ୍ୱେଷ ସ୍ଥାନ ପାଇଥିଲା ଏବଂ ଏହାର ପ୍ରଚଣ୍ଡ ପ୍ରକାଶ ହେଲା । ଆର୍ମେନିଆ ସର୍ବାପେକ୍ଷା ଅଧିକ କଷ୍ଟ ଭୋଗିଲା । କକେସସ୍ ନିକଟରେ ଏହା ଏବେ ଏକ ସୋଭିଏଟ୍ ପ୍ରଜାତନ୍ତ୍ର ଦେଶ ହୋଇ ରହିଛି ।

ତେଣୁ ବଲକାନ୍ ଯୁଦ୍ଧ ପରେ ତୁର୍କି କ୍ଲାନ୍ତ ହୋଇପଡ଼ିଲା ଏବଂ ଇଉରୋପରେ କେବଳ ଏକମାତ୍ର ସ୍ଥାନ ତାର ରହିଲା । ସାମ୍ରାଜ୍ୟର ଅବଶିଷ୍ଟାଂଶ ମଧ୍ୟ ଭୁଷୁଡ଼ିପଡ଼ୁଥିଲା । ଇଜିପ୍ଟ ଅବଶ୍ୟ ନାମକୁ ମାତ୍ର ତାହାର ହୋଇ ରହିଥିଲା; ବାସ୍ତବରେ ବ୍ରିଟେନ ଦଖଲ କରି ସେ ଦେଶକୁ ଶୋଷଣ କଲା । କିନ୍ତୁ ଅନ୍ୟ ଆରବ ଦେଶମାନଙ୍କରେ ଜାତୀୟ ଆନ୍ଦୋଳନର ଚିହ୍ନ ଦେଖାଯାଉଥିଲା । ତୁର୍କି ଯେ ଉତ୍ତେଜନାହୀନ ଓ ହତୋତ୍ସାହ ହୋଇ ପଡ଼ିଲା ଏଥିରେ ବିସ୍ମୟ କିଛି ନାହିଁ । ୧୯୦୮ର ସକଳ ଚାମ୍ପିକ ଆଶା ଭସ୍ମରେ ପରିଣତ ହେଲା । ଠିକ୍ ଏତିକବେଳେ ଜର୍ମାନୀ ତାହା ସହିତ ସହାନୁଭୂତି ଦେଖାଇବାର ଦେଖାଗଲା । ଜର୍ମାନୀ ପ୍ରାଚ୍ୟଦେଶ ପ୍ରତି ଦୃଷ୍ଟିପାତ କରିଥିଲା ଏବଂ ସମଗ୍ର ମଧ୍ୟପ୍ରାଚ୍ୟରେ ଜର୍ମାନ ପ୍ରଭାବ ବିସ୍ତାର କରିବାର ମତଲବ ତାର ଥିଲା । ତୁର୍କି ମଧ୍ୟ ଜର୍ମାନୀର ସାହାଯ୍ୟ ଖୋଜୁଥିଲା । ତେଣୁ ସେମାନଙ୍କ ଭିତରେ ସମ୍ପର୍କ ବୃଦ୍ଧି ହେଲା । ଦ୍ୱିତୀୟ ବଲକାନ୍ ସମର ଶେଷ ହେବାର ବର୍ଷକ ପରେ ୧୯୧୪ରେ ପୃଥିବୀଯୁଦ୍ଧ ଲାଗିଲାବେଳକୁ ଏହା ହିଁ ଅବସ୍ଥା ଥିଲା । ତୁର୍କି କପାଳରେ ବିଶ୍ରାମ ନ ଥିଲା ।

## ୧୪୩ : ଜାର୍ ଅମଳର ରୁଷ

ମାର୍ଚ୍ଚ ୧୬, ୧୯୩୩

ରୁଷ ଆଜି ଏକ ସୋଭିଏଟ ଦେଶ ଏବଂ ଶ୍ରମିକ ଓ କୃଷକଙ୍କ ପ୍ରତିନିଧିମାନଙ୍କ ଦ୍ୱାରା ଏହାର ଶାସନ ପରିଚାଳିତ ହେଉଛି । କେତେକ ଭାବରେ ପୃଥିବୀରେ ଏହା ସବୁଠାରୁ ଉନ୍ନତ ଦେଶ । ପ୍ରକୃତ ଅବସ୍ଥା ଯାହାହେଉ ପଛକେ, ସରକାର ଓ ସମାଜର ସମୂହ ପରିକଳ୍ପିତ ସାମାଜିକ ସମାନତା ନୀତି ଉପରେ ପ୍ରତିଷ୍ଠିତ । ବର୍ତ୍ତମାନ ଏହା ଏପରି ଅଛି; କିନ୍ତୁ କେତେକ ବର୍ଷ ପୂର୍ବେ ଏବଂ ୧୯ଶ ଶତାବ୍ଦୀ ସାରା ଓ ତା ପୂର୍ବରୁ ଇଉରୋପରେ ରୁଷ ହିଁ ସବାପେକ୍ଷା ଅନୁନ୍ନତ ଓ ପ୍ରତିଗାମୀ ଦେଶ ଥିଲା । ସେଠାରେ ଖାଣ୍ଟି ଏକଛତ୍ର ଓ ପ୍ରଭୁତ୍ୱବ୍ୟଞ୍ଜକ ଶାସନ ଥିଲା; ପଶ୍ଚିମ ଇଉରୋପରେ ବିପ୍ଳବ ଓ ପରିବର୍ତ୍ତନ ସତ୍ତ୍ୱେ ରାଜା ଐଶ୍ୱରିକ ଭାବର ପ୍ରତୀକ ବୋଲି ଧାରଣା ଜାର ତଥାପି ଜାରି ରଖିଯାଉଥିଲେ । ଏଠାକାର ଗିର୍ଜା ରୋମାନ୍ ବା ପ୍ରୋଟେଷ୍ଟାଣ୍ଟ ନୁହେଁ—ପୁରୁଣା ରକ୍ଷଣଶୀଳ ଗ୍ରୀକ୍ ଗିର୍ଜା ଥିଲା । ଏହା ସମ୍ଭବତଃ ଅନ୍ୟସ୍ଥାନ ଅପେକ୍ଷା ଅଧିକ ପ୍ରଭୁତ୍ୱବ୍ୟଞ୍ଜକ ଥିଲା । ଏହା ଜାର ସରକାରର ଅସ୍ତ୍ର ଓ ଖେଳନା ଥିଲା । ଏହି ଦେଶକୁ "ପବିତ୍ର ରୁଷ" ବୋଲି କୁହାଯାଉଥିଲା ଏବଂ ଜାର ପ୍ରତ୍ୟେକର "ଗ୍ରେଟ ଗୋଡ୍ ପିତା" ଥିଲେ ଏବଂ ଲୋକମାନଙ୍କର ମନ ଆଚ୍ଛାଦିତ କରିବା ପାଇଁ ଏବଂ ରାଜନୀତିକ ଓ ଅର୍ଥନୀତିକ ଅବସ୍ଥାରୁ ତାଙ୍କର ଦୃଷ୍ଟି ଫେରାଇ ଆଣିବା ପାଇଁ ଗିର୍ଜା ଓ କର୍ତ୍ତୃପକ୍ଷ ଏହି

ଜନଶ୍ରୁତି ପ୍ରଚାର କରିବାରେ ଲାଗିଲେ । ଧର୍ମ ଚେତନା ସାଥି କରିଥିବା ବିଷୟ ଇତିହାସରେ ଦେଖାଯାଏ ।

"ପବିତ୍ର ରୁଷ"ର ପ୍ରତୀକ ଥିଲା "ନାଉଟ୍" (Knout) ଅର୍ଥାତ୍ ଚାବୁକ ଏବଂ ବାରମ୍ବାର କାର୍ଯ୍ୟରେ ଲଗା ହେଉଥିଲା "ପୋଗ୍ରମ୍ସ" (Pogroms) ଏହି ଦୁଇ ଶବ୍ଦ ଜାର-ଶାସିତ ରୁଷ ପୃଥିବୀକୁ ଦେଇଥିଲା । ଅର୍ଦ୍ଧଦାସ, କୃଷକ ଓ ଅନ୍ୟମାନଙ୍କୁ ଶାସ୍ତି ଦେବା ନିମନ୍ତେ ଯେଉଁ ବେତ ବ୍ୟବହାର କରାଯାଉଥିଲା ତାହା ହେଉଛି ନାଉଟ୍ । ପୋଗ୍ରମ ଅର୍ଥ ହେଉଛି ଧ୍ୱଂସ ଓ ସଂଗଠିତ ଶାସ୍ତି; ଫଳ ସ୍ୱରୂପ ଏହାର ଅର୍ଥ ନରହତ୍ୟା, ବିଶେଷ ଭାବରେ ଇହୁଦୀ-ମାନଙ୍କ ହତ୍ୟା । ଜାରଶାସିତ ରୁଷ ପଛକୁ ବିଶାଳ ନିର୍ଜନ ସାଇବେରିଆ ମରୁପ୍ରାନ୍ତର ଥିଲା; ସାଇବେରିଆ ନାମ ନିର୍ବାସନ, କାରାଗାର ଓ ହତାଶା ସହିତ ସଂପୃକ୍ତ । ବହୁସଂଖ୍ୟକ ରାଜନୀତିକ ବନ୍ଦୀଙ୍କି ସାଇବେରିଆ ପଠାଯାଇଥିଲା ଏବଂ ବିରାଟ ନିର୍ବାସନ ଶିବିର ଓ ଉପନିବେଶ-ସବୁ ସେଠାରେ ଗଢ଼ି ଉଠିଲା ଏବଂ ପାଖରେ ଆତ୍ମହତ୍ୟା କରିଥିବା ଲୋକଙ୍କର ବହୁ କବର ଥିଲା । ଦୀର୍ଘ ଓ ନିର୍ଜନ ନିର୍ବାସନ ଓ କାରାଦଣ୍ଡ ସହ୍ୟ କରିବା କଠିନ ଏବଂ ଅନେକ ଦାମ୍ଭିକ ଲୋକଙ୍କ ମନ ଦବିଯାଇଛି ଓ ଏହି ଭାବରେ ଶରୀର ଭାଙ୍ଗି ପଡ଼ିଛି । ଦୁନିଆରୁ ବିଚ୍ଛିନ୍ନ ହୋଇ, ନିଜର ବନ୍ଧୁ ଓ ସାଥି ଏବଂ ଯେଉଁମାନେ ଆଶା ଭରସାର ସ୍ଥଳ ଓ ବୋଝ ଲାଘବ କରନ୍ତି ସେମାନଙ୍କଠାରୁ ଦୂରରେ ବାସ କରିବା ପାଇଁ କୌଣସି ବ୍ୟକ୍ତିର ମନର ବଳ ଥିବା ଦରକାର, ନିସ୍ତବ୍ଧ ଓ ନିଶ୍ଚଳ ମନୋନିବେଶ ହେବା ଉଚିତ ଏବଂ ସହ୍ୟ କରିବା ନିମନ୍ତେ ସାହସ ଥିବା ଦରକାର । ତେଣୁ ଯେ କେହି ମୁଣ୍ଡଟେକିଲା ଜାରଶାସିତ ରୁଷ ତାକୁ କାଟିଦେଲା ଏବଂ ମୁକ୍ତିଲାଗି ପ୍ରତ୍ୟେକ ଉଦ୍ୟମକୁ ଦମନ କଲା । ଏପରିକି ଯାତ୍ରା କରିବା ବି କଷ୍ଟକର ହୋଇଗଲା, ତାହାହେଲେ ଉଦାର ଭାବଧାରା ଆଉ ବାହାର ଦେଶରୁ ଆସିବ ନାହିଁ । କିନ୍ତୁ ଦମନ କରାଯାଇଥିବା ସ୍ୱାଧୀନତା ଚିନ୍ତାବୃତ୍ତି ସୁଧ ସହି ଅସୁଲ କରେ ଏବଂ ଏହା ଯେତେବେଳେ ଅଗ୍ରସର ହୁଏ, ଏହାର 'ପ୍ରଗତି ଲମ୍ଫପ୍ରଦାନ ପରି ହେବାର ସମ୍ଭାବନା—ଏହା ପୁରୁଣା ପାଞ୍ଚସବୁ ଓଲଟାଇ ପକାଏ ।

ଆମର ଆଗ ଚିଠିଗୁଡ଼ିକରେ ଏସିଆ ଓ ଇଉରୋପର ବିଭିନ୍ନ ଅଂଶରେ—ସୁଦୂର ପ୍ରାଚ୍ୟ, ମଧ୍ୟଏସିଆ, ପର୍ସିଆ ଓ ତୁର୍କିରେ ଜାରଶାସିତ ରୁଷର କାର୍ଯ୍ୟକଳାପ ଓ ନୀତି ବିଷୟରେ ଆମେ ସାମାନ୍ୟ ଦୃଷ୍ଟି ପକାଇଥିଲେ । ସେହି ଚିନ୍ତାକୁ ଏବେ ପୂର୍ଣ୍ଣ କରିବା ଏବଂ ଏହି ବିଭିନ୍ନ କାର୍ଯ୍ୟକଳାପ ପ୍ରଧାନ ସ୍ରୋତ ସହିତ ମିଶାଇଦେବା । ରୁଷର ଭୌଗୋଳିକ ଅବସ୍ଥିତି ଏପରି ଯେ ଏହାର ସଦାବେଳେ ଦୁଇଟି ମୁଖ ରହିଛି—ଏକ ପଶ୍ଚିମକୁ ଦୃଷ୍ଟିପାତ ଏବଂ ଅନ୍ୟଟି ପୂର୍ବପ୍ରତି । ନିଜର ଅବସ୍ଥିତି ହେତୁ ଏହା ଏକ ଇଉରେସିଆନ୍ ଶକ୍ତି ହୋଇଛି ଏବଂ ଏହାର ପରବର୍ତ୍ତୀ ଇତିହାସ ହେଉଛି ଗୋଟିକ ପରେ ଗୋଟିଏ ପୂର୍ବ ଓ ପଶ୍ଚିମରେ ନିଜର ସ୍ୱାର୍ଥ ବଜାୟଲାଗି କାର୍ଯ୍ୟ । ପଶ୍ଚିମରେ ପରାସ୍ତ ହୋଇ ଏହା ପୂର୍ବ

ଆଡ଼କୁ ଦୃଷ୍ଟି ପକାଏ; ପୂର୍ବରେ ଗତିରୋଧ ହେଲେ, ପୁନର୍ବାର ପଶ୍ଚିମଆଡ଼କୁ ବୁଲିପଡ଼େ ।

ପୁରୁଣା ମଙ୍ଗୋଲ ସାମ୍ରାଜ୍ୟ ଓ ଚେଙ୍ଗିଜ୍ ଖାଁଙ୍କ ଉତ୍ତରାଧିକାରୀ ଭାଙ୍ଗି ପଡ଼ିବା କଥା ମୁଁ ତତେ କହିଛି ଏବଂ କିପରି ମସ୍କୋ ରାଜାଙ୍କ ନେତୃତ୍ୱରେ ରୁଷରାଜାମାନେ ରୁଷରୁ ଶେଷରେ ଗୋଲ୍‌ଡେନ ହୋର୍ଡ (Golden Horde) ମଙ୍ଗୋଲମାନଙ୍କୁ ତଡ଼ିଲେ ତାହା କହିଛି । ୧୪ଶ ଶତାବ୍ଦୀ ଶେଷରେ ଏହା ହୋଇଥିଲା * । ମସ୍କୋ ରାଜା କ୍ରମେ ସମସ୍ତ ଦେଶର ଏକଛତ୍ର ଶାସକ ହେଲେ ଏବଂ ନିଜର ଜାର (ବା ସିଜର) ବୋଲି ନାମକରଣ କଲେ । ସେମାନଙ୍କର ଦୃଷ୍ଟିକୋଣ ଓ ରୀତିନୀତି ଅଧିକତ୍ତ୍ୱରେ ମଙ୍ଗୋଲିସ୍ଥାନ୍ ଥିଲା ଏବଂ ସେମାନଙ୍କ ଭିତରେ ଓ ପଶ୍ଚିମ ଇଉରୋପ ମଧ୍ୟରେ କିଛି ସାମଞ୍ଜସ୍ୟ ନ ଥିଲା—ପଶ୍ଚିମ ଇଉରୋପ ରୁଷକୁ ବର୍ବର ଦେଶ ବୋଲି ବିଚାରୁଥିଲା । ୧୬୮୯ରେ ଜାର ପିଟର ରାଜଗାଦି ପାଇଲେ—ତାଙ୍କ ନାମ ହେଲା ପିଟର ଦି ଗ୍ରେଟ୍ (Peter the Great) । ସେ ରୁଷକୁ ପୁରାପୁରି ପାଶ୍ଚାତ୍ୟଢଙ୍ଗର କରିବାପାଇଁ ସ୍ଥିର କଲେ ଏବଂ ଇଉରୋପୀୟ ଦେଶମାନଙ୍କର ଅବସ୍ଥା ଅଧ୍ୟୟନ କରିବା ପାଇଁ ଦୀର୍ଘଯାତ୍ରା କରିଗଲେ । ସେ ଯାହାସବୁ ଦେଖିଲେ ତାହା ଅନୁକରଣ କଲେ ଏବଂ ତାଙ୍କର ଅନିଚ୍ଛୁକ ଓ ଅଜ୍ଞ ସାମନ୍ତମାନଙ୍କ ଉପରେ ପାଶ୍ଚାତ୍ୟକରଣ ଧାରଣାସବୁ ଲଦିଲେ । ଜନସାଧାରଣ ଅବଶ୍ୟ ଅତ୍ୟନ୍ତ ଅନୁନ୍ନତ ଓ ଦଳିତ ଥିଲେ ଏବଂ ସେମାନେ ଏ ସଂସ୍କାର ବିଷୟରେ କଣ ଭାବୁଛନ୍ତି ଏହା ଜାଣିବା କଥା ପିଟରଙ୍କ ପାଖରେ ମୂଳରୁ ଉଠୁ ନ ଥିଲା । ପିଟର ଦେଖିଲେ ଯେ ତାଙ୍କ ଅମଳର ପ୍ରଧାନ ଦେଶସବୁ ଜଳ-ଶକ୍ତିରେ ବଳୀୟାନ୍ ଏବଂ ସମୁଦ୍ର ଶକ୍ତିର ଗୁରୁତ୍ୱ ସେ ବୁଝିପାରିଲେ । କିନ୍ତୁ ଏଡ଼େ ବଡ଼ ବିଶାଳ ଦେଶ ରୁଷରେ ସେତେବେଳେ ଉତ୍ତର ମେରୁ ସାଗର (ଆର୍କଟିକ ଓସନ) ଛଡ଼ା ସମୁଦ୍ରକୁ ଯିବାପଥ ଆଉ ନ ଥିଲା—ଏହା ମଧ୍ୟ ବିଶେଷ ଭଲ ନୁହେଁ । ସେ କ୍ରିମିୟା ଯାଇ ପାରି ନ ଥିଲେ (ତାଙ୍କ ଉତ୍ତରାଧିକାରୀ ଯାଇଥିଲେ) କିନ୍ତୁ ସୁଇଡେନ୍‌କୁ ପରାସ୍ତ କରି ସେ ବଲଟିକ୍ ପାଇଲେ । ସେ ସେଣ୍ଟ୍ ପିଟର୍ସବର୍ଗ ନାମକ ଏକ ନୂତନ ପାଶ୍ଚାତ୍ୟ ଢଙ୍ଗର ସହର ନେଭା ଉପରେ ପ୍ରତିଷ୍ଠା କଲେ ବଲଟିକ୍ ସାଗରକୁ ଯିବା ପଥରେ ଫିନଲାଣ୍ଡ ହ୍ରଦରୁ ଟିକିଏ ଦୂରରେ ଏହା ଅବସ୍ଥିତ । ଏହାକୁ ସେ ତାଙ୍କର ରାଜଧାନୀ କଲେ ଏବଂ ଏହିରୂପେ ମସ୍କୋ ସହିତ ଯେଉଁ ପୁରୁଣା ପରମ୍ପରା ଜଡ଼ିତ ଥିଲା ତାକୁ ଭାଙ୍ଗିବାକୁ ଚେଷ୍ଟାକଲେ । ପିଟର ୧୭୨୫ରେ ମଲେ ।

ଅର୍ଦ୍ଧଶତାବ୍ଦୀରୁ ଅଧିକ କାଳ ପରେ ୧୭୮୨ରେ ଆଉ ଜଣେ ରୁଷ ଶାସକ ଦେଶକୁ "ପାଶ୍ଚାତ୍ୟକରଣ" କରିବା ନିମନ୍ତେ ଚେଷ୍ଟାକଲେ । ଏ ହେଉଛନ୍ତି ଜଣେ ନାରୀ, କାଥେରାଇନ ଦ୍ୱିତୀୟ—ତାଙ୍କୁ ବି ଗ୍ରେଟ୍ ବା ମହାନ୍ ବୋଲି କହୁଥିଲେ । ସେ ଜଣେ ଅସାଧାରଣ ନାରୀ, ବଳବତୀ, ନିଷ୍ଠୁର ଓ ଦକ୍ଷ ଏବଂ ତାଙ୍କର ବ୍ୟକ୍ତିଗତ ଜୀବନ

ବିଷୟରେ ବଡ଼ ଦୁର୍ନାମ ଥିଲା । ତାଙ୍କର ସ୍ୱାମୀ ଜାରଙ୍କୁ ହତ୍ୟା କରାଇ ବନ୍ଦୀ କରାଦେଇ ସେ ସମଗ୍ର ରୁଷର ଏକଚ୍ଛତ୍ର ଶାସିକା ହେଲେ ଓ ୧୪ ବର୍ଷ ପର୍ଯ୍ୟନ୍ତ ଶାସନ କରିଥିଲେ । ସେ ସଂସ୍କୃତିର ଜଣେ ପ୍ରଧାନ ପୃଷ୍ଠପୋଷକ ବୋଲି ଦେଖାଇ ହେଉଥିଲେ ଏବଂ ଭଲଟେ-ୟାରଙ୍କ ସହ ବନ୍ଧୁତ୍ୱ କରିବା ନିମନ୍ତେ ଚେଷ୍ଟା କରିଥିଲେ – ତାଙ୍କ ସହିତ ଚିଠିପତ୍ର ବି କାରବାର ହୋଇଥିଲା । ଭର୍ସେଇର ଫରାସୀ ରାଜସଭାକୁ ସେ କେତେକ ପରିମାଣରେ ଅନୁକରଣ କଲେ ଏବଂ ଶିକ୍ଷା ଦିଗରେ କେତେକ ସଂସ୍କାର ପ୍ରବର୍ତ୍ତନ କଲେ । କିନ୍ତୁ ଏସବୁ କେବଳ ଉପରେ ଓ ଲୋକଦେଖଣା ଲାଗି ହୋଇଥିଲା । ସଂସ୍କୃତି ହଠାତ୍ ଅନୁ-କରଣ କରି ହୁଏ ନା; ଏଥିପାଇଁ ଡେର ଲାଗିବା ଦରକାର । ଏକ ଅନୁନ୍ନତ ଦେଶ ଉନ୍ନତ ଦେଶକୁ କେବଳ ଅନୁକରଣ କରିବାଦ୍ୱାରା ସଂସ୍କୃତିର ପ୍ରକୃତ ସୁନା ଓ ରୂପାକୁ ଟିଣରେ ପରିଣତ କରେ । ପଶ୍ଚିମ ଇଉରୋପର ସଂସ୍କୃତି ନିର୍ଦ୍ଦିଷ୍ଟ ସାମାଜିକ ଅବସ୍ଥା ଉପରେ ପ୍ରତିଷ୍ଠିତ ଥିଲା । ପିଟର ଓ କାଥେରାଇନ୍ ସେହି ଅବସ୍ଥା ସୃଷ୍ଟି କରିବାକୁ ଚେଷ୍ଟା ନ କରି ବାହ୍ୟ ରଚନାଟିକୁ ଅନୁକରଣ କରିବାକୁ ଚେଷ୍ଟା କଲେ । ତା ଫଳରେ ଏହିସବୁ ପରିବର୍ତ୍ତନର ବୋଝ ଜନସାଧାରଣଙ୍କ ଉପରେ ପଡ଼ିଲା ଏବଂ ପ୍ରକୃତରେ ଅଭିଜାତଶ୍ରେଣୀ ଓ ଜାରର ଏକଚ୍ଛତ୍ର ଶାସନ ଦୃଢ଼ୀଭୂତ ହେଲା ।

ନେଣ୍ଡି ଜାରଶାସିତ ରୁଷରେ ଏକ ପ୍ରବଳ ପ୍ରଗତି ସଙ୍ଗେ ସଙ୍ଗେ ପ୍ରତିକ୍ରିୟା ବି ସୃଷ୍ଟି ହେଲା । ରୁଷ କୃଷକମାନେ କାର୍ଯ୍ୟତଃ ଦାସ ଥିଲେ । ସେମାନେ ଜମିରେ ବନ୍ଧା ହୋଇ ପଡ଼ିଥାନ୍ତି ଏବଂ ଖାସ ଅନୁମତି ବିନା ତାହା ଛାଡ଼ି ପାରୁ ନ ଥିଲେ । ଶିକ୍ଷା କେତେକ କର୍ମଚାରୀ ଓ ବୃଦ୍ଧିଜୀବୀଙ୍କ ଭିତରେ ସୀମାବଦ୍ଧ ଥିଲା—ଏ ସବୁ ଭୂସ୍ୱାମୀ ଭଦ୍ରଲୋକ ଶ୍ରେଣୀରୁ ଆସୁଥିଲେ । କାର୍ଯ୍ୟତଃ କୌଣସି ମଧ୍ୟବିତ୍ତ ଶ୍ରେଣୀ ନ ଥିଲା ଏବଂ ଜନସାଧାରଣ ସମ୍ପୂର୍ଣ୍ଣରୂପେ ନିରକ୍ଷର ଓ ଅନୁନ୍ନତ ଥିଲେ । ଅତୀତରେ ବାରମ୍ବାର ଉତ୍ପୀଡ଼ିତ କୃଷକ ବିଦ୍ରୋହମାନ ହୋଇଛି ଅତ୍ୟଧିକ ଅତ୍ୟାଚାର ହେତୁ ଅନ୍ଧ ବିପ୍ଳବମାନ ହୋଇଛି ଏବଂ ସେସବୁ ପେଷି ଦିଆଯାଇଛି । ଏବେ ଉପରେ ଟିକିଏ ଶିକ୍ଷା ପ୍ରଚଳନ ଫଳରେ ପଶ୍ଚିମ ଇଉରୋପର ପ୍ରଚଳିତ ଭାବଧାରା ବି ଜଗିଡ଼ିଆସିଲା । ସେତେବେଳେ ଫରାସୀ ବିପ୍ଳବ ହେଲା ଏବଂ ତା ପରେ ଆସିଲା ନେପୋଲିୟନ୍ । ତୋର ମନେଥିବ, ନେପୋଲିୟନର ପତନରେ ସମଗ୍ର ଇଉରୋପରେ ପ୍ରତିକ୍ରିୟା ଦେଖାଦେଲା ଏବଂ ଜାର ପ୍ରଥମ ଆଲେକ୍‌ଜାଣ୍ଡର ସମ୍ରାଟ-ମାନଙ୍କର "ପବିତ୍ର ମିଳନ" ହିଁ ଏହି ପ୍ରତିକ୍ରିୟାର ଅଗ୍ରଦୂତ ଥିଲା । ତାର ଉତ୍ତରାଧିକାରୀ ଆହୁରି ଖରାପ ଥିଲା । କିଛି କାର୍ଯ୍ୟବ୍ରତୀ ହୋଇ ୧୮୨୫ରେ ଦଳେ ଯୁବକ କର୍ମଚାରୀ ଓ ବୃଦ୍ଧିଜୀବୀ ବିଦ୍ରୋହ କରିଉଠିଲେ । ସେମାନେସବୁ ଭୂସ୍ୱାମୀ ଶ୍ରେଣୀର ଲୋକ ଏବଂ ଜନସାଧାରଣ ବା ସେନା କାହାରି ସମର୍ଥନ ତାଙ୍କ ପଛରେ ନ ଥିଲା; ସେମାନଙ୍କୁ ଦମନ କରି ଦିଆଗଲା । ଏମାନଙ୍କୁ "ଡିସେମ୍ବ୍ରିଷ୍ଟ" ବୋଲି କହନ୍ତି—୧୮୨୫ ଡିସେମ୍ବର ମାସରେ ତାଙ୍କ ବିଦ୍ରୋହ ଘଟିଥିବାରୁ ଏପରି ନାମକରଣ । ଏହି ବିଦ୍ରୋହ ରୁଷରେ ରାଜନୀତିକ

ଜାଗରଣର ପ୍ରଥମ ବାହ୍ୟ ସୂଚନା । ଏହା ପୂର୍ବରୁ ଗୁପ୍ତ ରାଜନୀତିକ ସମିତିସବୁ ଥିଲା—ଯେହେତୁ ଜାର ସରକାର ସବୁପ୍ରକାର ପ୍ରକାଶ୍ୟ ରାଜନୀତିକ କାର୍ଯ୍ୟ ରୋକ ଦେଇଥିଲା । ଏହି ଗୁପ୍ତ ସମିତିସବୁ କାର୍ଯ୍ୟ କଲା ଏବଂ ବୈପ୍ଳବିକ ଭାବଧାରା ପ୍ରସାର ହେବାକୁ ଲାଗିଲା—ବିଶେଷତଃ ଶିକ୍ଷିତ ଓ ବିଶ୍ୱବିଦ୍ୟାଳୟ ଛାତ୍ରଙ୍କ ଭିତରେ ଏହା ହେଲା ।

କ୍ରିମିଆ ଯୁଦ୍ଧରେ ରୁଷର ପରାଜୟ ପରେ କେତେକ ସଂସ୍କାର ପ୍ରବର୍ତ୍ତିତ କରାଗଲା ଏବଂ ୧୮୬୧ରେ (Serfdom) ଅର୍ଦ୍ଧଦାସତ୍ୱ ଉଠିଗଲା । କୃଷକଙ୍କ ପକ୍ଷରେ ଏହା ଏକ ବଡ଼ ଜିନିଷ ଥିଲା ଏବଂ ତଥାପି ଏଥିରେ ସେମାନେ ବିଶେଷ କିଛି ଆରାମ ପାଇଲେ ନାହିଁ; କାରଣ ମୁକ୍ତ ଅର୍ଦ୍ଧଦାସମାନଙ୍କର ଚଳିବାପାଇଁ ଯଥେଷ୍ଟ ଜମି ନ ଥିଲା । ଏଥିଭିତରେ ଶିକ୍ଷିତଙ୍କ ମଧ୍ୟରେ ବୈପ୍ଳବିକ ଭାବର ବିସ୍ତାର ହେଲା ଏବଂ ତାହା ସଙ୍ଗେ ସଙ୍ଗେ ଜାର ସରକାର ବି ତାକୁ ଦମନ କରିବାରେ ଲାଗିଲା । ଏହି ଉନ୍ନତ ଶିକ୍ଷିତ ସଂପ୍ରଦାୟ ଓ କୃଷକଙ୍କ ଭିତରେ କୌଣସି ଯୋଗ ବା ସାଧାରଣ ସମ୍ବନ୍ଧ ନ ଥିଲା । ତେଣୁ ୧୮୭୦ର ପ୍ରାରମ୍ଭ ବେଳକୁ ସାମ୍ୟବାଦୀ ଭାବାପନ୍ନ ( ଏମାନେ ସବୁ ଅତି ଅସ୍ପଷ୍ଟ ଓ ଆଦର୍ଶବାଦୀ ଥିଲେ ) ଛାତ୍ରମାନେ କୃଷକଙ୍କ ଭିତରେ ପ୍ରଚାର କରିବା ନିମନ୍ତେ ସ୍ଥିରକଲେ ଏବଂ ହଜାର ହଜାର ଛାତ୍ର ଗ୍ରାମକୁ ଗଲେ । କୃଷକମାନେ ଏହି ଛାତ୍ରମାନଙ୍କୁ ଚିହ୍ନି ନ ଥିଲେ । ସେମାନେ ସେମାନଙ୍କୁ ଅବିଶ୍ୱାସ କଲେ ଏବଂ ସମ୍ଭବତଃ ପୁଣି ଅର୍ଦ୍ଧଦାସତ୍ୱ ଫେରାଇ ଆଣିବା ନିମନ୍ତେ ଏହା ଏକ ଯୋଜନା ବୋଲି ବିଚାରିଲେ । ତେଣୁ ନିଜ ଜୀବନକୁ ପାଣିଛଡ଼େଇ ଯେଉଁ ଛାତ୍ରମାନେ ଆସିଥିଲେ ସେମାନଙ୍କ ଭିତରୁ ଅନେକଙ୍କୁ କୃଷକମାନେ ପ୍ରକୃତରେ ଗିରଫ କଲେ ଓ ଜାରର ପୁଲିସଙ୍କ ହାତରେ ସମର୍ପିଦେଲେ । ଲୋକଙ୍କ ସଂସ୍ପର୍ଶରେ ନ ଆସି ହାୱାରେ କାର୍ଯ୍ୟ କରିବାକୁ ଚେଷ୍ଟା କରିବାର ଏହା ଏକ ଅସାଧାରଣ ଦୃଷ୍ଟାନ୍ତ ।

କୃଷକଙ୍କ ଭିତରେ ଏପରି ଅକୃତକାର୍ଯ୍ୟ ହେବାଦ୍ୱାରା ଏହି ଶିକ୍ଷିତ ଛାତ୍ରଙ୍କ ମନରେ ଦାରୁଣ ଧକ୍କା ଦେଲା ଏବଂ ବିରକ୍ତ ଓ ହତାଶ ହୋଇ ସେମାନେ ଯାହା କହନ୍ତି 'ଆତଙ୍କବାଦ' ଗ୍ରହଣ କଲେ; ଅର୍ଥାତ୍ ବୋମା ପକାଇଲେ ଓ ଅନ୍ୟ ଉପାୟରେ ଯେଉଁମାନେ କର୍ତ୍ତୃତ୍ୱରେ ଅଛନ୍ତି ସେମାନଙ୍କୁ ହତ୍ୟା କରିବାର ଚେଷ୍ଟାକଲେ । ରୁଷରେ ଆତଙ୍କବାଦ ଓ ବୋମା ଧର୍ମର ଏହି ହେଲା ଆରମ୍ଭ ଏବଂ ଏହା ସହିତ ବୈପ୍ଳବିକ କାର୍ଯ୍ୟକଳାପ ନୂତନ ଆକାର ଧାରଣକଲା । ଏହି ବୋମା ନିକ୍ଷେପକାରୀ ନିଜକୁ "ବୋମାବାଲା ନରମ ଦଳ" ( Liberals with a bomb) । କହୁଥିଲେ ସେମାନଙ୍କ ଆତଙ୍କବାଦ ଅନୁଷ୍ଠାନର ନାମ ହେଲା "ଉଇଲ ଅଫ ଦ ପିପୁଲ୍" (Will of the people) ବା 'ଲୋକଙ୍କ ସଂକଳ୍ପ' । ଏହି ନାମ ଛଳନାପୂର୍ଣ୍ଣ ଥିଲା; କାରଣ ଏଥିସହିତ ସଂପୃକ୍ତ ଲୋକ ବୋଇଲେ କେତେକ କ୍ଷୁଦ୍ରଦଳ ମାତ୍ର ।

ଏହିରୂପେ ଏହି ଦୃଢ଼ପ୍ରତିଜ୍ଞ ଯୁବକ ଓ ଯୁବତୀଙ୍କ ଦଳ ଓ ଜାର ସରକାର ଭିତରେ ନୂତନ ବିବାଦ ଆରମ୍ଭ ହେଲା । ରୁଷର ସଂଖ୍ୟାଲଘିଷ୍ଠ ଜାତି ଓ ଅନେକ ପରାଧୀନ

ଜାତିମାନଙ୍କ ଭିତରୁ ଲୋକ ଆସି ଏଥିରେ ଯୋଗଦେବା ଦ୍ୱାରା ବୈପ୍ଳବିକ ଶକ୍ତି ସଂଖ୍ୟା ବୃଦ୍ଧି ପାଇଲା । ଏହିସବୁ ଜାତି ଓ ସଂଖ୍ୟାଲଘିଷ୍ଠ ସଂପ୍ରଦାୟ ପ୍ରତି ସରକାର ଖରାପ ବ୍ୟବହାର କରିଥିଲା । ସେମାନଙ୍କୁ ନିଜ ଭାଷାର ବି ବ୍ୟବହାର କରିବାକୁ ଅନୁମତି ଦିଆଯାଉ ନ ଥିଲା ଏବଂ ଅନେକ ଭାବରେ ସେମାନଙ୍କୁ ହଇରାଣ ଓ ଅପମାନିତ କରାଯାଉଥିଲା । ପୋଲଣ୍ଡ ରୁଷଠାରୁ ଶିଳ୍ପଦିଗରେ ଅଧିକ ଉନ୍ନତ ଥିଲା—ଏହା ରୁଷର ଅନ୍ତର୍ଭୁକ୍ତ ହୋଇଥିଲା ଏବଂ ପୋଲଣ୍ଡ ନାମ କାର୍ଯ୍ୟତଃ ଲୋପ ପାଇଗଲା । ପୋଲଣ୍ଡର ଭାଷା ବ୍ୟବହାର ନିଷେଧ କରାଗଲା । ପୋଲଣ୍ଡକୁ ଯଦି ଏପରି ବ୍ୟବହାର କରାଯାଇପାରେ, ତେବେ ଅନ୍ୟ ସଂଖ୍ୟାଲଘିଷ୍ଠ ଓ ଜାତିମାନଙ୍କ ପ୍ରତି ଆହୁରି ଖରାପ ବ୍ୟବହାର କାହିଁକି କରାଯାଇ ନ ଥିବ ! ୧୮୬୦ ବେଳକୁ ପୋଲଣ୍ଡରେ ଏକ ବିଦ୍ରୋହ ହୋଇଥିଲା—ଅତି ନିଷ୍ଠୁରତା ସହ ଏହା ଦବାଇ ଦିଆଗଲା ଏବଂ ପଚାଶ ହଜାର ପୋଲଣ୍ଡବାସୀଙ୍କି ସାଇବେରିଆ ପଠାଇ ଦିଆଗଲା । ଇହୁଦୀମାନଙ୍କୁ ବାରମ୍ବାର ପ୍ରୋଗ୍ରମ୍ ବା ହତ୍ୟା କରାଯାଉଥିବାରୁ ସେମାନଙ୍କ ଭିତରୁ ବହୁସଂଖ୍ୟକ ଅନ୍ୟ ଦେଶକୁ ପଳାଇଗଲେ ।

ଏହି ଇହୁଦୀ ଓ ଅନ୍ୟ ଜାତିମାନଙ୍କ ପ୍ରତି ଜାରର ଅତ୍ୟାଚାର ହେତୁ କ୍ରୋଧ-ପରବଶ ହୋଇ ଏମାନେ ରୁଷ ଆତଙ୍କବାଦୀଙ୍କ ସହ ଯୋଗଦେବା ସ୍ୱାଭାବିକ । ଏହି ଆତଙ୍କବାଦକୁ ନିହିଲିଜମ୍ (Nihilism) କୁହାଯାଉଥିଲା ଏବଂ ଏହା ବୃଦ୍ଧି ପାଇଲା ଓ ରକ୍ତାକ୍ତ ଦମନ ଏଥିପ୍ରତି କରାଯିବା ସ୍ୱାଭାବିକ । ସାଇବେରିଆ ମରୁପ୍ରାନ୍ତରରେ ଲମ୍ବା ଟ୍ରେନରେ-ପୂର୍ଣ୍ଣହୋଇ ଆସିଥିବା ରାଜନୀତିକ ବନ୍ଦୀମାନଙ୍କୁ ମାଡ଼ ଦିଆଗଲା ଏବଂ ଅନେକଙ୍କୁ ଫାଶି ଦିଆଗଲା । ଏହି ଆତଙ୍କର ସମ୍ମୁଖୀନ ହେବାକୁ ଜାର ସରକାର ଏକ ଉପାୟ ଉଦ୍ଭାବନ କଲା ଏବଂ ଅସାଧାରଣ ଭାବରେ ଏହା କାର୍ଯ୍ୟରେ ଲାଗିଲା । ସେମାନେ ଏଜେଣ୍ଟ ପ୍ରୋଭୋକେଟରସ୍ ବା ଗୁପ୍ତବେଶଧାରୀ ସରକାରୀ ଲୋକଙ୍କୁ ଆତଙ୍କବାଦୀ ଓ ବିପ୍ଳବୀଙ୍କ ଭିତରକୁ ପଠାଇଲେ ଏବଂ ଏମାନେ ପ୍ରକୃତରେ ବୋମାକାଣ୍ଡ କରିବା ପାଇଁ ଉତ୍ତେଜିତ କଲେ ଓ ବେଳେ ବେଳେ ନିଜେସେସବୁ କଲେ—ଅନ୍ୟମାନଙ୍କୁ ସେମାନେ ସେଥିରେ ସଂପୃକ୍ତ କରିପାରିବେ । ଆଜେଫ୍ ଏହି 'ଏଜେଣ୍ଟ ପ୍ରୋଭୋକେଟର'ଙ୍କ ଭିତରୁ ଜଣେ ପ୍ରସିଦ୍ଧ ଲୋକ । ସେ ଜଣେ ମୁଖ୍ୟ ବୋମାନିକ୍ଷେପକାରୀ ବିପ୍ଳବୀ ଥିଲେ ଏବଂ ତାହା ସଙ୍ଗେ ସଙ୍ଗେ ରୁଷର ଗୁପ୍ତ ପୁଲିସଙ୍କର ମୁଖିଆ ବି ଥିଲେ । ଗୁଇନ୍ଦା ପୁଲିସରେ ଥିବା ଜାର ଅଫିସର-ମାନେ ଅନ୍ୟମାନଙ୍କୁ ହନ୍ତସନ୍ତରେ ପକାଇବା ନିମନ୍ତେ ପୁଲିସର ଏଜେଣ୍ଟ ହୋଇ ଏପରି ବୋମା ପକାଇବାରେ ବ୍ୟାପୃତ ହେବାର ପ୍ରମାଣସିଦ୍ଧ ଘଟଣା ଅନେକ ରହିଛି ।

ଏହିସବୁ ଘଟିଲାବେଳେ ରୁଷ ରାଜ୍ୟ ବରାବର ପୂର୍ବ ଆଡ଼କୁ ବିସ୍ତାର ହେଉଥାଏ ଏବଂ ମୁଁ ତତେ କହିଛି, ସେସବୁ ପ୍ରଶାନ୍ତ ମହାସାଗର ପର୍ଯ୍ୟନ୍ତ ବ୍ୟାପିଗଲା । ସେମାନେ ମଧ୍ୟ-ଏସିଆର ଆଫଗାନିସ୍ଥାନ ସୀମାନ୍ତରେ ପହଞ୍ଚିଗଲେ ଏବଂ ଦକ୍ଷିଣରେ ସେମାନେ ତୁର୍କି

ସୀମାନ୍ତ ଆଡ଼କୁ ଠେଲି ପଶୁଥାନ୍ତି । ୧୮୭୦ ପରେ ଆଉ ଏକ ପ୍ରଧାନ ଉନ୍ନତି ହେଉଛି ପାଶ୍ଚାତ୍ୟ ଶିଳ୍ପର ଜାଗୃତି । ଏହା ପିଟର୍ସବର୍ଗର ପଡ଼ୋଶୀ ଅଞ୍ଚଳ ଓ ମସ୍କୋପରି ଅଳ୍ପ କେତେକ ଅଞ୍ଚଳରେ ସୀମାବଦ୍ଧ ଥିଲା ଏବଂ ମୋଟାମୋଟି ସାରା ଦେଶଟି ସମ୍ପୂର୍ଣ୍ଣରୂପେ କୃଷି-ପ୍ରଧାନ ହୋଇ ରହିଲା । କିନ୍ତୁ ଯେଉଁ ସବୁ କଳକାରଖାନା ସ୍ଥାପିତ ହେଲା ତାହା ସମ୍ପୂର୍ଣ୍ଣ ଆଧୁନିକ ଢଙ୍ଗର ଏବଂ ସାଧାରଣତଃ ଇଂରେଜ ପରିଚାଳନା ଅଧୀନରେ ଥିଲା । ଏଥିରେ ଦୁଇଟି ଫଳ ହେଲା । ଏହି ଅଳ୍ପ କେତେକ ଶିଳ୍ପୋନ୍ନତ ଅଞ୍ଚଳରେ ରୁଷ ପୁଞ୍ଜିବାଦ ଦ୍ରୁତ ବେଗରେ ବୃଦ୍ଧି ପାଇଲା ଏବଂ ସେହିପରି ସମାନ ବେଗରେ ଶ୍ରମିକ ଶ୍ରେଣୀ ବି ଗଢ଼ି ଉଠିଲା ବ୍ରିଟିଶ କାରଖାନା ପ୍ରଥା ପ୍ରଚଳନର ଆରମ୍ଭ ବେଳପରି ରୁଷ ଶ୍ରମିକମାନଙ୍କୁ ଭୀଷଣ ଭାବରେ ଶୋଷଣ କରାଗଲା ଏବଂ ପ୍ରାୟ ଦିନ ରାତି ସେମାନଙ୍କୁ କାମରେ ଲଗାଇଦିଆହେଲା । କିନ୍ତୁ ମଧ୍ୟରେ ପାର୍ଥକ୍ୟ ନୂତନ ଭାବଧାରା ଏବେ ଦେଖା ଦେଇଥିଲା । ସାମ୍ୟବାଦ ଓ କମ୍ୟୁନିଜମ୍‌ର ଭାବ ପ୍ରଚାର ହୋଇଥିଲା—ରୁଷ ଶ୍ରମିକର ମନ ଟଟକା ଥିଲା ଏବଂ ଏହିସବୁ ଭାବଧାରା ଗ୍ରହଣ କରିବା ଅବସ୍ଥାରେ ଥିଲା । ବ୍ରିଟିଶ ଶ୍ରମିକ ପଶ୍ଚାତ୍ତରେ ଦୀର୍ଘକାଳର ଦେଶାଚାର ରହିଛି – ସେମାନେ ରକ୍ଷଣଶୀଳ ହେଲେ ଓ ପୁରୁଣା ଭାବଧାରାରେ ବଦ୍ଧ ହୋଇ ରହିଲେ ।

ଏହି ନୂତନ ଭାବଧାରା ରୂପ ଧାରଣ କଲା ଏବଂ ଗୋଟିଏ "ସୋସିଏଲ ଡେମୋ-କ୍ରାଟିକ୍ ପାର୍ଟି" ଗଢ଼ାହେଲା । ମାର୍କସ୍ ଦର୍ଶନ ଉପରେ ଏହା ପ୍ରତିଷ୍ଠିତ । ଏହା ମାର୍କସବାଦୀମାନେ ଆତଙ୍କବାଦବିରୋଧୀ ବୋଲି ନିଜକୁ ଘୋଷଣା କଲେ । କାର୍ଲ ମାର୍କସଙ୍କ ତଥ୍ୟ ଅନୁସାରେ ଶ୍ରମିକ ଶ୍ରେଣୀର ନିୟମାତ୍ମକ ଶକ୍ତି ଜାଗ୍ରତ କରିବାକୁ ହେବ ଏବଂ କେବଳ ଏହିପରି ଗଣଆନ୍ଦୋଳନ ଦ୍ୱାରାହିଁ ସେମାନେ ନିଜର ଲକ୍ଷ୍ୟ ସାଧନ କରିପାରିବେ । ଆତଙ୍କବାଦରେ ବ୍ୟକ୍ତିବିଶେଷକୁ ହତ୍ୟା କରିବାଦ୍ୱାରା ଶ୍ରମିକ ଶ୍ରେଣୀ ଏପରି ବିଦ୍ରୋହ ପାଇଁ ଉଠିବେ ନାହିଁ; କାରଣ ଲକ୍ଷ୍ୟ ହେଉଛି ଜାରଶାସନର ମୂଳୋତ୍ପାଟନ—ଜାର ବା ତାର ମନ୍ତ୍ରୀମାନଙ୍କୁ ହତ୍ୟା କରିବା ନୁହେଁ ।

୧୮୮୦ ବେଳକୁ ଜଣେ ଯୁବକ ଯେ କି ପରେ ଲେନିନ ନାମରେ ସମଗ୍ର ଜଗତରେ ଖ୍ୟାତ ହେଲେ, ସେ ଜଣେ ସ୍କୁଲ ଛାତ୍ର ଥାଇ ମଧ୍ୟ ବୈପ୍ଳବିକ କାର୍ଯ୍ୟରେ ଯୋଗ-ଦାନ କରିଥିଲେ । ୧୮୮୭ରେ ତାଙ୍କର ବୟସ ୧୭ ବର୍ଷ ହୋଇଥିଲାବେଳେ ଏକ ଭୀଷଣ ଆଘାତ ତାଙ୍କୁ ସହ୍ୟ କରିବାକୁ ପଡ଼ିଲା । ତାଙ୍କର ବଡ଼ଭାଇ ଆଲେକଜାଣ୍ଡରଙ୍କ ପ୍ରତି ସେ ଅତ୍ୟନ୍ତ ଅନୁରକ୍ତ ଥିଲେ—ଜାରଙ୍କ ଜୀବନ ନେବା ନିମନ୍ତେ ଏକ ଆତଙ୍କବାଦୀ ପ୍ରଚେଷ୍ଟାରେ ଭାଗ ନେଇଥିବା ହେତୁ ଫାଶିଖୁଣ୍ଟରେ ତାଙ୍କୁ ଝୁଲାଇ ଦିଆଯାଇଥିଲା । ଏହି ଆଘାତ ସତ୍ତ୍ୱେ ଲେନିନ ସେତେବେଳେ କହିଥିଲେ "ଯେ ଆତଙ୍କବାଦ ଉପାୟଦ୍ୱାରା ସ୍ୱାଧୀନତା ମିଳିପାରିବ ନାହିଁ; ଜନତାର ବିଦ୍ରୋହ ହିଁ ଏକମାତ୍ର ପନ୍ଥା ।" ଦୃଢ଼ପ୍ରତିଜ୍ଞ ହୋଇ ଓ ମନ ଲଗାଇ ଏହି

ଯୁବକ ନିଜର ପଢ଼ାରେ ଲାଗିଲେ ଏବଂ ଶେଷ ସ୍କୁଲ ପରୀକ୍ଷା ଦେଇ ସେ ଗୌରବର ସହିତ ପାଶ୍ କଲେ । ୦ ବର୍ଷ ପରେ ହୋଇଥିବା ବିପ୍ଳବର ନେତା ଓ ନିର୍ମାତା ଏହି ଉପାଦାନରେ ଗଢ଼ା ।

ମାର୍କସ କଳ୍ପନା କରୁଥିଲେ ଯେ ସେ ଯେଉଁ ଶ୍ରମିକଶ୍ରେଣୀ ବିପ୍ଳବ ସମ୍ବନ୍ଧରେ ଭବିଷ୍ୟତବାଣୀ କରିଛନ୍ତି, ତାହା ଜର୍ମାନୀ ପରି ଏକ ଅତି ଶିଳ୍ପୋନ୍ନତ ଦେଶ ଯେଉଁଠି ବହୁତ ଓ ସଂଗଠିତ ଶ୍ରମିକ ଶ୍ରେଣୀ ଥିବେ, ସେହିଠାରେ ହିଁ ଆରମ୍ଭ ହେବ । ସେ ରୁଷର ଅନୁନ୍ନତ-ଚଷିଆ ଓ ମଧ୍ୟକାଳୀନ ଅବସ୍ଥା ଯୋଗୁଁ ଏଠାରେ ଏପରି ହେବାର ସମ୍ଭାବନା ନାହିଁ ବୋଲି ଭାବୁଥିଲେ । କିନ୍ତୁ ରୁଷରେ ଯୁବକଙ୍କ ଭିତରେ ଅନେକ ବିଶ୍ୱସ୍ତ ଅନୁଚର ସେ ପାଇଲେ । ସେମାନଙ୍କର ଦୁର୍ଦ୍ଦଶା ଅନ୍ତ କରିବା ନିମନ୍ତେ କଣ କରିବା ଉଚିତ ଏହା ବାହାର କରିବା ପାଇଁ ଅତି ପ୍ରଗାଢ଼ ପ୍ରେମର ସହ ସେମାନେ ଏହା ଅଧ୍ୟୟନ କରିବାକୁ ଲାଗିଲେ । ଜାରଶାସିତ ରୁଷରେ କୌଣସି ପ୍ରକାଶ୍ୟ କାର୍ଯ୍ୟ କିମ୍ବା ନିୟମତାନ୍ତ୍ରିକ ପନ୍ଥା ତାଙ୍କ ପାଇଁ ଉନ୍ମୁକ୍ତ ନ ଥିବାରୁ ସେମାନଙ୍କୁ ଏହା ଅଧ୍ୟୟନ କରିବାକୁ ପଡ଼ିଲା ଓ ନିଜ ଭିତରେ ଆଲୋଚନା କଲେ । ଏମାନଙ୍କୁ ବହୁ ସଂଖ୍ୟାରେ କାରାଗାର, ସାଇବେରିଆକୁ କିମ୍ବା ବିଦେଶରେ ନିର୍ବାସନକୁ ପଠାଇଦିଆଗଲା । ସେମାନେ ଯେଉଁଠିକି ଗଲେ ସେଠି ଏହି ମାର୍କସ୍‌ବାଦ ଅଧ୍ୟୟନ କଲେ ଓ ବିଦ୍ରୋହ ଦିବସ ପାଇଁ ନିଜକୁ ପ୍ରସ୍ତୁତ କଲେ ।

## ୧୪୪ : ୧୯୦୫ ମସିହାର ରୁଷ ବିପ୍ଳବ ଓ ତାର ବିଫଳତା

ମାର୍ଚ୍ଚ ୧୭, ୧୯୩୩

ରୁଷର ମାର୍କସ୍‌ବାଦୀ ସୋସିଏଲ ଡେମୋକ୍ରାଟିକ ପାର୍ଟିକୁ ୧୯୦୩ରେ ଏକ ସଙ୍କଟର ସମ୍ମୁଖୀନ ହେବାକୁ ପଡ଼ିଲା । ଏତେବେଳେ ସେମାନଙ୍କୁ ଏକ ସଂଖ୍ୟା ବିଷୟର କରି ତାର ଜବାବ ଦେବାକୁ ପଡ଼ିଥିଲା—କେତେକ ନୀତି ଓ ନିର୍ଦ୍ଦିଷ୍ଟ ଧାରଣା ଉପରେ ପ୍ରତିଷ୍ଠିତ ପ୍ରତ୍ୟେକ ଦଳକୁ କେତେବେଳେ ହେଲେ ଏପରି ପ୍ରଶ୍ନର ସମ୍ମୁଖୀନ ହେବାକୁ ପଡ଼େ ଓ ଜବାବ ଦେବା ଦରକାର ହୁଏ । ବାସ୍ତବିକ ଏପରି ନୀତି ଓ ବିଶ୍ୱାସ ପୋଷଣ କରୁଥିବା ସକଳ ନରନାରୀଙ୍କୁ ତାଙ୍କ ଜୀବନରେ ଅନେକଥର ଏପରି ସଙ୍କଟର ସମ୍ମୁଖୀନ ହେବାକୁ ପଡ଼େ । ପ୍ରଶ୍ନ ଥିଲା, ସେମାନେ ତାଙ୍କ ନୀତିକୁ ସମ୍ପୂର୍ଣ୍ଣରୂପେ ଧରିରଖିବେ ଏବଂ ଶ୍ରମିକ ଶ୍ରେଣୀର ବିପ୍ଳବ ପାଇଁ ପ୍ରସ୍ତୁତ ହେବେ—ନା—ପ୍ରଚଳିତ ଅବସ୍ଥା ସହ ସେମାନେ ଟିକିଏ ରଫା

କରି ଶେଷ ବିପ୍ଳବଲାଗି କ୍ଷେତ୍ର ପ୍ରସ୍ତୁତ କରିବେ ? ସମସ୍ତ ପଶ୍ଚିମ ଇଉରୋପୀୟ ଦେଶମାନଙ୍କରେ ଏ ପ୍ରଶ୍ନ ଉଠିଥିଲା ଏବଂ ପ୍ରତ୍ୟେକ ସ୍ଥାନରେ ଅଳ୍ପେ ଅଧିକେ ସୋସିଏଲ ଡେମୋକ୍ରାଟିକ କମ୍ପା ସେହିପରି ଦଳସବୁ ଦୁର୍ବଳ ହୋଇଛନ୍ତି ଓ ଦଳଭିତରେ ବିବାଦ ଜାତ ହୋଇଛି । ଜର୍ମାନୀରେ ମାର୍କସବାଦୀମାନେ ସାଦ୍ଦଗର ସହିତ ପୂର୍ବ ବିପ୍ଳବୀ ମତ ଘୋଷଣା କଲେ; କିନ୍ତୁ କାର୍ଯ୍ୟରେ ସେମାନେ ଦାବୀ କମାଇଦେଲେ ଓ ମାନ୍ଦା ମନୋଭାବ ଗ୍ରହଣ କଲେ । ଫ୍ରାନସରେ ଅନେକ ମୁଖ୍ୟ ସାମ୍ୟବାଦୀ ତାଙ୍କ ଦଳ ଛାଡ଼ି ଚାଲିଗଲେ ଓ ମନ୍ତ୍ରିମଣ୍ଡଳରେ ପଦଗ୍ରହଣ କଲେ । ଇଟାଲୀ, ବେଲଜିୟମ ଓ ଅନ୍ୟତ୍ର ମଧ୍ୟ ସେହିପରି ହେଲା । ବ୍ରିଟେନରେ ମାର୍କସବାଦ ଦୁର୍ବଳ ଥିଲା ଏବଂ ଏ ପ୍ରଶ୍ନ ଉଠି ନ ଥିଲା; କିନ୍ତୁ ସେଠି ମଧ୍ୟ ଜଣେ ଶ୍ରମିକ ଦଳର ସଭ୍ୟ ମନ୍ତ୍ରୀ ହେଲେ ।

ରୁଷର ଅବସ୍ଥା ସ୍ୱତନ୍ତ୍ର ଥିଲା — ସେଠି ପାର୍ଲିଆମେଣ୍ଟରୀ କାମ ପାଇଁ ସ୍ଥାନ ନ ଥିଲା । କୌଣସି ପାର୍ଲିମେଣ୍ଟ ସେଠି ନ ଥିଲା । ଏହା ହୋଇ ସୁଦ୍ଧା ଜାରଶାସନ ବିରୁଦ୍ଧରେ ଯାହା କହନ୍ତି "ବେଆଇନ" ପ୍ରଣାଳୀରେ ସଂଗ୍ରାମ କରିବା ମଧ୍ୟ ଛାଡ଼ିଦେବାର ସମ୍ଭାବନା ଥିଲା ଏବଂ କେତେକ ଦିନ ସକାଶେ ନୀରବରେ ତଥ୍ୟ ପ୍ରଚାରରେ ଲାଗିବାର ସମ୍ଭାବନା ଥିଲା । କିନ୍ତୁ ଲେନିନଙ୍କର ଏ ସମ୍ବନ୍ଧରେ ପରିଷ୍କାର ଓ ନିର୍ଦ୍ଦିଷ୍ଟ ମତ ଥିଲା । ସେ କୌଣସି ଦୁର୍ବଳତା, କୌଣସି ମୀମାଂସା ସହ୍ୟ କରି ନ ଥିଲେ; କାରଣ ତାଙ୍କର ଭୟ ଥିଲା ଯେ ଅନ୍ୟଥା ତାଙ୍କ ଦଳରେ ସୁବିଧାବାଦୀମାନେ ପଶିଯିବେ । ପଶ୍ଚିମ ଇଉରୋପର ସୋସାଲିଷ୍ଟ ପାର୍ଟିମାନେ ଯେଉଁ ପନ୍ଥା ଗ୍ରହଣ କରିଥିଲେ ସେ ତାହା ଦେଖିଥିଲେ ଏବଂ ସେଥିରେ ସେ ମୁଗ୍ଧ ହୋଇ ନ ଥିଲେ । ପରେ ଆଉ ଏକ ଘଟଣା ସମ୍ପର୍କରେ ସେ ଲେଖିଥିଲେ "ପାଶ୍ଚାତ୍ୟ ସୋସାଲିଷ୍ଟମାନେ ଯେପରି ପାର୍ଲିମେଣ୍ଟାରୀ କୌଶଳ ପ୍ରୟୋଗ କରୁଛନ୍ତି ତାହା ଅତୁଳନୀୟଭାବରେ ନୀତିଭ୍ରଷ୍ଟକାରୀ ଏବଂ ଧୀରେ ଧୀରେ ପ୍ରତ୍ୟେକ ସୋସଲିଷ୍ଟପାର୍ଟିକୁ ଏକ ଶ୍ରେଷ୍ଠ ଟାମ୍ମାନୀ ହଲରେ ପରିଣତ କରିଦିଏ ।" (ଟାମ୍ମାନୀ ହଲ ହେଉଛି ନିଉୟର୍କ । ଏହା ରାଜନୀତିକ ବ୍ୟଭିଚାରର ପ୍ରତୀକ ହୋଇଛି) । ଏଥିରେ ନିଜର ଚାକିରି ଖୋଜିବା ଓ ନିଜ ପଦବୀ ବଢ଼ାଇବା ଲୋକ ରହିଛନ୍ତି । କେତେ ଲୋକ ତାଙ୍କ ସହିତ ରହିଲେ ସେଥିପାଇଁ ଲେନିନ୍ ଖାତିରି କରି ନ ଥିଲେ—ଏପରିକି ଏକ ସମୟରେ ସେ ଏକାକୀ କାମ କରିବେ ବୋଲି ଧମକ ଦେଇଥିଲେ; କିନ୍ତୁ ସେ ଜୋର ଦେଲେ ଯେ ଯେଉଁମାନେ ଶେଷପର୍ଯ୍ୟନ୍ତ ଯାଇପାରିବେ (Whole hoggers) ଏହି ଉଦ୍ଦେଶ୍ୟରେ ତାଙ୍କର ସମସ୍ତ ତ୍ୟାଗ କରିବାକୁ ପ୍ରସ୍ତୁତ ଥିବେ ଏବଂ ଏପରିକି ଜନତାର ସାହାଯ୍ୟ ନ ପାଇ କାମ କରିବେ—କେବଳ ସେହିମାନଙ୍କୁ ହିଁ ଏଥିରେ ଗ୍ରହଣ କରାଯିବ । ସେ ବିପ୍ଳବରେ ଦଳେ ବିଶେଷଜ୍ଞ ତିଆରି କରିବାକୁ ଚାହୁଁଥିଲେ—ଯେଉଁମାନେ ଆନ୍ଦୋଳନକୁ ଦକ୍ଷତାର ସହିତ ବୃଦ୍ଧି କରାଇ ପାରିବେ । କେବଳ ସହାନୁଭୂତି ରଖୁଥିବା ଓ ଭଲବେଳେ ବନ୍ଧୁ ସାଜି ଆସିବା ଲୋକଙ୍କର କିଛି ପ୍ରୟୋଜନ ନାହିଁ ।

ଏହା ଏକ କଠୋର ପନ୍ଥା ଏବଂ ଅନେକ ସ୍ଥଳରେ ଏହା ଗ୍ରହଣ କରିବା ବୁଦ୍ଧିମାନର କାର୍ଯ୍ୟ ହେବ ନାହିଁ । କିନ୍ତୁ ଯାହାହେଉ ମୋଟରେ ଲେନିନ୍‌ଙ୍କର ଜୟ ଥିଲା ଓ ସୋସିଏଲ ଡେମୋକ୍ରାଟିକ୍ ପାର୍ଟି ଦୁଇଭାଗରେ ବିଭକ୍ତ ହୋଇଗଲା—ଦୁଇଟି ନାମ ଯାହା ପ୍ରଚଳିତ ହେଲା ଓ ଏବେ ଖ୍ୟାତ ହୋଇଗଲାଣି—ବଲସେଭିକ ଓ ମେନ୍‌ସେଭିକ । କେତେକ ଲୋକଙ୍କ ପକ୍ଷରେ ବଲସେଭିକ ଏବେ ଗୋଟାଏ ଭୀଷଣ ଶବ୍ଦ ହୋଇ ପଡ଼ିଛି; କିନ୍ତୁ ଏହାର ଅର୍ଥ ହେଉଛି ଅଧିକସଂଖ୍ୟକ । ମେନ୍‌ସେଭିକ ଅର୍ଥ ଅଳ୍ପସଂଖ୍ୟକ । ୧୯୦୩ରେ ଏହି ବିଭାଗ ପରେ ପାର୍ଟି ଭିତରେ ଲେନିନ୍‌ଙ୍କ ଦଳ ବହୁସଂଖ୍ୟାରେ ଥିବାରୁ ତାଙ୍କୁ ବଲସେଭିକ କୁହାଗଲା—ଅର୍ଥାତ୍ ସଂଖ୍ୟାଗରିଷ୍ଠ ଦଳ । ମଜାର କଥା ଯେ ଟ୍ରଟ୍‌ସ୍କି ସେତେବେଳେ ୨୪ ବର୍ଷର ଜଣେ ଯୁବକ ଥିଲେ ଓ ମେନସେଭିକଙ୍କ ପକ୍ଷରେ ଥିଲେ—ସେ ପରେ ୧୯୧୭ ବିପ୍ଳବରେ ଲେନିନଙ୍କର ପ୍ରଧାନ ସହକର୍ମୀ ହୋଇଥିଲେ ।

ଏହି ସବୁ ଆଲୋଚନା ଓ ବିତର୍କ ରୁଷର ବହୁଦୂରରେ ଲଣ୍ଡନରେ ହେଉଥିଲା । ରୁଷ ପାର୍ଟି ସଭା ଲଣ୍ଡନରେ କରିବାକୁ ପଡ଼ୁଥିଲା; କାରଣ ଜାରଶାସିତ ରୁଷରେ ଏଥିଲାଗି ସ୍ଥାନ ନ ଥିଲା ଏବଂ ଏଥିରେ ଅଧିକାଂଶ ସଭ୍ୟ ନିର୍ବାସନରେ ଥିଲେ କିମ୍ବା ସାଇବେରିଆରେ ବନ୍ଦିଥିବା ବେଳେ ପଳାଇ ଯାଇଥିଲେ ।

ଇତ୍ୟବସରରେ ରୁଷରେ ମଧ୍ୟ ଗୋଳମାଳ ଗଜୁରୁଥିଲା । ରାଜନୀତିକ ଧର୍ମଘଟ ହିଁ ଏହାର ଚିହ୍ନ । ଶ୍ରମିକର ରାଜନୀତିକ ଧର୍ମଘଟ ଅର୍ଥ ଆର୍ଥିକ ଉନ୍ନତି ଯଥା ଅଧିକ ମଜୁରିଦାବୀ ନୁହେଁ; କିନ୍ତୁ ସରକାରର କୌଣସି ରାଜନୀତିକ କାର୍ଯ୍ୟ ବିରୁଦ୍ଧରେ ପ୍ରତିବାଦ କରି କରାଯାଏ । ଏହାର ଅର୍ଥ ଶ୍ରମିକଙ୍କ ଭିତରେ କିଛି ରାଜନୀତିକ ଚେତନା । ସେହିପରି ଯଦି ଭାରତ କାରଖାନାର ଶ୍ରମିକସବୁ ଗାନ୍ଧିଜୀ ଗିରଫ ହେବାରୁ କିମ୍ବା ଅନ୍ୟ କିଛି ଅସାଧାରଣ ପ୍ରକାର ଦମନ ହେବାରୁ ଧର୍ମଘଟ କରନ୍ତି, ତେବେ ତାହା ହେବ ରାଜନୀତିକ ଧର୍ମଘଟ । ଅଦ୍ଭୁତ କଥା, ଶକ୍ତିଶାଳୀ ଶ୍ରମିକ ସଂଘ ଓ ଶ୍ରମିକ ସଂଗଠନ ଥାଇ ମଧ୍ୟ ପଶ୍ଚିମ ଇଉରୋପରେ ଏପରି ରାଜନୀତିକ ଧର୍ମଘଟ ବିରଳ ଦେଖିବାକୁ ମିଳେ; ଅଥବା ହୁଏତ ନିଜର ସ୍ଥାପିତ ସ୍ୱାର୍ଥ (Vested interest) ଯୋଗୁଁ ଶ୍ରମିକ ନେତାମାନେ ଦାବୀ କୋହଳ କରିଦେବାରୁ ଏହା ବିରଳ ହୋଇଗଲା । ରୁଷରେ ଜାରଶାସନର ବରାବର ଅତ୍ୟାଚାର ହିଁ ସର୍ବଦା ରାଜନୀତିକ ଧର୍ମଘଟକୁ ସମ୍ମୁଖରେ ରଖିଲା । ୧୯୦୩ ବେଳକୁ ଦକ୍ଷିଣ ରୁଷରେ ଆପଣାଛାଏଁ ଅନେକ ରାଜନୀତିକ ଧର୍ମଘଟ ହୋଇଥିଲା । ଏହି ଆନ୍ଦୋଳନରେ ଅତି ବିସ୍ତୃତ ଆକାରରେ ଜନସାଧାରଣ ଯୋଗ ଦେଇଥିଲେ; କିନ୍ତୁ ନେତୃତ୍ୱ ଅଭାବରୁ ଏହା ମଉଳିପଡ଼ିଲା ।

ତପର ବର୍ଷ ସୁଦୂର ପ୍ରାଚ୍ୟରେ ଗୋଳମାଳ ଦେଖାଦେଲା । ଉତ୍ତର ଏସିଆ ମରୁପ୍ରାନ୍ତର ପାର ହୋଇ ସିଧା ପ୍ରଶାନ୍ତ ମହାସାଗର ପର୍ଯ୍ୟନ୍ତ ଦୀର୍ଘ ସାଇବେରିଆନ୍ ରେଲବାଇ ନିର୍ମାଣ ସମ୍ବନ୍ଧରେ ଆଉ ଏକ ଚିଠିରେ ମୁଁ ତତେ କହିଛି; ୧୮୯୪ ପରଠାରୁ ଜାପାନ ସହିତ

ସଂଘର୍ଷ ଏବଂ ୧୯୦୪।୫ରେ ଋଷ-ଜାପାନ ଯୁଦ୍ଧ ସମ୍ବନ୍ଧରେ କହୁଛୁ । ମୁଁ ମଧ୍ୟ ଉକ୍ତ "ରକ୍ତ ରବିବାର"—ଜାନୁୟାରି ୨୨, ୧୯୦୫ କଥା କହୁଛୁ । ସେହିଦିନ ଜାରର ଫୌଜ ଏକ ଶାନ୍ତିପୂର୍ଣ୍ଣ ଶୋଭାଯାତ୍ରାକୁ ଗୁଳିକରି ମାରିଦେଲେ—ସେମାନେ ଜଣେ ପୁରୋହିତର ନେତୃତ୍ୱରେ "ଛୋଟ ପିତା" (Little Father) ଠାରୁ ରୁଟି ମାଗିବାକୁ ଯାଉଥିଲେ । ସମସ୍ତ ଦେଶରେ ଗୋଟାଏ ଆତଙ୍କର ଶିହରଣ ଖେଳିଗଲା ଏବଂ ଅନେକ ରାଜନୀତିକ ଧର୍ମଘଟ ଆରମ୍ଭ ହୋଇଗଲା । ଶେଷରେ ସମଗ୍ର ଋଷରେ ଗୋଟାଏ ସାଧାରଣ ଧର୍ମଘଟ ହେଲା । ନୂତନ ଧରଣର ମାର୍କସ୍‌ବାଦୀ ବିପ୍ଳବ ହୋଇଥିଲା ।

ଯେଉଁ ଶ୍ରମିକମାନେ ଧର୍ମଘଟ କରିଥିଲେ ବିଶେଷତଃ ପିଟର୍ସବର୍ଗ ଓ ମସ୍କୋ ପ୍ରଭୃତି ବଡ଼ କେନ୍ଦ୍ରମାନଙ୍କରେ ସେମାନେ ଏକ ନୂତନ ଅନୁଷ୍ଠାନ—"ସୋଭିଏଟ୍"—ଆରମ୍ଭ କଲେ । ପ୍ରତ୍ୟେକ କେନ୍ଦ୍ରରେ ଏହା ହେଲା । ପ୍ରଥମେ ସାଧାରଣ ଧର୍ମଘଟ ଚଳାଇବା ପାଇଁ ଏହା ଏକ କମିଟି ଥିଲା । ପିଟର୍ସବର୍ଗ ସୋଭିଏଟ୍‌ର ନେତା ହେଲେ—ଟ୍ରଟ୍‌ସ୍କି । ଜାର ସରକାର ସମ୍ପୂର୍ଣ୍ଣ ଅବାକ୍ ହୋଇଗଲେ ଏବଂ ଏକ ବ୍ୟବସ୍ଥା ସଭା ଓ ଗଣତନ୍ତ୍ରମୂଳକ ସ୍ୱୋଟାଧିକାର ଦେବ ବୋଲି ପ୍ରତିଶ୍ରୁତି ଦେଇ ଏହା କେତେକ ପରିମାଣରେ ଆତ୍ମସମର୍ପଣ କଲା । ଏକଛତ୍ର ଶାସନର ବିରାଟ ଦୁର୍ଗ ଭାଙ୍ଗି ପଡ଼ିବା ପରି ବୋଧହେଲା । ଆଗରୁ କୃଷକ ବିଦ୍ରୋହ ଯାହା କରିବାରେ ବିଫଳ ହୋଇଥିଲା, ଆତଙ୍କବାଦୀମାନେ ତାଙ୍କର ବୋମା ସହ ଯାହା କରିବାରେ କୃତକାର୍ଯ୍ୟ ହୋଇ ନ ଥିଲେ ଏବଂ ଉଦାରନୈତିକ ମାନ୍ଦା ଶାସନତନ୍ତ୍ର-ପନ୍ଥୀମାନେ ତାଙ୍କର ସାବଧାନ ସହକାରେ ନିବେଦନ ଫଳରେ ଯାହା କରିପାରି ନ ଥିଲେ, ଶ୍ରମିକମାନେ ତାଙ୍କର ସାଧାରଣ ଧର୍ମଘଟରେ ତାହା କରିପାରିଲେ । ଇତିହାସରେ ଏହି ପ୍ରଥମ-ଥର ଜାର ସାଧାରଣଲୋକଙ୍କ ଆଗରେ ମୁଣ୍ଡ ନୁଆଁଇଲା । ପରେ ଏହା ଏକ ଫମ୍ପା ବିଜୟରେ ପରିଣତ ହେଲା । କିନ୍ତୁ ତଥାପି ଏହାର ସ୍ମୃତି ଶ୍ରମିକମାନଙ୍କ ପକ୍ଷରେ ଏକ ଉଜ୍ଜ୍ୱଳ ଆଲୋକ ହୋଇ ରହିଲା ।

ଜାର ଏକ ଶାସନତାନ୍ତ୍ରିକ ବ୍ୟବସ୍ଥାସଭା ଦେବାକୁ ପ୍ରତିଶ୍ରୁତି ଦେଇଥିଲା । ଏହାକୁ ଡୁମା କହନ୍ତି—ଏହାର ଅର୍ଥ ଏହା ଏକ ଚିନ୍ତା କରିବାର ସ୍ଥାନ ; ଏବଂ ପାର୍ଲିଆମେଣ୍ଟ ( ଫରାସୀ ପାର୍ଲର ଶବ୍ଦରୁ ହୋଇଛୁ ) ପରି ଏକ ବାକ୍‌ଯୁଦ୍ଧର ଦୋକାନ ନୁହେଁ । ଏହି ପ୍ରତିଶ୍ରୁତି ଫଳରେ ମାନ୍ଦା ଉଦାରନୈତିକମାନଙ୍କ ବ୍ୟଗ୍ରତା ଥଣ୍ଡା ପଡ଼ିଗଲା—ସେମାନେ ସନ୍ତୁଷ୍ଟ ହୋଇଗଲେ । ସେମାନେ ସବଦା ସହଜରେ ସନ୍ତୁଷ୍ଟ ହୋଇଯାଆନ୍ତି । ବିପ୍ଳବରେ ଭୟଭୀତ ହୋଇ ଜମିଦାରମାନେ କେତେକ ସଂସ୍କାର କଲେ—ଏଥିରେ ଧନୀ କୃଷକମାନେ ଲାଭବାନ ହେଲେ । ଜାର ସରକାର ତାପରେ ପ୍ରକୃତ ବିପ୍ଳବୀଙ୍କ ସମ୍ମୁଖୀନ ହେଲା ଏବଂ ସେମାନଙ୍କ ଦୁର୍ବଳତା ବୁଝିପାରି ସେହି ଅନୁସାରେ ଖେଳ ଖେଳିବାକୁ ଲାଗିଲା । ଏକପକ୍ଷରେ ଅନ୍ତଃକ୍ଳିଷ୍ଟ ଶ୍ରମିକ—ସେମାନେ ରାଜନୀତିକ ଶାସନ ଅପେକ୍ଷା ନିଜର ରୁଟି ଓ ଅଧିକ ମଜୁରିରେ

ଖୁବ୍ ଆଗ୍ରହୀ ଥିଲେ ଏବଂ ଦରିଦ୍ର କୃଷକମାନେ ବିପକ୍ଷଙ୍କ ଚକ୍କାର ଉଠାଇଲେ—"ଆମକୁ ଜମି ଦିଅ"; ଅନ୍ୟ ପକ୍ଷରେ ବିପ୍ଳବୀମାନେ ମୁଖ୍ୟତଃ ରାଜନୀତିକ ସମସ୍ୟା ପ୍ରତି ଦୃଷ୍ଟି ଦେଉଥିଲେ ଏବଂ ପଶ୍ଚିମ ଇଉରୋପ ଆଦର୍ଶରେ ଏକ ପାର୍ଲିଆମେଣ୍ଟ ପାଇବାର ଆଶା କରୁଥିଲେ ଜନସାଧାରଣଙ୍କର ପ୍ରକୃତ ଦାବୀ ବା ମନୋବୃତ୍ତି ପ୍ରତି ଚିନ୍ତା କରୁ ନ ଥିଲେ। ଅନେକ ଉନ୍ନତ ଶ୍ରେଣୀ କର୍ମପଟୁ ଶ୍ରମିକ ଯେଉଁମାନଙ୍କ ଭିତରେ ଶ୍ରମିକ ସଂଘ ସଂଗଠିତ ହୋଇଥିଲା ସେମାନେ ବିପ୍ଳବରେ ଯୋଗଦେଲେ; କାରଣ ସେମାନେ ରାଜନୀତିକ ଭାଗଟା ବୁଝିପାରିଲେ। କିନ୍ତୁ ସାଧାରଣ ଭାବରେ ସହର ଓ ଗ୍ରାମମାନଙ୍କରେ ଜନସାଧାରଣ ଉଦାସୀନ ରହିଥିଲେ। ତେଣୁ ଜାର ସରକାର ଓ ପୋଲିସ ତାଙ୍କ ବହୁକାଳର ବ୍ୟବହୃତ ସ୍ୱେଚ୍ଛାଚାରିତା ଚଳାଇବାକୁ ଚେଷ୍ଟାକଲେ; ସେମାନେ ଖଣ୍ଡ ଖଣ୍ଡ କରିଦେଲେ ଏବଂ କ୍ଷୁଧିତ ଜନସାଧାରଣଙ୍କୁ କେତେକ ବୈପ୍ଳବିକ ଦଳଙ୍କ ବିରୁଦ୍ଧରେ ଉତ୍ତେଜିତ କରାଇଦେଲେ। ରୁଷୀୟମାନେ ଅଗରା ଇହୁଦୀଙ୍କୁ ହତ୍ୟାକଲେ। ତାତାରମାନେ ଆର୍ମେନିଆନମାନଙ୍କୁ ବଧ କଲେ ଏବଂ ଏପରିକି ବିପ୍ଳବୀ ଗ୍ରୁପ ଓ ଦରିଦ୍ର ଶ୍ରମିକ ଭିତରେ ବି ସଂଘର୍ଷ ହେଲା। ଏହିରୂପେ ବିଭିନ୍ନ ଅଞ୍ଚଳରେ ବିପ୍ଳବର ମେରୁ-ଦଣ୍ଡ ଭାଙ୍ଗି ଦେଇସାରି ସରକାର ଦୁଇ ଝଞ୍ଜାକେନ୍ଦ୍ର ପିଟର୍ସବର୍ଗ ଓ ମସ୍କୋ ଉପରେ ଆକ୍ରମଣ କଲା। ପିଟର୍ସବର୍ଗ ସୋଭିଏଟ୍‌କୁ ସହଜରେ ଦମନ କରାଗଲା। ମସ୍କୋରେ ମିଲିଟାରୀ ବା ଫୌଜ ବିପ୍ଳବୀଙ୍କୁ ସାହାଯ୍ୟ କଲେ ଏବଂ ସୋଭିଏଟ୍‌କୁ ନିଷ୍ପତ୍ତିମୂଳକ ଭାବରେ ଦମନ କରିବା ନିମନ୍ତେ ପାଞ୍ଚଦିନକାଳ ଯୁଦ୍ଧ କରିବାକୁ ପଡ଼ିଥିଲା। ତା'ପରେ ଚାଲିଲା ପ୍ରତିଶୋଧ। କୁହାଯାଏ ଯେ ମସ୍କୋରେ ସରକାର ବିନା ବିଚାରରେ ୧୦୦୦ ଲୋକଙ୍କୁ ମାରିଦେଲା ଓ ୭୦,୦୦୦ଙ୍କୁ ଜେଲ ଦିଆଗଲା। ସମଗ୍ର ଦେଶରେ ନାନା ପ୍ରକାର ଜାଗରଣ ହେତୁ ପ୍ରାୟ ୧୪,୦୦୦ ଲୋକ ମରିଗଲେ।

ଏହିରୂପେ ପରାଜୟ ଓ ହତାଶା ଭିତରେ ୧୯୦୫ ରୁଷବିପ୍ଳବ ବିଫଳ ହେଲା। ଏହାକୁ ୧୯୧୭ ମସିହାର ଯେଉଁ ବିପ୍ଳବ ଜୟଲାଭ କଲା ତାହାର ପ୍ରସ୍ତାବନା ବୋଲି କହନ୍ତି। ଜନସାଧାରଣଙ୍କ ଭିତରେ ଚୈତନ୍ୟ ଜାଗ୍ରତ କରାଇବା ପୂର୍ବରୁ ଏବଂ ବିରାଟ ଆକାରରେ ସେମାନେ କାର୍ଯ୍ୟ କରିବା ପୂର୍ବରୁ "ଜନସାଧାରଣଙ୍କର ବିରାଟ ଘଟଣାରେ ଶିକ୍ଷାଲାଭ କରିବା ଦରକାର।" ୧୯୦୫ର ଘଟଣା ବହୁ ବ୍ୟୟସାପେକ୍ଷ ହେଲେ ସୁଦ୍ଧା ଏହି ଶିକ୍ଷା ସେମାନଙ୍କୁ ଦେଲା।

ଡୁମା ନିର୍ବାଚିତ ହେଲା ଏବଂ ୧୯୦୬ ମେ ମାସରେ ବସିଲା। ଏହା ଏକ ବିଦ୍ରୋହୀ ଅନୁଷ୍ଠାନ ନ ଥିଲା; ମାତ୍ର ଜାରର ମନୋମତ ଏହା ନ ଥିଲା ଏବଂ ଅଢେଇ ମାସ ପରେ ସେ ଏହାକୁ ବରଖାସ୍ତ କରିଦେଲା। ବିପ୍ଳବକୁ ଦମନ କରିସାରି ସେ ଡୁମାର କ୍ରୋଧକୁ କିଛି ଖାତିର କଲା ନାହିଁ। ଡୁମାରୁ ବରଖାସ୍ତ ହୋଇଥିବା ସଭ୍ୟମାନେ ମଧ୍ୟବିତ୍ତ ଶ୍ରେଣୀର ମାନ୍ଦା ଶାସନତାନ୍ତ୍ରିକ ଥିଲେ—ସେମାନେ ଫିନଲାଣ୍ଡ ଗଲେ (ଫିନଲାଣ୍ଡ ପିଟର୍ସବର୍ଗର ଖୁବ୍ ନିକଟରେ

ଥିଲା ଏବଂ ଜାରର କର୍ତ୍ତୃତ୍ୱାଧୀନରେ ଏକ ଅର୍ଦ୍ଧ-ସ୍ୱତନ୍ତ୍ର ଦେଶ ଥିଲା) ଏବଂ ଡୁମା ଭାଙ୍ଗି ଦେଇଥିବାର ପ୍ରତିବାଦ ସ୍ୱରୂପ ଟିକସ ନ ଦେବାପାଇଁ, ସେନାବାହିନୀ ଓ ନୌବାହିନୀରେ ଯୋଗ ନ ଦେବାପାଇଁ ରୁଷ ଲୋକଙ୍କୁ ଆହ୍ୱାନ କଲେ । ଏହି ଡେପୁଟି ବା ସଭ୍ୟମାନଙ୍କର ଜନସାଧାରଣଙ୍କ ସହିତ ସଂପର୍କ ନ ଥିଲା ଏବଂ ସେମାନଙ୍କ ନିବେଦନ କେହି ଶୁଣିଲେ ନାହିଁ ।

ତତ୍ପର ବର୍ଷ ୧୯୦୭ରେ ଦ୍ୱିତୀୟ ଡୁମା ନିର୍ବାଚିତ ହେଲା । ଅଗ୍ରଗାମୀ ପ୍ରାର୍ଥୀମାନଙ୍କୁ ନିର୍ବାଚିତ ହେବାରେ ବାଧା ଦେବାପାଇଁ ପୁଲିସ ତାଙ୍କ ପଥରେ ସକଳ ପ୍ରକାର ଅସୁବିଧା ଥୋଇଲେ ଏବଂ ବେଳେ ବେଳେ ସୁବିଧା ପାଇଁ ଗିରଫ ବି କରିନେଲେ । ତଥାପି ଏ ଡୁମା ବି ଜାରର ମନୋମତ ନ ଥିଲା ଏବଂ ତିନିମାସ ପରେ ସେ ଏହାକୁ ଭାଙ୍ଗିଦେଲା । ଏବେ ସମସ୍ତ ଅବାଞ୍ଛନୀୟ ଲୋକ ନିର୍ବାଚିତ ହେବାରେ ବାଧା ଦେବା ପାଇଁ ନିର୍ବାଚନ ଆଇନ ବଦଳାଇ ଦିଆଗଲା । ଏଥିରେ ସିଏ କୃତକାର୍ଯ୍ୟ ହେଲା ଏବଂ ତୃତୀୟ ଡୁମା ଏକ ଅତ୍ୟନ୍ତ ସମ୍ମାନାସ୍ପଦ ଓ ରକ୍ଷଣଶୀଳ ସଂସ୍ଥା ହେଲା ଏବଂ ଏହା ଦୀର୍ଘକାଳ ପର୍ଯ୍ୟନ୍ତ ରହିଥିଲା ।

ଭ୍ରୂ ଆଶ୍ଚର୍ଯ୍ୟ ମଣିଧାରୁ ଯେ ୧୯୦୫ ବିପ୍ଳବକୁ ଦମନ କରିସାରିବା ପରେ ନିଜ ଇଚ୍ଛାନୁସାରେ ଚଳାଇବା ନିମନ୍ତେ ଜାର ଯଥେଷ୍ଟ ଶକ୍ତିସମ୍ପନ୍ନ ଥିଲାବେଳେ ଏପରି ଦୁର୍ବଳ ଡୁମାସବୁ କାହିଁକି ନିର୍ବାଚିତ କରିବା ପାଇଁ ଏତେ ବ୍ୟସ୍ତ ହେଉଥିଲା ! ରୁଷ କେତେକ ଶ୍ରେଣୀ ମୁଖ୍ୟତଃ ଧନୀ ଜମିଦାର ଓ ବଣିକ ଶ୍ରେଣୀଙ୍କି ଆଂଶିକ ଭାବରେ ସନ୍ତୁଷ୍ଟ କରିବା କାରଣରୁ ଏହା କରୁଥିଲା । ଦେଶର ପରିସ୍ଥିତି ଖରାପ ଥିଲା । ଲୋକେ ଦବିଗଲେ ସନ୍ଦେହ ନାହିଁ; କିନ୍ତୁ ସେମାନେ ରୁଷ୍ଟ ଓ ରାଗାନ୍ୱିତ ହୋଇଥିଲେ । ତେଣୁ ଅନ୍ତତଃ ଉପରେ ଥିବା ଧନୀ ଲୋକଙ୍କୁ ହାତରେ ରଖିବା ଠିକ୍ ମନେ କରାଗଲା । ସବୁଠାରୁ ପ୍ରଧାନ କଥା ହେଉଛି ଇଉରୋପୀୟ ଦେଶମାନଙ୍କର ଧାରଣା ଜନ୍ମିଲା ଯେ ଜାର ଜଣେ ଉଦାର ସମ୍ରାଟ । ପଶ୍ଚିମ ଇଉରୋପରେ ଜାରର କୁଶାସନ ଓ ଅତ୍ୟାଚାର ଏକ ପ୍ରଚଳିତ ପ୍ରବଚନ ହୋଇ ଯାଇଥିଲା । ପ୍ରଥମ ଡୁମା ଭାଙ୍ଗିଦିଆଗଲା ପରେ ବ୍ରିଟିଶ ମାଦାଦଳର ଜଣେ ନେତା କମନ୍‌ସ ସଭାରେ ଗର୍ଜନ କରି କହିଲେ, ମୋର ମନେ ହୁଏ "ଡୁମା ମରିଛି; ଡୁମା ଦୀର୍ଘଜୀବୀ ହେଉ" । ଡୁମା ପ୍ରତି କିପରି ସହାନୁଭୂତି ଥିଲା ଏଥିରୁ ଦେଖାଯାଏ । ତାପରେ ଜାରର ଧନ ଦରକାର ହେଲା ଓ ତାହା ବି ପ୍ରଚୁର ପରିମାଣରେ । ମିତବ୍ୟୟୀ ଫରାସୀ ତାକୁ କରଜ ଦେଉଥିଲା; ପ୍ରକୃତରେ ଫରାସୀ ଋଣ ସାହାଯ୍ୟରେ ଜାର ୧୯୦୫ର ବିପ୍ଳବ ଦମନ କରି ପାରିଥିଲା । ଏହା ଏକ ଅଦ୍ଭୁତ ବୈଷମ୍ୟ—ପ୍ରଜାତନ୍ତ୍ର ଫ୍ରାନ୍‌ସ ଏକଛତ୍ର ରୁଷକୁ ତାର ଅଗ୍ରଗାମୀ ଓ ବିପ୍ଳବକୁ ଦମନ କରିବା ନିମନ୍ତେ ସାହାଯ୍ୟ କରୁଥିଲା; କିନ୍ତୁ ପ୍ରଜାତନ୍ତ୍ର ଫ୍ରାନ୍‌ସ

ବୋଇଲେ ଫରାସୀ ବ୍ୟାଙ୍କରଗଣ; ଯାହାହେଉ ବାହ୍ୟ ଆଡ଼ମ୍ବର ରଖିବାକୁ ହେବ ଏବଂ ଡୁମା ଏଥିରେ ସାହାଯ୍ୟ କଲା ।

ଇତ୍ୟବସରରେ ଇଉରୋପୀୟ ଓ ପୃଥିବୀ ପରିସ୍ଥିତି ଦ୍ରୁତ ଗତିରେ ପରିବର୍ତ୍ତିତ ହେଉଥାଏ । ଜାପାନଦ୍ୱାରା ରୁଷର ପରାଜୟ ପରେ ଇଂଲଣ୍ଡର ପୂର୍ବପରି ଆଉ ରୁଷ ପ୍ରତି ଭୟ ରହିଲା ନାହିଁ । ଜର୍ମାନୀ ଏକ ନୂତନ ଭୟ ଇଂଲଣ୍ଡ ପକ୍ଷରେ ହେଲା—ଆଜି ପର୍ଯ୍ୟନ୍ତ ଇଂଲଣ୍ଡର ହାତରପାଞ୍ଚ ହୋଇ ରହିଥିବା ଶିଳ୍ପ ଓ ସମୁଦ୍ରପଥରେ ଏହା ପ୍ରତିଦ୍ୱନ୍ଦୀ ହୋଇ-ଗଲା । ଜର୍ମାନୀ ଭୟ ଯୋଗୁଁ ହିଁ ଫ୍ରାନ୍ସ ରୁଷକୁ ଏତେ ଉଦାରଭାବ ଦେଖାଇ ଧାର ଦେଲା । ଏହାକୁ କର୍ମାନ ଆତଙ୍କ କହୁଥିଲେ—ଏହା ଫଳରେ ଦୁଇଟି ପୁରାତନ ଶତ୍ରୁ ପରସ୍ପରକୁ ଆଲିଙ୍ଗନ କଲେ । ୧୯୦୭ରେ ଆଙ୍ଗ୍ଲୋ-ରୁଷ ସନ୍ଧି ସ୍ୱାକ୍ଷରିତ ହେଲା ଏବଂ ଆଫଗାନିସ୍ଥାନ, ପର୍ସିଆ ଓ ଅନ୍ୟସ୍ଥାନ ସେତେ ଯେଉଁ ସବୁ ବିବାଦସ୍ଥଳ ଥିଲା, ତାହା ମେଣ୍ଟିଗଲା ପରେ ଇଂଲଣ୍ଡ, ରୁଷ ଓ ଫ୍ରାନ୍ସ ଭିତରେ ଏକ ଗ୍ରେଟ ମିଶନ୍ତ (Entente) ବୃଦ୍ଧି ପାଇଲା । ବଲକାନ ରାଜ୍ୟରେ ଅଷ୍ଟ୍ରିଆ ରୁଷର ପ୍ରତିଦ୍ୱନ୍ଦୀ ଥିଲା ଓ ଅଷ୍ଟ୍ରିଆ ଜର୍ମାନୀର ମିତ୍ର ଥିଲା ଏବଂ କାଗଜ କଲମରେ ଇଟାଲୀ ମଧ୍ୟ ସେଇଆ ଥିଲା । ତେଣୁ ଇଂଲଣ୍ଡ, ଫ୍ରାନ୍ସ ଓ ରୁଷ ମିଶନ୍ତ ଜର୍ମାନୀ, ଅଷ୍ଟ୍ରିଆ ଓ ଇଟାଲୀ ଏକତ୍ର ମିଳିତ ମିଶନ୍ତର ସମ୍ମୁଖୀନ ହେଲା । ଏମାନେ ଲଢ଼ାଇପାଇଁ ପ୍ରସ୍ତୁତ ହେଉଥିଲାବେଳେ ସାଧାରଣ ଲୋକେ ଅଳସରେ ଦିନ କାଟୁଥିଲେ—ଭାଗ୍ୟରେ କି ଦୁଃଖ ସହିବାକୁ ଥିଲା ସେମାନେ ତାହା ଜାଣି ନ ଥିଲେ ।

୧୯୦୫ ପରେ ଏହି କାଳ ରୁଷର ପ୍ରତିକ୍ରିୟା ଯୁଗ ଥିଲା । ବଲସେଭିକମ୍ ଓ ଅନ୍ୟ ବିପ୍ଳବୀ ଦଳମାନଙ୍କୁ ସମ୍ପୂର୍ଣ୍ଣରୂପେ ଦମନ କରିଦିଆଯାଇଥିଲା । ବିଦେଶରେ ଲେନିନଙ୍କ ପରି ନିର୍ବାସିତ ଲୋକେ ଧୈର୍ଯ୍ୟର ସହ ପୁସ୍ତକ ଓ ବୁଲେଟିନ୍ ଲେଖା ଚଳାଇଥିଲେ ଏବଂ ପରିବର୍ତ୍ତିତ ଅବସ୍ଥା ସହ ମାର୍କସ ତଥ୍ୟକୁ ଖାପ ଖୁଆଇବାକୁ ଚେଷ୍ଟା କଲେ । ମେନସେଭିକମ୍ (ମାର୍କସ୍‌ପନ୍ଥୀଙ୍କ ଭିତରେ ଅଧିକା ମାତ୍ରା ସଂଖ୍ୟାଲଘିଷ୍ଠ ଦଳ) ଓ ବଲସେଭିକମ୍ ଭିତରେ ପାର୍ଥକ୍ୟ ବଢ଼ିଗଲା । ଏହି ପ୍ରତିକ୍ରିୟା ବର୍ଷମାନଙ୍କରେ ମେନସେଭିକମ୍‌ର ଅଧିକ ପ୍ରାଧାନ୍ୟ ବଢ଼ିଗଲା । ବାସ୍ତବିକ ଏହାକୁ ସଂଖ୍ୟାଲଘିଷ୍ଠ ଦଳ କୁହାହେଉଥିଲେ ମଧ୍ୟ ସେତେ-ବେଳେ ଏହା ପକ୍ଷରେ ବହୁତ ଅଧିକ ଲୋକ ଥିଲେ । ୧୯୧୨ଠାରୁ ଶ୍ରେଣିକ ପୁଣି ରୁଷ-ଜଗତରେ ଏକ ପରିବର୍ତ୍ତନ ପରିଲକ୍ଷିତ ହେଲା ଏବଂ ବିପ୍ଳବୀ କାର୍ଯ୍ୟ ବଢ଼ିଲା ଓ ତାହା ସଙ୍ଗେ ସଙ୍ଗେ ବଲସେଭିକମ୍ ମଧ୍ୟ ବଢ଼ିଲା । ୧୯୧୪ ମଧ୍ୟଭାଗ ପର୍ଯ୍ୟନ୍ତ ବିପ୍ଳବ ହାଉଆରେ ପେଟ୍ରୋଗ୍ରାଡ଼ ପରିପୂର୍ଣ୍ଣ ଥିଲା ଏବଂ ୧୯୦୫ ପରି ବହୁସଂଖ୍ୟକ ରାଜନୀତିକ ଧର୍ମଘଟ ସଂଘଟିତ ହେଲା । ବିପ୍ଳବର ଉପାଦାନ ପୁଣି ଏମିତ ! ତଥାପି ସାତଜଣିଆ ପେଟ୍ରୋଗ୍ରାଡ଼ ବଲସେଭିକ୍ କମିଟି ଭିତରୁ ଦେଖାଗଲା ଯେ ତିନିଜଣ ଜାରର ଗୁଇନ୍ଦା ବିଭାଗର ଲୋକ

ରହିଛନ୍ତି । ବଲସେଭିକ୍‌ମାନଙ୍କର ଉପରେ ଏକ ଶ୍ରେଷ୍ଠ ଦଳ ଥିଲା ଏବଂ ଏହାର ନେତା ଥିଲେ ମାଲିନୋସ୍କି । ସେ ମଧ୍ୟ ଜଣେ ପୁଲିସ ଏଜେଣ୍ଟ ବୋଲି ପରେ ଜଣାଗଲା । ଲେନିନ୍ ତାଙ୍କୁ ବିଶ୍ୱାସ କରୁଥିଲେ ।

୧୯୧୪ ଅଗଷ୍ଟ ମାସରେ ପୃଥିବୀଯୁଦ୍ଧ ଆରମ୍ଭ ହେଲା ଏବଂ ହଠାତ୍ ଯୁଦ୍ଧକ୍ଷେତ୍ର ପ୍ରତି ଏହା ଦୃଷ୍ଟି ଫେରାଇନେଲା ଏବଂ ବାଧ୍ୟତାମୂଳକ ସୈନ୍ୟଶିକ୍ଷା ସକାଶେ ପ୍ରଧାନ କର୍ମୀମାନଙ୍କୁ ନେଇନଆଗଲା ଏବଂ ବିପ୍ଳବୀ ଆନ୍ଦୋଳନ ମରିଗଲା । ଯୁଦ୍ଧ ବିରୁଦ୍ଧରେ କଥା କହିବାର ବଲସେଭିକଙ୍କ ସଂଖ୍ୟା ମୁଷ୍ଟିମେୟ ଥିଲା ଏବଂ ସେମାନେ ଅତ୍ୟନ୍ତ ଅପ୍ରିୟ ହୋଇଉଠିଲେ ।

ଆମେ ଆମର ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚିଲେ—ପୃଥିବୀଯୁଦ୍ଧ - ଏବଂ ଆମକୁ ଏଠି ରହିବାକୁ ପଡ଼ିବ । କିନ୍ତୁ ଏ ଚିଠି ଶେଷ କରିବା ପୂର୍ବରୁ ରୁଷର କଳା ଓ ସାହିତ୍ୟ ପ୍ରତି ତୋର ଦୃଷ୍ଟି ଆକର୍ଷଣ କରିବା ମୋର ଇଚ୍ଛା । ଜାରଶାସିତ ରୁଷର ସମସ୍ତ ଦୋଷ ସତ୍ତ୍ୱେ ଅଧିକାଂଶ ଲୋକଙ୍କୁ ଜଣା ସେ ସେଠି ଅପୂର୍ବ ପ୍ରକାର ନୃତ୍ୟ ପ୍ରଚଳନ ଥିଲା । ଏଠାରେ ୧୯ଶ ଶତାବ୍ଦୀରେ ଅନେକ ନାମଜାଦା ଲେଖକ ବି ଥିଲେ—ସେମାନେ ସାହିତ୍ୟ କ୍ଷେତ୍ରରେ ଗୋଟାଏ ପରମ୍ପରା ଜାତକଲେ । ବଡ଼ ଉପନ୍ୟାସ ଓ ଶ୍ରେଷ୍ଠ ଗଳ୍ପ ଲେଖିବାରେ ସେମାନେ ଅପୂର୍ବ ଦକ୍ଷତା ଦେଖାଇଲେ । ଶତାବ୍ଦୀର ଆରମ୍ଭ ବେଳେ ପୁସକିନ୍ ଥିଲେ – ସେ ବାଇରନ୍ ଶେଲି ଓ କୀଟସ୍‌ଙ୍କ ସମସାମୟିକ । ରୁଷ କବିଙ୍କ ଭିତରେ ସେ ଶ୍ରେଷ୍ଠ ବୋଲି କୁହାଯାଏ । ୧୯ଶ ଶତାବ୍ଦୀର ପ୍ରସିଦ୍ଧ ଲେଖକଙ୍କ ଭିତରେ ଥିଲେ ଗୋଗଲ, ଟର୍ଗେନିଏଭ୍, ଡଷ୍ଟେଭସ୍କି ଓ ସେକଭ । ତାଙ୍କ ଭିତରେ ସମ୍ଭବତଃ ସବୁଠାରୁ ଉତ୍କୃଷ୍ଟ ଥିଲେ ଲିଓ ଟଲଷ୍ଟୟ । ସେ ଉପନ୍ୟାସ ଲେଖାରେ ଜଣେ ପ୍ରବୀଣ ଥିଲେ ତାହା ନୁହେଁ, ସେ ଧାର୍ମିକ ଓ ଆଧ୍ୟାତ୍ମିକ ନେତା ବି ହେଲେ ଏବଂ ତାଙ୍କର ପ୍ରଭାବ ସୁଦୂରବିସ୍ତୃତ ଥିଲା । ବାସ୍ତବିକ ଗାନ୍ଧିଜୀଙ୍କ ଉପରେ ବି ଏହା ପଡ଼ିଲା । ସେ ସେତେବେଳେ ଦକ୍ଷିଣ ଆଫ୍ରିକାରେ ଥିଲେ ଏବଂ ଉଭୟେ ପରସ୍ପର ଭାବକୁ ଶ୍ରଦ୍ଧା କଲେ ଓ ଉଭୟଙ୍କ ଭିତରେ ଚିଠିପତ୍ର କାରବାର ହେଲା । ସେମାନଙ୍କ ଭିତରେ ମିଳନଗ୍ରନ୍ଥି ଥିଲା ଅପ୍ରତିରୋଧ ବା ଅହିଂସାରେ ଉଭୟଙ୍କର ବିଶ୍ୱାସ । ଟଲଷ୍ଟୟଙ୍କ କହିବାନୁସାରେ ଏହାହିଁ ଖ୍ରୀଷ୍ଟଙ୍କର ମୌଳିକ ଉପଦେଶ ଏବଂ ପୁରୁଣା ହିନ୍ଦୁ ଶାସ୍ତ୍ରମାନଙ୍କରୁ ଗାନ୍ଧିଜୀ ବି ସେହି ସିଦ୍ଧାନ୍ତରେ ଉପନୀତ ହେଲେ । ଟଲଷ୍ଟୟ ନିଜର ବିଶ୍ୱାସ ଧରି ରହିଲେ, ଭବିଷ୍ୟତ ବକ୍ତା ହେଲେ, କିନ୍ତୁ ସଂସାରରୁ ଏକପ୍ରକାର ବିଚ୍ଛିନ୍ନ ହୋଇ ରହିଥିଲେ; ମାତ୍ର ଗାନ୍ଧିଜୀ ଆପାତତଃ ଏହି ନାସ୍ତିସୂଚକ (Negative) ଜିନିଷକୁ ଦକ୍ଷିଣ ଆଫ୍ରିକା ଓ ଭାରତର ଗଣସମସ୍ୟାର କ୍ରିୟାଶୀଳ ଭାବରେ ପ୍ରୟୋଗ କଲେ ।

ଊନବିଂଶ ଶତାବ୍ଦୀର ଜଣେ ପ୍ରସିଦ୍ଧ ରୁଷୀୟ ଲେଖକ ଏବେ ସୁଦ୍ଧା ଜୀବିତ ଅଛନ୍ତି । ତାଙ୍କ ନାମ ମିକାସିମ୍ ଗର୍କି (ଗର୍କି ୧୯୩୬ରେ ମଲେ । )

# ୧୪୫ : ଏକ ଯୁଗର ଅବସାନ

ମାର୍ଚ୍ଚ ୨୨, ୧୯୩୩

ଊନବିଂଶ ଶତାବ୍ଦୀ ! ଏହି ୧୦୦ ବର୍ଷ ଆଲୋଚନା କରିବା ପାଇଁ କେତେଦିନ ଲାଗିଗଲା ! ଲାଗିପଡ଼ି ଚାରିମାସ ହେଲା ଏହିକାଳ ସମ୍ବନ୍ଧରେ ମୁଁ ତତେ ଲେଖିଛି ଏବଂ ମୁଁ ଟିକିଏ ଥକି ପଡ଼ିଛି; ସମ୍ଭବତଃ ତୁ ଏହା ପଢ଼ିଲାବେଳେ ବି ସେହିପରି ବୋଧକରିବୁ । ଏହା ଏକ ମୁଗ୍ଧକର କାଳ ବୋଲି କହି ମୁଁ ଆରମ୍ଭ କରିଥିଲି; କିନ୍ତୁ କିଛିକ୍ଷଣ ପରେ ଏହି ମୋହିନୀ ଶକ୍ତି ବି କ୍ଲାନ୍ତିକର ହୋଇପଡ଼େ । ପ୍ରକୃତରେ ଆମେ ଊନବିଂଶ ଶତାବ୍ଦୀ ଅତିକ୍ରମ କରିସାରିଛେ ଏବଂ ବିଂଶ ଶତାବ୍ଦୀର କେତେକ ଦୂର ଅଗ୍ରସର ହୋଇପଡ଼ିଛେ । ୧୯୧୪ ସାଲ ହିଁ ଥିଲା ଆମର ସୀମା । ଏହିବର୍ଷ ହିଁ ଯୁଦ୍ଧକୁକୁର ସବୁ ( ଏପରି ପ୍ରଚଳନ ଅଛି ) ଇଉରୋପରେ ଓ ପୃଥିବୀରେ ପାଗଳ ହୋଇଗଲେ । ଇତିହାସରେ ଏହିବର୍ଷ ହିଁ ଏକ ସନ୍ଧିକାଳ । ଏହିଠାରେ ଏକ ଯୁଗର ଶେଷ ଓ ଅନ୍ୟଟିର ଆରମ୍ଭ ହେଲା ।

ଊଣେଇଶ ଶହ ଚଉଦ । ଏହା ମଧ୍ୟ ତୋ ଜନ୍ମ ପୂର୍ବର କାଳ, ଅଥଚ ଏହା ୧୯ ବର୍ଷରୁ କମ ସମୟର ଘଟଣା ଏବଂ ଜଣେ ମଣିଷର ଜୀବନକାଳରେ ବି ଏହା ଦୀର୍ଘକାଳ ନୁହେଁ—ଇତିହାସ ପକ୍ଷରେ ତ ଆହୁରି କମ । କିନ୍ତୁ ଏହି କାଳ ଭିତରେ ପୃଥିବୀ ଏପରି ବେଶି ପରିବର୍ତ୍ତିତ ହୋଇଛି ଏବଂ ଏବେ ସୁଦ୍ଧା ପରିବର୍ତ୍ତିତ ହେଉଛି ଯେ ମନେହୁଏ ସତେକି ସେହିଦିନଠାରୁ ଏକ ଯୁଗ ବିତିଗଲାଣି । ୧୯୧୪ ଓ ତାର ପୂର୍ବ ବର୍ଷମାନଙ୍କର ଘଟଣା ଇତିହାସର ବହୁ ପୁରାକାଳର ଘଟଣା ପରି ମନେହୁଏ ଏବଂ ସୁଦୂର ଅତୀତର ଏହା ଘଟଣା ବୋଲି ମନେକରି ଆମେ ପୁସ୍ତକରେ ଏହା ପଢ଼ୁ—ଆମ ନିଜ ଅମଳ ସହିତ ଏହାର ପାର୍ଥକ୍ୟ ଏତେ ବେଶି । ଏହି ବିରାଟ ପରିବର୍ତ୍ତନମାନଙ୍କ ସମ୍ବନ୍ଧରେ ମୁଁ ତତେ ପରେ କହିବି । ମୁଁ ଏଠି ତତେ ଟିକିଏ ସତର୍କ କରାଇଦେବି । ତୁ ସ୍କୁଲରେ ଭୂଗୋଳ ଶିକ୍ଷା କରୁଛୁ ଏବଂ ୧୯୧୪ ପୂର୍ବରୁ ମୁଁ ସ୍କୁଲରେ ପଢ଼ିଲାବେଳେ ଯେଉଁ ଭୂଗୋଳ ପଢ଼ିଥିଲି, ସେଉଁ ଭୂଗୋଳ ତୁ ବର୍ତ୍ତମାନ ପଢ଼ୁଛୁ ଏହା ତାହାଠାରୁ ସମ୍ପୂର୍ଣ୍ଣ ଭିନ୍ନ । ହୁଏତ ଆଜି ତୁ ଯେଉଁ ଭୂଗୋଳ ପଢ଼ୁଛୁ ଏହାକୁ ଶୀଘ୍ର ତୋତେ ଭୁଲିଯିବାକୁ ହେବ, ମୋତେ ବି ତାହା କରିବାକୁ ପଡ଼ିଥିଲା । ଯୁଦ୍ଧ ବାସ୍ତବରେ ପୁରାତନ ଐତିହାସିକ ଘଟଣା ଓ ପୁରୁଣା ଦେଶସବୁ ଲୋପ ପାଇଯାଏ ଏବଂ ନୂଆସବୁ ବାହାରେ । ଏହାର ନାମ ସ୍ମରଣ ରଖିବା କଷ୍ଟକର । ପ୍ରାୟ ଏକା ସାଥିକରେ ଶହ ଶହ ସହରର ନାମ ପରିବର୍ତ୍ତନ ହୋଇଯାଉଛି; ସିଣ୍ଟପିଟର୍ସବର୍ଗ ପେଟ୍ରୋଗ୍ରାଡ଼ ହେଲା ଓ ତା ପରେ ହେଲା ଲେନିନଗ୍ରାଡ଼ । କନଷ୍ଟାଣ୍ଟିନୋପଲ ଏବେ ଇସ୍ତାମବୁଲ ହେଲାଣି, ପେକିଙ୍ଗ୍‌ର ନାମକରଣ ହୋଇଛି ପେପିଙ୍ଗ ଏବଂ ବୋହେମିଆର ପ୍ରେଗ୍ ଓ ଚେକୋସ୍ଲୋଭେକିଆର ପ୍ରାହା ହୋଇଛି ।

ମୁଁ ୧୯ଶ ଶତାବ୍ଦୀ ସମ୍ବନ୍ଧରେ ଲେଖିଲାବେଳେ ଦେଶ ଓ ମହାଦେଶମାନଙ୍କ ସମ୍ବନ୍ଧରେ ଅଲଗା ଭାବରେ ଲେଖିଛି; ବିଭିନ୍ନ ବିଷୟ ଓ ବିଭିନ୍ନ ଆନ୍ଦୋଳନ ସମ୍ବନ୍ଧରେ ମଧ୍ୟ ମୁଁ ଅଲଗା ଭାବରେ ଲେଖିଛି । ତୋର ଅବଶ୍ୟ ମନେରଖିବା ଦରକାର ଯେ ଏହାସବୁ ଅନେକ ଅଧିକେ ଏକ ସମୟରେ ହୋଇଥିଲା ଏବଂ ସମଗ୍ର ଜଗତର ଇତିହାସ ତାହାର ହଜାର ହଜାର ପାଦ ଏକତ୍ର ପକାଇ ଗତିକଲା । ବିଜ୍ଞାନ ଓ ଶିଳ୍ପ, ରାଜନୀତି ଓ ଅର୍ଥନୀତି, ପ୍ରଚୁରତା ଓ ଦାରିଦ୍ର୍ୟ, ପୁଞ୍ଜିବାଦ ଓ ସାମ୍ରାଜ୍ୟବାଦ, ଗଣତନ୍ତ୍ର ଓ ସାମ୍ୟବାଦ, ଡାରଉଇନ ଓ ମାର୍କସ, ସ୍ୱାଧୀନତା ଓ ବନ୍ଧନ, ଦୁର୍ଭିକ୍ଷ ଓ ସଂକ୍ରାମକ ରୋଗ, ଯୁଦ୍ଧ ଓ ଶାନ୍ତି, ସଭ୍ୟତା ଓ ବର୍ବରତା— ଏହି ଅଦ୍ଭୁତ ବ୍ୟବସ୍ଥା ଭିତରେ ଏ ସମସ୍ତର ସ୍ଥାନ ଥିଲା ଏବଂ ପ୍ରତ୍ୟେକ କାର୍ଯ୍ୟ ଫଳ ଓ ଅନ୍ୟର ପ୍ରତିକ୍ରିୟା ତା ଉପରେ ପଡ଼ିଲା । ତେଣୁ ଯଦି ଆମ ମନ ମଧ୍ୟରେ ଆମେ ଏହି କାଳ କିମ୍ବା ଅନ୍ୟ କୌଣସି କାଳର ଚିତ୍ର ଆଙ୍କୁ ତାହାହେଲେ ଦୃଷ୍ଟିସହାୟଯନ୍ତ୍ର (Kaleidoscope) ଅର୍ଥାତ୍ ଯେଉଁ ଯନ୍ତ୍ର ସାହାଯ୍ୟରେ ନାନା ପ୍ରକାର ରଙ୍ଗ ଦେଖାଯାଏ, ତାହାପରି ଏହା ଏକ ଜଟିଳ, ସଦା ଗତିଶୀଳ ଓ ପରିବର୍ତ୍ତନଶୀଳ ଚିତ୍ର ହେବ । ଅବଶ୍ୟ ଏହି ଚିତ୍ରର ଅନେକ ଅଂଶ କଳ୍ପନା କରିବାଟା ଆମୋଦଦାୟକ ନୁହେଁ ।

ଆମେ ଦେଖିଛେ ଏହି କାଳ ଭିତରେ ସର୍ବାପେକ୍ଷା ପ୍ରଧାନ ଲକ୍ଷଣ ହେଉଛି ବିସ୍ତୃତ ଶକ୍ତିଚାଳିତ ଉତ୍ପାଦନ ଦ୍ୱାରା ପୁଞ୍ଜିବାଦୀ ଶିଳ୍ପର ବୃଦ୍ଧି—ଅର୍ଥାତ୍ ଜଳ, ବାଷ୍ପ ବା ବିଦ୍ୟୁତ୍ ପରି କିଛି ଯାନ୍ତ୍ରିକଶକ୍ତି ସାହାଯ୍ୟରେ ଉତ୍ପନ୍ନ କରିବା । ବିଦ୍ୟୁତ୍ କାତକାସ୍ଥ କାରଖାନାର ନାମ "ପାଓ୍ୱାର ହାଉସ" (ବିଜୁଳି ଘର ଦିଆହୋଇଛି) । ପୃଥିବୀର ବିଭିନ୍ନ ଅଂଶରେ ଏହାର ଅଲଗା ଫଳ ଫଳିଛି ଏବଂ ଏହି ସବୁ ପରିଣତି ପ୍ରତ୍ୟକ୍ଷ ଓ ଅପ୍ରତ୍ୟକ୍ଷ ଉଭୟ ପ୍ରକାର ହୋଇଛି । ଏହିରୂପେ ଲଙ୍କାଶାୟାରର ଶକ୍ତିଚାଳିତ ତନ୍ତ୍ରଦ୍ୱାରା ଲୁଗା ଉତ୍ପାଦନ ହେବା ଫଳରେ ସୁଦୂର ଭାରତୀୟ ଗ୍ରାମମାନଙ୍କର ଅବସ୍ଥା ବଦଳିଗଲା ଏବଂ ସେଠାରେ ଅନେକ ପେଷା ବୁଡ଼ାଇଦେଲା । ପୁଞ୍ଜିବାଦୀ ଶିଳ୍ପ ବିସ୍ତାରାତ୍ମକ; ଏହା ଦିନକୁ ଦିନ ଅଧିକ ବିସ୍ତୃତି ଲାଭକଲା ଏବଂ ଏହାର କ୍ଷୁଧା ଆଦୌ ନିବାରଣ ହେଲା ନାହିଁ । ଏହାର ବିଶେଷ ଚିହ୍ନ ଅର୍ଜନ-ସ୍ପୃହା; ଏହା ସର୍ବଦା ଅର୍ଜନ କରେ ଓ ତାହା ରଖେ ଏବଂ ପୁଣି ଅର୍ଜନ ଲାଗି ଧାଏଁ । ବ୍ୟକ୍ତିବିଶେଷ ଏପରି କରିବାକୁ ଚେଷ୍ଟା କଲେ ଏବଂ ଦେଶସବୁ ବି ସେହିପରି କଲେ । ଏହି ପ୍ରଥା ଅଧୀନରେ ଯେଉଁ ସମାଜ ଗଢ଼ିଉଠିଲା ସେହିହେତୁ ତାକୁ ପରିଗ୍ରହୀ (Acquisitive) ସମାଜ ବୋଲି କହନ୍ତି । ଏହାର ସର୍ବଦା ଲକ୍ଷ୍ୟ ହେଲା ଅଧିକରୁ ଅଧିକ ଉତ୍ପାଦନ କରିବା ଏବଂ ଯାହା ବଳକା ଧନ ଉତ୍ପନ୍ନ ହେଲା ତାକୁ ଅଧିକ କାରଖାନା, ରେଳବାଇ ଓ ସେହିପରି ଉଦ୍ୟମରେ ଖଟାଇବା ଓ ମାଲିକମାନଙ୍କୁ ଧନୀ କରିବା ମଧ୍ୟ । ଏହି ଲକ୍ଷ୍ୟ ଅନୁସରଣ କରିବାକୁ ଯାଇ ଅନ୍ୟସବୁ ଜିନିଷକୁ ବଳି ଦିଆଗଲା । ଯେଉଁ ଶ୍ରମିକମାନେ ଶିଳ୍ପଧନ ଉତ୍ପନ୍ନ କଲେ, ସେମାନେ ଏଥିରେ ଆଦୌ ଲାଭବାନ୍ ହେଲେ ନାହିଁ ଏବଂ ଏବେ ସେମାନଙ୍କର ଅବସ୍ଥା କିଛିଏ ଉନ୍ନତ ହେବା ପୂର୍ବ ପର୍ଯ୍ୟନ୍ତ ନାରୀ ଓ ବାଳକ ସମେତ ସେମାନଙ୍କୁ ଭୀଷଣ ସମୟ ଦେଇ

କାଳାତିପାତ କରିବାକୁ ପଡ଼ିଥିଲା । ଉପନିବେଶ ଓ ଅଧୀନସ୍ଥ ଦେଶମାନଙ୍କୁ ମଧ୍ୟ ବଳି ଦିଆଗଲା ଏବଂ ଏହି ପୁଞ୍ଜିବାଦୀ ଶିଳ୍ପ ଓ ଯେଉଁସବୁ ଦେଶ ଏହା ଅଧିକାର କରିଥିଲେ ସେମାନଙ୍କର ମଙ୍ଗଳ ନିମନ୍ତେ ଏହା ଶୋଷଣ କରାଗଲା ।

ତେଣୁ ପୁଞ୍ଜିବାଦ ଅନ୍ଧଭାବରେ ଓ ନିର୍ମମ ଭାବରେ ଅଗ୍ରସର ହେଲା ଓ ତାହାର ଯାତାକାଳରେ ଅନେକ ଶିକାର କରିପକାଇଲା । ଯାହାହେଉ ଏହା ଅଗ୍ରଗତିରେ ବିଜୟୀ ହେଲା । ବିଜ୍ଞାପନର ସାହାଯ୍ୟ ପାଇ ଏହା ଅନେକ ଜିନିଷରେ କୃତକାର୍ଯ୍ୟ ହେଲା ଏବଂ ଏହି ସଫଳତା ଦୁନିଆକୁ ଝଲସାଇଦେଲା ଓ ଯେଉଁସବୁ ଦୁର୍ଦ୍ଦଶା ଆଣିଦେଲା ସେ ଲାଗି ପ୍ରାୟଶ୍ଚିତ୍ତ କଲାପରି ମନେ ହେଲା । ଘଟଣାକ୍ରମେ ଏବଂ କୌଣସି ଯୋଜନା ପ୍ରସ୍ତୁତ ନ କରି ଏହା ଜୀବନରେ ଅନେକ ଭଲ ଜିନିଷ ବି ଜାତକଲା । କିନ୍ତୁ ଏହି ଉଜ୍ଜ୍ୱଳ ଆବରଣ ଓ ଭଲ ତଳେ ପ୍ରଚୁର ପରିମାଣରେ ଖରାପ ବି ରହିଥିଲା । ବାସ୍ତବିକ ସବୁଠାରୁ ଉଲ୍ଲେଖଯୋଗ୍ୟ ହେଉଛି ନେଉଁ ବୈଷମ୍ୟ ଏହା ସୃଷ୍ଟି କଲା ଏବଂ ଏହା ଯେତେ ଅଧିକ ବୃଦ୍ଧି ପାଇଲା ତେତେ ବେଶି ଦେଖାଗଲା ଅତିଶୟ ଦାରିଦ୍ର୍ୟ ଓ ଅତିମାତ୍ରା ସମ୍ପଦ, କଦର୍ଯ୍ୟ ବସ୍ତି ଓ ଗଗନଚୁମ୍ବୀ ପ୍ରାସାଦ, ସାମ୍ରାଜ୍ୟ ସରକାର ଏବଂ ପରାଧୀନ ଶୋଷିତ ଉପନିବେଶ । ଇଉରୋପ ହିଁ ପ୍ରାଧାନ୍ୟ କରୁଥିବା ଦେଶ ଥିଲା ଏବଂ ଏସିଆ ଓ ଆଫ୍ରିକା ଶୋଷିତ ମହାଦେଶ । ଏହି ଶତାବ୍ଦୀର ଅଧିକକାଳ ପର୍ଯ୍ୟନ୍ତ ଆମେରିକା ପୃଥିବୀର ଘଟଣାସ୍ରୋତ ବାହାରେ ଥିଲା; କିନ୍ତୁ ଏହା ଦ୍ରୁତବେଗରେ ଅଗ୍ରସର ହେଉଥିଲା ଓ ବିରାଟ ସଂପଦ ତିଆରି କରୁଥିଲା । ଇଉରୋପରେ ଇଂଲଣ୍ଡ ହିଁ ପୁଞ୍ଜିବାଦର ଏବଂ ବିଶେଷତଃ ସାମ୍ରାଜ୍ୟବାଦ ଦିଗରେ ନେତା ଥିଲା—ଏହା ସଂପଦଶାଳୀ, ଅହଙ୍କାରୀ ଥିଲା ଓ ପରିପାଟୀପୂର୍ଣ୍ଣ ସନ୍ତୋଷ ଲାଭ କରିଥିଲା ।

ପୁଞ୍ଜିବାଦୀ ଶିଳ୍ପର ଗତି ଓ ଅଧିକାର କରିବା ପ୍ରକୃତି ହିଁ ବ୍ୟାପାର ଗୁରୁତର କରିବା ସଙ୍ଗେ ସଙ୍ଗେ ବିରୋଧ ଓ ଆନ୍ଦୋଳନ ଜାତ କରାଇଲା ଏବଂ ଶେଷରେ ଶ୍ରମିକଙ୍କୁ ରକ୍ଷା କରିବା ନିମନ୍ତେ କିଛି ଚେଷ୍ଟାକରାଗଲା । କାରଖାନା ପ୍ରଣାଳୀ ପ୍ରଚଳନ ଆରମ୍ଭବେଳେ ଶ୍ରମିକ ବିଶେଷ ଭାବରେ ନାରୀ ଓ ବାଳକ ବାଳିକା ଶ୍ରମିକମାନେ ଭୟାନକ ରୂପେ ଶୋଷିତ ହୋଇଥିଲେ । ସ୍ତ୍ରୀ ଓ ପିଲାଙ୍କୁ ପୁରୁଷଙ୍କ ଅପେକ୍ଷା ବେଶି ପସନ୍ଦ କରି ନିଯୁକ୍ତ କରାଯାଉଥିଲା; କାରଣ ସେମାନେ ଶସ୍ତାରେ ମିଳୁଥିଲେ ଏବଂ ଅତି ଅସ୍ୱାସ୍ଥ୍ୟକର ଓ ଘୃଣ୍ୟ ଅବସ୍ଥା ଭିତରେ ତାଙ୍କୁ ଶ୍ରମ କରିବାକୁ ପଡ଼ୁଥିଲା - ବେଳେ ବେଳେ ଦିନରେ ୧୮ ଘଣ୍ଟା କାମ କରୁଥିଲେ । ଶେଷରେ ଷ୍ଟେଟ୍ ହସ୍ତକ୍ଷେପ କଲା ଓ ଆଇନ ପାଶ୍ କଲା—ଏହାକୁ କାରଖାନା ଆଇନ୍ କହନ୍ତି । ଏଥିରେ ଦିନକରେ ଶ୍ରମ କରିବା ଘଣ୍ଟା ସୀମାବଦ୍ଧ କରାଗଲା ଏବଂ ଭଲ ଅବସ୍ଥାରେ ରଖିବାପାଇଁ ଜୋର ଦିଆଗଲା । ଏହିସବୁ ଆଇନରେ ସ୍ତ୍ରୀ ଓ ପିଲାମାନଙ୍କୁ ବିଶେଷ ଭାବରେ ରକ୍ଷା କରାଗଲା ଏବଂ ଏହା ପାଶ୍ କରିବା ନିମନ୍ତେ କାରଖାନା ମାଲିକମାନଙ୍କର ଘୋର

ବିରୋଧୀର ଦମ୍ଭ କ୍ଷୀଣ ହେବା ସକାଶେ କଠିନ ଓ ଦୀର୍ଘକାଳ ପର୍ଯ୍ୟନ୍ତ ସଂଗ୍ରାମ କରିବାକୁ ପଡ଼ିଥିଲା ।

ପୁଞ୍ଜିବାଦୀ ଶିଳ୍ପ ହେତୁ ପୁଣି ସୋସାଲିଷ୍ଟ ଓ କମ୍ୟୁନିଷ୍ଟ ଭାବଧାରା ଜାତହେଲା— ଏହି "ବାଦୀ" ମାନେ ନୂତନ ଶିଳ୍ପକୁ ଗ୍ରହଣ କଲେ ଏବଂ ପୁଞ୍ଜିବାଦରେ ଭିତ୍ତିକୁ ଚ୍ୟାଲେଞ୍ଜ କଲେ । ଶ୍ରମିକ ଲୋକଙ୍କ ସଂଗଠନ, ଶ୍ରମିକ ସଂଘ ଓ ଆନ୍ତର୍ଜାତୀୟ ଦଳ ଗଠିତ ହେଲା ।

ପୁଞ୍ଜିବାଦରୁ ସାମ୍ରାଜ୍ୟବାଦ ହେଲା ଏବଂ ପୂର୍ବୀୟ ଦେଶମାନଙ୍କର ବହୁଦିନରୁ ପ୍ରଚଳିତ ଅର୍ଥନୀତିକ ଅବସ୍ଥା ଉପରେ ପାଶ୍ଚାତ୍ୟ ପୁଞ୍ଜିବାଦୀ ଶିଳ୍ପର ଚାପ ଫଳରେ ସେଠାରେ ଧ୍ୱଂସ ଘଟିଲା । କ୍ରମେ ଏହି ପୂର୍ବୀୟ ଦେଶମାନଙ୍କରେ ମଧ୍ୟ ପୁଞ୍ଜିବାଦୀ ଶିଳ୍ପର ଚେର ଲାଗିଗଲା ଓ ଏହା ବୃଦ୍ଧି ପାଇଲା । ପଶ୍ଚିମର ସାମ୍ରାଜ୍ୟବାଦକୁ ଚ୍ୟାଲେଞ୍ଜ ଦେବାପାଇଁ ଜାତୀୟତା ମଧ୍ୟ ବୃଦ୍ଧି ପାଇଲା ।

ଏହିରୂପେ ପୁଞ୍ଜିବାଦ ଦୁନିଆକୁ ଦୋହଲାଇଦେଲା ଏବଂ ମାନବ ଜାତିର ଏହା ଭୀଷଣ ଦୁର୍ଦ୍ଦଶା ଘଟାଇଲା । ତାହା ସତ୍ତ୍ୱେ ମୋଟ ଉପରେ ଅନ୍ତତଃ ପାଶ୍ଚାତ୍ୟ ଦେଶରେ ଏହା ଏକ ମଙ୍ଗଳଦାୟକ ଆନ୍ଦୋଳନ ହେଲା । ଏହା ସାଥିରେ ମହାନ୍ ଭୌତିକ ପ୍ରଗତି ଘେନି-ଆସିଲା ଏବଂ ମାନବର ଭଲଭାବରେ ଚଳିବାର ଷ୍ଟାଣ୍ଡାର୍ଡ ପ୍ରଚୁର ପରିମାଣରେ ଉଠାଇଦେଲା । ସାଧାରଣ ଲୋକ ପୂର୍ବ ଅପେକ୍ଷା ଖୁବ୍ ଅଧିକ ଭାବରେ ଦରକାରୀ ହୋଇପଡ଼ିଲା । ତା ହାତରେ ମାମୁଲି ଭୋଟାଧିକାର ଥିବା ସତ୍ତ୍ୱେ କାର୍ଯ୍ୟତଃ କୌଣସି ବିଷୟରେ ତାହାର କିଛି ମତ ଦେବାର ନ ଥାଏ, କିନ୍ତୁ ତଥ୍ୟ ହିସାବରେ ରାଷ୍ଟ୍ରରେ ତାର ସ୍ଥାନ ବଢ଼ିଲା ଏବଂ ଏହା ସହିତ ଆତ୍ମସମ୍ମାନ ମଧ୍ୟ ବୃଦ୍ଧି ପାଇଲା । ଏହା ଅବଶ୍ୟ ପାଶ୍ଚାତ୍ୟ ଦେଶମାନଙ୍କରେ ଯେଉଁଠି ପୁଞ୍ଜିବାଦୀ ଶିଳ୍ପ ପ୍ରତିଷ୍ଠିତ ହୋଇଯାଇଥିଲା, ସେଠାକାର କଥା—ବିଜ୍ଞାନ ଜ୍ଞାନଭଣ୍ଡାର ଦେଖାଦେଲା; ବିଜ୍ଞାନ ଅଦ୍ଭୁତ ଜିନିଷ ବାହାର କଲା ଏବଂ ଜୀବନରେ ଏହାର ସହସ୍ର ରୂପରେ ପ୍ରୟୋଗଦ୍ୱାରା ପ୍ରତ୍ୟେକ ବ୍ୟକ୍ତି ପକ୍ଷରେ ଜୀବନ ସହଜ ହୋଇଗଲା । ବିଶେଷତଃ ରୋଗ ନିବାରଣ ଦିଗରେ ଔଷଧ ଓ ସଫେଇ ଯୋଗୁଁ ମଣିଷ ପାଖରେ ଅଭିଶାପ ରୂପେ ରହିଥିବା ଅନେକ ରୋଗର ମୂଳୋତ୍ପାଟନ କଲା ଓ ଅନେକଙ୍କୁ ଦବାଇଦେଲା । ଗୋଟିଏ ଦୃଷ୍ଟାନ୍ତ ଦିଏ : ମେଲେରିଆର ମୂଳ ଓ ପ୍ରତିଶୋଧକ ଆବିଷ୍କାର କରାଗଲା ଏବଂ ଏଥିରେ ସନ୍ଦେହ ନାହିଁ ଯେ ଆବଶ୍ୟକୀୟ ପ୍ରତିକାର କରାଗଲେ ଏହା ଯେ କୌଣସି ଅଞ୍ଚଳରୁ ଦୂର ହୋଇଯାଇପାରେ । ଆଜି ଯେ ମେଲେରିଆ ରହିଛି ଏବଂ ଭାରତରେ ଓ ଅନ୍ୟତ୍ର ହଜାର ହଜାର ଲୋକ ଏହାର ଶିକାର ହେଉଛନ୍ତି, ଏଥିପାଇଁ ବିଜ୍ଞାନର ଦୋଷ ନୁହେଁ; କିନ୍ତୁ ଦୋଷ ହେଉଛି ଏକ ବେଖାତିର ଦେଖାଉଥିବା ସରକାର ଏବଂ ଅଜ୍ଞ ଲୋକସମାଜର ।

ଯାନବାହନ ଓ ଯାତାୟାତ ପଥର ପ୍ରଗତି ହିଁ ସମ୍ଭବତଃ ଏହି ଶତାବ୍ଦୀର ସର୍ବାପେକ୍ଷା ଉଲ୍ଲେଖଯୋଗ୍ୟ ଲକ୍ଷଣ । ରେଲବାଇ, ବାଷ୍ପୀୟଯାନ, ବିଜୁଳି, ଟେଲିଗ୍ରାଫ୍ ଓ

ମଟରଗାଡ଼ି ପୃଥିବୀକୁ ସଂପୂର୍ଣ୍ଣ ରୂପେ ବଦଳାଇ ଦେଲା ଏବଂ ଏହା ପୂର୍ବରୁ ଯେପରି ଥିଲା ତାହା ଅପେକ୍ଷା ମାନବ ପାଇଁ ସମ୍ପୂର୍ଣ୍ଣ ଅଲଗା ସ୍ଥାନରେ ପରିଣତ କରିଦେଲା । ପୃଥିବୀ ସଙ୍କୁଚିତ ହୋଇଗଲା ଏବଂ ଏହାର ଅଧିବାସୀମାନେ ପରସ୍ପରର ନିକଟବର୍ତ୍ତୀ ହୋଇଗଲେ ଓ ପରସ୍ପରର ସ୍ୱୀତି ନୀତି ଅଧିକ ଦେଖିପାରିଲେ ଏବଂ ପରସ୍ପରର ଜ୍ଞାନ ଫଳରେ ଅଜ୍ଞତା ହେତୁ ଜାତ ହୋଇଥିବା ଅନେକ ପ୍ରତିବନ୍ଧକ ଦୂର ହୋଇଗଲା । ସାଧାରଣ ଭାବଧାରା ପ୍ରସାର ହେବାକୁ ଲାଗିଲା - ଏହା ଫଳରେ ସମଗ୍ର ଦୁନିଆରେ କେତେକ ପରିମାଣରେ ସମତା ଦେଖାଦେଲା । ଆମେ ଯେଉଁ କାଳ ବିଷୟ ଆଲୋଚନା କରୁଛେ, ଠିକ୍ ତାହା ଶେଷବେଳକୁ ବେତାର, ଟେଲିଗ୍ରାଫ ଓ ଉଡ଼ିବା ପ୍ରଣାଳୀ ବାହାରିଲା । ଏସବୁ ଏବେ ସାଧାରଣ କଥା ହୋଇଗଲାଣି ଏବଂ ତୁ ଉଡ଼ାଜାହାଜରେ ଅନେକ ଥର ଉପରକୁ ଉଠିଛୁ ଏବଂ ଏଥିରେ ଯାତ୍ରା କରିଛୁ—ଏ ସମ୍ବନ୍ଧରେ ବିଶେଷ କିଛି ଚିନ୍ତା କରି ନାହୁଁ । ବେତାର, ଟେଲିଗ୍ରାଫ ଓ ଉଡ଼ାଜାହାଜ ବିଂଶ ଶତାବ୍ଦୀରେ ଏବଂ ଆମ ନିଜ ଅମଳରେ ଘଟିଛି । ଲୋକେ ପ୍ରାୟ ବେଲୁନ (Balloon)ରେ ଉପରକୁ ଯାଆନ୍ତି; କିନ୍ତୁ କେବଳ ପୁରୁଣା ପୁରାଣ ଓ କାହାଣୀ ଆରବିଆନ୍ ନାଇଟ୍‌ସର ଉଡ଼ୁଥିବା ପଶ ଓ ଆମ ଭାରତୀୟ କାହାଣୀବର୍ଣ୍ଣିତ ଉଡ଼ାଂଖାଟୋଲା (Urankhatola) ବ୍ୟତୀତ କେହି ବାୟୁ ଅପେକ୍ଷା ଅଧିକ ଓଜନବିଶିଷ୍ଟ ଜିନିଷରେ ଉପରକୁ ଉଠି ନାହିଁ । ବାୟୁ ଅପେକ୍ଷା ଅଧିକ ଭାରବିଶିଷ୍ଟ କଳରେ ପ୍ରଥମେ ଉଇଲବର ଓ ଓଲଭିଲ ରାଇଟ ନାମକ ଆମେରିକାନ୍ ଭାତୃଦ୍ୱୟ ସଫଳ ହେଲେ—ସେମାନେ ବର୍ତ୍ତମାନ ଉଡ଼ାଜାହାଜର ଜନ୍ମଦାତା । ୧୯୦୩ ଡିସେମ୍ବର ମାସରେ ସେମାନେ ୩୦୦ ଗଜରୁ କମ୍ ଉଡ଼ିଥିଲେ; କିନ୍ତୁ ଏହା ସତ୍ତ୍ୱେ ସେମାନେ କିଛି କଲେ ଯାହା ଆଗରୁ କେବେ ହୋଇ ନ ଥିଲା । ତାପରେ ଉଡ଼ିବାରେ ପ୍ରଚୁର ପ୍ରଗତି ହେଲା ଏବଂ ୧୯୦୯ରେ ଯେତେବେଳେ ଫରାସୀ ବ୍ଲେରିଅଟ ଇଂଲିଶ୍ ପ୍ରଣାଳୀ ଉପରେ ଫ୍ରାନ୍‌ସରୁ ଇଂଲଣ୍ଡକୁ ଉଡ଼ିଆସିଲେ, ସେତେବେଳର ଯେଉଁ ଉତ୍ତେଜନା ସୃଷ୍ଟି ହୋଇଥିଲା, ତାହା ମୋର ମନେ ଅଛି । ଅଳ୍ପ କେତେଦିନ ପରେ ପାରିସରେ ଇଫେଲ ଟାଓ୍ୱାର ଉପରେ ପ୍ରଥମେ ଉଡ଼ାଜାହାଜ ଉଡ଼ିବାର ମୁଁ ଦେଖିଲି ଏବଂ ଅନେକବର୍ଷ ପରେ ୧୯୨୭ ମସିହା ମେ ମାସରେ ଯେତେବେଳେ ଲିଣ୍ଡବର୍ଗ ଆଟଲାଣ୍ଟିକ ପାର ହୋଇ ଏକ ଚୌପାଖ ତୀରପରି ଆସି ପାରିସ ଉଡ଼ାଜାହଜ ଘାଟୀ ଲେବର୍ଘେଟରେ ଓହ୍ଲାଇଲେ ସେତେବେଳେ ତୁ ଓ ମୁଁ ପାରିସରେ ଉପସ୍ଥିତ ଥିଲେ ।

ପୁଞ୍ଜିବାଦୀ ଶିଳ୍ପପ୍ରାଧାନ୍ୟ ଲାଭ କରିଥିବା କାଳରେ ଏସବୁ ହେଉଛି ଭଲ ଦିଗ । ମଣିଷ ଏ ଶତାବ୍ଦୀରେ ବିସ୍ମୟଜନକ ଜିନିଷ କଲା—ଏହା ଦୃଢ଼ ନିଶ୍ଚିତ । ଭଲ ଦିଗରେ ଆଉ ଏକ କଥା ରହିଛି । ଲୋଭୀ ଓ ଅର୍ଥ-ଗୃଧ୍ର ପୁଞ୍ଜିବାଦ ବଢ଼ିବା ସଙ୍ଗେ ସଙ୍ଗେ ଏହାକୁ ରୋକିବା ପାଇଁ ସହଯୋଗ ଆନ୍ଦୋଳନ ବାହାରିଲା । ଏହା ହେଉଛି ଲୋକ ସମଷ୍ଟି —ସାଧାରଣ-ଜିନିଷ କିଣା ବିକା ହେବ ଏବଂ ଲାଭ ନିଜ ଭିତରେ ବାଣ୍ଟି ନେବେ ।

ସାଧାରଣ ପୁଞ୍ଜିବାଦୀ ପଦ୍ଧତି ହେଉଛି ଗଳାକଟା ପ୍ରତିଯୋଗିତାର ପନ୍ଥା — ଏଥିରେ ପ୍ରତ୍ୟେକ ଲୋକ ଅନ୍ୟକୁ ଟପିଯିବା ପାଇଁ ଉଦ୍ୟମ କରେ । ସମବାୟ ପନ୍ଥା ପରସ୍ପର ସହଯୋଗ ଉପରେ ପ୍ରତିଷ୍ଠିତ । ତୁ ଅବଶ୍ୟ ଅନେକ ସମବାୟ ଭଣ୍ଡାର ଦେଖିଥିବୁ । ୧୯ଶ ଶତାବ୍ଦୀରେ ଇଉରୋପରେ ବହୁତ ପରିମାଣରେ ସମବାୟ ଆନ୍ଦୋଳନ ବୃଦ୍ଧି ପାଇଲା । ସମ୍ଭବତଃ ଗ୍ରେଟ ଡେନ୍‌ମାର୍କ ଦେଶରେ ଏହା ଅଧିକ ସଫଳ ହୋଇଥିଲା ।

ରାଜନୀତିକ କ୍ଷେତ୍ରରେ ଗଣତାନ୍ତ୍ରିକ ଭାବଧାରାର ବୃଦ୍ଧି ହେଲା ଏବଂ ପାର୍ଲିଆମେଣ୍ଟ ଓ ଆସେମ୍ବ୍ଲିମାନଙ୍କ ପାଇଁ ଭୋଟ ଦେବାର ଅଧିକାର ଅଧିକ ଲୋକ ପାଇଲେ । କିନ୍ତୁ ଏହି ଭୋଟାଧିକାର କେବଳ ପୁରୁଷଙ୍କ ପାଇଁ ସୀମାବଦ୍ଧ ଥିଲା ଏବଂ ନାରୀମାନେ ଅନ୍ୟଭାବରେ ଯେତେ ସମର୍ଥ ହେଲେ ସୁଦ୍ଧା ଏହି ଭୋଟାଧିକାର ପାଇଁ ଭଲ ବା ଉପଯୁକ୍ତ ବୋଲି ତାଙ୍କୁ ବିବେଚନା କରାଯାଉ ନ ଥିଲା । ଅନେକ ସ୍ତ୍ରୀଲୋକ ଏଥିରେ ଅସନ୍ତୋଷ ଜାହିର କଲେ ଏବଂ ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଇଂଲଣ୍ଡରେ ସ୍ତ୍ରୀଲୋକମାନେ ଏକ ବିରାଟ ଆନ୍ଦୋଳନ ଆରମ୍ଭ କଲେ—ଏହାକୁ ନାରୀ ଭୋଟାଧିକାର ଆନ୍ଦୋଳନ କହନ୍ତି ଏବଂ ପୁରୁଷମାନେ ଏହାକୁ 'ଗୁରୁତ୍ୱ ନ ଦେଇଥିବାରୁ ଏବଂ ଏଥିପ୍ରତି ମନଯୋଗ ଦେଉ ନ ଥିବାରୁ ଏହି ମତ ଦାବୀ କରୁଥିବା ନାରୀମାନେ ଦୃଷ୍ଟି ଆକର୍ଷଣ କରିବା ନିମନ୍ତେ ଜବରଦସ୍ତ ଏବଂ ଏପରି କି ହିଂସା ଉପାୟ ଗ୍ରହଣ କଲେ । ସେମାନେ ଗୋଟିଏ ଲେଖାଏଁ "ଦୃଶ୍ୟ" ସୃଷ୍ଟି କରି ପାର୍ଲିଆମେଣ୍ଟ କାର୍ଯ୍ୟରେ ଗୋଳମାଳ କଲେ ଏବଂ ବ୍ରିଟିଶ ମନ୍ତ୍ରୀମଣ୍ଡଳ ସଭ୍ୟଙ୍କ ଉପରେ ଆକ୍ରମଣ କଲେ । ତେଣୁ ଏହି ମନ୍ତ୍ରୀମାନେ ପୁଲିସ ଆଶ୍ରାରେ ଜଗୁଆଳି ରଖି ରହିଲେ । ବିରାଟ ଆକାରରେ ସଂଗଠିତ ହିଂସା ଦେଖାଦେଲା ଏବଂ ଅନେକ ସ୍ତ୍ରୀଲୋକଙ୍କୁ ଜେଲ ପଠାଇ ଦିଆଗଲା । ସେଠି ସେମାନେ ଅନଶନ ଆରମ୍ଭ କଲେ । ସେହିହେତୁ ସେମାନଙ୍କୁ ଖଲାସ କରି ଦିଆଗଲା ଏବଂ ସେମାନଙ୍କ ଅବସ୍ଥା ଭଲ ହେବା ସଙ୍ଗେ ସଙ୍ଗେ ପୁଣି ଜେଲକୁ ନିଆଗଲା । ଏହା କରିବାକୁ ଅନୁମତି ଦେଇ ପାର୍ଲିଆମେଣ୍ଟ ଏକ ବିଶେଷ ଆଇନ୍ ପାସ୍ କଲା ଏବଂ ଏହାକୁ "ବିରାଡ଼ି ଓ ମୂଷା ଆଇନ୍" ବୋଲି କୁହାଯାଉଥିଲା । ଯାହାହେଉ ଆନ୍ଦୋଳନ କରୁଥିବା ନାରୀମାନଙ୍କର ଏହି ପ୍ରଣାଳୀ ଫଳରେ ବ୍ୟାପକ ଦୃଷ୍ଟି ଏଥିପ୍ରତି ଆକୃଷ୍ଟ କରାଇବାରେ ସେମାନେ କୃତକାର୍ଯ୍ୟ ହେଲେ । କେତେକ ବର୍ଷ ପରେ ପୃଥିବୀଯୁଦ୍ଧ ଆରମ୍ଭ ହେଲା ପରେ ନାରୀମାନଙ୍କୁ ଭୋଟ ଅଧିକାର ଦେବା ସ୍ୱୀକାର କରାଗଲା ।

ନାରୀମାନଙ୍କ ଆନ୍ଦୋଳନ କେବଳ ଭୋଟ ପ୍ରାର୍ଥନାରେ ସୀମାବଦ୍ଧ ନ ଥିଲା । ମଣିଷ ସହିତ ସମାନଭାବରେ ପ୍ରତ୍ୟେକ ଜିନିଷ ସେମାନଙ୍କର ଦାବୀ ଥିଲା । ଏବକାଳ ପର୍ଯ୍ୟନ୍ତ ପାଶ୍ଚାତ୍ୟଦେଶର ନାରୀମାନଙ୍କ ସ୍ଥିତି ବଡ଼ ଖରାପ ଥିଲା । ସେମାନଙ୍କର କିଛି ଅଧିକାର ନ ଥିଲା । ଆଇନ ଅନୁସାରେ ଇଂରେଜ ମହିଳାମାନଙ୍କ ସଂପତ୍ତି-ମାଲିକ ହେବାର କ୍ଷମତା ନ ଥିଲା—ସ୍ୱାମୀହିଁ ସବୁ ପାଉଥିଲା—ସ୍ତ୍ରୀ ନିଜେ ଅର୍ଜନ କରିଥିବା ଧନ ମଧ୍ୟ । ତେଣୁ ଆଜ ହିନ୍ଦୁ

ଆଇନ ଅନୁସାରେ ନାରୀମାନଙ୍କ ଅବସ୍ଥା ଯେପରି ରହିଛି, ସେମାନଙ୍କ ଆଇନ ମଧ୍ୟ ତାଠାରୁ ଖରାପ ଥିଲା ଏବଂ ଏହା ଅତି ଲଜ୍ଜାର କଥା । ଆଜି ଅନେକ ପ୍ରକାରେ ଭାରତୀୟ ନାରୀ ଯେପରି ରହିଛି, ସେପରି ପାଶ୍ଚାତ୍ୟର ନାରୀମାନେ ବାସ୍ତବିକ ଏକ ପରାଧୀନ ଜାତି ଥିଲେ । ଭୋଟପାଇଁ ଆନ୍ଦୋଳନ ଆରମ୍ଭ ହେବାର ବହୁପୂର୍ବରୁ ଅନ୍ୟ ଦିଗରେ ନାରୀମାନେ ପୁରୁଷ ସହ ସମାନ ବ୍ୟବହାର ଦାବୀ କଲେ । ଶେଷରେ ୧୮୮୦ ବେଳକୁ ଇଂଲଣ୍ଡରେ ସମ୍ପତ୍ତିର ମାଲିକ ହେବାରେ କିଛି ଅଧିକାର ପାଇଲେ । କାରଖାନା ମାଲିକମାନେ ସମର୍ଥନ କରିବାରୁ ନାରୀମାନେ ଆଂଶିକଭାବରେ ଏଥିରେ କୃତକାର୍ଯ୍ୟ ହେଲେ; ସେମାନେ ଭାବିଲେ ଯେ ସ୍ତ୍ରୀଲୋକମାନେ ଯଦି ନିଜ ରୋଜଗାର ରଖିବାର ଅଧିକାର ପାଇବେ, କାରଖାନାରେ କାମ କରିବା ପାଇଁ ଏହା ତାଙ୍କର ଏକ ପ୍ରଲୋଭନ ହେବ ।

ପ୍ରତ୍ୟେକ ଦିଗରେ ଆମେ ପରିବର୍ତ୍ତନ ଦେଖିପାରୁ; କିନ୍ତୁ ସରକାରମାନଙ୍କର ମତିଗତିରେ ନୁହେଁ । ଫ୍ଲୋରେଣ୍ଟାଇନ ମେକିଆଭେଲୀ ଦୀର୍ଘକାଳରୁ ଯେଉଁ ଶଠତା ଓ ଚକ୍ରାନ୍ତ ଉପାୟ ସୁପାରିସ କରିଥିଲେ, ପ୍ରଧାନ ଶକ୍ତିମାନେ ତାହା ଅନୁସରଣ କଲେ ଏବଂ ତାର ୧୮୦୦ ବର୍ଷ ପୂର୍ବରୁ ଏକ ଭାରତୀୟ ମନ୍ତ୍ରୀ ଚାଣକ୍ୟ ବି ଏହି ନୀତି ପ୍ରଚାର କରିଥିଲେ । ସେମାନଙ୍କ ଭିତରେ ଅବିରାମ ପ୍ରତିଯୋଗିତା ଥିଲା; ଗୁପ୍ତ ସନ୍ଧି ଓ ମିତ୍ରତା ଥିଲା ଏବଂ ପ୍ରତ୍ୟେକ ଶକ୍ତି ଅନ୍ୟକୁ ଟପିବା ପାଇଁ ସର୍ବଦା ଚେଷ୍ଟା କରୁଥିଲେ । ଆମେ ଦେଖିଛେ ଇଉରୋପ କିପରି କର୍ମଠ ଓ ଉଗ୍ର କାର୍ଯ୍ୟ କଲା; ଏସିଆ ନିଷ୍କ୍ରିୟ ଥିଲା । ଆମେରିକା ନିଜ କାର୍ଯ୍ୟରେ ବ୍ୟସ୍ତ ଥିବାରୁ ପୃଥିବୀ ରାଜନୀତିରେ ଅପେକ୍ଷାକୃତ ଏହାର ଭାଗ କମ୍ ଥିଲା ।

ଜାତୀୟତା ବୃଦ୍ଧି ସଙ୍ଗେ ସଙ୍ଗେ "ମୋ ଦେଶ ଠିକ୍ ବା ଭୁଲ"—ଏହି ଭାବ ବୃଦ୍ଧି ହେଲା । ବ୍ୟକ୍ତିବିଶେଷଙ୍କ ପକ୍ଷରେ ଯେଉଁସବୁ କାର୍ଯ୍ୟ ଖରାପ ଓ ଅନୈତିକ ବୋଲି ଧରାଯାଏ ଦେଶସବୁ ସେପରି କାର୍ଯ୍ୟ କରି ଗୌରବାନ୍ୱିତ ବୋଧକଲେ । ଡେଣ୍ଟ୍ ବ୍ୟକ୍ତିବିଶେଷର ନୈତିକତା ଓ ଦେଶର ନୈତିକତା ଭିତରେ ଅପୂର୍ବ ବୈଷମ୍ୟ ଦେଖାଇଲେ । ଏହି ଉଭୟ ଭିତରେ ବହୁତ ପାର୍ଥକ୍ୟ ଥିଲା ଏବଂ ବ୍ୟକ୍ତିବିଶେଷ ପକ୍ଷରେ ଯାହା ପାପ, ଦେଶ ବା ଜାତି ପକ୍ଷରେ ତାହା ଗୁଣ ବୋଲି ସ୍ୱୀକାର କରାଗଲା । ବ୍ୟକ୍ତିଗତରୂପେ କୌଣସି ନରନାରୀ ପକ୍ଷରେ ସ୍ୱାର୍ଥପରତା, ଲୋଭ, ଔଦ୍ଧତ୍ୟ ଓ ଅଶିଷ୍ଟତା ନିତାନ୍ତ ଖରାପ ଓ ଅସହ୍ୟ ବୋଲି ଧରାଯାଏ । କିନ୍ତୁ ବଡ଼ ଗୋଷ୍ଠୀ ପକ୍ଷରେ, ଜାତି ପକ୍ଷରେ ଦେଶଭକ୍ତି ଓ ଦେଶପ୍ରୀତି ଆଦି ଉଦାର ଆବରଣ ତଳେ ଏହାକୁ ଉତ୍ସାହିତ ଓ ପ୍ରଶଂସା କରାଗଲା । ଏପରିକି ବହୁସଂଖ୍ୟକ ଜାତି ଅନ୍ୟ ଜାତି ଉପରେ ଅତ୍ୟାଚାର ଓ ହତ୍ୟା କରୁଥିଲେ ବି ପ୍ରଶଂସାର୍ହ ହେଲା । ଜଣେ ଆଧୁନିକ ଲେଖକ ଲେଖିଛନ୍ତି ଏବଂ ତାହା ଏକଦମ ଠିକ୍—"ବ୍ୟକ୍ତିବିଶେଷର ପାପକୁ ଅଧିକରୁ ଅଧିକ ସଂପ୍ରଦାୟଙ୍କ ଭିତରେ ପୂରାଇବା ଲାଗି ସଭ୍ୟତାର ଯୋଜନା କରାଯାଇଛି ।"

# ୧୪୭ : ବିଶ୍ୱଯୁଦ୍ଧର ଆରମ୍ଭ

ମାର୍ଚ୍ଚ ୨୩, ୧୯୩୩

ପରସ୍ପର ସହ ବ୍ୟବହାରରେ ଜାତିସବୁ କିପରି ଦୋଷଯୁକ୍ତ ଅନୀତିପୂର୍ଣ୍ଣ ମୁଁ ସେ କଥା ବର୍ଣ୍ଣାଇଦେଇ ଗତ ଚିଠି ଶେଷକରିଛି । ଯେଉଁଠାରେ କରିବାର ସୁବିଧା ଥାଏ, ସେଠାରେ ଅନ୍ୟମାନଙ୍କର ସ୍ୱାଧୀନତାର ଏକ ଚିହ୍ନ ବୋଲି ସେମାନେ ସ୍ୱୀକାର କଲେ—ଏହା ହେଉଛି "ହଟିବା ନାହିଁ କି ବାଟ ଛାଡ଼ିବା ନାହିଁ" ନୀତି । ଭଲ ଆଚରଣ କରିବାନିମନ୍ତେ ତାକୁ କହିବାଲାଗି କେହି ନାହିଁ । କାରଣ ସେମାନଙ୍କର ତ ପୁଣି ସ୍ୱାଧୀନତା ଅଛି ! ଅନ୍ୟ ହସ୍ତକ୍ଷେପ କଲେ ବିରକ୍ତ ଦେଖାଇବେ ନାହିଁ ! ତାଙ୍କ ଆଚରଣରେ ଏକମାତ୍ର ଲଗାମ ହେଉଛି ଫଳାଫଳର ଭୟ । ତେଣୁ କେତେକ ପରିମାଣରେ ବଳବାନଙ୍କୁ ସମ୍ମାନ ଦେଖାଗଲା; କିନ୍ତୁ ଦୁର୍ବଳଙ୍କୁ ତଳିଛ ଅବଜ୍ଞ ରଖାଗଲା ।

ଏହି ଜାତି ବା ଦେଶ ଭିତରେ ପ୍ରତିଦ୍ୱନ୍ଦୀ ଭାବ ପୁଞ୍ଜିବାଦୀ ଶିଳ୍ପ ବୃଦ୍ଧିର ଅନିବାର୍ଯ୍ୟ ପରିଣତି । ଆମେ ଦେଖିଛେ ବଜାର ଓ କଞ୍ଚାମାଲ ପାଇଁ କିପରି ସର୍ବଦା ଦାବୀ ବଢ଼ିବାରୁ ପୁଂଜିବାଦୀ ଶକ୍ତିମାନେ ସାମ୍ରାଜ୍ୟ ନିମନ୍ତେ ଦୁନିଆ ଚାରିଆଡ଼େ ଖେପିଗଲେ । ସେମାନେ ଏସିଆ ଓ ଆଫ୍ରିକା ଆଡ଼େ ଧାଇଁଲେ ଏବଂ ଶୋଷଣ କରିବା ନିମନ୍ତେ ଯେତେଦୂର ପାରିଲେ ସେତେ ଅଞ୍ଚଳ ଦଖଲ କରିଗଲେ । ଦୁନିଆସାରା ବ୍ୟାପିଲା ପରେ ଆଉ ଅନ୍ୟତ୍ର କେଉଁଠିକି ଯିବାର ନ ଥିଲା—ତେଣୁ ସାମ୍ରାଜ୍ୟବାଦୀ ଶକ୍ତିମାନେ ପରସ୍ପର ପ୍ରତି ତୀକ୍ଷ୍ଣ ଦୃଷ୍ଟି ପକାଇବାକୁ ଲାଗିଲେ ଏବଂ ପରସ୍ପରର ଅଧିକୃତ ଅଞ୍ଚଳ ଦଖଲ କରିବାକୁ ଲାଗିଲେ । ଏସିଆ, ଆଫ୍ରିକା ଓ ଇଉରୋପରେ ଏହି ପ୍ରଧାନ ଶକ୍ତିମାନଙ୍କ ଭିତରେ ବରାବର ସଂଘର୍ଷ ଲାଗି ରହିଥିଲା ଏବଂ କ୍ରୋଧାଗ୍ନି ଜଳିଉଠିଲା ଓ ଯୁଦ୍ଧ ଆସି ଝୁଲିବା ପରି ମନେହେଲା । କେତେକ ଅନ୍ୟମାନଙ୍କ ଅପେକ୍ଷା ଭଲ ଅବସ୍ଥାରେ ଥିଲେ ଏବଂ ଇଂଲଣ୍ଡର ଶିଳ୍ପଦିଗରେ ନେତୃତ୍ୱ ଓ ବିଶାଳ ସାମ୍ରାଜ୍ୟ ଯୋଗୁଁ ଏହା ସମସ୍ତଙ୍କ ଭିତରେ ବଡ଼ ଭାଗ୍ୟବାନ ପରି ମନେହେଲା । କିନ୍ତୁ ଇଂଲଣ୍ଡ ବି ସନ୍ତୁଷ୍ଟ ନ ଥିଲା; କାରଣ ଯାହାର ଯେତେ ଅଧିକ ଥାଏ, ସେ ସେତେ ଅଧିକ ପୁଣି ପାଇବାକୁ ଚାହେଁ । ଇଂଲଣ୍ଡର "ସାମ୍ରାଜ୍ୟ-ନିର୍ମାତା"ମାନଙ୍କ ମସ୍ତିଷ୍କରେ ସାମ୍ରାଜ୍ୟ ବିସ୍ତାର କରିବା ନିମନ୍ତେ ବିସ୍ତୃତ ଯୋଜନାମାନ ଖେଳିଲା । ଉତ୍ତରରୁ ଦକ୍ଷିଣ, କାଏରୋଠାରୁ କେପ୍ ପର୍ଯ୍ୟନ୍ତ ଅବିଚ୍ଛିନ୍ନ ଭାବରେ ଆଫ୍ରିକା ସାମ୍ରାଜ୍ୟ ବିସ୍ତାରର ଯୋଜନା ହେଲା । ଜର୍ମାନୀ ଓ ସଂଯୁକ୍ତ ରାଷ୍ଟ୍ର ଶିଳ୍ପ ଦିଗରେ ପ୍ରତିଯୋଗିତା କରିବା ଦେଖି ଇଂଲଣ୍ଡ ମଧ୍ୟ ଖୁବ୍ ବ୍ୟସ୍ତ ହୋଇପଡ଼ିଲା । ଏହି-ସବୁ ଦେଶରେ ଇଂଲଣ୍ଡ ଅପେକ୍ଷା ଶସ୍ତା ମୂଲ୍ୟରେ ଜିନିଷ ତିଆରିହେଲା ଏବଂ ତେଣୁ ଏମାନେ ଇଂଲଣ୍ଡ ହାତରୁ ବଜାର ଛଡ଼ାଇ ନେଇଗଲେ ।

ଯେଉଁଠି କପାଳବଳରୁ ଇଂଲଣ୍ଡ ସନ୍ତୁଷ୍ଟ ନ ହେଉଛି, ସେଠି ଅନ୍ୟମାନେ ଆହୁରି ଅସନ୍ତୁଷ୍ଟ ଥିଲେ । ବିଶେଷତଃ ଜର୍ମାନୀ ବହୁତ ଡେରିରେ ପ୍ରଧାନ ଶକ୍ତିମାନଙ୍କ ସହ ଯୋଗଦେଲା ଏବଂ ଦେଖିଲା ଯେ ସବୁ ପାଚିଲାଫଳ ତୋଳା ହୋଇଯାଇଛି । ଏହା ବିଜ୍ଞାନ, ଶିକ୍ଷା, ଶିଳ୍ପରେ ପ୍ରଭୂତ ଉନ୍ନତି କରିଥିଲା ଏବଂ ତାହା ସଙ୍ଗେ ସଙ୍ଗେ ଏକ ଅପୂର୍ବ ସେନାବାହିନୀ ଗଠନ କରିଥିଲା । ଏପରିକି ଶ୍ରମିକମାନଙ୍କପାଇଁ ସମାଜ ସଂସ୍କାର ଆଇନରେ ଏହା ଇଂଲଣ୍ଡ ଓ ଅନ୍ୟାନ୍ୟ ସବୁ ଦେଶଠାରୁ ଆଗୁଆ ଥିଲା । ଯଦିଓ ଜର୍ମାନୀ ଯେତେବେଳେ ମଞ୍ଚଉପରକୁ ଆସିଲା ସେତେବେଳେ ଅନ୍ୟ ଇଉରୋପୀୟ ଶକ୍ତି ପୃଥିବୀର ବହୁ ଅଂଶ ଦଖଲ କରିସାଇଥିଲେ ଏବଂ ଶୋଷଣ କରିବା ପଥ ସୀମାବଦ୍ଧ ଥିଲା; ତଥାପି କେବଳ କଠିନଶ୍ରମ ଓ ଆତ୍ମଶୃଙ୍ଖଳା ବଳରେ ଶିଳ୍ପଜାତ ପୁଞ୍ଜିବାଦ ଯୁଗରେ ଏହା ସବୁଠାରୁ ଶକ୍ତିଶାଳୀ ଓ ଅଧିକ ସମର୍ଥ ଦେଶ ହୋଇଉଠିଲା । ତାର ବାଣିଜ୍ୟ ଜାହାଜସବୁ ପ୍ରତ୍ୟେକ ବନ୍ଦରରେ ଦେଖାଦେଲା ଏବଂ ତାର ହାମ୍ବର୍ଗ ଓ ବ୍ରେମେନ ବନ୍ଦର ଦୁଇଟି ପୃଥିବୀର ବନ୍ଦରମାନଙ୍କ ଭିତରେ ସର୍ବଶ୍ରେଷ୍ଠ ଅଟେ । ଜର୍ମାନୀ ବେପାରବାହୀ ନୌକାସବୁ ଯେ ଖାଲି ଜର୍ମାନ ତିଆରି ଜିନିଷ ଦୂରଦେଶମାନଙ୍କୁ ବହିନେଲା ତାହା ନୁହେଁ, ଅନ୍ୟ ଦେଶମାନଙ୍କର ଚଳନ୍ତି ବେପାର ବି ଏହା ଅଧିକାର କଲା ।

ନୂତନ ଜର୍ମାନ ସାମ୍ରାଜ୍ୟ ଏପରି ସାଫଲ୍ୟଲାଭ କରିବା ପରେ ଏବଂ ତାର ଶକ୍ତି ସମ୍ବନ୍ଧରେ ସେ ପୂର୍ଣ୍ଣ-ଚେତନ ଅବସ୍ଥାରେ ଥିବାବେଳେ ଆହୁରି ଅଧିକ ବୃଦ୍ଧିରେ କଟକଣା ହେବାଦ୍ୱାରା ବିରକ୍ତ ହେବା ତାହାପକ୍ଷରେ କିଛି ବିଚିତ୍ର ନୁହେଁ । ଜର୍ମାନ ସାମ୍ରାଜ୍ୟର ନେତା ଥିଲା ପ୍ରୁସିଆ ଏବଂ ପ୍ରୁସିଆ ଜମିଦାର ଓ ସାମରିକ ଶ୍ରେଣୀ ହିଁ କ୍ଷମତାରେ ଥିଲେ । ସେମାନେ କେବେହେଁ ନମ୍ରତା ଦେଖାଇଥିବାର ଜଣା ନାହିଁ । ସେମାନେ ଉଦ୍ଧତ ଥିଲେ ଓ ନିର୍ମମ ଭାବରେ ଉଦ୍ଧତ ହେବାରେ ଗର୍ବ ଅନୁଭବ କରୁଥିଲେ ଏବଂ ନିଜକୁ ଜାହିର କରିବା ଭାବ ପାଇଁ ସେମାନେ ଏକ ଆଦର୍ଶ ନେତା ପାଇଲେ ସେ ହେଉଛନ୍ତି ହୋହେଞ୍ଜୋଲର୍ଣ୍ଣ ବଂଶର କାଇଜର ଦ୍ୱିତୀୟ ଉଇଲ୍ୟମ୍ । କାଇଜର ଘୋଷଣା କଲେ ଯେ ଜର୍ମାନୀ ପୃଥିବୀର ନେତା ହେବ; ତାର ଦୁନିଆରେ ସ୍ଥାନ ଦରକାର; ସମୁଦ୍ର ଉପରେ ହିଁ ତାର ଭବିଷ୍ୟତ ନିର୍ଭର କରୁଛି; ଜର୍ମାନ 'କଲଚର' ବା ସଂସ୍କୃତି ସାରା ଦୁନିଆରେ ପ୍ରସାର କରିବା ହେଉଛି ତାର ଉଦ୍ଦେଶ୍ୟ ।

ପୂର୍ବରୁ ଅନ୍ୟ ନେତା ଓ ଜାତିସବୁ ବି ଏହିପରି କଥାସବୁ କହି ଆସିଛନ୍ତି । ଜର୍ମାନୀର 'କଲଚର' ଇଂଲଣ୍ଡର "ଗୋରା ଲୋକର ବୋଝ" ଓ ଫ୍ରାନ୍ସର "ସଭ୍ୟ କରିବା ଉଦ୍ଦେଶ୍ୟ" ବି ଏକା କଥା । ଇଂଲଣ୍ଡ ସମୁଦ୍ରରେ ସର୍ବଶ୍ରେଷ୍ଠ ଶକ୍ତି ବୋଲି ଦାବୀ କରେ ଏବଂ ପ୍ରକୃତରେ ଏହା ଠିକ୍ ମଧ୍ୟ । ଶିକଏ ବଢ଼େଇକରି ଓ ବିକୃତଭାବରେ ହେଲେ କଣ ହେବ କାଇଜର ଜର୍ମାନର ଦାବୀ ଯାହା ଥିଲା, ଅନେକ ଇଂରେଜ ଲୋକ ଇଂଲଣ୍ଡ ପାଇଁ ବି ସେହି ଦାବୀ କରୁଥିଲେ । ପ୍ରଭେଦ ଏତିକି ଯେ ଇଂଲଣ୍ଡର ଦଖଲରେ ସବୁ ଥିଲା ଏବଂ ଜର୍ମାନୀର କିଛି ନ ଥିଲା । ଯାହାହେଉ କାଇଜରଙ୍କ ଉଚ୍ଚ ଘୋଷଣାମାନଙ୍କରେ ବ୍ରିଟିଶ ବଡ଼ ବିଗିଡ଼ିଗଲେ । ଆଉ କୌଣସି ଜାତି ପୃଥିବୀରେ ମୁଖ୍ୟଜାତି ହେବାର କଳ୍ପନା ସୁଦ୍ଧା କରିପାରେ—

ଏହି ଭାବନା ହିଁ ତାଙ୍କ ପକ୍ଷରେ ଅତ୍ୟନ୍ତ ଅରୁଚିକର ବୋଧହେଲା । ଏହା ଏକ ପ୍ରକାର ବଡ଼ିମା; ଯେଉଁ ଇଂଲଣ୍ଡ ନିଜକୁ ମୁଖ୍ୟଜାତି ବୋଲି ବିଗ୍ଭର କରୁଥିଲା ତା ଉପରେ ଦୁଷ୍ଟଭାବରେ ଆକ୍ରମଣ । ସମୁଦ୍ରପଥ ତ ଶହେ ବର୍ଷ ପୂର୍ବେ ଟ୍ରାଫଲଗାରରେ ନେପୋଲିୟନର ପରାଜୟ ଦିନଠାରୁ ଇଂଲଣ୍ଡର ହାତରପାଞ୍ଚ ଜିନିଷ ବୋଲି ଧରାଯାଇଛି ଏବଂ ଏହି ଅବସ୍ଥିତିରେ କୌଣସି ପ୍ରକାର ଆଞ୍ଚ ଲଗାଇବା ନିମନ୍ତେ ଜର୍ମାନୀ ଓ ଅନ୍ୟ କୌଣସି ଦେଶପକ୍ଷରେ ସାହସ କରିବା ନିତାନ୍ତ ଅନୁପଯୋଗୀ ବୋଲି ଇଂରେଜମାନେ ମନେ କଲେ । ବ୍ରିଟେନ ଯଦି ସମୁଦ୍ରରେ ଶକ୍ତିଶାଳୀ ହୋଇ ନ ରହେ ତେବେ ତାର ସୁବିସ୍ତୃତ ସାମ୍ରାଜ୍ୟର ଦଶା କ'ଣ ହେବ ?

କାଇଜରର ଆହ୍ୱାନ ଓ ଧମକ ଅତ୍ୟନ୍ତ ଖରାପ ଥିଲା; ଆହୁରି ଖରାପ କଥା ହେଉଛି, ସେ ପ୍ରକୃତରେ ନିଜର ସମୁଦ୍ରଶକ୍ତି ବଢ଼ାଇ ଏହାକୁ କାର୍ଯ୍ୟକାରୀ କରିବାକୁ ଲାଗିଲା । ଏଥିରେ ବ୍ରିଟିଶଙ୍କର ମତଗତି ଏକଦମ୍ ବିଗିଡ଼ିଗଲା ଏବଂ ସେମାନେ ମଧ୍ୟ ନୌଶକ୍ତି ବୃଦ୍ଧି କଲେ । ଏହିରୂପେ ଦୁହିଁଙ୍କ ଭିତରେ ନୌଶକ୍ତିରେ ପ୍ରତିଯୋଗିତା ଆରମ୍ଭ ହେଲା ଏବଂ ଉଭୟ ଦେଶର ସଂବାଦପତ୍ରମାନେ ଅଧିକରୁ ଅଧିକ ଯୁଦ୍ଧଜାହାଜ ଦାବୀ କରି ଆନ୍ଦୋଳନ ଜାରି କଲେ ଏବଂ ଜାତୀୟ ବିଦ୍ୱେଷ ବୃଦ୍ଧି କରାଇଲେ ।

ଇଉରୋପରେ ଏହା ଏକ ବିପଦଘାଟି । ଆହୁରି ଅନେକ ବି ଥିଲା । ଫ୍ରାନ୍ସ ଓ ଜର୍ମାନୀ ଭିତରେ ଅବଶ୍ୟ ପୁରୁଣା ଶତ୍ରୁତା ଥିଲା ଏବଂ ୧୮୭୦ରେ ପରାଜୟର କଣ୍ଟ ଫ୍ରେଞ୍ଚ ଫରାସୀଲୋକଙ୍କ ମନ ଭିତରେ ଆଘାତ କରୁଥିଲା ଏବଂ ସେମାନେ ପ୍ରତିଶୋଧ ନେବାର ସ୍ୱପ୍ନ ଦେଖିଥିଲେ । ବଲକାନ୍ ରାଜ୍ୟ ତ ସବଂଦା ବାରୁଦ ବାକ୍ସ ପରି ଥିଲା— ସେଠି ବିଭିନ୍ନ ସ୍ୱାର୍ଥର ସଂଘାତ ଗ୍ଭଲିଥାଏ । ଜର୍ମାନୀ ପଶ୍ଚିମ ଏସିଆରେ ନିଜର ପ୍ରଭାବ ବଢ଼ାଇବା ନିମନ୍ତେ ତୁର୍କି ସହିତ ବନ୍ଧୁତା କରିବାକୁ ଲାଗିଲା । ବାଗଦାଦ୍‌କୁ କନ୍‌ଷ୍ଟାଣ୍ଟିନୋପଲ ଓ ଇଉରୋପ ସହଯୋଗ କରି ବାଗଦାଦ ପର୍ଯ୍ୟନ୍ତ ଏକ ରେଳରାସ୍ତା ନିର୍ମାଣ କରିବା ନିମନ୍ତେ ପ୍ରସ୍ତାବ ହେଲା । ଏହା ଏକ ନିତାନ୍ତ ବାଞ୍ଛନୀୟ ପ୍ରସ୍ତାବ; କିନ୍ତୁ ଜର୍ମାନୀ ଏହି ବାଗଦାଦ ରେଳରାସ୍ତାକୁ ନିୟନ୍ତ୍ରଣ କରିବାକୁ ଇଚ୍ଛା କରୁଥିବାରୁ ଜାତୀୟ ଈର୍ଷା ଏଥିରେ ଜାଗ୍ରତ ହେଲା ।

କ୍ରମେ ଯୁଦ୍ଧଆତଙ୍କ ଇଉରୋପରେ ବ୍ୟାପିଲା ଏବଂ ଆତ୍ମରକ୍ଷା ପାଇଁ ବିଭିନ୍ନ ଶକ୍ତିମାନେ ମିତ୍ରତା ବାନ୍ଧିବାରେ ଲାଗିଲେ । ପ୍ରଧାନ ଶକ୍ତିଗୁଡ଼ିକ ଦୁଇ ଦଳରେ ବିଭକ୍ତ ହେଲେ; ଜର୍ମାନୀ, ଅଷ୍ଟ୍ରିଆ ଓ ଇଟାଲୀର ତ୍ରିଶକ୍ତି ମିଳନ ଏବଂ ଇଂଲଣ୍ଡ, ଫ୍ରାନ୍ସ ଓ ରୁଷ ଏହି ତ୍ରିକ-ଶକ୍ତିର ସମ୍ମିଳନ । ଏହି ତ୍ରିଶକ୍ତିର ମିଳନରେ ଇଟାଲୀ ଏକ ଅତି ଉଦାସୀନ ସଭ୍ୟ ଥିଲା; ପ୍ରକୃତରେ ଯୁଦ୍ଧ ଆରମ୍ଭ ହେବାପରେ ସେ ନିଜର ପ୍ରତିଶ୍ରୁତି ଭାଙ୍ଗି ଅନ୍ୟ ପକ୍ଷରେ ଯୋଗଦାନ କଲା । ଅଷ୍ଟ୍ରିଆ ଏକ ବ୍ୟାଧିଗ୍ରସ୍ତ ସାମ୍ରାଜ୍ୟ ଥିଲା—ମାନଚିତ୍ରରେ ଦେଖିବାକୁ ବିଶାଳ—କିନ୍ତୁ ଏଥିର ଅନ୍ତର୍ଗତ ଦେଶଗୁଡ଼ିକ ଭିତରେ ବହୁ ରାଜ୍ୟ ବିଦ୍ରୋହୀ ଥିଲେ । ଏହାର ରାଜଧାନୀ

ଥିଲି ବିଜ୍ଞାନ, ସଂଗୀତ ଓ କଳାର ପ୍ରଧାନ କେନ୍ଦ୍ର ଭିଏନା ହେବ । ସୁତରାଂ ପ୍ରକୃତରେ ତ୍ରିଶକ୍ତି ମିଳନର ଅର୍ଥ ହେଉଛି ଜର୍ମାନୀ । ମାତ୍ର ପରୀକ୍ଷା ବେଳ ନ ପହଞ୍ଚିବା ପର୍ଯ୍ୟନ୍ତ ଅଷ୍ଟ୍ରିଆ ଓ ଇଟାଲି କପରି ରୂପ ଧରିବେ ଏହା କାହାରିକି ଜଣା ନ ଥିଲା ।

ତେଣୁ ଉପସ୍ଥିତି ଇଉରୋପରେ ସୃଷ୍ଟି କଲା ଏବଂ ଭୟ ଏକ ଭୟାନକ ଜିନିଷ । ପ୍ରତ୍ୟେକ ଦେଶ ଯୁଦ୍ଧପାଇଁ ପ୍ରସ୍ତୁତ ହେଲା ଓ ପାରୁପର୍ଯ୍ୟନ୍ତ ଅସ୍ତ୍ରଶସ୍ତ୍ର ସଜ୍ଜିତ ହେବାକୁ ଲାଗିଲା । ଗୋଟାଏ ଅସ୍ତ୍ର ପ୍ରତିଯୋଗିତା ଚାଲିଲା ଏବଂ ଏହି ପ୍ରତିଯୋଗିତାରେ ବିଶେଷତ୍ୱ ହେଉଛି ଯଦି ଗୋଟିଏ ଦେଶ ଅସ୍ତ୍ରଶସ୍ତ୍ର ବୃଦ୍ଧି କରେ, ତେବେ ଅନ୍ୟ ଦେଶସବୁ ସେପରି କରିବା ନିମନ୍ତେ ବାଧ ହୁଅନ୍ତି । ସେଉଁସବୁ ବ୍ୟକ୍ତିବିଶେଷଙ୍କର ବଡ଼ବଡ଼ କାରଖାନାମାନଙ୍କରେ ଅସ୍ତ୍ରଶସ୍ତ୍ର ଅର୍ଥାତ୍ ବନ୍ଧୁକ, ଯୁଦ୍ଧ ଜାହାଜ, ଗୋଲା ବାରୁଦ ଏବଂ ଯୁଦ୍ଧର ଅନ୍ୟ ସରଞ୍ଜାମ ତିଆରି ହେଲା, ସେମାନେ ପ୍ରଚୁର ଧନ ଲାଭକଲେ ଏବଂ ଧନୀ ହେଲେ । ସେମାନେ ଆହୁରି ଟିକିଏ ଆଗକୁ ଯାଇ ପ୍ରକୃତରେ ଯୁଦ୍ଧ-ଆତଙ୍କ ସୃଷ୍ଟି କଲେ—ଯଦ୍ଦ୍ୱାରା ଦେଶସବୁ ତାଙ୍କଠାରୁ ଅଧିକ ଅସ୍ତ୍ରଶସ୍ତ୍ର ଖରିଦ କରିବେ । ଏହି ଅସ୍ତ୍ରଶସ୍ତ୍ର କାରଖାନାସବୁ ଅତ୍ୟନ୍ତ ସଂପଦଶାଳୀ ଓ ପ୍ରଭାବଶାଳୀ ଥିଲା ଏବଂ ଇଂଲଣ୍ଡ, ଫ୍ରାନ୍ସ, ଜର୍ମାନୀ ଓ ଅନ୍ୟଦେଶର ଅନେକ ଉଚ୍ଚ କର୍ମଚାରୀ ଓ ମନ୍ତ୍ରୀ ଏଥିର ଅଂଶ ଖରିଦ କରିଥିଲେ ଏବଂ ଏହିରୂପେ ଏହାର ଉନ୍ନତିରେ ସେମାନଙ୍କର ସ୍ୱାର୍ଥ ବି ରହିଥିଲା । ଯୁଦ୍ଧଆତଙ୍କ ଓ ଯୁଦ୍ଧ ହେଲେହିଁ ଅସ୍ତ୍ରଶସ୍ତ୍ର କାରଖାନାର ସମୃଦ୍ଧି ହୁଏ । ତେଣୁ ଅନେକ ସରକାରର ମନ୍ତ୍ରୀ ଓ କର୍ମଚାରୀସବୁ ଆର୍ଥିକ ସ୍ୱାର୍ଥ ଦୃଷ୍ଟିରୁ ଯୁଦ୍ଧରେ ଆଗ୍ରହୀ ହେବା ବାସ୍ତବିକ ଏକ ଅଦ୍ଭୁତ ପରିସ୍ଥିତି ! ଏହି କାରଖାନାସବୁ ବିଭିନ୍ନ ଦେଶରେ ଯୁଦ୍ଧ ଖରଚ ବଢ଼ାଇବାର ଫିକର ବି କାଢ଼ିଲେ । ସେମାନେ ଜନମତ ଉପରେ ପ୍ରଭାବ ପକାଇବା ନିମନ୍ତେ ସମ୍ବାଦପତ୍ରସବୁ କିଣିଲେ ଏବଂ ଅନେକ ସମୟରେ ସରକାରୀ ଚାକିରିଆଙ୍କୁ ଲାଞ୍ଚ ଦେଲେ ଏବଂ ଲୋକଙ୍କୁ ଉତ୍ତେଜିତ କରିବା ପାଇଁ ମିଥ୍ୟା ସମ୍ବାଦ ପ୍ରଚାର କଲେ । ଏହି ଅସ୍ତ୍ରଶିଳ୍ପଟା କି ଭୀଷଣ ଜିନିଷ—ଅନ୍ୟର ମୃତ୍ୟୁରେ ଏହା ବଞ୍ଚିରହେ ଏବଂ ଯୁଦ୍ଧଆତଙ୍କ ସୃଷ୍ଟି କରିବା ଓ ଉତ୍ସାହିତ କରିବାରେ ଏହା ଦ୍ୱିଧା ବୋଧ କରେ ନା —ଏଥିରୁ ଲାଭ ଉଠାଇବ ଏଇଥିପାଇଁ ତ ! ୧୯୧୪ ମସିହା ଯୁଦ୍ଧକୁ ଶୀଘ୍ର କରାଇବାରେ ଏହି ଶିଳ୍ପ କେତେକ ପରିମାଣରେ ସାହାଯ୍ୟ କଲା । ଆଜି ମଧ୍ୟ ସେହି ଖେଳ ଚାଲିଛି ।

ଏହି ଯୁଦ୍ଧ ଭିତରେ ଶାନ୍ତିପାଇଁ ଏକ ବିଚିତ୍ର ଚେଷ୍ଟା ସମ୍ବନ୍ଧରେ ମୁଁ ତତେ କିଛି କହିବି । ସମସ୍ତଙ୍କ ଭିତରେ ପୁଣି ରୁଷର ଜାର ଦ୍ୱିତୀୟ ନିକୋଲସ ପ୍ରସ୍ତାବ କଲା ଯେ ଗୋଟାଏ ସର୍ବବ୍ୟାପୀ ଶାନ୍ତିଯୁଗ ଆଣିବାପାଇଁ ପ୍ରଧାନ ଶକ୍ତିମାନେ ଏକାଠି ମିଳିତ ହେବା ଦରକାର । ଏହି ଜାର ପୁଣି ନିଜ ସାମ୍ରାଜ୍ୟରେ ସମସ୍ତ ପ୍ରକାର ଉଦାର ଭାବାପନ୍ନ ଆନ୍ଦୋଳନକୁ ଦମନ କରୁଥିଲା ଏବଂ ସାଇବେରିଆରେ ବନ୍ଦୀମାନଙ୍କୁ ଭର୍ତ୍ତି କରୁଥିଲା । ତେଣୁ

ସେ ଶାନ୍ତ କଥା କହିବା ଏକ ଉପହାସ ପରି ମନେହେଲା । କିନ୍ତୁ ଏଥିରେ ତାର ବୋଧ-ହୁଏ ସାଧୁତା ଥିଲା; କାରଣ ଶାନ୍ତ ହେବା ଅର୍ଥ ପ୍ରଚଳିତ ଅବସ୍ଥାର ଓ ତାର ନିଜ ଏକଚ୍ଛତ୍ର ଶାସନର ଦୃଢ଼ୀକରଣ । ତାର ନିମନ୍ତ୍ରଣ ଅନୁସାରେ ୧୮୯୯ ଓ ୧୯୦୭ରେ ହଲଣ୍ଡର ହେଗ୍‌ଠାରେ ଦୁଇଟି ଶାନ୍ତ ସମ୍ମିଳନୀ ହେଲା । ସେଠାରେ ସେପରି ଗୁରୁତ୍ୱପୂର୍ଣ୍ଣ କିଛି ହୋଇ ନ ଥିଲା । ଶାନ୍ତ କିଛି ହଠାତ୍ ସ୍ୱର୍ଗରୁ ଗଳିବ ନାହିଁ । ଗୋଳମାଳର ମୂଳକାରଣ ଦୂର ହେଲେ ଯାଇ ଏହା ଆସିପାରେ ।

ପ୍ରଧାନ ଶକ୍ତିମାନଙ୍କର ପରସ୍ପରଦ୍ୱନ୍ଦ୍ୱତା ଓ ଭୟ ବିଷୟରେ ମୁଁ ଲଟେ କଥା କହିଛି । କେବଳ ସେଗୁଡ଼ିକ ଖରାପ ଆଚରଣ କରନ୍ତି, ସେମାନଙ୍କ ଦ୍ୱାରା ଅନ୍ୟ କ୍ଷୁଦ୍ର ଦେଶଗୁଡ଼ିକୁ ଅବହେଳା ଦେଖାଗଲା । ଇଉରୋପ ଉତ୍ତରରେ କେତେକ କ୍ଷୁଦ୍ର ଦେଶପ୍ରତି ନଜର ପକାଇବା ଉଚିତ; କାରଣ ଲୋଭୀ ଓ ଅଧିକାର-ପ୍ରୟାସୀ ପ୍ରଧାନ ଶକ୍ତିଠାରୁ ଏଗୁଡ଼ିକ ସମ୍ପୂର୍ଣ୍ଣ ଭିନ୍ନ ଧରଣର । ସ୍କାଣ୍ଡିନେଭିଆରେ ନରଓ୍ୱେ ଓ ସୁଇଡ଼େନ ଅଛି ଏବଂ ଠିକ୍ ତା ତଳକୁ ରହିଛି ଡେନମାର୍କ । ଉତ୍ତରମେରୁ ଅଞ୍ଚଳଠାରୁ ଏହି ଦେଶଗୁଡ଼ିକ ବିଶେଷ ଦୂର ନୁହେଁ; ଏଗୁଡ଼ିକ ଖୁବ୍ ଥଣ୍ଡା ଅଞ୍ଚଳ ଏବଂ ସେଠାରେ ବାସ କରିବା କଷ୍ଟକର । କେବଳ ଅତି ଅଳ୍ପ ଲୋକସଂଖ୍ୟା ସେଠି ଚଳିପାରିବେ । କିନ୍ତୁ ପ୍ରଧାନ ଶକ୍ତିମାନଙ୍କର ଘୃଣା, ବିଦ୍ୱେଷ ଓ ପ୍ରତିଦ୍ୱନ୍ଦ୍ୱିତା କେନ୍ଦ୍ର ବାହାରେ ରହିଥିବା ଯୋଗୁଁ ସେଗୁଡ଼ିକ ଶାନ୍ତିପୂର୍ଣ୍ଣ ଜୀବନ ବିତାନ୍ତି ଏବଂ ଦେଶ୍ୟତାଦିରରେ ନିଜର ଶକ୍ତି ନିୟୋଗ କରନ୍ତି । ସେଠି ବିଜ୍ଞାନ ବୃଦ୍ଧି ପାଇଛି ଏବଂ ସୁଲଳିତ ସାହିତ୍ୟ ସୃଷ୍ଟି ହୋଇଛି । ନରଓ୍ୱେ ଓ ସୁଇଡ଼େନ୍ ଏକତ୍ର ହୋଇ ୧୯୦୫ ପର୍ଯ୍ୟନ୍ତ ଏକା ସରକାର ଅଧୀନରେ ଥିଲେ । ସେହିବର୍ଷ ନରଓ୍ୱେ ସମ୍ପର୍କ ତୁଟାଇବାକୁ ସ୍ଥିର କଲା ଏବଂ ଅଲଗା ରହିବାକୁ ଇଚ୍ଛାକଲା । ତେଣୁ ଶାନ୍ତିପୂର୍ଣ୍ଣ ଭାବରେ ନିଜର ସଂବନ୍ଧ ତୁଟାଇବା ନିମନ୍ତେ ଦୁଇଟିଯାକ ଦେଶ ସ୍ଥିର କଲେ ଏବଂ ସେହି-ଦିନଠାରୁ ସେଗୁଡ଼ିକ ଅଲଗା ଭାବରେ ସ୍ୱାଧୀନ ଦେଶ ହୋଇ ରହିଛନ୍ତି । ଏକ ଦେଶ ଅନ୍ୟ ଦେଶକୁ ବାଧ୍ୟ କରିବା ପାଇଁ କୌଣସି ପ୍ରଚେଷ୍ଟା ବା ଯୁଦ୍ଧ ହୋଇ ନାହିଁ ଏବଂ ଉଭୟ ରାଜ୍ୟ ଉତ୍ତମ ପଡ଼ୋଶୀ ଭାବରେ ବାସ କରୁଅଛନ୍ତି ।

କ୍ଷୁଦ୍ର ଡେନ୍‌ମାର୍କ ରାଜ୍ୟ ନିଜର ସେନାବାହିନୀ ଓ ନୌବାହିନୀ ଉଠାଇ ଦେଇ ସମସ୍ତ ବଡ଼ ଓ କ୍ଷୁଦ୍ର ଦେଶ ଆଗରେ ଏକ ଦୃଷ୍ଟାନ୍ତ ରଚିଦେଇଛି । ଏହା ଏକ କୃଷକ ଦେଶ — କ୍ଷୁଦ୍ର କ୍ଷୁଦ୍ର କୃଷୀଙ୍କ ରାଜ୍ୟ — ଏଠି ଧନୀ ଓ ଗରିବଙ୍କ ଭିତରେ ବେଶୀ ପାର୍ଥକ୍ୟ ନାହିଁ । ସେଠାରେ ସମବାୟ ଆନ୍ଦୋଳନର ଯେଉଁ ପ୍ରଗତି ହୋଇଛି ତାହାର ଯୋଗୁଁ ହିଁ ଏହି ସମାନତା ଅନେକ ପରିମାଣରେ ହୋଇପାରିଛି ।

କିନ୍ତୁ ଇଉରୋପର ସବୁ 'କ୍ଷୁଦ୍ରରାଜ୍ୟ' କିଛି ଡେନ୍‌ମାର୍କ ପରି ସଦାଗୁଣମଣ୍ଡିତ ନୁହନ୍ତି । ହଲଣ୍ଡ ଏବେ କ୍ଷୁଦ୍ରରାଜ୍ୟ ହୋଇ ସୁଦ୍ଧା ବର୍ତ୍ତମାନ ବି ଇଷ୍ଟଇଣ୍ଡିଜ୍ (ଜାଭା,

ସୁମାତ୍ରା ଆଦିରେ) ଅଧିକାର ବିସ୍ତାର କରି ସାମ୍ରାଜ୍ୟ ମେଳାଇଛି । ତା ପଛକୁ ପୁଣି ବେଲ୍‌ଜିୟମ୍ ଆଫ୍ରିକାର କଙ୍ଗୋରାଜ୍ୟକୁ ଶୋଷଣ କରୁଛି । ଏହାର ଅବସ୍ଥିତି ଯୋଗୁଁ ଇଉରୋପ ରାଜନୀତିରେ ଏହା ଏକ ଗୁରୁତ୍ୱ ଲାଭ କରିଛି । ଜର୍ମାନୀ ଓ ଫ୍ରାନ୍‌ସ ମଧ୍ୟରେ ଥିବା ରାଜପଥ ଉପରେ ଏହା ଅବସ୍ଥିତ ଏବଂ ଏହି ଦୁଇ ଦେଶ ଭିତରେ ଯୁଦ୍ଧ ଲାଗିଲେ ଏହା ଟାଣି ହୋଇଯିବା ପ୍ରାୟ ନିଶ୍ଚିତ । ତୋର ମନେଥିବ ବେଲଜିୟମରେ ବ୍ରସେଲସ୍ ନିକଟରେ ଓ୍ୟାଟରଲୁ ଅବସ୍ଥିତ । ଏହି କାରଣରୁ ବେଲଜିୟମକୁ "ଇଉରୋପର ଯୁଦ୍ଧକ୍ଷେତ୍ର" ବୋଲି କୁହାଯାଏ । ଯୁଦ୍ଧ ଲାଗିଲେ ବେଲ୍‌ଜିୟମର ନିରପେକ୍ଷତା ରକ୍ଷା କରିବା ନିମନ୍ତେ ପ୍ରଧାନ ଶକ୍ତିମାନଙ୍କ ଭିତରେ ଗୋଟାଏ ଚୁକ୍ତିହେଲା; କିନ୍ତୁ ଆମେ ଦେଖିବା ଯେ ଯୁଦ୍ଧ ଯେତେବେଳେ ଆରମ୍ଭ ହେଲା, ଏହିସବୁ ଚୁକ୍ତି ଓ ପ୍ରତିଶ୍ରୁତି ଖଣ୍ଡ ଖଣ୍ଡ ହୋଇଗଲା ।

ମାତ୍ର ଇଉରୋପ ଓ ଅନ୍ୟତ୍ର ସବୁ ଶ୍ରେଷ୍ଠ ରାଜ୍ୟମାନଙ୍କ ଭିତରେ ବଲକାନ୍‌ରେ ହିଁ ବେଶି ଗୋଳମାଳ ଜାତ ହେଉଥିଲା । ବିଭିନ୍ନ ଲୋକ ଓ ଜାତି ବସବାସ କରୁଥିବା ଏହି ଦେଶରେ ପୁରୁଷ ପୁରୁଷ ଧରି ବିଦ୍ୱେଷ ଓ ବିରୋଧଭାବ ଥିଲା --ଏ ଦେଶରେ ପରସ୍ପର ପ୍ରତି ଘୃଣା ଓ ବିବାଦ ପୂରି ରହିଥିଲା । ୧୯୧୨ ଓ ୧୯୧୩ ବଲକାନ୍ ଯୁଦ୍ଧରେ ଅସାଧାରଣ ଭାବରେ ରକ୍ତପାତ ହୋଇଥିଲା ଏବଂ ଅଳ୍ପସମୟ ଭିତରେ ଅଳ୍ପ ଅଞ୍ଚଳରେ ପ୍ରଭୂତ କ୍ଷତି ହେଲା । କଥିତ ଅଛି ବୁଲ୍‌ଗେରିଆନ୍‌ମାନେ ଆଶ୍ରିତ ଓ ପଳାୟିତ ତୁର୍କିବାସୀଙ୍କ ଉପରେ ନିଦାରୁଣ ଅତ୍ୟାଚାର କରିଥିଲେ । ଅଗକାଳରେ ତୁର୍କିର ବି ବଡ଼ ବଦନାମ ରହିଛି । ସର୍ବିଆ (ଏବେ ଯୁଗୋସ୍ଲୋଭିଆର ଅଂଶରୂପେ ଥିଲା ) ନରହତ୍ୟା ନିମନ୍ତେ ଅତି ଦୁର୍ନାମ ଅର୍ଜିଥିଲା । ତଥାକଥିତ ଦେଶପ୍ରେମୀଙ୍କର ଏକ ଗୁପ୍ତ ହତ୍ୟାକାରୀ ଦଳ ଥିଲା—ଏହାକୁ "କୃଷ୍ଣହସ୍ତ" ବୋଲି କୁହାଯାଏ ଏବଂ ଅନେକ ଉଚ୍ଚ ସରକାରୀ କର୍ମଚାରୀ ଏଥିରେ ସଭ୍ୟଥିଲେ-ଏହା ହିଁ ଅନେକ ବିଚିତ୍ର ନରହତ୍ୟା ଲାଗି ଦାୟୀ ହୋଇଥିଲା । ଦେଶରେ ରାଜା ଆଲେକ୍‌ଜାଣ୍ଡାର ଓ ରାଣୀ ଡ୍ରାଗା ଏବଂ ରାଣୀଙ୍କ ଭାଇମାନଙ୍କୁ ପ୍ରଧାନମନ୍ତ୍ରୀ ଓ ଆଉ କେତେକ ବ୍ୟକ୍ତିଙ୍କୁ ଅତି ବିରକ୍ତିଜନକ ଭାବରେ ହତ୍ୟା କରାଯାଇଥିଲା । ଏହା ଏକ ରାଜପ୍ରାସାଦର ବିପ୍ଳବ ଥିଲା ଏବଂ ଆଉ ଜଣେ ଲୋକକୁ ରାଜା କରାଗଲା ।

ତେଣୁ ବିଂଶ ଶତାବ୍ଦୀର ଆରମ୍ଭରେ ଇଉରୋପ ଆକାଶରେ ବଜ୍ର ଓ ବିଦ୍ୟୁତ୍ ମାରୁଥିଲା ଏବଂ କ୍ରମେ ବର୍ଷକୁ ବର୍ଷ ଏଥିରେ ଝଡ଼ବତାସ ଦେଖାଦେଲା । ଜଟିଳତା ଓ ଉତ୍ପାତ ବଢ଼ିଲା ଏବଂ ଇଉରୋପର ଜୀବନ ଅଧିକରୁ ଅଧିକ ଗଣ୍ଠିରେ ବନ୍ଧାହେଲା—ସେ ଗଣ୍ଠି ଶେଷକୁ ଯୁଦ୍ଧରେ କଟାହେଲା । ସମସ୍ତ ଶକ୍ତି ଯୁଦ୍ଧ ଆସିବ ବୋଲି ଆଶା କରିଥିଲେ ଏବଂ ଉଦ୍‌ବେଗ ସହକାରେ ସେଥିଲାଗି ପ୍ରସ୍ତୁତ ହେଲେ; ଅଥଚ କେହି ଯୁଦ୍ଧଲାଗି ବିଶେଷ ଆଗ୍ରହୀ ନ ଥିଲେ । ସମସ୍ତେ ଭୟ କରୁଥିଲେ; କାରଣ ଯୁଦ୍ଧର ଫଳ କଣ ହେବ ସେ କଥା କେହି

ନିଷ୍ଠିତରୂପେ ଆଗରୁ କହିହେବ ନାହିଁ । ତଥାପି ଏହି ଭୟ ହିଁ ସେମାନଙ୍କୁ ଯୁଦ୍ଧରୁ ଟାଣି ନେଲା । ମୁଁ ତତେ ତ କହିଛି, ଇଉରୋପରେ ଦୁଇପକ୍ଷ ପରସ୍ପର ବିରୁଦ୍ଧରେ ପ୍ରସ୍ତୁତ ହେଲେ । ଏହାକୁ "ଶକ୍ତିର ସମତୌଲ" (Balance of power) ବୋଲି କୁହା-ହେଲା—ଏହି ନିକିତିକୁ କୌଣସି ଗୋଟିଏ ପାଖରୁ ଟିକିଏ ପେଲିଦେଲେ ଓଲଟି ପଡ଼ିବ । ଜାପାନ ଇଉରୋପରୁ ବହୁଦୂରରେ ଥାଇ ସୁଦ୍ଧା ଏବଂ ସେଠାକାର ସ୍ଥାନୀୟ ସମସ୍ୟାରେ ବିଶେଷ ଆଗ୍ରହ ତାର ନ ଥିଲେ ସୁଦ୍ଧା ଏହି ସବୁ ମିତ୍ରତାବନ୍ଧନ ଓ ଶକ୍ତିର ସମତୌଲ ମାମଲାରେ ଯୋଗଦେଲା । କାରଣ ଜାପାନ ଇଂଲଣ୍ଡର ମିତ୍ର ଥିଲା । ପ୍ରାଚ୍ୟଦେଶ ବିଶେଷତଃ ଭାରତରେ ଇଂରେଜଙ୍କ ସ୍ୱାର୍ଥରକ୍ଷା ନିମନ୍ତେ ଏହି ମିତ୍ରତା କରାଯାଇଥିଲା । ଆଙ୍ଗ୍ଲୋ-ରୁଷ ବୈରତା ବେଳେ ଏହା କରାଯାଇଥିଲା ଏବଂ ଏବେ ବି ରହିଛି—ଇଂଲଣ୍ଡ ଓ ରୁଷ ଏକ ପକ୍ଷରେ ଥାଇ ବି ରହିଛି । ଏକମାତ୍ର ଆମେରିକା ହିଁ ଇଉରୋପର ଏହି ମିତ୍ରତା ଓ ସମତୌଲ ବ୍ୟବସ୍ଥାରୁ ନିଜକୁ ଅଲଗା ରଖିଥିଲା ।

୧୯୧୪ ବେଳକୁ ଅବସ୍ଥା ଏଇପରି ଥିଲା । ତୋର ମନେଥିବ ସେତେବେଳରୁ ସ୍ୱାୟତ୍ତ ଶାସନ ବିଲ ଯୋଗୁ ଆୟର୍ଲାଣ୍ଡରେ ଇଂଲଣ୍ଡ ବଡ଼ ହରବରରେ ପଡ଼ିଥିଲା । ଅଲଷ୍ଟର ବିଦ୍ରୋହ କଲା, ଉତ୍ତର ଓ ଦକ୍ଷିଣରେ ସ୍ୱେଚ୍ଛାସେବକମାନେ ଡ୍ରିଲ କରୁଥିଲେ ଏବଂ ଆୟର୍-ଲାଣ୍ଡରେ ଗୃହଯୁଦ୍ଧ ହେବାରେ ଅନୁମାନ ହେଉଥିଲା । ଏହା ବି ଖୁବ୍ ସମ୍ଭବ ଯେ ଜର୍ମାନ ସରକାର ଭାବିଲା ଯେ ଆଭ୍ୟନ୍ତରୀଣ ଗୋଳମାଳରେ ଇଂଲଣ୍ଡ ବ୍ୟସ୍ତ ରହିବ ଏବଂ ଇଉରୋପୀୟ ଯୁଦ୍ଧ ଆରମ୍ଭ ହେଲେ ତାହା ହସ୍ତକ୍ଷେପ କରିପାରିବ ନାହିଁ । ପ୍ରକୃତରେ ଯୁଦ୍ଧ ଆରମ୍ଭ ହେଲେ ଇଂରେଜ ସରକାର ଫ୍ରାନ୍ସ ସହିତ ଯୋଗଦେବ ବୋଲି ସର୍ବେଇ ଭାବରେ ଜବାବ ଦେଇ ସାରିଥିଲା; କିନ୍ତୁ ଏହା ପ୍ରକାଶ୍ୟରେ ଜଣା ନ ଥିଲା ।

ଜୁନ ୨୮, ୧୯୧୪ – ଏହି ଚାଣିଖରେ ଦିଆସିଲି କାଠି ମରାଗଲା ଏବଂ ଅଗ୍ନି ହୁ ହୁ ହୋଇ ଜଳିଉଠିଲା । ଆର୍ଚଡିଉକ୍ ଫ୍ରାନସିସ୍ ଫର୍ଡିନାଣ୍ଡ ଅଷ୍ଟ୍ରିଆ ସିଂହାସନର ଉତ୍ତରାଧିକାରୀ ଥିଲେ । ସେ ବଲକାନର ବୋସନିଆର ରାଜଧାନୀ ସେରାଜେଭୋ ପରିଦର୍ଶନ କରିବାକୁ ଗଲେ । ମୁଁ ତତେ କହିଛି, କେତେକ ବର୍ଷ ପୂର୍ବେ ଯୁବକ ତୁର୍କି ଦଳ ତାଙ୍କ ସୁଲତାନକୁ ହଟାଇବା ନିମନ୍ତେ ଚେଷ୍ଟା କରୁଥିବା ବେଳେ ବୋସନିଆକୁ ଅଷ୍ଟ୍ରିଆସହ ସଂଯୋଗ କରାହୋଇଥିଲା । ଆର୍ଚଡିଉକ୍‌ଙ୍କ ସ୍ତ୍ରୀ ତାଙ୍କ ପାଖରେ ବସିଥାନ୍ତି—ଏକ ଖୋଲା ଗାଡ଼ିରେ ସେ ସେରାଜେଭୋ ଗଳି ଭିତର ଦେଇ ଯାଉଥିବା ବେଳେ ତାଙ୍କ ଉପରେ ଗୁଳି ବସିଲା ଏବଂ ସେ ଓ ତାଙ୍କ ସ୍ତ୍ରୀ ଉଭୟେ ନିହତ ହେଲେ । ଅଷ୍ଟ୍ରିଆ ସରକାର ଓ ଲୋକେ ଏଥିରେ ଉତ୍ତେଜିତ ହେଲେ ଏବଂ ଏହି ଅପରାଧରେ ସର୍ବିଆ ସରକାର ସଂପୃକ୍ତ ଅଛି ବୋଲି ଦୋଷ ଦେଲେ (ସର୍ବିଆ ହେଉଛି ବୋସ୍‌ନିଆର ପଡ଼ୋଶୀ) । ସର୍ବିଆ ସରକାର ଅବଶ୍ୟ ଏହା ଅସ୍ୱୀକାର କଲା । ଅନେକଦିନ ପରେ ତଦନ୍ତରେ ଦେଖାଯାଇଛି ଯେ ସର୍ବିଆ ସରକାର ଏହି ହତ୍ୟାପାଇଁ ଦାୟୀ ନ ହୋଇଥିଲେ ସୁଦ୍ଧା ଏଥିଲାଗି ଯେଉଁ ଆୟୋଜନ

କରାଯାଉଥିଲା ଯେ ସମ୍ଭବରେ ସମ୍ପୂର୍ଣ୍ଣ ଅନଭିଜ୍ଞ ନ ଥିଲା । ଯାହାହେଉ ସ୍ୱ[illegible] ଅଧିକ ଭାବରେ ସର୍ବିଆ "କୃଷ୍ଣ ହସ୍ତ" ସଙ୍ଗଠନକୁ ଦାୟୀ କରାଯିବ ।

ଅଷ୍ଟ୍ରିଆ ସରକାର ଆଂଶିକରୂପେ କ୍ରୋଧ ଓ ଅଧିକ ଭାବରେ କୌଶଳ କରି ସର୍ବିଆ ପ୍ରତି ଏକ ଅତି ଆକ୍ରମଣମୂଳକ ମନୋଭାବ ଦେଖାଇଲା । ସର୍ବିଆକୁ ଚିରକାଳ-ଲାଗି ଦବାଇବା ନିମନ୍ତେ ଏହା ସ୍ଥିର କରିଥିଲା ଏବଂ ବଡ଼ ଯୁଦ୍ଧରେ ଜର୍ମାନୀପରି ବଡ଼ ଶକ୍ତିର ସାହାଯ୍ୟ ଉପରେ ନିର୍ଭର କରି ରହିଥିଲା । ତେଣୁ ସର୍ବିଆର ଅନୁଯୋଗ ଗୃହୀତ ହେଲା ନାହିଁ ଏବଂ ୧୯୧୪ ମସିହା ଜୁଲାଇ ୨୩ ତାରିଖରେ ଅଷ୍ଟ୍ରିଆ ସର୍ବିଆକୁ ଚରମପତ୍ର ପଠାଇଲା । ପାଞ୍ଚଦିନ ପରେ ଜୁଲାଇ ୨୮ ତାରିଖରେ ଅଷ୍ଟ୍ରିଆ ସର୍ବିଆ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲା ।

ଏକ ଅହଙ୍କାରୀ ଓ ନିର୍ବୋଧ ମନ୍ତ୍ରୀ ହାତରେ ଅଷ୍ଟ୍ରିଆର ନୀତି ନିୟନ୍ତ୍ରିତ ହେଉଥିଲା ଏବଂ ସେ ଯୁଦ୍ଧ କରିବା ନିମନ୍ତେ ଲାଗି ପଡ଼ିଥିଲା । ଅଷ୍ଟ୍ରିଆର ବୃଦ୍ଧ ସମ୍ରାଟ ଫ୍ରାନ୍ସିସ୍ ଜୋସେଫ (ସେ ୧୮୪୮ରୁ ଅଷ୍ଟ୍ରିଆ ସିଂହାସନରେ ରହିଥିଲେ) ଏଥିରେ ସମ୍ମତ ହୋଇଗଲେ ଏବଂ ଜର୍ମାନୀରୁ ସାହାଯ୍ୟ ପାଇବାର ଏକ ଅର୍ଦ୍ଧ ପ୍ରତିଶ୍ରୁତିକୁ ପୂର୍ଣ୍ଣ ନିର୍ଭର ଜବାବ ବୋଲି ଧରିନିଆଗଲା । ପ୍ରକୃତରେ ଦେଖିବାକୁ ଗଲେ ଅଷ୍ଟ୍ରିଆ ଛଡ଼ା ଅନ୍ୟ କୌଣସି ପ୍ରଧାନ ଶକ୍ତି ସେତେବେଳେ ଯୁଦ୍ଧପାଇଁ ବ୍ୟଗ୍ର ନ ଥିଲେ । ଜର୍ମାନୀର ଏତେ ପ୍ରସ୍ତୁତି ଓ କଳହପ୍ରିୟତା ସତ୍ତ୍ୱେ ଯୁଦ୍ଧଲାଗି ବ୍ୟଗ୍ରତା ନ ଥିଲା ଏବଂ କାଇଜର ଦ୍ୱିତୀୟ ଉଇଲହେଲ୍ମ ଅଧାପନ୍ତରିଆ ଭାବରେ ଏହି ବାଧା ଦେବା ପାଇଁ ଚେଷ୍ଟା କରିଥିଲେ । ଇଂଲଣ୍ଡ ଓ ଫ୍ରାନ୍ସ ଯୁଦ୍ଧପାଇଁ ଆଗ୍ରହୀ ନ ଥିଲେ । ରୁଷ ସରକାର ବୋଇଲେ ଜାର- ଜଣେ ଅତି ଦୁର୍ବଳ ଓ ନିର୍ବୋଧ ଲୋକ—ନିଜେ ବାଛି ରଖିଥିବା ନିର୍ବୋଧ ଓ ଦୁରାତ୍ମା ଲୋକ ପରିବେଷ୍ଟିତ ହୋଇଥାଏ ଏବଂ ସେମାନଙ୍କ କଥାରେ ଏଣିକି ତେଣିକି ଭାସିଯାଏ । ଅଥଚ ଏହିପରି ଲୋକ ହାତରେ ଲକ୍ଷ ଲକ୍ଷ ଲୋକଙ୍କ ଭାଗ୍ୟଡୋରି ରହିଥିଲା । ମୋଟାମୋଟି ସେ ନିଜେ ଯୁଦ୍ଧ ପ୍ରତି ବୀତଶ୍ରଦ୍ଧ ଥିଲା; କିନ୍ତୁ ତାର ପରାମର୍ଶଦାତାମାନେ ବିଳମ୍ବ କଲେ ପରିଣତି ଖରାପ ହେବ ବୋଲି ତାଙ୍କୁ ଭୟଭୀତ କରିଦେଲେ ଏବଂ ସୈନ୍ୟ ସମାବେଶ କରିବା ନିମନ୍ତେ ରାଜି କରାଇଲେ । ଏହି "ଯୁଦ୍ଧକୁ ଡାକରା"ର ଅର୍ଥ ହେଉଛି ଯୁଦ୍ଧକ୍ଷେତ୍ରରେ କାର୍ଯ୍ୟପାଇଁ ସେନାକୁ ଆହ୍ୱାନ ଏବଂ ରୁଷ ପରି ଏକ ବିଶାଳ ଦେଶରେ ଏହା କରିବାଲାଗି ବହୁକାଳ ଲୋଡ଼ା । ଜର୍ମାନ ଆକ୍ରମଣ ଭୟ ବୋଧହୁଏ ରୁଷ ସୈନ୍ୟ ସମାବେଶକୁ ଶୀଘ୍ର କରିପକାଇଲା । ଏହି ସୈନ୍ୟସମାବେଶ ଜୁଲାଇ ୩୦ ତାରିଖରେ ହେଲା ଏବଂ ଏହାର ସମ୍ବାଦ ପାଇ ଜର୍ମାନୀ ଭୟଭୀତ ହୋଇଗଲା ଏବଂ ସେ ଦାବୀ କଲା ଯେ ରୁଷ ଏହା ବନ୍ଦ କରିବା ଦରକାର । କିନ୍ତୁ ପ୍ରକାଣ୍ଡ ଯୁଦ୍ଧକଳକୁ ଆଉ ବନ୍ଦ କରି ହେଲା ନାହିଁ । ଦୁଇଦିନ ପରେ ଅଗଷ୍ଟ ୧ ତାରିଖରେ ଜର୍ମାନୀ ନିଜ ସୈନ୍ୟ ସମାବେଶ କରି ରୁଷ ଓ ଫ୍ରାନ୍ସ ଉପରେ ଯୁଦ୍ଧ ଘୋଷଣା କଲା ଏବଂ ପ୍ରାୟ ସାଙ୍ଗେ ସାଙ୍ଗେ ଜର୍ମାନୀ ସୈନ୍ୟ ଫ୍ରାନ୍ସକୁ ବେଲଜିୟମ ବାଟେ ଯିବାପାଇଁ ଆକ୍ରମଣ କଲେ— ଏହି ବାଟ ସହଜ ଥିଲା ।

ବିଟିଗ୍ ବେଲଜିୟମ ଜର୍ମାନୀର କିଛି କ୍ଷତି କରି ନ ଥିଲା; କିନ୍ତୁ ଯେତେବେଳେ ଦେଶସବୁ ଜୀବନ ମରଣ ସଂଗ୍ରାମ କରନ୍ତି, ସେତେବେଳେ ସେମାନେ ଏପରି ଛୋଟ ଛୋଟ କଥା ବା ପୂର୍ବରୁ ଦେଇଥିବା ପ୍ରତିଶ୍ରୁତିକୁ ଖାତିର କରନ୍ତି ନାହିଁ । ଜର୍ମାନୀ ସରକାର ନିଜର ସୈନ୍ୟ ବେଲଜିୟମ୍ ବାଟେ ପଠାଇବା ପାଇଁ ବେଲଜିୟମ୍ ସରକାରର ଅନୁମତି ଚାହିଁଥିଲା । ଏପରି ଅନୁମତି ଅସ୍ୱୀକାର କରିବା ସ୍ୱାଭାବିକ ।

ବେଲଜିୟମ୍‌ର ନିରପେକ୍ଷତା ଭଗ୍ନ ହେବା ହେତୁ ଇଂଲଣ୍ଡ ଓ ଅନ୍ୟତ୍ର ଖୁବ୍ ଆଲୋଚନା ଚାଲିଲା ଏବଂ ଇଂଲଣ୍ଡ ଜର୍ମାନୀ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିବା ପାଇଁ ଏହାକୁ ହିଁ ଭିତ୍ତି କଲା । ପ୍ରକୃତରେ ଦେଖିବାକୁ ଗଲେ ଇଂଲଣ୍ଡ ଯୁଦ୍ଧ ଆରମ୍ଭ କରିବା କଥା ବହୁ ଆଗରୁ ସ୍ଥିର କରିଥିଲା ଏବଂ ବେଲଜିୟମ୍ ଘଟଣା ଗୋଟାଏ ସୁବିଧାଜନକ ସେଖନା ମିଳି-ଗଲା । ଏବେ ଦେଖାଗଲା ଯେ ଯଦି ସେପରି ଆବଶ୍ୟକ ପଡ଼େ ଜର୍ମାନୀ ଆକ୍ରମଣ କରିବା ନିମନ୍ତେ ତାର ସୈନ୍ୟ ବେଲଜିୟମ ଦେଇ ନେବାପାଇଁ ଫରାସୀ ଯୁଦ୍ଧ ପୂର୍ବରୁ ଆୟୋଜନ କରି ସାରିଥିଲା । ଯାହାହେଉ ଇଂଲଣ୍ଡ ନ୍ୟାୟ ଓ ସତ୍ୟର ଗୋଟିଏ ପ୍ରଧାନ ରକ୍ଷକ ହୋଇ ବାହାରିଲା ଏବଂ ଜର୍ମାନୀ ବିରୁଦ୍ଧରେ ଛୋଟ ଛୋଟ ରାଜ୍ୟଗୁଡ଼ିକର ରକ୍ଷକ ସାଜିଲା—ଜର୍ମାନୀ ତାର ପବିତ୍ର ପ୍ରତିଶ୍ରୁତି ଓ ସନ୍ଧିସବୁକୁ କେବଳ "ରଦ୍ଦି କାଗଜ ଟୁକୁରା" (Scraps of papers) ବୋଲି ବ୍ୟବହାର କରୁଥିଲା । ଅଗଷ୍ଟ ୪ ତାରିଖ ରାତି ଅଧରେ ଇଂଲଣ୍ଡ ଜର୍ମାନୀ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲା; କିନ୍ତୁ କୌଣସି ଦୁର୍ଘଟଣା ରୋକିବା ପାଇଁ ଗୁପ୍ତ ଭାବରେ ଦିନକ ଆଗରୁ ପ୍ରଣାଳୀ ପାରି କରି ସେ ତାର ସେନା—(ବ୍ରିଟିଶ 'ଅଭିଯାତ୍ରୀ ବାହିନୀ) ପଠାଇ ଦେବାପାଇଁ ସତର୍କତା ଅବଲମ୍ବନ କରିଥିଲା । ତେଣୁ ଯେତେବେଳେ ସାରା-ଦୁନିଆ ଭାବୁଥିଲା ଯେ ଇଂଲଣ୍ଡ ଯୁଦ୍ଧରେ ଯୋଗ ଦେବ କି ନାହିଁ ଏହା ଏବେ ସୁଦ୍ଧା ଅନିଶ୍ଚିତ ରହିଛି, ସେତେବେଳେ ବ୍ରିଟିଶ ସେନା ପ୍ରକୃତରେ ଯାଇ ଇଉରୋପୀୟ ମହାଦେଶରେ ହାଜର ହୋଇ ସାରିଛନ୍ତି ।

ଅଷ୍ଟ୍ରିଆ, ରୁଷ୍, ଜର୍ମାନୀ, ଫ୍ରାନ୍ସ ଓ ଇଂଲଣ୍ଡ ଆଦି ସବୁଦେଶ ଏବେ ଯୁଦ୍ଧରେ ଲିପ୍ତ ଥିଲେ । ଛୋଟ ସର୍ବିଆ ବି ତ ଥିଲା—ଆଂଶିକ ଭାବରେ ଯୁଦ୍ଧ ଆରମ୍ଭର ଏହା ଏକ କାରଣ; କିନ୍ତୁ ଜର୍ମାନୀ ଓ ଅଷ୍ଟ୍ରିଆର ମିତ୍ର ଇଟାଲି କଥା କଣ ? ଇଟାଲି ଅଲଗା ରହିଲା; କେଉଁ ପକ୍ଷରେ ସୁବିଧାଜନକ ହେବ ତାହା ଲକ୍ଷ୍ୟ କଲା; ଇଟାଲି ଦର କଷୁଥିଲା ଏବଂ ଶେଷରେ ୭ ମାସ ପରେ ଏହା ନିର୍ଦ୍ଦିଷ୍ଟଭାବରେ ତାର ପୁରାତନ ମିତ୍ରମାନଙ୍କ ବିରୁଦ୍ଧରେ ଫରାସୀ-ଇଂରେଜ-ରୁଷଙ୍କ ସହ ଯୋଗଦେଲା ।

ତେଣୁ ୧୯୧୪ ଅଗଷ୍ଟ ମାସ ଆରମ୍ଭ କେତେ ଦିନ ଇଉରୋପରେ ସୈନ୍ୟ ଏକାଠି ହେବା ଓ ଅଗ୍ରସର ହେବାର ଦେଖାଗଲା । ଏହିସବୁ ସେନା କଣ ? ପୁରାକାଳରେ ସୈନ୍ୟ ଶ୍ରେଣୀରେ କେତେକ ପେଶାଦାର ଯୋଦ୍ଧା ରହୁଥିଲେ । ସ୍ଥାୟୀ ସେନାବାହିନୀ ଥିଲେ । ଯାହାହେଉ ଫରାସୀ ବିପ୍ଳବ ଆକ୍ରମଣ ଭୟ ବହୁତ ବଦଳାଇ ଦେଲା । ଯେତେବେଳେ

ବିପ୍ଳବ ଉପରେ ଆକ୍ରମଣରେ ଅସ୍ତ୍ର ପଡ଼ିଲା ସେତେବେଳେ ସାଧାରଣ ନାଗରିକମାନଙ୍କୁ ତାଲିକାଭୁକ୍ତ କରି ବହୁସଂଖ୍ୟାରେ ଶିକ୍ଷା ଦିଆଗଲା । ସେହିଦିନଠାରୁ ପରିମିତ ସଂଖ୍ୟକ ସ୍ୱେଚ୍ଛାକୃତ ପେଶାଦାର ସେନାବାହିନୀ ବଦଳରେ ବାଧ୍ୟତାମୂଳକ ସେନା ରଖିବାର ପ୍ରବୃତ୍ତି ଇଉରୋପରେ ଦେଖାଗଲା—ଅର୍ଥାତ୍ ସେନାବାହିନୀରେ ଦେଶର ସମସ୍ତ ସମର୍ଥ ଲୋକଙ୍କୁ କାର୍ଯ୍ୟ କରିବାକୁ ବାଧ୍ୟ କରାଗଲା । ସୁତରାଂ ସମର୍ଥ ଲୋକଙ୍କ ଦ୍ୱାରା ବିଶ୍ୱବ୍ୟାପୀ ଗଠିତ ସାମରିକ ଶକ୍ତି ସଂସାରୀ ବିପ୍ଳବରୁ ଜାତ ହୋଇଛି । ଏହା ସମଗ୍ର ଇଉରୋପରେ ବିସ୍ତାର ଲାଭକଲା । ପ୍ରତ୍ୟେକ ଯୁବକକୁ ଦୁଇବର୍ଷରୁ ଅଧିକ କାଳ ପର୍ଯ୍ୟନ୍ତ ଶିବିରରେ ସାମରିକ ଶିକ୍ଷା ପାଇବାକୁ ପଡ଼ୁଥିଲା ଏବଂ ପରେ ଡକରା ଆସିଲେ ସେ ଲଢ଼ାଇ କରିବାକୁ ବାଧ୍ୟ ହେଉଥିଲା । ତେଣୁ ଯୁଦ୍ଧ-କାର୍ଯ୍ୟରେ ବ୍ୟାପୃତ ସେନାବାହିନୀ ବୋଇଲେ ପ୍ରକୃତରେ ସମଗ୍ର ଦେଶର ଯୁବାପୁରୁଷଙ୍କୁ ବୁଝାଇଲା । ଫ୍ରାନ୍ସ, ଜର୍ମାନୀ, ଅଷ୍ଟ୍ରିଆ ଓ ରୁଷରେ ଏହିପରି ହେଲା ଏବଂ ଏହିରୁ ଦେଶରେ ସୈନ୍ୟ ସମାବେଶର ଅର୍ଥ ଯୁବକମାନଙ୍କୁ ନିଜ ଘରୁ ସୁଦୂର ସହର ଓ ମଫସଲରେ କାର୍ଯ୍ୟ କରିବା ନିମନ୍ତେ ଆହ୍ୱାନ । ଯୁଦ୍ଧ ଆରମ୍ଭ ହେଲାବେଳେ ଇଂଲଣ୍ଡରେ ଏହି ପ୍ରକାର ସର୍ବ-ବ୍ୟାପୀ କାର୍ଯ୍ୟର ବ୍ୟବସ୍ଥା ନ ଥିଲା । ନିଜର ଶକ୍ତିଶାଳୀ ନୌଶକ୍ତିରେ ନିର୍ଭର ରହି ଏହା ଅପେକ୍ଷାକୃତ ଶ୍ରେଷ୍ଠ ସ୍ଥାୟୀ ଓ ସ୍ୱେଚ୍ଛାପ୍ରସୂତ ସେନା ରଖିଥିଲା । ଯାହାହେଉ, ଯୁଦ୍ଧ ଭିତରେ ଅନ୍ୟ ଦେଶମାନଙ୍କ ସହିତ ଆସିଗଲା ଏବଂ ବାଧ୍ୟତାମୂଳକ ସାମରିକ ଶିକ୍ଷା ପ୍ରବର୍ତ୍ତିତ କରାଗଲା ।

ଏହି ସାଧାରଣ ସାମରିକ ଶିକ୍ଷାର ଅର୍ଥ ହେଉଛି ସମଗ୍ର ଜାତି ଅସ୍ତ୍ରଧାରୀ ରହିଲା । ସୈନ୍ୟ ସମାବେଶ କରିବା ହୁକୁମ ପ୍ରତ୍ୟେକ ସହର, ପ୍ରତ୍ୟେକ ଗ୍ରାମ ଓ ପ୍ରତ୍ୟେକ ପରିବାରକୁ ସ୍ପର୍ଶ କଲା । ଇଉରୋପର ବହୁ ଅଞ୍ଚଳରେ ଅଗଷ୍ଟ ମାସର ଆରମ୍ଭ ହେଉଣୁ ହଠାତ୍ ସବୁକାର୍ଯ୍ୟ ବନ୍ଦ ହେଲା ପରି ମନେ ହେଲା ଏବଂ ଯୁବକମାନେ ଲକ୍ଷ ଲକ୍ଷ ସଂଖ୍ୟାରେ ଘର ଛାଡ଼ିଲେ—ଆଉ ଫେରି ନାହାନ୍ତି । ପ୍ରତ୍ୟେକ ସ୍ଥାନରେ ମାର୍ଚ୍ଚିଂ, ପଦବ୍ରଜରେ ଚାଲିବା ଦେଖାଗଲା - ସୈନ୍ୟମାନଙ୍କୁ ଉତ୍ସାହ ଦିଆଗଲା—ଦେଶପ୍ରୀତି ଭାବରେ ପ୍ରଚୁର ପ୍ରଦର୍ଶନୀ କରାଗଲା—ହୃଦୟସ୍ପନ୍ଦନୀସବୁ ଦୃଢ଼ କରାଗଲା ଏବଂ ଗୋଟାଏ ପ୍ରକାର ବେପରୁଆ ଭାବ ବି ଥିଲା—କାରଣ ଯୁଦ୍ଧର ଭୟାବହ ଚିତ୍ର ସେ ପର୍ଯ୍ୟନ୍ତ କେହି ବୁଝି ପାରି ନ ଥିଲେ ।

ଏହି ପ୍ରଜ୍ଜ୍ୱଳିତ ଦେଶପ୍ରୀତି ପ୍ରତ୍ୟେକ ଲୋକକୁ ଭସାଇ ନେଲା । ଯେଉଁ ସାମ୍ୟବାଦୀ ( ସୋସିଆଲିଷ୍ଟ ) ମାନେ ଏତେ ଉଚ୍ଚସ୍ୱରରେ ଆନ୍ତର୍ଜାତୀୟତା କଥା କହୁଥିଲେ, ଯେଉଁ ମାର୍କ୍ସବାଦୀମାନେ ସାଧାରଣ ଶତ୍ରୁ ପୁଞ୍ଜିବାଦ ବିରୁଦ୍ଧରେ ଏକଜୁଟ ହେବା ନିମନ୍ତେ ସମଗ୍ର ଦୁନିଆର ଶ୍ରମିକମାନଙ୍କୁ ଆହ୍ୱାନ କରୁଥିଲେ, ସେମାନଙ୍କ ନିଜ ଗୋଡ଼ ବି ଏଥିରେ ଖସିଗଲା ଏବଂ ଉଗ୍ର ଦେଶପ୍ରେମୀ ପରି ସେମାନେ ବି ଏହି ପୁଞ୍ଜିବାଦୀ ଯୁଦ୍ଧରେ ଯୋଗ ଦେଲେ । ଅଳ୍ପ କେତେକ ଦମ୍ଭ ଧରି ରହିଲେ; କିନ୍ତୁ ସେମାନେ ହେଲେ ଘୃଣ୍ୟ, ଅଭିଶପ୍ତ ଓ ତାଙ୍କୁ ବି ଶାସ୍ତି ଦିଆହେଲା । ଅଧିକାଂଶ ଲୋକ ଶତ୍ରୁ ପ୍ରତି ଘୃଣା ଭାବରେ ପାଗଳ

ହୋଇଗଲେ । ଇଂରେଜ ଓ ଜର୍ମାନ ଶ୍ରମିକମାନେ ପରସ୍ପରକୁ ହତ୍ୟା କରୁଥିବାବେଳେ ଶିକ୍ଷିତ ଲୋକେ, ବୈଜ୍ଞାନିକ ଓ ଦୁଇ ଦେଶର ଅଧ୍ୟାପକମାନେ ଓ ଅନ୍ୟ ଯୁଦ୍ଧରତ ଦେଶର ପରସ୍ପରକୁ ଦୋଷ ଦେଉଥାନ୍ତି ଏବଂ ପରସ୍ପର ବିଷୟରେ ନାନା ଭୟାନକ କାହାଣୀ ବିଶ୍ୱାସ କରୁଥାନ୍ତି ।

ତେଣୁ ଯୁଦ୍ଧ ଆସିବା ସଙ୍ଗେ ସଙ୍ଗେ ୧୯ଶ ଶତାବ୍ଦୀର ଏକ ଯୁଗ ଶେଷ ହେଲା । ବିରାଟ ଓ ନିସ୍ତବ୍ଧ ପାଶ୍ଚାତ୍ୟ ସଭ୍ୟତାର ସ୍ରୋତ ହଠାତ୍ ଯୁଦ୍ଧ କୋଳାହଳରେ ମଗ୍ନ ହୋଇଗଲା । ପୁରାତନ ଦୁନିଆ ଚିରକାଳ ପାଇଁ ଗଲା । ଚାରିବର୍ଷରୁ ଅଧିକ କାଳ ପରେ ଏହି ଗୋଲମାଳ ଭିତରୁ କିଛି ନୂତନର ଆବିର୍ଭାବ ହେଲା ।

## ୧୪୭ : ଯୁଦ୍ଧପର୍ବ ଭାରତ

ମାର୍ଚ୍ଚ ୨୯, ୧୯୩୩

ଅନେକଦିନ ତଳେ ମୁଁ ଭାରତ ବିଷୟରେ ଚିଠି ଲେଖିଥିଲି । ପୁଣି ଫେରିଆସି ଯୁଦ୍ଧକାଳ ପୂର୍ବରୁ ଭାରତ ଅବସ୍ଥା କିପରି ଥିଲା, ଏହା ଜଣାଇବା ଲାଗି ମୋର ଉତ୍କଣ୍ଠା ଜାତ ହୋଇଛି । ଏହି ପ୍ରବୃତ୍ତି ଯୋଗୁଁ ମୁଁ ପୁଣି ଭାରତ ବିଷୟ ଲେଖୁଛି ।

କେତେକ ଦୀର୍ଘ ଚିଠିରେ ଆମେ ଭାରତୀୟ ଜୀବନର କେତେକ ଦିଗ ଏବଂ ୧୯ଶ ଶତାବ୍ଦୀରେ ଭାରତରେ ବ୍ରିଟିଶ ଶାସନ ସମ୍ବନ୍ଧରେ ଆଲୋଚନା କରିସାରିଛେ । ଏହି କାଳର ପ୍ରଧାନ ଲକ୍ଷଣ ହେଉଛି, ଭାରତରେ ବ୍ରିଟିଶ କର୍ତ୍ତୃତ୍ୱର ଦୃଢ଼ୀକରଣ ଏବଂ ତତ୍‌ସଂପୃକ୍ତ ଦେଶର ଶୋଷଣ । ସାମରିକ, ବେସାମରିକ ଓ ବାଣିଜ୍ୟ ସଂସ୍ଥାନ—ଏହି ତିନୋଟି ଉପାୟରେ ଭାରତକୁ କରଗତ କରି ରଖାଯାଇଥିଲା । ବ୍ରିଟିଶ ସାମରିକ ଶକ୍ତି ଏବଂ ବ୍ରିଟିଶ ଅଫିସରଙ୍କ ଅଧୀନରେ ଭଡ଼ାଟିଆ ଭାରତୀୟ ସେନା ଅଛନ୍ତି । ଏମାନଙ୍କୁ ବିଦେଶୀ ସେନା କୁହାଯାଇପାରେ —ଦେଶ ଉପରେ ପ୍ରଭୁତ୍ୱ କରିବା ପାଇଁ ଏହାକୁ ରଖାଯାଇଛି । ଆହୁରି ଅଧିକ ଶକ୍ତିଶାଳୀ କର୍ତ୍ତୃତ୍ୱ ରହିଛି ସିଭିଲ ସର୍ଭିସର—ଏକ ଅତି ଦାୟିତ୍ୱହୀନ ଓ ଅତ୍ୟନ୍ତ କେନ୍ଦ୍ରୀଭୂତ ଅମଲାତନ୍ତ୍ର; ଏବଂ ତୃତୀୟ ସେନା ହେଉଛି ବାଣିଜ୍ୟ—ଏହା ଉପରୋକ୍ତ ଦୁହିଁଙ୍କ ସମର୍ଥନରେ ରହିଛି ଏବଂ ସବାପେକ୍ଷା ଅଧିକ ବିପଜ୍ଜନକ; କାରଣ ବେଶି ଶୋଷଣ ଏହାଦ୍ୱାରା ବା ଏହା ତରଫରୁ ହେଉଛି ଏବଂ ଅନ୍ୟ ଦୁଇଟିର ଶୋଷଣ ପନ୍ଥା ଯେପରି ସୁସ୍ପଷ୍ଟ ଏହାର ଶୋଷଣ ସେପରି ଲୁଚିହେ । ବାସ୍ତବିକ ଦୀର୍ଘକାଳ ପର୍ଯ୍ୟନ୍ତ ଏବଂ କେତେକ ପରିମାଣରେ ଆଜି ପୁଣି ଖ୍ୟାତନାମା ଭାରତୀୟମାନେ ଖୁବ୍ ବେଶି । ପ୍ରଥମ ଦୁଇଟିକୁ ଆପତ୍ତି ଉଠାଇଛନ୍ତି ଏବଂ ତୃତୀୟ ପ୍ରତି ସେହିପରି ଗୁରୁତ୍ୱ ଦେଖାଇଲାପରି ମନେହୁଏ ନାହିଁ ।

ସ୍ଥାପିତ ସ୍ୱାର୍ଥ (Vested interest) ସୃଷ୍ଟି କରିବାହିଁ ଭାରତରେ ବ୍ରିଟିଶ୍ ନୀତିର ବରାବର ଲକ୍ଷ୍ୟ ହୋଇଆସିଛି—କାରଣ ଏଗୁଡ଼ିକ ସେମାନଙ୍କ ସୃଷ୍ଟି ହୋଇଥିବା ଯୋଗୁଁ ତାଙ୍କ ଉପରେ ନିର୍ଭର କରି ରହିବ ଏବଂ ଭାରତରେ ତାଙ୍କର ସହାୟକ ହେବ। ଏହିରୂପେ ସାମନ୍ତ ରାଜାମାନଙ୍କୁ ଦୃଢ଼ କରାଗଲା ଏବଂ ବଡ଼ ଜମିଦାର ଓ ତାଲୁକଦାର ଶ୍ରେଣୀ ଜାତ କରାଗଲା ଏବଂ ଏପରି କି ଧର୍ମରେ ହସ୍ତକ୍ଷେପ ନ କରିବା ବାହାନାରେ ସାମାଜିକ କ୍ଷେତ୍ରରେ ରକ୍ଷଣଶୀଳତା ଭାବକୁ ବି ଉତ୍ସାହିତ କରାଗଲା। ଏହିସବୁ ସ୍ଥାପିତ ସ୍ୱାର୍ଥ ଶ୍ରେଣୀଙ୍କ ନିଜର ସ୍ୱାର୍ଥ ଥିଲା ଦେଶକୁ ଶୋଷଣ କରିବାରେ ଏବଂ ବାସ୍ତବିକ ଶୋଷଣ ହେତୁ ହିଁ ସେମାନେ ତିଷ୍ଠି ରହିପାରିଛନ୍ତି। ଭାରତରେ ବ୍ରିଟିଶ ପୁଞ୍ଜି ହିଁ ସବୁଠାରୁ ବଡ଼ ସ୍ଥାପିତ ସ୍ୱାର୍ଥ ହୋଇରହିଛି।

ଭାରତ ସଚୀବ ଥିବା ଲର୍ଡ଼ ସାଲିସ୍‌ବରୀଙ୍କର ଗୋଟିଏ ବିବୃତି ଅନେକେ ଉଦ୍ଧାର କରନ୍ତି। ଏହା ବଡ଼ ଅର୍ଥବ୍ୟଞ୍ଜକ—ସେଥିଲାଗି ଏଠି ମୁଁ କିଛି ଉଦ୍ଧାର କରିବି। ସେ ୧୮୭୫ରେ କହିଥିଲେ :—

"ଭାରତର ରକ୍ତ ଶୋଷଣ କରିବାକୁ ହେବ ତେଣୁ ଯେଉଁ ଅଞ୍ଚଳରେ ରକ୍ତ ଗଚ୍ଛିତ ହୋଇ ରହିଛି ଅଥବା ଅନ୍ତତଃ ଯଥେଷ୍ଟ ଅଛି ସେଠି ବର୍ଚ୍ଛା ମାରିବା ଚଳିବ, ଏହା ଅଙ୍ଗରୁ ଯେଉଁ ଅଂଶ ଦୁର୍ବଳ ହୋଇ ପଡ଼ିଲାଣି, ସେଠି ଏହା ଗ୍ଭଳନା କରାଯିବ ନାହିଁ।"

ଭାରତରେ ବ୍ରିଟିଶ ଅଧିକାର ଏବଂ ତାଙ୍କ ଗ୍ଭଳିତ ନୀତିର ଅନେକ ପରିଣତି ଘଟିଲା—କେତେକ ବ୍ରିଟିଶଙ୍କ ମନକୁ ସୁହାଇଲା ନାହିଁ। ମାତ୍ର ନିଜର କାର୍ଯ୍ୟର ପରିଣତିକୁ ବ୍ୟକ୍ତିବିଶେଷ ବି ଆସ୍ୱତ୍ତ କରିପାରନ୍ତି ନାହିଁ; ଦେଶ ପକ୍ଷରେ ତ ଏହା ଆହୁରି କଷ୍ଟ। ଅନେକ ସମୟରେ ନିର୍ଦ୍ଦିଷ୍ଟ କାର୍ଯ୍ୟକଳାପ ଫଳରେ ନୂତନ ଶକ୍ତିର ଆବିର୍ଭାବ ହେଲା—ତାହା ସେସବୁ କାର୍ଯ୍ୟକଳାପର ବିରୋଧ କଲା, ତାହା ସହିତ ଲଢ଼ିଲା ଏବଂ ଅତିକ୍ରମ କରି ଗ୍ଭଲିଲା। ସାମ୍ରାଜ୍ୟବାଦ ଜାତୀୟତା ସୃଷ୍ଟି କରେ। ପୁଞ୍ଜିବାଦ କାରଖାନାମାନଙ୍କରେ ବହୁସଂଖ୍ୟକ ଶ୍ରମିକ ଠୁଳ କରାଏ; ସେମାନେ ଏକଜୁଟ ହୁଅନ୍ତି ଓ ପୁଞ୍ଜିବାଦୀ ମାଲିକଙ୍କ ସହ ଲଢ଼ନ୍ତି। କୌଣସି ଆନ୍ଦୋଳନର ଗତିରୋଧ କରିବା ନିମନ୍ତେ ଏବଂ ଜାତିକୁ ଦବାଇବା ନିମନ୍ତେ ହୋଇଥିବା ସରକାରୀ ଦମନ ଫଳରେ ପ୍ରକୃତରେ ସେହି ଜାତି ବା ଆନ୍ଦୋଳନ ଦୃଢ଼ ଓ ଶକ୍ତିଶାଳୀ ହୋଇଯାଏ ଏବଂ ନିଷ୍ପତ୍ତିମୂଳକ ବିଜୟ ଲାଗି ପ୍ରସ୍ତୁତ ହୋଇଯାଏ।

ଆମେ ଦେଖିଛେ, ଭାରତରେ ବ୍ରିଟିଶ ଔଦ୍ୟୋଗିକ ନୀତି ହେତୁ ଗ୍ରାମ୍ୟକରଣ ହେବା ବୃଦ୍ଧି ପାଇଲା; ଅର୍ଥାତ୍ ଅଧିକରୁ ଅଧିକ ଲୋକ ଅନ୍ୟ କୌଣସି ଧନ୍ଦା ନ ପାଇ ସହରମାନଙ୍କରୁ ଗ୍ରାମକୁ ଗଲେ। ଜମି ଉପରେ ବୋଝ ବଢ଼ିଲା ଏବଂ କୃଷକର ଜମି ଅର୍ଥାତ୍ ସେମାନଙ୍କ କ୍ଷେତ ବା ବିଲର ଆକାର ଆହୁରି ଅଧିକ ଛୋଟ ହୋଇଗଲା। ଅଧିକାଂଶ ଜମି

ଲାଭପ୍ରଦ ହେଲା ନାହିଁ (Uneconomic)। ଏହାର ଅର୍ଥ ହେଉଛି ଜଣେ କୃଷକର ଜୀବନ ଧାରଣ ପ୍ରକାଶେ ନିତାନ୍ତ ଆବଶ୍ୟକୀୟ ନ୍ୟୂନତମ ଆୟ ବି ସେଥିପାଇଁ ବଢ଼ ନ ଥିଲା। କିନ୍ତୁ କୃଷକର ଅନ୍ୟ ଗତି ନ ଥିଲା; ତାକୁ ଏହିଥିରେ ହିଁ ଚଳିବାକୁ ପଡ଼ିଲା—ଫଳରେ ଅଧିକ ଋଣରେ ବୁଡ଼ିଲା। ବ୍ରିଟିଶ ଗଭର୍ଣ୍ଣମେଣ୍ଟର ଭୂମି ସମ୍ବନ୍ଧୀୟ ନୀତି ଦ୍ୱାରା ଅବସ୍ଥା ଖୁବ୍ ଖରାପ ହେଲା – ବିଶେଷଭାବରେ ହେଲା ତାଲୁକାଦାରୀ ଓ ଜମିଦାରୀ ଅଞ୍ଚଳରେ। ଏହି ଅଞ୍ଚଳ ଏବଂ ଯେଉଁ ଅଞ୍ଚଳରେ କୃଷକ ଭୂସ୍ୱତ୍ୱାଧିକାରୀ ପ୍ରଥା ପ୍ରଚଳନ ଅଛି, ଏହି ଉଭୟ ଅଞ୍ଚଳରେ ଗଭର୍ଣ୍ଣମେଣ୍ଟକୁ ରାଜସ୍ୱ କିମ୍ବା ଜମିଦାରକୁ ଖଜଣା ନ ଦେଲେ କୃଷକକୁ ତା ଜମିରୁ ଉଚ୍ଛେଦ କରାଗଲା। ଏହାର ଫଳସ୍ୱରୂପ ଏବଂ ଜମିଉପରେ ନିର୍ଭର କରି ଚଳିବା ନୂତନ ଲୋକଙ୍କ ସଂଖ୍ୟା ବୃଦ୍ଧି ହେବାରୁ ତାର ଶେଷଫଳରେ ମଫସଲ ଅଞ୍ଚଳରେ ବହୁସଂଖ୍ୟକ ଭୂମିହୀନ ମୂଲିଆଙ୍କ ସଂଖ୍ୟା ବୃଦ୍ଧିପାଇଲା ଏବଂ ମୁଁ ତ ତଳେ କହିଛି ବଡ଼ ଭୀଷଣ ଦୁର୍ଭିକ୍ଷମାନ ପଡ଼ିଲା।

ଏହି ବହୁସଂଖ୍ୟକ ଦଖଲଚ୍ୟୁତ ଶ୍ରେଣୀ ଜମି ଚାଷ କରିବା ନିମନ୍ତେ ବ୍ୟାକୁଳ ହେଉଥିଲେ; ମାତ୍ର ଚତୁର୍ଦ୍ଦିଗରେ ଯଥେଷ୍ଟ ଜମି ନ ଥିଲା। ଏହି ଦାବୀର ସୁବିଧାନେଇ ଜମିଦାରୀ ଅଞ୍ଚଳରେ ଜମିଦାରମାନେ ଖଜଣା ବଢ଼ାଇଦେଲେ। ପ୍ରଜାକୁ ରକ୍ଷା କରିବା ନିମନ୍ତେ ହୋଇଥିବା କେତେକ ପ୍ରଜାସ୍ୱତ୍ୱ ଆଇନ ଦ୍ୱାରା ଶତକଡ଼ା ନିର୍ଦ୍ଦିଷ୍ଟ ପରିମାଣରୁ ହଠାତ୍ ଅଧିକ ଖଜଣା ବୃଦ୍ଧି ନିଷେଧ କରାଗଲା। କିନ୍ତୁ ନାନା ଉପାୟରେ ଏହା ଅତିକ୍ରମ କରାଗଲା ଏବଂ ସକଳ ପ୍ରକାର ବେଆଇନ ପାଉଣା ଦାବୀ ହେଲା। ମୁଁ ଅରେ ଶୁଣିଛି ଯେ ଆଉଧର ଏକ ତାଲୁକାଦାରୀ ମାହାଲରେ ୫୦ ପ୍ରକାର ବେଆଇନ ପାଉଣା ଆଦାୟ ହେଉଥିଲା। ଏଥିରେ ପ୍ରଧାନ ହେଉଛି ନଜରାନା—(ଆମ ଅଞ୍ଚଳରେ ଯାହାକୁ ସଲାମି କହନ୍ତି)– ପ୍ରଥମେ ଚାଷୀ ଚାଷ ଆରମ୍ଭ କରିବାକୁ ହେଲେ ଏହିକ ଦେବାକୁପଡ଼େ। ଗରୀବ ଚାଷୀ ଏସବୁ ଭିନ୍ନ ପ୍ରକାର ପାଉଣା ଦେବ କିପରି? ବଣିଆ ବା ଗାଁ ମହାଜନଠାରୁ ଋଣ କରି ଦେଇପାରିବେ। ଋଣ ପରିଶୋଧ କରିବାର ସାମର୍ଥ୍ୟ ବା ଆଶା ନ ଥିଲାବେଳେ ଋଣ କରିବା ଏକ ନିର୍ବୋଧତା। କିନ୍ତୁ ଗରୀବ ଚାଷୀ କଣ କରିବ? ସେ କୌଣସିଠାରେ କିଛି ଆଶା ଦେଖିପାରେନା; କିଛି ହେଲେ ମିଳିବ, ଏହି ଆଶା ଉପରେ ଆଶାପୋଷଣ କରି ଯେତେ ମୂଲ୍ୟ ଦେବାକୁ ପଡ଼ୁ ପଛକେ ସେ ଜମି ଚାଷ କରିବାକୁ ଚାହେଁ। ଫଳସ୍ୱରୂପ ଅନେକ ସମୟରେ ସେ ଋଣ କରିବା ସତ୍ତ୍ୱେ ବି ଜମିଦାରର ପାଉଣା ଦେଇ ପାରେନା, ଜମିରୁ ତାକୁ ଉଚ୍ଛେଦ କରାଯାଏ ଏବଂ ସେ ପୁଣି ଯାଇ ଭୂମିହୀନ ମୂଲିଆ ଶ୍ରେଣୀରେ ପରିଣତ ହୁଏ।

ଉଭୟ ଭୂସ୍ୱତ୍ୱାଧିକାରୀ କୃଷକ ଓ ପ୍ରଜା ଏବଂ ଅନେକ ଭୂମିହୀନ ମୂଲିଆ ବି ବଣିଆ ବା ସାହୁକାର କବଳରେ ପଡ଼ନ୍ତି। ସେମାନେ ଋଣରୁ ଆଦୌ ମୁକ୍ତ ହୋଇ ପାରନ୍ତି ନାହିଁ। କିଛି ରୋଜଗାର କଲେ ମାତ୍ରେ ସେମାନେ ଅସୁଲ ଦିଅନ୍ତି; ମାତ୍ର ସୁଧ ହିଁ ଏହାକୁ ଗ୍ରାସ କରିନିଏ ଏବଂ ପୁରୁଣା ଋଣ ସେହିପରି ରହିଥାଏ। ମହାଜନ ତାକୁ ଶୋଷଣ

କରିବାରେ କିଛି ବାଧା ନ ଥାଏ । ଫଳସ୍ୱରୂପ ଅର୍ଦ୍ଧଦାସ ରୂପେ ସେମାନେ ତା ପାଖରେ ବନ୍ଧା ହୋଇ ରହନ୍ତି । ଗରିବ ପ୍ରଜା ଚାଷୀ ଏକପ୍ରକାର ଦୁଇଟି ଦାସ ହୁଏ—ଜମିଦାରର ଓ ମହାଜନର ।

ଏ ପ୍ରକାର ଅବସ୍ଥା ଯେ ବେଶିଦିନ ଚାଲିପାରିବ ନାହିଁ ଏହା ସୁସ୍ପଷ୍ଟ । ଏପରି ଦିନ ଆସିବ ଯେତେବେଳେ କୃଷକ ଉପରେ ଯେତେସବୁ ଦାବୀ ହେଉଛି ତାହା ଦେବା ନିମନ୍ତେ ସେ ସମ୍ପୂର୍ଣ୍ଣ ଅସମର୍ଥ ହୋଇପଡ଼ିବ, ମହାଜନ ଆଉ ଅଧିକ ଟଙ୍କା ଦେବା ନିମନ୍ତେ ଅସ୍ୱୀକାର କରିବ ଏବଂ ଜମିଦାର ଉପରେ ମାଡ଼ ପଡ଼ିବ । ଏହି ପ୍ରଥା ଭିତରେ ହିଁ ଏଥିର ଧ୍ୱଂସ ଓ ଅନ୍ତର୍ଦ୍ଧାନର ବୀଜ ନିହିତ ରହିଛି । ଆଜିକାଲି ସମଗ୍ର ଦେଶରେ ଯେଉଁ ଜମି ସମ୍ବନ୍ଧୀୟ ଗୋଳମାଳ ଦେଖାଯାଉଛି, ସେଥିରେ ଏହି ପ୍ରଥା ଭାଙ୍ଗି ପଡ଼ିବାର ସୂଚନା ମିଳୁଛି—ଏହା ବେଶିଦିନ ଟିକି ପାରିବ ନାହିଁ ।

ମୋର ଭୟ ହେଉଛି ଯେ ଏଥିପୂର୍ବରୁ ଗୋଟିଏ ଚିଠିରେ ଯେଉଁ ବିଷୟ ଅଲଗା ରୂପେ ବର୍ଣ୍ଣନା କରିଥିଲି ପୁଣି ତାହା ଏଥିରେ ପୁନରୁକ୍ତ କରୁଛି । କିନ୍ତୁ ତୋର ମନେ-ରଖିବା ଦରକାର—ଭାରତ ବୋଇଲେ ଏହି ଲକ୍ଷ ଲକ୍ଷ ଅଭାଗା କୃଷକ ଶ୍ରେଣୀ; ଆମ ଆଖି ଆଗରେ ନାଚୁଥିବା ମୁଷ୍ଟିମେୟ ମଧ୍ୟବିତ୍ତ ଶ୍ରେଣୀ ନୁହନ୍ତି ।

ବହୁସଂଖ୍ୟକ ଦଖଲଚ୍ୟୁତ ଭୂମିହୀନ ମଜଦୁର ଶ୍ରେଣୀ ରହିଥିବାରୁ ବଡ ବଡ଼ କାରଖାନା ଆରମ୍ଭ କରିବା ସହଜ ହେଲା । ଯଦି ମୂଲନେଇ କାମ କରିବାକୁ ଯଥେଷ୍ଟ ଲୋକ (ପ୍ରକୃତରେ ଯଥେଷ୍ଟଠାରୁ ଆହୁରି ବେଶି ଲୋକ) ପ୍ରସ୍ତୁତ ଥିବେ, ତେବେ ଏହି ସବୁ କାରଖାନା ଚାଲିପାରେ । ଏକଟୁକୁରା ଜମି ଯାହାର ଥାଏ, ସେ ତାହା ଛାଡ଼ି ଆସିବାକୁ ଚାହେନା । ତେଣୁ କାରଖାନା ପ୍ରଥା ପ୍ରଚଳନ ପାଇଁ ବହୁ ସଂଖ୍ୟକ ଭୂମିହୀନ ବେକାର ଲୋକ ଦରକାର ଏବଂ ଏମାନେ ଯେତେ ବେଶି ସଂଖ୍ୟାରେ ରହିବେ, ମଜୁରି କମ୍ କରି କାମ କରିବା ଓ ସେମାନଙ୍କୁ ନିୟନ୍ତ୍ରଣ କରିବା କାରଖାନା ମାଲିକଙ୍କ ପକ୍ଷରେ ସେତେ ସହଜ ହେବ ।

ମୋର ମନେହୁଏ, ମୁଁ ତତେ କହିଛି, ଠିକ୍ ସମୟକୁ ଭାରତରେ କ୍ରମେ ଏକ ନୂତନ ମଧ୍ୟବିତ୍ତ ଶ୍ରେଣୀ ଦେଖାଦେଲେ ଏବଂ ମୂଳଧନ ଖଟାଇବା ନିମନ୍ତେ କିଛି ପୁଞ୍ଜି ସେମାନେ ସଞ୍ଚୟ କଲେ । ଧନ ରହିଛି, ମଜଦୁର ବି ରହିଛନ୍ତି—ଫଳରେ କାରଖାନା ବସିଲା । ଭାରତରେ ଯେତେ ମୂଳଧନ ଲଗାହୋଇଛି; ସେଥିରୁ ଅଧିକାଂଶ ହେଉଛି ବିଦେଶୀ (ବ୍ରିଟିଶ) ପୁଞ୍ଜି । ବ୍ରିଟିଶ ସରକାର ଏହିସବୁ କଳକାରଖାନା ଉତ୍ସାହିତ କରି ନ ଥିଲେ । ଭାରତକୁ ଏକ ଖାଣ୍ଟି କୃଷିପ୍ରଧାନ ଦେଶ କରି ରଖିଲେ ଇଂଲଣ୍ଡ କଞ୍ଚାମାଲ ପାଇବ ଏବଂ ଇଂଲଣ୍ଡର ତିଆରି ମାଲସବୁ ଏଠି ବିକ୍ରୀ ହୋଇପାରିବ—କାରଖାନାସବୁ ହେବା ଏ ନୀତି ବିରୁଦ୍ଧ । କିନ୍ତୁ ମୁଁ ଉପରେ ଯେପରି ଦର୍ଶାଇଦେଇଛି ଅବସ୍ଥା ଏପରି ଥିଲା ଯେ ବଡ଼ କଳକାରଖାନା ଦ୍ୱାରା

ଉତ୍ପାଦନ ଭାରତରେ ଆରମ୍ଭ ହେଲା ଏବଂ ବ୍ରିଟିଶ ସରକାର ଏହାକୁ ରୋକିପାରିଲା ନାହିଁ । ତେଣୁ ଗଭର୍ଣ୍ଣମେଣ୍ଟର ଅନିଚ୍ଛା ସତ୍ତ୍ୱେ କାରଖାନା ବୃଦ୍ଧି ପାଇଲା । ସରକାରର ଅନିଚ୍ଛା ନିମ୍ନଲିଖିତ ରୂପେ ଦେଖାଯାଉଥିଲା—ଭାରତରେ ଯନ୍ତ୍ରପାତି ପ୍ରବେଶରେ ଟିକସ ବସିଲା । ଆଉ ଏକ ହେଉଛି କାର୍ପାସ ଅବକାରୀ କର (Cotton excise duty) । ଏହା ହେଉଛି ପ୍ରକୃତରେ ଭାରତୀୟ କାର୍ପାସ ମିଲମାନଙ୍କ ଉତ୍ପନ୍ନ ଜିନିଷ ଉପରେ ଟିକସ ଧାର୍ଯ୍ୟ ।

ପ୍ରଥମେ ଭାରତୀୟ ଶିଳ୍ପପତି (Industrialist)ଙ୍କ ଭିତରେ ଶ୍ରେଷ୍ଠ ହେଉଛନ୍ତି ଜାମସେଦଜୀ ନସର ଓ୍ୱାଞ୍ଜୀ ଟାଟା । ସେ ଅନେକ ଶିଳ୍ପ ଉଦ୍ୟୋଗ ଆରମ୍ଭ କଲେ । ସବୁଠାରୁ ବଡ଼ ହେଉଛି ବିହାରର ସାକ୍‌ଚିଠାରେ ଟାଟା ଲୁହା ଓ ଇସ୍ପାତ କମ୍ପାନୀ ବା ଟାଟା ଆୟରନ୍ ଆଣ୍ଡ ଷ୍ଟିଲ୍ କମ୍ପାନୀ । ଏହା ୧୯୦୭ରେ ଆରମ୍ଭ ହେଲା ଏବଂ ୧୯୧୮ରେ କାର୍ଯ୍ୟ ଆରମ୍ଭ କଲା । ଲୁହା ଶିଳ୍ପ ଏକ ମୌଳିକ ଶିଳ୍ପ । ଆଜିକାଲି ଲୁହା ଉପରେ ଏତେ ନିର୍ଭର କରାଯାଉଛି ଯେ ଯେଉଁ ଦେଶରେ ଲୁହା ଶିଳ୍ପ ନାହିଁ ତାକୁ ଅନେକ ଅଂଶରେ ଅନ୍ୟ ଦେଶ ଉପରେ ନିର୍ଭର କରିବାକୁ ପଡ଼ୁଛି । ଟାଟା ଲୁହା କାରଖାନା ଗୋଟାଏ ପ୍ରକାଣ୍ଡ ବ୍ୟାପାର । ସାକ୍‌ଚି ଗ୍ରାମ ଏବେ ଜାମସେଦପୁର ସହରରେ ପରିଣତ ହେଲାଣି ଏବଂ ସେଠୁ ଟିକିଏ ଦୂରରେ ରେଲ ଷ୍ଟେସନକୁ ଟାଟାନଗର କହନ୍ତି । ଲୌହ କାରଖାନା ବିଶେଷ ଭାବରେ ଯୁଦ୍ଧ କାଳରେ ବଡ଼ ମୂଲ୍ୟବାନ; କାରଣ ଯୁଦ୍ଧ ପାଇଁ ଅସ୍ତ୍ରଶସ୍ତ୍ର ଏହା ତିଆରି କରେ । ଇଂରେଜ ସରକାରର ଭାଗ୍ୟ ଯେ ପୃଥିବୀଯୁଦ୍ଧ ଆରମ୍ଭବେଳକୁ ଭାରତରେ ଟାଟା କାରଖାନା ରହିଥିଲା ।

ଭାରତୀୟ କାରଖାନାମାନଙ୍କରେ ଶ୍ରମିକମାନଙ୍କ ଅବସ୍ଥା ଅତି ଶୋଚନୀୟ ଥିଲା । ୧୯ଶ ଶତାବ୍ଦୀର ପ୍ରଥମ ଭାଗରେ ଇଂଲଣ୍ଡର କାରଖାନାମାନଙ୍କ ଅବସ୍ଥା ପରି ଦେଖାଯାଏ । ବହୁସଂଖ୍ୟକ ଭୂମିହୀନ ବେକାର ଲୋକ ଥିବାରୁ ମଜୁରି ଥିଲା ବହୁତ କମ୍ ଏବଂ ଶ୍ରମ କରିବା ସମୟ ବହୁତ ଦୀର୍ଘ । ୧୯୧୧ରେ ପ୍ରଥମେ ସାଧାରଣ ଭାରତୀୟ କାରଖାନା ଆଇନ ପାସ୍ ହେଲା । ଏହି ଆଇନ ମଧ୍ୟ ପୁରୁଷଙ୍କ ପାଇଁ ଦୈନିକ ୧୨ ଘଣ୍ଟା ଓ ପିଲାଙ୍କ ପାଇଁ ୬ ଘଣ୍ଟା ନିର୍ଦ୍ଦିଷ୍ଟ କରିଥିଲା ।

ଏହି କାରଖାନାମାନଙ୍କରେ ସବୁ ଭୂମିହୀନ ଶ୍ରମିକ ତ ରହିପାରିଲେ ନାହିଁ; ବହୁସଂଖ୍ୟକ ଆସାମ ଓ ଭାରତର ଅନ୍ୟ ଅଞ୍ଚଳରେ ଥିବା ଚାହା ଓ ଅନ୍ୟ ବାଗ୍‌ବଗିଚାକୁ ସବୁ ଗଲେ । ଯେଉଁ ସମସ୍ତଙ୍କ ସେମାନେ ସେଠି ରହୁଥିଲେ, ଏହି ସବୁ ବଗିଚାମାନଙ୍କର ଏପରି ଅବସ୍ଥାରେ ତାଙ୍କୁ କାର୍ଯ୍ୟ କରିବାକୁ ପଡ଼ୁଥିଲା ଯେ ସେମାନେ ମାଲିକଙ୍କର ଅର୍ଦ୍ଧଦାସ ହୋଇ ରହୁଥିଲେ ।

୨୦ ଲକ୍ଷରୁ ଅଧିକ ଦାରିଦ୍ର୍ୟଗ୍ରସ୍ତ ଭାରତୀୟ ଶ୍ରମିକ ବିଦେଶକୁ ଚାଲାଣ ହେଲେ । ସେମାନଙ୍କ ଭିତରୁ ଅଧିକାଂଶ ସିଂହଳ ଓ ମାଲୟର ଚାହା ବାଗାନ୍‌କୁ ଗଲେ । ଅନେକ ମରିସସ୍ ( ଏହା ଭାରତ ମହାସାଗରରେ ମାଡ଼ାଗାସ୍କାରଠୁ ଦୂରରେ ); ଟ୍ରିନିଡାଡ୍ (ଦକ୍ଷିଣ

ଆମେରିକାର ଠିକ୍ ଉତ୍ତରକୁ ) ଏବଂ ଫିଜି ( ଅଷ୍ଟ୍ରେଲିଆ ନିକଟରେ ) ଦ୍ୱୀପକୁ ଗଲେ; ଏବଂ ଦକ୍ଷିଣ ଆଫ୍ରିକା, ପୂର୍ବ ଆଫ୍ରିକା ଓ ବ୍ରିଟିଶ ଗାଏନା (ଦକ୍ଷିଣ ଆମେରିକାରେ) କୁ ମଧ୍ୟ ଅନେକେ ଗଲେ । ଏଥିରୁ ଅନେକ ଦେଶକୁ ସେମାନେ "ଠିକାଦାର" (Indentured) ଶ୍ରମିକ ହୋଇଗଲେ, ଏହାର ଅର୍ଥ ସେମାନେ କାର୍ଯ୍ୟତଃ ଅର୍ଦ୍ଧଦାସ ରୂପେ ଗଲେ ।

"ଚୁକ୍ତିନାମା" (Indenture) ହେଉଛି ଏକ କାଗଜ—ଏଥିରେ ଏହି ଶ୍ରମିକଙ୍କ ସହିତ ଚୁକ୍ତିନାମା ଲେଖା ହୋଇଥାଏ ଏବଂ ସେହି ଚୁକ୍ତି ଅନୁସାରେ ସେମାନେ ମାଲିକଙ୍କର ଦାସ ହୋଇ ରହନ୍ତି । ଏହି ଚୁକ୍ତିପ୍ରଥାର ବହୁ ଶୋଚନୀୟ ବିବରଣୀସବୁ ବିଶେଷତଃ ଫିଜିରୁ ଆସିଲା—ତା ଫଳରେ ଏଠାରେ ଏକ ଆନ୍ଦୋଳନ ଆରମ୍ଭ ହେଲା ଏବଂ ଏହି ପ୍ରଥା ଉଠାଇ ଦିଆଗଲା ।

କୃଷକ, ଶ୍ରମିକ ଓ ଅନ୍ୟ ଦେଶକୁ ଯାଇଥିବା ଭାରତୀୟଙ୍କ ବିଷୟରେ ଏତିକି । ଏମାନେ ହେଉଛନ୍ତି ଭାରତର ଦରିଦ୍ର, ନୀରବ ଓ ଦୀର୍ଘକାଳ କଷ୍ଟ ଭୋଗୁଥିବା ଜନତା । ପ୍ରକୃତରେ ଚିତ୍କାର କରିବା ଶ୍ରେଣୀ ହେଲେ ନୂତନ ମଧ୍ୟବିତ୍ତ ଶ୍ରେଣୀ—ସେମାନେ କାର୍ଯ୍ୟତଃ ବ୍ରିଟିଶ ସମ୍ବନ୍ଧରୁ ଜାତ; କିନ୍ତୁ ତାହା ଯାହାହେଉ ପଛକେ ସେମାନେ ଏହାକୁ ସମାଲୋଚନା କଲେ । ଏହା ବୃଦ୍ଧି ପାଇଲା ଏବଂ ଏହା ସହିତ ଜାତୀୟ ଆନ୍ଦୋଳନର ବି ବୃଦ୍ଧି ହେଲା । ତୋର ମନେଥିବ ୧୯୦୭-୮ ବେଳକୁ ଏହା ଯାଚିସ୍ଥାନରେ ପହଞ୍ଚିଲା—ସେତେବେଳେ ଏକ ଗଣଆନ୍ଦୋଳନ ବଙ୍ଗଳାକୁ ଦୋହଲାଇ ଦେଲା ଏବଂ ଜାତୀୟ କଂଗ୍ରେସ—ଚରମବାଦୀ ଓ ନରମବାଦୀ—ଏହି ଦୁଇ ଦଳରେ ବିଭକ୍ତ ହୋଇଗଲା । ଅଗ୍ରଗାମୀ ଦଳକୁ ଦବାଇ ଦେଇ ଏବଂ ସାମାନ୍ୟ କିଛି ସଂସ୍କାର ଦେଇ ନରମ ଦଳକୁ ହାତ କରିବାର ସାଧାରଣ ନୀତି ବ୍ରିଟିଶ ଅନୁସରଣ କଲା । ଏତିକିବେଳକୁ ମଞ୍ଚରେ ଆଉ ଏକ ନୂତନ ଜିନିଷର ଆବିର୍ଭାବ ହେଲା—ମୁସଲମାନମାନଙ୍କୁ ସଂଖ୍ୟାଲଘିଷ୍ଠ ସଂପ୍ରଦାୟ ରୂପେ ବିଶେଷ ଅଧିକାର ଓ ଅଲଗା ରାଜନୀତି ଅଧିକାର ଦାବୀ କରାଗଲା । ଏହା ଏବେ ଭଲରୂପେ ଜଣାଶୁଣା ଯେ ଭାରତୀୟଙ୍କ ଭିତରେ ଭେଦଭାବ ସୃଷ୍ଟି କରିବା ନିମନ୍ତେ ଏବଂ ସେହି ଭାବରେ ଜାତୀୟତା ବୃଦ୍ଧିରେ ବାଧା ଦେବା ନିମନ୍ତେ ସେତେବେଳେ ସରକାର ଏହିସବୁ ଦାବୀକୁ ଉତ୍ସାହିତ କରିଥିଲେ ।

କ୍ଷଣକାଳ ଲାଗି ବ୍ରିଟିଶ ଗଭର୍ଣ୍ଣମେଣ୍ଟ ତା ନୀତିରେ କୃତକାର୍ଯ୍ୟ ହେଲା । ଲୋକମାନ୍ୟ ତିଲକ ଜେଲରେ ଥିଲେ ଏବଂ ତାଙ୍କ ଦଳକୁ ଦବାଇ ଦିଆଗଲା, ଶାସନ ସଂସ୍କାରକୁ ନରମ ଦଳୀୟସବୁ ସ୍ୱାଗତ କଲେ, (ସେତେବେଳର ଭାଇସ୍‌ରାୟ ଓ ଭାରତ ସଚିବଙ୍କ ନାମାନୁସାରେ ଏହାକୁ 'ମିଣ୍ଟୋ-ମର୍ଲି ସଂସ୍କାର' କୁହାଯାଏ) ଏହା ଲୋକଙ୍କ ହାତରେ କିଛି କ୍ଷମତା ଦେଇ ନ ଥିଲା । ଅଳ୍ପ କେତେଦିନ ପରେ ବଙ୍ଗ ଭଙ୍ଗ ହୁକୁମ ଉଠାଇନେବାରୁ ବଙ୍ଗାଳି ଭାବ-ପ୍ରବଣତା ଟିକିଏ ସନ୍ତୋଷ ଲାଭକଲା । ୧୯୦୭ରେ ଓ ତା ପରବର୍ତ୍ତୀ ରାଜନୀତିକ ଆନ୍ଦୋଳନ ଆଗ୍ରମଣୌକାର ରାଜନୀତିକଙ୍କର ଅବକାଶ ସମୟର ଖେଳପରି ହେଲା । ତେଣୁ ୧୯୧୪ ରେ ଯୁଦ୍ଧ ଆରମ୍ଭ ବେଳକୁ ଦେଶରେ ବେଶୀ କିଛି ଧନୀୟ

ରାଜନୀତିକ ଜୀବନ ନ ଥିଲା । ଜାତୀୟ କଂଗ୍ରେସରେ କେବଳ ନରମପନ୍ଥୀ ଥିଲେ, ତାହା ବର୍ଷକେ ଥରେ ବସୁଥିଲା ଏବଂ କେତେକ ବୌଦ୍ଧିକ ପ୍ରସ୍ତାବ ପାଶ୍ କରୁଥିଲା ଏବଂ ଆଉ କିଛି କରୁ ନ ଥିଲା । ଜାତୀୟତାର ଭିତ୍ତି ପଡ଼ିଯାଇଥିଲା ।

ରାଜନୀତିକ କ୍ଷେତ୍ର ଛଡ଼ା ପାଶ୍ଚାତ୍ୟ ସହିତ ସଂପର୍କରେ ଆସି ଅନ୍ୟ ପ୍ରତିକ୍ରିୟାସବୁ ଯାଉଥିଲା । ନୂତନ ମଧ୍ୟବିତ୍ତ ଶ୍ରେଣୀର ( ଜନସାଧାରଣଙ୍କର ନୁହେଁ ) ଧାର୍ମିକ ଭାବଧାରା ଦେହରେ ପ୍ରଭାବିତ ହେଲା ଏବଂ ବ୍ରାହ୍ମସମାଜ ଓ ଆର୍ଯ୍ୟସମାଜ ଆଦି ନୂତନ ଆନ୍ଦୋଳନ ଜାଗ୍ରତ ହେଲା ଏବଂ ଜାତି ପ୍ରଥାର କଠୋରତା କମ୍ ହୋଇଗଲା । ବିଶେଷତଃ ବଙ୍ଗଳାରେ ଏକ ସାଂସ୍କୃତିକ ଜାଗରଣ ଦେଖାଦେଲା । ବଙ୍ଗାଳି ଲେଖକମାନେ ଭାରତର ଆଧୁନିକ ଭାଷା ଭିତରେ ବଙ୍ଗଳାକୁ ସର୍ବାପେକ୍ଷା ଉନ୍ନତ କଲେ ଏବଂ ଆମ ଯୁଗର ଜଣେ ଶ୍ରେଷ୍ଠ ବ୍ୟକ୍ତି କବି ରବୀନ୍ଦ୍ରନାଥ ଠାକୁରଙ୍କ ବଙ୍ଗଳାରେ ଆବିର୍ଭାବ ହେଲା—ଆନନ୍ଦର କଥା ସେ ବି ଆଜି ଅଛନ୍ତି (ବିଶ୍ୱକବି ୧୯୪୧ ମସିହା ଅଗଷ୍ଟ ୮ ତାରିଖରେ ମରିଯାଇଛନ୍ତି—ଅନୁବାଦକ) । ବିଜ୍ଞାନ କ୍ଷେତ୍ରରେ ବଡ଼ ବଡ଼ ଲୋକେ ବି ବଙ୍ଗଳାରେ ଜାତ ହେଲେ, ସାର୍ ଜଗଦୀଶଚନ୍ଦ୍ର ବୋଷ (ସେ ବି ମରିଗଲେଣି —ଅନୁବାଦକ ) ଏବଂ ସାର୍ ପ୍ରଫୁଲଚନ୍ଦ୍ର ରାୟ (୧୯୪୪ ମସିହା ଜୁନ ୧୬ ତାରିଖରେ ମରିଛନ୍ତି—ଅନୁବାଦକ ) ଆଉ ଦୁଇଜଣ ବଡ଼ ଭାରତୀୟ ବୈଜ୍ଞାନିକଙ୍କ ନାମ ମୁଁ ଏଠି ଦିଏ—ରାମାନୁଜମ୍ ଓ ସାର୍ ଚନ୍ଦ୍ରଶେଖର ଭେଙ୍କଟରମଣ । ସୁତରାଂ ବିଜ୍ଞାନ କ୍ଷେତ୍ରରେ ଭାରତ ପ୍ରସିଦ୍ଧି ଲାଭକଲା—ଏହି ବିଜ୍ଞାନ ହିଁ ଇଉରୋପରେ ମହତ୍ତ୍ୱର ମୂଳଭିତ୍ତି ହୋଇଥିଲା ।

ଆଉ ଜଣକ ନାମ ମୁଁ ଏଠି ଉଲ୍ଲେଖ କରିପାରେ । ସେ ହେଉଛନ୍ତି ସାର୍ ମହମ୍ମଦ ଇକ୍‌ବାଲ । ସେ ଜଣେ ଉର୍ଦ୍ଦୁ ଏବଂ ବିଶେଷତଃ ପାର୍ସି ଭାଷାରେ ମେଧାବୀ କବି । ଜାତୀୟଭାବପୂର୍ଣ୍ଣ କେତେକ ସୁନ୍ଦର କବିତା ଲେଖିଛନ୍ତି । ଦୁର୍ଭାଗ୍ୟବଶତଃ ତାଙ୍କର ଶେଷ-କାଳକୁ ସେ କବିତା ଲେଖା ଛାଡ଼ିଦେଇ ଅନ୍ୟ କାମରେ ନିଜକୁ ନିୟୋଗ କଲେ ।

ଯୁଦ୍ଧ ପୂର୍ବ ବର୍ଷମାନଙ୍କରେ ଭାରତ ନିର୍ବେଦ ହୋଇ ପଡ଼ିଥିବାବେଳେ ଭାରତର ସମ୍ମାନ ରକ୍ଷାପାଇଁ ଏକ ଦୂର ଦେଶରେ ବୀରତ୍ୱପୂର୍ଣ୍ଣ ଓ ଅପୂର୍ବ ସଂଗ୍ରାମ ଚାଲିଥିଲା—ଏହା ହେଉଛି ଦକ୍ଷିଣ ଆଫ୍ରିକା । ସେଠିକି ବହୁସଂଖ୍ୟକ ଭାରତୀୟ ଶ୍ରମିକ ଓ କେତେକ ବଣିକ ଯାଇଥିଲେ । ସେମାନେ ନାନାପ୍ରକାରେ ଅପମାନିତ ହେଲେ ଓ ତାଙ୍କ ପ୍ରତି ମନ୍ଦ ବ୍ୟବହାର କରାଗଲା; କାରଣ ସେଠି ଜାତିବିଦ୍ୱେଷ ହିଁ ରାଜତ୍ୱ କରୁଥିଲା । ଘଟଣାକ୍ରମେ ଜଣେ ଭାରତୀୟ ଯୁବକ ବାରିଷ୍ଟର ଗୋଟିଏ ମକଦ୍ଦମାରେ ଲଢ଼ିବା ପାଇଁ ସେଠିକି ନିଆହେଲେ । ସେ ନିଜ ଦେଶ ଲୋକଙ୍କର ଅବସ୍ଥା ଦେଖିଲେ ଏବଂ ଏଥିରେ ସେ ଅପମାନିତ ଓ ଦୁଃଖିତ ହେଲେ । ସେ ସେମାନଙ୍କୁ ଯଥାସମ୍ଭବ ସାହାଯ୍ୟ କରିବା ନିମନ୍ତେ ପ୍ରତିଜ୍ଞା କଲେ । ଅନେକ ବର୍ଷ ପର୍ଯ୍ୟନ୍ତ ସେ ନୀରବଭାବରେ କାର୍ଯ୍ୟ କଲେ । ନିଜର ବ୍ୟବସାୟ,

ଧନଦୌଲତ ଗ୍ରହିଲେ ଏବଂ ଯେଉଁ ଉଦ୍ଦେଶ୍ୟ ହୃଦୟରେ ପୋଷଣ କରିଥିଲେ ତହିଁରେ ସମ୍ପୂର୍ଣ୍ଣରୂପେ ମନୋନିବେଶ କଲେ । ଏହି ଲୋକ ହେଉଛନ୍ତି — ମୋହନ ଦାସ କରମଚାନ୍ଦ ଗାନ୍ଧୀ । ଆଜି ଭାରତର ପ୍ରତ୍ୟେକ ସନ୍ତାନ ତାଙ୍କୁ ଜାଣେ ଓ ଶ୍ରଦ୍ଧା କରେ; କିନ୍ତୁ ସେତେବେଳେ ଦକ୍ଷିଣ ଆଫ୍ରିକା ବାହାରେ ସେ ମୋଟେ ପରିଚିତ ନ ଥିଲେ । ହଠାତ୍ ତାଙ୍କ ନାମ ସମୁଦ୍ର ପାର ହୋଇ ଭାରତକୁ ଆସିଗଲା ଏବଂ ଲୋକେ ତାଙ୍କ ବିଷୟରେ ଓ ତାଙ୍କର ସାହସିକ ସଂଗ୍ରାମ ସମ୍ବନ୍ଧରେ ବିସ୍ମୟ, ପ୍ରଶଂସା ଓ ଗର୍ବର ସହିତ ଚର୍ଚ୍ଚା କରିବାକୁ ଲାଗିଲେ । ଦକ୍ଷିଣ ଆଫ୍ରିକା ସରକାର ଭାରତୀୟ ଅଧିବାସୀଙ୍କୁ ଆହୁରି ଅପମାନିତ କରିବା ନିମନ୍ତେ ଚେଷ୍ଟା କରିଥିଲେ ଏବଂ ଗାନ୍ଧୀଙ୍କ ନେତୃତ୍ୱରେ ସେମାନେ ତାହା ମାନିନେବାକୁ ଅସ୍ୱୀକାର କଲେ । ଦରିଦ୍ର, ପଦଦଳିତ, ଅଜ୍ଞ ଶ୍ରମିକସବୁ ଏବଂ ଏକ କ୍ଷୁଦ୍ର ବେପାରୀ ଦଳ ନିଜ ଦେଶରୁ ଏତେ ଦୂରରେ ଏପରି ସାହସିକ ମନୋଭାବ ନେବା ଏକ ଅତି ଅପୂର୍ବ କଥା । ଏହାଠୁଁ ସେମାନେ ଯେଉଁ ପନ୍ଥା ଅବଲମ୍ବନ କଲେ, ତାହା ଆହୁରି ଆଶ୍ଚର୍ଯ୍ୟ କଥା; କାରଣ ରାଜନୀତିକ ଅସ୍ତ୍ର ଭାବରେ ପୃଥିବୀ ଇତିହାସରେ ଏହା ନୂତନ ଥିଲା । ସେହିଦିନଠାରୁ ଆମେ ଏ ସମ୍ବନ୍ଧରେ ବହୁତ ଜାଣିଛେ । ଏହା ହେଲା ଗାନ୍ଧୀଙ୍କ ସତ୍ୟାଗ୍ରହ ଅର୍ଥାତ୍, ସତ୍ୟକୁ ଗ୍ରହଣ କରିବା । ବେଳେ ବେଳେ ଏହାକୁ ନିଷ୍କ୍ରିୟ ପ୍ରତିରୋଧ ବୋଲି କୁହାଯାଏ, କିନ୍ତୁ ଏହା ଠିକ୍ ପରିଭାଷା ନୁହେଁ; କାରଣ ଏହା ଯଥେଷ୍ଟ କ୍ରିୟାଶୀଳ । ଅହିଂସା ଏହାର ଏକ ଉପଯୋଗୀ ଅଂଶ ହୋଇଥିଲେ ସୁଦ୍ଧା ଏହା କେବଳ ଅପ୍ରତିରୋଧ ନୁହେଁ । ଏହି ଅହିଂସା ଯୁଦ୍ଧରେ ଗାନ୍ଧୀ ଭାରତ ଓ ଦକ୍ଷିଣ ଆଫ୍ରିକାକୁ ଚମକାଇଦେଲେ ଏବଂ ଦକ୍ଷିଣ ଆଫ୍ରିକାରେ ଆମ ଦେଶବାସୀ ସ୍ୱେଚ୍ଛାକୃତ ହୋଇ ହଜାର ହଜାର ସଂଖ୍ୟାରେ ଜେଲ ଯିବା ଦେଖି ଭାରତରେ ଲୋକଙ୍କ ଆନନ୍ଦ ଓ ଗର୍ବ ଖେଳିଗଲା । ଆମ ମନରେ ଆମେ ନିଜର ପରାଧୀନତା ଓ ଆମ ନିଜ ଦେଶରେ ଆମର ନପୁଂସକତା ଦେଖି ଲଜ୍ଜିତ ହେଲୁ ଏବଂ ଆମ ତରଫରୁ ଏମାନଙ୍କର ଏହି ସାହସିକ ଦୃଢ଼ଭାବ ହିଁ ଆମର ନିଜର ଆତ୍ମସମ୍ମାନ ବଢ଼ାଇଲା । ହଠାତ୍ ଭାରତ ଏହି ସମସ୍ୟା ଯେପରି ଜାଗ୍ରତ ହୋଇଗଲା ଏବଂ ଦକ୍ଷିଣ ଆଫ୍ରିକାକୁ ଟଙ୍କା ସ୍ରୋତ ଚାଲିଲା । ଗାନ୍ଧିଜୀ ଓ ଦକ୍ଷିଣ ଆଫ୍ରିକା ସରକାର ଭିତରେ ରାଜିନାମା ହେବା ଫଳରେ ସଂଗ୍ରାମ ବନ୍ଦ ହୋଇଗଲା । ଯଦି ସେତେବେଳେ ଭାରତୀୟଙ୍କ ପାଇଁ ଏହା ନିଃସନ୍ଦେହ ବିଜୟ ହେଲା, ତଥାପି ଅନେକ ଭାରତୀୟମାନଙ୍କର ଅସୁବିଧା ସବୁ ଏବେ ବି ରହିଛି ଏବଂ କୁହାଯାଏ ଯେ ଦକ୍ଷିଣ ଆଫ୍ରିକା ସରକାର ପୁରାତନ ଚୁକ୍ତି ରକ୍ଷାକରି ନାହିଁ । ଦରିଆପାରି ଭାରତୀୟଙ୍କ ସମସ୍ୟା ଏବେ ସୁଦ୍ଧା ରହିଛି ଏବଂ ଭାରତ ସ୍ୱାଧୀନ ନ ହେବା ପର୍ଯ୍ୟନ୍ତ ଏହା ସେହିପରି ରହିଥିବ । ଭାରତୀୟମାନେ ଆପଣା ଦେଶରେ ନିଜର ସମ୍ମାନ ନ ପାଇ ଥିଲାବେଳେ ଅନ୍ୟତ୍ର ନିଜର ସମ୍ମାନ କିପରି ରକ୍ଷା କରି ପାରିବେ ? ଆମ ନିଜ ଦେଶର ସ୍ୱାଧୀନତା ପାଇଁ ନିଜକୁ ସାହାଯ୍ୟ କରିବାରେ ଯେପର୍ଯ୍ୟନ୍ତ ସଫଳ ହୋଇ ନାହୁଁ, ସେପର୍ଯ୍ୟନ୍ତ ସେମାନଙ୍କୁ କିପରି ସାହାଯ୍ୟ କରିପାରିବା ?

ଯୁଦ୍ଧ ପୂର୍ବ ବର୍ଷମାନଙ୍କରେ ଭାରତର ଅବସ୍ଥା ଏହିପରି ଥିଲା । ୧୯୧୧ରେ ଯେତେବେଳେ ଇଟାଲୀ ତୁର୍କି ଆକ୍ରମଣ କଲା, ସେତେବେଳେ ଭାରତରେ ତୁର୍କି ପ୍ରତି ଖୁବ୍ ସହାନୁଭୂତି ଦେଖାଦେଲା; ଯେହେତୁ ତୁର୍କିକୁ ଏକ ଏସିଆୀୟ ଓ ପ୍ରାଚ୍ୟ ଦେଶରୂପେ ଗଣା ହେଉଥିଲା; ସେହିହେତୁ ସମସ୍ତ ଭାରତୀୟଙ୍କ ସହିଚ୍ଛା ତା ପ୍ରତି ଯାଉଥିଲା । ବିଶେଷ ଭାବରେ ଭାରତୀୟ ମୁସଲମାନଙ୍କୁ ଏହା ସ୍ପର୍ଶ କଲା । କାରଣ ସେମାନେ ତୁର୍କିର ସୁଲତାନଙ୍କୁ ଖଲିଫା ବା ଇସଲାମର ମୁଖିଆ ବୋଲି ବିଚାରୁଥିଲେ । ସେହି ସମୟରେ ମଧ୍ୟ ତୁର୍କିର ସୁଲତାନ ଅବଦୁଲ ହମିଦଙ୍କ ନେତୃତ୍ୱରେ "ଇସଲାମ ମୈତ୍ରୀ" କଥା ବି ଉଠିଥିଲା । ୧୯୧୨ ଓ ୧୩ର ବଲକାନ ଯୁଦ୍ଧରେ ଭାରତୀୟ ମୁସଲମାନମାନେ ଆହୁରି ବେଶି ଉଦ୍‌ବିଗ୍ନ ହୋଇଥିଲେ ଏବଂ ବନ୍ଧୁତା ଓ ସଦିଚ୍ଛା ଜ୍ଞାପନ କରିବା ନିମନ୍ତେ 'ଲାଲ ଅର୍ଦ୍ଧଚନ୍ଦ୍ର ମିଶନ' (Red Crescent Mission) ନାମକ ଏକ ମେଡ଼ିକାଲ ମିଶନ୍ ତୁର୍କିର ଆହତ ଲୋକଙ୍କୁ ସାହାଯ୍ୟ ଦେବା ନିମନ୍ତେ ଭାରତରୁ ଯାଇଥିଲା ।

ଅଳ୍ପ କେତେଦିନ ପରେ ବିଶ୍ୱଯୁଦ୍ଧ ଆରମ୍ଭ ହେଲା ଏବଂ ତୁର୍କି ଇଂଲଣ୍ଡର ଶତ୍ରୁରୂପେ ଏଥିରେ ବ୍ୟାପୃତ ହେଲା । କିନ୍ତୁ ଏହା ଯୁଦ୍ଧକାଳର କଥା—ମୋତେ ଏଇଠି ବନ୍ଦ ରଖିବାକୁ ହେବ ।

## ୧୪୮ : ଯୁଦ୍ଧ ୧୯୧୪-୧୯୧୮

ମାର୍ଚ୍ଚ ୩୧, ୧୯୩୩

ଏହି ଯୁଦ୍ଧ ସମ୍ବନ୍ଧରେ ମୁଁ ତତେ କଣ ଲେଖିବି ? ଏହି ବିଶ୍ୱଯୁଦ୍ଧକୁ ମହାସମର ବୋଲି କହନ୍ତି । ଏହା ଚାରିବର୍ଷରୁ ଅଧିକ ସମୟ ଭିତରେ ଇଉରୋପ, ଏସିଆ ଓ ଆଫ୍ରିକାର କେତେକ ଅଂଶକୁ ଧ୍ୱଂସ କଲା ଏବଂ ଲକ୍ଷ ଲକ୍ଷ ଯୁବକଙ୍କୁ ଜୀବନାରମ୍ଭରୁହିଁ ଶେଷ କରିଦେଲା । ଯୁଦ୍ଧର କଳ୍ପନା କରିବା କିଛି ଆମୋଦଦାୟକ ନୁହେଁ । ଏହା ଏକ କଦର୍ଯ୍ୟ ଜିନିଷ; କିନ୍ତୁ ଅନେକ ସମୟରେ ଏହାର ପ୍ରଶଂସା କରାଯାଏ ଏବଂ ଉଜ୍ଜ୍ୱଳ ବର୍ଣ୍ଣରେ ଚିତ୍ରିତ କରାଯାଏ; କୁହାଯାଏ ଯେ ନିଆଁ ମୂଲ୍ୟବାନ ଧାତୁସବୁକୁ ଶୋଧନ କଲାପରି ଅତ୍ୟନ୍ତ ସହଜ ଓ ବିଳାସ ଜୀବନଯାପନ କରି କଳୁଷିତ ଓ ନରମ ହୋଇ ଯାଇଥିବା ଆଳସ୍ୟ ପରାୟଣ ଜାତିକୁ ଯୁଦ୍ଧ ପବିତ୍ର କରେ ଓ ଦୃଢ଼ କରେ । ଉଚ୍ଚ ସାହସ ଓ ହୃଦୟ ଆନ୍ଦୋଳନକାରୀ ତ୍ୟାଗର ଦୃଷ୍ଟାନ୍ତ ସବୁ ଆମକୁ ଦେଖାଇ ଦିଆ ହୁଏ, ଯତେ କି ଯୁଦ୍ଧ ହେଉଛି ଏହି ଦୁଇ ସଦ୍‌ଗୁଣର ଜନ୍ମଦାତା !

ତୋ ସହିତ ଯୁଦ୍ଧର କେତେକ କାରଣ ମୁଁ ପରୀକ୍ଷା କରିବାକୁ ଚେଷ୍ଟା କରିଛୁ, ଉପରେ ପୁଞ୍ଜିବାଦୀ ଶିଳ୍ପୋନ୍ନତ ଦେଶମାନଙ୍କର ଲୋଭ, ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କର ବୈର-ତାର ସଙ୍ଘାତ ଘଟିଛି ଏବଂ ସଂଘର୍ଷ ଅନିବାର୍ଯ୍ୟ ହୋଇପଡ଼ିଛି । ଉପରି ଭାବରେ ଏହିସବୁ ଦେଶରେ ଶିଳ୍ପୋଦ୍ୟୋଗର କର୍ତ୍ତାମାନେ ଶୋଷଣ କରିବା ନିମନ୍ତେ ଅଧିକରୁ ଅଧିକ ସୁଯୋଗ ଓ ଅଞ୍ଚଳ ଖୋଜୁଥିଲେ, ଧନବାନ ଲୋକେ ଉପରି ଅଧିକ ଧନ କରିବାକୁ ଚାହୁଁଥିଲେ, ଅସ୍ତ୍ରଶସ୍ତ୍ର ତିଆରି କଳବାଲା ଉପରି ବହୁତ ଲାଭ ଆଶା କରୁଥିଲେ । ତେଣୁ ଏହିସବୁ ଲୋକେ ଯୁଦ୍ଧରେ ପ୍ରବେଶ କଲେ ଏବଂ ସେମାନଙ୍କ ଆଦେଶାନୁସାରେ ଓ ସେମାନଙ୍କୁ ପ୍ରତିନିଧିତ୍ୱ କରୁ-ଥିବା ବୃଦ୍ଧ ରାଜନୀତିଙ୍କ ଓ ସେହି ଶ୍ରେଣୀର ପ୍ରରୋଚନାରେ ଦେଶସବୁର ଯୁବକମାନେ ନିଜ ନିଜ ଗଳା କାଟିବାକୁ ଧାଇଁପଡ଼ିଲେ । ଏହି ଯୁବକଙ୍କ ଭିତରୁ ବହୁସଂଖ୍ୟକ ଏବଂ ଏଥିରେ ସମ୍ପୃକ୍ତ ଥିବା ସବୁଦେଶର ସାଧାରଣ ଲୋକ କେଉଁ କାରଣରୁ ଯୁଦ୍ଧ ଆରମ୍ଭ ହେଲା, ସେ ବିଷୟରେ କିଛି ଜାଣି ନ ଥିଲେ । ସେମାନେ ପ୍ରକୃତରେ ଯୁଦ୍ଧରେ ସମ୍ପୃକ୍ତ ନ ଥିଲେ, ବିଜୟ ହେଉ ବା ବିଫଳ ହେଉ, ସେମାନେ ସବୁଥିରେ କ୍ଷତିଗ୍ରସ୍ତ ହେବେ । ଏହା ଧନୀ ଲୋକଙ୍କର ଲକ୍ଷ ଲକ୍ଷ ଲୋକଙ୍କ ପ୍ରାଣ ଓ ବିଶେଷତଃ ଯୁବକଙ୍କ ପ୍ରାଣ ନେଇ ଖେଳ । କିନ୍ତୁ ସାଧାରଣ ଲୋକ ଯୁଦ୍ଧ କରିବା ନିମନ୍ତେ ପ୍ରସ୍ତୁତ ନ ହେବା ପର୍ଯ୍ୟନ୍ତ କୌଣସି ଯୁଦ୍ଧ ହୋଇ-ପାରିବ ନାହିଁ । ମୁଁ ତତେ କହିଛି ସବୁ ମହାଦେଶର ଦେଶମାନଙ୍କରେ ବାଧ୍ୟତାମୂଳକ ସୈନ୍ୟଶିକ୍ଷା ବା ବାଧ୍ୟତାମୂଳକ କାର୍ଯ୍ୟ କରାଗଲା; ଇଂଲଣ୍ଡରେ ପରେ ଯୁଦ୍ଧବେଳେ ହେଲା । କିନ୍ତୁ ପ୍ରକୃତରେ ମୋଟାମୋଟି ଯଦି ଏଥିରେ ସବୁଲୋକ ଇଚ୍ଛା ନ କରନ୍ତି, ତେବେ ବାଧ୍ୟତାମୂଳକ ଭାବରେ ସବୁଲୋକଙ୍କ ପ୍ରତି ବଳପ୍ରୟୋଗ କରି କିଛି ହୋଇପାରିବ ନାହିଁ ।

ତେଣୁ ସମସ୍ତ ଯୁଦ୍ଧରତ ଦେଶର ଲୋକଙ୍କ ଭିତରେ ଦେଶପ୍ରୀତି ଓ ଉତ୍ସାହ ଜାଗ୍ରତ କରାଇବା ନିମନ୍ତେ ପ୍ରଚୁର ଉଦ୍ୟମ ହେଲା । ପ୍ରତ୍ୟେକ ଦେଶ ପକ୍ଷ ଅନ୍ୟକୁ ଆକ୍ରମଣକାରୀ (Aggressor) ବୋଲି କହିଲେ ଏବଂ ଆତ୍ମରକ୍ଷା ପାଇଁ ଲଢ଼ାଇ କରୁଛନ୍ତି ବୋଲି ତାର ଛଳନା କଲେ । ଜର୍ମାନୀ କହିଲା ଯେ ତାର ଚତୁର୍ଦ୍ଦିଗରେ ଶତ୍ରୁମାନେ ଘେରାଉ କରି ତାକୁ ରୁନ୍ଧିଦେବା ନିମନ୍ତେ ଚେଷ୍ଟା କରୁଛନ୍ତି । ରୁଷ ଓ ଫ୍ରାନ୍ସ ଆଗ ତାକୁ ଆକ୍ରମଣ କରିଛନ୍ତି ବୋଲି ସେ ଅଭିଯୋଗ କଲା । ଇଂଲଣ୍ଡ ଗ୍ରେଟ ବେଲଜିୟମ ରାଜ୍ୟର ନ୍ୟାୟ-ସଙ୍ଗତ ଅଧିକାର ରକ୍ଷା କରିବା ଉପରେ ହିଁ ତାର କାର୍ଯ୍ୟର ଭିତ୍ତି କଲା—ସେ ଦେଶର ନିର-ପେକ୍ଷତା ଜର୍ମାନୀ ଅନ୍ୟାୟରୂପେ ଭାଙ୍ଗି ଦେଇଥିଲା । ଏଥିରେ ବ୍ୟାପୃତ ସମସ୍ତ ଦେଶ ନିଜେ ଏକ ନ୍ୟାୟରକ୍ଷା କରୁଛନ୍ତି ବୋଲି ଦେଖାଇଲେ ଓ ଶତ୍ରୁ ଉପରେ ସମସ୍ତ ଦୋଷ ଲଦି ଦେଲେ । ପ୍ରତ୍ୟେକ ଜାତି ବିଶ୍ୱାସ କରିବାକୁ ଲାଗିଲେ ତାଙ୍କର ସ୍ୱାଧୀନତା ବିପଦ-ସଙ୍କୁଳ ହୋଇପଡ଼ିଛି ଏବଂ ତାହା ରକ୍ଷା ନିମନ୍ତେ ସେମାନଙ୍କୁ ଯୁଦ୍ଧ କରିବାକୁ ପଡ଼ିବ । ପ୍ରତ୍ୟେକ ସ୍ଥାନରେ ଏହି ଯୁଦ୍ଧ ବାୟୁମଣ୍ଡଳ ସୃଷ୍ଟି କରିବାରେ ସମ୍ବାଦପତ୍ର ସବୁ ବିଶେଷରୂପେ ଭାଗ ନେଲେ—ଏହାର ଅର୍ଥ ଶତ୍ରୁଦେଶର ଲୋକଙ୍କ ପ୍ରତି ବିକଟ ଘୃଣା ସୃଷ୍ଟି ହେଲା ।

ଏହି ଉନ୍ମାଦ ରୋଗର ପ୍ରବାହ ଏତେ ପ୍ରବଳ ଥିଲା ଯେ ଏହା ଆଗରେ ପ୍ରତ୍ୟେକ ଜିନଷ ଭାସିଗଲା । ଜନତା ଭିତରେ ଉଦ୍‌ବେଗ ଜାଗ୍ରତ କରିବା ସହଜ; କିନ୍ତୁ ଏପରିକି ବୁଦ୍ଧିମାନ ଓ ଶିକ୍ଷିତ ନରନାରୀମାନେ, ଯେଉଁମାନଙ୍କର ନିଶ୍ଚଳ ଓ ବସ୍ତୁଗତସମ୍ପନ୍ନ ମନୋବୃତ୍ତି ଥିବାର କଥା, ଭାବୁକ, ଲେଖକ, ଅଧ୍ୟାପକ, ବୈଜ୍ଞାନିକ—ଯୁଦ୍ଧବ୍ୟାପୃତ ଦେଶରେ ଏ ସମସ୍ତେ ସେମାନଙ୍କର ବସ୍ତୁଗବୁଦ୍ଧି ହରାଇଲେ ଏବଂ ଶତ୍ରୁ ଲୋକଙ୍କ ପ୍ରତି ଘୃଣା ଓ ରକ୍ତଲାଳସାରେ ପରିପୂର୍ଣ୍ଣ ହୋଇଗଲେ । ଧର୍ମଯାଜକମାନେ - ଧାର୍ମିକ ଲୋକ ଭାବରେ ଯେଉଁମାନଙ୍କୁ ଶାନ୍ତିପୂର୍ଣ୍ଣ ଲୋକ ବୋଲି ଧରାଯାଏ, ସେମାନେ ବି ରକ୍ତପିପାସୁ ହେଲେ ଏବଂ ସମ୍ଭବତଃ ଅନ୍ୟ-ମାନଙ୍କ ଅପେକ୍ଷା ଅଧିକ ହେଲେ । ଏପରିକି ଶାନ୍ତିବାଦୀ ଓ ସାମ୍ୟବାଦୀମାନେ ବି ନିଜ ବୁଦ୍ଧି ହରାଇଲେ ଓ ସେମାନଙ୍କର ନୀତି ସମସ୍ତେ ପାଶୋରି ପକାଇଲେ; କିନ୍ତୁ ସମ୍ପୂର୍ଣ୍ଣ ଭାବରେ ସମସ୍ତେ ନୁହନ୍ତି—ପ୍ରତ୍ୟେକ ଦେଶରେ ଅତି ଅଳ୍ପସଂଖ୍ୟକ ଲୋକ ଉନ୍ମାଦଗ୍ରସ୍ତ ହେଲେ ନାହିଁ ଏବଂ ଏହି ଯୁଦ୍ଧଜ୍ୱରରେ ଆକ୍ରାନ୍ତ ହେବାକୁ ନିଜକୁ ଦେଲେ ନାହିଁ । ସେମାନଙ୍କୁ ଉପହାସ କରାଗଲା ଓ ଭୀରୁ ବୋଲି କୁହାଗଲା ଏବଂ ଅନେକ ଯୁଦ୍ଧକାର୍ଯ୍ୟ କରିବାକୁ ଅସ୍ୱୀକାର କରିବାରୁ ସେମାନଙ୍କୁ ଜେଲ୍ ବି ପଠାଗଲା । ଏମାନଙ୍କ ଭିତରୁ କେତେକ ସାମ୍ୟବାଦୀ, କେତେକ ଧାର୍ମିକ ଲୋକ ଥିଲେ—ଯେପରିକି କ୍ୱେକରମାନେ (Quakers)—ସେମାନଙ୍କର ବିବେକ ଦୃଷ୍ଟିରୁ ଯୁଦ୍ଧ ପ୍ରତି ଆପତ୍ତି ଥିଲା । ଯୁଦ୍ଧ ଲାଗିଗଲେ ସେଥିରେ ବ୍ୟାପୃତ ଲୋକେ ଯେ ପାଗଳ ହୋଇ ଯାଆନ୍ତି ବୋଲି ଏବେ ଯାହା କୁହାଯାଏ, ତାହା ସତ୍ୟ ।

ଯୁଦ୍ଧ ଆରମ୍ଭ ହେବା ସଙ୍ଗେ ସଙ୍ଗେ ବିଭିନ୍ନ ଦେଶର ସରକାରସବୁ ଛଳନା କରି ସତ୍ୟକୁ ଦବାଇଦେଲେ ଏବଂ ସମସ୍ତ ପ୍ରକାର ମିଥ୍ୟା ପ୍ରଚାର କରାଇବାରେ ଲାଗିଲେ । ଲୋକମାନଙ୍କର ବ୍ୟକ୍ତିଗତ ସ୍ୱାଧୀନତା ମଧ୍ୟ ଦମନ କରାଗଲା । ଅବଶ୍ୟ ଅନ୍ୟପକ୍ଷ କଥା ସଂପୂର୍ଣ୍ଣରୂପେ ଅଗୋଚର ରଖାଯାଉଥିଲା । ସୁତରାଂ ଲୋକେ କାହାଣୀର ଗୋଟିଏ ପାଖ ଜାଣିପାରୁଥିଲେ ଏବଂ ତାହା ମଧ୍ୟ ଅତ୍ୟନ୍ତ ବିକୃତ ଓ ଅନେକ ସମୟରେ ସଂପୂର୍ଣ୍ଣ ମିଥ୍ୟା ବିବରଣୀ । ଏପରି ଭାବରେ ଲୋକଙ୍କୁ ଠକାଇବା କିଛି କଷ୍ଟକର ନୁହେଁ ।

ଏପରିକି ଶାନ୍ତିବେଳେ ସୁଦ୍ଧା ସଂକୀର୍ଣ୍ଣ ଜାତୀୟବାଦୀ ପ୍ରଚାର ଓ ସମ୍ବାଦପତ୍ରର ବିକୃତିକରଣ ଫଳରେ ଲୋକେ ଭୁଲିଯାଇଛନ୍ତି ଏବଂ ଯୁଦ୍ଧଲାଗି କ୍ଷେତ୍ର ପ୍ରସ୍ତୁତ ହୋଇଯାଇଛି । ଯୁଦ୍ଧକୁ ବି ଗୌରବମଣ୍ଡିତ କରାଯାଏ । ଜର୍ମାନୀ ଅଥବା କହିବାକୁ ହେବ ପ୍ରୁସିଆରେ କାଇଜରଙ୍କଠାରୁ ଆରମ୍ଭ କରି ତଳପର୍ଯ୍ୟନ୍ତ ସବୁ ଶାସକଙ୍କର ନିର୍ଦ୍ଦିଷ୍ଟ ଦର୍ଶନ ହେଲା ଯୁଦ୍ଧର ଗୌରବଗାନ । ଏହାର ଯଥାର୍ଥତା ପ୍ରମାଣ କରିବା ନିମନ୍ତେ ପାଣ୍ଡିତ୍ୟପୂର୍ଣ୍ଣ ପୁସ୍ତକସବୁ ପ୍ରଣୟନ କରାଗଲା ଏବଂ ପ୍ରମାଣ କରିବାକୁ ଚେଷ୍ଟା କରାଗଲା ଯେ ଯୁଦ୍ଧ ହେଉଛି "ଜୀବ ଜଗତର ଏକ ଆବଶ୍ୟକତା"—ଅର୍ଥାତ୍ ମାନବର ଜୀବନଧାରଣ ଓ ପ୍ରଗତି ନିମନ୍ତେ ଏହା ଆବଶ୍ୟକ । କାଇଜର ଖୁବ୍ ପ୍ରସିଦ୍ଧି ଲଭିକଲେ; କାରଣ ସେ ସର୍ବଦା ଖୋଲାଖୋଲି ଭାବରେ ଆସ୍ଫାଳନ ଦେଖାଉଥିଲେ । କିନ୍ତୁ ଇଂଲଣ୍ଡ ଓ ଅନ୍ୟ ଦେଶମାନଙ୍କର ସାମରିକ ଓ ଅନ୍ୟ

ଉଚ୍ଚ ଶ୍ରେଣୀଙ୍କ ଭିତରେ ବି ସେହିପରି ଧାରଣା ଜାତ ହେଲା । ଇଂଲଣ୍ଡରେ ୧୯ଶ ଶତାବ୍ଦୀର ବଡ଼ ଲେଖକଙ୍କ ଭିତରେ ରସ୍‌କିନ୍ ଜଣେ । ସେ ଗାନ୍ଧିଜୀଙ୍କର ଜଣେ ପ୍ରିୟ ଲେଖକ ଏବଂ ସମ୍ଭବତଃ ତୁ ତାଙ୍କର ବିଷୟ କିଛି ପଢ଼ିଛୁ । ନିଃସନ୍ଦେହ ଉଦାର ଭାବାପନ୍ନ ଏହି ବ୍ୟକ୍ତି ତାଙ୍କର ଗୋଟିଏ ପୁସ୍ତକରେ ଲେଖିଛନ୍ତି—"ମୁଁ ଦେଖିଲି ସଂକ୍ଷେପରେ ପ୍ରତ୍ୟେକ ପ୍ରଧାନ ଜାତି ଯୁଦ୍ଧରେହିଁ ତାଙ୍କର ବାକ୍ୟର ସତ୍ୟତା ଓ ଚିନ୍ତାର ଶକ୍ତି ଶିଖି ପାରିଛନ୍ତି ଏବଂ ଶାନ୍ତିରେ ତାହା ବୃଥା ହୋଇଛି, ଯୁଦ୍ଧଦ୍ୱାରା ଶିକ୍ଷା ପାଇଛନ୍ତି ଏବଂ ଶାନ୍ତିଦ୍ୱାରା ଠକିଛନ୍ତି; ଯୁଦ୍ଧରେ ଶିକ୍ଷିତ ହୋଇଛନ୍ତି ଏବଂ ଶାନ୍ତିରେ ବିଶ୍ୱାସଘାତକତା ପାଇଛନ୍ତି; ଏକପଦରେ କହିବାକୁ ଗଲେ ସେମାନେ ଯୁଦ୍ଧରେ ଜନ୍ମଗ୍ରହଣ କରିଛନ୍ତି ଏବଂ ଶାନ୍ତିରେ ତାଙ୍କର ମୃତ୍ୟୁ ଘଟିଛି ।"

ରସ୍‌କିନ୍ କିପରି ଖୋଲାଖୋଲି ସାମ୍ରାଜ୍ୟବାଦୀ ଥିଲେ ଏହା ଦେଖାଇବା ପାଇଁ ମୁଁ ଏଠି ତାଙ୍କ ଲେଖାରୁ ଆଉରି କିଛି ଉଦ୍ଧାର କରିବି ;—

"ତାକୁ (ଇଂଲଣ୍ଡକୁ) ଏହା କରିବାକୁ ପଡ଼ିବ, ନଚେତ୍ ସେ ଲୋପ ହେବ; ତାକୁ ଉପନିବେଶ ଖୋଜିବାକୁ ପଡ଼ିବ · ଫଳପ୍ରଦ ପ୍ରତ୍ୟେକ ଅନୁର୍ବର ଭୂମି ଅଧିକାର କରି ସେଥିରେ ସେ ପାଦ ନିକ୍ଷେପ କରିବ ଏବଂ ସେଠି ଉପନିବେଶବାସୀଙ୍କୁ ଶିକ୍ଷା ଦେବ ଯେ ସେମାନଙ୍କର ପ୍ରଥମ ଲକ୍ଷ୍ୟ ହେଉଛି ଜଳ ଓ ସ୍ଥଳରେ ଇଂଲଣ୍ଡର ଶକ୍ତି ବଢ଼ାଇବା ।"

ଆଉ ଗୋଟିଏ ଉଦ୍ଧୃତାଂଶ ଦେଉଛି—ଜଣେ ଇଂରେଜ କର୍ମଚାରୀ ଯେ କି ବ୍ରିଟିଶ ସେନାବାହିନୀରେ ମେଜର ଜେନେରାଲ ହୋଇଥିଲେ ତାଙ୍କର ଏକ ପୁସ୍ତକରୁ ଏହା ଆସିଛି । ସେ ବର୍ଣ୍ଣାଇଛନ୍ତି ଯେ "କେବଳ ଛଳଚାତୁରୀରେ ମିଥ୍ୟା ଦ୍ୱାରା, ମିଥ୍ୟାକୁ କାର୍ଯ୍ୟରେ ଲଗାଇବା ଦ୍ୱାରା ଅଥବା ଏହାର ଅପ୍ରଳାପ ବ୍ୟତୀତ ଯୁଦ୍ଧରେ ବିଜୟ ପ୍ରାପ୍ତି ଅସମ୍ଭବ ।" ତାଙ୍କ ମତରେ ଯେଉଁ ନାଗରିକ ଏହିସବୁ ଉପାୟ ଗ୍ରହଣ କରିବାକୁ ଅସ୍ୱୀକାର କରେ···ସେ ଜାଣି ଶୁଣି ନିଜର ସାଥି ଓ ଅଧୀନସ୍ଥ ଲୋକଙ୍କ ପ୍ରତି ବିଶ୍ୱାସଘାତକ ରୂପେ କାର୍ଯ୍ୟ କରେ ଏବଂ ତାକୁ କେବଳ ଜଣେ ଅତି ଘୃଣ୍ୟ ଭୀରୁ ବୋଲି କୁହାଯାଇପାରେ । ନୈତିକତା, ଅନୈତିକତା - ବଡ଼ ବଡ଼ ଦେଶର ଭାଗ୍ୟ ଯେତେବେଳେ ବିପଦରେ ପଡ଼ିଛି ଏସବୁ ଜିନିଷ ତାଙ୍କ ପକ୍ଷରେ କିଛି ବା ହୋଇପାରେ ? ଗୋଟିଏ ଜାତିକୁ ତାର ଶତ୍ରୁର ମୃତ୍ୟୁ ଆଣିବା ପର୍ଯ୍ୟନ୍ତ ବାରମ୍ବାର ଆଘାତ କରିବାକୁ ପଡ଼ିବ ।" ମୁଁ ଆଶ୍ଚର୍ଯ୍ୟ ହୁଏ ରସ୍‌କିନ ଏସବୁ ଦେଖି କଣ କହିଥାନ୍ତେ । ଅବଶ୍ୟ ତୁ ଅନୁମାନ କରିବୁ ନାହିଁ ଯେ ଇଂରେଜ ମନୋଭାବରେ ଏହା ଏକ ଠିକ୍ ନମୁନା କିମ୍ବା କାଇଜରଙ୍କ ବାଗାଡ଼ମ୍ବରରୁ ସାଧାରଣ ଜର୍ମାନର ମନୋଭାବ ଜଣାପଡ଼େ । କିନ୍ତୁ ଦୁର୍ଭାଗ୍ୟର କଥା ଯେ ଚିନ୍ତା କରୁଥିବା ଲୋକେ ବହୁତ ସମୟରେ କ୍ଷମତା ପାଆନ୍ତି ଏବଂ ଯୁଦ୍ଧବେଳେ ସେମାନେ ହିଁ ସମ୍ମୁଖକୁ ଆସନ୍ତି ।

ସାଧାରଣତଃ ଏହିସବୁ ଖୋଲି ସ୍ୱୀକାରୋକ୍ତି ସାଧାରଣରେ କରାଯାଏ ନାହିଁ ଏବଂ ଯୁଦ୍ଧ ଏକ ଧାର୍ମିକ ଆବରଣ ପିନ୍ଧି ଆସେ । ତେଣୁ ଇଉରୋପ ଓ ଅନ୍ୟାନ୍ୟ ଶହ ଶହ ମାଇଲ

ବ୍ୟାପୀ ଯୁଦ୍ଧକ୍ଷେତ୍ରରେ ଦାରୁଣ ହତ୍ୟାକାଣ୍ଡ ଚାଲିଥିଲାବେଳେ ହତ୍ୟାର ଯଥାର୍ଥତା ପାଇଁ ଏବଂ ଲୋକଙ୍କୁ ଠକାଇବା ପାଇଁ ନିଜ ଦେଶରେ ସୁନ୍ଦର ସୁଶ୍ରାବ୍ୟ ଶବ୍ଦାବଳୀ ତିଆରି କରାଯାଏ । ଏହା ସ୍ୱାଧୀନତା ଓ ସମ୍ମାନ ରକ୍ଷା ଲାଗି ଯୁଦ୍ଧ; ଯୁଦ୍ଧ ଶେଷ କରିବା ପାଇଁ ଯୁଦ୍ଧ । ଗଣତନ୍ତ୍ର ନିରାପଦ ରଖିବା ପାଇଁ, ଆତ୍ମପ୍ରତିଷ୍ଠା ପାଇଁ ଏବଂ ଛୋଟ ଛୋଟ ଜାତିର ସ୍ୱାଧୀନତା ରକ୍ଷା ପାଇଁ - ଇତ୍ୟାଦି । ଇତ୍ୟବସରରେ ଯେଉଁସବୁ ଧନପତି, ଶିଳ୍ପୋଦ୍ୟୋଗୀ ଓ ଯୁଦ୍ଧ-ସାମଗ୍ରୀ-ନିର୍ମାତାମାନେ ନିଜ ଘରେ ବସି ଯୁବକମାନଙ୍କୁ ଯୁଦ୍ଧ ଅନଳରେ ଡେଇଁବା ନିମନ୍ତେ ପ୍ରବର୍ତ୍ତାଇବା ପାଇଁ ଏହିସବୁ ସୁନ୍ଦର ବାକ୍ୟାବଳୀକୁ ଦେଶପ୍ରେମ ରୂପ ଦେଇ ବ୍ୟବହାର କରନ୍ତି, ସେମାନେ ପ୍ରଚୁର ଲାଭ ଉଠାନ୍ତି ଓ ଲକ୍ଷପତି ହୋଇଯାଆନ୍ତି ।

ମାସ ପରେ ମାସ ବର୍ଷ ପରେ ବର୍ଷ ଯୁଦ୍ଧ ଚାଲିବା ସଙ୍ଗେ ସଙ୍ଗେ ଅଧିକରୁ ଅଧିକ ଦେଶ ଏଥିରେ ଟଣାହୋଇ ଆସନ୍ତି । ଗୁପ୍ତଭାବରେ ଲାଞ୍ଚ ଯାଚି ଉଭୟ ପକ୍ଷ ନିରପେକ୍ଷ ଜାତିମାନଙ୍କୁ ହାତ କରିବା ନିମନ୍ତେ ଚେଷ୍ଟା କରନ୍ତି; ଉଚ୍ଚାସନରେ ବସି ଯେଉଁସବୁ ଉଚ୍ଚ ଆଦର୍ଶ ଓ ସୁନ୍ଦର ବାକ୍ୟାବଳୀ ପ୍ରଚାର କରାଯାଏ, ସବୁ ପ୍ରକାଶ୍ୟ ରୂପେ କାରବାର କଲେ ତାହାର ଇତିଶ୍ରୀ ହୋଇଯିବ । ଲାଞ୍ଚ ଦେବାର ଶକ୍ତି ଜର୍ମାନି ଅପେକ୍ଷା ଇଂଲଣ୍ଡ ଓ ଫ୍ରାନ୍ସର ବେଶି ଥିଲା ଏବଂ ତେଣୁ ଯେଉଁସବୁ ନିରପେକ୍ଷ ଦେଶ ଯୁଦ୍ଧରେ ଯୋଗ ଦେଲେ ସେମାନଙ୍କ ଭିତରୁ ଅଧିକାଂଶ ଇଂଲଣ୍ଡ, ଫ୍ରାନ୍ସ ଓ ରୁଷ ପକ୍ଷକୁ ଆସିଲେ । ଜର୍ମାନୀର ପୁରାତନ ମିତ୍ର ଇଟାଲୀକୁ ଏକ ଗୁପ୍ତ ସନ୍ଧିରେ ଏସିଆ ମାଇନର ଓ ଅନ୍ୟତ୍ର ତାକୁ କିଛି ଅଞ୍ଚଳ ଦେବେ ବୋଲି ପ୍ରତିଶ୍ରୁତି ଦେଇ ଏହି ମିତ୍ରପକ୍ଷ ନିଜଆଡ଼କୁ ଘେନି ଆସିଲେ । ଆଉ ଏକ ଗୁପ୍ତ ସନ୍ଧିରେ ରୁଷକୁ କନ୍‌ଷ୍ଟାଣ୍ଟିନୋପଲ ଦିଆଯିବାର ପ୍ରତିଶ୍ରୁତି ଦିଆଗଲା । ପୃଥିବୀଟାକୁ ନିଜ ଭିତରେ ଭାଗ କରିନେବା ଗୋଟାଏ ବେଶ୍ ଆମୋଦପ୍ରଦ କାମ । ଏହି ଗୁପ୍ତ ସନ୍ଧିସବୁ ମିତ୍ରପକ୍ଷର ରାଜନୀତିଜ୍ଞଙ୍କର ପ୍ରକାଶ୍ୟ ଘୋଷଣାର ସମ୍ପୂର୍ଣ୍ଣ ବିପରୀତ । ରୁଷର ବଲସେଭିକମାନେ କ୍ଷମତା ହାସଲ କଲା ପରେ ଯଦି ଏସବୁ ପ୍ରକାଶ କରି ନ ଥାନ୍ତେ ତେବେ ସମ୍ଭବତଃ ଏହିସବୁ ସନ୍ଧିକଥା କେହି ଜାଣି ନ ଥାନ୍ତେ ।

ଶେଷରେ ଏକ ଡଜନ ବା ଅଧିକ ରାଜ୍ୟ ମିତ୍ରପକ୍ଷ ସହିତ ରହିଲେ । (ସଂକ୍ଷେପରେ ଇଂରେଜ ଫ୍ରାନ୍ସ ପକ୍ଷକୁ ମୁଁ ମିତ୍ରପକ୍ଷ ବୋଲି କହିବି) ଏଗୁଡ଼ିକ ହେଉଛି ବ୍ରିଟେନ ଓ ତାର ସାମ୍ରାଜ୍ୟ, ଫ୍ରାନ୍ସ, ରୁଷ, ଇଟାଲୀ, ଆମେରିକା, ସଂଯୁକ୍ତ ରାଷ୍ଟ୍ର, ବେଲଜିଅମ୍, ସର୍ବିଆ, ଜାପାନ, ଚୀନ, ରୁମାନିଆ, ଗ୍ରୀସ ଓ ପର୍ତ୍ତୁଗାଲ । (ଆଉ ଗୋଟିଏ ଦୁଇଟି ହୋଇପାରେ—ମୋର ନାମ ମନେ ନାହିଁ) ଜର୍ମାନୀ ପକ୍ଷରେ ଥିଲେ ଜର୍ମାନୀ, ଅଷ୍ଟ୍ରିଆ, ତୁର୍କି ଓ ବୁଲଗେରିଆ । ସଂଯୁକ୍ତ ରାଷ୍ଟ୍ର ତୃତୀୟ ବର୍ଷରେ ଯୁଦ୍ଧରେ ପଶିଲା । ବର୍ତ୍ତମାନ ପାଇଁ ସେ ଦେଶ କଥା ବାଦ ଦେଲେ ଆମେ ଦେଖିବା ଯେ ଜର୍ମାନୀ ପକ୍ଷ ଅପେକ୍ଷା ମିତ୍ରପକ୍ଷ ପାଖରେ ଅଧିକ ସମ୍ପଦ ଥିଲା । ସେମାନଙ୍କ ପାଖରେ ଅଧିକ ଧନ ଓ ଜନବଳ ଥିଲା, ଅସ୍ତ୍ର ଓ ଗୋଳାବାରୁଦ ତିଆରି ପାଇଁ ଅଧିକ

କାରଖାନା ଏବଂ ସର୍ବୋପରି ଜଳପଥରେ ସେମାନେ ପ୍ରଭୁ ଥିଲେ । ଏଥିଯୋଗୁ ନିରପେକ୍ଷ ଜଗତର ସଂପଦ ଆଣିବା ତାଙ୍କ ପକ୍ଷରେ ସହଜ ଥିଲା । ଏହି ସମୁଦ୍ର ଶକ୍ତି ହେତୁ ମିତ୍ରଶକ୍ତି ଆମେରିକାର ଯୁଦ୍ଧସାମଗ୍ରୀ, ଖାଦ୍ୟ ବା ଧନ କରଜ ଆଣିପାରିଥିଲେ । ଜର୍ମାନୀ ଓ ତାର ମିତ୍ରମାନେ ସେମାନଙ୍କ ଶତ୍ରୁଦ୍ୱାରା ପରିବେଷ୍ଟିତ ଓ ରୁଦ୍ଧ ହୋଇଯାଇଥିଲେ; ଜର୍ମାନର ମିତ୍ର ସବୁ ଦୁର୍ବଳ ଦେଶ ଥିଲେ—ସେମାନେ ବିଶେଷ ସାହାଯ୍ୟ କରିପାରିଲେ ନାହିଁ । ସେଗୁଡ଼ିକ ଅନେକ ସମୟରେ ଜର୍ମାନୀ ଉପରେ ଗଳଗ୍ରହ ହୋଇଥିଲେ ଏବଂ ଜର୍ମାନୀକୁ ତାଙ୍କୁ ରକ୍ଷା କରିବାକୁ ପଡୁଥିଲା । ତେଣୁ କାର୍ଯ୍ୟତଃ ଜର୍ମାନୀକୁ ଏକାକୀ ଅସ୍ତ୍ରଧାରଣ କରିଥିବା ଦୁନିଆର ଅଧିକ ଭାଗ ବିରୁଦ୍ଧରେ ଲଢ଼ାଇ କରିବାକୁ ପଡ଼ିଲା । ପ୍ରତ୍ୟେକ ଦୃଷ୍ଟିରୁ ଏହା ଅନ୍ତତଃ ଅସମାନ ଯୁଦ୍ଧ ପରି ମନେ ହୁଏ । ଅଥଚ ଜର୍ମାନୀ ଚାରିବର୍ଷ ପର୍ଯ୍ୟନ୍ତ ସମଗ୍ର ଜଗତକୁ ବାଧା ଦେଲା ଏବଂ ପୁନଃପୁନଃ ବିଜୟର ସମୀପବର୍ତ୍ତୀ ହୋଇଆସିଥିଲା । ବର୍ଷ ପରେ ବର୍ଷ ବିଜୟ ଏପାଖ ସେପାଖ ଅବସ୍ଥାରେ ଥିଲା । ଗୋଟିଏ ଜାତି ପକ୍ଷରେ ଏପରି ଉଦ୍ୟମ ଅତି ଅପୂର୍ବ ଏବଂ ଯେଉଁ ଅଭୂତପୂର୍ବ ସାମରିକ ଯନ୍ତ୍ର ଜର୍ମାନୀ ତିଆରି କରି ପାରିଥିଲା, ସେଥିଯୋଗୁ ଏହା ସମ୍ଭବ ହେଲା । ଶେଷ ପର୍ଯ୍ୟନ୍ତ ଜର୍ମାନୀ ଓ ତାର ମିତ୍ରମାନେ ନିଷ୍ପତ୍ତିମୂଳକଭାବରେ ପରାଜିତ ହେଲ ପରେ ମଧ୍ୟ ଜର୍ମାନୀମାନେ ନିଖୁଣ ଥିଲେ ଏବଂ ଏଥିରୁ ଅଧିକାଂଶ ବିଦେଶ ଭୂମିରେ ଥିଲେ ।

ମିତ୍ରପକ୍ଷର ଯୁଦ୍ଧର ଭାର ଫରାସୀସେନା ଉପରେ ପଡ଼ିଲା ଏବଂ ଫରାସୀମାନେ ହିଁ ଯୁବକ ଜୀବନର ଦାରୁଣ ମୂଲ୍ୟଦାନରେ ଜର୍ମାନ ସାମରିକ ଯନ୍ତ୍ର ବିରୁଦ୍ଧରେ ଠିଆ ହୋଇ-ପାରିଥିଲେ । ଇଂଲଣ୍ଡର ବଡ଼ ଦାନ ହେଉଛି ନୌବାହିନୀ ଓ ସମୁଦ୍ରଶକ୍ତି ଏବଂ ଚାଲବାଜୀ ଓ ପ୍ରଚାର ମଧ୍ୟ । ଜର୍ମାନୀ ନିଜର ସେନା ସକାଶେ ଗର୍ବିତ ହୋଇ ନିରପେକ୍ଷ ଦେଶ ସହିତ କୂଟନୀତିକ ସଂପର୍କ ଏବଂ ପ୍ରଚାର ପ୍ରୟୋଗରେ ଅତ୍ୟନ୍ତ ରୁକ୍ଷ ଥିଲା । ଏଥିରେ ସନ୍ଦେହ ନାହିଁ ଯେ ଯୁଦ୍ଧଭିତରେ ସବୁ ଦେଶ ଭିତରେ ମିଥ୍ୟା ଓ ବିକୃତ ବିଷୟମାନ ପ୍ରଚାର କରିବାରେ ପୂର୍ଣ୍ଣତା ଓ କାର୍ଯ୍ୟଦକ୍ଷତାର ହାତ ଇଂଲଣ୍ଡ ହିଁ ଦେଖାଇ ଦେଇଥିଲା । ରୁଷ, ଇଟାଲୀ ଓ ଅନ୍ୟ ମିତ୍ର ରାଜ୍ୟସବୁ ଯୁଦ୍ଧରେ ଅପେକ୍ଷାକୃତ ସାମାନ୍ୟ ଭାଗ ନେଇଥିଲେ ଏବଂ ସେପରି ଗୁରୁତ୍ୱପୂର୍ଣ୍ଣ ଭାଗ ନୁହେଁ । ତଥାପି ଅନ୍ୟ ସବୁ ଦେଶ ଭିତରେ ରୁଷର ବେଶୀ କ୍ଷତି ହୋଇଥିଲା । ସଯୁକ୍ତ ରାଷ୍ଟ୍ର ଶେଷକୁ ଜର୍ମାନୀକୁ ଦମନ କରିବାରେ ଶେଷ ନିଷ୍ପତ୍ତିମୂଳକ ଭାଗ ନେଲା ।

ଯୁଦ୍ଧର ପ୍ରଥମ ଭାଗରେ ଇଂଲଣ୍ଡ ଓ ଆମେରିକା ଭିତରେ ଭାରି ବିବାଦ ଲାଗିଥିଲା ଏବଂ ଏପରିକି ଦୁହିଁଙ୍କ ଭିତରେ ଯୁଦ୍ଧ ଲାଗିବା କଥା ବି ଉଲ୍ଲେଖ କରାଯାଉଥିଲା । ସମୁଦ୍ରରେ ଆମେରିକାର ଜାହାଜମାନଙ୍କରେ ଇଂଲଣ୍ଡର ହସ୍ତକ୍ଷେପ ହେତୁ ବିବାଦ ଆରମ୍ଭହେଲା—ଇଂଲଣ୍ଡ ସନ୍ଦେହକଲା ଯେ ଏଥିରେ ଜର୍ମାନୀକୁ ମାଲ ବୁହାହେଉଛି । କିନ୍ତୁ ସେତେବେଳେ ବ୍ରିଟିଶ ପ୍ରଚାରଯନ୍ତ୍ର ବ୍ୟସ୍ତ ହୋଇ ଲାଗିପଡ଼ିଲେ ଏବଂ ଆମେରିକାକୁ ହାତ କରିବା ନିମନ୍ତେ

ବିଶେଷ ଉଦ୍ୟମ କଲେ । ପ୍ରଥମରେ ସେମାନେ ଜର୍ମାନର ନୃଶଂସତାର ପ୍ରଚାର ଆରମ୍ଭ କରିଦେଲେ ଏବଂ ଜର୍ମାନ ସୈନ୍ୟ ବେଲଜିୟମରେ ଯାହା କରିଛନ୍ତି ତାହାର ଭୀଷଣ କାହାଣୀ-ସବୁ ଗଢ଼ି ପ୍ରଚାର କରାଗଲା । ଜର୍ମାନ ହୁନ୍ ବା ବୋଚେଙ୍କର "ନୃଶଂସତା" ବୋଲି ଏହାକୁ କୁହାଗଲା । ଏଥିରୁ କେବଳ ଲେଉଭେନ୍ (Louvain)ରେ ବିଶ୍ୱବିଦ୍ୟାଳୟ ଓ ଲାଇବ୍ରେରୀ ଧ୍ୱଂସ ଆଦି କେତେକ କଥାର ଭିତ୍ତି ଥିଲା; କିନ୍ତୁ ଅଧିକାଂଶ କେବଳ ମନଗଢ଼ା । ଜର୍ମାନମାନେ ଗୋଟାଏ ମୃତଶବ କାରଖାନା ଚଳାଉଛନ୍ତି ବୋଲି ଅପୂର୍ବ ସମ୍ବାଦ ପ୍ରଚାରିତ ହେଲା । ତଥାପି ଶତ୍ରୁ ଜାତିର ଲୋକଙ୍କ ପ୍ରତି ଏତେ ଘୃଣା ଥାଏ ଯେ ସେମାନେ ଯେକୌଣସି କଥାକୁ ବିଶ୍ୱାସ କରିଯାଆନ୍ତି ।

ଆମେରିକାକୁ ଯେଉଁ ବ୍ରିଟିଶ ଯୁଦ୍ଧମିଶନ୍ ଯାଇଥିଲା, ସେଥିରେ ୫୦୦ କର୍ମଚାରୀ ଓ ୧୦୦୦୦ ସହକାରୀ ଥିଲେ – ଏଥିରୁ ବ୍ରିଟିଶ ପ୍ରଚାର କିପରି ବିସ୍ତୃତ ଆକାରରେ ଚାଲିଥିଲା ତୋତ କିଛି ଧାରଣା ହୋଇପାରେ । ଏହାଛଡ଼ା ପ୍ରଚୁର ପରିମାଣରେ ବେସରକାରୀ କାର୍ଯ୍ୟ ବି କରାଯାଉଥିଲା । ଏହି ପ୍ରଚାର କାର୍ଯ୍ୟ ପାଇଁ ଛଳ ବଳ ସବୁ ଉପାୟ ଗ୍ରହଣ କରାଯାଇଥିଲା । ସୁଇଡେନ୍ ଲୋକଙ୍କର ସଦିଚ୍ଛା ପାଇବା ନିମନ୍ତେ ବ୍ରିଟିଶ ସରକାରୀ ଖର୍ଚ୍ଚରେ ସୁଇଡେନର ଷ୍ଟକହୋମ୍ ସହରରେ ଏକ ପ୍ରକାର ସଙ୍ଗୀତଘର ଖୋଲି ନାନା ପ୍ରକାର ମଉଜମଜଲିସ୍ ଲୋକଙ୍କୁ ଦେଖାଇବାକୁ ଲାଗିଲେ ।

ଏହି ପ୍ରଚାର ଏବଂ ଜର୍ମାନ ବୁଡ଼ାଜାହାଜ କାଣ୍ଡସବୁ ( ଏ ସମ୍ବନ୍ଧରେ ମୁଁ ତଳେ ପରେ କିଛି କହିବି ) ଆମେରିକାକୁ ମିତ୍ରପକ୍ଷରେ ଯୁଦ୍ଧକୁ ଆଣିବାରେ ଖୁବ୍ ସାହାଯ୍ୟ କଲା । କିନ୍ତୁ ଶେଷରେ ଧନ ହିଁ ହେଲା ନିଷ୍ପତ୍ତି କରିବା ଜିନିଷ ।

ଯୁଦ୍ଧ ଏକ ବ୍ୟୟସାପେକ୍ଷ ବ୍ୟାପାର—ଅତିମାତ୍ରାରେ ବ୍ୟୟସାପେକ୍ଷ । ଏହା ସବୁଠି ପରି ମୂଲ୍ୟବାନ ସାମଗ୍ରୀସବୁ ଗ୍ରାସ କରେ ଏବଂ ତା ସ୍ଥାନରେ କେବଳ ଧ୍ୱଂସହିଁ ଦେଖାଯାଏ । ଏହା ଅଧିକାଂଶ ଧନଉତ୍ପାଦନକାରୀ କାର୍ଯ୍ୟସବୁ ବନ୍ଦ କରିଦିଏ ଏବଂ ଧ୍ୱଂସପାଇଁ ଲୋକଙ୍କର ସମସ୍ତ ଶକ୍ତି କେନ୍ଦ୍ରୀଭୂତ କରେ । ଏସବୁ ଧନ କେଉଁଠୁ ଆସିବ ? ଆରମ୍ଭରେ ଦେଖିଲେ ମିତ୍ରପକ୍ଷରେ କେବଳ ଇଂଲଣ୍ଡ ଓ ଫ୍ରାନ୍ସ ଭଲ ଅବସ୍ଥାରେ ଥିଲେ ବୋଲି କୁହାଯାଇପାରେ । ସେମାନେ ଖାଲି ଯେ ଯୁଦ୍ଧବ୍ୟୟର ନିଜ ଅଂଶ ଦେଲେ ତାହା ନୁହେଁ, ମାତ୍ର ନିଜର ମିତ୍ରମାନଙ୍କୁ ଧନ ଧାରିଦେଲେ ଓ ସାମଗ୍ରୀ ବି ଯୋଗାଇବାକୁ ଲାଗିଲେ । କିଛିଦିନ ପରେ ପାରିସ୍ ଭାଙ୍ଗି ପଡ଼ିଲା । ଏହାର ଧନସଂପଦ ଶେଷ ଯାଇଗଲା । ତେଣୁ ମିତ୍ରପକ୍ଷରେ ଯୁଦ୍ଧର ଖର୍ଚ୍ଚ ଲଣ୍ଡନ ଏକାକୀ ତୁଲାଇଲା । ଯୁଦ୍ଧର ଦ୍ୱିତୀୟ ବର୍ଷ ଶେଷବେଳକୁ ଲଣ୍ଡନ ବି ହଟିପଡ଼ିଲା । ସୁତରାଂ ୧୯୧୭ ଶେଷ ବେଳକୁ ଇଂଲଣ୍ଡ ଓ ଫ୍ରାନ୍ସର ଧନ ଶେଷ ହେବା ଉପରେ ହେଲା । ତା ପରେ କେତେକ ଖ୍ୟାତ-ନାମା ରାଜନୀତିଜ୍ଞଙ୍କୁ ନେଇ ଗୋଟିଏ ଇଂରେଜ ମିଶନ ଅର୍ଥ ସାହାଯ୍ୟ ପାଇଁ ଆମେରିକା

ଗଲା । ଆମେରିକା ଅର୍ଥ ଧାରଦେବା ନିମନ୍ତେ ସ୍ୱୀକୃତ ହେଲା ଏବଂ ସେହିଦିନଠାରୁ ମିତ୍ରପକ୍ଷରେ ଆମେରିକାର ଅର୍ଥ ହିଁ ଯୁଦ୍ଧ ଚଳାଇଲା । ଅତି ଅଦ୍ଭୁତ ସଂଖ୍ୟାରେ ମିତ୍ରପକ୍ଷର ଆମେରିକା ପ୍ରତି ଋଣ ବଢ଼ିବାରେ ଲଗିଲା ଏବଂ ଏହାର ବୃଦ୍ଧି ସଙ୍ଗେ ସଙ୍ଗେ ଆମେରିକାର ଯେଉଁ ବଡ଼ ବଡ଼ ବ୍ୟାଙ୍କ ଓ ଧନପତିସବୁ ଅର୍ଥ ଋଣ ଦେଇଥିଲେ ସେମାନେ ମିତ୍ରପକ୍ଷର ବିଜୟ ପ୍ରତି ବେଶୀ ଆଗ୍ରହୀ ହେଲେ । ମିତ୍ରପକ୍ଷ ଯଦି ଜର୍ମାନୀ ଦ୍ୱାରା ପରାଜିତ ହୋଇଯାଆନ୍ତି, ତେବେ ଆମେରିକା ସେମାନଙ୍କୁ ଯେ ଏତେ ଧନ ଋଣ ଦେଇଛି ତାହାର ଦଶା କ'ଣ ହେବ ? ଆମେରିକାନ୍ ବ୍ୟାଙ୍କବାଲାଙ୍କ ଟଙ୍କାମୁଣିରେ ତାହା ବାଜିଲା ଏବଂ ସେହି ଅନୁସାରେ ତାର ପ୍ରତିକ୍ରିୟା ହେଲା । ଆମେରିକା ମିତ୍ରପକ୍ଷରେ ଯୁଦ୍ଧରେ ଯୋଗଦେବା ଭାବ ବଢ଼ିଲା ଏବଂ ଶେଷରେ ଆମେରିକା ତାହା କଲା ।

ଆମେ ଏବେ ଆମେରିକା ଋଣ ସମସ୍ୟା ବିଷୟରେ ଅନେକ କଥା ଶୁଣୁ ଏବଂ ସଂବାଦପତ୍ରସବୁ ଏଥିରେ ପୂର୍ଣ୍ଣ । ଏହି ଯେଉଁ ଋଣ ଇଂଲଣ୍ଡ ଓ ଫ୍ରାନ୍ସ ଦେଶରେ ପଥର ପରି ଲଦିହୋଇ ରହିଛି ଏବଂ ଯାହାକୁ ସେମାନେ ପରିଶୋଧ କରିପାରୁ ନାହାନ୍ତି, ଯୁଦ୍ଧବେଳେହିଁ ତାହା ଜମାହୋଇଥିଲା । ଯଦି ଏହି ଧନ ସେତେବେଳେ ଆସି ନ ଥାନ୍ତା, ତେବେ ଏମାନଙ୍କର ପ୍ରତିଷ୍ଠାର ସଂପୂର୍ଣ୍ଣ ପତନ ହୋଇ ଯାଇଥାନ୍ତା ଏବଂ ଆମେରିକା ସ୍ୱୀୟ ସହ ଯୋଗ ଦେଇ ନ ଥାନ୍ତା ।

## ୧୪୯ : ଯୁଦ୍ଧର ବିରତି

ଏପ୍ରିଲ ୧, ୧୯୩୩

୧୯୧୪ ଅଗଷ୍ଟ ପ୍ରଥମ ଭାଗରେ ଯେତେବେଳେ ଯୁଦ୍ଧ ଆରମ୍ଭ ହେଲା, ସେତେବେଳେ ସମଗ୍ର ଜଗତ ବେଲଜିୟମ୍ ଓ ଫ୍ରାନ୍ସର ଉତ୍ତର ସୀମାନ୍ତ ପ୍ରତି ଦୃଷ୍ଟିନିକ୍ଷେପ କଲା । ବିରାଟ ଜର୍ମାନ ସେନାବାହିନୀ ନିଜ ପଥରେ ଆସୁଥିବା ସମସ୍ତ ବାଧା ଅତିକ୍ରମ କରି ଅଗ୍ରସର ହୋଇ ଚାଲୁଥାଏ । କିଛିକ୍ଷଣ ପାଇଁ କ୍ଷୁଦ୍ର ବେଲଜିୟମ୍ ରାଜ୍ୟରେ ଏହା ରୋକିଗଲା ଏବଂ ଏଥିରେ ରାଗାନ୍ୱିତ ହୋଇ ସେ ଆତଙ୍କବାଦୀ କାର୍ଯ୍ୟ ଦ୍ୱାରା ବେଲଜିୟମ୍-ବାସୀଙ୍କୁ ଡରାଇବା ନିମନ୍ତେ ଚେଷ୍ଟା କଲା—ଏହାହିଁ ମିତ୍ର ପକ୍ଷର ନୃଶଂସତା କାହାଣୀ ପ୍ରଚାରର ଭିତ୍ତି ହୋଇଥିଲା । ସେମାନେ ପାରିସ ଆଡ଼କୁ ଅଗ୍ରସର ହେଲେ ଏବଂ ତାଙ୍କ ସମ୍ମୁଖରେ ଫରାସୀ ସେନା ପେଷି ହୋଇଗଲା ପରି ମନେହେଲା ଏବଂ କ୍ଷୁଦ୍ର ବ୍ରିଟିଶ ସେନା ଲୁଆଡ଼େ ଲୁଚିଗଲେ । ଯୁଦ୍ଧ ଆରମ୍ଭର ଏକମାସ ଭିତରେ ପାରିସ ସହର ଉପାନ୍ତରୁ

ଯିବାପରି ବୋଧହେଲା ଏବଂ ପ୍ରକୃତରେ ଫରାସି ସରକାର ତାର ସମସ୍ତ ଅଫିସ ଓ ମୂଲ୍ୟବାନ ଜିନିଷସବୁ ପଶ୍ଚିମରେ ବୋର୍ଡ଼ୋ ସହରକୁ ନେବାଲାଗି ପ୍ରସ୍ତୁତ ହେଲା । କେତେକ ଜର୍ମାନ ଭାବିଲେ ଯେ ସେମାନେ କାର୍ଯ୍ୟତଃ ଯୁଦ୍ଧ ଜୟକରି ସାରିଛନ୍ତି । ଅଗଷ୍ଟମାସ ଶେଷବେଳକୁ ଯୁଦ୍ଧର ପଶ୍ଚିମ କ୍ଷେତ୍ରରେ (ଅର୍ଥାତ୍ ଫରାସୀ କ୍ଷେତ୍ରରେ) ଏହିପରି ଅବସ୍ଥା ଥିଲା ।

ଇତ୍ୟବସରରେ ରୁଷ ସେନା ପୂର୍ବ ପ୍ରୁସିଆ ଆକ୍ରମଣ କରୁଥିଲେ ଏବଂ କୌଣସି-ମତେ ପଶ୍ଚିମାଞ୍ଚଳରୁ ଜର୍ମାନର ଦୃଷ୍ଟି ଫେରାଇ ଆଣିବା ନିମନ୍ତେ ଗୋଟାଏ ଉଦ୍ୟମ କରାଗଲା । ଫ୍ରାନ୍ସ ଓ ଇଂଲଣ୍ଡରେ ରୁଷର ଷ୍ଟିମ୍‌ରୋଲର (Steam roller ଏହି ନାମରେ ଡକା ହେଉଥିଲା ) ବର୍ଲିନ ଉପରକୁ ମାଡ଼ିଯିବ ବୋଲି ଫ୍ରାନ୍ସ ଓ ଇଂଲଣ୍ଡ ବହୁ ଆଶା ପୋଷଣ କଲେ । କିନ୍ତୁ ରୁଷ ଯୋଦ୍ଧାମାନଙ୍କ ହାତରେ ଭଲ ଅସ୍ତ୍ରଶସ୍ତ୍ର ନ ଥିଲା, ସେମାନଙ୍କ କର୍ମଚାରୀସବୁ ନିତାନ୍ତ ଅଯୋଗ୍ୟ ଥିଲେ ଏବଂ ତାଙ୍କ ପଛକୁ ରହିଥିଲା ଜାରର ଦୂଷିତ ସରକାର । ହଠାତ୍ ଜର୍ମାନମାନେ ତାଙ୍କ ଉପରେ ଆକ୍ରମଣ କଲେ ଏବଂ ପୂର୍ବପ୍ରୁସିଆର ସନ୍ତସନ୍ତିଆ ଭୂମି ଓ ହ୍ରଦମାନଙ୍କରେ ବିରାଟ ରୁଷସେନାକୁ ଯନ୍ତ୍ରାରେ ପକାଇଲେ ଏବଂ ସମ୍ପୂର୍ଣ୍ଣରୂପେ ଧ୍ୱଂସ କରିଦେଲେ । ଏହି ବିଶାଳ ଜର୍ମାନ ବିଜୟକୁ ଟାନେନବର୍ଗର ଯୁଦ୍ଧ ବୋଲି ନାମ ଦିଆଯାଇଥିଲା ଏବଂ ଏଥିରେ ଜଣେ ପ୍ରଧାନ ସେନାପତି ସଂପୃକ୍ତ ଥିଲେ—ତାଙ୍କ ନାମ ହେଉଛି ଭନ୍ ହିଣ୍ଡେନ୍‌ବର୍ଗ—ସେ ପରେ ଜର୍ମାନ ପ୍ରଜାତନ୍ତ୍ରର ରାଷ୍ଟ୍ରପତି ହୋଇଥିଲେ । (ସେ ମରିଗଲେଣି—ଅନୁବାଦକ) ।

ଏହା ଏକ ବିରାଟ ବିଜୟ ଅଥଚ ପ୍ରତ୍ୟକ୍ଷ ଭାବରେ ଜର୍ମାନ ସେନାକୁ ବହୁତ ବ୍ୟସ୍ତ କରିବାକୁ ପଡ଼ିଲା । ଏହା ହାସଲ କରିବା ନିମନ୍ତେ ଏବଂ ପୂର୍ବରେ ରୁଷରେ ଅଗ୍ରଗତିରେ ଟିକିଏ ଭୟଭୀତ ହୋଇ ସେମାନେ ଫ୍ରାନ୍ସ ଅଞ୍ଚଳରୁ କିଛି ସୈନ୍ୟ ରୁଷ ତରଫକୁ ନେଇଆସିଲେ । ପଶ୍ଚିମ କ୍ଷେତ୍ରରେ ଏତଦ୍ୱାରା ଚାପ ଟିକିଏ ଲାଘବ ହେଲା ଏବଂ ଆକ୍ରମଣ କରୁଥିବା ଜର୍ମାନମାନଙ୍କୁ ପ୍ରତିହତ କରିବା ନିମନ୍ତେ ଫରାସୀସେନା ଏକ ପ୍ରବଳ ଉଦ୍ୟମ କଲା । ୧୯୧୦ ସେପ୍‌ଟେମ୍ବର ମାସରେ ମାର୍ଣ୍ଣେଠାରେ ଯୁଦ୍ଧରେ ସେମାନେ ଜର୍ମାନମାନଙ୍କୁ ୪୦ ମାଇଲ ପଛକୁ ହଟାଇ ଦେବାରେ କୃତକାର୍ଯ୍ୟ ହେଲେ । ପାରିସ ରକ୍ଷା ପାଇଗଲା ଏବଂ ଫରାସୀ ଓ ଇଂରେଜମାନେ ଟିକିଏ ନିଃଶ୍ୱାସ ମାରିବାକୁ ସମୟ ପାଇଲେ ।

ଜର୍ମାନମାନେ ଭାଙ୍ଗି ପଶିବା ପାଇଁ ଆଉ ଏକ ଉଦ୍ୟମ କଲେ—ସେମାନେ ପ୍ରାୟ କୃତକାର୍ଯ୍ୟ ହେଲେ; କିନ୍ତୁ ସେମାନଙ୍କୁ ଅଟକାଇ ରଖାଗଲା । ତା ପରେ ଉଭୟ ସେନା ଖାତ ଖୋଳି ସେଥିରେ ରହିଲେ ଏବଂ ଏକପ୍ରକାର ନୂଆ ଯୁଦ୍ଧ - ଟ୍ରେଞ୍ଚ ଯୁଦ୍ଧ (Trench warfare—ଖାତ ଯୁଦ୍ଧ) ଆରମ୍ଭ ହେଲା । ଏହା ଏକପ୍ରକାର ସ୍ଥାଣୁ ଅବସ୍ଥା ଏବଂ ତିନିବର୍ଷରୁ ବେଶିକାଳ ଏବଂ କେତେକ ପରିମାଣରେ ପ୍ରାୟ ଯୁଦ୍ଧ ଶେଷ ପର୍ଯ୍ୟନ୍ତ ପଶ୍ଚିମ କ୍ଷେତ୍ରରେ ଏହି ଟ୍ରେଞ୍ଚ ଯୁଦ୍ଧ ଚାଲିଲା ଏବଂ ବିରାଟ ସେନାବାହିନୀ ସବୁ ମୂଷାପରି ଗାତରେ ପଶି

ରହିଲେ ଏବଂ ନିଜ ନିଜର ଶକ୍ତି କ୍ଷୟ କରିବାରେ ଲାଗିଲେ । ଆମେରିକାରୁ ହିଁ ଏହି ରଣକ୍ଷେତ୍ରରେ ଜର୍ମାନ ଓ ଫରାସୀ ସେନା ଲକ୍ଷ ଲକ୍ଷ ସଂଖ୍ୟାରେ ଥିଲେ । ଏହି କ୍ଷେତ୍ରରେ ଥିବା ଗ୍ରେଟ ବ୍ରିଟିଶ ସେନା ମଧ୍ୟ ଦ୍ରୁତବେଗରେ ବୃଦ୍ଧି ପାଇବାକୁ ଲାଗିଲା—ଶେଷରେ ସେମାନଙ୍କ ସଂଖ୍ୟା ମଧ୍ୟ ଲକ୍ଷ ଲକ୍ଷ ହୋଇଗଲା ।

ପୂର୍ବ ଅଥବା ରୁଷ କ୍ଷେତ୍ରରେ ଅଧିକ ଆନ୍ଦୋଳନ ଥିଲା । ରୁଷ ସେନା ବାରମ୍ବାର ଅଷ୍ଟ୍ରିଆନ୍‌ମାନଙ୍କୁ ପରାସ୍ତ କଲେ; କିନ୍ତୁ ସେମାନେ ନିଜେ ପ୍ରାୟ ଜର୍ମାନମାନଙ୍କଦ୍ୱାରା ପରାସ୍ତ ହେଲେ । ଏହି କ୍ଷେତ୍ରର କ୍ଷତି ଅସଂଖ୍ୟ । ଟ୍ରେଞ୍ଚଯୁକ୍ତ ହେଉ ପଶ୍ଚିମ ରଣକ୍ଷେତ୍ରରେ ଅଳ୍ପ କ୍ଷତି ହୋଇଥିଲା ବୋଲି ମନେକରିବୁ ନାହିଁ । ମଣିଷ ଜୀବନ ସହିତ ନିତାନ୍ତ ବେଖାତିର୍ ଭାବରେ ବ୍ୟବହାର କରାଗଲା ଏବଂ ଟ୍ରେଞ୍ଚଯୁକ୍ତ ସ୍ଥାନମାନଙ୍କରେ ପୁନଃ ପୁନଃ ଆକ୍ରମଣ ଦ୍ୱାରା ହଜାର ହଜାର ଲୋକ ମୃତ୍ୟୁମୁଖରେ ପଡ଼ିଲେ । କିନ୍ତୁ କିଛି ଫଳ ହେଲା ନାହିଁ ।

ଆହୁରି ଅନେକ ଯୁଦ୍ଧକ୍ଷେତ୍ର ଥିଲା । ତୁର୍କି ସୁଏଜ୍‌କେନାଲ ଆକ୍ରମଣ କରିବା ନିମନ୍ତେ ଚେଷ୍ଟା କରିଥିଲା, ମାତ୍ର ପ୍ରତିହତ ହେଲା । ମୁଁ ତତେ ଆଗରୁ କହିଛି ୧୯୧୪ ମସିହା ଡିସେମ୍ବର ମାସରେ ଇଜିପ୍ଟ ଏକ ବ୍ରିଟିଶ ପ୍ରୋଟେକ୍‌ଟରେଟ ବୋଲି ଘୋଷିତ ହୋଇଥିଲା ଏବଂ ହଠାତ୍ ବ୍ରିଟେନ ନୂତନ ବ୍ୟବସ୍ଥା ପରିଷଦକୁ ସ୍ଥଗିତ କରିଦେଲା ଏବଂ ଯେଉଁ ଲୋକମାନଙ୍କୁ ସନ୍ଦେହ କରାଗଲା ସେମାନଙ୍କୁ ସେନ ଜେଲଖାନା ଭରିଗଲା । ଜାତୀୟବାଦୀ ସମ୍ବାଦପତ୍ର ସବୁ ଦମନ କରାଗଲା ଏବଂ ପାଞ୍ଚଜଣରୁ ଅଧିକ ଲୋକଙ୍କୁ ଏକାଠି ହେବା ନିମନ୍ତେ ଦିଆଗଲା ନାହିଁ । ସେଠାରେ ଯେପରି ଯାଞ୍ଚ ପ୍ରଥା (ସେନ୍‌ସରସିପ୍—Censorship) ପ୍ରଚଳିତ ଥିଲା ତାହା "ବର୍ବରରୂପେ ନିର୍ମମ" ବୋଲି ଲଣ୍ଡନର 'ଟାଇମ୍‌ସ' କାଗଜ ବର୍ଣ୍ଣନା କରିଥିଲା । ପ୍ରକୃତରେ ଯୁଦ୍ଧକାଳ ସାରା ଏହି ଦେଶ ସାମରିକ ଆଇନ ଅଧୀନରେ ରହିଲା ।

ତୁର୍କିର ବିସ୍ତୃତ ସାମ୍ରାଜ୍ୟ ବ୍ରିଟେନ ଅନେକ ସ୍ଥାନରେ ଆକ୍ରମଣ କଲା;—ଇରାକରେ ଏବଂ ପରେ ପାଲେଷ୍ଟାଇନ୍ ଓ ସିରିଆରେ । ଆରବରେ ଆରବ ଜାତିର ଜାତୀୟଭାବର ସୁବିଧା ବ୍ରିଟିଶ ଉଠାଇଲେ ଏବଂ ମୁକ୍ତହସ୍ତରେ ଅର୍ଥ ଲାଞ୍ଚ ଓ ଜିନିଷପତ୍ର ଦେଇ ତୁର୍କି ବିରୁଦ୍ଧରେ ଏକ ଆରବ ବିଦ୍ରୋହ ସଙ୍ଗଠିତ ହେଲା । ଆରବର ବ୍ରିଟିଶ ଏଜେଣ୍ଟ କର୍ଣ୍ଣେଲ ଟି.ଇ. ଲରେନ୍‌ସି ଏହି ବିଦ୍ରୋହ ପାଇଁ ଅଧିକ ଭାବରେ ଦାୟୀ ଏବଂ ପରେ ଏକ ରହସ୍ୟଜନକ ଲୋକ ରୂପେ ସେ ଖ୍ୟାତି ପାଇଥିଲେ—ଏସିଆର ଅନେକ ଆନ୍ଦୋଳନର ଅନ୍ତରାଳରେ ରହି କାର୍ଯ୍ୟ କରିଥିଲେ ।

କିନ୍ତୁ ଯେତେବେଳେ ୧୯୧୫ ଫେବ୍ରୁୟାରୀ ମାସରେ ବ୍ରିଟିଶ ନୌସେନା ଡାର୍ଡାନେଲସ ଉପରେ ବଳପ୍ରୟୋଗ କରିବାକୁ ଚେଷ୍ଟାକଲେ ଓ କନ୍‌ଷ୍ଟାଣ୍ଟିନୋପଲ ଅଧିକାର

କରିବା ନିମନ୍ତେ ଚେଷ୍ଟା କଲେ, ଯେତେବେଳେ ସେ ତୁର୍କି ଉପରେ ପ୍ରତ୍ୟକ୍ଷ ଆକ୍ରମଣ ଆରମ୍ଭ ହେଲା । ସେମାନେ ଯଦି ଏଥିରେ କୃତକାର୍ଯ୍ୟ ହୋଇଥାନ୍ତେ, ତେବେ ଯୁଦ୍ଧରେ ସେମାନେ ଯେ କେବଳ ତୁର୍କିକୁ ଶେଷ କରିଦେଇ ଥାଆନ୍ତେ ତାହା ନୁହେଁ, ପଶ୍ଚିମ ଏସିଆକୁ ସମସ୍ତ ଜର୍ମାନ ପ୍ରଭାବ ବି ବିଚ୍ଛିନ୍ନ ହୋଇଯାଇଥାଆନ୍ତା; କିନ୍ତୁ ସେମାନେ ବିଫଳ ହେଲେ । ତୁର୍କି ଏକ ସାହସିକ ସଂଗ୍ରାମ କଲା ଏବଂ ମୁସ୍ତାଫା କେମାଲପାଶାଙ୍କର ଏଥିରେ ପ୍ରଧାନ ଅଂଶ ଥିଲା । ପ୍ରାୟ ଏକବର୍ଷ ପର୍ଯ୍ୟନ୍ତ ଗାଲିପଲିରେ ଏ ଉଦ୍ୟମ ଇଂରେଜମାନେ ଚଳାଇଲେ; ବହୁ କ୍ଷତିଗ୍ରସ୍ତ ହେଲାପରେ ଅପସରିଗଲେ ।

ପଶ୍ଚିମ ଓ ପୂର୍ବ ଆଫ୍ରିକାରେ ଜର୍ମାନ ଉପନିବେଶମାନଙ୍କରେ ମଧ୍ୟ ମିତ୍ରପକ୍ଷ ଆକ୍ରମଣ ଚଳାଇଲେ । ଏହିସବୁ ଉପନିବେଶ ଜର୍ମାନୀଠାରୁ ସମ୍ପୂର୍ଣ୍ଣରୂପେ ବିଚ୍ଛିନ୍ନ ହୋଇ ଯାଇଥିଲେ ଏବଂ ସାହାଯ୍ୟ ପାଇ ପାରିଲେ ନାହିଁ । କ୍ରମେ ସେଗୁଡ଼ିକ ବଶୀଭୂତ ହେଲେ । ଚୀନରେ ସୁବିଧାସ୍ୱରୂପ ଜର୍ମାନୀ ଯେଉଁ କିଉଚ୍ୟୁଉ ପାଇଥିଲା, ତାହା ଜାପାନ ସହଜରେ ଦଖଲ କରିଗଲା; ବାସ୍ତବିକ ଜାପାନ ପକ୍ଷରେ ବଡ଼ ସହଜ ହେଲା, କାରଣ ସୁଦୂର ପ୍ରାଚ୍ୟରେ ବିଶେଷ କିଛି ନ ଥିଲା । ତେଣୁ ସକଳପ୍ରକାର ମୂଲ୍ୟବାନ ଦାନ ଓ ସୁବିଧା ଦେବାପାଇଁ ଚୀନକୁ ଧମକ ଚମକ ଦେଖାଇ ସେଠି ତାର ମତଲବ ସାଧିବାପାଇଁ ସେ ଚେଷ୍ଟାକଲା ।

ଅନେକ ମାସ ପର୍ଯ୍ୟନ୍ତ ଇଟାଲୀ ଯୁଦ୍ଧର ଗତି ଲକ୍ଷ୍ୟ କରୁଥିଲା ଏବଂ କେଉଁପକ୍ଷ ଜିତିବ ଏହା ଜାଣିବାକୁ ଚେଷ୍ଟା କରୁଥିଲା । ଶେଷରେ ମିତ୍ରପକ୍ଷ ତରଫରେ ଜୟଲାଭର ସମ୍ଭାବନା ରହିଛି ବୋଲି ନିଷ୍ପତ୍ତି କରି ତାକୁ ଯେଉଁ ଲାଞ୍ଚ ଦିଆଗଲା, ସେଥିରେ ସମ୍ମତ ହୋଇ ଯୁଦ୍ଧରେ ମିତ୍ରପକ୍ଷରେ ଯୋଗଦେବା ନିମନ୍ତେ ସ୍ଥିରକଲା । ଦୁଇବର୍ଷ ପର୍ଯ୍ୟନ୍ତ ଇଟାଲୀ ଓ ଅଷ୍ଟ୍ରିଆ ପରସ୍ପର ବିରୁଦ୍ଧରେ ଲଢ଼ିଲେ – ବିଶେଷ କିଛି ଫଳ ହେଲା ନାହିଁ । ଶେଷରେ ଜର୍ମାନମାନେ ଆସି ଅଷ୍ଟ୍ରିଆକୁ ସାହାଯ୍ୟ କଲେ ଓ ତାଙ୍କ ସାମନାରେ ଇଟାଲୀର ପତନ ହେଲା । ଅଷ୍ଟ୍ରିଆ-ଜର୍ମାନୀ ସୈନ୍ୟ ପ୍ରାୟ ଭେନିସ୍‌ରେ ପହଞ୍ଚିଯାଇଥିଲେ ।

୧୯୧୫ ଅକ୍ଟୋବର ମାସରେ ବୁଲଗେରିଆ ଜର୍ମାନୀ ସହିତ ଯୋଗଦେଲା । ଏହାର ଅଳ୍ପ କେତେଦିନ ପରେ ଅଷ୍ଟ୍ରୋ-ଜର୍ମାନ ସେନା ବୁଲଗେରିଆ ସହ ସହଯୋଗ କରି ପୂର୍ଣ୍ଣଭାବରେ ସର୍ବିଆକୁ ଦମନ କରିଦେଲେ । ସର୍ବିଆର ଶାସକ ଅବଶିଷ୍ଟ ସେନାଙ୍କୁ ନେଇ ଦେଶ ଛାଡ଼ିଗଲେ ଓ ମିତ୍ରପକ୍ଷ ଜାହାଜରେ ଆଶ୍ରୟ ନେଲେ ଏବଂ ସର୍ବିଆ ଜର୍ମାନ ଅଧୀନରେ ରହିଲା ।

ବଲକାନ ଯୁଦ୍ଧରେ ରୁମାନିଆ ଯେପରି ଆଚରଣ ଦେଖାଇଥିଲା ସେଥିରେ ସୁବିଧା-ବାଦୀ ବୋଲି ତାର ଖ୍ୟାତିଥିଲା । ଦୁଇବର୍ଷ ପର୍ଯ୍ୟନ୍ତ ତାହା ଯୁଦ୍ଧର ଗତି ଲକ୍ଷ୍ୟକଲା ଏବଂ ଶେଷରେ ୧୯୧୬ ଅଗଷ୍ଟ ମାସରେ ସେ ମିତ୍ରପକ୍ଷ ସହ ଯୋଗ ଦେଲା । ଜର୍ମାନୀ ସାଙ୍ଗେ ସାଙ୍ଗେ ଶାସ୍ତି ଦେଲା– ଜର୍ମାନ ସୈନ୍ୟ ଦେଶ ଉପରେ ମାଡ଼ିଗଲେ ଓ ସମସ୍ତ ପ୍ରତିରୋଧ ଚୂର୍ଣ୍ଣ କଲେ । ରୁମାନିଆ ବି ଅଷ୍ଟ୍ରୋ-ଜର୍ମାନ ଦଖଲରେ ରହିଲା ।

ଏହିରୂପେ କେନ୍ଦ୍ରଶକ୍ତି ଜର୍ମାନ ଓ ଅଷ୍ଟ୍ରିଆ, ବେଲଜିୟମ, ଉତ୍ତର-ପୂର୍ବରେ ଫ୍ରାନ୍ସର ଏକଭାଗ ଏବଂ ପୋଲଣ୍ଡ, ସର୍ବିଆ ଓ ରୁମାନିଆ ଦଖଲ କଲେ । ଅନେକ ଶ୍ରେଷ୍ଠ ଶ୍ରେଷ୍ଠ ଯୁଦ୍ଧଭୂମିରେ ସେମାନେ ଜୟୀ ହେଲେ । କିନ୍ତୁ ପଶ୍ଚିମ କ୍ଷେତ୍ରରେ ଠିକ୍ ସଂଗ୍ରାମ-ସୀଠସ୍ଥଳରେ ଓ ସମୁଦ୍ରରେ ସେମାନେ ଆଦୌ ଅଗ୍ରଗତି କରିପାରିଲେ ନାହିଁ । ସେହି କ୍ଷେତ୍ରରେ ବିରୋଧୀ ସେନାବାହିନୀ ମୃତ୍ୟୁକୁ ଆଲିଙ୍ଗନ କରିବାପାଇଁ ଛିଦହୋଇ ପଡ଼ିଥାନ୍ତି । ସମୁଦ୍ର ପଥରେ ମିତ୍ରଶକ୍ତି ସର୍ବେସର୍ବା ଥିଲେ । ଯୁଦ୍ଧର ପ୍ରଥମଭାଗରେ କେତେକ ଜର୍ମାନ ଯୁଦ୍ଧପୋତ ମିତ୍ରପକ୍ଷର ଜାହାଜମାନଙ୍କୁ ବାଧା ଦେବା ନିମନ୍ତେ ସମୁଦ୍ରରେ ବୁଲିବାକୁ ଲାଗିଲେ । ବିଶେଷତଃ 'ଏମ୍‌ଡେନ' ଏଥିରୁ ଗୋଟିଏ—ଏହା ମାନ୍ଦ୍ରାଜ ଉପରେ ବୋମା ନିକ୍ଷେପ କଲା । କିନ୍ତୁ ଏହା ଏକ ସାମାନ୍ୟ ଗତ ପରିବର୍ତ୍ତନ ମାତ୍ର—ମିତ୍ରପକ୍ଷ ସମୁଦ୍ର ପଥ ଉପରେ କର୍ତ୍ତୃତ୍ୱ କରୁଥିବାରୁ ଏଥିରେ କିଛି ପାର୍ଥକ୍ୟ ଘଟିଲା ନାହିଁ । ଏହି କର୍ତ୍ତୃତ୍ୱ ବଳରେ ସେମାନେ ବାହାରୁ ସମସ୍ତ ପ୍ରକାର ଖାଦ୍ୟ ଓ ଅନ୍ୟ ସାମଗ୍ରୀ କେନ୍ଦ୍ରଶକ୍ତି ପାଖରେ ପହଞ୍ଚିବାରେ ବାଧା ଦେବାକୁ ଚେଷ୍ଟା କଲେ । ଜର୍ମାନୀ ଓ ଅଷ୍ଟ୍ରିଆ ଉପରେ ଏହି ଘେରାଉ ଏକ ଭୀଷଣ ପରୀକ୍ଷାବେଳ ହେଲା, କାରଣ ଖାଦ୍ୟ ଅଭାବ ପଡ଼ିଲା ଏବଂ ସମଗ୍ର ଜନସମାଜ କ୍ଷୁଧାରେ ବ୍ୟାକୁଳ ହୋଇପଡ଼ିଲେ ।

ଅନ୍ୟପକ୍ଷରେ ଜର୍ମାନୀ ବୁଡ଼ାଜାହାଜଦ୍ୱାରା ମିତ୍ରପକ୍ଷ ଜାହାଜସବୁ ବୁଡ଼ାଇବାର ଚେଷ୍ଟାକଲା । ଏହି ବୁଡ଼ାଜାହାଜ ଯୁଦ୍ଧ ଏତେ କୃତକାର୍ଯ୍ୟ ହେଲା ଯେ ଇଂଲଣ୍ଡର ଖାଦ୍ୟ ସରବରାହ କମ ହୋଇଗଲା ଏବଂ ଦୁର୍ଭିକ୍ଷର ଆଶଙ୍କା ଜାତହେଲା । ୧୯୧୫ ମେ ମାସରେ ଗୋଟିଏ ଜର୍ମାନ ବୁଡ଼ାଜାହାଜ ପ୍ରଧାନ ଇଂରେଜ ଆଟଲାଣ୍ଟିକ ଜାହାଜ "ଲୁସିଟାନିଆ"କୁ ବୁଡ଼ାଇଦେଲା ଏବଂ ଏଥିରେ ବହୁସଂଖ୍ୟକ ଲୋକ ବୁଡ଼ିମଲେ । ଏଥିରେ ଅନେକ ଆମେରିକାନ୍ ବି ମଲେ ଏବଂ ଏହି କାରଣରୁ ଆମେରିକାରେ ବଡ଼ ବିକ୍ଷୋଭ ଜାତ ହେଲା ।

ଜର୍ମାନୀ ଉଡ଼ାଜାହାଜ ଜରିଆରେ ଇଂଲଣ୍ଡ ବି ଆକ୍ରମଣ କଲା । ପ୍ରକାଣ୍ଡ ଜେପଲିନ୍ ଉଡ଼ାଜାହାଜସବୁ ଜହ୍ନରାତିରେ ଲଣ୍ଡନ ଓ ଅସ୍ତ୍ରଶସ୍ତ୍ର କାରଖାନା ଥିବା ଅନ୍ୟ ସ୍ଥାନମାନଙ୍କରେ ବୋମା ପକାଇବାକୁ ଆସିଲେ । ଶେଷରେ ଉଡ଼ାଜାହାଜସବୁ (ଏରୋପ୍ଲେନ) ବୋମା ପକାଇଲେ ଏବଂ ଉଡ଼ାଜାହାଜର ଦ୍ରୁତ ଘୂର୍ଣ୍ଣନ ଶବ୍ଦ ଶୁଣିବା, ବୋମା ବିଧ୍ୱଂସକାରୀ ବନ୍ଧୁକରୁ ଗୁଳି ଶବ୍ଦ ଏବଂ ଆପଣାକୁ ରକ୍ଷା କରିବା ନିମନ୍ତେ ଭୂଗର୍ଭସ୍ଥ ଗର୍ତ୍ତ-ମାନଙ୍କୁ ଧାଇଁ ପଳାଇବା ପ୍ରଭୃତି ଲୋକଙ୍କ ପକ୍ଷରେ ଏକ ସାଧାରଣ କଥା ହୋଇଗଲା । ବେସାମରିକ ଅଧିବାସୀଙ୍କ ଉପରେ ଏହି ବୋମା ନିକ୍ଷେପ ଫଳରେ ବ୍ରିଟିଶ ଲୋକେ ବଡ଼ ବିରକ୍ତ ହୋଇଗଲେ । ସେମାନଙ୍କର କ୍ରୋଧଜାତ ହେବା ଠିକ୍; କାରଣ ଏହା ଏକ ଭୟାନକ ଜିନିଷ । କିନ୍ତୁ ଯେତେବେଳେ ବ୍ରିଟିଶ ଉଡ଼ାଜାହାଜରୁ ବୋମା ନିକ୍ଷେପ କରାଯାଏ ଏବଂ ବିଶେଷତଃ ଭାରତର ଉତ୍ତର ପଶ୍ଚିମ ସୀମାନ୍ତ ବା ଇରାକରେ ସେହି ନାରକୀୟ ଆବିଷ୍କାର "The time-delayed bombs"—ଯାହାସବୁ 'ଡେରିରେ ଫୁଟିବା ବୋମା'

କଦନ୍ତୀ—ନିକ୍ଷେପ କରାଯାଉଥିଲା; ଯେତେବେଳେ ବ୍ରିଟେନରେ କିଛି ବୋଧସ୍ତବ ଦେଖାଯାଉ ନଥିଲା । ଏହାକୁ ଶାନ୍ତିରକ୍ଷା କାର୍ଯ୍ୟ ବୋଲି କୁହାହେଉଥିଲା ଏବଂ ଏପରିକି ତଥାକଥିତ ଶାନ୍ତି ସମୟରେ ସୁଦ୍ଧା ଏହା ଘଟିଥିଲା ।

ଏହିରୂପେ ଯୁଦ୍ଧ ଚାଲିଲା; ମାସକପରେ ମାସ ବିତିଲା; ଜଙ୍ଗଲ ନିଆଁ ରେ ଅସଂଖ୍ୟ ପଙ୍ଗପାଳ ପୋଡ଼ିଗଲା ପରି ମଣିଷ ଜୀବନ ବଳି ପଡ଼ିଲା ଏବଂ ଏହା ଯେତେଦିନ ଲାଗି ରହିଲା, ଅତ୍ୟନ୍ତ ଧ୍ୱଂସକାରୀ ଓ ବର୍ବର ରୂପ ଧାରଣ କଲା । ଜର୍ମାନମାନେ ବିଷବାଷ୍ପ ବ୍ୟବହାର କଲେ ଏବଂ ଶୀଘ୍ର ଉଭୟପକ୍ଷ ବି ତାହା ବ୍ୟବହାର କଲେ । ବୋମା ନିକ୍ଷେପ କରିବା ପାଇଁ ଉଡ଼ାଜାହାଜ ବେଶୀ ଭାବରେ ବ୍ୟବହୃତ ହେଲା ଏବଂ ତାପରେ ବ୍ରିଟିଶ ପକ୍ଷରେ ପ୍ରଥମେ ଆସିଲା "ଟ୍ୟାଙ୍କ" (Tanks)—ପ୍ରକାଣ୍ଡ ଯନ୍ତ୍ର ରାକ୍ଷସ—ପ୍ରତ୍ୟେକ ଜିନିଷ ଉପରେ ଶାଁବାଳୁଆ ପରି ଲେପ୍‌ଟେଇ ଚାଲିଲା । ଯୁଦ୍ଧକ୍ଷେତ୍ରରେ ଶହ ଶହ ହଜାର ହଜାର ସଂଖ୍ୟାରେ ଲୋକ ମଲେ ଏବଂ ତାଙ୍କ ପଛରେ ନିଜ ଦେଶମାନଙ୍କରେ କ୍ଷୁଧା ଓ ଯନ୍ତ୍ରଣାରେ ସ୍ତ୍ରୀ ଓ ବାଳକ କଷ୍ଟ ଭୋଗିଲେ । ଅବରୋଧ ଯୋଗୁଁ ବିଶେଷ ଭାବରେ ଜର୍ମାନୀ ଓ ଅଷ୍ଟ୍ରିଆରେ ଭୀଷଣ ଅନାହାର ଘୋଟିଲା । ସହ୍ୟ କରି ପାରିବା ଶକ୍ତିର ଏକପ୍ରକାର ପରୀକ୍ଷା ପଡ଼ିଥିଲା । ଏହି କଠୋର ପରୀକ୍ଷାରେ କେଉଁପକ୍ଷ ବେଶୀବେଳ ବଞ୍ଚିବ ? ଉଭୟ ସେନାବାହିନୀ ଶେଷ ପାଇଯିବେ କି ? ମିତ୍ରପକ୍ଷର ଜର୍ମାନ ଘେରାଉ ଫଳରେ ତାହାର ହିମ୍ମତ ଭାଙ୍ଗି ପଡ଼ିବ କି ? ଅଥବା ଜର୍ମାନୀର ବୁଡ଼ାଜାହାଜ ଅଭିଯାନ ଫଳରେ ଇଂଲଣ୍ଡ ଅନାହାର ପ୍ରପୀଡ଼ିତ ହେବ ଏବଂ ତାର ସାହସ ଓ ନୈତିକତା ଭାଙ୍ଗି ପଡ଼ିବ କି ? ପ୍ରତ୍ୟେକ ଦେଶ ପଶ୍ଚାତ୍ତରେ ତ୍ୟାଗ ଓ କଷ୍ଟ ସହ୍ୟ କରିବାର ପ୍ରକାଣ୍ଡ ଇତିହାସ ରହିଥିଲା । ଲୋକେ ଭାବିବାକୁ ଲାଗିଲେ, ଏସବୁ ବିପୁଳ ତ୍ୟାଗ ଓ କଷ୍ଟ ସ୍ୱୀକାର କରି ବୃଥା ଯିବ ? ଆମେ କରି ଆମର ମୃତଲୋକଙ୍କୁ ଭୁଲିଯିବା ଓ ଶତ୍ରୁ ପାଖରେ ଆତ୍ମସମର୍ପଣ କରିବା ? ଯୁଦ୍ଧପୂର୍ବ କାଳ ବହୁତ ପୁରାତନ ପରି ମନେହେଲା—ଏପରିକି ଯୁଦ୍ଧର କାରଣ ବି ଲୋକେ ପାଶୋରି ପକାଇଲେ । କେବଳ ଗୋଟିଏ ଜିନିଷ ନରନାରୀ-ମାନଙ୍କର ମନ ଅଧିକାର କରି ବସିଲା—ତାହା ହେଉଛି କେବଳ ପ୍ରତିଶୋଧ ଓ ବିଜୟର ଅଭିଳାଷ ।

ନିଜର ପ୍ରିୟ ଆଦର୍ଶ ସକାଶେ ଜୀବନ ତ୍ୟାଗ କରିଥିବା ମୃତ ଲୋକଙ୍କର ଆହ୍ୱାନ ଏକ ଭୀଷଣ ଜିନିଷ । ଯେଉଁ ପୁରୁଷ ବା ନାରୀଠାରେ ଆତ୍ମା ରହିଛି ତାହା କିପରି ଏହାକୁ ଏଡ଼ି ପାରିବ ? ଯୁଦ୍ଧର ଶେଷବେଳକୁ ଚାରିଆଡ଼େ ଅନ୍ଧକାର ଘନୀଭୂତ କଲା ଏବଂ ଯୁଦ୍ଧରତ ଦେଶମାନଙ୍କରେ ପ୍ରତ୍ୟେକ ଗୃହରେ ବିଷାଦର ଛାୟା ଦେଖାଦେଲା—ଅବସନ୍ନ ଭାବ ଓ ହତାଶା —ତଥାପି ନିଜର ଦୀପ ଜଳାଇ ରଖିବା ଛଡ଼ା ଲୋକ ଆଉ କ'ଣ କରନ୍ତା ? ଜଣେ ବ୍ରିଟିଶ କର୍ମଚାରୀ ମେଜର ମାକ୍ରେ (Major Mc Crae)ଙ୍କ ଲିଖିତ ଏହି ହୃଦୟ-ବିଗଳିତ-କାରୀ କବିତା ପଢ଼ିବୁ ଏବଂ ସେହି ଦୁଃଖ ଓ ନିରାନନ୍ଦମୟ ଯୁଦ୍ଧକାଳରେ ତାଙ୍କ କାତର ନିଚ୍ଛାର

ଏହାକୁ ପଢ଼ି ତାଙ୍କ ହୃଦୟ କିପରି ସ୍ପର୍ଶ କରିଥିବ ଅନୁମାନ କର । ମ୍‌କେରଙ୍କ ଦେଶପ୍ରେମ କବିତା ସବୁ ବିଭିନ୍ନ ଦେଶରେ ଓ ନାନା ଭାଷାରେ ଲେଖା ଯାଇଥିଲା ।

ମୁହୂର୍ତ୍ତି ପୂର୍ବରୁ ଖେଳୁଥିଲା ପ୍ରାଣ—ଥିଲା ଅନୁଭବ ଶକ୍ତି,
ଅସ୍ତମିତ ରବି ସୁନେଲି କିରଣ—ଦେଖୁଥିଲୁ ଆମେ କେତେ;
ପ୍ରେମକରି ଆମେ ପାଉଥିଲୁ ପ୍ରେମ—ସ୍ପନ୍ଦନ ହଜିଛି ଆଜି
ଫ୍ଲାଣ୍ଡର୍ସ ପଡ଼ିଆ ଘାସପରେ ଆମ—ଶରୀର ପଡ଼ିଛି ଭାଜି
ଆମ ହାତରୁ ନିଅ ଯୁଦ୍ଧର ପତାକା—'ଯୁଦ୍ଧ କର ଶତ୍ରୁ ସାଥେ
ପରାହତ ହାତରୁ ବଢ଼ାଇ ଦେଉଛୁ ମଶାଲ ତୁମର ହାତେ ·
ଉଚ୍ଚ ଆକାଶେ ତୋଳ ସେ ମଶାଲ ଆଜି
ମରିଛୁ ଯିଏ ତା ବିଶ୍ୱାସର ଟାଣ ପକାଇବ ଯେବେ ଭାଜି,—
ନାହିଁ ଆମଲାଗି ସୁଖର ଶୟନ ଶାନ୍ତି ?
ଫ୍ଲାଣ୍ଡର୍ସ ପ୍ରାନ୍ତରେ ଅଫିମର ଗଛ ବଢ଼ିଲେ ଅଛି କି ତୃପ୍ତି ?
[ ଅନୁବାଦକ—ଚିତ୍ତରଞ୍ଜନ ଦାସ ]

୧୯୧୭ ଶେଷ ବେଳକୁ ମିତ୍ରପକ୍ଷ ସୁବିଧାଜନକ ଅବସ୍ଥାରେ ଥିଲାପରି ବୋଧହେଲା । ସେମାନଙ୍କର ନୂତନ ଟ୍ୟାଙ୍କ ହେତୁ ପଶ୍ଚିମ ରଣକ୍ଷେତ୍ରରେ ସେମାନେ ଆଗୁଆ ହେଲେ; ଇଂଲଣ୍ଡ ଉପରେ ଆକ୍ରମଣ କରୁଥିବା ଜେପଲିନ୍ ଉଡ଼ାଜାହାଜ ସବୁ ଧ୍ୱଂସର ସମ୍ମୁଖୀନ ହେଲେ; ଜର୍ମାନ ବୁଡ଼ାଜାହାଜର ଆକ୍ରମଣ ସତ୍ତ୍ୱେ ନିରପେକ୍ଷ ଜାହାଜ ଜରିଆରେ ଯଥେଷ୍ଟ ଖାଦ୍ୟ ଇଂଲଣ୍ଡରେ ପହଞ୍ଚିବାକୁ ଲାଗିଲା । ୧୯୧୬ ମେ ମାସରେ ଉତ୍ତର ସାଗରରେ ଏକ ନୌଯୁଦ୍ଧ ଘଟିଲା (ଜୁଟଲାଣ୍ଡ ଯୁଦ୍ଧ)—ଏଥିରେ ମୋଟାମୋଟି ଇଂଲଣ୍ଡର ବିଜୟ ହେଲା । ଇତ୍ୟବସରରେ ଜର୍ମାନିରେ ଘେରାଉ ଫଳରେ ଅଷ୍ଟ୍ରୋ-ଜର୍ମାନ ଲୋକେ ଅନାହାରରେ ମରଣ ମୁଖରେ ପ୍ରାୟ ପଡ଼ିଲେ । କାଳ କେନ୍ଦ୍ରଶକ୍ତିଙ୍କ ବିରୁଦ୍ଧରେ ଗଲାପରି ମନେ ହେଲା ଏବଂ ଦ୍ରୁତ ପରିବର୍ତ୍ତନର ଆବଶ୍ୟକତା ପଡ଼ିଥିଲା । ଏପରିକି ଜର୍ମାନି କେତେକ ଶାନ୍ତି ସମ୍ବାଦ ବି ପଠାଇଲା; କିନ୍ତୁ ମିତ୍ରପକ୍ଷ ତାହା କିଛି ଗ୍ରହଣ କଲେ ନାହିଁ । ମିତ୍ରପକ୍ଷ ସରକାର ସବୁ ବିଭିନ୍ନ ଦେଶକୁ ବିଭକ୍ତ କରିବା ନିମନ୍ତେ ପରସ୍ପର ଭିତରେ ବହୁ ଗୁପ୍ତ ସନ୍ଧିମାନ କରିଥିଲେ—ପୂର୍ଣ୍ଣ ବିଜୟ ଛଡ଼ା ଅନ୍ୟ କୌଣସିଥିରେ ସେମାନେ ସନ୍ତୋଷ ଲାଭ କରିପାରନ୍ତେ ନାହିଁ । ସଂଯୁକ୍ତ ରାଷ୍ଟ୍ରର ସଭାପତି ଉଡ୍ରୋ ଉଇଲସନ ଶାନ୍ତି ଆଣିବା ସକାଶେ କେତେକ ନିଷ୍ଫଳ ଉଦ୍ୟମ କରିଥିଲେ ।

ସେହିହେତୁ ଜର୍ମାନ ନେତାମାନେ ତାଙ୍କର ଉଡ଼ାଜାହାଜ-ଯୁଦ୍ଧ ଘନୀଭୂତ କରିବା ନିମନ୍ତେ ଚେଷ୍ଟା କଲେ ଏବଂ ଏହିରୂପେ ଇଂଲଣ୍ଡ ଅନାହାର ପୀଡ଼ିତ ହୋଇ ବଶ୍ୟତା ସ୍ୱୀକାର କରିବ ବୋଲି ଭାବିଲେ । ୧୯୧୭ ମସିହା ଜାନୁୟାରୀ ମାସରେ ସେମାନେ ଘୋଷଣା କଲେ

ଯେ କେଉଁକ ସମୁଦ୍ରରେ ସେମାନେ ନିରପେକ୍ଷ ଜାହାଜ ମଧ୍ୟ ବୁଡ଼ାଇଦେବେ । ନିରପେକ୍ଷ ଜାହାଜରେ ଇଂଲଣ୍ଡକୁ ଖାଦ୍ୟ ଯିବାରେ ବାଧା ଦେବାପାଇଁ ଏହା ହୋଇଥିଲା । ଏହି ଘୋଷଣାରେ ଆମେରିକା ଅତ୍ୟନ୍ତ ଅପମାନିତ ବୋଧ କଲା; ଏପରି ଭାବରେ ତାର ଜାହାଜ ବୁଡ଼ା ହେବାଟା ତାହା କେବେହେଁ ସହ୍ୟ କରିପାରନ୍ତା ନାହିଁ । ଏହା ତାର ଯୁଦ୍ଧରେ ପ୍ରବେଶ ଅନିବାର୍ଯ୍ୟ କରି ପକାଇଲା ଏବଂ ବାସ୍ତବିକ ଜର୍ମାନ ସରକାର ଯେତେବେଳେ ଅବାଧ ବୁଡାଜାହାଜ ଆକ୍ରମଣ ଆରମ୍ଭ କରିବା ନିମନ୍ତେ ସ୍ଥିର କଲା, ସେତେବେଳେ ଏହା ଅବଶ୍ୟ ତାକୁ ଜଣାଥିବ । ସମ୍ଭବତଃ ସେମାନେ ବୋଧ କଲେ ତାଙ୍କର ଅନ୍ୟ ଗତି କିଛିନାହିଁ ଏବଂ ଏହି ବିପଦ ବରଣ କରିବାକୁ ହିଁ ପଡ଼ିବ । ନଚେତ୍ ସେମାନେ ହୁଏତ ଭାବିଥିବେ ଯେ ଆମେରିକା ଧନପତିମାନେ ତ ଆଗରୁ ମିତ୍ରପକ୍ଷକୁ ସାହାଯ୍ୟ କରିବାପାଇଁ ଯଥେଷ୍ଟ ଧନ ଦେଉଛନ୍ତି । ସେ ଯାହାହେଉ ୧୯୧୭ ଏପ୍ରିଲମାସରେ ଯୁକ୍ତରାଷ୍ଟ୍ର ଯୁଦ୍ଧ ଘୋଷଣା କଲା ଏବଂ ସମସ୍ତ ଦେଶ ପ୍ରାୟ ଅକର୍ମଣ୍ୟ ହୋଇ ପଡ଼ିଥିଲାବେଳେ ବିଶାଳ ସମ୍ପଦ ଓ ନୂତନ ଅବସ୍ଥା ନେଇ ଆମେରିକା ପ୍ରବେଶ କରିବାରେ ଜର୍ମାନ ଶକ୍ତିପୁଞ୍ଜ ପରାସ୍ତ ହେବା ନିଶ୍ଚିତ ପରି ମନେ ହେଲା ।

ତଥାପି ଆମେରିକା ଯୁଦ୍ଧ ଘୋଷଣା କରିବା ପୂର୍ବରୁ ଆଉ ଏକ ପ୍ରଧାନ ଘଟଣା ଘଟିଯାଇଥିଲା । ୧୯୧୭ ମାର୍ଚ୍ଚ ୧୫ ତାରିଖରେ ପ୍ରଥମ ରୁଷ ବିପ୍ଳବ ଫଳରେ ଜାର ସିଂହାସନଚ୍ୟୁତ ହେଲେ । ଏହି ବିପ୍ଳବ ସମ୍ବନ୍ଧରେ ମୁଁ ସ୍ୱତନ୍ତ୍ରରୂପେ ତତେ ଲେଖିବି । ତୋର ଲକ୍ଷ୍ୟ କରିବାର କଥା ଯେ ଏହି ବିପ୍ଳବ ଫଳରେ ଯୁଦ୍ଧରେ ବିଶେଷ ପରିବର୍ତ୍ତନ ଘଟିଲା । ଜର୍ମାନ ଶକ୍ତି ବିରୁଦ୍ଧରେ ରୁଷ ସ୍ପଷ୍ଟ ଭାବରେ ଆଉ ବେଶି ଯୁଦ୍ଧ କରିପାରିଲା ନାହିଁ ଏବଂ ଏହାର ଅର୍ଥ ପୂର୍ବ ରଣକ୍ଷେତ୍ରରେ ଜର୍ମାନୀର ଉଦ୍‌ବେଗ କମ୍ ହୋଇଗଲା । ସେ ପୂର୍ବ ରଣକ୍ଷେତ୍ରରୁ ସମସ୍ତ ବା ଅଧିକାଂଶ ସୈନ୍ୟ ପଶ୍ଚିମ ରଣକ୍ଷେତ୍ରକୁ ନେଇପାରିବ ଏବଂ ଫରାସୀ ଓ ବ୍ରିଟିଶଙ୍କ ବିରୁଦ୍ଧରେ ସେମାନଙ୍କୁ ଲଗାଇବ । ହଠାତ୍ ଏହା ଜର୍ମାନୀ ପ୍ରତି ଖୁବ୍ ଅନୁକୂଳ ହୋଇଗଲା । ସେ ଯଦି ରୁଷ ବିପ୍ଳବ ଘଟିବାର ମାତ୍ର ସପ୍ତାହ ପୂର୍ବରୁ ଜାଣିପାରିଥାନ୍ତା, ତେବେ ବି ପାର୍ଥକ୍ୟ ଘଟି ନ ଥାନ୍ତା । ଏଥିରେ ହୁଏତ ବୁଡ଼ାଜାହାଜ ଯୁଦ୍ଧରେ କୌଣସି ପରିବର୍ତ୍ତନ ହୋଇ ନ ଥାନ୍ତା ଏବଂ ସମ୍ଭବତଃ ଆମେରିକା ନିରପେକ୍ଷ ରହିଥାନ୍ତା । ରୁଷ ଯୁଦ୍ଧର ବାହାରେ ଏବଂ ଆମେରିକା ନିରପେକ୍ଷ ଥିବାବେଳେ ବ୍ରିଟିଶ ଓ ଫରାସୀ ସେନାଙ୍କୁ ଜର୍ମାନୀ ଦମନ କରିଦେବା ଖୁବ୍ ସମ୍ଭବ ହୋଇ ପାରିଥାନ୍ତା । ତଥାପି ଏପରି ଅବସ୍ଥାରେ ସୁଦ୍ଧା ପଶ୍ଚିମ ରଣକ୍ଷେତ୍ରରେ ଜର୍ମାନୀର ଶକ୍ତି ବଢ଼ିଲା ଏବଂ ଜର୍ମାନ ବୁଡ଼ାଜାହାଜମାନଙ୍କଦ୍ୱାରା ପ୍ରଚୁର ପରିମାଣରେ ମିତ୍ର ପକ୍ଷ ଓ ନିରପେକ୍ଷ ଜାହାଜ ସବୁ ଧ୍ୱଂସ ହେଲା ।

ରୁଷ ବିପ୍ଳବ ଜର୍ମାନୀକୁ ସାହାଯ୍ୟ କଲାପରି ମନେ ହେଲା । ଅଥଚ ଏହା ହିଁ ଆଭ୍ୟନ୍ତରିଣ ଦୁର୍ବଳତାର ଏକ ପ୍ରଧାନ କାରଣ ହୋଇଗଲା । ପ୍ରଥମ ବିପ୍ଳବର ଆଠମାସ

ଭିତରେ ଦ୍ୱିତୀୟ ବିପ୍ଳବ ହେଲା—ଏଥିରେ ସୋଭିଏଟ ଓ ବଲସେଭିକ୍ କ୍ଷମତା ପାଇଲେ । ତାଙ୍କର ସ୍ଲୋଗାନ ବା ଧ୍ୱନି ଥିଲା ଶାନ୍ତି । ସେମାନେ ସମସ୍ତେ ଯୁଦ୍ଧରତ ଦେଶମାନଙ୍କର ସୈନିକ ଓ ଶ୍ରମିକମାନଙ୍କୁ ନିବେଦନ କଲେ ଓ ଶାନ୍ତି ପାଇଁ ଅହ୍ୱାନ କଲେ; ସେମାନେ ଦର୍ଶାଇଲେ ଯେ ଏହା ହେଉଛି ଏକ ପୁଞ୍ଜିବାଦୀ ଯୁଦ୍ଧ ଓ ସାମ୍ରାଜ୍ୟବାଦୀ ଲକ୍ଷ୍ୟ ହାସଲ ନିମନ୍ତେ ଶ୍ରମିକମାନେ ନିଜକୁ କମାଣ ଖାଦ୍ୟରୂପେ ବ୍ୟବହୃତ କରାଇବା ଉଚିତ ନୁହେଁ । ଏହି ନିବେଦନ ଓ ବାଣୀ କେତେକ ଯୁଦ୍ଧକ୍ଷେତ୍ରରେ ଅନ୍ୟ ଜାତିର ସୈନ୍ୟମାନଙ୍କ ପାଖରେ ପହଞ୍ଚିଲା ଏବଂ ସେମାନଙ୍କ ଉପରେ ପ୍ରଚୁର ପ୍ରଭାବ ପକାଇଲା । ଫରାସୀ ସେନାଙ୍କ ଭିତରେ ଅନେକ ବିଦ୍ରୋହ ହେଲା—କର୍ତ୍ତୃପକ୍ଷ କୌଣସି ପ୍ରକାରେ ତାହା ଦବାଇ ଦେଲେ । ଜର୍ମାନ ସୈନିକମାନଙ୍କ ଉପରେ ଏହାର ପ୍ରଭାବ ଆହୁରି ବେଶି ହୋଇଥିଲା; କାରଣ ବିପ୍ଳବ ପରେ ଅନେକ ସେନା ପ୍ରକୃତରେ ରୁଷ ସେନାଙ୍କ ସହ ଭ୍ରାତୃଭାବ ପ୍ରଦର୍ଶନ କଲେ । ଏହି ସେନା-ଗଣଙ୍କୁ ଯେତେବେଳେ ପଶ୍ଚିମ ରଣକ୍ଷେତ୍ରକୁ ନିଆ ହେଲା ସେମାନେ ସାଥିରେ ଏହି ନୂତନ ବାଣୀ ନେଇ ଗଲେ ଏବଂ ସେମାନଙ୍କ ଭିତରେ ଏହା ପ୍ରଚାର କଲେ । ଜର୍ମାନୀ ଯୁଦ୍ଧକ୍ଲାନ୍ତ ହୋଇଥିଲା ଓ ସଂପୂର୍ଣ୍ଣରୂପେ ଭଗ୍ନ ହୃଦୟ ହୋଇଗଲା ଏବଂ ରୁଷରୁ ବୀଜ ଆସି ତାର ଭୂମିରେ ପଡ଼ିଲା—ତାହା ଗ୍ରହଣ କରିବା ନିମନ୍ତେ ସେ ପ୍ରସ୍ତୁତ ହୋଇଥିଲା । ଏହିରୂପେ ରୁଷ ବିପ୍ଳବ ଜର୍ମାନୀକୁ ଭିତରିଆଡ଼ୁ ଦୁର୍ବଳ କରିପକାଇଲା ।

କିନ୍ତୁ ଜର୍ମାନ ସାମରିକ କର୍ତ୍ତୃପକ୍ଷ ଏହିସବୁ କୁଲକ୍ଷଣ ପ୍ରତି ଅନ୍ଧ ଥିଲେ ଏବଂ ୧୯୧୮ ମାର୍ଚ୍ଚ ମାସରେ ସେମାନେ ସୋଭିଏଟ ରୁଷ ଉପରେ ଏକ ଅପମାନଜନକ ଓ ଦମନକାରୀ ସନ୍ଧି ଲଦିଲେ । ସୋଭିଏଟମାନେ ଏହା ଗ୍ରହଣ କଲେ; କାରଣ ତାଙ୍କର ଅନ୍ୟ ଗତି ନଥିଲା ଏବଂ ଯେକୌଣସି ମୂଲ୍ୟଦେଇ ସେମାନେ ଶାନ୍ତି କାମନା କରୁଥିଲେ । ୧୯୧୮ ମାର୍ଚ୍ଚ ମାସରେ ମଧ୍ୟ ଜର୍ମାନ ସୈନ୍ୟ ପଶ୍ଚିମ ରଣକ୍ଷେତ୍ରରେ ଅନ୍ତିମ ବିରାଟ ଉଦ୍ୟମ କଲା । ଜର୍ମାନମାନେ ଆଙ୍ଗ୍ଲୋ-ଫରାସୀ ଦୁର୍ଗ ଭେଦ କଲେ—ଏଥିରେ ଅନେକ ସେନା-ବାହିନୀକୁ ଧ୍ୱଂସ କରିଦେଲେ ଏବଂ ପ୍ୟାରିସର ମେଣ୍ଟେ ନିକଟରେ ପହଞ୍ଚିଲେ—ସାଢ଼େ ୩ବର୍ଷ ପୂର୍ବରୁ ଏହିଠାରୁ ହିଁ ସେମାନେ ତଡ଼ା ଖାଇଥିଲେ । ଏହା ଏକ ମହାନ୍ ପ୍ରଚେଷ୍ଟା; କିନ୍ତୁ ଶେଷ ପ୍ରଚେଷ୍ଟା ଓ ଏଥିରେ ଜର୍ମାନୀର ଶକ୍ତି କ୍ଷୟ ଘଟିଲା । ଏଥି ଭିତରେ ଆଟଲାଣ୍ଟିକ ପାରହୋଇ ସେନାବାହିନୀ ଆମେରିକାରୁ ଆସିଲେ ଏବଂ ତିକ୍ତ ଅଭିଜ୍ଞତା ଫଳରେ ଶିକ୍ଷା ଲାଭ କରି ପଶ୍ଚିମ ରଣକ୍ଷେତ୍ରରେ ଥିବା ବ୍ରିଟିଶ, ଆମେରିକା ଓ ଫରାସୀ ସମସ୍ତ ମିତ୍ରପକ୍ଷ ସେନା ଏକ ପ୍ରଧାନ ସେନାପତି ଅଧୀନରେ ରହିଲେ; ଯେପରିକି ସେମାନଙ୍କ ଭିତରେ ପୂର୍ଣ୍ଣ ସହଯୋଗ ଓ ଏକତା ହୋଇପାରିବ । ପଶ୍ଚିମରେ ସମସ୍ତ ସେନାର ସେନାପତି ହେଲେ ଫରାସୀ ସେନାପତି ଫୋଚ୍ । ୧୯୧୮ ମଧ୍ୟଭାଗକୁ ଜୁଆର ନିର୍ଦ୍ଦିଷ୍ଟ ରୂପେ ଫେରିଲା; ମିତ୍ର-ପକ୍ଷ ହିଁ ଆକ୍ରମଣ ଆରମ୍ଭ କଲେ ଏବଂ ସେମାନେ ଜର୍ମାନମାନଙ୍କୁ ପଛକୁ ଠେଲି ଦେଇ

ଅଗ୍ରସର ହେବାକୁ ଲାଗିଲେ । ଅକ୍ଟୋବର ବେଳକୁ ଅନ୍ତିମକାଳ ନିକଟ ହୋଇ ଯାଇଥିଲା ଏବଂ ସନ୍ଧି କଥା ଉଠିଥିଲା ।

ନଭେମ୍ବର ୪ ତାରିଖରେ କିଏଲଠାରେ ଗୋଟିଏ ଜର୍ମାନ ନୌସେନା ବିଦ୍ରୋହ ହେଲା ଏବଂ ପାଞ୍ଚ ଦିନ ପରେ ବର୍ଲିନରେ ଜର୍ମାନ ପ୍ରଜାତନ୍ତ୍ର ଘୋଷିତ ହେଲା । ସେହିଦିନ ନଭେମ୍ବର ୯ ତାରିଖରେ କାଇଜର ଦ୍ୱିତୀୟ ଉଇଲହେଲ୍ମ୍ ଜର୍ମାନୀରୁ ଅତି ଅଶୋଭନୀୟ ଓ ଅପମାନଜନକ ଭାବରେ ହଲାଣ୍ଡ ପଳାଇଗଲେ ଏବଂ ତାଙ୍କ ସହିତ ହୋହେଞ୍ଜୋଲେର୍ଣ୍ଣ ବଂଶ ବିଶେଷ ପାଇଲା । ଚୀନର ମାଞ୍ଚୁ ବଂଶଧର ଯେମାନେ ବାଘପରି ଗର୍ଜନ କରି ଆସିଲେ, ସାପ ଲାଙ୍ଗୁଡ଼ ପରି ଉଭେଇଗଲେ ।

୧୯୧୮ ନଭେମ୍ବର ୧୧ ତାରିଖରେ ସନ୍ଧିପତ୍ର ସ୍ୱାକ୍ଷରିତ ହେଲା ଏବଂ ଯୁଦ୍ଧ ଶେଷ ହେଲା । ଏହି ଯୁଦ୍ଧ ପ୍ରେସିଡ଼େଣ୍ଟ ଉଇଲସନ୍ ଦେଇଥିବା '୧୪ ଗୋଟି ସର୍ତ୍ତ' ଅନୁସାରେ ହୋଇଥିଲା । ସେଗୁଡ଼ିକ ଯୁଦ୍ଧରତ ଶ୍ରେଷ୍ଠ ଦେଶମାନଙ୍କ ପାଇଁ ଆତ୍ମନିୟନ୍ତ୍ରଣ, ନିରସ୍ତ୍ରୀକରଣ, ଗୁପ୍ତ କୂଟନୀତିର ନିଷେଧ, ପ୍ରଧାନ ଶକ୍ତିମାନଙ୍କର ରୁଷକୁ ସାହାଯ୍ୟ ଏବଂ ଗୋଟିଏ ଜାତିସଂଘ ପ୍ରତିଷ୍ଠା (League of Nations) ଏହିସବୁ ନୀତିରେ-ବନ୍ଧୁ ପରିମାଣରେ ଗଢ଼ା ହୋଇଥିଲା । ବିଜେତା ଦେଶମାନେ ସୁବିଧାଜନକ ଭାବରେ ଏହି ୧୪ଟି ସର୍ତ୍ତରୁ କିପରି ଅନେକକୁ ଭୁଲିଗଲେ ଆମେ ପରେ ଦେଖିବା ।

ଯୁଦ୍ଧ ଶେଷ ହେଲା । କିନ୍ତୁ ଇଂଲଣ୍ଡର ଜାହାଜଦ୍ୱାରା ଜର୍ମାନ ଘେରାଉ ସେହିପରି ରହିଲା ଏବଂ ଅନ୍ନକଷ୍ଟ ଜର୍ମାନ ନାରୀ ଓ ବାଳକବାଳିକାମାନଙ୍କ ପାଖକୁ ଖାଦ୍ୟ ଯିବାକୁ ଦିଆଗଲା ନାହିଁ । ଏହି ଅଦ୍ଭୁତ ଘୃଣା ପ୍ରଦର୍ଶନ ଏବଂ ଏପରିକି ଶ୍ରେଷ୍ଠ ଶ୍ରେଷ୍ଠ ପିଲାଙ୍କୁ ଶାସ୍ତି ଦେବାର ଅଭିଳାଷକୁ ଖ୍ୟାତନାମା ବ୍ରିଟିଶ ରାଜନୀତିଜ୍ଞ, ସାଧାରଣ ସେବା, ବଡ଼ ବଡ଼ ସମ୍ବାଦ-ପତ୍ର, ଏପରିକି ତଥାକଥିତ ଉଦାର ମତବାଦୀ ସମ୍ବାଦପତ୍ରମାନେ ସ୍ୱେଚ୍ଛା ସମର୍ଥନ କଲେ । ବାସ୍ତବିକ ସେ ସମୟରେ ଇଂଲଣ୍ଡରେ ଜଣେ ମାନ୍ୟ ନେତା ଲୟେଡ ଜର୍ଜ ପ୍ରଧାନମନ୍ତ୍ରୀ ଥିଲେ । ଚାରିବର୍ଷ ତିନମାସର ଏହି ଯୁଦ୍ଧ ବିବରଣୀ ଉନ୍ମତ୍ତ ପାଶବିକତା ଓ ନୃଶଂସତାପୂର୍ଣ୍ଣ । ସନ୍ଧି ହେଲା ପରେ ଜର୍ମାନୀକୁ ଏପରି ଘେରାଉ କରି ରଖିବା ଅପେକ୍ଷା ସମ୍ଭବତଃ କୌଣସି ଉତ୍ତେଜନା-ହୀନ ପାଶବିକ କାର୍ଯ୍ୟ ଆଉ ନାହିଁ । ଯୁଦ୍ଧ ସରିଲା, ତଥାପି ସମଗ୍ର ଜାତିଟି ଅନାହାର ପ୍ରପୀଡ଼ିତ ହୋଇ ରହିଲା ଏବଂ ଏହାର୍ ଶ୍ରେଷ୍ଠ ଶ୍ରେଷ୍ଠ ପିଲାମାନେ ଖାଦ୍ୟ ଅଭାବରୁ ଭୀଷଣ କଷ୍ଟ ଭୋଗିଲେ ଏବଂ ଖାଦ୍ୟ ଜାଣିଶୁଣି ଓ ବଳପୂର୍ବକ ଦୂରରେ ରଖାଗଲା । ଯୁଦ୍ଧ କିପରି ଆମ ମନକୁ ବିକୃତ କରି ପକାଏ ଏବଂ ଉନ୍ମତ୍ତ ଘୃଣାରେ ପୂର୍ଣ୍ଣ କରିଦିଏ ! ଜର୍ମାନୀର୍ ବୃଦ୍ଧ ଚାନ୍‌ସେଲର ବେଥ୍‌ମାନ୍ ହଲୱେଗ୍ କହିଥିଲେ "ଇଂଲଣ୍ଡ ଆମ ବିରୁଦ୍ଧରେ ଯେଉଁ ଘେରାଉ କଲା ତାର ଚିହ୍ନ ଆମର ସନ୍ତାନ ଓ ସନ୍ତାନମାନଙ୍କର ସନ୍ତାନଙ୍କଠି ରହିବ ଏହା ଏକ ବିଶୁଦ୍ଧ ନିଷ୍ଠୁରତା, ପୈଶାଚିକତାଠାରୁ ଆଦୌ କମ ନୁହେଁ ।"

ବଡ଼ ବଡ଼ ରାଜନୀତିଜ୍ଞ ଓ ଅନ୍ୟ ଉଚ୍ଚପଦସ୍ଥ ଲୋକେ ଏହି ଯେସ୍ରଉକୁ ସମର୍ଥନ କଲେ; ମାତ୍ର ଯୁଦ୍ଧ କରିଥିବା ଗରିବ ବ୍ରିଟିଶ ଟମି (Tommy) ବା ସୈନ୍ୟ ଏହି ଦୃଶ୍ୟ ସହ୍ୟ କରିପାରିଲେ ନାହିଁ । ସନ୍ଧି ପରେ ରାଇନଲାଣ୍ଡରେ କଲୋନ୍‌ଠାରେ ଏକ ବ୍ରିଟିଶ ସେନାବାହିନୀ ରଖାଯାଇଥିଲା ଏବଂ ଏହି ସେନାର ଇଂରେଜ ସେନାପତି ପ୍ରଧାନମନ୍ତ୍ରୀ ଲଏଡ଼ ଜର୍ଜଙ୍କ ପାଖକୁ ଏକ ତାର ପଠାଇ "ଜର୍ମାନ ସ୍ତ୍ରୀ ବାଳକଙ୍କ କଷ୍ଟ ଦେଖି ବ୍ରିଟିଶ ସେନାଙ୍କ ଉପରେ କିପରି ଖରାପ ପ୍ରଭାବ ପଡ଼ୁଥିଲା" ତାହା ଦର୍ଶାଇ ଦେଇଥିଲେ । ସନ୍ଧି ହେବାର ୧୦ମାସରୁ ଅଧିକ କାଳ ପର୍ଯ୍ୟନ୍ତ ଇଂଲଣ୍ଡ ଏହି ଜର୍ମାନୀ ଅବରୋଧ ଜାରି ରଖିଲା ।

ଅନେକ ବର୍ଷ ଯୁଦ୍ଧ ଫଳରେ ଯୁଦ୍ଧରତ ଦେଶସବୁକୁ ଯୁଦ୍ଧ ପାଶବିକ କରି ପକାଇ ଥିଲା । ଏହା ବହୁସଂଖ୍ୟକ ଲୋକଙ୍କର ସଦ୍‌ଭାବନା ନଷ୍ଟ କରି ଦେଲା ଏବଂ ଅନେକ ସାଧାରଣ ଲୋକେ ଅଧା ଅପରାଧୀ ପାଲଟିଲେ । ହିଂସା ଓ ଘଟଣାକୁ ଜାଣିଶୁଣି ବିକୃତ କରିବାରେ ଲୋକେ ଅଭ୍ୟସ୍ତ ହୋଇଗଲେ ଏବଂ ଘୃଣା ପ୍ରତିଶୋଧ ଭାବ ତାଙ୍କଠାରେ ପୂର୍ଣ୍ଣ ହୋଇଥିଲା ।

ଯୁଦ୍ଧର ଜମାଖରଚ ବିବରଣୀ କ'ଣ ? କେହି ଏପର୍ଯ୍ୟନ୍ତ ଜାଣନ୍ତି ନାହିଁ; ଏବେ ସୁଦ୍ଧା ତାହା ତଉଲ ଚାଲିଛି ! ଆଧୁନିକ ଯୁଦ୍ଧ ବୋଇଲେ କ'ଣ ତାର ଏକ ଧାରଣା ତୋ ମନରେ ଦେବା ପାଇଁ ମୁଁ ଏଠି କିଛି ହିସାବ ଦେବି ।

ଏହି ଯୁଦ୍ଧରେ ମୋଟ କ୍ଷତି ନିମ୍ନ ପ୍ରକାରେ ହୋଇଥିଲା ବୋଲି ହିସାବ କରାଯାଇଛି :—

| | | |
|---|---|---|
| ଜଣାଶୁଣା ମୃତ ସୈନିକ | — | ୧୦,୦୦୦,୦୦୦ |
| ମୃତ ବୋଲି ଧରା ହୋଇଛି | — | ୩,୦୦୦,୦୦୦ |
| ମୃତ ବେସାମରିକ ଲୋକ | — | ୧୩,୦୦୦,୦୦୦ |
| ଆହତ | — | ୨୦,୦୦୦,୦୦୦ |
| ବନ୍ଦୀ | — | ୩,୦୦୦,୦୦୦ |
| ଯୁଦ୍ଧ ହେତୁ ଅନାଥ | — | ୯,୦୦୦,୦୦୦ |
| ଯୁଦ୍ଧ ହେତୁ ବିଧବା | — | ୫,୦୦୦,୦୦୦ |
| ଆଶ୍ରୟ ପ୍ରାର୍ଥୀ | — | ୧୦,୦୦୦,୦୦୦ |

ଏହିସବୁ ବିରାଟ ସଂଖ୍ୟା ପ୍ରତି ଦୃଷ୍ଟିପାତ କର ଏବଂ ଏଥିରେ ମଣିଷ କେତେ କଷ୍ଟ ପାଉଥିଲେ ତାହା ଅନୁମାନ କର – ସବୁ ଯୋଗ କରିଦେଲେ କେବଳ ମୃତ ଓ ଆହତଙ୍କ ସଂଖ୍ୟା ହେଉଛି ୪୬,୦୦୦,୦୦୦ ।

କେତେ ଟଙ୍କା କେଉଁଠି ଖରଚ ହୋଇଥିଲା ? ଏବେ ସୁଦ୍ଧା ଏହାର ହିସାବ ଚାଲିଛି । ଗୋଟିଏ ଆମେରିକା ହିସାବରୁ ଜଣାପଡ଼େ ଯେ ମିତ୍ରପକ୍ଷରେ ମୋଟ ବ୍ୟୟ ହୋଇଛି ୪୦,୯୯୯,୬୦୦,୦୦୦ ପାଉଣ୍ଡ—ପ୍ରାୟ ୪୧ ଶହ କୋଟି ପାଉଣ୍ଡ ଏବଂ ଜର୍ମାନ ପକ୍ଷରେ ୧୫,୧୨୨,୩୦୦,୦୦୦ ପାଉଣ୍ଡ—ଅର୍ଥାତ୍ ୧୫ ଶହ କୋଟି ପାଉଣ୍ଡରୁ ବେଶୀ ଖରଚ ହୋଇଛି । ଏହାକୁ ମୋଟ କଲେ ହେଉଛି ୫୬ ଶହ କୋଟି ପାଉଣ୍ଡରୁ ଅଧିକ । ଆମେ ଏ ସଂଖ୍ୟା ଆଦୌ ବୁଝିପାରିବା ନାହିଁ - କାରଣ ଆମର ଦୈନନ୍ଦିନ ଜୀବନଠାରୁ ଏହା ଏପରି ପୃଥକ । ଏସବୁ ସୂର୍ଯ୍ୟଠାରୁ ବା ତାରକାଠାରୁ ଦୂରତା ଆଦି ଜ୍ୟୋତିଷ ଶାସ୍ତ୍ରରେ ଦେଖାଗଲା ପରି ଆମକୁ ମନେ ହେଉଛି । ଯୁଦ୍ଧ ଅର୍ଥନୀତିର ପରଫଳ ବିଷୟ ନେଇ ବିଜେତା ଓ ବିଜିତ ଦେଶ ଉଭୟେ ଏପରି ଜଡ଼ିତ ହେବା କିଛି ବିଚିତ୍ର ନୁହେଁ ।

"ଯୁଦ୍ଧ ଶେଷ ପାଇଁ ଯୁଦ୍ଧ", "ଗଣତନ୍ତ୍ର ଲାଗି ପୃଥିବୀକୁ ନିରାପଦ କରିବା ନିମନ୍ତେ", "ଶ୍ରେଷ୍ଠ ରାଜ୍ୟମାନଙ୍କୁ ସ୍ୱାଧୀନତା ଦେବା ନିମନ୍ତେ" ଏବଂ "ଆତ୍ମନିୟନ୍ତ୍ରଣ ପାଇଁ" ଓ ସାଧାରଣତଃ "ସ୍ୱାଧୀନତା ଓ ଉଚ୍ଚ ଆଦର୍ଶ ଲାଗି ହେଉଥିବା ଯୁଦ୍ଧ" ଶେଷ ହେଲା; ଏବଂ ଇଂଲଣ୍ଡ, ଫ୍ରାନ୍ସ, ଆମେରିକା, ଇଟାଲୀ ଓ ସେମାନଙ୍କ ଶ୍ରେଷ୍ଠ ଅନୁଚର ସବୁ (ରୁଷ ଏହା ବାହାରେ ଥିଲା) ଜିତିଲେ । ଏହି ଉଚ୍ଚ ଓ ଉଦାର ଭାବ କିପରି କାର୍ଯ୍ୟରେ ଲାଗିଲା ଆମେ ପରେ ଦେଖିବା । ଏଥି ଭିତରେ ଆଉ ଏକ ଓ ପୁରାତନ ବିଜୟ ସମ୍ବନ୍ଧରେ ଇଂରେଜ କବି ସାଉଦେଙ୍କର କବିତା ଆବୃତ୍ତି କରିବା—

ଯେ ସାମନ୍ତ ଜୟ କଲା ଏ ଭୀଷଣ ସମର ପ୍ରାଙ୍ଗଣେ
ସବୁଠାରୁ ପ୍ରଶଂସା ପାଇଲା ।
ଯୁବକସୁଲଭ ଭାବେ ପିଟର୍କିନ ପଚାରିଲା "ଶେଷେ
ସେ ଜୟରୁ କି ଫଳ ମିଳିଲା ?"
କହିଲା ସେ, "ନ କହି ମୁଁ ପାରିବି ସେ କଥା
ତଥାପି ତା ଥିଲା ଏକ ଗଉରବ ବିଜୟ ବାରତା ।"
(ଅନୁବାଦକ—ଚନ୍ଦ୍ରରଞ୍ଜନ ଦାସ)

## ୧୫୦ : ରୁଷରେ ଜାର ଶାସନର ତିରୋଧାନ

ଏପ୍ରିଲ ୭, ୧୯୩୩

ଯୁଦ୍ଧ ଗତିର ବିବରଣୀରେ ମୁଁ ରୁଷ ବିପ୍ଳବ ଓ ଯୁଦ୍ଧ ଉପରେ ତାର ପ୍ରଭାବ ବିଷୟ ଉଲ୍ଲେଖ କରିଥିଲି । ଯୁଦ୍ଧ ଉପରେ ଏହାର ପ୍ରଭାବ ଛଡ଼ା ବିପ୍ଳବ ହେଉଛି ଏକ ଅଦ୍ଭୁତ ଘଟଣା,

ପୃଥିବୀ ଇତିହାସରେ ଅଲୌକିକ ଜିନିଷ । ଯଦିଓ ଏପ୍ରକାର ବିପ୍ଳବ ଏହି ପ୍ରଥମ, ତଥାପି ଏହା କିଛି ଦୀର୍ଘକାଳ ଧରି ଏକମାତ୍ର ହୋଇ ରହି ନ ଥିବ; କାରଣ ଅନ୍ୟ ଦେଶ ପ୍ରତି ଏହା ଏକ ଆହ୍ୱାନ ହୋଇଛି ଏବଂ ସମଗ୍ର ଦୁନିଆରେ ଅନେକ ବିପ୍ଳବୀମାନଙ୍କ ପକ୍ଷରେ ଏକ ଦୃଷ୍ଟାନ୍ତ ସ୍ୱରୂପ ରହିଛି । ଅତଏବ ଏହାର ଗଭୀର ଅଧ୍ୟୟନ ଆବଶ୍ୟକ । ନିଃସନ୍ଦେହ, ମହାଯୁଦ୍ଧର ଏହାହିଁ ସବୁଠାରୁ ବଡ଼ ଫଳ, ଅଥଚ ଯୁଦ୍ଧରେ ବ୍ୟାପୃତ ହୋଇଥିବା କୌଣସି ସରକାର ଓ ରାଜନୀତିଜ୍ଞମାନେ ଆଦୌ ଏହା କଳ୍ପନା କରି ନ ଥିଲେ ଏବଂ କାମନା କରିବା ତ ଦୂରର କଥା । ଅଥବା ଏହା ବୋଧହୁଏ କହିଲେ ଠିକ୍ ହେବ ଯେ ରୁଷରେ ସେତେବେଳେ ପ୍ରଚଳିତ ଐତିହାସିକ ଓ ଆର୍ଥନୀତିକ ଅବସ୍ଥାରୁ ହିଁ ବିପ୍ଳବ ଜାତ ହେଲା—ଯୁଦ୍ଧ ହେତୁ ହୋଇଥିବା କଷ୍ଟ ଓ ବିଶାଳ କ୍ଷତି ଯୋଗୁ ଏହା ଅତିଶୀଘ୍ର ସଙ୍କଟଜନକ ଅବସ୍ଥା ଧରିଗଲା ଏବଂ ଲେନିନଙ୍କ ପରି ବିପ୍ଳବ ପ୍ରବୀଣ ଓ ବିଚକ୍ଷଣ ବ୍ୟକ୍ତି ଏହାର ସୁବିଧା ଉଠାଇଲେ ।

ପ୍ରକୃତରେ ୧୯୧୭ରେ ରୁଷରେ ଦୁଇଟି ବିପ୍ଳବ ହୋଇଥିଲା—ଗୋଟିଏ ମାର୍ଚ୍ଚ ମାସରେ ଏବଂ ଅନ୍ୟଟି ନଭେମ୍ବର ମାସରେ । ଅଥବା ଏହି କାଳକୁ ଗୋଟିଏ ଅବିଚ୍ଛିନ୍ନ ବିପ୍ଳବ ଧାରାର ଦୁଇଟି କୂଅାର ଚିହ୍ନ ବୋଲି ଧରିଯାଇପାରେ ।

ମୁଁ ଗତ ଚିଠିରେ ରୁଷର ୧୯୦୫ ବିପ୍ଳବ ସମ୍ବନ୍ଧରେ ତୁମକୁ କହିଛି—ଏହା ମଧ୍ୟ ଏକ ଯୁଦ୍ଧ ଓ ପରାଜୟ ବେଳେ ହୋଇଥିଲା । ଏହା ପାଶବିକ ଭାବରେ ଦମନ କରାଗଲା ଏବଂ ଜାର ସରକାର ନିଜର ଅବାଧ ଏକଛତ୍ର ଶାସନ ଚଳାଇଲା—ସମସ୍ତ ଉଦାର ମତବାଦକୁ ଦମନ କରାଗଲା ଓ ଗୋଇନ୍ଦାମାନଙ୍କୁ ଲୋକଙ୍କ ପିଛା ଲଗାଗଲା । ମାର୍କସବାଦୀଙ୍କୁ, ବିଶେଷ ଭାବରେ ବଲ୍‌ସେଭିକମାନଙ୍କୁ ଦମନ କରାଗଲା ଏବଂ ସେହି ଦଳର ସମସ୍ତ ପ୍ରଧାନ ପୁରୁଷ ସ୍ତ୍ରୀ ହୁଏତ ସାଇବେରିଆର ଦଣ୍ଡ ଉପନିବେଶରେ ରହିଲେ । ନଚେତ୍ ବିଦେଶରେ ନିର୍ବାସିତ ହୋଇ ରହିଲେ । କିନ୍ତୁ ଦେଶାନ୍ତରରେ ଥିବା ଏହି ମୁଷ୍ଟିମେୟ ଲୋକସବୁ ଲେନିନଙ୍କ ନେତୃତ୍ୱରେ ପ୍ରଚାର ଓ ଅଧ୍ୟୟନ ଚଳାଇଲେ । ସେମାନେ ସମସ୍ତେ ଥିଲେ ବିଖ୍ୟାତ ମାର୍କସ୍‌ବାଦୀ; କିନ୍ତୁ ମାର୍କସ୍‌ଙ୍କର ନିର୍ଦ୍ଦେଶାବଳୀ ଇଂଲଣ୍ଡ ବା ଜର୍ମାନୀ ପରି ଏକ ଅତ୍ୟନ୍ତ ଶିଳ୍ପୋନ୍ନତ ଦେଶ ଅବସ୍ଥା ବିବେଚନା କରି ହୋଇଥିଲା । ରୁଷ ଏବେ ସୁଦ୍ଧା ମଧ୍ୟକାଳୀନ ଓ କୃଷିପ୍ରଧାନ ଦେଶ ଥିଲା ଏବଂ ବଡ଼ ବଡ଼ ସହରରେ ଏଠି ସେଠି ଯାହା କିଛି କଳକାରଖାନା ଥିଲା । ରୁଷର ଯାହା ଅବସ୍ଥା ଥିଲା ତାହା ସହିତ ଖାପ ଖୁଆଇ ମାର୍କସ୍‌ବାଦର ମୌଳିକନୀତିକୁ ଗ୍ରହଣ କରିବାରେ ଲେନିନ ଲାଗିପଡ଼ିଲେ । ସେ ଏହି ସମ୍ବନ୍ଧରେ ବହୁତ ଲେଖିଲେ ଏବଂ ନିର୍ବାସିତ ରୁଷବାସୀଙ୍କ ଭିତରେ ବହୁତ ତର୍କବିତର୍କ ଲାଗିଲା ଏବଂ ଏହିରୂପେ ବିପ୍ଳବର ସିଦ୍ଧାନ୍ତ ବିଷୟରେ ସେମାନେ ନିଜକୁ ପ୍ରସ୍ତୁତ କରିଥିଲେ । ଲେନିନ୍ ବିଶ୍ୱାସ କରୁଥିଲେ ଯେ କୌଣସି କାର୍ଯ୍ୟ ବିଶେଷଜ୍ଞ ଓ ଶିକ୍ଷିତ ଲୋକଙ୍କ ଦ୍ୱାରା ହେବ, କେବଳ ଉତ୍ସାହୀଲୋକଙ୍କ ଦ୍ୱାରା ନୁହେଁ । ଯଦି ଏକ ବିପ୍ଳବ ଚେଷ୍ଟା କରିବାର କଥା, ତେବେ ତାଙ୍କ ମତରେ ଲୋକଙ୍କୁ ବି ଏଥିପାଇଁ ସମ୍ପୂର୍ଣ୍ଣରୂପେ ଶିକ୍ଷିତ

କରିବାକୁ ପଡ଼ିବ – ତାହାହେଲେ ଯେତେବେଳେ କାର୍ଯ୍ୟର ବେଳ ପହଞ୍ଚିବ ସେତେବେଳେ କଣ କରିବାକୁ ହେବ ତାଙ୍କ ମନରେ ପରିଷ୍କାର ଧାରଣା ହୋଇଯାଇଥିବ । ଏହିରୂପେ ଲେନିନ ଓ ତାଙ୍କ ସହକର୍ମୀମାନେ ୧୯୦୫ ପରେ ଅତି ଦମନ କାଳରେ ଭବିଷ୍ୟତ ସଂଗ୍ରାମ ପାଇଁ ନିଜକୁ ପ୍ରସ୍ତୁତ କରାଇବାରେ ଉପଯୋଗ କଲେ ।

୧୯୧୪ରେ ରୁଷ ସହରର ଶ୍ରମିକଶ୍ରେଣୀ ଜାଗି ଉଠିଥିଲେ ଏବଂ ପୁନର୍ବାର ବିପ୍ଳବୀ ହୋଇଥିଲେ । ଅସଂଖ୍ୟ ରାଜନୈତିକ ଧର୍ମଘଟ ହୋଇଥିଲା । ତା ପରେ ଆସିଲା ଯୁଦ୍ଧ ଏବଂ ଏହା ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କଲା ଏବଂ ଅତ୍ୟନ୍ତ ଉନ୍ନତ ଶ୍ରମିକମାନଙ୍କୁ ସୈନିକରୂପେ ଯୁଦ୍ଧକ୍ଷେତ୍ରକୁ ପଠାଗଲା । ଲେନିନ ଓ ତାଙ୍କ ଦଳ (ଅଧିକାଂଶ ନେତା ରୁଷ ବାହାରେ ନିର୍ବାସିତ ଥିଲେ) ମୂଳରୁ ଯୁଦ୍ଧର ବିରୋଧୀ ଥିଲେ । ଅନ୍ୟ ଦେଶମାନଙ୍କରେ ଅଧିକାଂଶ ସାମ୍ୟବାଦୀଙ୍କ ପରି ସେମାନେ ଏ ଯୁଦ୍ଧରେ ଭାସିଗଲେ ନାହିଁ । ସେମାନେ କହିଲେ ଏହା ଏକ ପୁଞ୍ଜିବାଦୀ ଯୁଦ୍ଧ ଏହା ସହିତ ଶ୍ରମିକଶ୍ରେଣୀର କିଛି ସଂପର୍କ ନାହିଁ; କେବଳ ନିଜର ସ୍ୱାଧୀନତା ପାଇବାଲାଗି ଫାଇଦା ଉଠାଇବାଟା ହିଁ ତାଙ୍କର ଏହା ସହିତ ସମ୍ପର୍କ ।

ସମରାଙ୍ଗଣରେ ରୁଷ ସେନା ଭୀଷଣ କ୍ଷତି ସହିଲେ, ସମ୍ଭବତଃ ଏଥିରେ ବ୍ୟାପୃତ ଥିବା ଅନ୍ୟ ସବୁ ସେନାଙ୍କ ଅପେକ୍ଷା ଅଧିକ କ୍ଷତି ସହିଲେ । ରୁଷର ସେନାପତିମାନଙ୍କର, ଏପରିକି ସାମରିକ ଲୋକଙ୍କଦ୍ୱାରା (ଯାହାଙ୍କଠାରୁ ସାଧାରଣତଃ ବେଶି ବୁଦ୍ଧି ଥିବାପରି ଧରାଯାଏ ନାହିଁ) ସେମାନେ ସମ୍ପୂର୍ଣ୍ଣ ଅସମର୍ଥ ବିବେଚିତ ହେଲେ । ଖରାପ ଅସ୍ତ୍ରସଜ୍ଜିତ ହୋଇ ଏବଂ ବେଳେ ବେଳେ କୌଣସି ଗୋଳାବାରୁଦ ଓ ସମର୍ଥନ ବିନା ରୁଷ ସୈନିକଙ୍କୁ ଶତ୍ରୁ ଆଗକୁ ଠେଲି ଦିଆଯାଏ ଏବଂ ଲକ୍ଷ ଲକ୍ଷ ସଂଖ୍ୟାରେ ସେମାନେ ମୃତ୍ୟୁବରଣ କରନ୍ତି । ଏଥି ଭିତରେ ପେଟ୍ରୋଗ୍ରାଡ଼—ସେଣ୍ଟପିଟର୍ସବର୍ଗର ଏହି ନାମକରଣ ହୋଇଥିଲା ଓ ଅନ୍ୟ ବଡ଼ ବଡ଼ ସହରମାନଙ୍କରେ ପ୍ରଚୁର ମୁନାଫା ହେଉଥିଲା ଏବଂ ଦଲାଲମାନେ ପ୍ରଚୁର ଲାଭ କଲେ । ଏହି "ଦେଶପ୍ରେମୀ" ମହାଜନ ଓ ମୁନାଫାଖୋରମାନେ ଅବଶ୍ୟ ଯୁଦ୍ଧ ଶେଷ ପର୍ଯ୍ୟନ୍ତ ଲଢ଼ା ଦେବା ଉଚିତ ବୋଲି ଦାବୀ କରୁଥିଲେ । ଏଥିରେ ସନ୍ଦେହ ନାହିଁ ଯୁଦ୍ଧ ଚାଲିଥିଲେ ସେମାନଙ୍କର ସୁବିଧା ହୋଇଥାନ୍ତା । କିନ୍ତୁ ସୈନିକ, ଶ୍ରମିକ ଓ କୃଷକ [ଯେଉଁମାନେ ସୈନିକ ଯୋଗାଉଥିଲେ] ସେମାନଙ୍କର ଶକ୍ତିକ୍ଷୟ ହେଲା—ସେମାନେ କ୍ଷୁଧିତ ଓ ଅସନ୍ତୁଷ୍ଟ ହୋଇଗଲେ ।

ଜାର୍ ନିକୋଲାସ ଜଣେ ଅତି ନିର୍ବୋଧ ଲୋକ ଥିଲେ—ସେ ତାଙ୍କର ସ୍ତ୍ରୀ ଜାରିନାଙ୍କ ପ୍ରଭାବରେ ବହୁତ ପରିମାଣରେ ଥିଲେ । ଜାରିନା ମଧ୍ୟ ସମାନ ରୂପେ ନିର୍ବୋଧ, କିନ୍ତୁ ଶକ୍ତିଶାଳୀ ଥିଲେ । ଉଭୟେ ଶଠ ଓ ନିର୍ବୋଧ ଲୋକ ପରିବେଷ୍ଟିତ ହୋଇ ରହିଥିଲେ ଏବଂ ସେମାନଙ୍କୁ ସମାଲୋଚନା କରିବା ନିମନ୍ତେ କେହି ସାହସ କରୁ ନ ଥିଲେ । ଘଟଣା ଏତେଦୂର ଗଲା ଯେ ରେଗସ୍ପୁଟିନ ନାମରେ ପରିଚିତ ଜଣେ ଘୃଣ୍ୟ ବଦମାସ ଜାରିନାଙ୍କର ମୁଖ୍ୟ

ପ୍ରିୟ ଲୋକ ହେଲା ଏବଂ ତାଙ୍କ ଜରିଆରେ ରାଜାଙ୍କର ବି ପ୍ରିୟ ହେଲା । ରାସପୁଟିନ [ରାସପୁଟିନ ଶବ୍ଦର ଅର୍ଥ ହେଉଛି "ମଇଳା କୁକୁର"] ଜଣେ ଗରିବ କୃଷକ ଥିଲା—ଘୋଡ଼ା ଚୋରି କରିବା ଯୋଗୁ ସେ ଅସୁବିଧାରେ ପଡ଼ିଥିଲା । ସେ ଏକ ସାଧୁତାର ଆବରଣ ପିନ୍ଧିବା ସ୍ଥିର କଲା ଏବଂ ସାଧୁ ସାଜି ପଇସା ରୋଜଗାର କରିବା ପନ୍ଥା ଧରିଲା । ଭାରତ ପରି ରୁଷରେ ଧନ କମାଇବାର ଏହା ଏକ ସହଜ ପନ୍ଥା । ସେ ନିଜର ବାଳ ଲମ୍ବା ବଢ଼ାଇଲା ଏବଂ ତାର ବାଳ ବଢ଼ିବା ସଙ୍ଗେ ସଙ୍ଗେ ଯଶ ବି ବୃଦ୍ଧି ପାଇଲା ଓ ଶେଷକୁ ଯାଇ ରାଜପ୍ରାସାଦରେ ପହଞ୍ଚିଲା । ଜାର ଓ ଜାରିନାଙ୍କର ଏକମାତ୍ର ପୁତ୍ର ଜାରେଭିଚ୍ ଏକପ୍ରକାର ଅକର୍ମଣ୍ୟ ଥିଲା ଏବଂ କୌଣସି ପ୍ରକାରେ ରାସପୁଟିନ୍ ଜାରିନାଠାରେ ବିଶ୍ୱାସ ଜନ୍ମାଇଦେଲା ଯେ ସେ ତାଙ୍କ ପୁଅକୁ ଭଲ କରିଦେବ । ତାର ଭାଗ୍ୟ ଖୋଲିଲା ଏବଂ ଅତିଶୀଘ୍ର ସେ ଜାର ଓ ଜାରିନାଙ୍କ ଉପରେ ପ୍ରାଧାନ୍ୟ ବିସ୍ତାର କଲା ଏବଂ ତାହାର ଇଙ୍ଗିତ ଅନୁସାରେ ଉଚ୍ଚପଦରେ ନିଯୁକ୍ତିମାନ କରାଗଲା । ସେ ଏକ କଳୁଷିତ ଜୀବନ ଯାପନ କଲା ଏବଂ ଖୁବ୍ ଉତ୍କୋଚ ଗ୍ରହଣ କଲା । କିନ୍ତୁ କେତେକ ବର୍ଷ ଧରି ସେ ଏପରି କର୍ତ୍ତୃତ୍ୱ ବିସ୍ତାର କରି ରହିଲା ।

ଏଥିରେ ପ୍ରତ୍ୟେକ ଲୋକ ବିରକ୍ତ ହୋଇଗଲେ । ଏପରିକି ଉଦାର ନୈତିକ ଓ ଆଭିଜାତ ବର୍ଗଙ୍କ ଭିତରେ ବି ପାଟିତୁଣ୍ଡ ଶୁଭିଲା ଏବଂ ଗୋଟାଏ ରାଜପ୍ରାସାଦ ବିପ୍ଳବ କଥାବି ଉଠିଲା ଅର୍ଥାତ୍ ଜାରଙ୍କୁ ବଳପୂର୍ବକ ହଟାଇ ଅନ୍ୟକୁ ବସାଇଦେବା । ଏଥିଭିତରେ ଜାର ନିକୋଲାସ ନିଜକୁ ସେନାଧ୍ୟକ୍ଷ କରିଥାନ୍ତି ଏବଂ ପ୍ରତ୍ୟେକ ଜିନିଷକୁ ଟେରାପ କରି ପକାଉଥାନ୍ତି । ୧୯୧୬ ମସିହା ଶେଷ ହେବାର କେତେକ ଦିନ ପୂର୍ବରୁ ଜାର ପରିବାରର ଜଣେ ଲୋକଙ୍କ ଦ୍ୱାରା ରାସପୁଟିନ୍ ନିହତ ହେଲା । ତାକୁ ଏକ ଭୋଜିକି ନିମନ୍ତ୍ରଣ କରାଗଲା ଏବଂ ନିଜକୁ ଗୁଳିକରି ମାରିବା ଲାଗି କୁହାହେଲା, ସେ ତାହା କରିବାକୁ ଅସ୍ୱୀକାର କରିବାରୁ ଗୁଳିକରି ମାରି ଦିଆଗଲା । ରାସପୁଟିନ ହତ୍ୟା ଦ୍ୱାରା ସାଧାରଣତଃ ଗୋଟିଏ ଭଲ ମୁକ୍ତି ମିଳିଲା ବୋଲି ସ୍ୱାଗତ କରାଗଲା । କିନ୍ତୁ ଏହା ଫଳରେ ଗୁପ୍ତ ପୋଲିସଙ୍କ ଅତ୍ୟାଚାର ଆହୁରି ବଢ଼ିଗଲା ।

ସଙ୍କଟ ବୃଦ୍ଧି ପାଇଲା । ଖାଦ୍ୟ ଅନାଟନ ପଡ଼ିଲା ଏବଂ ଖାଦ୍ୟ ନିମନ୍ତେ ପେଟ୍ରୋଗ୍ରାଡ଼ରେ ଦଙ୍ଗାମାନ ହେଲା । ତାପରେ ମାର୍ଚ୍ଚ ଆରମ୍ଭରେ ଶ୍ରମିକମାନଙ୍କର ଦୀର୍ଘକାଳର ଦାରୁଣ ଯାତନାରୁ ଅପ୍ରତ୍ୟାଶିତ ଓ ସ୍ୱତଃ ଭାବରେ ବିପ୍ଳବ ସୃଷ୍ଟି ହେଲା । ମାର୍ଚ୍ଚ ମାସରେ ପାଞ୍ଚଦିନ ୮ ତାରିଖରୁ ୧୨ ତାରିଖ ପର୍ଯ୍ୟନ୍ତ ବିପ୍ଳବର ବିଜୟ ହେଲା । ଏହା ରାଜପ୍ରାସାଦ ବ୍ୟାପାର ହୋଇ ନ ଥିଲା; ଏହା କିଛି ଉପରେ ଥିବା ନେତାମାନଙ୍କ ଦ୍ୱାରା ଯୋଜନା କରାଯାଇଥିବା ଏକ ସଂଗଠିତ ବିପ୍ଳବ ନୁହେଁ । ନିମ୍ନ ଦେଶରୁ, ଅତି ଅତ୍ୟାଚାରିତ ଶ୍ରମିକମାନଙ୍କରୁ ଏହା ଜାତ ପରି ବୋଧହେଲା ଏବଂ ଆପାତତଃ କୌଣସି ଯୋଜନା ବା ନେତୃତ୍ୱ ନ ଥାଇ ଅନ୍ଧାରରେ ବୁଲି ବୁଲି ଅଗ୍ରସର ହେଲା । ବିଭିନ୍ନ ବିପ୍ଳବୀ ଦଳ ଏପରିକି

ସ୍ଥାନୀୟ ବଲସେଭିକମାନେ ମଧ୍ୟ ଅବାକ୍ ହୋଇଗଲେ ଏବଂ କ ନେତୃତ୍ୱ ଦେବାକୁ ହେବ ଜାଣିପାରି ନ ଥିଲେ । ଜନତା ନିଜେହିଁ ଆଗୁଆ ହୋଇ ବାହାରିଲି ଏବଂ ପେଟ୍ରୋଗ୍ରାଡ଼ରେ ଥିବା ସୈନ୍ୟମାନଙ୍କୁ ତାଙ୍କ ପକ୍ଷକୁ ଟାଣି ଆଣିବା ମୁହୂର୍ତ୍ତିରେ ହିଁ ସେମାନେ କୃତକାର୍ଯ୍ୟ ହୋଇଗଲେ । ଯାହାହେଉ ଅତୀତରେ ଯେପରି ସବୁ କୃଷକ ବିଦ୍ରୋହ ହୋଇଛି, ଏହି ବିପ୍ଳବ ଜନତାକୁ ସେପରି ଧ୍ୱଂସ କରିବା ନିମନ୍ତେ ବାହାରିଥିବା ଅସଂଗଠିତ ଜନତା ବୋଲି କୁହାଯାଇ ପାରିବ ନାହିଁ । ଏହି ମାର୍ଚ୍ଚ ବିପ୍ଳବର ପ୍ରଧାନ ଘଟଣା ହେଉଛି ଇତିହାସରେ ପ୍ରଥମଥର ପାଇଁ; ଏଥିରେ କାରଖାନା ଶ୍ରମିକମାନେ ନେତୃତ୍ୱ ନେଲେ—"ସଂହତି" ବୋଲି ଏମାନଙ୍କୁ କୁହାଯାଉଛି । ଯେତେବେଳେ ଏହି ଶ୍ରମିକମାନଙ୍କ ସହିତ କୌଣସି ଖ୍ୟାତନାମା ନେତା ଯଦିଓ ନ ଥିଲେ (ଲେନିନ୍ ଓ ଅନ୍ୟମାନେ ବନ୍ଦୀଶାଳା ବା ନିର୍ବାସନରେ ଥିଲେ ), ତଥାପି ଅନେକ ଅଜଣା କର୍ମୀ ଥିଲେ—ସେମାନଙ୍କୁ ଲେନିନ୍‌ଙ୍କ ଦଳ ଶିକ୍ଷା ଦେଇଥିଲେ । ବିଭିନ୍ନ କାରଖାନାମାନଙ୍କର ଏହି ଅଜଣା କର୍ମୀମାନେ ହିଁ ସମସ୍ତ ଆନ୍ଦୋଳନର ମେରୁଦଣ୍ଡ ହେଲେ ଏବଂ ନିର୍ଦ୍ଦିଷ୍ଟ ଧାରାରେ ବିପ୍ଳବକୁ ପରିଚାଳନା କଲେ ।

ଶିଳ୍ପକ୍ଷେତ୍ରରେ ଜନତାର କାର୍ଯ୍ୟ ଆମେ ଏଠି ଯେପରି ଦେଖିବା ଅନ୍ୟତ୍ର ସେପରି ଦେଖାହୋଇ ନାହିଁ । ରୁଷ ଅବଶ୍ୟ ଅପୂର୍ବ ପ୍ରକାରର କୃଷିପ୍ରଧାନ ଦେଶ ଏବଂ ଏହି କୃଷି ମଧ୍ୟ ଅତି ମଧ୍ୟକାଳୀନ ରୀତିରେ କରାଯାଉଥିଲା । ମୋଟାମୋଟି ସମସ୍ତ ଦେଶରେ କିଛି ଆଧୁନିକ ଶିଳ୍ପୋଦ୍ୟୋଗ ନ ଥିଲା; ଯାହା ବି ଥିଲା ତାହା କେତେକ ସହରରେ କେନ୍ଦ୍ରୀଭୂତ ହୋଇଥିଲା । ପେଟ୍ରୋଗ୍ରାଡ଼ରେ ଅନେକ କାରଖାନା ଥିଲା ଏବଂ ସେହିହେତୁ ଶିଳ୍ପକ୍ଷେତ୍ର ଶ୍ରମିକଙ୍କ ସଂଖ୍ୟା ସେଠି ବେଶିଥିଲା । ମାର୍ଚ୍ଚ ବିପ୍ଳବ ହେଉଛି ଏହି ପେଟ୍ରୋଗ୍ରାଡ଼ ଶ୍ରମିକଙ୍କର ଓ ସେହି ସହରରେ ଯେଉଁ ସେନା ରହିଥିଲେ ସେମାନଙ୍କର କାର୍ଯ୍ୟ ।

ମାର୍ଚ୍ଚ ୮ ତାରିଖ ବିପ୍ଳବର ପ୍ରଥମ ନିର୍ଘୋଷ ଶୁଣାଗଲା । ନାରୀମାନେ ନେତୃତ୍ୱ ନେଲେ ଏବଂ ଲୁଗା କଳର ନାରୀଶ୍ରମିକମାନେ ପଦାକୁ ବାହାରି ଆସି ରାସ୍ତାରେ ଶୋଭାଯାତ୍ରା କଲେ । ତତ୍ପରଦିନ ଧର୍ମଘଟ ବ୍ୟାପିଲା; ଅନେକ ପୁରୁଣା ଶ୍ରମିକ ବି ବାହାରି ଆସିଲେ; ରୁଟିପାଇଁ ଦାବୀ ହେଲା ଏବଂ "ଏକଛତ୍ର ଶାସନ ଧ୍ୱଂସହେଉ" ଚିତ୍କାର ଉଠିଲା । କର୍ତ୍ତୃପକ୍ଷ କସାକ୍‌ମାନଙ୍କୁ ପ୍ରେରଣ କଲେ ପାଟିଗୁଣ୍ଡ କରୁଥିବା ଶ୍ରମିକଙ୍କୁ ଦମନ କରିବାପାଇଁ ଏମାନେ ଅତୀତରେ ସର୍ବଦା ଜାର୍ ଶାସନର ପ୍ରଧାନ ସହାୟକ ହୋଇଥିଲେ । କସାକ୍‌ମାନେ ଲୋକଙ୍କୁ ଧକ୍କା ଦେବାକୁ ଲଗିଲେ, କିନ୍ତୁ ଗୁଳିକଲେ ନାହିଁ ଏବଂ ଲୋକମାନେ ଆନନ୍ଦର ସହିତ ଲକ୍ଷ୍ୟ କଲେ ସରକାରୀ ମୁଖା ପଶ୍ଚାତ୍ତରେ କସାକ୍‌ମାନଙ୍କର ମଧ୍ୟ ତାଙ୍କପ୍ରତି ପ୍ରକୃତ ବନ୍ଧୁତ୍ୱ ରହିଛି । ହଠାତ୍ ଲୋକଙ୍କର ଉତ୍ସାହ ବଢ଼ିଲା ଏବଂ ସେମାନେ କସାକ୍‌ମାନଙ୍କ ସହିତ ଭ୍ରାତୃତ୍ୱ ସ୍ଥାପନର ଚେଷ୍ଟାକଲେ । ତୃତୀୟ ଦିବସ ମାର୍ଚ୍ଚ ୧୦ ତାରିଖରେ ଦେଖାଗଲା ଯେ କସାକ୍‌ଙ୍କ ଭିତରେ ଭ୍ରାତୃତ୍ୱର ଆନ୍ତ୍ରିକ ବଢ଼ିଲା । ଏପରିକି ଜନରବ ପ୍ରଚାରିତ ହେଲା ଯେ

ପୁଲିସ ଲୋକଙ୍କ ଉପରେ ଗୁଳି କରିବାରୁ କସାକ୍‌ମାନେ ତାଙ୍କ ଉପରେ ଗୁଳି ଚଳାଇଥିଲେ । ପୁଲିସ ରାସ୍ତାରୁ ଅପସରି ଗଲେ । ନାରୀ ଶ୍ରମିକମାନେ ସୈନ୍ୟମାନଙ୍କ ପାଖକୁ ଗଲେ ଏବଂ ସେମାନଙ୍କୁ ବ୍ୟାକୁଳ ନିବେଦନ କଲେ; ସୈନ୍ୟମାନଙ୍କର ସଙ୍ଗୀନ୍ ମୁନ ଉପରକୁ ଉଠିଲା ।

ତତ୍ପରଦିନ ମାର୍ଚ୍ଚ ୧୧ ତାରିଖ ରବିବାର । ଶ୍ରମିକମାନେ ସହରର କେନ୍ଦ୍ରସ୍ଥଳୀରେ ଜୁଣ୍ଡହେଲେ, ପୋଲିସ ଗୋପ୍ୟ ସ୍ଥାନରୁ ତାଙ୍କ ଉପରେ ଗୁଳି ବର୍ଷଣ କଲେ । କେତେକ ସୈନିକ ବି ଲୋକଙ୍କ ଉପରେ ଗୁଳି ଚଳାଇଲେ—ସେଥିପାଇଁ ଲୋକେ ସେନା ଛାଉଣିକି ଯାଇ ଏ ସମ୍ବନ୍ଧରେ ଖୁବ୍ ଆପତ୍ତି କଲେ । ପଲଟନ ବିଗିଡ଼ି ହୋଇଗଲେ ଏବଂ ଏମାନେ ଲୋକଙ୍କୁ ରକ୍ଷା କରିବା ନିମନ୍ତେ ଅନ୍ୟ କର୍ମଚାରୀଙ୍କ ନେତୃତ୍ୱରେ ବାହାରି ଆସିଲେ; ପଲଟନ ପୋଲିସ ଉପରେ ଗୁଳି ଚଳାଇଲେ । ପଲଟନ ଗିରଫ ହେଲେ, ମାତ୍ର ବହୁତ ଡେରିରେ । ମାର୍ଚ୍ଚ ୧୨ ତାରିଖରେ ବିଦ୍ରୋହ ଅନ୍ୟ ପଲଟନଙ୍କଠାକୁ ବ୍ୟାପିଲା ଏବଂ ସେମାନେ ତାଙ୍କର ରାଇଫଲ ଓ ମେସିନ୍ ଗନ୍ ନେଇ ବାହାରି ଆସିଲେ । ରାସ୍ତାମାନଙ୍କରେ ବହୁ ପରିମାଣରେ ଗୁଳିବର୍ଷଣ ହେଲା; କିନ୍ତୁ କିଏ କାହା ଉପରେ ଗୁଳି କରୁଥିଲା ଏହା ଜାଣିବା ମୁସ୍କିଲ ଥିଲା । ତା ପରେ ଏହି ସୈନିକ ଓ ଶ୍ରମିକମାନେ ଯାଇ କେତେକ ମନ୍ତ୍ରୀଙ୍କୁ (ଅନ୍ୟମାନେ ପଳାଇ ଯାଇଥିଲେ) ପୁଲିସ ଓ ଗୁପ୍ତ ବିଭାଗ ଲୋକଙ୍କୁ ଗିରଫ କଲେ । ସେମାନେ ପୁରୁଣା ରାଜନୈତିକ ବନ୍ଦୀଙ୍କୁ ଜେଲରୁ ଖଲାସ କରିଦେଲେ ।

ପେଟ୍ରୋଗ୍ରାଡ଼ରେ ବିପ୍ଳବ ଜୟଯୁକ୍ତ ହେଲା । ଅଳ୍ପଦିନ ପରେ ମସ୍କୋରେ ବି ହେଲା । ଗ୍ରାମସବୁ ଅବସ୍ଥାର ଗତି ଲକ୍ଷ୍ୟ କରୁଥାଆନ୍ତି । କ୍ରମେ କୃଷକମାନେ ବି ନୂତନ ବ୍ୟବସ୍ଥା ଗ୍ରହଣ କଲେ; ମାତ୍ର ଉତ୍ସାହହୀନ ଭାବରେ । ସେମାନଙ୍କ ପକ୍ଷରେ କେବଳ ଦୁଇଟି ପ୍ରଶ୍ନ ଥିଲା ଜମି ଦଖଲ କରିବା ଏବଂ ଶାନ୍ତି ପାଇବା ।

ଜାରଙ୍କ କଥା କଅଣ ? ଏହି ଘଟଣାବହୁଳ ବେଳରେ ତାଙ୍କ ଅବସ୍ଥା କିପରି ଥିଲା ? ସେ ପେଟ୍ରୋଗ୍ରାଡ଼ରେ ନ ଥିଲେ; ସେ ବହୁ ଦୂରରେ ଏକ ଶ୍ରେଷ୍ଠ ସହରରେ ଥିଲେ —ସେଠି ସେନାଧ୍ୟକ୍ଷଭାବରେ ସେ ନିଜର ସେନା ପରିଚାଳନା କରୁଥିଲେ ବୋଲି ଧରି ନିଆଯାଉଥିଲା । କିନ୍ତୁ ତାଙ୍କ କାଳ ପୂରିଥିଲା ଏବଂ ଅତି ପାଣ୍ଟେ ଫଳପରି ଅଗୋଚରରେ ତାଙ୍କର ପତନ ଘଟିଲା । ମହାନ୍ ଜାର, ରୁଷ ଦେଶ ମଧ୍ୟରେ ପ୍ରଧାନ ଏକଚ୍ଛତ୍ରାଧିପତି, ଯାହାଙ୍କ ସମ୍ମୁଖରେ ଲକ୍ଷ ଲକ୍ଷ ଲୋକ ଭୟକମ୍ପିତ ହୁଅନ୍ତି, "ପବିତ୍ର ରୁଷ"ର "କ୍ଷୁଦ୍ର ପିତା" ଇତିହାସର ଅଳିଆ ଗଦାରେ ଅନ୍ତର୍ହିତ ହୋଇଗଲେ । ବଡ଼ ବଡ଼ ବ୍ୟବସ୍ଥାସବୁ ନିଜର କାମ ସରିଗଲେ ଏବଂ ଜୀବନକାଳ ପୂରିଗଲେ କିପରି ଭାବରେ ବିଲୋପ ହୋଇଯାଏ, ଏହା ଅଦ୍ଭୁତ କଥା । ଜାର ଯେତେବେଳେ ପେଟ୍ରୋଗ୍ରାଡ଼ରେ ଶ୍ରମିକଙ୍କ ଧର୍ମଘଟ ଓ ଗଣ୍ଡଗୋଳ କଥା ଶୁଣିଲେ ସେ ସାମରିକ ଆଇନ ଘୋଷଣା ପାଇଁ ହୁକୁମ ଦେଲେ । ସେନାଧ୍ୟକ୍ଷ ଏହା ବିଧିବଦ୍ଧଭାବରେ ଘୋଷଣା କଲେ; କିନ୍ତୁ ଏହି ଘୋଷଣା ସହରରେ ପ୍ରଚାରିତ କରାଗଲା

ନାହିଁ କମ୍ବା ବଞ୍ଛାପିତ ହେଲା ନାହିଁ; କାରଣ ଏହି କାମ କରିବା ପାଇଁ କେହି ମିଳିଲେ ନାହିଁ । ସରକାରୀ କଳ ଖଣ୍ଡ ଖଣ୍ଡ ହୋଇ ଯାଉଥିଲା । ଜାର ଏବେ ଯୁଦ୍ଧ ଯାହା କରୁଥିଲେ ତାର ଫଳାଫଳ ନ ବୁଝି ପେଟ୍ରୋଗ୍ରାଡ଼କୁ ଫେରିବା ନିମନ୍ତେ ଚେଷ୍ଟା କଲେ । ରେଲବାଇ ଶ୍ରମିକ-ମାନେ ତାଙ୍କ ଟ୍ରେନକୁ ବାଟରେ ବନ୍ଦ କଲେ । ଜାରନା ସେତେବେଳେ ପେଟ୍ରୋଗ୍ରାଡ଼ ନିକଟସ୍ଥ ଏକ ଗ୍ରେଟ ସହରରେ ଥିଲେ—ସେ ଜାରଙ୍କ ନିକଟକୁ ଏକ ତାର ପଠାଇଲେ । ଟେଲିଗ୍ରାମ ଅଫିସରୁ ସେଥିରେ ପେନ୍‌ସିଲରେ ନିମ୍ନଲିଖିତ ମତେ ଲେଖା ହୋଇ ଫେରାଇ ଦିଆଗଲା—

"ତାର ପାଇବା ବ୍ୟକ୍ତିର ଠିକଣା ଜଣା ନାହିଁ !"

ଯୁଦ୍ଧ କ୍ଷେତ୍ରରେ ଥିବା ସେନାପତିମାନେ ଓ ପେଟ୍ରୋଗ୍ରାଡ଼ର ମାନ୍ୟ ନେତାମାନେ ଏହିସବୁ କାଣ୍ଡରେ ଉଦ୍‌ବେଗିତ ହୋଇ ଏବଂ ଏହି ଧ୍ୱଂସରୁ କିଛି ରକ୍ଷା କରିବାର ଆଶାପୋଷଣ କରି ସିଂହାସନ ଛାଡ଼ି ଦେବାପାଇଁ ଜାରଙ୍କୁ ଅନୁରୋଧ କଲେ । ସେ ତାହା କଲେ; ତାଙ୍କର ଏକ ସମ୍ପର୍କୀୟଙ୍କୁ ନିଜ ସ୍ଥାନରେ ବସାଇଲେ । କିନ୍ତୁ ଆଉ ଜାର ପଦ ରହିଲା ନାହିଁ; ରୋମାନଫ୍ ବଂଶ ୩୦୦ ବର୍ଷ ପର୍ଯ୍ୟନ୍ତ ଏକଛତ୍ର ଶାସନ ପରେ ରୁଷ ରଙ୍ଗମଞ୍ଚରୁ ଚିରଦିନପାଇଁ ବିଦାୟ ନେଲେ ।

ଅଭିଜାତ୍ୟ ଜମିମାଲିକ ଓ ଉଚ୍ଚ ମଧ୍ୟବିତ୍ତ ଶ୍ରେଣୀ ଏବଂ ଏପରିକି ମାନ୍ୟ ଓ ସଂସ୍କାରକମାନେ ବି ଶ୍ରମିକଶ୍ରେଣୀର ଏହି ଉନ୍ମାଦନା ଦେଖି ଭୀତ ଓ ଚକିତ ହେଲେ । ସେମାନେ ସେତେବେଳେ ଦେଖିଲେ ଯେଉଁମାନଙ୍କ ଉପରେ ସେମାନେ ନିର୍ଭର କରୁଥିଲେ ସେମାନେ ଶ୍ରମିକଙ୍କ ସହ ଯୋଗ ଦେଉଛନ୍ତି, ସେତେବେଳେ ତାଙ୍କ ସାମନାରେ ଏମାନେ ନିଜକୁ କ୍ଷମତାହୀନ ପରି ବୋଧକଲେ । କେଉଁ ପକ୍ଷରେ ବିଜୟ ହେବ ସେ ସମ୍ବନ୍ଧରେ ସେମାନେ ଏତେବେଳଯାଏ ନିଶ୍ଚିତ ନ ଥିଲେ; କାରଣ ଜାର ଯୁଦ୍ଧ-କ୍ଷେତ୍ରରୁ ଏକ ସେନାବାହିନୀ ନେଇ ଫେରି ଆସିବାର ସମ୍ଭବ ହୋଇପାରେ ଏବଂ ତାହା ସାହାଯ୍ୟରେ ବିଦ୍ରୋହ ଦମନ କରିପାରନ୍ତି । ତେଣୁ ଏକ ପକ୍ଷରେ ଶ୍ରମିକଙ୍କ ଭୟ ଓ ଅନ୍ୟ ପକ୍ଷରେ ଜାର ଭୟ, ଏବଂ ନିଜର ଅବସ୍ଥା ରକ୍ଷା କରିବା ପାଇଁ ଅତୀବ ବ୍ୟାକୁଳତା ହେତୁ ସେମାନେ ବି ବଡ଼ ଦୁର୍ଦ୍ଦଶାରେ ପଡ଼ିଲେ । ଡୁମା ଥିଲା—ଭୂସ୍ୱାମୀ ଶ୍ରେଣୀ ଓ ଉଚ୍ଚ ବୁର୍ଜୋୟା ଶ୍ରେଣୀ ସେଥିରେ ପ୍ରତିନିଧିତ୍ୱ କରୁଥିଲେ । ଏପରିକି ଶ୍ରମିକମାନେ ବି ଏଥିରୁ କିଛି ଆଶା କରୁଥିଲେ; କିନ୍ତୁ ଏହି ସଙ୍କଟରେ ନେତୃତ୍ୱ ନେବା ବା କିଛି କରିବା ପରିବର୍ତ୍ତେ ତାର ସଭାପତି ଓ ସଭ୍ୟମାନେ ଭୟରେ ବସି ରହିଲେ ଓ ଆତଙ୍କିତ ହେଲେ ଏବଂ କଣ କରିବେ ସେ ବିଷୟରେ କିଛି ସ୍ଥିର କରି ପାରିଲେ ନାହିଁ ।

ଇତ୍ୟବସରେ ସୋଭିଏଟ ଗଢ଼ା ହୋଇଗଲା । ଶ୍ରମିକ ପ୍ରତିନିଧିଙ୍କ ସାଙ୍ଗକୁ ସୈନିକ ପ୍ରତିନିଧି ଯୋଗ କରାଗଲା ଏବଂ ଯେଉଁ ବିଶାଳ ଟରାଇଡ଼୍ ପ୍ରାସାଦର ଏକାଂଶ ଡୁମା

ଦଖଲ କରିଥିଲା, ତାହାର ଏକଭାଗ ଏମାନେ ଦଖଲ କରିନେଲେ । ବିଜୟ ହେତୁ ଶ୍ରମିକ ଓ ସୈନିକଙ୍କ ଭିତରେ ଉତ୍ସାହ ପୂରି ରହିଥିଲା । କିନ୍ତୁ ତା'ପରେ ପ୍ରଶ୍ନ ଉଠିଲା, ଏଥିରେ ସେମାନେ କଣ କରିବେ ? ସେମାନେ କ୍ଷମତା ପାଇଲେ; ଏହାକୁ କିଏ ଚଳାଇବ ? ସୋଭିଏଟ୍ ଯେ କରିପାରେ ଏହା ତାଙ୍କ ମନରେ ପ୍ରବେଶ କଲାନାହିଁ; ସେମାନେ ସିଦ୍ଧାନ୍ତରୂପେ ଗ୍ରହଣ କରିନେଲେ ଯେ ବୁର୍ଜୋୟାଙ୍କ ହାତରେ କ୍ଷମତା ରହିବା ଦରକାର । ତେଣୁ ସୋଭିଏଟ୍ ତରଫରୁ ଗୋଟିଏ ପ୍ରତିନିଧି ଦଳ ଡୁମାକୁ ଯାଇ ଶାସନ ଚଳାଇବା ନିମନ୍ତେ ନିବେଦନ କଲା । ସମ୍ବାଦ ଓ ଡୁମାର ସଭ୍ୟମାନେ ଭାବିଲେ ଯେ ସେମାନଙ୍କୁ ଗିରଫ କରିବା ନିମନ୍ତେ ପ୍ରତିନିଧି ଦଳ ଆସିଛି । କ୍ଷମତା ବୋଝ ବହିବାପାଇଁ ତାଙ୍କର ଇଚ୍ଛା ନ ଥିଲା; ସେଥିରେ ଯାହା ବିପଦ ବରଣ କରିବାକୁ ହେବ ସେଥିରେ ସେମାନେ ଆତଙ୍କିତ ହେଉଥିଲେ । କିନ୍ତୁ ସେମାନେ କରିବେ କଅଣ ? ସୋଭିଏଟ୍ ଡେପୁଟେସନ୍ ଜୋର କଲା ଏବଂ ସେମାନଙ୍କୁ ଅସ୍ୱୀକାର କରିବା ନିମନ୍ତେ ଏମାନେ ଭୟ କଲେ । ତେଣୁ ନିତାନ୍ତ ଅନିଚ୍ଛାସତ୍ତ୍ୱେ ଓ ଫଳାଫଳର ଭୟରେ ଡୁମାର ଏକ କମିଟି କ୍ଷମତା ଗ୍ରହଣ କଲା ଏବଂ ତାହାର ଦୁନିଆକୁ ମନେହେଲା ଯେ ଡୁମାହିଁ ବିପ୍ଳବ ଚଳାଉଛି । କିପରି ଅସାଧାରଣ ମିଶ୍ରଣ ! ଯଦି ଏକ କାହାଣୀ ଆକାରରେ ଏହା ଲେଖାଯାଏ, ତେବେ ଏପରି ଘଟିପାରେ ବୋଲି ପ୍ରାୟ ଆମେ ବିଶ୍ୱାସ କରିବା ନାହିଁ । କିନ୍ତୁ ଅନେକ ସମୟରେ ଗଳ୍ପ ଅପେକ୍ଷା ପ୍ରକୃତ ଘଟଣା ଅଦ୍ଭୁତ ଅଭୂତ ହୋଇଥାଏ ।

ଡୁମା କମିଟି ଯେଉଁ ଅସ୍ଥାୟୀ ସରକାର ନିଯୁକ୍ତ କଲା ତାହା ଅତ୍ୟନ୍ତ ରକ୍ଷଣଶୀଳ ସଂସ୍ଥା ଏବଂ ଏହାର ପ୍ରଧାନମନ୍ତ୍ରୀ ହେଲେ ଜଣେ ରାଜା । ସେହି କୋଠାର ଅନ୍ୟ ଏକ ପାଖରେ ସୋଭିଏଟ୍ ବସୁଥିଲା ଏବଂ ବରାବର ଅସ୍ଥାୟୀ ସରକାର କାର୍ଯ୍ୟରେ ହସ୍ତକ୍ଷେପ କରୁଥିଲା । କିନ୍ତୁ ସୋଭିଏଟ୍ ବି ଆରମ୍ଭବେଳେ ନରମପନ୍ଥୀ ଥିଲା ଏବଂ ଏଥିରେ ବଲ୍‌ସେଭିକଙ୍କ ସଂଖ୍ୟା ମୁଷ୍ଟିମେୟ ଥିଲା । ଏହିରୂପେ ଏକପ୍ରକାର ଦ୍ୱୈତ ଶାସନ ଚାଲିଲା—ଅସ୍ଥାୟୀ ସରକାର ଓ ସୋଭିଏଟ୍—ଏବଂ ଏ ଉଭୟଙ୍କ ପଛରେ ଥିଲା ବିପ୍ଳବୀ ଜନତା – ସେମାନେ ବିପ୍ଳବ ଚଳାଇଥିଲେ ଓ ଏଥିରୁ ବଡ଼ ବଡ଼ ଜିନିଷ ଆଶା କରୁଥିଲେ । କିନ୍ତୁ ନୂଆ ସରକାରଠାରୁ କ୍ଷୁଧିତ ଓ ଯୁଦ୍ଧକ୍ଲାନ୍ତ ଜନତା ଏକମାତ୍ର ନେତୃତ୍ୱ ପାଇଲେ ତାହା ହେଉଛି ଜର୍ମାନମାନେ ପରାସ୍ତ ହେବା ପର୍ଯ୍ୟନ୍ତ ଯୁଦ୍ଧଚାଳନା । ସେମାନେ ଭାବିଲେ ଏଇଥିପାଇଁ କଣ ସେମାନେ ବିପ୍ଳବ କଲେ ଓ ଜାରକୁ ତଡ଼ିଥିଲେ ।

ଠିକ୍ ଏହି ସମୟରେ ଏପ୍ରିଲ ୧୬ ତାରିଖରେ ଲେନିନ୍ କ୍ଷେତ୍ରରେ ଉପସ୍ଥିତ ହେଲେ । ସେ ଯୁଦ୍ଧକାଳ ସାରା ସୁଇଜରଲଣ୍ଡରେ ଥିଲେ ଏବଂ ବିପ୍ଳବ କଥା ଶୁଣିଲାମାତ୍ରେ ରୁଷକୁ ଆସିବାପାଇଁ ସେ ବ୍ୟଗ୍ରଥିଲେ । କିନ୍ତୁ କିପରି ଆସିବେ ? ଇଂରେଜ ଏବଂ ଫରାସୀ ଅଥବା ଜର୍ମାନ ଓ ଅଷ୍ଟ୍ରିଆନ୍ କେହି ତାଙ୍କ ଅଞ୍ଚଳ ଦେଇ ଆସିବା ନିମନ୍ତେ ତାଙ୍କୁ ଅନୁମତି

ଦେବେ ନାହିଁ । ଶେଷରେ ନିଜର କୌଣସି କାରଣରୁ ସୁଇଜରଲଣ୍ଡରୁ ରୁଷ ସୀମାନ୍ତ ପର୍ଯ୍ୟନ୍ତ ଗୋଟିଏ ବନ୍ଦ ଟ୍ରେନରେ ସେ ଯିବା ନିମନ୍ତେ ଜର୍ମାନ ସରକାର ରାଜି ହୋଇଗଲେ । ସେମାନେ ନିଶ୍ଚୟ ଆଶା କରିଥିଲେ ଏବଂ ଏଥିଲାଗି କାରଣ ବି ଥିଲା ଯେ ରୁଷରେ ଲେନିନ୍ ପହଞ୍ଚିଲେ ଅସ୍ଥାୟୀ ସରକାର ଓ ଯୁଦ୍ଧ ସପକ୍ଷ ଦଳ ଦୁର୍ବଳ ହୋଇ ପଡ଼ିବ, କାରଣ ଲେନିନ୍ ଯୁଦ୍ଧ ବିରୁଦ୍ଧରେ ଥିଲେ ଏବଂ ଏଥିରୁ ସେମାନେ ଫାଇଦା ଉଠାଇବେ ବୋଲି ଆଶା କରିଥିଲେ । ସେମାନେ ଅନୁମାନ କରି ନ ଥିଲେ ଯେ ଏହି ଅଳ୍ପ ଅଧିକେ ଅଜ୍ଞାତ ବିପ୍ଳବୀ ଇଉରୋପ ଓ ଦୁନିଆକୁ ଦୋହଲାଇ ଦେବ ।

ଲେନିନ୍‌ଙ୍କ ମନରେ କୌଣସି ସନ୍ଦେହ ବା ଅସ୍ପଷ୍ଟତା ନ ଥିଲା । ତାଙ୍କର ତୀକ୍ଷ୍ଣ ଚକ୍ଷୁରେ ସେ ଜନତା ମନୋଭାବ ଧରିପାରିଲେ; ଅନାବିଳ ମସ୍ତିଷ୍କ ପ୍ରୟୋଗ କରି ପରିବର୍ତ୍ତିତ ପରିସ୍ଥିତି ସହ ଖାପ ଖୁଆଇବା ନିମନ୍ତେ ସୁଚିନ୍ତିତ ମତ ଆବିଷ୍କାର କଲେ; ତତ୍କାଳୀନ ପରିଣତି ପ୍ରତି ଦୃଷ୍ଟି ନ ଦେଇ ନିଜର ଦୃଢ଼ ଇଚ୍ଛା ଶକ୍ତିକୁ ସେ ନିଜ ଯୋଜନା ଚାଳନାରେ ଖଟାଇଲେ । ଯେଉଁଦିନ ସେ ପହଞ୍ଚିଲେ ସେହିଦିନହିଁ ବଲସେଭିକ୍ ଦଳକୁ ଦୋହଲାଇ ଦେଲେ; ସେମାନଙ୍କର ଆଳସ୍ୟକୁ ସମାଲୋଚନା କଲେ ଏବଂ ସେମାନଙ୍କର କର୍ତ୍ତବ୍ୟ ଜ୍ୱଳନ୍ତ ବାକ୍ୟରେ ଦର୍ଶାଇ ଦେଲେ । ; ତାଙ୍କର ଭାଷଣ ଥିଲା ବିଦ୍ୟୁତ୍ ଆଘାତ ପରି ଯନ୍ତ୍ରଣାଦାୟକ; କିନ୍ତୁ ତାହା ସଙ୍ଗେ ସଙ୍ଗେ ସତେଜ ବି କଲା । ସେ କହିଥିଲେ "ଆମେ ଦଗାବାଜ ନୋହୁଁ, କେବଳ ଜନସାଧାରଣଙ୍କର ଚୈତନ୍ୟ ଉପରେ ହିଁ ଆମକୁ ଭିତ୍ତି କରି ଚାଲିବାକୁ ହେବ । ଏପରିକି ଯଦି ସଂଖ୍ୟାଲଘିଷ୍ଠ ହୋଇ ରହିବାକୁ ପଡ଼େ ତେବେ ତାହା ବରଂ ହେଉ । କ୍ଷଣକାଳପାଇଁ ନେତୃତ୍ୱ ଛାଡ଼ିଦେବା ଭଲ ଜିନିଷ; ଆମେ ଅଳ୍ପସଂଖ୍ୟକ ହୋଇ ରହିବାପାଇଁ ଭୟ କରିବା ନାହିଁ", ଏବଂ ସେ ଏହିପରି ନିଜର ଦୃଢ଼ ମତରେ ରହିଲେ ଓ କୌଣସି ପ୍ରକାର ମୀମାଂସା କରିବାକୁ ଅସ୍ୱୀକାର କଲେ । ଯେଉଁ ବିପ୍ଳବ ଏପର୍ଯ୍ୟନ୍ତ ବିନା ନେତା ଓ ବିନା ଚାଳନାରେ ଗତି କରିଥିଲା, ତାହା ଶେଷରେ ନେତା ପାଇଲା । ସେ ସମୟହିଁ ନେତା ସୃଷ୍ଟି କଲା ।

ଏପରି ଅବସ୍ଥାରେ ବଲସେଭିକ୍‌ମାନଙ୍କୁ ମେନ୍‌ସେଭିକ୍ ଓ ଅନ୍ୟ ବିପ୍ଳବୀ ଦଳଠାରୁ ଯେଉଁ ତଥ୍ୟ ଅଲଗା କରିଦେଲା ତାହା କଣ ? ଲେନିନ୍‌ଙ୍କ ଆଗମନ ପୂର୍ବରୁ ସ୍ଥାନୀୟ ବଲସେଭିକ୍‌ମାନଙ୍କୁ କେଉଁ ଜିନିଷ ପଙ୍ଗୁ କରି ପକାଇଥିଲା ? ଆହୁରି ମଧ୍ୟ ନିଜ ହାତକୁ କ୍ଷମତା ଆସିବା ପରେ ସୋଭିଏଟ୍ କାହିଁକି ପୁରୁଣାକାଳିଆ ରକ୍ଷଣଶୀଳ ଡୁମା ହାତରେ ତାହା ସମର୍ପି ଦେଲା ? ଏହିସବୁ ବିଷୟ ସମ୍ବନ୍ଧରେ ମୁଁ ଗଭୀର ଭାବରେ ଆଲୋଚନା କରିପାରିବି ନାହିଁ; କିନ୍ତୁ ଆମକୁ ୧୯୧୭ରେ ରୁଷ ଓ ପେଟ୍ରୋଗ୍ରାଡ଼ରେ ବଦଳିବର ପରିବର୍ତ୍ତନଶୀଳ ନାଟକକୁ ବୁଝିବାକୁ ହେଲେ ଏସବୁ ବିଷୟକୁ ଟିକିଏ ଚିନ୍ତା କରିବାକୁ ହେବ ।

କାର୍ଲ ମାର୍କସଙ୍କ ମାନବ ଜାତିର ପରିବର୍ତ୍ତନ ଓ ଅଗ୍ରଗତି ତଥ୍ୟକୁ "ଇତିହାସର ଭୌତିକ କଳ୍ପନା" ବୋଲି କୁହାଯାଏ । ପୁରୁଣା ବ୍ୟବସ୍ଥା ଅକାମୀ ହୋଇଗଲେ ତାହା ସ୍ଥାନ ନୂତନ ସାମାଜିକ ବ୍ୟବସ୍ଥା ଗ୍ରହଣ କରେ; ଏଥିରେହିଁ ଏହା ପ୍ରତିଷ୍ଠିତ । ଶିଳ୍ପ ଜରିଆରେ ଉତ୍ପାଦନ ପ୍ରଣାଳୀ ଯେପରି ଉନ୍ନତି ଲାଭ କଲା, ସମାଜର ଆର୍ଥିକ ଓ ରାଜନୀତିକ ସଂଗଠନ କ୍ରମେ ତାହା ଗ୍ରହଣ କରିଗଲା । ଯେପରି ଭାବରେ ଏହା ଘଟିଲା, ସେଥିରେ ପ୍ରାଧାନ୍ୟ ଲଭିଥିବା ଶ୍ରେଣୀ ଓ ଶୋଷିତ ଶ୍ରେଣୀ ଭିତରେ ବରାବର ଶ୍ରେଣୀସଂଗ୍ରାମ ଲାଗିରହିଲା । ଏହିରୂପେ ପଶ୍ଚିମ ଇଉରୋପରେ ପୁରୁଣା ସାମନ୍ତବାଦୀ ଶ୍ରେଣୀ ସ୍ଥାନରେ ବୁର୍ଜୋୟାଶ୍ରେଣୀ ଦେଖାଦେଲେ—ଏମାନେହିଁ ଇଂଲଣ୍ଡ, ଜର୍ମାନୀ, ଫ୍ରାନ୍‌ସ ପ୍ରଭୃତିରେ ଆର୍ଥନୀତିକ ଓ ରାଜନୀତିକ ସଂଗଠନକୁ ନିୟନ୍ତ୍ରଣ କରୁଛନ୍ତି ଏବଂ ପୁଣି ଏମାନଙ୍କ ପରେ ଏମାନଙ୍କ ସ୍ଥାନ ଶ୍ରମିକଶ୍ରେଣୀ ଅଧିକାର କରିବାର ପାଳି ପଡ଼ିବ । ରୁଷରେ ସାମନ୍ତଶ୍ରେଣୀ ଏବେ ସୁଦ୍ଧା ପ୍ରଭୁତ୍ୱ କରୁଥିଲେ ଏବଂ ଯେଉଁ ପରିବର୍ତ୍ତନ ଫଳରେ ପଶ୍ଚିମ ଇଉରୋପରେ ବୁର୍ଜୋୟା ଶ୍ରେଣୀ କ୍ଷମତା ପାଇଲେ, ତାହା ଏଠାରେ ଏପର୍ଯ୍ୟନ୍ତ ହୋଇ ନ ଥିଲା । ସେଥିହେତୁ ଅଧିକାଂଶ ମାର୍କସବାଦୀ ଚିନ୍ତା କରିବାକୁ ଲାଗିଲେ ଯେ ଅନିବାର୍ଯ୍ୟରୂପେ ଶ୍ରମିକ ପ୍ରଜାତନ୍ତ୍ରର ଚରମ ସୀମାରେ ପହଞ୍ଚିବା ପୂର୍ବରୁ ରୁଷକୁ ଏହି ବୁର୍ଜୋୟା ଓ ପାର୍ଲିମେଣ୍ଟାରୀ ଅବସ୍ଥା ଭେଇ ଗତି କରିବାକୁ ହେବ । ସେମାନଙ୍କ ମତରେ ଏହି ମଧ୍ୟମ ଅବସ୍ଥାଟାକୁ କିଛି ଡେଇଁ ଯାଇ ହେବ ନାହିଁ । ୧୯୧୭ ମାର୍ଚ୍ଚ ମାସ ବିପ୍ଳବ ପୂର୍ବରୁ ଲେନିନ ନିଜେ ମଧ୍ୟ ଜାର ଓ ଭୂସ୍ୱାମୀଙ୍କ ବିରୋଧରେ ଗୋଟାଏ [ବୁର୍ଜୋୟାଙ୍କୁ ବିରୋଧ ନ କରି] ସହିତ ସହଯୋଗ କରିବାର ଏକ ମଧ୍ୟବର୍ତ୍ତୀ ନୀତିଧାର୍ଯ୍ୟ କରି ଦେଇଥିଲେ ।

ତେଣୁ ବଲସେଭିକ, ମେନସେଭିକ ଏବଂ ମାର୍କସବାଦୀ ତଥ୍ୟରେ ବିଶ୍ୱାସ କରୁଥିବା ଲୋକଙ୍କ ଭିତରେ ଇଂରେଜ ଓ ଫରାସୀ ଢଙ୍ଗରେ ଗୋଟିଏ ବୁର୍ଜୋୟା ଗଣତାନ୍ତ୍ରିକ ପ୍ରଜାତନ୍ତ୍ର ସ୍ଥାପନର ଭାବ ପୂର୍ଣ୍ଣ ଥିଲା । ମୁଖ୍ୟ ଶ୍ରମିକ ପ୍ରତିନିଧିମାନେ ମଧ୍ୟ ଏହା ଅନିବାର୍ଯ୍ୟ ବୋଲି ଭାବିଲେ ଏବଂ ଏହି କାରଣରୁହିଁ ସୋଭିଏଟ୍ ନିଜ ହାତରେ କ୍ଷମତା ରଖିବା ପରିବର୍ତ୍ତେ ଡୁମାକୁ ସମର୍ପି ଦେଲେ । ଅନେକ ସମୟରେ ଆମ ସମସ୍ତଙ୍କର ଯାହା ହୋଇଥାଏ, ସେହିପରି ଏମାନେ ମଧ୍ୟ ନିଜ ମତବାଦର ଦାସ ପାଲଟିଲେ ଏବଂ ଏକ ନୂତନ ପରିସ୍ଥିତି ପହଞ୍ଚିଛି, ସେଥିପାଇଁ ପୃଥକ ନୀତି ଅନୁସରଣ କରିବା ଦରକାର ଅଥବା ଅନ୍ତତଃ ପୁରାତନ ନୀତିକୁ ଅଲଗା ଢଙ୍ଗରେ ଗ୍ରହଣ କରିବା ଯେ ଦରକାର ପଡ଼ିଛି ଏହା ସେମାନେ ଦେଖି ପାରିଲେ ନାହିଁ । ନେତାମାନଙ୍କ ଅପେକ୍ଷା ଜନତା ଆହୁରି ବେଶୀ ବିପ୍ଳବୀ ଥିଲେ । ସୋଭିଏଟ୍ ଚଳାଉଥିବା ମେନ୍‌ସେଭିକ୍‌ମାନେ ଏପରିକି କହିଲେ ଯେ ଏତେବେଳେ ଶ୍ରମିକଶ୍ରେଣୀଙ୍କ ପକ୍ଷରେ କୌଣସି ସାମାଜିକ ପ୍ରଶ୍ନ ଉଠାଇବା ଉଚିତ ନୁହେଁ; ସେମାନଙ୍କର ଜରୁରୀ କର୍ତ୍ତବ୍ୟ ହେଉଛି ରାଜନୀତିକ ସ୍ୱାଧୀନତା ଲାଭ କରିବା । ବଲସେଭିକମାନେ ଅବସ୍ଥା ବୁଝି ବ୍ୟବସ୍ଥା କଲେ । ଦ୍ୱିଧାଗ୍ରସ୍ତ ଓ ନିଷ୍ଠୁରଗାମୀ ନେତାମାନଙ୍କ ସତ୍ତ୍ୱେ ମାର୍ଚ୍ଚ ବିପ୍ଳବ କୃତକାର୍ଯ୍ୟ ହେଲା ।

ଲେନିନ୍‌ଙ୍କ ଆଗମନରେ ଏସବୁ ବଦଳିଗଲା । ସେ ତତ୍‌କ୍ଷଣାତ୍ ପରିସ୍ଥିତି ବୁଝିପାରିଲେ ଏବଂ ସଚ୍ଚା ନେତୃତ୍ୱର ବୁଦ୍ଧିଶୀଳତା କରି ସେହି ଅନୁସାରେ ମାର୍କସୀୟ କାର୍ଯ୍ୟପନ୍ଥା ଗ୍ରହଣ କଲେ । ବର୍ତ୍ତମାନ ନୀତି ହେଲା ଦରିଦ୍ରତମ କୃଷକମାନଙ୍କ ସହଯୋଗରେ ଶ୍ରମିକଶ୍ରେଣୀର ଶାସନ ସ୍ଥାପନ ସକାଶେ ପୁଞ୍ଜିବାଦ ବିରୁଦ୍ଧରେ ଲଢ଼ାଇ । ସେମାନଙ୍କର ତିନୋଟି ଜରୁରୀ ଦାବୀ ହେଲା—[୧] ଗଣତାନ୍ତ୍ରିକ [୨] ଜମି ଇଲାକାସବୁ ଜାତୀୟକରଣ [୩] ଶ୍ରମିକମାନଙ୍କ ସକାଶେ ଦୈନିକ ଆଠଘଣ୍ଟା ଶ୍ରମ । ଏପରି ଧ୍ୱନି ଫଳରେ ସଙ୍ଗେ ସଙ୍ଗେ ବିପ୍ଳବୀ ଶ୍ରମିକ ଓ କୃଷକଙ୍କ ଭିତରେ ବାସ୍ତବତା ପ୍ରବେଶ କଲା । ଏହା ଆଉ ସେମାନଙ୍କ ସମ୍ମୁଖରେ ଏକ ଅସ୍ପଷ୍ଟ ଓ ଫମ୍ପା ଆଦର୍ଶ ହୋଇ ରହିଲା ନାହିଁ । ଏହା ବୋଇଲେ ସେମାନେ ବୁଝିଲେ ଜୀବନ ଓ ଆଶା ।

ଲେନିନ୍‌ଙ୍କର ନୀତି ହେଲା—ବଲସେଭିକ୍‌ମାନେ ସେମାନଙ୍କ ପକ୍ଷକୁ ଅଧିକ ସଂଖ୍ୟକ ଶ୍ରମିକଙ୍କୁ ଟାଣି ଆଣିବେ ଏବଂ ଏହିରୂପେ ସୋଭିଏଟ୍ ଦଖଲ କରିବେ; ତା ପରେ ସୋଭିଏଟ୍ ଅସ୍ଥାୟୀ ସରକାରଠାରୁ କ୍ଷମତା ଅଧିକାର କରିବ । ଅସ୍ଥାୟୀ ସରକାରକୁ ମୂଳୋତ୍ପାଟନ କରିବା ପୂର୍ବରୁ ସୋଭିଏଟ୍ ଓ ଅଧିକ ସଂଖ୍ୟକ ଶ୍ରମିକଙ୍କୁ ନିଜ ଆଡ଼କୁ ଟାଣି ଆଣିବାପାଇଁ ଜୋର ଦେଲେ । ଏହି ସରକାର ସହିତ ଯେଉଁମାନେ ସହଯୋଗ କରିବାର ଇଚ୍ଛା ପ୍ରକାଶ କଲେ, ସେ ସେମାନଙ୍କ ପ୍ରତି ଖୁବ୍ କଠୋର ହେଲେ । ସେପରି ସହଯୋଗର ଅର୍ଥ ବିପ୍ଳବ ପ୍ରତି ବିଶ୍ୱାସଘାତକତା । ସେହିପରି ଯେଉଁମାନେ ଠିକଣା ମୁହୂର୍ତ୍ତ ପହଞ୍ଚିବା ପୂର୍ବରୁ ସରକାର ଓଲଟେଇ ଦେବା ନିମନ୍ତେ ଆଗକୁ ଧାଇଁଯିବା ପାଇଁ ବ୍ୟଗ୍ର ଥିଲେ, ସେମାନଙ୍କ ଉପରେ ମଧ୍ୟ ସମାନଭାବରେ କଠୋର ଥିଲେ । ସେ କହିଲେ, "କାର୍ଯ୍ୟ ମୁହୂର୍ତ୍ତରେ କ୍ଷୁଦ୍ର ଦଳ ପକ୍ଷରେ ଅଧିକ ବାଁ ଆଡ଼କୁ ଲକ୍ଷ୍ୟ କରିବା ଉଚିତ ନୁହେଁ । ଆମେ ଏହାକୁ ସବୁଠାରୁ ବଡ଼ ଅପରାଧ ଓ ବିଶୃଙ୍ଖଳା ବୋଲି ବିଚାର କରୁ ।"

ତେଣୁ ଶାନ୍ତିପୂର୍ବକ ଅଥଚ ନିଶ୍ଚିତରୂପେ ଏକ ଅନିବାର୍ଯ୍ୟ ଭାଗ୍ୟନିୟନ୍ତ୍ରଣ ପରି କ୍ୱଳନ୍ତ ଅଗ୍ନି ଭିତରେ ଧରି ଏହି ଭୂଷାରଖଣ୍ଡ ନିଜର ନିର୍ଦ୍ଦିଷ୍ଟ ଲକ୍ଷ୍ୟ ଦିଗରେ ଅଗ୍ରସର ହେବାକୁ ଲାଗିଲା ।

## ୧୫୧ : ବଲସେଭିକ୍‌ମାନଙ୍କର କ୍ଷମତା ଅଧିକାର

ଏପ୍ରିଲ୍ ୯, ୧୯୩୩

ବିପ୍ଳବ କାଳରେ ଇତିହାସ ଖୁବ୍ ଦ୍ରୁତ ଗତିରେଅ ଗ୍ରସର ହେବାକୁ ଲାଗିଲା । ବାହାରେ ଦ୍ରୁତ ପରିବର୍ତ୍ତନ ହୁଏ; କିନ୍ତୁ ଜନସାଧାରଣଙ୍କ ଚୈତନ୍ୟ ଜାଗ୍ରତ ହେବାରେ

ଆହୁରି ଅଧିକ ପରିବର୍ତ୍ତନ ଦେଖାଯାଏ । ସେମାନେ ବହିରୁ କିଛି ଶିକ୍ଷା କରିପାରନ୍ତି ନାହିଁ, କାରଣ ପୁସ୍ତକଗତ ବିଦ୍ୟା ହାସଲ କରିବାର ସୁଯୋଗ ସେମାନଙ୍କର ନ ଥାଏ ଏବଂ ଅନ୍ୟ ସମୟରେ ବହିରେ ଯେତେ କଥା ପ୍ରକାଶ ନ ହୁଏ ତାହା ଅପେକ୍ଷା ଅଧିକ ଲୁଗ୍ଚାଇ ରଖାଯାଏ । ତାଙ୍କର ସ୍କୁଲ ହେଲା ଅଭିଜ୍ଞତା—ଏହା କଠିନ ଅଥଚ ସତ୍ୟ । ବିପ୍ଳବ କାଳରେ କ୍ଷମତା ଲାଗି ଜୀବନମରଣ ସଂଗ୍ରାମ ବେଳେ ଯେଉଁ ମୁଖା ସାଧାରଣତଃ ଲୋକମାନଙ୍କର ପ୍ରକୃତ ମତଲବକୁ ଘୋଡ଼ାଇ ରଖିଥାଏ ତାହା ଉଠିଯାଏ ଏବଂ ସମାଜ ଯେଉଁ ବାସ୍ତବତା ଉପରେ ପ୍ରତିଷ୍ଠିତ ତାହା ଏହା ପଶ୍ଚାତରେ ଦେଖାଯାଏ; ତେଣୁ ଋଷରେ ଏହି ଘଟଣାବହୁଳ ୧୯୧୭ ମସିହାରେ ଜନସାଧାରଣ ଏବଂ ବିଶେଷ ଭାବରେ ସହରରେ ଥିବା କାରଖାନା ଶ୍ରମିକମାନେ ଯେଉଁ ବିପ୍ଳବର ପିଣ୍ଡ ଥିଲେ, ସେମାନେ ଘଟଣାମାନଙ୍କରୁ ନିଜର ଶିକ୍ଷା ଅର୍ଜନ କଲେ ଏବଂ ଦିନକୁ ଦିନ ତାଙ୍କର ପରିବର୍ତ୍ତନ ହେଲା ।

କୌଣସିଠାରେ କିଛି ଦୃଢ଼ତା ବା ସାମଞ୍ଜସ୍ୟ ରହିଲା ନାହିଁ । ଜୀବନ ନିଷ୍କ୍ରିୟାତ୍ମକ ଓ ପରିବର୍ତ୍ତନଶୀଳ ହେଲା ଏବଂ ଲୋକେ ଓ ଶ୍ରେଣୀ ସବୁ ବିଭିନ୍ନ ଦିଗରେ ଯାଉଥିଲେ ଓ ଧକ୍କା ଦେଉଥିଲେ । ତଥାପି ଲୋକେ କାରଣାସନ ଫେରାଇ ଆଣିବା ଲାଗି ଆଶା କରୁଥିଲେ ଓ ଷଡ଼ଯନ୍ତ୍ର କରୁଥିଲେ; କିନ୍ତୁ ସେମାନେ କିଛି ମୁଖ୍ୟ ଶ୍ରେଣୀର ପ୍ରତିନିଧି ନ ଥିଲେ ଏବଂ ଆମେ ତାଙ୍କ କଥା ବିଚାର ନ କରିପାରୁ । ପ୍ରଧାନ ସଂଘର୍ଷ ଲାଗିଲା ଅସ୍ଥାୟୀ ସରକାର ଓ ସୋଭିଏଟ ମଧ୍ୟରେ, ତଥାପି ସୋଭିଏଟର ଅଧିକ ସଂଖ୍ୟକ ସଭ୍ୟ ସରକାର ସହ ସହଯୋଗ ମିଳାମିଶା କରିବା ସପକ୍ଷରେ ଥିଲେ । ଯେଉଁମାନେ ମିଳାମିଶା ପାଇଁ ବ୍ୟଗ୍ରତା ଦେଖାଉଥିଲେ ସେମାନେ ସରକାରୀ ବ୍ୟାପାର ଓ ଷ୍ଟେଟ କ୍ଷମତା କାଳେ ତାଙ୍କୁ ଦିଆଯିବ ଏଥିଲାଗି ଭୟ କରୁଥିଲେ । "ସରକାର ସ୍ଥାନ କିଏ ନେବ ? ଆମେ ? କିନ୍ତୁ ଆମର ହାତ ଥରୁଛି···।" ଏହିପରି ଜଣେ ବକ୍ତା ସୋଭିଏଟରେ କହିଲେ । ଭାରତରେ ଅନେକ ପଙ୍ଗୁ ଓ ଭୟଭୀତ ଲୋକଙ୍କ ପାଖରୁ ଏପରି କଥା ଆମେ ସାଧାରଣତଃ ଶୁଣୁ । କିନ୍ତୁ ବେଳ ପହଞ୍ଚିଲା ବେଳକୁ କାମ କରିବା ପାଇଁ ବଳବାନ ହସ୍ତ ଓ ଦୃଢ଼ ହୃଦୟର କିଛି ଦେଶରେ ଅଭାବ ପଡ଼ିବ ନାହିଁ ।

ଉଭୟ ପକ୍ଷର ମିଳାମିଶା ପ୍ରୟାସୀ ଲୋକେ ଯେତେ ଏଡ଼ାଇବା ନିମନ୍ତେ ଚେଷ୍ଟା କରନ୍ତୁ ପଛକେ ଅସ୍ଥାୟୀ ସରକାର ଓ ସୋଭିଏଟ ଭିତରେ ସଂଘର୍ଷ ଅନିବାର୍ଯ୍ୟ ହେଲା । ଗଭର୍ଣ୍ଣମେଣ୍ଟ ଯୁଦ୍ଧ ଜାରି ରଖି ମିତ୍ର ଶକ୍ତିମାନଙ୍କୁ ସନ୍ତୁଷ୍ଟ କରିବାକୁ ଚେଷ୍ଟା କଲା ଏବଂ ଋଷର ସମ୍ପତ୍ତିବାନ ଶ୍ରେଣୀଙ୍କର ସମ୍ପତ୍ତି ଯଥାସମ୍ଭବ ରକ୍ଷା କରି ସେମାନଙ୍କୁ ସନ୍ତୁଷ୍ଟ କରିବାକୁ ଚେଷ୍ଟା କଲେ । ସୋଭିଏଟ ଜନତା ସହିତ ଅଧିକ ସମ୍ପର୍କରେ ଆସି ସେମାନଙ୍କର ଶାନ୍ତି ଓ କୃଷକଙ୍କର ଭୂମି ଏବଂ ଶ୍ରମିକମାନଙ୍କର ଦୈନିକ ଆଠଘଣ୍ଟା ଶ୍ରମ କରିବା ପ୍ରଭୃତି ଦାବୀ ବିଷୟ ଜାଣି ପାରିଲେ । ତେଣୁ ଏପରି ହେଲା ଯେ ସୋଭିଏଟ ଦ୍ୱାରା ସରକାର ଅଚଳ ହୋଇଗଲା

ଏବଂ ସୋଭିଏଟ ମଧ୍ୟ ଜନସାଧାରଣଦ୍ୱାରା ଅଚଳ ହୋଇପଡ଼ିଲା, କାରଣ ଜନସାଧାରଣ ଦଳ ଓ ନେତାମାନଙ୍କ ଅପେକ୍ଷା ଅଧିକ ବିପ୍ଳବୀ ଥିଲେ ।

ସରକାରକୁ ସୋଭିଏଟର ସମପନ୍ଥୀ କରିବା ନିମନ୍ତେ ଏକ ଉଦ୍ୟମ ହେଲା ଏବଂ ଜଣେ ଅଗ୍ରଗାମୀ ଓକିଲ ଓ ବିଚକ୍ଷଣ ବକ୍ତା କେରେନ୍‌ସ୍କି ସରକାରର ଜଣେ ମୁଖିଆ ସଭ୍ୟ ହେଲେ । ସେ ଏକ ମିଳିତ ସରକାର ସ୍ଥାପନ କରିବାରେ କୃତକାର୍ଯ୍ୟ ହେଲେ—ଏଥିକି ସୋଭିଏଟରେ ଥିବା ସଂଖ୍ୟାଗରିଷ୍ଠ ମେନ୍‌ସେଭିକମାନେ ପ୍ରତିନିଧି ପଠାଇଲେ । ସେ ଜର୍ମାନି ବିରୁଦ୍ଧରେ ଏକ ଅଭିଯାନ ଚଳାଇ ଇଂଲଣ୍ଡ ଓ ଫ୍ରାନ୍‌ସକୁ ମଧ୍ୟ ସନ୍ତୁଷ୍ଟ କରିବା ନିମନ୍ତେ ଚେଷ୍ଟା କଲେ । ସୈନ୍ୟ ଓ ଲୋକେ ଆଉ କେହି ଯୁଦ୍ଧ କରିବା ପାଇଁ ମନ ନ ଦେବାରୁ ଏହି ଆକ୍ରମଣ ବିଫଳ ହେଲା ।

ଇତ୍ୟବସରେ ନିଖିଳ ରୁଷ ସୋଭିଏଟ୍ କଂଗ୍ରେସମାନ ପେଟ୍ରୋଗ୍ରାଡ଼ରେ ହେଉଥିଲା ଏବଂ ପରବର୍ତ୍ତୀ ପ୍ରତ୍ୟେକ କଂଗ୍ରେସ ପୂର୍ବ ଅପେକ୍ଷା ଅଧିକ ଚରମପନ୍ଥୀ ହେଲା । ସେଠିକି ଅଧିକରୁ ଅଧିକ ବଲସେଭିକ ସଭ୍ୟ ନିର୍ବାଚିତ ହେଲେ ଏବଂ ଅନ୍ୟ ଦୁଇ ପ୍ରଧାନ ଦଳଙ୍କର—ମେନ୍‌ସେଭିକ ଓ ସୋସାଲ୍ ରିଭଲ୍ୟୁସନାରି (Social revolutionary – ଏହା ଏକ କୃଷକଦଳ) ବହୁମତ କମ୍ ହୋଇଗଲା । ବଲସେଭିକ ପ୍ରଭାବ ବଢ଼ିଲା ବିଶେଷ ଭାବରେ ପେଟ୍ରୋଗ୍ରାଡ଼ ଶ୍ରମିକଙ୍କ ଉପରେ । ସମଗ୍ର ଦେଶରେ ସୋଭିଏଟ୍ ଗଢ଼ି ଉଠିଥିଲା ଏବଂ ସୋଭିଏଟ ଦ୍ୱାରା ପୁନର୍ବାର ମଞ୍ଜୁର ନ ଦେଲେ ସେମାନେ ସରକାରୀ ହୁକୁମ ମାନିଲେ ନାହିଁ । ରୁଷରେ ବଳିଷ୍ଠ ମଧ୍ୟବିତ୍ତ ଶ୍ରେଣୀ ନଥିବାହିଁ ଅସ୍ଥାୟୀ ସରକାର ଦୁର୍ବଳ ହୋଇପଡ଼ିବାର ଗୋଟାଏ କାରଣ ।

ରାଜଧାନୀରେ କ୍ଷମତା ନେଇ ଯେତେବେଳେ ବିବାଦ ଲାଗିଥାଏ, ସେତେବେଳେ କୃଷକମାନେ ଆଇନ ଅଦାଲତକୁ ନଯାଇ ନିଜେ ନିଜେ ଆଇନ ଚଳାଇଲେ । ମୁଁ ତତେ କହିଛି, କୃଷକମାନେ ମାର୍ଚ୍ଚ ବିପ୍ଳବ ବିଷୟରେ ବିଶେଷ ଉତ୍ସାହୀ ନ ଥିଲେ କିମ୍ବା ସେମାନେ ଏହା ବିରୁଦ୍ଧରେ ନ ଥିଲେ । ସେମାନେ ଅପେକ୍ଷା କଲେ ଓ ଜଗିଲେ । କିନ୍ତୁ ବଡ ବଡ଼ ଇଷ୍ଟେଟର ଜମିଦାରମାନେ ସମ୍ପତ୍ତି ବାଜ୍ୟାପ୍ତ ହୋଇଯିବ ବୋଲି ଆଶଙ୍କା କରି ଗ୍ରେଟ ଗ୍ରେଟ ଟ୍ରୁକୁରାରେ ତାହା ବିଭକ୍ତ କରିଦେଲେ ଏବଂ ତାଁକୁ ମାଳ ମାଲିକଙ୍କ ହାତରେ ତାହା ଦେଇଥିଲେ ସେମାନେ ସ୍ୱାଙ୍କ ତରଫରୁ ତାହା ରଖିଲେ । ସେମାନେ ସେମାନଙ୍କର ଅନେକ ସମ୍ପତ୍ତି ବିଦେଶୀମାନଙ୍କୁ ଦେଇଦେଲେ । ଏହି ଭାବରେ ସେମାନେ ନିଜର ଜମି ରକ୍ଷା କରିବାକୁ ଚେଷ୍ଟା କଲେ । କୃଷକମାନେ ଏହା ଆଦୌ ପସନ୍ଦ କଲେ ନାହିଁ ଏବଂ ଗୋଟାଏ ଆଇନ କରି ସମସ୍ତ ଜମିବିକ୍ରୀ ବନ୍ଦ କରିବା ନିମନ୍ତେ ସେମାନେ ସରକାର ପାଖରେ ଦାବୀ କଲେ । ସରକାର ଇତସ୍ତତଃ ହେଲା; ଏହା କଣ କରିପାରନ୍ତା ? କୌଣସି ପକ୍ଷକୁ ବିରକ୍ତ କରିବାକୁ ଏହା ଚାହୁଁ ନଥିଲା । ତାପରେ କୃଷକମାନେ ନିଜେ ଏହାର ପ୍ରତିକାର

କରିବାକୁ ଲାଗିଲେ । ଏପ୍ରିଲ ମାସବେଳକୁ ସେମାନଙ୍କ ଭିତରୁ କେତେକ ସେମାନଙ୍କ ଜମିଦାରଙ୍କୁ ଗିରଫ କଲେ, ଜମିଦାରୀ ଦଖଲ କରି ଭାଗ ବାଣ୍ଟି କରିଦେଲେ । ଯୁଦ୍ଧ କ୍ଷେତ୍ରରୁ ଫେରିଥିବା ସୈନିକ (ସେମାନେ କଷ୍ଟସ୍ଥ କୃଷକ ଥିଲେ) ଏଥିରେ ମୁଖ୍ୟ ଭାଗ ନେଲେ । ଜମିସବୁ ବିସ୍ତୃତ ଆକାରରେ ଦଖଲ ହେବା ପର୍ଯ୍ୟନ୍ତ ଆନ୍ଦୋଳନ ଚାଲିଲା । ଏପରି ଜୁନମାସ ବେଳକୁ ସାଇବେରିଆର ମରୁପ୍ରାନ୍ତର ପର୍ଯ୍ୟନ୍ତ ବି ସେମାନେ ଚାଲିଗଲେ । ସାଇବେରିଆରେ କୌଣସି ବଡ଼ ଜମିଦାର ନ ଥିଲେ, ତେଣୁ କୃଷକମାନେ ଗିର୍ଜା ଓ ମଠ ଜମି ସବୁ ଦଖଲ କରିଦେଲେ ।

ଏଠାରେ ଲକ୍ଷ୍ୟ କରିବାର କଥା ଯେ ବଲସେଭିକ୍ ବିପ୍ଳବର ଅନେକ ମାସ ପୂର୍ବରୁ ଓ କୃଷକମାନଙ୍କର ନିଜ ଆଡ଼ୁ ହିଁ ଏହିସବୁ ବଡ଼ ବଡ଼ ଇଷ୍ଟେଟ ଦଖଲ କରିବା କାଣ୍ଡ ଚାଲିଲା । ସଙ୍ଗଠିତ ଭାବରେ ତତ୍‌କ୍ଷଣାତ୍ ଜମିସବୁ କୃଷକମାନଙ୍କୁ ଦେବା ସପକ୍ଷରେ ଲେନିନ୍ ଥିଲେ । ସେ ଏହି ଅଧାପନ୍ତରିଆ ଅରାଜକତା ଢଙ୍ଗରେ ଦଖଲ କରିବାର ପୂର୍ଣ୍ଣ ବିରୋଧୀ ଥିଲେ । ଏହିରୂପେ ବଲସେଭିକ୍‌ମାନେ ଯେତେବେଳେ କ୍ଷମତା ପାଇଲେ, ସେମାନେ ପରେ ଦେଖିଲେ ରୁଷ କୃଷକ ଭୂସ୍ୱତ୍ୱାଧିକାରୀଙ୍କ ଦେଶ ହୋଇ ଯାଇଛି ।

ଲେନିନ୍‌ଙ୍କର ଆଗମନର ଠିକ୍ ମାସକରେ ଆଉ ଜଣେ ବିଖ୍ୟାତ ନିର୍ବାସିତ ଲୋକ ପେଟ୍ରୋଗ୍ରାଡ଼କୁ ଫେରିଆସିଲେ । ଏ ହେଉଛନ୍ତି ଟ୍ରଟ୍‌ସ୍କି । ସେ ନିଉୟର୍କରୁ ଫେରିଲେ —ବାଟରେ ବ୍ରିଟିଶ ତାଙ୍କୁ ଅଟକାଇ ଦେଇଥିଲା । ଟ୍ରଟ୍‌ସ୍କି ଜଣେ ପୁରୁଣା ବଲସେଭିକ୍ ନ ଥିଲେ କିମ୍ବା ବର୍ତ୍ତମାନ ମେନ୍‌ସେଭିକ ବି ନ ଥିଲେ । କିନ୍ତୁ ସେ ଶୀଘ୍ର ଲେନିନ୍‌ଙ୍କ ପକ୍ଷ ନେଲେ ଏବଂ ପେଟ୍ରୋଗ୍ରାଡ଼ ସୋଭିଏଟ୍‌ରେ ସେ ମୁଖ୍ୟସ୍ଥାନ ଅଧିକାର କଲେ । ସେ ଜଣେ ଶ୍ରେଷ୍ଠ ବକ୍ତା, ସୁନ୍ଦର ଲେଖା ଏବଂ ବିଦ୍ୟୁତ୍ ବାଟେରି (Battery) ପରି ତେଜପୂର୍ଣ୍ଣ ଥିଲେ ଏବଂ ଲେନିନ୍‌ଙ୍କ ଦଳର ସେ ପ୍ରଧାନତମ ସହାୟକ ଥିଲେ । ତାଙ୍କର ଜୀବନ କାହାଣୀ ବହିକୁ "ମୋର ଜୀବନ" (My life) ବୋଲି କହନ୍ତି । ଏଥିରେ ମଡ଼ର୍ଣ୍ଣ ସର୍କସ୍ କୋଠାରେ ସେ ଯେଉଁ ବକ୍ତୃତା ଦେଇଥିଲେ, ତାହାର ଯାହା ବର୍ଣ୍ଣନା ଚହିଛି ସେଥିରୁ ଦୀର୍ଘ ଅଂଶ ଏଠାରେ ମୁଁ ଉଦ୍ଧାର କରିବି । ଏହା ଯେ କେବଳ ଏକ ସୁନ୍ଦର ଲେଖା ସେତିକି ନୁହେଁ, ୧୯୧୭ରେ ସେହି ଅଦ୍ଭୁତ ବିପ୍ଳବ ଦିବସରେ ପେଟ୍ରୋଗ୍ରାଡ଼ର ଜୀବନ୍ତ ଓ ସ୍ପନ୍ଦନକାରୀ ଚିତ୍ର ଏହା ଆମ ଆଖି ଆଗରେ ଦେଖାଇ ଦିଏ ।

"ବାୟୁମଣ୍ଡଳ ନିଃଶ୍ୱାସରେ ଓ ଅପେକ୍ଷା କରିବାରେ ଭାରାକ୍ରାନ୍ତ ହୋଇ ଯାଇଥିଲା —ମଡର୍ଣ୍ଣ ସର୍କସର ଚାର ପରିଚିତ ଉତ୍ସାହୀ ଚତ୍କାର ଆଦରେ ପରିପୂର୍ଣ୍ଣ ହୋଇଗଲା । ମୋ ଉପରେ ଓ ଚାରିକଡେ କେବଳ କହୁଣୀ, ଛାତି ଓ ମୁଣ୍ଡସବୁ ଦେଖି ପାରିଲି । ମୁଁ ମାନବ ଶରୀରର ଏକ ଉଷ୍ଣଗୁହା ଭିତରୁ କହୁଥିଲି; ଯେତେବେଳେ ମୁଁ ମୋ ହାତ ଲମ୍ବାଏ, କାହାରିକି ହେଲେ ସ୍ପର୍ଶ କରିପକାଏ । ସାଙ୍ଗେ ସାଙ୍ଗେ ଏକ କୃତଜ୍ଞତାପରାୟଣ ଭାବଦ୍ୱାରା ମୋତେ ଜଣାଇ

ଦିଆଯାଏ ଯେ ଏଥିପାଇଁ ବ୍ୟସ୍ତହେବା ଦରକାର ନାହିଁ, ମୋର ବକ୍ତୃତା ବନ୍ଦ ନ କରି ଚଳାଇବା ଦରକାର । ଅବସନ୍ନ ହୋଇ ପଡ଼ିଲେ ସୁଦ୍ଧା କୌଣସି ବକ୍ତା ଏହି ଉତ୍ସାହୀ ଲୋକମେଳର ବୈଦ୍ୟୁତିକ ଚଞ୍ଚଳତାକୁ ପ୍ରତିରୋଧ କରିପାରିବ ନାହିଁ । ସେମାନେ ଜାଣିବା ପାଇଁ, ବୁଝିବା ପାଇଁ, ସେମାନଙ୍କର ବାଟ ପାଇବା ପାଇଁ ବ୍ୟଗ୍ର ଥିଲେ । ଏହି ବିରାଟ ଜନତା ଗୋଟିଏ ଜିନିଷରେ ନିବିଷ୍ଟ ହୋଇ ଯାଇଥାଏ ଏବଂ ବେଳେବେଳେ ଏହାର ଅନୁସନ୍ଧିତ୍ସା ଭାବ ମୁଁ ମୋର ଓଠରେ ଅନୁଭବ କଲାପରି ବୋଧକରେ । ସେତେବେଳେ ଆଗରୁ ଚିନ୍ତା କରିଥିବା ସମସ୍ତ ଯୁକ୍ତି ଓ ଶବ୍ଦ ଏହି ଅନୁକମ୍ପା-ବ୍ୟଞ୍ଜକ ସହାନୁଭୂତି ଉପରେ ଭାଙ୍ଗି ପଡ଼େ ଓ ପଛକୁ ହଟିଯାଏ ଏବଂ ମୋର ଅର୍ଦ୍ଧଚେତନା ସ୍ଥଳରୁ ପୂର୍ଣ୍ଣପର୍ଯ୍ୟାୟ କ୍ରମେ ଅନ୍ୟ ଶବ୍ଦ, ଅନ୍ୟ ଯୁକ୍ତିସବୁ ବାହାରି ଆସେ—ବକ୍ତା ଏହା ଆଦୌ ଆଶାକରି ନ ଥାଏ; କିନ୍ତୁ ଜନସାଧାରଣଙ୍କର ଏହା ଦରକାର ଥାଏ । ଏପରି ଅବସ୍ଥାରେ ମୁଁ ମନେକରେ ଯେତେକି ମୁଁ ବାହାରୁ ବକ୍ତାର ଭାଷଣ ଶୁଣୁଛୁ ଏବଂ ମୋର ବିବେକୀ ଯୁକ୍ତି ଶବ୍ଦରେ ନିଦ୍ରାଚର ପରି ସେ କାଳେ ଛାତ-ଧାରରୁ ଖସି ପଡ଼ିବ ଏହି ଭୟରେ ମୁଁ ତା'ର ଭାବଧାରା ସହିତ ପାଦ ପକାଇ ଚାଲିବା ପାଇଁ ଚେଷ୍ଟା କରେ ।

ମଡ଼ର୍ଣ୍ଣି ସର୍କସ ଏପରି ଥିଲା । ଏହାର ନିଜର ପରିଧି, ଉତ୍ତେଜନା, କୋମଳତା ଓ ବାତୁଳତା ଥିଲା । ଶିଶୁମାନେ ଶାନ୍ତିପୂର୍ଣ୍ଣ ଭାବରେ ସ୍ତନରୁ ଦୁଧ ପାନ କରୁଥାନ୍ତି—ସେଥିରୁ ଆଦର ଅଥବା ଧମକ ଦେଖାଇଲା ଭଳି ଚିତ୍କାରମାନ ଉଠୁଛି । ସମଗ୍ର ଜନତା ଏହିପରି ଥିଲା—ଶିଶୁମାନଙ୍କ ପରି ସେମାନେ ତାଙ୍କର ଶୁଖିଲା ଓଠରେ ବିପ୍ଳବ-ସ୍ତନବୃନ୍ତକୁ କାମୁଡ଼ି ଧରିଥିଲେ । କିନ୍ତୁ ଏହି ଶିଶୁ ଶୀଘ୍ର ପୂର୍ଣ୍ଣ-ବୟସ୍କ ହୋଇଗଲା ।''

ଏହିରୂପେ ସଦା-ପରିବର୍ତ୍ତନଶୀଳ ବିପ୍ଳବ ନାଟକ ପେଟ୍ରୋଗ୍ରାଡ଼ ଓ ରୁଷର ଅନ୍ୟ ସହର ଏବଂ ଗ୍ରାମମାନଙ୍କରେ ଚାଲିଲା । ଶିଶୁ ପୂର୍ଣ୍ଣବୟସ୍କ ହେଲା ଏବଂ ବଡ଼ ହେଲା । ଭୀଷଣ ଯୁଦ୍ଧ ଉପରେ ପ୍ରତ୍ୟେକ ସ୍ଥାନରେ ଆର୍ଥିକ ଅବସ୍ଥା ଭୁଶୁଡ଼ିପଡ଼ିବା ପରି ଦେଖାଗଲା । ତଥାପି ମୁନାଫାଖୋରମାନେ ଯୁଦ୍ଧରୁ ଲାଭ କରୁଥିଲେ ।

କଲ କାରଖାନା ଓ ସୋଭିଏଟ୍‌ଗୁଡ଼ିକରେ ବଲ୍‌ସେଭିକ ଶକ୍ତି ଓ ପ୍ରଭାବ ବଢ଼ିବାରେ ଲାଗିଗଲା । ଏଥିରେ ଆତଙ୍କିତ ହୋଇ କେରେନ୍‌ସ୍କି ସେମାନଙ୍କୁ ଦବାଇବା ନିମନ୍ତେ ସ୍ଥିରକଲେ । ପ୍ରଥମେ ଲେନିନ୍‌ଙ୍କ ବିରୁଦ୍ଧରେ ନାନା ପ୍ରପଞ୍ଚପ୍ରଚାର ଚାଲିଲା—ରୁଷରେ ଗୋଳମାଳ କରିବାପାଇଁ ସେ ଜର୍ମାନ ଏଜେଣ୍ଟରୂପେ ଆସିଛନ୍ତି ବୋଲି ବର୍ଣ୍ଣନା କରାଗଲା । ଜର୍ମାନ କର୍ତ୍ତୃପକ୍ଷଙ୍କ ଗୋଚରରେ ସେ ସୁଇଜରଲାଣ୍ଡରୁ ଜର୍ମାନ ଦେଶ ପାରହୋଇ ଆସି ନାହାନ୍ତି କି ? ମଧ୍ୟବିତ୍ତଶ୍ରେଣୀଙ୍କ ଭିତରେ ଲେନିନ ଭୀଷଣ ଅପ୍ରିୟ ହୋଇ ଉଠିଲେ—ସେମାନେ ତାଙ୍କୁ ବିଶ୍ୱାସଘାତକ ବୋଲି ବିଚାରିଲେ । ବିପ୍ଳବୀ ହେଉ ନୁହେଁ, ଜର୍ମାନ ଏଜେଣ୍ଟ ବୋଲି ଲେନିନ୍‌ଙ୍କୁ ଗିରଫ କରିବା ନିମନ୍ତେ କେରେନ୍‌ସ୍କି ଓ୍ୱାରେଣ୍ଟ ବାହାର

କଲେ । ଏହି ଅଭିଯୋଗ ଅପ୍ରମାଣ କରି ଦେବାପାଇଁ ଗୋଟିଏ ବିଚାରର ସମ୍ମୁଖୀନ ହେବା ନିମନ୍ତେ ଲେନିନ୍ ଭାରି ବ୍ୟଗ୍ର ଥିଲେ; ତାଙ୍କର ସହକର୍ମୀମାନେ ଏଥିରେ ସମ୍ମତ ହେଲେ ନାହିଁ ଏବଂ ଲୁଚି ରହିବା ନିମନ୍ତେ ତାଙ୍କୁ ବାଧ୍ୟକଲେ । ଟ୍ରଟ୍‌ସ୍କିଙ୍କୁ ମଧ୍ୟ ଗିରଫ କରାଗଲା; କିନ୍ତୁ ପେଟ୍ରୋଗ୍ରାଡ଼୍ ସୋଭିଏଟ୍ ଜୋର ଦେବାରୁ ପରେ ତାଙ୍କୁ ମୁକ୍ତ କରିଦିଆଗଲା । ଆହୁରି ଅନେକ ବଲ୍‌ସେଭିକ୍ ଗିରଫ ହେଲେ, ସେମାନଙ୍କ ସମ୍ବାଦପତ୍ର ବନ୍ଦ କରିଦିଆଗଲା । ଯେଉଁ ଶ୍ରମିକମାନେ ସେମାନଙ୍କୁ ସମର୍ଥନ କଲାପରି ଜଣାପଡ଼ିଲା ତାଙ୍କୁ ନିରସ୍ତ୍ର କରାଗଲା । ଅସ୍ଥାୟୀ ସରକାର ପ୍ରତି ଏକ ଆକ୍ରମଣସୂଚକ ଓ ଧମକଯୁକ୍ତ ମନୋଭାବ ଏହି ଶ୍ରମିକମାନଙ୍କ ଭିତରେ ଅଧିକ ଭାବରେ ବୃଦ୍ଧି ପାଇଲା ଏବଂ ସରକାର ବିରୁଦ୍ଧରେ ପ୍ରକାଣ୍ଡ ବିକ୍ଷୋଭ ପ୍ରଦର୍ଶନମାନ ବରାବର ହେଉଥାଏ ।

ପ୍ରତି-ବିପ୍ଳବ ମୁଣ୍ଡ ଟେକିବାରୁ ଗୋଟିଏ କ୍ଷୁଦ୍ର ନାଟିକା ବି ଖେଳ ହୋଇଗଲା । ଅସ୍ଥାୟୀ ସରକାର ସମେତ ସମଗ୍ର ବିପ୍ଳବକୁ ଦମନ କରିବା ନିମନ୍ତେ ଜଣେ ବୃଦ୍ଧ ସେନାପତି କର୍ଣ୍ଣିଲଭ ଏକ ସେନାବାହିନୀ ସାଙ୍ଗରେ ଧରି ରାଜଧାନୀକୁ ଅଗ୍ରସର ହେଲେ । ସେ ସହରର ନିକଟ ହେଲାବେଳକୁ ତାଙ୍କର ସେନା ଭାଙ୍ଗିଗଲା । ସୈନ୍ୟମାନେ ବିପ୍ଳବ ପକ୍ଷରେ ମିଶିଗଲେ ।

ଦ୍ରୁତବେଗରେ ଘଟଣା ଗତିକଲା । ସୋଭିଏଟ୍ ନିର୍ଦ୍ଦିଷ୍ଟ ଭାବରେ ସରକାରର ପ୍ରତିଦ୍ୱନ୍ଦ୍ୱୀ ହୋଇ ଠିଆହେଲା ଏବଂ ଅନେକ ସମୟରେ ସରକାରୀ ହୁକୁମକୁ ନାକଚ କରିଦେଲା କିମ୍ବା ଠିକ୍ ବିପରୀତ ହୁକୁମ ଜାରିକଲା । ପେଟ୍ରୋଗ୍ରାଡ଼ରେ ବିପ୍ଳବର ସଦର ଅଫିସ ଏବଂ ସୋଭିଏଟ୍ ସରକାରର ରାଷ୍ଟ୍ରଘର ହେଲା ସ୍ମୋଲ୍‌ନି ଇନ୍‌ଷ୍ଟିଚ୍ୟୁଟ । ସାମନ୍ତମାନଙ୍କର ଝିଅମାନଙ୍କ ପଢ଼ିବାପାଇଁ ଏହା ଘରୋଇ ସ୍କୁଲ ହୋଇ ରହିଥିଲା ।

ଲେନିନ୍ ପେଟ୍ରୋଗ୍ରାଡ଼୍ ସହରତଳି ଅଞ୍ଚଳକୁ ଆସିଲେ ଏବଂ ବଲସେଭିକମାନେ ସ୍ଥିର କଲେ ଯେ ଅସ୍ଥାୟୀ ସରକାର ହାତରୁ କ୍ଷମତା ନେଇ ଆସିବାର ସମୟ ପହଞ୍ଚିଲାଣି । ବିଦ୍ରୋହର ସମସ୍ତ ବ୍ୟବସ୍ଥାର ଭାର ଟ୍ରଟ୍‌ସ୍କିଙ୍କ ଉପରେ ଦିଆଗଲା ଏବଂ ପ୍ରତ୍ୟେକ ଜିନିଷ ଯତ୍ନର ସହିତ ଯୋଜନା କରାଗଲା—କେଉଁସବୁ ଘାଟିଜାଗା ଦଖଲ କରାହେବ ଓ କେତେବେଳେ ଇତ୍ୟାଦି । ଏହି ବିଦ୍ରୋହଲାଗି ନଭେମ୍ବର ୭ ତାରିଖ ସ୍ଥିର କରାଗଲା । ସେହିଦିନ ନିଖିଳ ରୁଷ ସୋଭିଏଟ୍ କଂଗ୍ରେସର ଅଧିବେଶନ ହେବାର ଥାଏ । ଲେନିନ୍ ଏହି ତାରିଖ ଧାର୍ଯ୍ୟ କଲେ ଏବଂ ଏଥିପାଇଁ ସେ ଯେଉଁ କାରଣ ଦେଖାଇଥିଲେ ତାହା ବଡ଼ ମଜାର କଥା । ସେ କହିଥିବାର ଶୁଣାଯାଏ ଯେ 'ନଭେମ୍ବର ୬ ତାରିଖ ବଡ଼ ଜଲ୍‌ଦି ହୋଇଯିବ । କୌଣସି ଜାଗରଣ ସମଗ୍ର ରୁଷବ୍ୟାପୀ ହେବା ଦରକାର ଏବଂ ୬ ତାରିଖରେ ସମସ୍ତ ପ୍ରତିନିଧି ପହଞ୍ଚି ପାରି ନ ଥିବେ । ଅନ୍ୟ ପକ୍ଷରେ ନଭେମ୍ବର ୮ ତାରିଖ ମଧ୍ୟ ବହୁତ ବିଳମ୍ବ ହୋଇଯିବ । ସେତେବେଳକୁ କଂଗ୍ରେସ ସଙ୍ଗଠିତ ହୋଇଯାଇଥିବ ଏବଂ ଏକ ବିଶାଳ ଜନ-ସଂସ୍ଥା ପକ୍ଷରେ

ଶୀଘ୍ର ଓ ନିଷ୍ପତ୍ତିମୂଳକ କାର୍ଯ୍ୟ କରିବା କଷ୍ଟକର ହେବ । ଅତଏବ ନଭେମ୍ବର ୭ ତାରିଖ, ଯେଉଁଦିନ କଂଗ୍ରେସ ବୈଠକ ବସୁଛି, ସେଦିନ ଅବଶ୍ୟ କାର୍ଯ୍ୟ ଆରମ୍ଭ କରିବାକୁ ହେବ, ତାହାହେଲେ ଆମେ ତାଙ୍କୁ କହିପାରିବା—"ଏହି କ୍ଷମତା; ତମେ ଏହା ନେଇ କଣ କରିବ ?" ବିପ୍ଳବରେ ଜଣେ ବିଶେଷଜ୍ଞ ଏପରି କହିଥିଲେ, ସେ ପୂର୍ଣ୍ଣ ଭାବରେ ଜାଣିଥିଲେ ଯେ ଆପାତତଃ ନଗଣ୍ୟ ଘଟଣାମାନଙ୍କ ଉପରେ ଅନେକ ସମୟରେ ବିପ୍ଳବର ସଫଳତା ନିର୍ଭର କରେ । *

ନଭେମ୍ବର ୭ ତାରିଖ ଆସିଲା । ସୋଭିଏତ୍ ସୈନ୍ୟ ଯାଇ ସରକାରୀ କୋଠାବାଡ଼ି ଦଖଲ କଲେ—ବିଶେଷଭାବରେ ଟେଲିଗ୍ରାଫ୍ ଅଫିସ୍, ଟେଲିଫୋନ୍, ଟେଲିଫୋନ୍ ଏକ୍ସଚେଞ୍ଜ ଓ ଷ୍ଟେଟ ବ୍ୟାଙ୍କ ପରି ଘାଟିସ୍ଥାନ ସବୁ ଦଖଲ କଲେ । କୌଣସି ବିରୋଧ ହେଲାନାହିଁ । ଜଣେ ବ୍ରିଟିଶ ଏଜେଣ୍ଟ ଯେଉଁ ସରକାରୀ ରିପୋର୍ଟ ଇଂଲଣ୍ଡକୁ ପଠାଇଥିଲା ସେଥିରେ ଲେଖିଥିଲା "ଅସ୍ଥାୟୀ ସରକାର କେବଳ ମିଳେଇ ଗଲା ।"

ଲେନିନ୍ ଏହି ନୂଆ ସରକାରର ମୁଖିଆ, ସଭାପତି ହେଲେ ଏବଂ ଟ୍ରଟ୍‌ସ୍କି ବୈଦେଶିକ ମନ୍ତ୍ରୀ ହେଲେ । ତତ୍ପରଦିନ ନଭେମ୍ବର ୮ ତାରିଖରେ ସ୍ମୋଲ୍ ଇନ୍‌ଷ୍ଟିଚ୍ୟୁଟ୍‌ରେ ସୋଭିଏତ୍ କଂଗ୍ରେସକୁ ଲେନିନ୍ ଆସିଲେ । ଏହା ସାନ୍ଧ୍ୟକାଳ; ଜଣେ ଆମେରିକାନ୍ ସାମ୍ବାଦିକ ରିଡ୍ ସେତେବେଳେ ସେଠି ଉପସ୍ଥିତ ଥିଲେ—"ମହାନ୍ ଲେନିନ୍" ବକ୍ତୃତା ମଞ୍ଚଉପରକୁ ଆସିଲାବେଳେ କିପରି ଦେଖାଯାଉଥିଲେ ତାହା ସେ ବର୍ଣ୍ଣନା କରିଛନ୍ତି—

"ଜଣେ ଗେଡ଼ା ଓ ମୋଟାଲୋକ, ତାଙ୍କ କାନ୍ଧ ଉପରେ ଏକ ବଡ଼ ମସ୍ତକ ରଖା-ହୋଇଛି—ସାହସୀ ଓ ବିଚକ୍ଷଣ । ଛୋଟ ଛୋଟ ଆଖି, ଚେପ୍‌ଟା ନାକ, ଚଉଡ଼ା ମୁହଁ ଓ ବଡ଼ ଚିବୁକ, ଏବେ ଚିକ୍‌କଣ ଖିଅର ହୋଇଥିଲେ; ମାତ୍ର ତାଙ୍କର ଅତୀତ ଓ ଭବିଷ୍ୟତ ପ୍ରସିଦ୍ଧ ଦାଢ଼ୀର ଛୋଟ ଛୋଟ ଗୁଢ଼ ଗଜାଉଥାଏ । ଅସୁନ୍ଦର ପୋଷାକ ପିନ୍ଧିଥାନ୍ତି, ପାଇଜାମା

---

* ବଲ୍‌ସେଭିକଙ୍କର କ୍ଷମତା ଦଖଲ କରିବା ତାରିଖ ଏହି ନଭେମ୍ବର ୭ ତାରିଖ ଦିନ ହେବ ବୋଲି ଲେନିନ୍ ସ୍ଥିର କରିବା କଥା ଆମେରିକାନ୍ ସାମ୍ବାଦିକ ରିଡ୍ ଲେଖିଛନ୍ତି; ସେ ସେତେବେଳେ ପେଟ୍ରୋଗ୍ରାଡ଼ରେ ଥିଲେ । କିନ୍ତୁ ଅନ୍ୟ ଯେଉଁମାନେ ଉପସ୍ଥିତ ଥିଲେ ସେମାନେ ତାହା ଗ୍ରହଣ କରନ୍ତି ନାହିଁ । ଲେନିନ୍ ଗୋପନରେ ରହିଥିଲେ ଏବଂ ତାଙ୍କର ଭୟ ଥିଲା ଯେ ଅନ୍ୟ ବଲ୍‌ସେଭିକ ନେତାମାନେ ଆଳସ୍ୟ କରି ଦେଇପାରନ୍ତି ଏବଂ ଠିକଣାବେଳ ଗତ ହୋଇଯାଇପାରେ । ସେଥିପାଇଁ କାର୍ଯ୍ୟଲାଗି ସେ ସେମାନଙ୍କୁ ବରାବର ଜୋର ଦେଉଥିଲେ । ନଭେମ୍ବର ୭ ତାରିଖରେ ଘଣ୍ଟବେଳ ପହଞ୍ଚିବାରୁ ସେଦିନ କାର୍ଯ୍ୟ କରାଗଲା ।

ଖୁବ୍ ଲମ୍ବା । ଜନତାର ଆଦର୍ଶ ହେବାଭଳି କୌଣସି ପ୍ରଭାବଶାଳୀ ଜିନିଷ ଦେଖାଯାଉନାହିଁ । ଏ ଜଣେ ଅଦ୍ଭୁତ ଜନପ୍ରିୟ ନେତା - କେବଳ ନିଜର ବୁଦ୍ଧି ହେତୁ ନେତା ହୋଇଛନ୍ତି —ନିର୍ଲିପ୍ତ ହାସ୍ୟରସହୀନ, ଅଟଳ ଏବଂ ନିଃସଙ୍ଗ । ଟିକିଏ ହେଲେ ବିଶେଷତ୍ୱ ତାଙ୍କଠାରେ ଦେଖାଯାଏ ନାହିଁ—କିନ୍ତୁ ବଡ଼ ବଡ଼ ଭାବଧାରାକୁ ସରଳ ଭାଷାରେ, ଜଟିଳ ପରିସ୍ଥିତିକୁ ଛିନ୍‌ଭିନ୍ ବିଶ୍ଳେଷଣ କରିବାର ଶକ୍ତି ରହିଛି । ତୀକ୍ଷ୍ଣ ବୁଦ୍ଧି ସହ ତାଙ୍କଠାରେ ମହାନ୍ ନୈତିକ ସାହସ ବି ଥିଲା ।

ବର୍ଷକ ଭିତରେ ଦ୍ୱିତୀୟ ବିପ୍ଳବ କୃତକାର୍ଯ୍ୟ ହେଲା ଏବଂ ଏପର୍ଯ୍ୟନ୍ତ ଏହା ଅପୂର୍ବ ଭାବରେ ଶାନ୍ତିପୂର୍ଣ୍ଣ ଥିଲା । ସାମାନ୍ୟ ମାତ୍ର ରକ୍ତପାତ ନ ହୋଇ କ୍ଷମତା ହସ୍ତାନ୍ତର ହୋଇଗଲା । ମାର୍ଚ୍ଚରେ ଆହୁରି ଅଧିକ ଯୁଦ୍ଧ ଓ ହତ୍ୟା ହୋଇଥିଲା । ମାର୍ଚ୍ଚ ବିପ୍ଳବ ସ୍ୱତଃପ୍ରବୃତ୍ତ ଓ ଅସଂଗଠିତ ଥିଲା । ନଭେମ୍ବର ବିପ୍ଳବଟି ଯତ୍ନର ସହିତ ଯୋଜନା କରାଯାଇଥିଲା । ଇତିହାସରେ ପ୍ରଥମଥର ପାଇଁ ଦରିଦ୍ରଶ୍ରେଣୀ ବିଶେଷ ଭାବରେ କାରଖାନା ଶ୍ରମିକଶ୍ରେଣୀଙ୍କ ପ୍ରତିନିଧିମାନେ ଦେଶରେ ପ୍ରଭୁତ୍ୱ ପାଇଲେ । କିନ୍ତୁ ଏହି ସଫଳତା କିଛି ଏଡ଼େ ସହଜ ବ୍ୟାପାର ନୁହେଁ । ତାଙ୍କ ଚତୁର୍ଦ୍ଦିଗରେ ଝଞ୍ଜା ବୋହି ଆସୁଥିଲା—ତାର କ୍ରୋଧକୁ ଆୟତ୍ତ କରି ନ ପାରି ଏହା ଉପରେ ଅଜାଡ଼ି ଦେଲା ।

ଲେନିନ୍ ଓ ତାଙ୍କର ନୂତନ ବଲ୍‌ସେଭିକ୍ ସରକାରଙ୍କୁ କି ପରିସ୍ଥିତିର ସମ୍ମୁଖୀନ ହେବାକୁ ପଡ଼ିଲା ? ରୁଷସେନା ଭାଙ୍ଗି ପଡ଼ିଥିଲେ ସୁଦ୍ଧା, ଯୁଦ୍ଧ କରିବାର ସୁବିଧା ନ ଥାଇ ସୁଦ୍ଧା ଜର୍ମାନ ଯୁଦ୍ଧ ତେବେ ବି ଚାଲିଥାଏ; ସମଗ୍ର ଦେଶରେ ବିଶୃଙ୍ଖଳା ସୃଷ୍ଟି ହୋଇଛି ଏବଂ ଭୂଲା ସୈନିକ ଓ ଦସ୍ୟୁଦଳ ନିଜର ଯଥେଚ୍ଛା ବ୍ୟବହାର କରୁଛନ୍ତି; ଆର୍ଥିକ ସ୍ଥିତି ଭାଙ୍ଗି ପଡ଼ିଛି; ଖାଦ୍ୟ ଅଭାବ ଘଟିଛି ଓ ଲୋକେ ଖାଇବାକୁ ପାଉନାହାନ୍ତି; ଚତୁର୍ଦ୍ଦିଗରେ ପୁରାତନ ସମାଜର ପ୍ରତିନିଧିମାନେ ବିପ୍ଳବ ଦମନ କରିଦେବା ନିମନ୍ତେ ପ୍ରସ୍ତୁତ ହୋଇ ରହିଛନ୍ତି ଓ ଷ୍ଟେଟର ସଂଗଠନ ସମ୍ପୂର୍ଣ୍ଣ ବାଧା ସ୍ଥିତିରେ ହୋଇ ରହିଛି ଏବଂ ପୁରାତନ ସରକାରୀ କର୍ମଚାରୀ ନୂତନ ସରକାର ସହିତ ସହଯୋଗ କରିବାକୁ ଅସ୍ୱୀକାର କରୁଛନ୍ତି; ବ୍ୟାଙ୍କରମାନେ ଧନ ଦେଉନାହାନ୍ତି । ଏପରି କି ଟେଲିଗ୍ରାଫ୍ ଅଫିସ ବି ଟେଲିଗ୍ରାଫ୍ ପଠାଉ ନାହିଁ । ଏପରି ଏକ କଷ୍ଟକର ପରିସ୍ଥିତିରେ ସର୍ବାପେକ୍ଷା ସାହସୀ ଲୋକ ବି ଭୟଚକିତ ହୋଇଯିବ ।

ଲେନିନ୍ ଓ ତାଙ୍କ ସହକର୍ମୀମାନେ କାମରେ ଲାଗିପଡ଼ିଲେ । ସେମାନଙ୍କର ପ୍ରଥମ ବ୍ୟାକୁଳତା ହେଲା ଜର୍ମାନ ସହିତ ଶାନ୍ତି ପ୍ରତିଷ୍ଠା କରିବା ଏବଂ ସେମାନେ ତତ୍‌କ୍ଷଣାତ୍ ସନ୍ଧି ପାଇଁ ବନ୍ଦୋବସ୍ତ କରିଦେଲେ । ଦୁଇ ଦେଶର ପ୍ରତିନିଧିମାନେ ବ୍ରେଷ୍ଟ ଲିଟୋଭ୍‌ସ୍କିଠାରେ ଭେଟ ହେଲେ । ଜର୍ମାନମାନେ ଭଲରୂପେ ଜାଣିଥିଲେ ଯେ ବଲସେଭିକଙ୍କ ସହ ଆଉ ଯୁଦ୍ଧ କରିବାକୁ ପଡ଼ିବ ନାହିଁ ଏବଂ ସେମାନଙ୍କର ଗର୍ବ ଓ ନିର୍ବୋଧପଣିଆ ଦେଖାଇ ସେମାନେ ଅତି ଭୀଷଣ ଓ ଅପମାନଜନକ ଦାବୀମାନ କଲେ । ବଲ୍‌ସେଭିକ୍ ଖୁବ୍ ଶାନ୍ତି କାମନା

କରୁଥିଲେ ସୁଦ୍ଧା ଏହା ଦେଖି ଅବାକ୍ ହୋଇଗଲେ ଏବଂ ଅନେକେ ସନ୍ଧି ସର୍ତ୍ତ ପ୍ରତ୍ୟାଖ୍ୟାନ କରିବା ନିମନ୍ତେ କହିଲେ । ଯେକୌଣସି ମତେ ଶାନ୍ତି ପ୍ରତିଷ୍ଠା ପକ୍ଷରେ ଲେନିନ ଗଲେ । ଗୋଟିଏ କଥା ପ୍ରଚଳିତ ଅଛି—ଏହି ଶାନ୍ତି ସମ୍ମିଳନୀକୁ ପ୍ରତିନିଧି ରୂପେ ଯାଇଥିବାବେଳେ ଟ୍ରଟ୍‌ସ୍କିଙ୍କୁ ସାନ୍ଧ୍ୟ-ପୋଷାକ ପିନ୍ଧି ଗୋଟିଏ ଉତ୍ସବକୁ ଯିବାନିମନ୍ତେ ଜର୍ମାନମାନେ କହିଲେ । ସେ ବିଚଳିତ ହୋଇ ପଡ଼ିଲେ । ଏ ପ୍ରକାର ବୁର୍ଜୋୟା ପୋଷାକ ପିନ୍ଧିବା ଜଣେ ଶ୍ରମିକ ପ୍ରତିନିଧି ପକ୍ଷରେ ଉପଯୁକ୍ତ କି ? ସେ ପରାମର୍ଶ ଲାଗି ଲେନିନ୍‌ଙ୍କୁ ତାର କଲେ ଏବଂ ଲେନିନ୍ ତତ୍‌କ୍ଷଣାତ୍ ଉତ୍ତର ଦେଲେ—"ଯଦି ଶାନ୍ତି ଆଣିବାରେ ସାହାଯ୍ୟ କରେ ତେବେ ପେଟିକୋଟ (ନାରୀଙ୍କର) ପିନ୍ଧି ଯାଅ !"

ସୋଭିଏଟ୍ ଶାନ୍ତିସର୍ତ୍ତ ସମ୍ବନ୍ଧରେ ଯୁକ୍ତି କରୁଥିଲା ବେଳେ ଜର୍ମାନମାନେ ପେଟ୍ରୋଗ୍ରାଡ୍ ଆଡ଼କୁ ଅଗ୍ରସର ହେବାକୁ ଆରମ୍ଭ କଲେ ଏବଂ ସେମାନେ ପୂର୍ବଠାରୁ ଶାନ୍ତି ସର୍ତ୍ତ ଆହୁରି କଠୋର କରିଦେଲେ । ଶେଷରେ ସୋଭିଏଟ ଲେନିନଙ୍କ ପ୍ରସ୍ତାବକୁହିଁ ଗ୍ରହଣ କଲା ଏବଂ ଯେତେ ଘୃଣା କରୁଥିଲେ ସୁଦ୍ଧା ୧୯୧୮ ମସିହା ମାର୍ଚ୍ଚ ମାସରେ ସେମାନେ ବ୍ରେଷ୍ଟ-ଲିଟୋଭସ୍କି ସନ୍ଧିସର୍ତ୍ତ ସ୍ୱାକ୍ଷର କଲେ । ଏହି ଶାନ୍ତି ଫଳରେ ରୁଷ ପଶ୍ଚିମର ଏକ ପ୍ରକାଣ୍ଡ ଅଞ୍ଚଳ ଜର୍ମାନୀରେ ସଂଯୋଗ ହେଲା; କିନ୍ତୁ ଯେକୌଣସି ମୂଲ୍ୟ ବିନିମୟରେ ସନ୍ଧି ସ୍ୱୀକାର କରିବାକୁ ପଡ଼ିଲା; କାରଣ ଲେନିନ କହିବା ଅନୁସାରେ "ସୈନିକମାନେ ଶାନ୍ତି ପାଇଁ ଭୋଟ ଦେଇଛନ୍ତି ।"

ପ୍ରଥମେ ବିଶ୍ୱଯୁଦ୍ଧରେ ବ୍ୟାପୃତ ସବୁ ଦେଶରେ ଶାନ୍ତି ଆଣିବା ନିମନ୍ତେ ସୋଭିଏଟ୍ ଚେଷ୍ଟା କରିଥିଲା । ସେମାନେ କ୍ଷମତା ଅଧିକାର କରିବାର ପର ଦିବସ ହିଁ ଶାନ୍ତି ପ୍ରସ୍ତାବ କରି ପୃଥିବୀ ଆଗରେ ଏକ ଘୋଷଣା କଲେ ଏବଂ ସେମାନେ ପରିଷ୍କାର କରିଦେଲେ ଯେ ଜାରଙ୍କ ଅମଳରେ ଗୁପ୍ତରେ ହୋଇଥିବା ସମସ୍ତ ସନ୍ଧିର ଦାବୀକୁ ସେମାନେ ଛାଡ଼ି ଦେଉଛନ୍ତି । ସେମାନେ କହିଲେ କନ୍‌ଷ୍ଟାଣ୍ଟିନୋପଲ୍ ଅବଶ୍ୟ ତୁର୍କି ରାଜ୍ୟ ଭିତରେ ରହିବ ଏବଂ ଆଉ ଅଧିକ ସଂଯୋଗ ହେବନାହିଁ । ସୋଭିଏଟ୍ ପ୍ରସ୍ତାବ କେହି ଶୁଣିଲେ ନାହିଁ । କାରଣ ଉଭୟ ଯୁଦ୍ଧରତ ଦଳଙ୍କର ସଫଳ ହେବାର ଆଶା ଥିଲା ଏବଂ ଯୁଦ୍ଧର ଲାଭ ବାଣ୍ଟିନେବା ଲାଗି ସେମାନେ ବ୍ୟସ୍ତ ଥିଲେ । ଆଂଶିକ ଭାବରେ ସୋଭିଏଟ୍ ଶାନ୍ତି ପ୍ରସ୍ତାବ କରିବା ମୂଳରେ ପ୍ରଚାରର ମତଲବ ଥିଲା । ପ୍ରତ୍ୟେକ ଦେଶର ଜନସାଧାରଣ ଓ ଯୁଦ୍ଧକ୍ଳାନ୍ତ ସୈନିକଙ୍କ ଉପରେ ସେମାନେ ପ୍ରଭାବ ପକାଇବାକୁ ଚେଷ୍ଟା କଲେ ଏବଂ ଅନ୍ୟ ଦେଶମାନଙ୍କରେ ସାମାଜିକ ବିପ୍ଳବ ତେଜାଇବା ପାଇଁ ଚେଷ୍ଟା କରୁଥିଲେ । କାରଣ ସେମାନଙ୍କର ଲକ୍ଷ୍ୟ ଥିଲା ପୃଥିବୀ ବିପ୍ଳବ; ସେମାନେ ଭାବୁଥିଲେ କେବଳ ଏହିରୂପେହିଁ ଆମେ ଆମର ବିପ୍ଳବ ରକ୍ଷା କରିପାରିବା । ମୁଁ ତତେ ଆଗରୁ କହିଛି ଫରାସୀ ଓ ଜର୍ମାନ ସେନାଙ୍କ ଉପରେ ସୋଭିଏଟ୍ ପ୍ରଚାରର ଖୁବ ପ୍ରଭାବ ପଡ଼ିଲା ।

ଜର୍ମାନୀ ସହିତ ହୋଇଥିବା ବ୍ରେଷ୍ଟଲିଟୋଭସ୍କି ଶାନ୍ତିକୁ ଲେନିନ୍ ଏକ ଅସ୍ଥାୟୀ ବ୍ୟାପାର ଏବଂ ବେଶିଦିନ ସ୍ଥାୟୀ ହୋଇପାରିବ ନାହିଁ, ଏହି ଦୃଷ୍ଟିରେ ଦେଖିଲେ । ଏପରି ଘଟିଲା ଯେ ମିତ୍ରପକ୍ଷଦ୍ୱାରା ଜର୍ମାନୀ ପରାସ୍ତ ହେବା ସଙ୍ଗେ ସଙ୍ଗେ ନଅମାସ ପରେ ସୋଭିଏଟ୍ ଏହାକୁ ନାକଚ କରିଦେଲେ । ଲେନିନ୍ କେବଳ ଚାହୁଁଥିଲେ, କ୍ଲାନ୍ତ ଶ୍ରମିକ ଓ ସେନା-ବାହିନୀରେ ଥିବା କୃଷକଙ୍କ ପାଇଁ କିଛିଦିନ ବିଶ୍ରାମ, କିଛିଦିନ ନିଃଶ୍ୱାସ ମାରିବା ପାଇଁ ମଉକା ମିଳୁ —ତାହା ହେଲେ ସେମାନେ ନିଜ ଘରକୁ ଫେରିଯିବେ ଏବଂ ବିପ୍ଳବ କଣ କରିଛି ନିଜର ଆଖିରେ ଦେଖିବେ । ସେ କୃଷକମାନଙ୍କୁ ଏହା ଉପଲବ୍ଧି କରାଇବା ପାଇଁ ଚାହୁଁଥିଲେ ଯେ ଜମିଦାରମାନେ ଯାଇଛନ୍ତି ଏବଂ ଜମିସବୁ ସେମାନଙ୍କର ହୋଇଛି ଏବଂ କାରଖାନା-ଶ୍ରମିକମାନେ ଅନୁଭବ କରନ୍ତୁ ଯେ ସେମାନଙ୍କର ଶୋଷକ ମଧ୍ୟ ନାହିଁ । ଏଥିରେ ସେମାନେ ବିପ୍ଳବରୁ କଣ ଲାଭ ହୋଇଛି ଜାଣିପାରିବେ ଏବଂ ତାହା ରକ୍ଷା କରିବା ନିମନ୍ତେ ବ୍ୟଗ୍ର ହୋଇ ଯିବେ ଏବଂ ସେମାନଙ୍କର ପ୍ରକୃତ ଶତ୍ରୁ କିଏ ସେମାନେ ତାହା ବୁଝିପାରିବେ । ଗୃହଯୁଦ୍ଧ ଆସୁଛି ବୋଲି ସମ୍ପୂର୍ଣ୍ଣ ଭାବରେ ଜାଣି ସୁଦ୍ଧା ଲେନିନ୍ ଏପରି ଭାବୁଥିଲେ । ପରେ ତାଙ୍କ ନୀତିର ପୂର୍ଣ୍ଣ ଯଥାର୍ଥତା ପ୍ରମାଣ ହେଲା । ଏହି କୃଷକ ଓ ଶ୍ରମିକମାନଙ୍କୁ ଯୁଦ୍ଧକ୍ଷେତ୍ରରୁ ତାଙ୍କର କ୍ଷେତ, ଜମି ଓ କାରଖାନାକୁ ପଠାଇ ଦିଆଗଲା । ସେମାନେ କିଛି ବଲ୍‌ସେଭିକ୍ ବା ସୋସାଲିଷ୍ଟ ନ ଥିଲେ; ମାତ୍ର ସେମାନେ ବିପ୍ଳବର ଦୃଢ଼ ସମର୍ଥକ ହେଲେ, କାରଣ ସେମାନେ ଯାହା ପାଇଥିଲେ ତାହା ଛାଡ଼ିବା ପାଇଁ ଚାହୁଁ ନ ଥିଲେ ।

ବଲ୍‌ସେଭିକ ନେତାମାନେ କୌଣସି ମତେ ଜର୍ମାନୀ ସହିତ ବ୍ୟବସ୍ଥା କରିବା ନିମନ୍ତେ ଚେଷ୍ଟା କରିବା ସଙ୍ଗେ ସଙ୍ଗେ ଆଭ୍ୟନ୍ତରୀଣ ଅବସ୍ଥା ପ୍ରତି ବି ଦୃଷ୍ଟି ପକାଇଲେ । ବହୁ ସଂଖ୍ୟକ ପୁରାତନ ସେନା କର୍ମଚାରୀ ଓ ଦୁଃସାହସିକ ଲୋକେ ମେସିନ୍‌ଗନ୍ ଓ ଯୁଦ୍ଧସାମଗ୍ରୀ ଧରି ଦସ୍ୟୁବୃତ୍ତି କରୁଥିଲେ । ବଡ଼ ବଡ଼ ସହରମାନଙ୍କରେ ଗୁଳି ଚଳାଇ ଲୁଟି କରୁଥିଲେ । ପୁରାତନ ନୈରାଜ୍ୟବାଦୀ ଦଳର କେତେକ ଲୋକ ମଧ୍ୟ ସୋଭିଏଟ୍ କାର୍ଯ୍ୟକୁ ନାପସନ୍ଦ କରୁ-ଥିଲେ ଏବଂ ସେମାନେ ବହୁତ ଗୋଳମାଳ ସୃଷ୍ଟି କଲେ । ସୋଭିଏଟ୍ କର୍ତ୍ତୃପକ୍ଷ ଏହିସବୁ ଦସ୍ୟୁଦଳଙ୍କ ପ୍ରତି ଖୁବ୍ କଠୋର ବ୍ୟବସ୍ଥା କଲେ ଏବଂ ସେମାନଙ୍କୁ ଦମନ କରିଥିଲେ ।

ବଳିଷ୍ଠ ସିଭିଲ ସର୍ଭିସର ଲୋକମାନଙ୍କଠାରୁ ହିଁ ଅଧିକ ବିପଦ ସୋଭିଏଟ୍ ସରକାର ଉପରେ ପଡ଼ିଲା—ସେମାନଙ୍କ ଭିତରୁ ଅନେକେ ବଲ୍‌ସେଭିକମାନଙ୍କ ଅଧୀନରେ କାମ କରିବାକୁ କିମ୍ବା କୌଣସି ପ୍ରକାରେ ତାଙ୍କ ସହିତ ସହଯୋଗ କରିବା ପାଇଁ ଅସ୍ୱୀକାର କଲେ । ଲେନିନ୍ ଏକ ନୀତି ଧାର୍ଯ୍ୟ କରିଦେଲେ ଯେ "ଯେ କାମ କରିବ ନାହିଁ, ସେ ଖାଇବ ନାହିଁ; ଶ୍ରମ ନାହିଁ ତ ଖାଦ୍ୟ ନାହିଁ ।" ଯେଉଁସବୁ ସିଭିଲ କର୍ମଚାରୀ ସହଯୋଗ କଲେ ନାହିଁ ସେମାନଙ୍କୁ ତତ୍‌କ୍ଷଣାତ ବରଖାସ୍ତ କରି ଦିଆଗଲା । ବ୍ୟାଙ୍କରମାନେ ତାଙ୍କର ସିନ୍ଦୁକ ଖୋଲିବାପାଇଁ ମନାକଲେ, ଡିନାମାଇଟ ଦେଇ ତାହା ଖୋଲାଗଲା । ପୁରୁଣା ସରକାରର ଯେଉଁ କର୍ମଚାରୀ

ସହଯୋଗ କରିବାକୁ ଅସ୍ୱୀକାର କଲେ ସେମାନଙ୍କ ପ୍ରତି ଲେନିନ୍‌ଙ୍କର ବଡ଼ ପ୍ରବଳ ଘୃଣା, ତାହା ଯେତେବେଳେ ସେନାପକ୍ଷ ହୁକୁମ ମାନିବାକୁ ଅସ୍ୱୀକାର କଲା ସେତେବେଳେ ଜଣା ପଡ଼ିଲା । ତାକୁ ବରଖାସ୍ତ କରାଗଲା ଏବଂ ପାଞ୍ଚ ମିନିଟ ଭିତରେ କ୍ରାଇଲେଙ୍କୋ ନାମକ ଜଣେ ଯୁବକ ବଲ୍‌ସେଭିକ୍ କର୍ମଚାରୀଙ୍କୁ ସେନାଧ୍ୟକ୍ଷ ପଦରେ ନିଯୁକ୍ତ କରାଗଲା ।

ଏହିସବୁ ପରିବର୍ତ୍ତନ ସତ୍ତ୍ୱେ ରୁଷର ପୁରାତନ ସଂଗଠନ ଅନେକ ରହିଲା । ଏକ ବିଶାଳ ଦେଶକୁ ହଠାତ୍ ସମାଜବାଦୀ କରିବା କିଛି ସହଜ ବ୍ୟାପାର ନୁହେଁ ଏବଂ ଏହା ବି ସମ୍ଭବ ଯେ ଯଦି ଘଟଣାସବୁଦ୍ୱାରା ଅବସ୍ଥା ଜବରଦସ୍ତ ନ ହୋଇଥାନ୍ତା, ତେବେ ରୁଷରେ ପରିବର୍ତ୍ତନ ଗତିରେ ଦୀର୍ଘ କାଳ ଲାଗିଯାଇଥାନ୍ତା । କୃଷକମାନେ ଯେମିତି ଜମିଦାରମାନଙ୍କୁ ତଡ଼ି ଦେଉଥିଲେ, ଶ୍ରମିକମାନେ ସେହିପରି ପୁରାତନ ଖାମିନ୍ଦମାନଙ୍କ ଉପରେ କୋଧରିଣ ହୋଇ ସେମାନଙ୍କୁ ତଡ଼ିଦେଲେ ଓ କାରଖାନାସବୁ ଦଖଲ କରିଗଲେ । ସୋଭିଏଟ୍ ଏହିସବୁ କାରଖାନା କିଛି ପୁରୁଣା ପୁଞ୍ଜିବାଦୀ ମାଲିକମାନଙ୍କୁ ଫେରାଇ ଦେଇ ପାରନ୍ତେ ନାହିଁ; ତେଣୁ ସେମାନେ ଏହା ଦଖଲ କଲେ । କେତେକ କ୍ଷେତ୍ରରେ ଏହାପରେ ଯେଉଁ ଗୃହଯୁଦ୍ଧ ଲାଗିଲା ସେତେବେଳେ ମାଲିକମାନେ କାରଖାନାର କଳ ଭାଙ୍ଗିବା ପାଇଁ ଚେଷ୍ଟା କରିଥିଲେ ଏବଂ ପୁନର୍ବାର ସୋଭିଏଟ୍ ସରକାର ହସ୍ତକ୍ଷେପ କଲା ଓ ସେଗୁଡ଼ିକ ରକ୍ଷା କରିବା ନିମନ୍ତେ କାରଖାନା ସବୁ ନିଜ ହାତକୁ ନେଲା । ଏହିପରି ଭାବରେ ସାଧାରଣ ଅବସ୍ଥାରେ ଯେପରି ହୋଇ ପାରିଥାନ୍ତା, ତାହା ଅପେକ୍ଷା ଅଧିକର ଦ୍ରୁତଗତିରେ ଉତ୍ପାଦନ ସାଧନମାନ ସମାଜୀକରଣ ହେଲା. ଅର୍ଥାତ୍ ଏକପ୍ରକାର ଷ୍ଟେଟ୍ ସାମ୍ୟବାଦ ବା କାରଖାନାର ମାଲିକ ସରକାର ହେଲା ।

ସୋଭିଏଟ୍ ଶାସନର ପ୍ରଥମ ନଅମାସ ଭିତରେ ରୁଷରେ ଲୋକଙ୍କ ଜୀବନରେ ବିଶେଷ କିଛି ପାର୍ଥକ୍ୟ ଘଟିଲା ନାହିଁ । ବଲ୍‌ସେଭିକମାନେ ସମାଲୋଚନା ଏବଂ ଏପରିକି ଗାଳି ମଧ୍ୟ ସହ୍ୟ କଲେ ଏବଂ ବଲ୍‌ସେଭିକବିରୋଧୀ ସମ୍ବାଦପତ୍ର ସବୁ ପ୍ରକାଶ ହେବାକୁ ଆରମ୍ଭ କଲା । ଲୋକମାନେ ସାଧାରଣତଃ ଉପାସରେ ରହୁଥିଲେ । ମାତ୍ର ଧନୀଙ୍କ ହାତରେ ଭୋଗ-ବିଳାସ ଲାଗି ପ୍ରଚୁର ଧନ ଥିଲା । ରାତିରେ ମଦଖଟିମାନଙ୍କରେ ଭାରି ଭିଡ଼ ହେଉଥାଏ ଏବଂ ଘୋଡ଼ାଦୌଡ଼ ଓ ଅନ୍ୟାନ୍ୟ ଖେଳ ଚାଲିଥାଏ । ଧନୀ (ବୁର୍ଜୋୟା)ମାନେ ବହୁପରିମାଣରେ ବଡ଼ ବଡ଼ ସହରରେ ଥିଲେ । ସେମାନେ ସୋଭିଏଟ୍ ସରକାରର ପତନ ହେବାର ଆଶା କରି ପ୍ରକାଶ୍ୟ ଭାବରେ ଆନନ୍ଦ ଉପଭୋଗ କରୁଥାନ୍ତି । ଏହି ଲୋକେ ଜର୍ମାନୀ ବିରୁଦ୍ଧରେ ଯୁଦ୍ଧ ଚାଲୁ କରିବାପାଇଁ ଦେଶଭକ୍ତି ଦେଖାଇ ଅତି ବ୍ୟଗ୍ରତା ପ୍ରକାଶ କରୁଥିଲେ; ଏବେ ପ୍ରକୃତରେ ପେଟ୍ରୋଗ୍ରାଡ଼ଆଡ଼କୁ ଜର୍ମାନୀର ଅଗ୍ରଗତି ଉପଲକ୍ଷେ ଉତ୍ସବ ପାଳନ କଲେ । ଜର୍ମାନ ସୈନ୍ୟ ତାଙ୍କର ରାଜଧାନୀ ଦଖଲ କରିବାର ସମ୍ଭାବନା ଦେଖି ସେମାନେ ଖୁବ୍ ଉତ୍ଫୁଲ୍ଲ ହୋଇ ଉଠିଲେ । ବିଦେଶୀ କର୍ତ୍ତୃତ୍ୱର ଭୟ ଅପେକ୍ଷା ସାମାଜିକ ବିପ୍ଳବ ପ୍ରତି ସେମାନଙ୍କର ଘୃଣା

ବହୁତ ଅଧିକ ଥିଲା । ସର୍ବଦା ପ୍ରାୟ ଏହିପରି ହୋଇଥାଏ—ବିଶେଷଭାବରେ ଯେତେବେଳେ ଶ୍ରେଣୀସବୁ ଏଥିରେ ସମ୍ପୃକ୍ତ ହୋଇଥାନ୍ତି, ସେତେବେଳେ ତ ନିଶ୍ଚୟ ।

ଏହିରୂପେ ଜୀବନ ଅନେକ୍ତ ଅଧିକେ ସାଧାରଣ ଅବସ୍ଥାରେ ଥିଲା ଏବଂ ଏ ଅବସ୍ଥାରେ ନିଶ୍ଚୟ କୌଣସି ବଲସେଭିକ ଆତଙ୍କ ନ ଥିଲା । ବିଖ୍ୟାତ ମସ୍କୋ ନୃତ୍ୟ (Ballet ବା ବାଲେଟ୍) ଦିନ ପରେ ଦିନ ଚାଲିଥାଏ, ଲୋକ ଭିଡ ହେଉଥାଏ । ଜର୍ମାନମାନେ ପେଟ୍ରୋଗ୍ରାଡ଼ ଦଖଲ କରିବା ଭୟ ହେବାରୁ ସୋଭିଏଟ୍ ସରକାର ମସ୍କୋକୁ ରାଜଧାନୀ ଉଠାଇନେଲା ଏବଂ ସେହିଦିନଠାରୁ ମସ୍କୋ ସେମାନଙ୍କର ରାଜଧାନୀ ହୋଇ ରହିଛି । ମିତ୍ରପକ୍ଷର ଦୂତମାନେ ଏବେ ସୁଦ୍ଧା ରୁଷରେ ଥିଲେ । ଜର୍ମାନ ହାତରେ ପେଟ୍ରୋଗ୍ରାଡ଼ ପଡ଼ିବାର ବିପଦ ଦେଖି ସେମାନେ ସେଠାରୁ ପଳାଇ ଆସିଲେ ଏବଂ ସମସ୍ତ କାର୍ଯ୍ୟକଳାପଠାରୁ ବହୁଦୂରରେ ଭଲୋଗ୍‌ଡ଼ା ନାମକ ଏକ ମଫସଲ ସହରରେ ନିରାପଦରେ ନିଜର ଆବାସ ସ୍ଥାପନ କଲେ । ସେଠି ଯେଉଁ ସବୁ ଗୁଜବ ପହଞ୍ଚୁଥିଲା ତାହା ଶୁଣି ସେମାନେ ବରାବର ବିଚଳିତ ଓ ଉତ୍ତେଜିତ ଅବସ୍ଥାରେ ରହୁଥାନ୍ତି । ଏସବୁ ଜନରବ ସତ୍ୟ କି ନୁହେଁ ଏ ସମ୍ବନ୍ଧରେ ସେମାନେ ଟ୍ରଟ୍‌ସ୍କିଙ୍କଠାରୁ ବିକଳ ହୋଇ ଖବର ଜାଣିବାକୁ ଚାହିଁଥାନ୍ତି । ଏହିସବୁ ପୁରାତନ କୂଟନୀତିଜ୍ଞମାନଙ୍କର ସ୍ନାୟବିକ ଉତ୍ତେଜନା ଦେଖି ଟ୍ରଟ୍‌ସ୍କି ବିରକ୍ତ ହୋଇ ପଡ଼ିଲେ ଏବଂ ସେ ଲେଖିଲେ "ଭଲୋଗ୍‌ଡ଼ାରେ ଥିବା ମହାମାନ୍ୟବରମାନଙ୍କ ସ୍ନାୟୁକୁ ଶାନ୍ତ କରିବାପାଇଁ ବ୍ରୋମାଇଡ଼୍ (ଏକ ପ୍ରକାର ନିଶା) ଔଷଧ ଲୋଡ଼ା ।" ଉନ୍ମାଦ ରୋଗଗ୍ରସ୍ତ ଓ ଉତ୍ତେଜିତ ଲୋକଙ୍କ ସ୍ନାୟୁକୁ ଶାନ୍ତ କରିବା ନିମନ୍ତେ ଡାକ୍ତରମାନେ ବ୍ରୋମାଇଡ଼୍ ଦିଅନ୍ତି ।

ଉପରେ ଜୀବନ ସାଧାରଣଭାବରେ ଗତି କଲାପରି ମନେହେଲା । କିନ୍ତୁ ଏହି ଆପାତତଃ ନିସ୍ତବ୍ଧତା ତଳେ ବହୁ ସ୍ରୋତ ଓ ପ୍ରତିସ୍ରୋତ ଚାଲିଥାଏ । କେହି ଏପରିକି ବଲ୍‌ସେଭିକ୍ ନିଜେ ବି କେତେଦିନ ତିଷ୍ଠି ପାରିବେ ବୋଲି ଭରସା କରୁ ନ ଥିଲେ । ପ୍ରତ୍ୟେକ ଲୋକ ଚକ୍ରାନ୍ତ କରୁଥାଏ । ଜର୍ମାନମାନେ ଦକ୍ଷିଣ ରୁଷର ଇଉକ୍ରେନରେ ଗୋଟିଏ ପ୍ରତିକ୍ରିୟାଶୀଳ ସରକାର ବସାଇଲେ ଏବଂ ଶାନ୍ତି ସତ୍ତ୍ୱେ ସର୍ବଦା ସୋଭିଏଟ୍‌କୁ ଧମକଦେଲେ । ମିତ୍ରପକ୍ଷ ଅବଶ୍ୟ ଜର୍ମାନୀକୁ ଘୃଣା କରୁଥିଲେ; କିନ୍ତୁ ସେମାନେ ବଲ୍‌ସେଭିକ୍‌ଙ୍କୁ ଆହୁରି ବେଶି ଘୃଣା କରୁଥିଲେ । ଅବଶ୍ୟ ୧୯୧୮ର ଆରମ୍ଭରେ ସୋଭିଏଟ୍ କଂଗ୍ରେସକୁ ଆମେରିକାର ସଭାପତି ଉଇଲସନ୍ ଏକ ଅଭିବାଦନ ଜଣାଇଥିଲେ; ସେ ଏଥିପାଇଁ ଅନୁତାପ କରିଥିବାର ଏବଂ ପରେ ତାଙ୍କ ମତ ପରିବର୍ତ୍ତନ କରିଥିବାର ଜଣାଯାଏ । ତେଣୁ ମିତ୍ରପକ୍ଷମାନେ ଗୋପନୀୟ ଭାବରେ ଅର୍ଥସାହାଯ୍ୟ କରି ପ୍ରତି-ବିପ୍ଳବୀ କାର୍ଯ୍ୟରେ ସାହାଯ୍ୟ କରୁଥିଲେ ଏବଂ ଏପରିକି ଗୋପନ ଭାବରେ ସେଥିରେ ଭାଗ ବି ନେଲେ । ମସ୍କୋ ବିଦେଶୀ ଗୁପ୍ତଚରରେ ପୂର୍ଣ୍ଣ ହୋଇଗଲା । ବ୍ରିଟିଶ ଗୋଇନ୍ଦା ବିଭାଗର ପ୍ରଧାନ ଏଜେଣ୍ଟ, ଯେ କି ବ୍ରିଟେନ୍‌ର ପାରଙ୍ଗମ ଗୁପ୍ତଚରରୂପେ ଖ୍ୟାତି ଅର୍ଜିଥିଲେ ସେ ସୋଭିଏଟ ସରକାରରେ ଗୋଳମାଳ ସୃଷ୍ଟିକରିବା ନିମନ୍ତେ ସେଠିକି

ପଠାଉଥିଲେ । ମିତ୍ରପକ୍ଷର ଟଙ୍କା ସାହାଯ୍ୟରେ ଉଣ୍ଡଳଚ୍ୟୁତ ଅଭିଜାତ ଶ୍ରେଣୀ ଓ ବୁର୍ଜୋୟା ଧନୀମାନେ ବରାବର ପ୍ରତି-ବିପ୍ଳବ ଉପୁଜାଉଥାଆନ୍ତି ।

୧୯୧୮ ମସିହା ମଧ୍ୟବେଳକୁ ଅବସ୍ଥା ଏହିପରି ଥିଲା । ସୋଭିଏଟ୍ ଜୀବନ ଏକ ସରୁ ସୂତାରେ ଝୁଲୁଥିବା ପରି ମନେ ହେଉଥିଲା ।

# ୧୫୬ : ସୋଭିଏଟ୍‌ର ବିଜୟ

ଏପ୍ରିଲ ୧୧, ୧୯୩୩

୧୯୧୮ ଜୁଲାଇ ମାସରେ ରୁଷ ପରିସ୍ଥିତିରେ ଗୁରୁତ୍ୱପୂର୍ଣ୍ଣ ଅଗ୍ରଗତି ଦେଖାଗଲା । ବଲ୍‌ସେଭିକମାନଙ୍କ ଚାରିଆଡ଼େ ଥିବା ଜାଲ କ୍ରମେ ସଙ୍କୁଚିତ ହୋଇ ଆସୁଥାଏ । ଜର୍ମାନମାନେ ଦକ୍ଷିଣରେ ୟୁକ୍ରେନ୍‌ଠାରୁ ଧମକ ଦେଲେ ଏବଂ ରୁଷରେ ଥିବା ବହୁସଂଖ୍ୟକ ପୁରାତନ ଚେକୋସ୍ଲୋଭିଆ ଯୁଦ୍ଧବନ୍ଦୀଙ୍କୁ ମସ୍କୋ ପର୍ଯ୍ୟନ୍ତ ଅଗ୍ରସର ହେବା ନିମନ୍ତେ ମିତ୍ରପକ୍ଷ ଉତ୍ସାହିତ କଲେ । ଫ୍ରାନ୍ସରେ ପଶ୍ଚିମ ରଣକ୍ଷେତ୍ରସାରା ମହାସମର ଏବେ ବି ଚାଲିଥାଏ; କିନ୍ତୁ ସୋଭିଏଟ୍ ରୁଷରେ ମିତ୍ରପକ୍ଷ ଓ ଜର୍ମାନମାନେ ଉଭୟେ ମିଳିତ ହୋଇ ବଲସେଭିକମାନଙ୍କୁ ଦମନ କରିବାର ଉଦ୍ଦେଶ୍ୟ ସେହି କାର୍ଯ୍ୟ କରିବାର ଅଦ୍ଭୁତ ଦୃଶ୍ୟ ଦେଖିବାକୁ ମିଳିଲା । ଆମେ ପୁଣି ଦେଖିପାରୁ, ଶ୍ରେଣୀବିଦ୍ୱେଷ ଜାତୀୟବିଦ୍ୱେଷଠାରୁ କେତେ ଅଧିକ; ଜାତୀୟବିଦ୍ୱେଷ ତ ସହଜେ ବିଷାକ୍ତ ଓ ତିକ୍ତତାପୂର୍ଣ୍ଣ । ଏହି ଶକ୍ତିମାନେ ସରକାରୀ ଭାବରେ ରୁଷ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରି ନ ଥିଲେ; ସେମାନେ ସୋଭିଏଟ୍‌କୁ ହଇରାଣ କରିବାର ଆହୁରି ଅନେକ ଉପାୟ ବ୍ୟବହାର କଲେ; ପ୍ରତି-ବିପ୍ଳବୀ ନେତାମାନଙ୍କୁ ଉତ୍ସାହିତ କରି ଅସ୍ତ୍ରଶସ୍ତ୍ର ଓ ସେମାନଙ୍କୁ ଧନ ସାହାଯ୍ୟ ଦେଇ ଜାର ଅମଳର କେତେକ ପୁରାତନ ସେନାପତି ଏବେ ସୋଭିଏଟ୍ ବିରୁଦ୍ଧରେ କ୍ଷେତ୍ରକୁ ବାହାରି ପଡ଼ିଲେ ।

ଉରାଲ ପର୍ବତ ନିକଟରେ ସ୍ଥାନୀୟ ସୋଭିଏଟ୍ ତତ୍ତ୍ୱାବଧାନରେ ପୂର୍ବ ରୁଷରେ ଜାର ଓ ତାଙ୍କ ପରିବାରଙ୍କୁ ବନ୍ଦୀରୂପେ ରଖାଯାଇଥିଲା । ଏହି ଅଞ୍ଚଳରେ ଚେକ୍ ସେନାଙ୍କ ଅଗ୍ରଗତି ଦେଖି ସ୍ଥାନୀୟ ସୋଭିଏଟ୍ ଭୟଭୀତ ହୋଇଗଲା ଏବଂ ଭୂତପୂର୍ବ ଜାର ମୁକ୍ତି ପାଇ ପ୍ରତି ବିପ୍ଳବର ପ୍ରଧାନ କେନ୍ଦ୍ର ହେବାର ସମ୍ଭାବନା ଦେଖି ସେମାନେ ଆତଙ୍କିତ ହୋଇଗଲେ । ତେଣୁ ସେମାନେ ନିଜେ ଶାସ୍ତି ବିଧାନ କରିବାକୁ ଲାଗିଲେ ଏବଂ ସମଗ୍ର ପରିବାରକୁ ବଧ

ଚଳେ । ଦେଖାଗଲା ଯେ ଏଥିପାଇଁ ବୋଲ୍‌ସେଭିକ୍ କେନ୍ଦ୍ର କମିଟି ଦାସ୍ତୀ ବୁର୍ଜୋ ଏବଂ ଅନ୍ତର୍ଜାତୀୟ ଜାତି ଦୃଷ୍ଟିରୁ ଭୂଲପୂର୍ଣ୍ଣ ଜାରଙ୍କୁ ଫାସି ଦେବା ଏବଂ ମାନବିକତା ଦୃଷ୍ଟିରୁ ତାଙ୍କ ପରିବାରକୁ ମାରିଦେବା ବିରୁଦ୍ଧରେ ଲେନିନ ଥିଲେ । ଯାହାହେଉ କାର୍ଯ୍ୟଟା ହୋଇ ଯାଇଥିବାରୁ କେନ୍ଦ୍ର କମିଟି ତାକୁ ଠିକ୍ ବୋଲି କହିଲା । ସମ୍ଭବତଃ ଏହାଦ୍ୱାରା ମିତ୍ର ରାଜ୍ୟମାନଙ୍କର ଅଧିକ ମତଭ୍ରମ ଘଟାଇଲା ଏବଂ ସେମାନେ ଆହୁରି ବେଶି ଆକ୍ରମଣଶୀଳ ହେଲେ ।

ଅଗଷ୍ଟରେ ପରିସ୍ଥିତି ଆହୁରି ଖରାପ ଆଡ଼କୁ ଆସିଲା ଏବଂ ଦୁଇଟି ଘଟଣା ଫଳରେ କ୍ରୋଧ, ହତାଶା ଓ ଆତଙ୍କ ଆସି ପହଞ୍ଚିଲା । ପ୍ରଥମ ହେଉଛି ଲେନିନ୍‌ଙ୍କ ଜୀବନ ନେବାପାଇଁ ଚେଷ୍ଟା ଏବଂ ଅନ୍ୟଟି ହେଉଛି ଉତ୍ତର ରୁଷର ଆର୍ଚାଞ୍ଜେଲଠାରେ ମିତ୍ର ସେନାଙ୍କ ପଦାର୍ପଣ । ମସ୍କୋରେ ଖୁବ ଉତ୍ତେଜନା ସୃଷ୍ଟି ହେଲା ଏବଂ ବୋଲ୍‌ସେଭିକ୍‌ର ଅସ୍ତିତ୍ୱ ଲୋପ ଖୁବ ନିକଟ ପରି ମନେହେଲା । ମସ୍କୋ ବି ଜର୍ମାନ, ଚେକ୍ ଓ ପ୍ରତି-ବିପ୍ଳବୀ ଶକ୍ତି ଆଦି ଶତ୍ରୁମାନଙ୍କ ଦ୍ୱାରା ପରିବେଷ୍ଟିତ ହୋଇଥିଲା । କେବଳ ମସ୍କୋ ଗୁରପଟେ କେତୋଟି ଜିଲ୍ଲା ବୋଲ୍‌ସେଭିକ୍ ଶାସନ ଅଧୀନରେ ଥିଲା ଏବଂ ମିତ୍ରସେନା ଆଗମନରେ ଏହା ଶେଷ ପାଇଯିବା ନିଶ୍ଚିତ ପରି ମନେହେଲା । ବଲ୍‌ସେଭିକ୍‌ଙ୍କର ବେଶି କିଛି ସେନା ନ ଥିଲା । ବ୍ରେଷ୍ଟ-ଲିଟୋଭସ୍କି ସନ୍ଧିର ପାଞ୍ଚମାସ ପ୍ରାପ୍ତ ହୋଇ ନ ଥାଏ ଏବଂ ଅଧିକାଂଶ ପୁରୁଣା ସେନାସବୁ କ୍ଷେତରେ ଯାଇ କାମ କରୁଥାନ୍ତି । ମସ୍କୋରେ ଷଡ଼ଯନ୍ତ୍ର ପୁରି ରହିଥାଏ ଏବଂ ବୋଲ୍‌ସେଭିକ୍‌ର ଆସନ୍ନ ପତନ ଦେଖି ପ୍ରକାଶ୍ୟ ଭାବରେ ଧନୀମାନେ ଉତ୍‌ଫୁଲ୍ଲ ହେଉଥାନ୍ତି ।

ନଅମାସର ବୋଲ୍‌ସେଭିକ୍ ପ୍ରଜାତନ୍ତ୍ରର ଏପରି ଭୀଷଣ ଦୁର୍ଦ୍ଦଶା ପଡ଼ିଥିଲା । ହତାଶା ଓ ଭୟ ବଲ୍‌ସେଭିକ୍‌ଙ୍କୁ ଘାରିଲା ଏବଂ ସେମାନେ ଯେକୌଣସି ମତେ ମରିବାକୁ ଯାଉଛନ୍ତି ବୋଲି ଦେଖିପାରି ଯୁଦ୍ଧ କରି ମରିବା ପାଇଁ ସ୍ଥିର କଲେ । ୧୨୫ ବର୍ଷ ଆଗରୁ ଶିଶୁ ଫରାସୀ ପ୍ରଜାତନ୍ତ୍ରରେ ଯେପରି ହୋଇଥିଲା, ସେହିପରି ପାଗଳ ବନ୍ୟ ପଶୁପରି ସେମାନେ ଶତ୍ରୁ ଉପରେ ଚଢ଼ାଉ କଲେ । କୌଣସି ସହନଶୀଳତା, ଦୟାମାୟାର ପ୍ରଶ୍ନ ରହିଲା ନାହିଁ । ସମଗ୍ର ଦେଶକୁ ସାମରିକ ଆଇନ ଅଧୀନରେ ରଖାଗଲା ଏବଂ ସେପ୍‌ଟେମ୍ବର ମାସ ପ୍ରଥମ ଭାଗରେ କେନ୍ଦ୍ର ବୋଲ୍‌ସେଭିକ୍ କମିଟି ଲାଲ ଆତଙ୍କ ଘୋଷଣା କଲେ । "ସମସ୍ତ ବିଶ୍ୱାସଘାତକଙ୍କ ପ୍ରତି ମୃତ୍ୟୁବିଧାନ କର; ବିଦେଶୀ ଆକ୍ରମଣକାରୀଙ୍କ ବିରୁଦ୍ଧରେ ନିର୍ଦ୍ଦୟ ଯୁଦ୍ଧ ଚଳାଅ ।" ସେମାନେ ଛଳେ ହେଲେ ପଛଘୁଞ୍ଚା ନ ଦେଇ ଭିତର ବାହାର ଶତ୍ରୁଙ୍କୁ ନିପାତ କରିବା ନିମନ୍ତେ ସ୍ଥିର କଲେ । ବୋଲ୍‌ସେଭିକ୍ ପୃଥିବୀ ବିରୁଦ୍ଧରେ ଏବଂ ନିଜର ପ୍ରତିକ୍ରିୟା-ପନ୍ଥୀଙ୍କ ବିରୁଦ୍ଧରେ ଛିଡ଼ା ହୋଇଥିଲା । ଯାହାକୁ କହନ୍ତି ଏକ ଯୁଦ୍ଧଶୀଳ କମ୍ୟୁନିଜମ୍ (Militant Communism)ର କାଳ ପହଞ୍ଚିଲା ଏବଂ ସମସ୍ତ ଦେଶ ଏକ ଶତ୍ରୁ-ଅବରୁଦ୍ଧ ଶିବିର ପରି ହୋଇଗଲା । ଲାଲ ସେନାଙ୍କୁ ତିଆରି କରିବା ନିମନ୍ତେ ସକଳ ଉଦ୍ୟମ କରାଗଲା ଏବଂ ଟ୍ରଟସ୍କି ଏହାର ଭାର ନେଲେ ।

ଏହା ହେଉଛି ୧୯୧୮ ମସିହାର ସେପ୍‌ଟେମ୍ବର ଓ ଅକ୍ଟୋବର ମାସ ବେଳ— ଏତେବେଳେ ପଶ୍ଚିମରେ ଜର୍ମାନ ଯୁଦ୍ଧଯନ୍ତ୍ର ଭୁସୁଡ଼ି ପଡ଼ୁଥିଲା ଏବଂ ଗୋଟାଏ ସନ୍ଧି କଥା ଉଠିଥିଲା । ସଭାପତି ଉଇଲସନ୍ ତାଙ୍କର ଚଉଦ ସର୍ତ୍ତ ଆଗତ କରିଥିଲେ । ସେଥିରେ ମିତ୍ରପକ୍ଷର ଲକ୍ଷ୍ୟ ନିର୍ଦ୍ଦିଷ୍ଟ ହୋଇଥିଲା ବୋଲି ଧରି ଯାଉଥିଲା । ସ୍ମରଣ କଲେ ଭାରି ମଜାଲାଗେ ଯେ ଗୋଟିଏ ସର୍ତ୍ତରେ ଲେଖା ଥିଲା, ରୁଷ ଅଞ୍ଚଳଠାରୁ ତ୍ୟାଗ କରାଯିବ ଏବଂ ରୁଷମାନଙ୍କ ସାହାଯ୍ୟରେ ଆତ୍ମ-ଉନ୍ନତି ଲାଗି ରୁଷକୁ ପୂର୍ଣ୍ଣ ସୁବିଧା ଦିଆଯିବ । କିନ୍ତୁ ଏହା ପାଳନର ଗୋଟିଏ ଦୃଷ୍ଟାନ୍ତ ମିତ୍ରପକ୍ଷର ରୁଷରେ ହସ୍ତକ୍ଷେପ ଓ ସେଠାକୁ ସେନା ପ୍ରେରଣ କରାଇବାରେହିଁ ମିଳି ପାରିଥିଲା । ବଲସେଭିକ୍ ସରକାର ସଭାପତି ଉଇଲସନ୍‌ଙ୍କର ଚଉଦସର୍ତ୍ତକୁ କଡ଼ା ସମାଲୋଚନା କରି ଏକ ଲେଖା ତାଙ୍କ ପାଖକୁ ପଠାଇଲେ । ଏହି ଲେଖାରେ ସେମାନେ କହିଥିଲେ—"ତମେ ପୋଲଣ୍ଡ, ସର୍ବିଆ, ବେଲଜିୟମର ସ୍ୱାଧୀନତା ଏବଂ ଅଷ୍ଟ୍ରୋ-ହଙ୍ଗେରି ଲୋକଙ୍କପାଇଁ ମୁକ୍ତି ଦାବୀ କରିଛ; କିନ୍ତୁ ଅଦ୍ଭୁତ କଥା ଆମେ ତମ ଦାବୀରେ ଆୟର୍ଲଣ୍ଡ, ଇଜିପ୍ଟ, ଭାରତ, ଅଥବା ଫିଲିପାଇନ୍ ଦ୍ୱୀପପୁଞ୍ଜର ସ୍ୱାଧୀନତାର ଉଲ୍ଲେଖ ସୁଦ୍ଧା ଦେଖୁନାହୁଁ" ।

୧୯୧୮ ନଭେମ୍ବର ୧୧ ତାରିଖରେ ମିତ୍ରପକ୍ଷ ଓ ଜର୍ମାନ ଶକ୍ତି ଭିତରେ ସନ୍ଧି ହେଲା । ସନ୍ଧିପତ୍ର ସ୍ୱାକ୍ଷରିତ ହେଲା; କିନ୍ତୁ ରୁଷରେ ୧୯୧୯ ଓ ୧୯୨୦ ସାରା ଗୃହଯୁଦ୍ଧ ଲାଗି ରହିଲା । ସୋଭିଏଟକୁ ଏକାକୀ ଅନେକ ଶତ୍ରୁଙ୍କ ସହ ଯୁଦ୍ଧ କରିବାକୁ ପଡ଼ିଲା । ଏକ ସମୟରେ ଲାଲସେନା ଉପରେ ୧୭ଟି ବିଭିନ୍ନ କେନ୍ଦ୍ରରୁ ଆକ୍ରମଣ ହେଲା । ଇଂଲଣ୍ଡ, ଆମେରିକା, ଫ୍ରାନ୍ସ, ଜାପାନ, ଇଟାଲୀ, ସର୍ବିଆ, ଚେକୋସ୍ଲୋଭାକିଆ, ରୁମାନିଆ, ବଲଟିକ୍ ରାଜ୍ୟ, ପୋଲଣ୍ଡ ଏବଂ ଅନେକ ପ୍ରତି-ବିପ୍ଳବୀ ରୁଷ ସେନାପତି ସବୁ ସୋଭିଏଟ୍‌ର ବିରୋଧ କଲେ ଏବଂ ଯୁଦ୍ଧପୂର୍ବ ସାଇବେରିଆରୁ ବଲଟିକ୍ କ୍ରିମିଆ ପର୍ଯ୍ୟନ୍ତ ବ୍ୟାପିଲେ । ବାରମ୍ବାର ସୋଭିଏଟର ଶେଷ ନିକଟତର ବୋଧ ହେଲା । ମସ୍କୋ ଉପରେ ବି ବିପଦ ପଡ଼ିଲା, ପେଟ୍ରୋଗ୍ରାଡ଼ ଶତ୍ରୁ ହାତରେ ପଡ଼ିବା ଅବସ୍ଥାରେ ପହଞ୍ଚିଗଲା; କିନ୍ତୁ ଏହା ସମସ୍ତ ସଙ୍କଟକୁ ଅତିକ୍ରମ କରିଗଲା ଏବଂ ପ୍ରତ୍ୟେକ ସଫଳତାରେ ଏହାର ଆତ୍ମବିଶ୍ୱାସ ଓ ଶକ୍ତି ବୃଦ୍ଧି ପାଇଲା ।

ପ୍ରତି-ବିପ୍ଳବୀ ନେତାଙ୍କ ଭିତରୁ ଜଣେ ଥିଲେ ଆଡ଼ମିରାଲ କୋଲ୍‌ଚାକ୍ । ସେ ନିଜକୁ ରୁଷର ଶାସକ ବୋଲି ଘୋଷଣା କଲେ ଏବଂ ମିତ୍ରପକ୍ଷ ପ୍ରକୃତରେ ତାଙ୍କୁ ସ୍ୱୀକାର କଲେ ଓ ବହୁତଭାବରେ ସାହାଯ୍ୟ ଦେଲେ । ସେ ସାଇବେରିଆରେ କିପରି ଭାବରେ ଆଚରଣ କରିଥିଲେ ତାଙ୍କର ଜଣେ ମିତ୍ର ଜେନେରାଲ ଗ୍ରେଭ୍‌ସଙ୍କ ବିବରଣୀରୁ ଜଣାପଡ଼େ । ସେ ସଂଯୁକ୍ତ ରାଷ୍ଟ୍ରର ସେନା ନେଇ କୋଲଚାକ୍‌କୁ ସାହାଯ୍ୟ କରୁଥିଲେ । ଏହି ଆମେରିକା ସେନାପତି ଲେଖିଛନ୍ତି—

"ଭୀଷଣ ହତ୍ୟାକାଣ୍ଡ ସବୁ ଘଟିଲା; କିନ୍ତୁ ବୋଲ୍‌ଶେଭିକ୍‌ମାନଙ୍କଦ୍ୱାରା ତାହାସବୁ ହୋଇଛି ବୋଲି ଜଗତରେ ଯେଉଁ ବିଶ୍ୱାସ ଜନ୍ମାଇ ଦିଆଯାଇଛି ତାହା ନୁହେଁ । ଏକଥା ମୁଁ ନିଶ୍ଚୟପଦରେ କହିପାରେ ଯେ ବୋଲ୍‌ଶେଭିକ୍‌ମାନେ ଜଣକୁ ହତ୍ୟା କରିବା ସ୍ଥଳରେ ପୂର୍ବ-ସାଇବେରିଆରେ ବୋଲ୍‌ଶେଭିକ୍ ବିରୋଧୀମାନେ ଶହେ ଲୋକଙ୍କୁ ହତ୍ୟା କରିଥିଲେ ।"

କିପରି ଜ୍ଞାନ ନେଇ ଖ୍ୟାତନାମା ରାଜନୀତିକମାନେ ବଡ଼ ବଡ଼ ଜାତିର ଭାଗ୍ୟ ନିୟନ୍ତ୍ରଣ କରନ୍ତି ଏବଂ ଯୁଦ୍ଧ ଓ ଶାନ୍ତି କରନ୍ତି, ତାହା ଜାଣିବାକୁ ତୋର ଆଗ୍ରହ ହେଉଥିବ । ସେତେବେଳେ ବ୍ରିଟିଶ ପ୍ରଧାନମନ୍ତ୍ରୀ ଥିଲେ ଲଏଡ଼ ଜର୍ଜ; ସମ୍ଭବତଃ ସେତେବେଳେ ଇଉରୋପରେ ସେ ସର୍ବାପେକ୍ଷା ପ୍ରଭାବଶାଳୀ ଲୋକ ଥିଲେ । ରୁଷ ସମ୍ବନ୍ଧରେ ବ୍ରିଟିଶର କମନ୍‌ସ ସଭାରେ ବକ୍ତୃତା ଦେଇ ସେ କୋଲଚାକ୍ ଓ ଅନ୍ୟ ସେନାପତିଙ୍କ କଥା ଉଲ୍ଲେଖ କଲେ । ତାହା ସାଙ୍ଗେ ସାଙ୍ଗେ "ସେନାପତି ଖାର୍କଭ"ଙ୍କ କଥା ବି ଉଲ୍ଲେଖ କଲେ । ଖାର୍କଭ୍ ବୋଲି କୌଣସି ସେନାପତି ନ ଥିଲେ; ଏହା ଏକ ପ୍ରଧାନ ସହର, ଇଉକ୍ରେନର ରାଜଧାନୀ । ଯାହା ହେଉ ଏହି ପ୍ରାଥମିକ ଭୌଗୋଳିକ ଜ୍ଞାନର ଅଜ୍ଞତା ସତ୍ତ୍ୱେ ଇଉରୋପକୁ ଖଣ୍ଡ ଖଣ୍ଡ କରି ବିଭକ୍ତ କରି ଦେବାରେ ଏବଂ ଏହାର ଏକ ନୂଆ ମାନଚିତ୍ର ତିଆରି କରିବାରେ କିଛି ରାଜନୀତିଜ୍ଞମାନଙ୍କର ବାଧା ସୃଷ୍ଟି ନ ଥିଲା ।

ମିତ୍ରପକ୍ଷ ରୁଷକୁ ଘେରାଉ କରିଦେଲେ ଏବଂ ଏହା ଏପରି ଜୋରଦାର ହୋଇଥିଲା ଯେ ୧୯୧୯ ମସିହା ସାରା ରୁଷ ବାହାରେ କୌଣସି ଜିନିଷ ବିକ୍ରୀ କରିପାରିଲା ନାହିଁ କି ବାହାରୁ କିଛି କିଣିପାରିଲା ନାହିଁ ।

ଏସବୁ ପ୍ରକାଣ୍ଡ ଅସୁବିଧା, ଅସଂଖ୍ୟ ଓ ଶକ୍ତିଶାଳୀ ଶତ୍ରୁମାନଙ୍କ ସତ୍ତ୍ୱେ ସୋଭିଏଟ୍ ରୁଷ ବଞ୍ଚିଲା ଓ ବିଜୟ ଲାଭ କଲା । ଇତିହାସରେ ଏହା ଏକ ଅତି ଆଶ୍ଚର୍ଯ୍ୟକର ଘଟଣା । ସେମାନେ କିପରି ଏହା କରିପାରିଲେ ? ଏଥିରେ ସନ୍ଦେହ ନାହିଁ ଯେ ଯଦି ମିତ୍ରଶକ୍ତିମାନେ ମିଳିତ ହୋଇ ବଲ୍‌ଶେଭିକଙ୍କୁ ଦମନ କରିବାରେ ଲାଗିପଡ଼ିଥାନ୍ତେ ତେବେ ସେମାନେ ପ୍ରଥମ ଅବସ୍ଥାରେ କରି ପାରିଥାନ୍ତେ । ଜର୍ମାନୀକୁ ଶେଷ କରି ସାରିବା ପରେ ତାଙ୍କ ପାଖରେ ବିରାଟ ସେନାବାହିନୀ ରହିଥିଲା । କିନ୍ତୁ ଏହି ସବୁ ସେନାକୁ କୌଣସିଠାରେ ଏବଂ ବିଶେଷତଃ ସୋଭିଏଟ ବିରୁଦ୍ଧରେ ଲଗାଇବା ସେତେ ସହଜ ନ ଥିଲା । ସେମାନେ ସମସ୍ତେ ଯୁଦ୍ଧକ୍ଳାନ୍ତ ହୋଇ ପଡ଼ିଥିଲେ ଏବଂ ଆଉ ବିଦେଶୀ ଯୁଦ୍ଧ ଲାଗି ସେମାନଙ୍କୁ ଖଟାଇଥିଲେ, ସେମାନେ ଅସ୍ୱୀକାର କରିଥାନ୍ତେ । ଆହୁରି ମଧ୍ୟ ନୂତନ ରୁଷ ପ୍ରତି ଶ୍ରମିକଙ୍କ ଭିତରେ ବହୁ ପରିମାଣରେ ସହାନୁଭୂତି ଥିଲା ଏବଂ ସୋଭିଏଟ ବିରୁଦ୍ଧରେ ପ୍ରକାଶ୍ୟ ଯୁଦ୍ଧ ଘୋଷଣା କଲେ ନିଜ ଦେଶରେ ଗୋଳମାଳର ସମ୍ମୁଖୀନ ହେବାକୁ ପଡ଼ିବ ବୋଲି ମିତ୍ର ରାଜ୍ୟ ସରକାରମାନେ ଭୟ କରୁଥିଲେ । ଏପରି ଅବସ୍ଥା ଥିଲା ଯେ ଇଉରୋପ ପ୍ରାୟ ବିଦ୍ରୋହ ଅବସ୍ଥାରେ ପହଞ୍ଚି ଯାଇଥିଲା ଏବଂ ତୃତୀୟରେ ମିତ୍ରଶକ୍ତିମାନଙ୍କ ଭିତରେ ପରସ୍ପର ବିରୋଧ ଥିଲା । ଶାନ୍ତି ଆସିବା ସଙ୍ଗେ

ସଙ୍ଗେ ସେମାନେ ନିଜ ଭିତରେ ଝଗଡ଼ା ଓ ବିବାଦ ଆରମ୍ଭ କରିଦେଲେ । ଏହି ସବୁ କାରଣରୁ ବଲ୍‌ସେଭିକ୍‌ମାନଙ୍କୁ ନାଶ କରିଦେବା ନିମନ୍ତେ କୌଣସି ଦୃଢ଼ ଉଦ୍ୟମ କରିବାରେ ବାଧା ପଡ଼ିଥିଲା । ସେମାନେ ଅପ୍ରତ୍ୟକ୍ଷ ଭାବରେ ସଅଧିନ୍ଥବ ଅନ୍ୟମାନଙ୍କୁ ସେମାନଙ୍କ ସହି ଯୁଦ୍ଧ ଲଗାଇ ଦେବାକୁ ଚେଷ୍ଟା କଲେ ଏବଂ ସେମାନଙ୍କୁ ଅର୍ଥ, ଅସ୍ତ୍ରଶସ୍ତ୍ର ଓ ବିଶେଷଜ୍ଞ ପରାମର୍ଶ ଦେଇ ଦେଲେ । ସେମାନେ ନିଶ୍ଚିତ ହୋଇ ପଡ଼ିଲେ ଯେ ସୋଭିଏଟ୍ ତିଷ୍ଠି ପାରିବ ନାହିଁ ।

ସନ୍ଦେହ ନାହିଁ ଯେ ଏସବୁ ସୋଭିଏଟକୁ ସାହାଯ୍ୟ କଲା ଏବଂ ନିଜର ଶକ୍ତି ବଢ଼ାଇବାପାଇଁ ସେମାନେ ସମୟ ପାଇଲେ । କିନ୍ତୁ ବାହାର ପରିସ୍ଥିତି ହେତୁ ସେମାନଙ୍କର ବିଜୟ ସମ୍ଭବ ହେଲା ବୋଲି ମନେ କରିବା ତାଙ୍କ ପ୍ରତି ଅନ୍ୟାୟ କରାହେବ । ପ୍ରକୃତରେ ଏହା ଥିଲା ରୁଷ ଲୋକଙ୍କର ଆତ୍ମବିଶ୍ୱାସ, ନିଷ୍ଠା, ଆତ୍ମତ୍ୟାଗ ଓ ଅଟଳ ପ୍ରତିଜ୍ଞାର ବିଜୟ । ସବୁଠାରୁ ଆଶ୍ଚର୍ଯ୍ୟ କଥା ହେଉଛି ଏମାନଙ୍କୁ ଅଳସୁଆ ଓ ଅଜ୍ଞ, ନୀତିଭ୍ରଷ୍ଟ ଏବଂ କୌଣସି ମହାନ ଉଦ୍ୟମ କରିବାରେ ଅସମର୍ଥ ବୋଲି ପ୍ରତ୍ୟେକ ସ୍ଥାନରେ ଧରି ନିଆଯାଉଥିଲା ଏବଂ ତାହା ମଧ୍ୟ ଠିକ୍ । ସ୍ୱାଧୀନତା ଗୋଟାଏ ଅଭ୍ୟାସ ଏବଂ ଆମେ ଯଦି ଦୀର୍ଘକାଳ ପର୍ଯ୍ୟନ୍ତ ଏଥିରୁ ବଞ୍ଚିତ ହୋଇଯାଉ, ତେବେ ଏହାକୁ ପାଶୋରି ପକାଇବା ସ୍ୱାଭାବିକ । ଏହି ଅଭ୍ୟାସ କାର୍ଯ୍ୟକାରୀ କରିବାରେ ରୁଷର ଏହି ଅଜ୍ଞ କୃଷକ ଓ ଶ୍ରମିକମାନଙ୍କର ଟିକିଏ ହେଲେ ସୁବିଧା ନ ଥିଲା । ତଥାପି ସେତେବେଳେ ରୁଷର ନେତୃତ୍ୱରେ ଏପରି ଗୁଣ ଥିଲା ଯେ ତାହା ଏପରି ଦରିଦ୍ର ମାନବ ଉପାଦାନକୁ ଏକ ବଳିଷ୍ଠ ଓ ସଂଗଠିତ ଜାତିରେ ପରିଣତ କରିପାରିଲା; ଏହାର ନିଜ ଉଦ୍ଦେଶ୍ୟରେ ପୂର୍ଣ୍ଣ ଆସ୍ଥା ଥିଲା ଏବଂ ନିଜ ଉପରେ ବିଶ୍ୱାସ ଜନ୍ମିଥିଲା । କୋଲଚକ୍ ଓ ତାଙ୍କ ଦଳର ଲୋକେ ଯେ କେବଳ ବଲ୍‌ସେଭିକ ନେତାଙ୍କ ଦକ୍ଷତା ଓ ସଂକଳ୍ପ ଯୋଗୁଁ ପରାଜିତ ହେଲେ ତାହା ନୁହେଁ; ଏହାର ଅନ୍ତର ଏକ କାରଣ ହେଉଛି, ରୁଷ କୃଷକ ସେମାନଙ୍କୁ ସାହାଯ୍ୟ କରିବାକୁ ମନା କରିଦେଲେ । କୃଷକମାନେ ବିଚାରିଲେ, ଏମାନେ ପୁରାତନ ବ୍ୟବସ୍ଥାର ପ୍ରତିନିଧି—ତାର ନୂତନ ଲବ୍‌ଧ ଜମି ଓ ଅନ୍ୟ ସୁବିଧା ସବୁ ଛଡ଼ାଇ ନେବାପାଇଁ ଆସିଛନ୍ତି । ତେଣୁ ସେ ମୃତ୍ୟୁପର୍ଯ୍ୟନ୍ତ ଏହିସବୁ ସୁବିଧା ରକ୍ଷା ନିମନ୍ତେ ସ୍ଥିର କଲା ।

ସର୍ବୋପରି ଏକ ଅପ୍ରତିଦ୍ୱନ୍ଦ୍ୱୀ ପ୍ରାଧାନ୍ୟ ଥିଲା ଲେନିନଙ୍କର । ରୁଷଲୋକଙ୍କ ଆଗରେ ସେ ଥିଲେ ଏକ ଅର୍ଦ୍ଧ-ଦେବତା, ଆଶା ଓ ବିଶ୍ୱାସର ପ୍ରତୀକ, ପ୍ରତ୍ୟେକ ବିପଦରୁ ବାଟ କଢ଼ାଇ ନେବାର ଜ୍ଞାନୀ ପୁରୁଷ ଯେ କି କୌଣସିଥିରେ କ୍ଷୁବ୍‌ଧ ହୁଅନ୍ତି ନାହିଁ କି ବିଚଳିତ ହୋଇପଡ଼ନ୍ତି ନାହିଁ । ସେ କାଳରେ ତାଙ୍କ ତଳକୁ ଥିଲେ [ଏବେ ରୁଷରେ ତାଙ୍କର ଅପଖ୍ୟାତି ହୋଇଯାଇଛି] ଟ୍ରଟ୍‌ସ୍କି – ଜଣେ ସୁଲେଖକ ଓ ବକ୍ତା; ପୂର୍ବରୁ କୌଣସି ସାମରିକ ଅଭିଜ୍ଞତା ନ ଥାଇ ଗୃହଯୁଦ୍ଧ ଓ ଅବରୋଧ ଅବସ୍ଥା ମଧ୍ୟରେ ଗୋଟାଏ ବିରାଟ ସେନା ତିଆରି କରିବାରେ ସେ ଲାଗିପଡ଼ିଥିଲେ । ଟ୍ରଟ୍‌ସ୍କି ଅତୀବ ସାହସୀ ଥିଲେ ଏବଂ ସର୍ବଦା ଯୁଦ୍ଧ କରୁ କରୁ ନିଜର ଜୀବନ ବିପଦ-ସଂକୁଳ କରି ପକାଇଥିଲେ । ଅନ୍ୟମାନଙ୍କଠାରେ ସାହସର ଅଭାବ ବା

ଶୃଙ୍ଖଳାର ଅଭାବ ଦେଖିଲେ ସେ ଉଳେଦ୍ୱେଲେ ଦୟା ଦେଖାଉ ନ ଥିଲେ । ଗୃହଯୁଦ୍ଧର ଏକ ସଙ୍କଟଜନକ ମୁହୂର୍ତ୍ତରେ ସେ ଏହି ହୁକୁମ ଦେଇଥିଲେ—

"ମୁଁ ସତର୍କ କରାଇ ଦେଉଛୁ – ଯଦି ବିନା ହୁକୁମରେ କୌଣସି ସୈନ୍ୟଦଳ ପଛଘୁଞ୍ଚା ଦଏ, ତେବେ ପ୍ରଥମେ ସେ ଦଳର କମିସାର ବା ଦଳପତିଙ୍କୁ ଗୁଳି କରାଯିବ, ତା ପରେ କମାଣ୍ଡର ବା ସେନାପତିଙ୍କୁ । ତାଙ୍କ ସ୍ଥାନରେ ସାହସୀ ଓ କର୍ମକ ସୈନିକମାନେ ନିଯୁକ୍ତ ହେବେ । ଭୀରୁ, କାପୁରୁଷ ଓ ବିଶ୍ୱାସଘାତକମାନେ ଗୁଳିମୁହଁରୁ ରକ୍ଷା ପାଇ ପାରିବେ ନାହିଁ । ମୁଁ ସମସ୍ତ ଲାଲ୍ ସେନା ସମକ୍ଷରେ ଏହି ଗୁରୁଗମ୍ଭୀର ଶପଥ ନେଉଛୁ ।"

ଟ୍ରଟସ୍କି ଏହା କହିଲେ ଏବଂ ନିଜର କଥା ରକ୍ଷା କଲେ ।

୧୯୧୯ ଅକ୍ଟୋବର ମାସରେ ସେନାଙ୍କ ପାଇଁ ଟ୍ରଟ୍‌ସ୍କିଙ୍କର ଆଉ ଏକ ହୁକୁମ ବଡ଼ ଆଗ୍ରହପ୍ରଦ । ବଲସେଭିକ୍‌ମାନେ କପରି ଦଙ୍ଗା ଲୋକ ଓ ପୁଞ୍ଜିବାଦୀ ସରକାର ଭିତରେ ପାର୍ଥକ୍ୟ ଦେଖାଇବାକୁ ଚେଷ୍ଟା କରୁଥିଲେ ଏବଂ କେବଳ ଗୋଟାଏ ଜାତୀୟ ମନୋଭାବକୁ ଦେଖୁ ନ ଥିଲେ, ଏହା ପରିଷ୍କାର ଜଣା ପଡ଼େ ।

ସେ ହୁକୁମରେ ଥିଲା—"ମାଡ ଆଜ ସୁଦ୍ଧା ଆମେ ଯେତେବେଳେ ଇଂଲଣ୍ଡର ଭଡ଼ାଟିଆ ୟୁଡେନିଚ୍ ସହିତ ବିକଟ ସଂଗ୍ରାମରେ ବ୍ୟାପୃତ ରହିଛେ, ସେତେବେଳେ ମୋର ଦାବୀ ଯେ ଦୁଇଟି ଇଂଲଣ୍ଡ ଅଛୁ ବୋଲି ତମେ ଯେପରି ଭୁଲ୍ ନ ଯାଅ । ଲଭ, ହିଂସା, ଉତ୍କୋଚ ଓ ରକ୍ତପିପାସୁ ଇଂଲଣ୍ଡ ଛଡ଼ା ଶ୍ରମିକ, ଆଧ୍ୟାତ୍ମିକ ଶକ୍ତି, ଆନ୍ତର୍ଜାତୀୟ ଦୃଢ଼ତା ସ୍ଥାପନର ଇଂଲଣ୍ଡ ବି ରହିଛୁ । ଧନୀ, ବ୍ୟବସାୟୀ ବାଣିଜ୍ୟ ମାଲିକଙ୍କର ନୀଚ ଓ ଅସାଧୁ ଇଂଲଣ୍ଡହିଁ ଆମ ସହିତ ଯୁଦ୍ଧ କରୁଛୁ । ଇଂଲଣ୍ଡର ଶ୍ରମିକ ଓ ସାଧାରଣ ଲୋକ ଆମ ସହିତ ରହିଛନ୍ତି ।"

ପେଟ୍ରୋଗ୍ରାଡ୍ 'ୟୁଡେନିଚ'ଙ୍କ ହାତରେ ପଡ଼ିବା ଅବସ୍ଥାରେ ହୋଇଥିଲା ବେଳେ ତାକୁ ରକ୍ଷା କରିବାପାଇଁ ଯେପରି ଅବିରାମ ସଂଗ୍ରାମ କରିବା ନିମନ୍ତେ ଲାଲସେନାଙ୍କୁ ଲଗାଯାଇଥିଲା, ତାହା ସେହି ବିଜ୍ଞପ୍ତିରୁ ଜଣାପଡ଼େ । ରାଜ୍ୟରକ୍ଷା କାଉନ୍‌ସିଲର ହୁକୁମ ହେଲା, "ଶେଷ ରକ୍ତବିନ୍ଦୁ ଥିବାପର୍ଯ୍ୟନ୍ତ ପେଟ୍ରୋଗ୍ରାଡ୍ ରକ୍ଷା କରିବାକୁ ହେବ, ଏକ ପାଦ ହେଲେ ଭୂମି ଶତ୍ରୁଙ୍କୁ ଛାଡ଼ିବା ନାହିଁ ଏବଂ ସହରର ଗଳିମାନଙ୍କରେ ଯୁଦ୍ଧ ଚଳାଇବାକୁ ହେବ ।"

ପ୍ରଧାନ ରୁଷ ଲେଖକ ମାକ୍‌ସିମ ଗର୍କି ଲେଖିଛନ୍ତି ଯେ ଲେନିନ୍ ଥରେ ଟ୍ରଟ୍‌ସ୍କିଙ୍କ ବିଷୟରେ କହିଥିଲେ :—

"ଆଚ୍ଛା, ମତେ ଆଉ ଗୋଟିଏ ଏପରି କେହି ଦକ୍ଷ ଲୋକ ଦେଖାଇ ଦିଅ, ଯେ କ ବର୍ଷକ ଭିତରେ ଏକ ଅତୁଳନୀୟ ସେନା ସଂଗଠିତ କରିଦେଇ ପାରିବ ଏବଂ ଆହୁରି ମଧ୍ୟ

ସାମରିକ ବିଶେଷଜ୍ଞମାନଙ୍କର ସମ୍ମାନ ବି ଅର୍ଜନ କରି ପାରିବ । ଆମ ଭିତରେ ସେପରି ଜଣେ ଲୋକ ଅଛି । ଆମର ସବୁ ରହିଛି । ଅଲୌକିକ ଘଟଣା ସବୁ ଘଟିବାର ବାକି ଅଛି ।"

ଏହି ଲାଲସେନା ଶୀଘ୍ର ବୃଦ୍ଧି ପାଇଲା । ୧୯୧୭ ଡିସେମ୍ବର ମାସରେ ବଲସେଭିକ୍‌ମାନେ କ୍ଷମତା ଅଧିକାର କରିବାର ଅଳ୍ପଦିନ ପରେ ଏହାର ସଂଖ୍ୟା ହେଲା ୪୩୫,୦୦୦ । ବ୍ରେଷ୍ଟଲିଟୋଭସ୍କ ସନ୍ଧି ପରେ ଏଥିରୁ ଅଧିକାଂଶ ଚାଲି ଯାଇଥିବେ ଏବଂ ନୂତନ ଗଢ଼ିବାକୁ ପଡ଼ିଥିବ । ୧୯୧୯ ମଧ୍ୟବେଳକୁ ଏହାର ସଂଖ୍ୟା ହୋଇଥିଲା ୧,୫୦୦,୦୦୦ । ବର୍ଷକ ପରେ ଏହାର ସଂଖ୍ୟା ମୋଟ ୫,୩୦୦,୦୦୦କୁ ଉଠିଲା ।

୧୯୧୯ ଶେଷ ବେଳକୁ ସୋଭିଏତ୍ ନିର୍ଦ୍ଦିଷ୍ଟ ଭାବରେ ଗୃହଯୁଦ୍ଧରେ ଥିବା ସେମାନଙ୍କର ଅସଲ ଶତ୍ରୁମାନଙ୍କୁ ପରାସ୍ତ କରି ସାରିଥିଲେ । ଯାହାହେଉ ଆଉ ଏକ ବର୍ଷ ପର୍ଯ୍ୟନ୍ତ ଯୁଦ୍ଧ ଚାଲିଲା ଏବଂ ଅନେକ ବ୍ୟଗ୍ରତାପୂର୍ଣ୍ଣ ମୁହୂର୍ତ୍ତ ପଡ଼ିଥିଲା । ୧୯୨୦ରେ ନୂତନ ପୋଲାଣ୍ଡ ରାଜ୍ୟର (ଜର୍ମାନ ପରାଜୟ ପରେ ନୂଆ ହୋଇ ଗଢ଼ା ହୋଇଥାଏ ) ରୁଷ ସହିତ ବିବାଦ ଲାଗିଲା ଏବଂ ଦୁହିଁଙ୍କ ଭିତରେ ଯୁଦ୍ଧ ଲାଗିଲା । ଏହି ସବୁ ଯୁଦ୍ଧ କାର୍ଯ୍ୟତଃ ୧୯୨୦ ବେଳକୁ ଶେଷ ହୋଇ ଯାଇଥିଲା ଏବଂ ଶେଷରେ ରୁଷ ଟିକିଏ ଶାନ୍ତି ପାଇଲା ।

ଏଥି ଭିତରେ ଆଭ୍ୟନ୍ତରୀଣ ଅସୁବିଧା ସବୁ ଉଠିଲା । ଯୁଦ୍ଧ ଅବରୋଧ, ରୋଗ ଓ ଦୁର୍ଭିକ୍ଷ ଫଳରେ ଦେଶ ବଡ଼ ଦୁର୍ଦ୍ଦଶାଗ୍ରସ୍ତ ହୋଇ ପଡ଼ିଥିଲା । ଉତ୍ପାଦନ ବହୁ ପରିମାଣରେ କମିଯାଇଥିଲା, କାରଣ ବିରୋଧୀ ସେନାମାନେ ଅବିରତ ସେମାନଙ୍କ ଉପରେ ମାଡ଼ି ଆସୁଥିଲା ବେଳେ କୃଷକମାନେ ଜମି ଚାଷ କରି ପାରିଲେ ନାହିଁ କିମ୍ବା ଶ୍ରମିକମାନେ କାରଖାନା ଚଳାଇ ପାରିଲେ ନାହିଁ । ଯୁଦ୍ଧ କମ୍ୟୁନିଜମ୍ (War Communism) କୌଣସି ପ୍ରକାରେ ଦେଶକୁ ଟାଣିନେଲା, କିନ୍ତୁ ପ୍ରତ୍ୟେକଙ୍କୁ ନିଜର ଆବଶ୍ୟକତା ବହୁତ କମାଇବାକୁ ପଡ଼ିଲା—ଶେଷରେ ଏହା ସହ୍ୟ କରିବା ବଡ଼ କଷ୍ଟକର ହୋଇପଡ଼ିଲା । କୃଷକମାନେ ଅଧିକ ଉତ୍ପାଦନ କରିବାରେ ଆଗ୍ରହ ଦେଖାଇଲେ ନାହିଁ; କାରଣ ସେମାନେ କହିଲେ ଯେ ସେତେବେଳେ ପ୍ରଚଳିତ ଯୁଦ୍ଧ କମ୍ୟୁନିଜମ୍ ଅନୁସାରେ ସେମାନେ ଯାହା କିଛି ଅଧିକା ଜିନିଷ ଆମଦାନୀ କରିବେ ତାହା ଷ୍ଟୋର ନେଇଯିବ । ସେମାନେ ଏତେ କଷ୍ଟ କରିବେ କାହିଁକି ? ଗୋଟାଏ ଅତି କଷ୍ଟକର ଓ ବିପଜ୍ଜନକ ପରିସ୍ଥିତି ଉପୁଜିଲା, ଏପରି କି ପେଟ୍ରୋଗ୍ରାଡ଼ ପାଖରେ କ୍ରୋନଷ୍ଟାଡ୍‌ଟରେ ଜାହାଜ ନାବିକମାନେ ବିଦ୍ରୋହ କଲେ ଏବଂ ପେଟ୍ରୋଗ୍ରାଡରେ ( ବା ଲେନିନ୍‌ଗ୍ରାଡ୍‌ରେ ) ଧର୍ମଘଟ ହେଲା ।

ପ୍ରଚଳିତ ଅବସ୍ଥା ସହିତ ମୂଳନୀତିକୁ ଖାପ ଖୁଆଇବା ପାଇଁ ନିଜର ବୁଦ୍ଧିଶକ୍ତି ସହ ଲେନିନ ତତ୍‌କ୍ଷଣାତ୍ କାର୍ଯ୍ୟ ଆରମ୍ଭ କଲେ । ସେ ଯୁଦ୍ଧ କମ୍ୟୁନିଜମ୍ ଶେଷ କଲେ ଏବଂ ନୂତନ ଆର୍ଥନୀତିକ ନୀତି ( New Economic Policy ) ବା 'ନେପ୍' ( ତାର ଆଦ୍ୟ ଅକ୍ଷରମାନଙ୍କୁ ମିଶାଇ ସଂକ୍ଷେପରେ କହନ୍ତି ) ନାମକ ନୂତନ ନୀତି ପ୍ରବର୍ତ୍ତନ କଲେ ।

ଏଥିରେ କୃଷକମାନେ ତାଙ୍କର ଉତ୍ପାଦନ ଓ ବିକ୍ରୀ କରିବାକୁ ଟିକିଏ ଅଧିକ ସ୍ୱାଧୀନତା ପାଇଲେ ଏବଂ ଏଥିରେ କେତେକ ପରିମାଣରେ ବ୍ୟକ୍ତିଗତ ବେପାରକୁ ବି ଅନୁମତି ଦିଆଗଲା । କେତେକ ପରିମାଣରେ କଠୋର କମ୍ୟୁନିଷ୍ଟ ନୀତିରୁ ପଛକୁ ହଟିଲେ । କିନ୍ତୁ ଏହା ଏକ କ୍ଷଣସ୍ଥାୟୀ ବ୍ୟାପାର ବୋଲି ଲେନିନ୍ ଏହାର ଯଥାର୍ଥତା ଦର୍ଶାଇଲେ । ଏହା ନିଃସ୍ୱ ଲୋକମାନଙ୍କୁ କିଛି ସାହାଯ୍ୟ କଲା । କିନ୍ତୁ ଶୀଘ୍ର ରୁଷକୁ ଆଉ ଏକ ଭୀଷଣ ବିପଦର ସମ୍ମୁଖୀନ ହେବାକୁ ପଡ଼ିଲା । ଭୀଷଣ ଅନାବୃଷ୍ଟି ଏବଂ ଦକ୍ଷିଣ ପୂର୍ବ ରୁଷର ବିଶାଳ ଅଞ୍ଚଳରେ ଶସ୍ୟହାନି ହେତୁ ଦୁର୍ଭିକ୍ଷ ପଡ଼ିଲା । ଏହା ଏକ ଭୟାନକ ଦୁର୍ଭିକ୍ଷ; ଏଥିପୂର୍ବରୁ ଜଣାଥିବା ଦୁର୍ଭିକ୍ଷଠାରୁ ବଡ଼ ଏବଂ ଲକ୍ଷ ଲକ୍ଷ ଲୋକ ଏଥିରେ ଲୋପ ପାଇଗଲେ । ଅନେକ ବର୍ଷର ଯୁଦ୍ଧ, ଗୃହଯୁଦ୍ଧ, ଅବରୋଧ ଓ ଆର୍ଥନୀତିକ ଅଚଳ ଅବସ୍ଥା ପରେ ଏବଂ ସୋଭିଏଟ୍ ସରକାର ସ୍ଥିର ହୋଇ ଶାନ୍ତିପୂର୍ବକ କାର୍ଯ୍ୟମାନ କରିବା ନିମନ୍ତେ ସମୟ ପାଇବା ପୂର୍ବରୁ ଏହା ଆସିବାରୁ ଏହା ସମସ୍ତ ସରକାରୀ ସଙ୍ଗଠନକୁ ଦୁର୍ବଳ କରି ଦେଇ ପାରିଥାନ୍ତା । ଯାହା ହେଉ ଏଥିପୂର୍ବରୁ ଘଟିଥିବା ବିପଦମାନଙ୍କର ସମ୍ମୁଖୀନ ହେଲାପରି ସୋଭିଏଟ୍ ଏଥିରୁ ବି ଉଦ୍ଧାର ପାଇଲା । ଦୁର୍ଭିକ୍ଷ ସାହାଯ୍ୟ ଦିଗରେ କିପରି ସାହାଯ୍ୟ କରିପାରିବେ ଏଥି ନିମନ୍ତେ ଇଉରୋପୀୟ ସରକାରଗୁଡ଼ିକର ପ୍ରତିନିଧିମାନଙ୍କର ଗୋଟିଏ ସମ୍ମିଳନୀ ହେଲା । ସୋଭିଏଟ୍ ସରକାର ପୁରୁଣା ଯେଉଁସବୁ ଜାରଅମଳର କରଜ ଦେବନାହିଁ ବୋଲି ଘୋଷଣା କରିଛି, ତାହା ଦେବାନିମନ୍ତେ ପ୍ରତିଶ୍ରୁତି ନ ଦେବା ପର୍ଯ୍ୟନ୍ତ ସେମାନେ କୌଣସି ସାହାଯ୍ୟ ଦେବେନାହିଁ ବୋଲି ଘୋଷଣା କଲେ । ମାନବିକତା ଅପେକ୍ଷା ମହାଜନୀ କାରବାର ଖୁବ ବେଶି ଶକ୍ତିଶାଳୀ ଥିଲା ଏବଂ ଏପରିକି ରୁଷର ମାତାମାନଙ୍କଠାରୁ ତାଙ୍କର ମୁମୂର୍ଷୁ ସନ୍ତାନମାନଙ୍କୁ ସାହାଯ୍ୟ ଦେବାର ହୃଦୟ-ବିଦାରକ ଆବେଦନ ପ୍ରତି ମଧ୍ୟ କର୍ଣ୍ଣପାତ କରାଗଲା ନାହିଁ । କିନ୍ତୁ ଆମେରିକା ସଂଯୁକ୍ତରାଷ୍ଟ୍ର କୌଣସି ସର୍ତ୍ତ ରଖିଲା ନାହିଁ ଏବଂ ବହୁତ ସାହାଯ୍ୟ ପଠାଇଲା ।

ରୁଷ ଦୁର୍ଭିକ୍ଷରେ ସାହାଯ୍ୟ କରିବା ପାଇଁ ଇଂଲଣ୍ଡ ଓ ଅନ୍ୟ ଇଉରୋପୀୟ ଦେଶମାନେ ଅସ୍ୱୀକାର କଲେ ସୁଦ୍ଧା ସେମାନେ ଅନ୍ୟଭାବରେ ସୋଭିଏଟକୁ ବର୍ଜନ କରୁ ନ ଥିଲେ । ୧୯୨୧ ଆରମ୍ଭରେ ଆଙ୍ଗ୍ଲୋ-ରୁଷ ବାଣିଜ୍ୟ ଚୁକ୍ତି ହେଲା । ଆହୁରି ଅନେକ ଦେଶ ଏହି ଦୃଷ୍ଟାନ୍ତ ଅନୁସରଣ କଲେ ଏବଂ ସୋଭିଏଟ୍ ସହିତ ବାଣିଜ୍ୟଚୁକ୍ତି କଲେ ।

ଚୀନ, ତୁର୍କି, ପର୍ସିଆ ଓ ଆଫଗାନିସ୍ଥାନ ପ୍ରଭୃତି ପ୍ରାଚ୍ୟ ଦେଶମାନଙ୍କ ସହିତ ସୋଭିଏଟ୍ ଏକ ଉଦାର ନୀତି ଅନୁସରଣ କଲା । ସେମାନେ ଜାରଅମଳର ସୁବିଧା ସବୁ ଛାଡ଼ିଦେଲେ ଏବଂ ଖୁବ୍ ବନ୍ଧୁତା ରଖିବା ନିମନ୍ତେ ଚେଷ୍ଟା କଲେ । ସମସ୍ତ ପରାଧୀନ ଓ ଶୋଷିତ ଦେଶର ସ୍ୱାଧୀନତା ପାଇବା ଅଧିକାର ନୀତି ଅନୁସାରେ ସେମାନେ ଏହା କରିଥିଲେ; କିନ୍ତୁ ତାଙ୍କର ଆଉ ଏକ ପ୍ରଧାନ ମତଲବ ହେଲା ନିଜର ଅବସ୍ଥା ଦୃଢ଼ କରିବା । ସୋଭିଏଟ ରୁଷର ଏହି ଉଦାର ଭାବ ଯୋଗୁଁ ଇଂଲଣ୍ଡ ପରି ସାମ୍ରାଜ୍ୟବାଦୀ ଦେଶମାନେ ଅନେକ

ସମସ୍ୟରେ ବଡ଼ ଅଡୁଆ ଅବସ୍ଥାରେ ପଡ଼ିଲେ ଏବଂ ପ୍ରାଚ୍ୟ ଦେଶମାନ ଉଭୟଙ୍କ ଭିତରେ ତୁଳନା କରିବାକୁ ଲଗିଲେ; ଏଥିରେ ଇଂଲଣ୍ଡ ଓ ଅନ୍ୟ ଶକ୍ତିମାନଙ୍କ ପାଇଁ ଅଡୁଆ ହୋଇଥିଲା ।

୧୯୧୯ରେ ଆଉ ଏକ ପ୍ରଧାନ ଘଟଣା ଘଟିଲା; ସେ ବିଷୟରେ ମୁଁ ଟିକେ କହିବି । ଏହା ହେଉଛି କମ୍ୟୁନିଷ୍ଟ ପାର୍ଟିଦ୍ୱାରା ମସ୍କୋଠାରେ 'ତୃତୀୟ ଆନ୍ତର୍ଜାତିକ'ର ସ୍ଥାପନା । ମୁଁ ପୂର୍ବ ଚିଠିମାନଙ୍କରେ କାର୍ଲ ମାର୍କସ୍ ଯେଉଁ ପ୍ରଥମ ଆନ୍ତର୍ଜାତିକ ସ୍ଥାପନା କରିଥିଲେ ସେ ବିଷୟ ଟିକେ କହିଛି । ଦ୍ୱିତୀୟ ଆନ୍ତର୍ଜାତିକ ଖୁବ୍ ସାହସିକ କଥାମାନ କହି ୧୯୧୪ର ଯୁଦ୍ଧ ଆରମ୍ଭରେ ଶୋଚନୀୟ ଅବସ୍ଥାରେ ପଡ଼ିଲା । ବଲ୍‌ସେଭିକମାନେ ବିଶ୍ୱାସ କଲେ ଯେ, ଦ୍ୱିତୀୟ ଆନ୍ତର୍ଜାତିକରେ ଥିବା ପୁରୁଣା ଶ୍ରମିକ ଓ ସୋସିଆଲିଷ୍ଟ ପାର୍ଟି ସବୁ ଶ୍ରମିକଶ୍ରେଣୀକୁ ଦଗା ଦେଲେ । ସେଥିପାଇଁ ଏକ ନିର୍ଦ୍ଦିଷ୍ଟ ବୈପ୍ଳବିକ ଦୃଷ୍ଟିକୋଣ ନେଇ ପୁଞ୍ଜିବାଦ ଓ ସାମ୍ରାଜ୍ୟବାଦ ବିରୁଦ୍ଧରେ ଯୁଦ୍ଧ ଚଳାଇବା ନିମନ୍ତେ ଏବଂ ସୁବିଧାବାଦୀ ସୋସିଆଲିଷ୍ଟଙ୍କର "ମଝି ମଝିକା" ନୀତି ବିରୁଦ୍ଧରେ ସେମାନେ ତୃତୀୟ ଆନ୍ତର୍ଜାତିକର ସ୍ଥାପନା କଲେ । ଏହି ଆନ୍ତର୍ଜାତିକକୁ ଅନେକ ସମୟରେ 'କମିଣ୍ଟର୍ଣ୍ଣ' ('କମ୍ୟୁନିଷ୍ଟ ଇଣ୍ଟରନେସନାଲ' ଶବ୍ଦରୁ ଗୃହୀତ ) ବୋଲି କୁହାଯାଏ ଏବଂ ଅନେକ ଦେଶର ପ୍ରଚାର କରିବାରେ ଏହା ପ୍ରଧାନ ଭାଗ ନେଇଛି । ଏହାର ନାମରୁ ଦେଖାଯାଏ ବିଭିନ୍ନ ଦେଶର ବିଭିନ୍ନ କମ୍ୟୁନିଷ୍ଟ ପାର୍ଟିମାନଙ୍କଦ୍ୱାରା ନିର୍ବାଚିତ ପ୍ରତିନିଧିଙ୍କ ସଙ୍ଗଠନହିଁ ଆନ୍ତର୍ଜାତିକ; କିନ୍ତୁ ଏକମାତ୍ର ରୁଷରେହିଁ କମ୍ୟୁନିଜମ୍ ସଫଳ ହୋଇଥିବାରୁ ଏହା ସ୍ୱାଭାବିକ ରୂପେ ଏଥିରେ ପ୍ରଧାନ୍ୟ କରୁଛି । ଯଦିଓ ଅନେକ ଲୋକ ଉଭୟରେ ମୁଖ୍ୟସ୍ଥାନ ଅଧିକାର କରିଛନ୍ତି, ତଥାପି କମିଣ୍ଟର୍ଣ୍ଣ ସୋଭିଏଟ ଗଭର୍ଣ୍ଣମେଣ୍ଟ ଉଭୟ ଅଲଗା ଅଲଗା ଜିନିଷ । କମିଣ୍ଟର୍ଣ୍ଣ ବୈପ୍ଳବିକ କମ୍ୟୁନିଜମକୁ ସାରାଜଗତେ ବିସ୍ତାରକରିବାର ସଙ୍ଗଠନ ହୋଇଥିବାରୁ ସାମ୍ରାଜ୍ୟବାଦୀ ଶକ୍ତିମାନେ ଏହାକୁ ଖୁବ୍ ଘୃଣା କରନ୍ତି ଏବଂ ନିଜ ନିଜ ରାଜ୍ୟରେ ସେମାନେ ଏହାର କାର୍ଯ୍ୟକଳାପ ଦବାଇ ଦେବା ନିମନ୍ତେ ସର୍ବଦା ଚେଷ୍ଟା କରୁଛନ୍ତି ।

ଦ୍ୱିତୀୟ ଆନ୍ତର୍ଜାତିକ (ଶ୍ରମିକ ଓ ସାମ୍ୟବାଦୀ ଆନ୍ତର୍ଜାତିକ) ମଧ୍ୟ ଯୁଦ୍ଧ ପରେ ପଶ୍ଚିମ ଇଉରୋପରେ ପୁଣି ଗଢ଼ିଲା । ଅନ୍ତତଃ ତଥ୍ୟ ଦୃଷ୍ଟିରୁ ଅନେକ ପରିମାଣରେ ଦ୍ୱିତୀୟ ଓ ତୃତୀୟ ଆନ୍ତର୍ଜାତିକର ଉଦ୍ଦେଶ୍ୟ ଏକ; କିନ୍ତୁ ସେମାନଙ୍କର ଆଦର୍ଶବାଦ ଓ ପ୍ରଣାଳୀରେ ବହୁତ ପାର୍ଥକ୍ୟ ରହିଛି ଏବଂ ଉଭୟଙ୍କ ଭିତରେ ଆଦୌ ଶ୍ରଦ୍ଧା ନାହିଁ । ସେମାନେ ସାଧାରଣ ଶତ୍ରୁ ପୁଞ୍ଜିବାଦ ଅପେକ୍ଷା ନିଜ ଭିତରେ ବେଶୀ କଳହ, ଯୁଦ୍ଧ କରନ୍ତି ଓ ଆକ୍ରମଣ କରନ୍ତି । ଦ୍ୱିତୀୟ ଆନ୍ତର୍ଜାତିକ ଏବେ ଏକ ଅତ୍ୟନ୍ତ ଭଦ୍ର ଅନୁଷ୍ଠାନ ହୋଇଯାଇଛି ଏବଂ ଇଉରୋପୀୟ ସରକାରମାନଙ୍କରେ ମନ୍ତ୍ରୀମଣ୍ଡଳ ସଦସ୍ୟ ଏଥିରୁ ହୋଇଛନ୍ତି, ତୃତୀୟଟି ବିପ୍ଳବୀ ହୋଇ ରହିଛି ଏବଂ ଟେଣ୍ଡ ଭଦ୍ର ପଦର ବହୁ ଦୂରରେ ଅଛି ।

ଋଷିଆରେ ଗୃହଯୁଦ୍ଧ କାଳ ସାରା ଲାଲ ଆତଙ୍କ ଓ ଶ୍ୱେତ ଆତଙ୍କ ଅତ୍ୟନ୍ତ କଠୋର ନିଷ୍ଠୁରତା ସହ ପରସ୍ପର ଭିତରେ ପ୍ରତିଯୋଗିତା କଲେ ଏବଂ ବୋଧ ହୁଏ ଦ୍ୱିତୀୟଟି ବହୁ ପରିମାଣରେ ପ୍ରଥମକୁ ଟପିଗଲା । ଆମେରିକା ସେନାପତିଙ୍କର (ଯାହାଙ୍କ ଲେଖା ମୁଁ ଆଗରୁ ଉଦ୍ଧୃତ କରିଥିଲି) ସାଇବେରିଆରେ କୋଲଚାକ୍ ନୃଶଂସତା ବିବରଣୀ ଓ ଅନ୍ୟ ବିବରଣୀମାନଙ୍କରୁ ଜଣେ ଏହି ସିଦ୍ଧାନ୍ତରେ ପହଞ୍ଚିବ । କିନ୍ତୁ ଏଥିରେ ସନ୍ଦେହ ନାହିଁ ଯେ ଲାଲ ଆତଙ୍କ ଅତି ଭୀଷଣ ଥିଲା ଏବଂ ଅନେକ ନିରପରାଧ ଲୋକ ବି ଏଥିରେ କଷ୍ଟ ଭୋଗିଥିବେ । ସବୁ ଆଡ଼ୁ ଆକ୍ରମଣ ହେବାରୁ ଏବଂ ଷଡ଼ଯନ୍ତ୍ର ଓ ଗୁପ୍ତଚରମାନଙ୍କ ଦ୍ୱାରା ପରିବେଷ୍ଟିତ ହେବାରୁ ବଲଶେଭିକମାନେ ନିଜର ମତ ଠିକ ରଖି ପାରିଲେ ନାହିଁ ଏବଂ ସାମାନ୍ୟ ସନ୍ଦେହ ହେଲେ ସେମାନେ ଗୁରୁତର ଶାସ୍ତି ଦେଉଥିଲେ । ଏହି ଆତଙ୍କବାଦରେ ତାଙ୍କର ରାଜନୀତିକ ପୁଲିସର ଭାରି ବଦନାମ ଥିଲା । ଏହାକୁ 'ଚେକା' (chaka) କହନ୍ତି । ଏହା ଭାରତର ସି. ଆଇ. ଡ଼ି. ପରି; କିନ୍ତୁ ଆହୁରି ଅଧିକ କ୍ଷମତା ଥିଲା ।

ଚିଠିଟା ଦୀର୍ଘ ହୋଇଯାଉଛି । କିନ୍ତୁ ମୁଁ ଏହା ଶେଷ କରିବା ପୂର୍ବରୁ ଲେନିନଙ୍କ ବିଷୟରେ ଟିକେ ଆଉ କିଛି କହିବି । ୧୯୧୮ ମସିହାରେ ତାଙ୍କର ଜୀବନ ନେବାର ଯେଉଁ ଉଦ୍ୟମ ହୋଇଥିଲା, ସେଥିରେ କ୍ଷତି ଦଣ୍ଡେ ସେ ଅଧିକ ବିଶ୍ରାମ ନେଇ ପାରି ନ ଥିଲେ । ସେ ଭୀଷଣ ଜୋର ସହିତ କାର୍ଯ୍ୟ କରିବାରେ ଲାଗିଲେ ଏବଂ ୧୯୨୨ର ମେ ମାସରେ ପତନ ଅନିବାର୍ଯ୍ୟ ରୂପେ ଆସିଲା । ସାମାନ୍ୟ ଅବସର ନେବା ପରେ ସେ ପୁଣି କାର୍ଯ୍ୟରେ ଲାଗିଲେ; କିନ୍ତୁ ବେଶିକ୍ଷଣ ନୁହେଁ । ୧୯୨୩ରେ ଅବସ୍ଥା ଆହୁରି ଖରାପ ହେଲା; ଏଥିରୁ ସେ ଆଉ ଆରୋଗ୍ୟ ହୋଇ ପାରିଲେ ନାହିଁ ଏବଂ ୧୯୨୪ ମସିହା ଜାନୁଆରୀ ୨୧ ତାରିଖରେ ସେ ମସ୍କୋ ନିକଟରେ ମରିଗଲେ ।

ଅନେକ ଦିନ ପର୍ଯ୍ୟନ୍ତ ତାଙ୍କ ଶରୀର ମସ୍କୋରେ ଥିଲା । ସେତେବେଳେ ଶୀତଋତୁ । ରାସାୟନିକ ପଦାର୍ଥ ଦ୍ୱାରା ତାଙ୍କ ଶରୀର ସୁରକ୍ଷିତ ହୋଇ ରହିଲା । ସମଗ୍ର ରୁଷର ଓ ସୁଦୂର ସାଇବେରିଆ ମରୁପ୍ରାନ୍ତରର ସାଧାରଣ ଲୋକ କୃଷକ ଓ ଶ୍ରମିକ, ପୁରୁଷ, ନାରୀ ଓ ବାଳକମାନଙ୍କର ପ୍ରତିନିଧିମାନେ ତାଙ୍କର ପ୍ରିୟ ସାଥିଙ୍କୁ ଶେଷ ଶ୍ରଦ୍ଧାଞ୍ଜଳି ଦେବା ନିମନ୍ତେ ଆସିଲେ । ଏହି ସାଥି ହିଁ ଗହ୍ୱର ଭିତରୁ ସେମାନଙ୍କୁ ବାହାର କରି ଆଣିଥିଲେ ଏବଂ ପୁରୁଷୋଚିତ ଜୀବନ ନିମନ୍ତେ ପଥ ଦର୍ଶାଇ ଦେଇଥିଲେ । ମସ୍କୋର ସୁନ୍ଦର 'ରେଡ଼ ସ୍କୋୟାର'ରେ ତାଙ୍କର ଗୋଟିଏ ସାଧାସିଧା ଓ ଅନାଡ଼ମ୍ବର କବର ନିର୍ମିତ ଥିଲା ଏବଂ ସେଠି ତାଙ୍କ ଶରୀର ଏବେ ସୁଦ୍ଧା କାଚ ସିନ୍ଦୁକରେ ରହିଛି ଏବଂ ପ୍ରତିଦିନ ସନ୍ଧ୍ୟାବେଳେ ତାହା ନିକଟ ଦେଇ ଅସରନ୍ତି ଶୋଭାଯାତ୍ରା ନୀରବରେ ଚାଲିଯାଏ । ତାଙ୍କ ମୃତ୍ୟୁ କିଛି ବେଶି ଦିନ ହୋଇନାହିଁ ଏବଂ ଏଥି ଭିତରେ ଲେନିନଙ୍କ ନାମ ଖାଲି ତାଙ୍କ ଜନ୍ମଭୂମି ରୁଷରେ ନୁହେଁ ସମଗ୍ର ଦୁନିଆରେ ଏକ ବିରାଟ ଐତିହ୍ୟ ହୋଇ ସାରିଲାଣି । କାଳ ଅତିକ୍ରମ ହେବା ସଙ୍ଗେ ସଙ୍ଗେ ସେ ଆହୁରି ବଡ଼

ହୋଇଛନ୍ତି, ପୃଥିବୀର ଅମର ଲୋକଙ୍କ ଭିତରେ ସେ ଜଣେ ହୋଇ ରହିଛନ୍ତି, ପେଟ୍ରୋଗ୍ରାଡ଼ର ନାମ ଲେନିନ୍‌ଗ୍ରାଡ଼ ହୋଇଛି ଏବଂ ରୁଷର ପ୍ରାୟ ପ୍ରତ୍ୟେକ ଘରେ ଲେନିନ କୋଣ ବା ଲେନିନ ଛବି ରହିଛି । କିନ୍ତୁ ତାଙ୍କର ସ୍ମୃତି କୌଣସି ସ୍ମୃତିସ୍ତମ୍ଭ ବା କବରରେ ନାହିଁ । ସେ ଯେଉଁ ବିରାଟ କାର୍ଯ୍ୟ କରିଥିଲେ ତାହାର ଭିତରେ ଏବଂ ଲକ୍ଷ ଲକ୍ଷ ଶ୍ରମିକଙ୍କ ହୃଦୟରେ ଆଜି ସେ ବାସ କରୁଛନ୍ତି । ସେମାନେ ତାଙ୍କ ଦୃଷ୍ଟାନ୍ତର ପ୍ରେରଣା ଲାଭ କରନ୍ତି ଓ ଶୁଭ ଦିବସ ଆସିବ ବୋଲି ଆଶାବାନ୍ଧି ବସିଛନ୍ତି ।

ମନେ କରିବୁ ନାହିଁ ଯେ ଲେନିନ ଏକ ପ୍ରକାର ଅମାନୁଷିକ ଯନ୍ତ୍ର ପରି ନିଜର କାର୍ଯ୍ୟରେ ମଗ୍ନ ଥିଲେ ଓ ଅନ୍ୟ କିଛି କଥା ଭାବୁ ନ ଥିଲେ । ସେ ସମ୍ପୂର୍ଣ୍ଣ ଭାବରେ ନିଜର କାର୍ଯ୍ୟ ଓ ଜୀବନର ଉଦ୍ଦେଶ୍ୟରେ ମଗ୍ନ ଥିଲେ ନିଶ୍ଚୟ ଏବଂ ତାହା ସଙ୍ଗେ ସଙ୍ଗେ ମଧ୍ୟ ସୁସ୍ପୁର ଆତ୍ମ-ଚେତନାଶୂନ୍ୟ ନ ଥିଲେ; ସେ ଏକ ଭାବଧାରାର ପ୍ରତୀକ ଥିଲେ । ତଥାପି ସେ ମଣିଷ-ମାନଙ୍କ ପରି ଥିଲେ ଏବଂ ମନୁଷ୍ୟ ଚରିତ୍ର ଭିତରେ ଯାହା ସବୁଠାରୁ ବଡ଼ କଥା – ପ୍ରତ୍ୟେକ ବିଷୟ ଆନନ୍ଦରେ ଉପଭୋଗ କରିବା ପ୍ରକୃତି, ତାହା ବି ତାଙ୍କର ଥିଲା । ମସ୍କୋରେ ବ୍ରିଟିଶ ଏଜେଣ୍ଟ ଲକହାର୍ଟ ବୋଲ୍‌ଶେଭିକ୍‌ର ପ୍ରଥମ ବିପଦ କାଳରେ ସେଠାରେ ଥିଲେ; ସେ କହନ୍ତି ଯେ ଯାହା ଘଟୁ ପଛକେ ଲେନିନ୍ ସର୍ବଦା ଖୁବ୍ ପ୍ରଫୁଲ୍ଲ ରହୁଥିଲେ । ସେହି ବ୍ରିଟିଶ କୂଟନୀତଜ୍ଞ କହିଛନ୍ତି, "ମୁଁ ଯେତେ ସାଧାରଣ କ୍ଷେତ୍ରର ନେତା ଦେଖିଛି, ତାହା ମଧ୍ୟରେ ତାଙ୍କର ସ୍ୱଭାବରେ ସମତା ଥିଲା ସବୁଠାରୁ ବେଶୀ" । ତାଙ୍କର କଥାବାର୍ତ୍ତା ଓ କାର୍ଯ୍ୟରେ ସେ ବଡ଼ ସରଳ ଓ ସ୍ପଷ୍ଟ ଥିଲେ ଏବଂ ବଡ଼ ବଡ଼ ଶବ୍ଦ ଓ ଆଡ଼ମ୍ବରକୁ ଘୃଣା କରୁଥିଲେ । ସେ ସଙ୍ଗୀତକୁ ଭଲ ପାଉଥିଲେ ଏବଂ ଏତେ ଅଧିକ ଭଲ ପାଉଥିଲେ ଯେ ତାଙ୍କର ଭୟ ଯେ ଏହା ହୁଏତ ତାଙ୍କୁ ବହୁତ ପ୍ରଭାବିତ କରିପାରେ ଏବଂ ତାଙ୍କ କାମରେ ସେ ବଡ଼ ନରମ ହୋଇ ଯାଇପାରନ୍ତି ।

ଲେନିନ୍‌ଙ୍କର ଜଣେ ସହକର୍ମୀ ଲୁନାଚାର୍ସ୍କି ଅନେକ ଦିନ ପର୍ଯ୍ୟନ୍ତ ବଲସେଭିକ ଶିକ୍ଷା କମିଶନର ଥିଲେ; ସେ ଥରେ ତାଙ୍କ ବିଷୟରେ ଗୋଟାଏ ବିଚିତ୍ର କଥା କହିଥିଲେ । ସେ ଲେନିନଙ୍କର ପୁଞ୍ଜିବାଦୀମାନଙ୍କୁ ଶାସ୍ତି ଦେବା ପଦ୍ଧତି ଖ୍ରୀଷ୍ଟଙ୍କର ମନ୍ଦିରମାନରୁ ମହାଜନମାନଙ୍କୁ ବାହାର କରିଦେବା କଥାର ତୁଳନା କରିଥିଲେ ଏବଂ କହିଥିଲେ, ଆଜି ଯଦି ଖ୍ରୀଷ୍ଟ ବଞ୍ଚିଥାନ୍ତେ, ତେବେ ସେ ଜଣେ ବଲସେଭିକ୍ ହୋଇଥାନ୍ତେ । ଅଧାର୍ମିକ ଲୋକଙ୍କ ପକ୍ଷରେ ଏକ ବିଚିତ୍ର ତୁଳନା ।

ସ୍ତ୍ରୀଲୋକଙ୍କ ସମ୍ବନ୍ଧରେ ଲେନିନ୍ ଥରେ କହିଥିଲେ, ଲୋକସଂଖ୍ୟାର ଅଧେ ରୋଷାଇ ଘରେ ଦାସ ହୋଇ ରହିଥିବା ବେଳେ କୌଣସି ଜାତି ସ୍ୱାଧୀନ ହୋଇ ପାରେନା । ସେ କେତେକ ପିଲାଙ୍କୁ ଆଦର କରୁଥିବା ବେଳେ ଦିନେ ବଡ଼ ଅର୍ଥବ୍ୟଞ୍ଜକ ମନ୍ତବ୍ୟ କରିଥିଲେ । ତାଙ୍କର ପୁରାତନ ବନ୍ଧୁ ମାକ୍‌ସିମ୍ ଗର୍କି କହନ୍ତି ଯେ ସେ କହିଥିଲେ – "ଆମ ଅପେକ୍ଷା ଏମାନଙ୍କର ଜୀବନ ଅଧିକ ସୁଖମୟ ହେବ । ଆମ ଜୀବନରେ ଯାହାସବୁ ଘଟିଲା, ସେପରି ଅନେକ କଥା ଏମାନଙ୍କୁ ଭୋଗିବାକୁ ପଡ଼ିବ ନାହିଁ । ତାଙ୍କ ଜୀବନରେ ଏତେ ନିଷ୍ଠୁରତା ଘଟିବ ନାହିଁ ।" ଚାଲ ଆମେ ବି ସେହିପରି ଆଶା ପୋଷଣ କରିବା ।

ନାଟ୍ୟଶାଳା ଓ ଲୋକଙ୍କର ଗାଇବା ନିମନ୍ତେ ଏବେ ହୋଇଥିବା ଏକ ଋଷୀୟ ସଙ୍ଗୀତ ଏଠାରେ ଦେଇ ମୁଁ ମୋର ଚିଠି ଶେଷ କରିବି । ଯେଉଁମାନେ ଏହା ଶୁଣିଛନ୍ତି ସେମାନେ କହନ୍ତି ଯେ ଏହି ସଙ୍ଗୀତ ଜୀବନ୍ତ ଓ ଶକ୍ତିପୂର୍ଣ୍ଣ ଏବଂ ଏହି ଗୀତଟି ବିଦ୍ରୋହୀ ଜନତାର ହୃଦୟର ଭାବ ପ୍ରକଟିତ କରୁଛି । ଏପରି କି ମୁଁ ଏଠି ଯେଉଁ ଇଂରେଜୀ ଅନୁବାଦ ଦେଉଛି, ସେଥିରେ ବି ସେହିପରି ଭାବ ରହିଛି । ଏହି ଗୀତକୁ 'ଅକ୍ଟୋବର' ବୋଲି କହନ୍ତି ଏବଂ ଏହାର ଅର୍ଥ ହେଉଛି ୧୯୧୭ ମସିହା ନଭେମ୍ବର ମାସରେ ବଲସେଭିକ୍ ବିପ୍ଳବ । ସେ କାଳର ଋଷୀୟ କାଲେଣ୍ଡରକୁ ଅସଂସ୍କୃତ କାଲେଣ୍ଡର କୁହାଯାଏ ଏବଂ ସାଧାରଣ ପାଶ୍ଚାତ୍ୟ କାଲେଣ୍ଡରଠାରୁ ଏହା ୧୩ ଦିନ ପଛରେ । ଏହି କାଲେଣ୍ଡର ଅନୁସାରେ ୧୯୧୭ ମସିହାର ମାର୍ଚ୍ଚ ବିପ୍ଳବ ଫେବୃୟାରୀରେ ହୋଇଥିଲା ଏବଂ ସେଥିପାଇଁ ଏହାକୁ "ଫେବୃୟାରୀ ବିପ୍ଳବ" ବୋଲି କହନ୍ତି ଏବଂ ସେହିପରି ବଲସେଭିକ ବିପ୍ଳବ ୧୯୧୭ ନଭେମ୍ବର ମାସରେ ହୋଇଥିଲା, ତାକୁ "ଅକ୍ଟୋବର ବିପ୍ଳବ" ବୋଲି କହନ୍ତି । ଋଷ ଏବେ କାଲେଣ୍ଡର ବଦଳାଇ ଦେଇଛି; କିନ୍ତୁ ଏହି ପୁରୁଣା ନାମ ଏବେ ସୁଦ୍ଧା ବ୍ୟବହୃତ ହୁଏ ।

କାମ ପାଇଁ ରୁଟି ପାଇଁ ଯେବେ ଆମେ କଲୁ ଚିତ୍କାର,
ଦୁଃସହ ହତାଶେ ଯେବେ ଜୀର୍ଣ୍ଣ ହେଲା ସକଳ ଅନ୍ତର ।
କଳଘର ଧୂଆଁ ନଳ ସବୁ ଭେଦିଥିଲା ଆକାଶର ବୁକୁ
ପଣ୍ଡିତ ହାତ ପରି—ବଳ ନାହିଁ ମୁଠା ଭିଡ଼ିବାକୁ ।

ତୋପଠାରୁ ତୀବ୍ରତର ହୋଇ ଆମ ଦୈନ୍ୟ, ଧୀନତାର କଥା
ଖରସ୍ୱରେ ଉଠିଲା ଗରଜି—ଭାଙ୍ଗିଗଲା ଘନ ନୀରବତା ।

ହେ ଲେନିନ ! ଜଡ଼ପିଣ୍ଡ ଆଶା—ଶେଷେ ଆମେ ବୁଝିଲୁଣି ପରା
ଭାଗ୍ୟ ଆମ ବିପ୍ଳବ ପ୍ରବାହ—ଯୁଦ୍ଧ ଖାଲି—ବିପ୍ଳବର ଧାରା ।

ଆମ ଶ୍ରମ ବିଜୟ ସନ୍ଧାନ ଆମ ହାତେ ଦେଇଛ ବଢ଼ାଇ
ଅନ୍ଧକାର ଅତ୍ୟାଚାର ପରେ ଏ ବିଜୟ ଦେଇଛ ଗଢ଼ାଇ
କା'ର ଶକ୍ତି ନାହିଁ—ନାହିଁ ଆଜି ଆମ ହାତୁ ନେବ ତା ଛଡ଼ାଇ !

ଅକ୍ଟୋବର ଆମରି ବିପ୍ଳବ—ସୂର୍ଯ୍ୟ ରାଜ୍ୟ ଆଲୋକର ବାର୍ତ୍ତା
ଏ ବିପ୍ଳବ ଜନ୍ମୁ ପ୍ରାଣେ ପ୍ରାଣେ ତାରୁଣ୍ୟର ସାହସର ସତ୍ତା

ବିପ୍ଳବ ଶତାବ୍ଦୀ ଭାଲେ ଅକ୍ଟୋବର ଉଚ୍ଚ ଅଭିଳାଷ
ଅକ୍ଟୋବର ଶ୍ରମର ସାମ୍ରାଜ୍ୟ—ଆନନ୍ଦର ସଙ୍ଗୀତ ଉଚ୍ଛ୍ୱାସ
ସୌଭାଗ୍ୟର ସ୍ୱର୍ଣ୍ଣ ଦେବ ଅକ୍ଟୋବର ଗ୍ରାମେ କଳଘରେ
ଅକ୍ଟୋବର ଉଠାଏ ପତାକା ଭବିଷ୍ୟ ଓ ଲେନିନ ନାମରେ ।

[ ଇଂରେଜୀରୁ ଅନୁଦିତ ]

# ୧୯୩୩ : ଜାପାନ ହସ୍ତରେ ଚୀନର ଲାଞ୍ଛନା

ଏପ୍ରିଲ ୧୪, ୧୯୩୩

ବିଶ୍ୱ ଯୁଦ୍ଧ ଲାଗିଥିଲାବେଳେ ସୁଦୂର ପ୍ରାଚ୍ୟରେ କେତୋଟି ଘଟଣା ଘଟିଲା ଯାହା ପ୍ରତି ଆମର ଦୃଷ୍ଟି ଦେବାର କଥା । ତେଣୁ ମୁଁ ତତେ ଚୀନକୁ ନେଇଯିବି । ଚୀନ ସମ୍ବନ୍ଧରେ ଲେଖିଥିବା ଗତ ଚିଠିରେ ମୁଁ ସେଠି ଏକ ପ୍ରଜାତନ୍ତ୍ରର ସ୍ଥାପନା ଓ ତାପରେ ଯେଉଁସବୁ ଗୋଳମାଳ ଘଟିଲା ସେ ବିଷୟ ଲେଖିଥିଲି । ସାମ୍ରାଜ୍ୟକୁ ପୁନଃପ୍ରତିଷ୍ଠା ପାଇଁ ଉଦ୍ୟମ କରାଗଲା; ଏହା ବିଫଳ ହେଲା । କିନ୍ତୁ ସମଗ୍ର ଦେଶରେ ନିଜର କର୍ତ୍ତୃତ୍ୱ ସ୍ଥାପନ କରିବାରେ ପ୍ରଜାତନ୍ତ୍ର ସମର୍ଥ ହେଲା ନାହିଁ ଅଥବା କୌଣସି ଏକ ସରକାର ଏହା କରିପାରିଲା ନାହିଁ । ସେହି ଦିନଠାରୁ ଏପରି କୌଣସି ଶାସନ ହୋଇନାହିଁ ଯାହା ସମଗ୍ର ଚୀନ ଉପରେ ଶାସନ କରିଛି ଏବଂ ତାକୁ କେହି ଗ୍ରହଣ କରିନାହାନ୍ତି । କେତେକ ବର୍ଷ ପର୍ଯ୍ୟନ୍ତ ଉତ୍ତର ଓ ଦକ୍ଷିଣ—ଏହି ଦୁଇଟି ମୁଖ୍ୟ ସରକାର ଦେଶରେ ଥିଲା । ଦକ୍ଷିଣରେ ଡାକ୍ତର ସନ୍‌ୟାତ୍‌ସେନ୍ ଓ ତାଙ୍କର ଜାତୀୟ ଦଳ କୋୟାମିନ୍‌ଟାଙ୍ଗଙ୍କର ଆଧିପତ୍ୟ ଥିଲା । ଉତ୍ତରରେ ୟୁଆନ୍-ସି-କେଇ ସେନାପତି ଥିଲେ ଏବଂ ତାଙ୍କ ପରେ କେତେକ ସେନାପତି ଓ ସାମରିକ ଲୋକ ଆସିଲେ । ଏହି ସାମରିକ ଦୁଃସାହସୀମାନଙ୍କୁ ଟୁଚୁନ୍ [ Tuchuns ] ବୋଲି କହୁଥିଲେ ଏବଂ ଏବେ ବି କୁହାଯାଏ, ଆଧୁନିକ କାଳରେ ସେମାନେ ଚୀନର ଅଭିଶାପ ରୂପେ ରହିଛନ୍ତି ।

ଏହିରୂପେ ବରାବର ବିଶୃଙ୍ଖଳା ଏବଂ ପ୍ରାୟ ଉତ୍ତର ଓ ଦକ୍ଷିଣ ଭିତରେ ଗୃହ ଯୁଦ୍ଧ କିମ୍ବା ପ୍ରତିଦ୍ୱନ୍ଦୀ ଟୁଚୁନ୍‌ଙ୍କ ଭିତରେ କଳହ ଲାଗିରହି ଚୀନରେ ବଡ଼ ଖରାପ ଅବସ୍ଥା ପଡ଼ିଥିଲା । ଚକ୍ରାନ୍ତ କରିବାପାଇଁ ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କୁ ଏଥିରେ ସୁବର୍ଣ୍ଣ ସୁଯୋଗ ମିଳିଗଲା ଏବଂ ସେମାନେ ଏହି ସବୁ ଆଭ୍ୟନ୍ତରୀଣ ବିବାଦରେ କେତେବେଳେ ଗୋଟିଏ ଦଳ ବା ଟୁଚୁନ୍‌ମାନଙ୍କୁ ଏବଂ କେତେବେଳେ ଆଉ ଜଣକୁ ମତାଇ ଏଥିରୁ ଫାଇଦା ଉଠାଇବାକୁ ଚେଷ୍ଟା କଲେ । ତୋର ମନେ ଥିବ, ଏହି ଭାବରେହିଁ ଭାରତରେ ଇଂରେଜମାନେ ନିଜର ରାଜ୍ୟ ପ୍ରତିଷ୍ଠା କଲେ । ଇଉରୋପୀୟ ଶକ୍ତିମାନେ ଏହି ମାହେନ୍ଦ୍ରବେଳାର ସୁବିଧା ଉଠାଇଲେ ଏବଂ ଚକ୍ରାନ୍ତ କରି ଗୋଟିଏ ଟୁଚୁନ୍‌କୁ ଅନ୍ୟ ବିରୁଦ୍ଧରେ ଲଗାଇଲେ; କିନ୍ତୁ ଶୀଘ୍ର ତାଙ୍କର ନିଜର ଗୋଳମାଳ ତଥା ବିଶ୍ୱଯୁଦ୍ଧ ସୁଦୂର ପ୍ରାଚ୍ୟରେ ଏହି ସବୁ କାର୍ଯ୍ୟକୁ ବନ୍ଦ କରିଦେଲା ।

ଜାପାନରେ ଏପରି ନ ଥିଲା । ଯୁଦ୍ଧର ପ୍ରଧାନ ଲଢ଼ାଇସ୍ଥଳ ବହୁଦୂରରେ ଥିଲା ଏବଂ ଜାପାନ ନିଜର ପୁରୁଣା କାର୍ଯ୍ୟ ଚୀନରେ ନିରାପଦ ଭାବରେ ଚଳାଇ ପାରିବ ବୋଲି ବୋଧ କଲା । ବାସ୍ତବିକ ତାହା କରିବାପାଇଁ ତାହା ସେତେବେଳେ ଅତି ଭଲ ଅବସ୍ଥାରେ ଥିଲା;

କାରଣ ଅନ୍ୟ ଶକ୍ତିମାନେ ଅନ୍ୟତ୍ର ନିଯୁକ୍ତ ଥିଲେ ଏବଂ ହସ୍ତକ୍ଷେପ କରିବାର ସମ୍ଭାବନା ନ ଥିଲା । କେବଳ ଚୀନରେ ଜର୍ମାନ ଅଧିକୃତ ଉପନିବେଶ ସୁବିଧା ପାଇବାପାଇଁ ସେ ଜର୍ମାନୀ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲା, ଯେପରିକି ତାପରେ ଆହୁରି ଭିତରକୁ ଧସେଇ ପଶିଯାଇ-ପାରିବ ।

ଚୀନ ସମ୍ବନ୍ଧରେ ଜାପାନୀ ନୀତି ଗତ ୪୦ ବର୍ଷ ହେଲା ଠିକ୍ ଏକା ଭଳିଆ ରହିଛି । ଜାପାନ ତାହାର ସେନାକୁ ଆଧୁନିକ କରିପାରିବା ସଙ୍ଗେ ସଙ୍ଗେ ଏବଂ ଦେଶର ଶିଳ୍ପୋନ୍ନତି ଆଗେଇ ଯାଇବା ପରେ, ସ୍ଥିର କଲା ଯେ ଚୀନରେ ଏବେ ପ୍ରାଧାନ୍ୟ କରିବାର ସମୟ ଆସି ପହଞ୍ଚିଛି । ଜାପାନୀମାନେ ବିସ୍ତାର କରିବାପାଇଁ ଏବଂ ତାଙ୍କର ଶିଳ୍ପ ପ୍ରସାର ପାଇଁ ସ୍ଥାନ ଖୋଜୁଥିଲେ ଏବଂ କୋରିଆ ଓ ଚୀନ ଉଭୟ ପାଖରେ ରହିଥିଲେ ଓ ଦୁର୍ବଳଥିଲେ ଏବଂ ଶୋଷଣ ଓ କର୍ତ୍ତୃତ୍ୱକୁ ନିମନ୍ତ୍ରଣ କରୁଥିଲାପରି ମନେହେଲା । ୧୮୯୪—୯୫ରେ ଚୀନ ସହିତ ଯୁଦ୍ଧହିଁ ଏ ଦିଗରେ ପ୍ରଥମ ଉଦ୍ୟମ । ସେମାନେ କୃତକାର୍ଯ୍ୟ ହେଲେ; କିନ୍ତୁ କେତେକ ଇଉରୋପୀୟ ଶକ୍ତିଙ୍କ ବିରୋଧ ହେତୁ ସେମାନେ ଯେତେ ଚାହୁଁଥିଲେ ସେତେ ପାଇପାରିଲେ ନାହିଁ । ତାପରେ ୧୯୦୪ ମସିହାରେ ରୁଷସହ ଅତି କଷ୍ଟକର ଯୁଦ୍ଧ ଘଟିଲା । ଏଥିରେ ବି ସେମାନେ ଜିତିଲେ ଏବଂ କୋରିଆ ଓ ମାଞ୍ଚୁରିଆରେ ଦୃଢ଼ଭାବରେ ନିଜକୁ ପ୍ରତିଷ୍ଠିତ କଲେ । ଅଳ୍ପ କେତେଦିନ ପରେ କୋରିଆକୁ ସଂଯୋଗ କରିଗଲା ଏବଂ ତାହା ଜାପାନୀ ସାମ୍ରାଜ୍ୟର ଏକ ଅଙ୍ଗ ହୋଇଗଲା ।

ଯାହାହେଉ ମାଞ୍ଚୁରିଆ ଚୀନର ଏକ ଅଂଶ ହୋଇ ରହିଲା । ଏହାହିଁ ଚୀନର ତିନି ପୂର୍ବାଞ୍ଚଳ ପ୍ରଦେଶ ହୋଇରହିଲା ଏବଂ ସେହିଭାବରେ ଏହାକୁ ଉଲ୍ଲେଖ କରାଯାଏ । ରୁଷ ସେଠାରେ ଯେଉଁ ସୁବିଧା ହାସଲ କରିଥିଲା ତାହା ଜାପାନ ନେଇଗଲା । ଯେଉଁ ରେଳବାଇ ନିର୍ମାଣ କରିଥିଲା ତାହା ବି ନେଲା—ଏପର୍ଯ୍ୟନ୍ତ ଏହାର ନାମ ଥିଲା ଚାଇନିଜ୍ ଇଷ୍ଟର୍ଣ୍ଣ ରେଲଓ୍ୱେ । ଏହି ନାମ ବଦଳି ସାଉଥ ମାଞ୍ଚୁରିଆନ ରେଲଓ୍ୱେ ହୋଇଗଲା । ଜାପାନ ଏବେ ମାଞ୍ଚୁରିଆ ଉପରେ ପୂର୍ଣ୍ଣ କର୍ତ୍ତୃତ୍ୱ ସ୍ଥାପନର ଚେଷ୍ଟା କଲା । ଏଥିଭିତରେ ଚୀନର ଅନ୍ୟ ଜନବହୁଳ ବସତିରୁ ରେଲଓ୍ୱେ ପ୍ରତି ଆକୃଷ୍ଟ ହୋଇ ଲୋକ ଆସିଲେ ଏବଂ ଚୀନା କୃଷକ ବୋହି ଆସିଲେ । ସୋୟାବିନ୍ ଫସଲ ମାଞ୍ଚୁରିଆରେ ଖୁବ୍ ହେଉଥିଲା ଏବଂ ଏହାର ମୂଲ୍ୟବାନ୍ ସାରଗୁଣ ସକାଶେ ପୃଥିବୀ ବଜାରରେ ଏହାର ଚାହିଦା ବଢିଲା । ଏହି ବିନ୍‌ରୁ ଏକପ୍ରକାର ତେଲ ବି ତିଆରି ହୁଏ । ଏହି ସୋୟାବିନ୍ ଚାଷ ମଧ୍ୟ ଲୋକଙ୍କୁ ଆକୃଷ୍ଟ କଲା । ତେଣୁ ଯେତେବେଳେ ଜାପାନୀମାନେ ଉପରୁ ମାଞ୍ଚୁରିଆର ଅର୍ଥନୀତିକ ଯନ୍ତ୍ରର ପୂର୍ଣ୍ଣ କର୍ତ୍ତୃତ୍ୱ ପାଇବା ଲାଗି ଚେଷ୍ଟା କରୁଥିଲେ, ସେତେବେଳେ ଚୀନାମାନେ ଦକ୍ଷିଣରୁ ଆସି ଏଠି ଭର୍ତ୍ତି ହୋଇଗଲେ । ଏହି ଚୀନା କୃଷକ-ସମୁଦ୍ରରେ ପୁରାତନ ମାଞ୍ଚୁ ବଂଶ ବୁଡ଼ିଗଲା ଏବଂ ଏମାନଙ୍କର ସଂସ୍କୃତି ଓ ଦୃଷ୍ଟିକୋଣ ପୁରାପୁରି ଚୀନା ଧରଣର ହୋଇଯାଇଥିଲା ।

ଚୀନରେ ପ୍ରଜାତନ୍ତ୍ରର ଅଭ୍ୟୁଦୟକୁ ଜାପାନ ଶୁଭଦୃଷ୍ଟିରେ ଦେଖିଲା ନାହିଁ । ଚୀନ ଶକ୍ତିଶାଳୀ ହେବାର ପ୍ରତ୍ୟେକ ଜନପଥକୁ ସେ ନାପସନ୍ଦ କଲା ଏବଂ ଚୀନ ମିଳିତ ହୋଇ ଏକ ଦୃଢ଼ ସରକାରରୂପେ ଗଠିତ ହେବାର ବାଧା ଦେବାହିଁ ତାର ସମସ୍ତ କୂଟନୀତିର ଲକ୍ଷ୍ୟ ହେଲା । ତେଣୁ ଜଣେ ଟୂଚୁନ୍‌କୁ ଅନ୍ୟ ବିରୁଦ୍ଧରେ ଲଗାଇବାରେ ସାହାଯ୍ୟ କରିବାପାଇଁ ସେ ଖୁବ୍ ଲାଗି ପଡ଼ିଲା - ତାହା ହେଲେ ଆଭ୍ୟନ୍ତରୀଣ ବିଶୃଙ୍ଖଳା ଲାଗି ରହିଥିବ ।

ଚୀନର ଶିଶୁ ପ୍ରଜାତନ୍ତ୍ରକୁ ଅତି ଦୁରୂହ ସମସ୍ୟାସବୁର ସମ୍ମୁଖୀନ ହେବାକୁ ପଡ଼ିଲା । କେବଳ ଏକ ମୁମୂର୍ଷୁ ସାମ୍ରାଜ୍ୟ ସରକାରଠାରୁ ରାଜନୀତିକ କ୍ଷମତା ଅଧିକାର କରିବାର ପ୍ରଶ୍ନ ନ ଥିଲା । ଦଖଲ କଲାପରି କୌଣସି ରାଜନୀତି କ୍ଷମତା ନ ଥିଲା, କାରଣ କୌଣସି କେନ୍ଦ୍ର ଶକ୍ତି ପ୍ରାପ୍ତ ନ ଥିଲା । ଏହା ସୃଷ୍ଟି କରିବାକୁ ପଡ଼ିଲା । ପୁରାତନ ଚୀନ ନାମକୁ ମାତ୍ର ସାମ୍ରାଜ୍ୟ ଥିଲା । କାର୍ଯ୍ୟତଃ ଏହା ବହୁସଂଖ୍ୟକ ସ୍ୱତନ୍ତ୍ର ଅଞ୍ଚଳର ସମଷ୍ଟି ଥିଲା ଓ ବଡ଼ ହୁଗୁଳା-ଭାବରେ ଏକାଠି ଗୁନ୍ଥା ହୋଇଥିଲା । ପ୍ରଦେଶଗୁଡ଼ିକ ଊଣା ଅଧିକେ ସ୍ୱତନ୍ତ୍ର ଥିଲେ ଏବଂ ଏପରିକି ସହର ଓ ଗ୍ରାମସବୁ ସେହିପରି ଥିଲା । କେନ୍ଦ୍ର ସରକାର ବା ସମ୍ରାଟଙ୍କର କର୍ତ୍ତୃତ୍ୱ ସ୍ୱୀକାର କରାଯାଉଥିଲା; କିନ୍ତୁ ଏ ସରକାର ସ୍ଥାନୀୟ ବ୍ୟାପାରରେ ହସ୍ତକ୍ଷେପ କରୁ ନ ଥିଲା । ସେଠାରେ କୌଣସି ଇଉନିଟାରି ବା କେନ୍ଦ୍ରୀଭୂତ (Unitary) ଗଭର୍ଣ୍ଣମେଣ୍ଟ ନ ଥିଲା; ଯାହା ବୋଇଲେ ବୁଝାଏ କ୍ଷମତା ଓ ପ୍ରକୃତ ଶାସନ କେନ୍ଦ୍ରରେ କେନ୍ଦ୍ରୀଭୂତ ଥାଏ ଏବଂ ସରକାରୀ ପରିଚାଳନାରେ ସମତା ଥାଏ । ପାଶ୍ଚାତ୍ୟ ଶିଳ୍ପ ଓ ସାମ୍ରାଜ୍ୟବାଦୀ ଲୋଭ ଉପରେ ଏହି ଶିଥିଳ ଭାବରେ ସଂଯୁକ୍ତ ( ରାଜନୀତିକ ଅର୍ଥରେ ) ସରକାର ଭାଙ୍ଗି ପଡ଼ିଲା । ଚୀନକୁ ବଞ୍ଚିବାକୁ ହେଲେ ଏକାଭଳିଆ ଶାସନ ବ୍ୟବସ୍ଥା ଥାଇ ଏକ ସୁଦୃଢ଼ କେନ୍ଦ୍ର ସରକାର ରହିବା ଆବଶ୍ୟକ । ନୂତନ ପ୍ରଜାତନ୍ତ୍ର ସେପରି ଏକ ଷ୍ଟେଟ ବା ସରକାର ସୃଷ୍ଟି କରିବାର ଚେଷ୍ଟା କଲା । ଏହା ଏକ ନୂତନ ଜନପଥ ଏବଂ ସେହିହେତୁରୁ ପ୍ରଜାତନ୍ତ୍ର ପକ୍ଷରେ ସବୁଠାରୁ କଷ୍ଟକର ବ୍ୟାପାର ହେଲା । ଉପଯୁକ୍ତ ଯାତାୟାତ ପଥ, ରାସ୍ତା ଓ ରେଲଓଏ ଅଭାବହିଁ ତାର ରାଜନୀତିକ ଏକତା ଦିଗରେ ପ୍ରଧାନ ଅନ୍ତରାୟ ହୋଇ ରହିଛି ।

ଅତୀତରେ ରାଜନୀତିକ କ୍ଷମତା ପ୍ରତି ଚୀନା ଲୋକେ ବେଶି ଗୁରୁତ୍ୱ ଦେଇ ନାହାନ୍ତି । ସେମାନଙ୍କ ମହାନ୍ ସଭ୍ୟତା ସଂସ୍କୃତି ଉପରେ ପ୍ରତିଷ୍ଠିତ ଏବଂ ଏହା ଏକପ୍ରକାର ବଞ୍ଚିବାର କଳା ଶିକ୍ଷା ଦେଇଥିଲା; ଅନ୍ୟତ୍ର ଏପରି କେଉଁଠି ହୋଇପାରି ନାହିଁ । ସେମାନେ ତାଙ୍କର ପୁରୁଣା ସଂସ୍କୃତିରେ ଏପରି ପରିପୂର୍ଣ୍ଣ ଥିଲେ ଯେ ତାଙ୍କର ରାଜନୀତିକ ଓ ଆର୍ଥନୀତିକ ବ୍ୟବସ୍ଥା ଭାଙ୍ଗି ପଡ଼ିଲେ ସୁଦ୍ଧା ଏହି ପୁରାତନ ସଂସ୍କୃତିକୁ ଧରି ରଖିଥିଲେ । ଜାପାନ ଜାଣିଶୁଣି ପାଶ୍ଚାତ୍ୟ ଶିଳ୍ପୋଦ୍ୟୋଗ ଓ ପାଶ୍ଚାତ୍ୟ ରୀତିନୀତି ଗ୍ରହଣ କଲା ଅଥଚ ଭିତରେ ଏହା ସାମନ୍ତବାଦୀ ହୋଇ ରହିଲା । ଚୀନ ସାଆନ୍ତିଆ ନ ଥିଲା, ବିଜ୍ଞାନ ଓ ବିଜ୍ଞାନସମ୍ମତ ଭାବପୂର୍ଣ୍ଣ ଥିଲା ଏବଂ ବିଜ୍ଞାନ ଓ ଶିଳ୍ପ ଦିଗରେ ପାଶ୍ଚାତ୍ୟ ଦେଶର ଉନ୍ନତି ଆଡ଼କୁ ତାହା ବ୍ୟଗ୍ରତା

ସହକାରେ ଅନାଇ ରହିଲା । ତଥାପି ଜାପାନ ଯେଉଁ ବେଗରେ ଅଗ୍ରସର ହେଲା ଏହା ଦେଖିଲେ ପଶିଲା ନାହିଁ; ଏଥିରେ ସନ୍ଦେହ ନାହିଁ ଯେ ଏ ପଥରେ ତାର ବହୁ ଅସୁବିଧା ଥିଲା । ଜାପାନର ସେସବୁ ନ ଥିଲା । କିନ୍ତୁ ତଥାପି କାଳେ ତାହାର ପୁରାତନ ସଂସ୍କୃତିରୁ ସଂପୂର୍ଣ୍ଣ ବିଚ୍ଛିନ୍ନ ହୋଇଯିବାକୁ ପଡ଼ିବ ଏଥିଲାଗି କୌଣସି କାର୍ଯ୍ୟ କରିବା ନିମନ୍ତେ ଇତସ୍ତତଃ ହେଉଥିଲା । ଚୀନର ପ୍ରକୃତି ଦାର୍ଶନିକ ପ୍ରକୃତି; ଦାର୍ଶନିକମାନେ ତରତର ହୋଇ କାର୍ଯ୍ୟ କରନ୍ତି ନାହିଁ । ତାର ମନରେ ଗୋଟାଏ ମହାନ୍ ଶୃଙ୍ଖଳା ଖେଳୁଥିଲା ଏବଂ ଖେଳୁଛି; କାରଣ ଯେଉଁ ସମସ୍ୟାର ସମ୍ମୁଖୀନ ହେବାକୁ ତାକୁ ପଡୁଛି ତାହା କେବଳ ରାଜନୀତିକ ନୁହେଁ । ସେଗୁଡ଼ିକ ଅର୍ଥନୀତି, ସାମାଜିକ, ବୌଦ୍ଧିକ ଶିକ୍ଷା ସମ୍ବନ୍ଧୀୟ ଇତ୍ୟାଦି ।

ତାପରେ ମଧ୍ୟ ଚୀନ ଓ ଭାରତ ପରି ବିଶାଳ ଦେଶର ଆକୃତିହିଁ ଅସୁବିଧା ସୃଷ୍ଟି କରେ । ଏଗୁଡ଼ିକ ମହାଦେଶପରି ଦେଶ ଏବଂ ମହାଦେଶପରି ଗୋଟାଏ ବିରାଟ ଅଞ୍ଚଳ ହୋଇ ରହିଛି । ଗୋଟିଏ ହାତୀ ପଡ଼ିଗଲେ, ଉଠିବାପାଇଁ ତାକୁ ସମୟ ଲାଗେ, ସେ ଗୋଟିଏ ବିରାଡ଼ି ବା କୁକୁର ପରି କୁଦି ବସିପାରିବ ନାହିଁ ।

ପୃଥିବୀ ଯୁଦ୍ଧ ଆରମ୍ଭ ହେଲା ମାତ୍ରେ ଜାପାନ ତତ୍‌କ୍ଷଣାତ୍ ମିତ୍ରପକ୍ଷରେ ଯୋଗ ଦେଲା ଏବଂ ଜର୍ମାନୀ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲା । ସେ କିଅଚାଉ ଦଖଲ କଲା ଏବଂ ଉପରେ ସାଣ୍ଟୁଙ୍ଗ୍ ପ୍ରଦେଶ ଭିତରକୁ ପ୍ରବେଶ କରିବା ପାଇଁ ଆରମ୍ଭ କଲା । ଏହି ପ୍ରଦେଶରେ କିଅଚାଉ ଅବସ୍ଥିତ ଥିଲା । ଏହାର ଅର୍ଥ ଜାପାନୀମାନେ ଖାସ୍ ଚୀନ ଉପରେ ଅଭିଯାନ ଆରମ୍ଭ କଲେ । ଜର୍ମାନୀ ବିରୁଦ୍ଧରେ ସଂଗ୍ରାମ ଚଳାଇବାର କୌଣସି ପ୍ରଶ୍ନ ନ ଥିଲା; କାରଣ ଏ ଅଞ୍ଚଳରେ ଜର୍ମାନୀର କିଛି ନ ଥିଲା । ସେମାନଙ୍କୁ ଫେରିଯିବା ନିମନ୍ତେ ଚୀନ ସରକାର ଭଦ୍ରଭାବରେ କହିଲେ । ଜାପାନୀମାନେ କହିଲେ—କି ଔଦ୍ଧତ୍ୟ ! ଏବଂ ସଙ୍ଗେ ସଙ୍ଗେ ୨୧ଟି ଦାବୀ ସମ୍ବଳିତ ଏକ ସରକାରୀ ଘୋଷଣା ସେମାନେ ବାହାର କଲେ ।

ଏହି "ଏକବିଂଶ ଦାବୀ" ପ୍ରସିଦ୍ଧ ହୋଇଗଲେ । ସେଗୁଡ଼ିକ ମୁଁ ଏଠି ଦେଉ ନାହିଁ । ଏଥିରେ ସବୁ ପ୍ରକାର ଅଧିକାର ଓ ସୁବିଧା, ବିଶେଷ ଭାବରେ ମାଞ୍ଚୁରିଆ ଓ ମଙ୍ଗୋଲିଆରେ ଏବଂ ସାଣ୍ଟୁଙ୍ଗ ପ୍ରଦେଶରେ ଜାପାନକୁ ଦେଇଦେବା ନିମନ୍ତେ ଥିଲା । ଏହି ସବୁ ଦାବୀରେ ରାଜି ହୋଇଯିବା ଅର୍ଥ କାର୍ଯ୍ୟତଃ ଚୀନକୁ ଜାପାନର ଏକ ଉପନିବେଶରେ ପରିଣତ କରିଦେବା । ଦୁର୍ବଳ ଉତ୍ତର ଚୀନ ସରକାର ଏହି ଦାବୀରେ ଆପତ୍ତି ଉଠାଇଲା; କିନ୍ତୁ ଶକ୍ତିଶାଳୀ ଜାପାନୀ ସେନା ବିରୁଦ୍ଧରେ ସେମାନେ କଣ କରିପାରନ୍ତେ ? ଆହୁରି ବି ଉତ୍ତରର ଏହି ଚୀନ ସରକାର ଲୋକପ୍ରିୟ ନ ଥିଲା । କିନ୍ତୁ ଏହାର ଗୋଟିଏ କାର୍ଯ୍ୟ ସାହାଯ୍ୟ କଲା । ଜାପାନୀ ଦାବୀସବୁ ପ୍ରକାଶିତ ହୋଇଗଲେ । ଧୀରେ ଧୀରେ ସାରା ଚୀନରେ ଚିତ୍କାର ଉଠିଲା ଏବଂ ଅନ୍ୟ ଶକ୍ତିମାନେ ଯୁଦ୍ଧରେ ବ୍ୟସ୍ତ ଥିଲେ ସୁଦ୍ଧା ଖୁବ୍ ପାଟିତୁଣ୍ଡ କଲେ । ଆମେରିକା ବିଶେଷ ଭାବରେ ଆପତ୍ତି ଉଠାଇଲା । ଫଳ ସ୍ୱରୂପ ଜାପାନ

ତାର କେତେକ ଦାବୀ ପ୍ରତ୍ୟାହାର କଲା ଏବଂ କେତେକ ସଂଶୋଧନ କଲା ଏବଂ ଅବଶିଷ୍ଟସବୁ ୧୯୧୫ ମେ ମାସରେ ସେ ଧମକ ଚମକ ଦେଖାଇ ଚୀନ ସରକାରଦ୍ୱାରା ଗୃହୀତ କରାଇ ନେଲା । ଏହା ଫଳରେ ଚୀନର ଉତ୍କଟ ଜାପାନବିରୋଧୀ ଭାବ ହୋଇଗଲା ।

୧୯୧୭ ଅଗଷ୍ଟ ମାସରେ ଯୁଦ୍ଧ ଆରମ୍ଭ ହେବାର ତିନିବର୍ଷ ପରେ ଚୀନ ମିତ୍ରପକ୍ଷ ସହିତ ଯୋଗ ଦେଲା ଏବଂ ଜର୍ମାନ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲା । ଏହା ଏକ ପ୍ରକାର ହାସ୍ୟାସ୍ପଦ କଥା, କାରଣ ଚୀନର ଜର୍ମାନ ବିରୁଦ୍ଧରେ କିଛି ଅଭିଯୋଗ ନ ଥିଲା । ତାର ଉଦ୍ଦେଶ୍ୟ ହେଲା ମିତ୍ରପକ୍ଷ ସହିତ ରହିବା ଏବଂ ଜାପାନର ଆଉ ବେଶୀ ଅଧିକାର ପ୍ରସାରରୁ ନିଜକୁ ରକ୍ଷା କରିବା ।

ଏହାର ଅଳ୍ପଦିନ ପରେ ୧୯୧୭ ନଭେମ୍ବର ମାସରେ ବଲସେଭିକ ବିପ୍ଳବ ହେଲା ଏବଂ ସମଗ୍ର ଉତ୍ତର ଏସିଆରେ ଖୁବ୍ ବିଶୃଙ୍ଖଳା ଜାତ ହେଲା । ସାଇବେରିଆ, ସୋଭିଏଟ୍ ଓ ସୋଭିଏଟ-ବିରୋଧୀ ଶକ୍ତିମାନଙ୍କର ଯୁଦ୍ଧକ୍ଷେତ୍ର ହେଲା । ଶ୍ୱେତ ରୁଷ ସେନାପତି କୋଲଚ୍କ ସାଇବେରିଆରୁ ସୋଭିଏଟ ବିରୁଦ୍ଧରେ ଅଭିଯାନ କଲା । ସୋଭିଏଟ ବିଜୟରେ ଆତଙ୍କିତ ହୋଇ ଜାପାନୀମାନେ ବହୁସଂଖ୍ୟକ ସେନା ସାଇବେରିଆକୁ ପଠାଇଲେ । ବ୍ରିଟିଶ ଓ ଆମେରିକାନ୍ ସେନା ବି ସେଠିକି ପ୍ରେରିତ ହେଲେ । କ୍ଷଣକାଳ ପାଇଁ ସାଇବେରିଆ ଓ ମଧ୍ୟ ଏସିଆରୁ ରୁଷ ପ୍ରଭାବ ଦୂରୀଭୂତ ହୋଇଗଲା । ଏହିସବୁ ଅଞ୍ଚଳରେ ରୁଷର ମର୍ଯ୍ୟାଦା ନଷ୍ଟ କରିବା ନିମନ୍ତେ ବ୍ରିଟିଶ ସରକାର ଯଥାସମ୍ଭବ ଚେଷ୍ଟା କଲା । ମଧ୍ୟଏସିଆର କେନ୍ଦ୍ର-ସ୍ଥଳ କାସଗରଠାରେ ବଲସେଭିକ-ବିରୋଧୀ ପ୍ରଚାର ପାଇଁ ବ୍ରିଟିଶ ଏକ ବେତାର ଷ୍ଟେସନ ନିର୍ମାଣ କଲା ।

ମଙ୍ଗୋଲିଆରେ ମଧ୍ୟ ସୋଭିଏଟ ଓ ସୋଭିଏଟ୍-ବିରୋଧୀ ଲୋକଙ୍କ ଭିତରେ ଭୀଷଣ ସଂଗ୍ରାମ ଚାଲିଲା । ୧୯୧୫ ବେଳକୁ ମହାସମର ଚାଲିଥିଲାବେଳେ ଜାର ଶାସିତ ରୁଷ ସାହାଯ୍ୟରେ ମଙ୍ଗୋଲିଆ ଚୀନ ସରକାରଠାରୁ ବହୁ ପରିମାଣରେ ସ୍ୱତନ୍ତ୍ରତା ପାଇ ପାରିଥିଲା । ଯାହାହେଉ ଚୀନର କର୍ତ୍ତୃତ୍ୱ ରହିଲା ଏବଂ ମଙ୍ଗୋଲିଆରେ ବୈଦେଶିକ ସମ୍ପର୍କ ସ୍ଥାପନ ନେଇ ରୁଷ ବି ସେଠି ସ୍ଥାନ ପାଇଲା । ଏହା ଏକ ବିଚିତ୍ର ବ୍ୟବସ୍ଥା । ସୋଭିଏଟ ବିପ୍ଳବ ପରେ ମଙ୍ଗୋଲିଆରେ ଗୃହଯୁଦ୍ଧ ଆରମ୍ଭ ହେଲା; ଏଥିରେ ସ୍ଥାନୀୟ ସୋଭିଏଟମାନେ ତିନି ବର୍ଷରୁ ଅଧିକ କାଳ ସଂଗ୍ରାମ କରି ଜୟଲାଭ କଲେ । ମଙ୍ଗୋଲିଆ ଏବେ ସ୍ୱତନ୍ତ୍ର ପ୍ରଜାତନ୍ତ୍ର ହୋଇ ରହିଛି ।

ପୃଥିବୀ ଯୁଦ୍ଧ ପରେ ଯେଉଁ ଶାନ୍ତି ସମ୍ମିଳନୀ ହେଲା, ସେ ସମ୍ବନ୍ଧରେ ମୁଁ ତତେ ଏ ପର୍ଯ୍ୟନ୍ତ କିଛି ନାହିଁ । ଆଉ ଏକ ଚିଠିରେ ସେ ବିଷୟରେ ମୋତେ ଲେଖିବାକୁ ହେବ । ଯାହାହେଉ ଏଠି ଏତିକି ଉଲ୍ଲେଖ କରିପାରେ ଯେ ଏହି ସମ୍ମିଳନୀରେ ପ୍ରଧାନ ଶକ୍ତି ଅର୍ଥାତ୍ ବିଶେଷ ଭାବରେ ଇଂଲଣ୍ଡ, ଫ୍ରାନ୍ସ ଓ ଆମେରିକା ସଂଯୁକ୍ତରାଷ୍ଟ୍ର ଚୀନର ସାଣ୍ଟୁଙ୍ଗ ପ୍ରଦେଶ

ଜାପାନକୁ ଦେବା ନିମନ୍ତେ ସ୍ଥିର କଲେ । ତେଣୁ ଯୁଦ୍ଧ ଫଳରେ ତାଙ୍କୁ ମାଝ ଚୀନକୁ ପ୍ରକୃତରେ ତାର ନିଜ ରାଜ୍ୟର ଏକ ଅଂଶ ଜାପାନକୁ ଦେବାକୁ ପଡ଼ିଲା । ଯୁଦ୍ଧ ଭିତରେ ଇଂଲଣ୍ଡ, ଫ୍ରାନ୍ସ ଓ ଜାପାନ ସହିତ ହୋଇଥିବା କୌଣସି ଗୁପ୍ତ ସନ୍ଧି ହେତୁ ଏପରି ହେବାକୁ ପଡ଼ିଲା । ଯେଉଁ କାରଣରୁ ହୋଇଥାଉ ପଛକେ ଚୀନ ପ୍ରତି ଏପରି କୁତ୍ସିତ ବ୍ୟବହାରରେ ଚୀନା ଲୋକେ ଗଭୀର ଅସନ୍ତୋଷ ପ୍ରକାଶ କଲେ ଏବଂ ଏଥିରେ ରାଜି ହୋଇଗଲେ । ସେମାନେ ବିପ୍ଳବ କରିବେ ବୋଲି ପେକିଙ୍ଗ୍ ସରକାରକୁ ଧମକ ଦେଲେ । ଜାପାନୀ ଜିନିଷ କଠୋର ଭାବରେ ବର୍ଜନ କରାଗଲା ଏବଂ ଜାପାନୀ-ବିରୋଧୀ ଦଙ୍ଗାମାନ ହେଲା । ଚୀନ ସରକାର (ଏହା ବୋଇଲେ ଉତ୍ତର ଅଞ୍ଚଳର ପେକିଙ୍ଗ୍ ସରକାର, ଏହାହିଁ ପ୍ରଧାନ ସରକାର ଥିଲା) ଶାନ୍ତି ସର୍ତ୍ତରେ ସ୍ୱାକ୍ଷର କରିବାକୁ ଅସ୍ୱୀକାର କଲା ।

ଦୁଇବର୍ଷ ପରେ ସଯୁକ୍ତ ରାଷ୍ଟ୍ରର ଓ୍ୟାଶିଙ୍ଗଟନଠାରେ ଗୋଟିଏ ସମ୍ମିଳନୀ ହେଲା ଏବଂ ସେଠି ଏହି ସାଣ୍ଟୁଙ୍ଗ୍ ପ୍ରଦେଶ ପ୍ରଶ୍ନ ଉଠିଲା । ସୁଦୂର ପ୍ରାଚ୍ୟ ସମ୍ବନ୍ଧରେ ସ୍ୱାର୍ଥଥିବା ସବୁ ଶକ୍ତିମାନେ ଏହି ସମ୍ମିଳନୀରେ ଯୋଗ ଦେଇଥିଲେ ଏବଂ ସେମାନେ ସମସ୍ତେ ନିଜର ନୌଶକ୍ତି ବଳ ଆଲୋଚନା କରିବାପାଇଁ ମିଳିତ ହୋଇଥିଲେ । ୧୯୨୨ରେ ଏହି ଓ୍ୟାଶିଙ୍ଗ୍ଟନ୍ ସମ୍ମିଳନୀ ଫଳରେ ଚୀନ ଓ ଜାପାନ ସମ୍ବନ୍ଧରେ କେତେକ ପ୍ରଧାନ କଥା ହେଲା । ଜାପାନ ସାଣ୍ଟୁଙ୍ଗ୍ ପ୍ରଦେଶ ଫେରାଇ ଦେବାକୁ ସମ୍ମତ ହେଲା ଏବଂ ତେଣୁ ଚୀନା ଲୋକଙ୍କ ମନରେ ଖୁବ୍ ଗୋଳମାଳ ସୃଷ୍ଟି କରୁଥିବା ପ୍ରଶ୍ନଟି ଦୂର ହୋଇଗଲା । ଏହି ଶକ୍ତିମାନଙ୍କ ଭିତରେ ଦୁଇଟି ଗୁରୁତ୍ୱପୂର୍ଣ୍ଣ ଚୁକ୍ତି ମଧ୍ୟ ହେଲା ।

ଏଥିରୁ ଗୋଟିଏ "ଚାରି ଶକ୍ତି ଚୁକ୍ତି" ନାମରେ ଜଣା; ଏହା ଆମେରିକା, ଗ୍ରେଟ ବ୍ରିଟେନ, ଜାପାନ ଓ ଫ୍ରାନ୍ସ ଭିତରେ ହୋଇଥିଲା । ଏହି ଚାରିଶକ୍ତି ପରସ୍ପର ସହିତ ପ୍ରତିଜ୍ଞାବଦ୍ଧ ହେଲେ ଯେ ପ୍ରଶାନ୍ତ ମହାସାଗରରେ ସେମାନଙ୍କର ଦଖଲରେ ଥିବା ରାଜ୍ୟରେ କେହି ହସ୍ତକ୍ଷେପ କରିବେ ନାହିଁ; ଅର୍ଥାତ୍ ସେମାନେ କେହି କାହା ରାଜ୍ୟରେ ଅନଧିକାର ପ୍ରବେଶ କରିବେ ନାହିଁ ବୋଲି ପ୍ରତିଶ୍ରୁତ ହେଲେ । ଅନ୍ୟଟି ହେଲା "ନବଶକ୍ତି ଚୁକ୍ତି"— ଏଥିରେ ଯୋଗ ଦେଇଥିବା ନଅଟିଯାକ ଶକ୍ତି ହେଉଛନ୍ତି—ଆମେରିକା ସଯୁକ୍ତରାଷ୍ଟ୍ର, ବେଲଜିୟମ୍, ବ୍ରିଟେନ, ଫ୍ରାନ୍ସ, ଇଟାଲୀ, ଜାପାନ, ହଲଣ୍ଡ, ପର୍ତ୍ତୁଗାଲ ଓ ଚୀନ । ଏହି ସନ୍ଧିର ପ୍ରଥମ ଦଫାରେ ଥିଲା —

"ଚୀନର ଆଧିପତ୍ୟ, ସ୍ୱାଧୀନତା ଏବଂ ରାଷ୍ଟ୍ରୀୟ ଓ ଶାସନ ସମ୍ବନ୍ଧୀୟ ଅଖଣ୍ଡତା ରକ୍ଷା କରାଯିବ ।"

ଆହୁରି ଆକ୍ରମଣରୁ ଚୀନକୁ ରକ୍ଷା କରିବା ନିମନ୍ତେ ଏହି ଦୁଇଟିଯାକ ଚୁକ୍ତି ଛିଷ୍ଟରୂପେ ହୋଇଥିଲା । ଏହାର ଉଦ୍ଦେଶ୍ୟ ଥିଲା ଏପର୍ଯ୍ୟନ୍ତ ପ୍ରଧାନ ଶକ୍ତିମାନେ ଯେଉଁ ସୁବିଧା

ସ୍ୱାଧୀନ କରିବା ଓ ସହଯୋଗ କରିବା ଖେଳ ଖେଳୁଥିଲେ ତାହା ବନ୍ଦ କରିଦେବା । ଯୁଦ୍ଧୋତ୍ତର ସମସ୍ୟାରେ ପାଶ୍ଚାତ୍ୟ ଶକ୍ତିମାନେ ବ୍ୟସ୍ତ ରହିଥିଲେ ଏବଂ ସେତେବେଳେ କ୍ଷଣକାଳ ଲାଗି ଚୀନ ପ୍ରତି ସେତେ ଆଗ୍ରହୀ ନ ଥିଲେ । ତେଣୁ ଏହି ଆତ୍ମତ୍ୟାଗମୂଳକ ଅନ୍ତର୍ଜାତୀୟ ନୀତି ସ୍ୱୀକାର କରିନେଲେ । ଜାପାନ ମଧ୍ୟ ଏଥିରେ ପ୍ରତିଜ୍ଞାବଦ୍ଧ ହେଲା; ଯଦିଓ ଅନେକବର୍ଷ ହେଲା ସେ ଜାଣିଶୁଣି ଯେଉଁ ନୀତି ଅନୁସରଣ କରିଆସିଛି ତାହା ଏହାର ସଂପୂର୍ଣ୍ଣ ବିପରୀତ । ବେଶୀବର୍ଷ ହେଇ ନ ହେଉଣୁ ସଂପୂର୍ଣ୍ଣଭାବରେ ଜଣାପଡ଼ିଲା ଯେ ସମସ୍ତ ବିପରୀତ ଉଦ୍ଦେଶ୍ୟରେ ଚୁକ୍ତି ଓ ଶପଥ ହୋଇଥିବା ସତ୍ତ୍ୱେ ଜାପାନ ତାର ପୁରୁଣା ନୀତି ସେହିପରି ଧରିରଖିଛି ଏବଂ ଚୀନ ଉପରେ ଜାପାନ ଆକ୍ରମଣ ଚାଲିଛି । ଆନ୍ତର୍ଜାତିକ ମିଥ୍ୟା ଓ ଶଠତାର ଏହା ଏକ ଅସାଧାରଣ ନିର୍ଲଜ ଦୃଷ୍ଟାନ୍ତ । ପରେ କଣ ଘଟିଲା ତାହା ବୁଝିବାପାଇଁ ୱାଶିଙ୍ଗଟନ୍ ସମ୍ମିଳନୀ ସମ୍ବନ୍ଧରେ ଟିକିଏ ଲେଖିବା ଦରକାର ପଡ଼ିଲା ।

ୱାଶିଙ୍ଗଟନ ସମ୍ମିଳନୀ ବେଳକୁ ମଧ୍ୟ ସାଇବେରିଆରୁ ଶେଷଥର ପାଇଁ ବିଦେଶୀ ସେନା ଚାଲି ଆସିଲେ । ଶେଷରେ ଜାପାନୀ ଆସିଲେ । ତତ୍‌କ୍ଷଣାତ୍ ସ୍ଥାନୀୟ ସୋଭିଏଟ୍ ଆଗୁଆ ହୋଇ ବାହାରିପଡ଼ିଲେ ଏବଂ ରୁଷର ସୋଭିଏଟ୍ ପ୍ରଜାତନ୍ତ୍ରରେ ଯୋଗଦେଲେ ।

ଆଗରୁ ସୋଭିଏଟ୍ ରୁଷ ଚୀନ ସରକାରଙ୍କୁ ଲେଖି ଜଣାଇଥିଲା ଯେ ଅନ୍ୟ ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କ ସହ ଜାରଶାସିତ ରୁଷ ଚୀନରେ ଯେଉଁସବୁ ବିଶେଷ ସୁବିଧା ଭୋଗ କରୁଛି ତାହା ଛାଡ଼ିଦେବାଲାଗି ସୋଭିଏଟ୍ ସରକାର ପ୍ରସ୍ତୁତ ଅଛି । ସାମ୍ରାଜ୍ୟବାଦ ଓ କମ୍ୟୁନିଜିମର ମିଳନ ହୋଇପାରେନା ଏବଂ ଏହାଛଡ଼ା ଯେଉଁସବୁ ପ୍ରାଚ୍ୟଦେଶମାନଙ୍କୁ ପାଶ୍ଚାତ୍ୟ ଶକ୍ତି ସବୁ ଆଗରୁ ଧମକ ଦେଉଥିଲେ ବା ଶୋଷଣ କରୁଥିଲେ ସେଥିପ୍ରତି ସୋଭିଏଟ ଜାଣିଶୁଣି ଉଦାର ନୀତି ଅବଲମ୍ବନ କରିଥିଲା । ଏହା ଯେ ନୀତିଦୃଷ୍ଟିରୁ କେବଳ ଠିକ୍ ତାହା ନୁହେଁ, ସୋଭିଏଟ୍ ରୁଷ ପକ୍ଷରେ ଏକ ନିର୍ଦ୍ଦୋଷ ନୀତି ମଧ୍ୟ; କାରଣ ଏଥିରେ ପ୍ରାଚ୍ୟ ଦେଶରେ ତାହାର ବନ୍ଧୁ ମିତ୍ର ହୋଇଗଲେ । ବିଶେଷରେ ସୁବିଧା ସବୁ ଛାଡ଼ିଦେବା ନିମନ୍ତେ ସୋଭିଏଟ୍ କୌଣସି ସର୍ତ୍ତ ଦାବୀ କରୁ ନ ଥିଲା; ଏହା ବଦଳରେ କିଛି ଚାହୁଁ ନ ଥିଲା । କାଳେ ପଶ୍ଚିମ ଇଉରୋପୀୟ ଶକ୍ତିସବୁ ବିଗିଡ଼ିଯିବେ ଏଥିଲାଗି ଏପରି ପ୍ରତ୍ୟୁତ ସୋଭିଏଟଠାରୁ ପାଇ ସୁଦ୍ଧା ଚୀନ ସରକାର ସୋଭିଏଟ ସହ ସମ୍ବନ୍ଧ ରଖିବା ନିମନ୍ତେ ଭୟ କଲା । ଶେଷରେ ଯାହାହେଉ ରୁଷ ଓ ଚୀନ ପ୍ରତିନିଧିମାନେ ଭେଟ ହେଲେ ଏବଂ ୧୯୨୪ରେ କେତେକ ସର୍ତ୍ତରେ ରାଜି ହେଲେ । ଏହି ଚୁକ୍ତିକଥା ଶୁଣି ଫରାସୀ, ଆମେରିକା ଓ ଜାପାନ ସରକାର ପେକିଙ୍ଗ୍ ସରକାର ନିକଟରେ ପ୍ରତିବାଦ ଜଣାଇଲେ ଏବଂ ପେକିଙ୍ଗ୍ ଏତେ ବେଶୀ ଭୟଭୀତ ହୋଇଗଲା ଯେ ସେ ଚୁକ୍ତିରେ ତାର ପ୍ରତିନିଧି ଦସ୍ତଖତ କରିଥିବା କଥା ଅସ୍ୱୀକାର କଲା । ବିଚରା ପେକିଙ୍ଗ୍ ସରକାରର ଅବସ୍ଥା ଏତେ ତଳକୁ ଖସିଥିଲା । ତାପରେ ରୁଷ ପ୍ରତିନିଧି ଚୁକ୍ତିର ସମସ୍ତ ବିବରଣୀ ପ୍ରକାଶ କରିଦେଲେ । ଏଥିରେ ଖୁବ୍ ଗୋଳମାଳ ସୃଷ୍ଟି ହେଲା । ପ୍ରଥମଥର

ପାଇଁ ପ୍ରଧାନ ଶକ୍ତିମାନଙ୍କ ସହିତ ଚୁକ୍ତିନାମାରେ ଚୀନକୁ ଭଦ୍ରରୂପେ ଓ ସମ୍ମାନଜନକ ଭାବରେ ବ୍ୟବହାର କରାଯାଇଥିଲା ଏବଂ ତାର ଅଧିକାରକୁ ସ୍ୱୀକାର କରାଗଲା । ଗୋଟିଏ ପ୍ରଧାନ ଶକ୍ତି ସହିତ ସମାନ ଆସନରେ ବସି ତାହାର ଏହି ପ୍ରଥମ ଚୁକ୍ତି । ଏଥିରେ ଚୀନବାସୀ ଆନନ୍ଦିତ ହେଲେ ଏବଂ ସରକାରକୁ ଏହା ଦସ୍ତଖତ କରିବାକୁ ପଡ଼ିଲା । ଏହାକୁ ନାପସନ୍ଦ କରିବା ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କ ପକ୍ଷରେ ସ୍ୱାଭାବିକ; କାରଣ ଏଥିରେ ତାଙ୍କ ବଦଗୁଣ ପ୍ରକାଶ ହୋଇ ପଡ଼ୁଥିଲା । ସୋଭିଏଟ୍ ରୁଷ ଉଦାର ଭାବରେ ଦାନ କରୁଥିଲାବେଳେ ସେମାନେ ନିଜର ସକଳ ବିଶେଷ ସୁବିଧାସବୁକୁ ଧରି ରହିଥିଲେ ।

ସୋଭିଏଟ୍ ସରକାର ମଧ୍ୟ ଡାକ୍ତର ସନ-ୟାଟ୍-ସେନଙ୍କର ଦକ୍ଷିଣସ୍ଥ ଚୀନ ସରକାର ସହିତ ସଂସ୍ପର୍ଶରେ ଆସିଲା; ଏହାର ରାଜଧାନୀ ଥିଲା କାଣ୍ଟନରେ ଏବଂ ସେମାନେ ପରସ୍ପରର ଚୁକ୍ତିନାମାରେ ଆସିଲେ । ଏହି ସମସ୍ତ ଦେଶ ସାରା ଏକ କ୍ଷୀଣ ଆକାରରେ ଗୃହଯୁଦ୍ଧ ଉତ୍ତର ଓ ଦକ୍ଷିଣ ଭିତରେ ଏବଂ ଉତ୍ତରରେ ବିଭିନ୍ନ ସାମରିକ ସେନାପତିଙ୍କ ଭିତରେ ଚାଲିଥାଏ । ଏହିମାନଙ୍କୁ ଉତ୍ତର ଟୁଚୁନ୍ ବା ମହା-ଟୁଚୁନ୍ ବୋଲି କୁହାଯାଏ—ସେମାନେ କୌଣସି ନୀତି ବା କାର୍ଯ୍ୟପନ୍ଥା ଲାଗି ଯୁଦ୍ଧ କରୁ ନ ଥିଲେ । ସେମାନେ ନିଜର କ୍ଷମତା ଲାଗି ଲଢ଼ାଇ କରୁଥିଲେ । ସେମାନେ ପ୍ରଥମେ ପରସ୍ପର ସହିତ ମିତ୍ରତା ବାନ୍ଧିଲେ; ତା'ପରେ ଅନ୍ୟପକ୍ଷକୁ ଚାଲିଯାଇ ଆଉ ଏକ ନୂତନ ମିଳିତ ଶକ୍ତି ଗଢ଼ୁଥିଲେ । ଏହି ସଦା ପରିବର୍ତ୍ତନଶୀଳ ମିଳନସବୁ ବାହାର ଲୋକଙ୍କୁ ବଡ଼ ଗୋଳମାଳିଆ ମନେହୁଏ । ଏହି ଟୁଚୁନ୍ ବା ସାମରିକ ଦୁଃସାହସିକ ଲୋକେ ବ୍ୟକ୍ତିଗତ ଫୌଜ ଗଠନକଲେ । ନିଜେ ଲୋକଙ୍କ ଉପରେ ଟିକସ ବସାଇଲେ, ନିଜ ଭିତରେ ଯୁଦ୍ଧ ଚଳାଇଲେ ଏବଂ ଏହି ସବୁ ବୋଝ ଦୀର୍ଘକାଳ ହେଲା କଷ୍ଟ ଭୋଗୁଥିବା ଚୀନ ଲୋକଙ୍କ ଉପରେ ପଡ଼ିଲା । କୁହାଯାଏ ଯେ କେତେକ ମହା-ଟୁଚୁନ୍ଙ୍କ ପଶ୍ଚାତରେ ବିଦେଶୀ ଶକ୍ତିସବୁ ଥିଲେ ଏବଂ ବିଶେଷତଃ ଜାପାନ ଥିଲା । ସାଂଘାଇରେ ଥିବା ବଡ଼ ବଡ଼ ବିଦେଶୀ ବେପାରୀମାନଙ୍କଠାରୁ ମଧ୍ୟ ସାହାଯ୍ୟ ଓ ଧନ ଆସିଲା ।

ଗୋଟିଏ ମାତ୍ର ଉଜ୍ଜ୍ୱଳ ସ୍ଥାନ ଥିଲା, ଦକ୍ଷିଣାଞ୍ଚଳ । ସେଠି ଡାକ୍ତର ସନ୍-ୟାଟ୍-ସେନ୍ଙ୍କ ସରକାର ଚାଲୁଥିଲା । ଏହାର ନିର୍ଦ୍ଦିଷ୍ଟ ଆଦର୍ଶ ଓ ନୀତି ଥିଲା କେତେକ ଉତ୍ତର ଟୁଚୁନ୍ ସରକାର ପରି ଏହା ଦସ୍ୟୁଙ୍କ ବ୍ୟାପାର ମାତ୍ର ହୋଇ ନ ଥିଲା । ୧୯୨୪ରେ କୋୟମିନଟାଙ୍ଗ ( ଜନତା ଦଳ )ର ପ୍ରଥମ ଜାତୀୟ ସମ୍ମିଳନୀ ହେଲା ଏବଂ ଏହା ଆଗରେ ଡାକ୍ତର ସନ୍ ଏକ କାର୍ଯ୍ୟପନ୍ଥା ଉପସ୍ଥାପିତ କଲେ । ଏହି ଘୋଷଣାପତ୍ରରେ ଜାତିର ପରିଚାଳନା ପାଇଁ ସେ କେତେକ ନୀତି ଧାର୍ଯ୍ୟ କରିଦେଲେ । ଏହିସବୁ ନୀତି ଓ କାର୍ଯ୍ୟପନ୍ଥା ସେହିଦିନଠାରୁ କୋ-ମିନ୍-ଟାଙ୍ଗର ମୂଳଭିତ୍ତି ହୋଇ ରହିଛି ଏବଂ ତଥାକଥିତ ଜାତୀୟ ସରକାରର ସାଧାରଣ ନୀତି ପରିଚାଳନା ଏହାଦ୍ୱାରା ଆଜି ସୂଚିତ କରାଯାଉଛି ।

୧୯୨୫ ମାର୍ଚ୍ଚ ମାସରେ ଡାକ୍ତର ସନ୍‌ଙ୍କର ମୃତ୍ୟୁ ହେଲା; ଚୀନ ସେବାରେ ତାଙ୍କର ଜୀବନ ଅତିବାହିତ ହୋଇପଡ଼ିଥିଲା । ଚୀନ ଲୋକେ ତାଙ୍କୁ ଆଦର କରୁଥିଲେ ।

## ୧୫୪ : ଯୁଦ୍ଧକାଳୀନ ଭାରତ

ଏପ୍ରିଲ ୧୬, ୧୯୩୩

ଭାରତ ବ୍ରିଟିଶ ସାମ୍ରାଜ୍ୟର ଅଙ୍ଗରୂପେ ଅବଶ୍ୟ ପ୍ରତ୍ୟକ୍ଷ ଭାବରେ ବିଶ୍ୱଯୁଦ୍ଧରେ ଲିପ୍ତ ଥିଲା । କିନ୍ତୁ ଭାରତରେ ବା ତା ସମୀପରେ ପ୍ରକୃତ କୌଣସି ଯୁଦ୍ଧ ହେଉ ନ ଥିଲା । ସେ ଯାହାହେଉ ପ୍ରତ୍ୟକ୍ଷ ଓ ଅପ୍ରତ୍ୟକ୍ଷ ଭାବରେ ଯୁଦ୍ଧ ନାନା ପ୍ରକାରେ ଭାରତର ପ୍ରଗତି ଉପରେ ପ୍ରଭାବ ପକାଇଲା ଏବଂ ବହୁ ପରିବର୍ତ୍ତନ ହୋଇପାରିଲା । ମିତ୍ର ଶକ୍ତିମାନଙ୍କୁ ସାହାଯ୍ୟ କରିବା ନିମନ୍ତେ ତାର ସମ୍ପଦକୁ ପୂର୍ଣ୍ଣମାତ୍ରାରେ ଉପଯୋଗ କରାଗଲା ।

ଏହା ଭାରତର ଯୁଦ୍ଧ ନ ଥିଲା । ଜର୍ମାନ ଶକ୍ତି ବିରୁଦ୍ଧରେ ଭାରତର କିଛି ଅଭିଯୋଗ ନ ଥିଲା ଏବଂ ତୁର୍କି ପ୍ରତି ଏହାର ବହୁତ ସହାନୁଭୂତି ଥିଲା । କିନ୍ତୁ ଏଥିରେ ଭାରତର କିଛି ହାତ ନ ଥିଲା । ସେ ବ୍ରିଟେନର ଅଧୀନସ୍ଥ ଦେଶ—ତାହାର ସାମ୍ରାଜ୍ୟବାଦୀ ପ୍ରଭୁର ପଦାଙ୍କ ଅନୁସରଣ କରିବାକୁ ବାଧ୍ୟ । ତେଣୁ ଦେଶରେ ବହୁ ଅସନ୍ତୋଷ ସତ୍ତ୍ୱେ ଭାରତୀୟ ସେନାଙ୍କୁ ତୁର୍କି, ଇଜିପ୍ଟ ଓ ଅନ୍ୟମାନଙ୍କ ସହ ଲଢ଼ାଇ କରିବାକୁ ପଡ଼ିଲା ଏବଂ ପଶ୍ଚିମ ଏସିଆରେ ଭାରତ ପ୍ରତି ବିଦ୍ୱେଷଭାବ ସୃଷ୍ଟି ହେଲା ।

ମୁଁ ତତେ ଆଗରୁ କହିଛି ଯୁଦ୍ଧ ପୂର୍ବରୁ ଭାରତର ରାଜନୀତି ଶିଥିଳ ହୋଇ ପଡ଼ିଥିଲା । ଯୁଦ୍ଧ ଆସିବାରୁ ଏଥିରୁ ଦୃଷ୍ଟି ଆହୁରି ଖସିଗଲା ଏବଂ ବ୍ରିଟିଶ ସରକାର ଯୁଦ୍ଧ ସକାଶେ କରୁଥିବା ଅନେକ ଆଇନକାନୁନ୍ ହେତୁ ପ୍ରକୃତ ରାଜନୀତିକ କାର୍ଯ୍ୟ କରିବା କଷ୍ଟକର ହୋଇଗଲା । ପ୍ରତ୍ୟେକ ଲୋକକୁ ଦବାଇବା ନିମନ୍ତେ ଓ ନିଜ ମନଇଚ୍ଛା କାର୍ଯ୍ୟ କରିବା ନିମନ୍ତେ ସରକାରଙ୍କୁ ଯୁଦ୍ଧବେଳଟା ବେଶ୍ ଗୋଟାଏ ଭଲ ଆଳ ହୋଇଯାଏ । କେବଳ ନିଜପାଇଁ ହିଁ ସବୁକଥାରେ ଅବାଧ ଅନୁମତି ମିଳେ । ଯାଞ୍ଚ ପ୍ରଥା ସ୍ଥାପିତ ହୁଏ— ଏହା ସତ୍ୟକୁ ଗୋପନ କରେ, ଅନେକ ସମୟରେ ମିଥ୍ୟା ପ୍ରଚାର କରେ ଏବଂ ସମାଲୋଚନା କରିବାରେ ବାଧାଦିଏ । ପ୍ରତ୍ୟେକ ପ୍ରକାର ଜାତୀୟ କାର୍ଯ୍ୟକୁ ଆଯତ୍ତ କରିବା ନିମନ୍ତେ ବିଶେଷ ଆଇନ୍‌କାନୁନ୍ ପାଶ୍ ହୁଏ । ସବୁ ଯୁଦ୍ଧରତ ଦେଶରେ ଏହା ହୋଇଥିଲା ଏବଂ ଭାରତରେ ତ ହେବା ସ୍ୱାଭାବିକ । ଏଠାରେ ଏକ 'ଭାରତ ରକ୍ଷା ଆଇନ' ପାଶ୍ ହେଲା । ଯୁଦ୍ଧ କମ୍ପା

ଯୁଦ୍ଧ ଫ୍ରାନ୍ସ ଅନ୍ୟ ଜନତାର ସାଧାରଣ ସମାଲୋଚନାକୁ ଏହିରୂପେ ସଫଳତା ସହିତ ବନ୍ଦକରି ଦିଆଗଲା । ତଥାପି ମୂଳରେ ତୁର୍କି ପ୍ରତି ଗୋଟାଏ ସର୍ବବ୍ୟାପୀ ସହାନୁଭୂତି ଥିଲା ଏବଂ ଜର୍ମାନୀଠାରୁ ବ୍ରିଟେନ ଗୋଟାଏ ବଡ଼ ଧକ୍କା ଖାଉ ଏହି ଆଶା ସମସ୍ତେ କରୁଥିଲେ । ସେଉଁମାନେ ଯଥେଷ୍ଟରୂପେ ନିଜେ ଧକ୍କା ଖାଇଛନ୍ତି, ସେମାନଙ୍କ ପକ୍ଷରେ ଏପରି ନପୁଂସକ ଇଚ୍ଛା ହେବା ଅତି ସ୍ୱାଭାବିକ । କିନ୍ତୁ ସାଧାରଣରେ ଏକଥା କେହି ବ୍ୟକ୍ତ କରୁ ନ ଥିଲେ ।

ସାଧାରଣରେ ବ୍ରିଟେନ ପ୍ରତି ରାଜଭକ୍ତିର ଉଚ୍ଚଧ୍ୱନିରେ ଆକାଶ ଭରିଯାଉଥିଲା । ବେଶି ଚିତ୍କାର କରୁଥିଲେ ଦେଶୀୟ ରାଜ୍ୟ ରାଜାମାନେ ଏବଂ ସରକାର ସହିତ ସମ୍ପର୍କରେ ଆସୁଥିବା କେତେକ ଉଚ୍ଚଶ୍ରେଣୀର ଲୋକ । ମିତ୍ରପକ୍ଷର ଗଣତନ୍ତ୍ର, ସ୍ୱାଧୀନତା ଓ ଦେଶମାନଙ୍କୁ ସ୍ୱାଧୀନତା ଦେବାର ସାହସିକ ଘୋଷଣାରେ ବୁର୍ଜୋୟାମାନେ କେତେକ ପରିମାଣରେ ଭୁଲି ଗଲେ । ବୋଧହୁଏ ଭାବିଲେ ଯେ ଏହା ଭାରତ ପ୍ରତି ବି ଲାଗୁ ହୋଇପାରେ ଏବଂ ଆଶା କରାଗଲା ଯେ ବ୍ରିଟେନର ବିପଦବେଳେ ତାକୁ ସାହାଯ୍ୟ ଦେଲେ ପରେ ଉପଯୁକ୍ତ ପୁରସ୍କାର ମିଳିପାରିବ । ଯାହାହେଉ ସେ ବିଷୟରେ ଅନ୍ୟ ଗତି କିଛି ନ ଥିଲା ଏବଂ ଅନ୍ୟ ନିରାପଦ ପନ୍ଥା ବି ନ ଥିଲା; ସୁତରାଂ ଗୋଟାଏ ଖରାପ ପରିସ୍ଥିତିରୁ ଯେତିକି ଲାଭ ସେମାନେ ତାହାର କରିପାରନ୍ତି କଲେ ।

ସେତେବେଳେ ଭାରତରେ ରାଜଭକ୍ତିର ଏହି ବାହ୍ୟ ପ୍ରଦର୍ଶନ ଇଂଲଣ୍ଡରେ ଭାରି ପସନ୍ଦ ହେଲା ଏବଂ ଖୁବ୍ କୃତଜ୍ଞତା ପ୍ରକାଶ କରାଗଲା । କର୍ତ୍ତୃତ୍ୱରେ ଥିବା ଲୋକେ କହିବାକୁ ଲାଗିଲେ, ଏହାପରେ ଇଂଲଣ୍ଡ "ଏକ ନୂତନ ଦୃଷ୍ଟିକୋଣ"ରୁ ଭାରତ ପ୍ରତି ନଜର ଦେବ ।

କିନ୍ତୁ ଭାରତ ଓ ବାହାରଦେଶରେ ଥିବା କେତେକ ଭାରତୀୟ ଏହି "ରାଜଭକ୍ତି" ମନୋଭାବ ଗ୍ରହଣ କଲେ ନାହିଁ । ଅଧିକସଂଖ୍ୟକ ଲୋକ ଯେପରି ନୀରବ ଓ ନିଷ୍କ୍ରିୟ ହୋଇ ରହିଲେ ସେମାନେ ସେପରି ବି ରହିଲେ ନାହିଁ । ପୁରୁଣା ଆଇରିଶ ନୀତି ପରି ସେମାନେ ମଧ୍ୟ ବିଶ୍ୱାସ କଲେ ଯେ ଇଂଲଣ୍ଡର ବିପଦବେଳ ହେଉଛି ତାଙ୍କ ଦେଶ ପକ୍ଷରେ ସୁଯୋଗ ସମୟ; ବିଶେଷତଃ ଜର୍ମାନୀ ଓ ଇଉରୋପର ଅନ୍ୟ ଦେଶମାନଙ୍କରେ ଥିବା କେତେକ ଭାରତୀୟ ଇଂଲଣ୍ଡର ଶତ୍ରୁମାନଙ୍କୁ ସାହାଯ୍ୟ କରିବା ନିମନ୍ତେ ବର୍ଲିନରେ ଏକତ୍ର ହୋଇ ଉପାୟ ଉଦ୍ଭାବନ କରିବାକୁ ଲାଗିଲେ ଏବଂ ସେହି ଉଦ୍ଦେଶ୍ୟରେ ଏକ କମିଟି ଗଢ଼ିଲେ । ଜର୍ମାନୀ ସେକୌଣସି ପ୍ରତ୍ୟେକ ପ୍ରକାର ସାହାଯ୍ୟ ଗ୍ରହଣ କରିବାକୁ ବ୍ୟଗ୍ର ହେବା ସ୍ୱାଭାବିକ ଏବଂ ସେମାନେ ଏହି ଭାରତୀୟ ବନ୍ଧୁଙ୍କୁ ସ୍ୱାଗତ କଲେ । ଗୋଟାଏ ବିଧିବଦ୍ଧ ଲିଖିତ ଚୁକ୍ତିନାମା ହେଲା ଏବଂ ଜର୍ମାନ ସରକାର ଓ ଭାରତୀୟ କମିଟି ଉଭୟେ ସେଥିରେ ସ୍ୱାକ୍ଷର କଲେ । ସେଥିରେ ଅନ୍ୟ କଥା ସହିତ ଥିଲା ଯେ ଭାରତୀୟମାନେ ଏହି ସର୍ତ୍ତରେ ଯୁଦ୍ଧବେଳେ ଜର୍ମାନ

ସରକାରଙ୍କୁ ସାହାଯ୍ୟ ଦେବେ, ଜୟଲାଭ କଲେ ଜର୍ମାନୀ ଭାରତର ସ୍ୱାଧୀନତା ନିମନ୍ତେ ଜୋର ଦେବ । ତେଣୁ ଏହି ଭାରତୀୟ କର୍ମିଟି ଯୁଦ୍ଧବେଳସାରା ଜର୍ମାନୀ ତରଫରୁ କାର୍ଯ୍ୟ କଲା । ଯେଉଁସବୁ ଭାରତୀୟ ସେନାଙ୍କୁ ଦେଶାନ୍ତର ପଠାଯାଉଥିଲା, ସେମାନଙ୍କ ଭିତରେ ଏମାନେ ପ୍ରଚାର ଚଳାଇଲେ ଏବଂ ସେମାନଙ୍କର କାର୍ଯ୍ୟ ଆଫଗାନିସ୍ଥାନ ଓ ଭାରତର ଉତ୍ତର-ପଶ୍ଚିମ ସୀମାନ୍ତ ପର୍ଯ୍ୟନ୍ତ ବ୍ୟାପିଲା । କିନ୍ତୁ ବ୍ରିଟିଶଙ୍କୁ ତାଳେ ହଇରାଣ କରିବା ଛଡ଼ା ସେମାନେ ଅଧିକ କିଛି କରିପାରିଲେ ନାହିଁ । ସମୁଦ୍ର ପଥରେ ଭାରତକୁ ଅସ୍ତ୍ରଶସ୍ତ୍ର ପଠାଇବାର ଏକ ଉଦ୍ୟମ ବ୍ରିଟିଶ ପଣ୍ଡ କରିଦେଲା । ଯୁଦ୍ଧରେ ଜର୍ମାନୀର ପରାଜୟ ଘଟିବାରୁ ଏହି କମିଟି ଓ ତାଙ୍କ ଆଶାସବୁ ଆପଣାଛାଏଁ ଲୋପ ପାଇଗଲା ।

ଭାରତରେ ମଧ୍ୟ ବିପ୍ଳବାତ୍ମକ କାର୍ଯ୍ୟସବୁ ଦେଖାଗଲା ଏବଂ ଷଡ଼ଯନ୍ତ୍ର ମକଦ୍ଦମା ବିଚାର କରିବା ନିମନ୍ତେ ବିଶେଷ ବିଚାର ପଞ୍ଚାୟତ (ଟ୍ରିବ୍ୟୁନାଲ) ନିଯୁକ୍ତ କରାଗଲା, ଅନେକଙ୍କୁ ମୃତ୍ୟୁଦଣ୍ଡ ଓ ଅନେକଙ୍କୁ ଦୀର୍ଘଜୀବନ କାରାବାସ ଦିଆଗଲା । ସେତେବେଳେ ଜେଲଦଣ୍ଡ ପାଇ-ଥିବା ଲୋକ ଏବେ ସୁଦ୍ଧା—୧୮ବର୍ଷ ପରେ—ଜେଲରେ ଅଛନ୍ତି ।

ଯୁଦ୍ଧ ଚାଲିବାରୁ ଅନ୍ୟଦେଶ ପରି ଏଠି ମଧ୍ୟ ମୁଷ୍ଟିମେୟ ଲୋକ ପ୍ରଚୁର ଲାଭ କଲେ; କିନ୍ତୁ ଅଧିକ ସଂଖ୍ୟକ ଲୋକଙ୍କ ଉପରେ ଏହାର ଚାପ ଖୁବ୍ ବେଶି ପଡ଼ିଲା ଏବଂ ଅସନ୍ତୋଷ ବୃଦ୍ଧି ପାଇଲା । ଯୁଦ୍ଧକ୍ଷେତ୍ର ଲାଗି ଅଧିକ ଲୋକର ଦରକାର ବଢ଼ିଲା ଏବଂ ସେନା ସକାଶେ ଲୋକସଂଗ୍ରହ ଖୁବ୍ ଜୋର ଚାଲିଲା । ଯେଉଁମାନେ ଲୋକ ସଂଗ୍ରହ କରି ଆଣିଲେ ସେମାନଙ୍କୁ ନାନାପ୍ରକାର ପ୍ରଲୋଭନ ଓ ପାରିତୋଷିକ ଦିଆଗଲା ଏବଂ ନିଜ ପ୍ରଜାଙ୍କ ଭିତରୁ ନିର୍ଦ୍ଦିଷ୍ଟସଂଖ୍ୟକ ଲୋକ ଯୋଗାଇବା ନିମନ୍ତେ ଜମିଦାରମାନଙ୍କୁ ହୁକୁମ ଦିଆଗଲା । ସେନା ଓ ଶ୍ରମିକ ବାହିନୀ ନିମନ୍ତେ ଲୋକ ଆଣିବା ପାଇଁ ପଞ୍ଜାବରେ ବିଶେଷତଃ "ପ୍ରେସ-ଗ୍ୟାଙ୍ଗ୍" ପ୍ରଣାଳୀ ଅର୍ଥାତ ବାଧ୍ୟତାମୂଳକ ଲୋକସଂଗ୍ରହ ପ୍ରଣାଳୀ ନିଯୁକ୍ତ କରାଗଲା । ଉଭୟ ସୈନିକ ଓ ଶ୍ରମିକ ବାହିନୀରୂପେ ଭାରତରୁ ଯାଇଥିବା ଲୋକଙ୍କ ସଂଖ୍ୟା ମୋଟରେ ୧୦ ଲକ୍ଷରୁ ବେଶି ହେବ । ସଂପୃକ୍ତ ଲୋକେ ଏହି ପ୍ରଣାଳୀରେ ଘୋର ଅସନ୍ତୋଷ ପ୍ରକାଶ କଲେ ଏବଂ ପଞ୍ଜାବରେ ଯୁଦ୍ଧପରେ ହୋଇଥିବା ଗୋଳମାଳର ଏହା ବି ଗୋଟିଏ କାରଣ ବୋଲି ଧରାଯାଏ ।

ପଞ୍ଜାବ ଉପରେ ଅନ୍ୟ ପ୍ରକାରେ ବି ଆଞ୍ଚ ଲାଗିଲା । ଅନେକ ପଞ୍ଜାବୀ ଏବଂ ବିଶେଷ ଭାବରେ ଶିଖମାନେ ସଂଯୁକ୍ତ ରାଷ୍ଟ୍ରର କାଲିଫର୍ଣ୍ଣିଆ ଏବଂ ପଶ୍ଚିମ କାନାଡ଼ାରେ ବ୍ରିଟିଶ କଲମ୍ବିଆକୁ ଚାଲିଯାଉଥିଲେ । ଆମେରିକା ଓ କାନାଡ଼ାର କର୍ତ୍ତୃପକ୍ଷ ଏହା ବନ୍ଦ କରିବା ପର୍ଯ୍ୟନ୍ତ ଏପରି ଲୋକସ୍ରୋତ ବରାବର ଚାଲିଥାଏ । ଏପରି ବିଦେଶୀ ଲୋକ ଆସିବାରେ ଅସୁବିଧା ଆଣିବା ପାଇଁ କାନାଡ଼ା ସରକାର ଏକ ନିୟମ ଜାରି କଲା ଯେ, ବାଟରେ କୌଣସି ସ୍ଥାନରେ ଜାହାଜ ନ ବଦଳାଇ ଯେଉଁମାନେ ତାଙ୍କ ବନ୍ଦରରୁ ସିଧାସଳଖ ଏହି ବନ୍ଦରକୁ

ଆସିବେ ସେହିମାନଙ୍କୁ ଗ୍ରହଣ କରାଯିବ । ଭାରତୀୟ ଲୋକ ଯିବାରେ ବାଧା ଦେବା ପାଇଁ ଏହା ହୋଇଥିଲା; କାରଣ ସେମାନଙ୍କୁ ପ୍ରାୟ ଚୀନ ବା ଜାପାନରେ ଜାହାଜ ବଦଳାଇବାକୁ ପଡ଼ୁଥିଲା । ତେଣୁ ବାବା ଗୁରୁଜିତ ସିଂହ ନାମକ ଜଣେ ଶିଖ "କାମାଗାଟାମାରୁ" ନାମକ ଗୋଟିଏ ପୂରା ଜାହାଜ ଧରିଲେ ଏବଂ କଲିକତାରୁ ନିଜ ସାଙ୍ଗରେ ବହୁତ ଲୋକଙ୍କୁ ସିଧା କାନାଡ଼ାର ଭାଙ୍କୁଭର ବନ୍ଦରକୁ ନେଲେ । ଏହିରୂପେ ସେ ଚତୁର ଭାବରେ କାନାଡ଼ାର ଆଇନକୁ ଏଡ଼ାଇ ପାରିଲେ; କିନ୍ତୁ ତାହା ହୋଇ ସୁଦ୍ଧା କାନାଡ଼ା ସରକାର ତାଙ୍କୁ ଗ୍ରହଣ କଲି ନାହିଁ ଏବଂ ଜଣେ ହେଲେ ଭାରତୀୟଙ୍କୁ ସେଠି ଓହ୍ଲାଇବା ନିମନ୍ତେ ଅନୁମତି ଦିଆଗଲା ନାହିଁ । ସେହି ଜାହାଜରେ ସେମାନଙ୍କୁ ଫେରାଇ ପଠାଇ ଦିଆଗଲା ଏବଂ ସେମାନେ ଦୁର୍ଦ୍ଦଶାଗ୍ରସ୍ତ ଅବସ୍ଥାରେ ଅତ୍ୟନ୍ତ କ୍ରୋଧାନ୍ୱିତ ହୋଇ ଫେରିଲେ । କଲିକତାର ବଜବଜଠାରେ ପୁଲିସ ସହିତ ବେଶ୍ ଗୋଟାଏ ଗ୍ରେଟ ଯୁଦ୍ଧ ଲାଗିଗଲା । ଫଳରେ ଅନେକ ଲୋକ ମଲେ; ବେଶି ମଲେ ଶିଖ୍ । ତା ପରେ ଅନେକ ଶିଖଙ୍କୁ ବରାବର ସରକାର ଜଗିଲା ଏବଂ ପଞ୍ଜାବରେ ତାଙ୍କୁ ଶିକାର କଲାପରି ତାଙ୍କ ପଛରେ ଗୁପ୍ତଚର ଲାଗିଲେ । ଏହି ଲୋକେ ପଞ୍ଜାବରେ ମଧ୍ୟ କ୍ରୋଧ ଓ ଅସନ୍ତୋଷ ପ୍ରଚାର କରିଦେଲେ ଏବଂ ସମଗ୍ର ଭାରତରେ "କାମାଗାଟାମାରୁ" ଘଟଣାରେ ଅସନ୍ତୋଷ ପ୍ରକାଶ କରାଗଲା ।

ଏହି ଯୁଦ୍ଧ କାଳରେ ଯାହା ସବୁ ଘଟିଗଲା, ତାହା ଜାଣିବା କଷ୍ଟକର; କାରଣ ଯାଞ୍ଚ ପ୍ରଥା ଅନେକ ପ୍ରକାର ସମ୍ବାଦ ପ୍ରକାଶ କରିବାକୁ ଦେଉ ନ ଥିଲା ଏବଂ ଫଳସ୍ୱରୂପ ନାନା ଗୁଜବ ସବୁ ବ୍ୟାପୁଥିଲା । ଯାହାହେଉ ଏ କଥା ଜଣା ଶୁଣା ଯେ ଭାରତୀୟ ସେନାଙ୍କ ଭିତରେ ସିଙ୍ଗାପୁରରେ ଗୋଟାଏ ବଡ଼ ବିଦ୍ରୋହ ହୋଇଥିଲା ଏବଂ ଅନ୍ୟ ଅନେକ ସ୍ଥାନରେ ଅଳ୍ପ ପରିମାଣରେ ଗୋଲମାଲସବୁ ହୋଇଥିଲା ।

ଯୁଦ୍ଧପାଇଁ ଲୋକ ଯୋଗାଇବା ଓ ଅନ୍ୟ ପ୍ରକାରେ ସାହାଯ୍ୟ କରିବା ଛଡ଼ା ଭାରତରୁ ନଗଦ ଧନ ବି ନିଆ ହୋଇଥିଲା । ଏହାକୁ ଭାରତରୁ 'ଦାନ' ବୋଲି କୁହା ହେଉଥିଲା । ଥରେ ଏହିରୂପେ ୧୦୦,୦୦୦,୦୦୦ ପାଉଣ୍ଡ ଦିଆ ଯାଇଥିଲା ଏବଂ ପରେ ସେହିପରି ଆହୁରି ବେଶି ଦିଆଗଲା । ଗୋଟିଏ ଦରିଦ୍ର ଦେଶରୁ ଏହି ବାଧ୍ୟତାମୂଳକ ଅସୁଲ କରିବାଟାକୁ 'ଦାନ' କହିବା ବ୍ରିଟିଶ ସରକାର ପକ୍ଷରେ ଆଉ ଅଧିକ ଉପହାସର କଥା କ'ଣ ହୋଇପାରେ ?

ଏ ପର୍ଯ୍ୟନ୍ତ ମୁଁ ଯାହାସବୁ ତତେ କହିଛି, ଭାରତ ସମ୍ପର୍କରେ ଦେଖିବାକୁ ଗଲେ ଯୁଦ୍ଧର ଫଳାଫଳ ଦୃଷ୍ଟିରୁ ଏହାସବୁ ଅତି ନଗଣ୍ୟ କଥା । ଯୁଦ୍ଧବେଳ ଅବସ୍ଥା ଦ୍ୱାରା ଆହୁରି ଅଧିକ ମୌଳିକ ପରିବର୍ତ୍ତନମାନ ଘଟୁଥିଲା । ଯୁଦ୍ଧକାଳରେ ଅନ୍ୟ ଦେଶରେ ବୈଦେଶିକ ବେପାର ସଂପୂର୍ଣ୍ଣରୂପେ ହର୍ଜିଲେ । ପ୍ରଚୁର ପରିମାଣରେ ଯେଉଁ ବିଲାତି ଜିନିଷସବୁ ଭାରତକୁ

ଆସୁଥିଲା ତାହା ଏବେ ବହୁ ପରିମାଣରେ ବିଚ୍ଛିନ୍ନ ହୋଇଗଲା । ଭୂମଧ୍ୟସାଗର ଓ ଆଟଲାଣ୍ଟିକରେ ଜର୍ମାନ ବୁଡ଼ାଜାହାଜ ବଣିକ ଜାହାଜସବୁ ବୁଡ଼ାଇ ଦେଉଥିଲା ଏବଂ ଏପରି ଅବସ୍ଥାରେ ବେପାର କରାଯାଇ ପାରୁ ନ ଥିଲା । ତେଣୁ ଭାରତକୁ ନିଜ ପାଇଁ ବ୍ୟବସ୍ଥା କରି ନିଜର ଆବଶ୍ୟକ ଅନୁସାରେ ଜିନିଷ ଯୋଗାଇବାକୁ ପଡ଼ିଲା । ଯୁଦ୍ଧପାଇଁ ଦରକାର ଅନ୍ୟ ସକଳ ପ୍ରକାର ଜିନିଷ ବି ତାକୁ ସରକାରଙ୍କୁ ଯୋଗାଇବାକୁ ପଡ଼ିଲା । ତେଣୁ ଭାରତୀୟ ଶିଳ୍ପ ଦ୍ରୁତଗତିରେ ବୃଦ୍ଧି ପାଇଲା--ଲୁଗା ଓ ଝୋଟ ଆଦି ପୁରାତନ ଶିଳ୍ପ ଓ ନୂତନ ଯୁଦ୍ଧକାଳୀନ ଶିଳ୍ପସବୁ । ଯେଉଁ ଟାଟା ଲୁହା ଓ ଇସ୍ପାତ କାରଖାନାକୁ ସରକାର ଏପର୍ଯ୍ୟନ୍ତ ବିଶେଷ କିଛି ସୁବିଧା ଦେଉ ନ ଥିଲା ତାହା ଏବେ ଯୁଦ୍ଧ ସାମଗ୍ରୀ ତିଆରି କରି ପାରିବାରୁ ତାର ପ୍ରାଧାନ୍ୟ ଖୁବ୍ ବଢ଼ିଲା । ସେଗୁଡ଼ିକ ଅନେକ ଅଧିକେ ସରକାରୀ କର୍ତ୍ତୃତ୍ୱରେ ପରିଚାଳନା କରାଗଲା ।

ଅତଏବ ଯୁଦ୍ଧ ବର୍ଷମାନଙ୍କରେ ଭାରତରେ ଉଭୟ ବ୍ରିଟିଶ ଓ ଭାରତୀୟ ପୁଞ୍ଜିପତିଙ୍କ ପାଇଁ ପ୍ରଶସ୍ତ କ୍ଷେତ୍ର ଥିଲା ଏବଂ ବାହାରୁ କିଛି ପ୍ରତିଯୋଗିତା ନ ଥିଲା । ସେମାନେ ଏହି ସୁଯୋଗର ପୂର୍ଣ୍ଣ ଉପଯୋଗ କଲେ ଏବଂ ଗରିବ ଭାରତୀୟ ଜନତା ବିନିମୟରେ ଏଥିରେ ନିଜେ ଲାଭବାନ ହେଲେ । ଜିନିଷର ଦର ବଢ଼ାଇ ଦିଆଗଲା ଏବଂ ଅବିଶ୍ୱାସଯୋଗ୍ୟ ଲଭାଂଶସବୁ ଘୋଷଣା କରାଗଲା । କିନ୍ତୁ ଯେଉଁ ଶ୍ରମିକମାନଙ୍କର ଶ୍ରମ ଫଳରେ ଏହିସବୁ ଲାଭାଂଶ ବା ଲାଭ ହୋଇପାରିଲା, ସେମାନେ ତାଙ୍କର ଦୁର୍ଦ୍ଦଶାଗ୍ରସ୍ତ ଅବସ୍ଥାରେ ପରିବର୍ତ୍ତନ ଦେଖି ପାରିଲେ ନାହିଁ । ସେମାନଙ୍କର ମଜୁରି ଟିକିଏ ବଢ଼ିଲା; କିନ୍ତୁ ଜୀବନର ଆବଶ୍ୟକୀୟ ପଦାର୍ଥର ଦର ଖୁବ୍ ଅଧିକ ହୋଇଗଲା ଏବଂ ତେଣୁ ତାଙ୍କ ଅବସ୍ଥା ପ୍ରକୃତରେ ଖରାପ ହୋଇଗଲା ।

କିନ୍ତୁ ପୁଞ୍ଜିପତିମାନେ ଖୁବ ଉନ୍ନତି କଲେ ଓ ପ୍ରଚୁର ମୁନାଫା ଜମା କଲେ— ତାକୁ ସେମାନେ ପୁଣି ଶିଳ୍ପରେ ଖଟାଇବା ନିମନ୍ତେ ବ୍ୟଗ୍ର ଥିଲେ । ପ୍ରଥମ ଥରପାଇଁ ସରକାର ଉପରେ ଚାପ ପକାଇଲା ଭଳି ଶକ୍ତି ଭାରତୀୟ ପୁଞ୍ଜିପତିମାନଙ୍କର ହେଲା । ଏହି ଚାପ ଛଡ଼ା ଘଟଣାଚକ୍ରରେ ବାଧ୍ୟହୋଇ ଯୁଦ୍ଧବେଳେ ବ୍ରିଟିଶ ସରକାରଙ୍କୁ ଭାରତୀୟ ଶିଳ୍ପକୁ ସାହାଯ୍ୟ କରିବାକୁ ପଡ଼ିଲା । ଦେଶରେ ଅଧିକ ଶିଳ୍ପୋଦ୍ୟୋଗ ବୃଦ୍ଧି ସଙ୍ଗେ ସଙ୍ଗେ ବିଦେଶରୁ ଅଧିକ କଳକବ୍ଜା ଆମଦାନି ହେବା ଦରକାର ପଡ଼ିଲା— କାରଣ ଏସବୁ କଳ ଭାରତରେ ହେଉ ନ ଥିଲା । ସେଥିରେ ଇଂଲଣ୍ଡରୁ ଭାରତକୁ ତିଆରି ମାଲ ଆସିବା ସ୍ଥଳରେ ଆମେ ଦେଖିବାକୁ ପାଉ ଯେ ଅଧିକ କଳକବ୍ଜା ଆସିବାରେ ଲାଗିଲା ।

ଭାରତରେ ବ୍ରିଟିଶ ନୀତିର ବହୁପରିବର୍ତ୍ତନ ହେବା ଦରକାର ହେଲା; ଶତାବ୍ଦୀଧରି ଚାଲିଥିବା ପୁରୁଣା ନୀତି ଛାଡ଼ିଦିଆଗଲେ ଏବଂ ତାହା ସ୍ଥାନରେ ନୂତନ ଗ୍ରହଣ କରାଗଲା । ବ୍ରିଟିଶ ସାମ୍ରାଜ୍ୟବାଦ ପରିବର୍ତ୍ତିତ ଅବସ୍ଥା ସହ ନିଜକୁ ଖାପ ଖୁଆଇ ନିଜର ରୂପ ସଂପୂର୍ଣ୍ଣରୂପେ ବଦଳାଇ ଦେଲା । ଭାରତରେ ବ୍ରିଟିଶ ଶାସନର ପ୍ରଥମ ଅବସ୍ଥା ବିଷୟରେ ମୁଁ ତତେ

କରୁଥିବାର ଢୋର ମନେଥିବ । ପ୍ରଥମ ହେଲା ଅଷ୍ଟାଦଶ ଶତାବ୍ଦୀର ଲୁଣ୍ଠନ ଓ ନଗଦ ଟଙ୍କା ବୋହି ନେବାର ଅବସ୍ଥା । ତାପରେ ଆସିଲା ଦ୍ୱିତୀୟ ଅବସ୍ଥା—ବ୍ରିଟିଶ ଶାସନ ଦୃଢ଼ତ୍ୱରେ ପ୍ରତିଷ୍ଠିତ ହେଲା ଏବଂ ଏହା ୧୦୦ ବର୍ଷରୁ ଅଧିକକାଳ ଅର୍ଥାତ୍ ଯୁଦ୍ଧ ପର୍ଯ୍ୟନ୍ତ ଚାଲିଲା । ଭାରତକୁ କଞ୍ଚାମାଲର କ୍ଷେତ୍ର ଓ ବ୍ରିଟେନ ତିଆରି ଜିନିଷର ବଜାରରୂପେ ରଖିବା ପାଇଁ ଏପରି ହୋଇଥିଲା । ପ୍ରତ୍ୟେକ ଭାବରେ ବ୍ରିଟିଶ ଶିଳ୍ପକୁ ଏଠି ନିରୁତ୍ସାହ କରାଗଲା ଏବଂ ଭାରତର ଆର୍ଥିକ ପ୍ରଗତିରେ ବାଧା ଦିଆଗଲା । ଏବେ ଯୁଦ୍ଧକାଳରେ ତୃତୀୟ ଅବସ୍ଥା ପହଞ୍ଚିଲା—ଏତେବେଳେ ବ୍ରିଟିଶ ସରକାର ଭାରତରେ ବଡ଼ ବଡ଼ ଶିଳ୍ପକୁ ଉତ୍ସାହିତ କଲା ଏବଂ ଏହା ବ୍ରିଟେନର ମାଲ ତିଆରି କରିବା ସହିତ କେତେକ ପରିମାଣରେ ସଂଘର୍ଷ କରୁଥିବା ସତ୍ତ୍ୱେ ବି କରାଗଲା । ଏହିରୂପେ ଏହା ସ୍ପଷ୍ଟ ଯେ ଯଦି ଭାରତୀୟ ବସ୍ତ୍ରଶିଳ୍ପକୁ ଉତ୍ସାହିତ କରାଯାଏ, ତେବେ ଲଙ୍କାଶାୟାର ବିଶେଷ ପରିମାଣରେ କଷ୍ଟ ଭୋଗିବ—କାରଣ ଭାରତ ହିଁ ଲଙ୍କାଶାୟାରର ପ୍ରଧାନ ଖାଉଟି । ତାହାହେଲେ ଲଙ୍କାଶାୟାର ଓ ଅନ୍ୟ ବ୍ରିଟିଶ ଶିଳ୍ପର କ୍ଷତି ସହିଥାଇ ଇଂରେଜ ସରକାର କାହିଁକି ଏପରି ନୀତିରେ ପରିବର୍ତ୍ତନ କଲା ? ଯୁଦ୍ଧ ଅବସ୍ଥାରେ ସେ କିପରି ବାଧ୍ୟ ହେଲା ତାହା ମୁଁ ଦେଖାଇ ଦେଇଛି । ଏହିସବୁ ପରିବର୍ତ୍ତନର କାରଣମାନ ବିସ୍ତୃତ ଭାବରେ ଆଲୋଚନା କରାଯାଉ:—

୧ । ଯୁଦ୍ଧବେଳର ଆବଶ୍ୟକତା ଆପଣା ସ୍ୱୟଂ ସମସ୍ୟାକୁ ବଳବତ୍ତର କରାଇଲା ଏବଂ ଭାରତରେ ଶିଳ୍ପୋଦ୍ୟୋଗକୁ ଆଗେଇଲା ।

୨ । ଏହା ଭାରତୀୟ ପୁଞ୍ଜିବାଦୀ ଶ୍ରେଣୀର ବୃଦ୍ଧି କଲା ଏବଂ ଏହାକୁ ଦୃଢ଼ କଲା—ତେଣୁ ସେମାନେ ଶିଳ୍ପ ବୃଦ୍ଧି ସକାଶେ ଅଧିକରୁ ଅଧିକ ସୁବିଧା ଦାବୀକଲେ ଏବଂ ବଳକା ଧନକୁ ଖଟାଇବା ନିମନ୍ତେ ତାଙ୍କୁ ସୁବିଧା ଦେବାପାଇଁ ମଧ୍ୟ ଦାବୀକଲେ । ବ୍ରିଟେନ୍ ଆଉ ସେମାନଙ୍କୁ ସମ୍ପୂର୍ଣ୍ଣରୂପେ ଅବଜ୍ଞା କରିବା ଅବସ୍ଥାରେ ନ ଥିଲା—ତାହାହେଲେ ସେମାନେ ତାକୁ ଛାଡ଼ି ଚାଲିଯାନ୍ତେ ଏବଂ ଦେଶରେ ଅଧିକ ଭାବରେ ବୃଦ୍ଧିପାଉଥିବା ଚରମବାଦୀ ଓ ବିପ୍ଳବୀମାନଙ୍କୁ ସେମାନେ ସାହାଯ୍ୟ କରନ୍ତେ । ତେଣୁ ଯଦି ସମ୍ଭବ ହୁଏ ସେମାନଙ୍କୁ ତାଙ୍କର ବୃଦ୍ଧିପାଇଁ କିଛି ସୁଯୋଗ ଦେଇ ବ୍ରିଟିଶ ପକ୍ଷରେ ରଖିବା ବାଞ୍ଛନୀୟ ।

୩ । ଇଂଲଣ୍ଡର ପୁଞ୍ଜିବାଦୀ ଶ୍ରେଣୀମାନେ ବଳକା ଧନ ଅନୁନ୍ନତ ଦେଶମାନଙ୍କରେ ଖଟାଇବା ସକାଶେ ବି ସୁଯୋଗ ଚାହାନ୍ତି, କାରଣ ସେଠି ବେଶୀ ଲାଭ ମିଳିବ । ଇଂଲଣ୍ଡ ନିଜେ ଅତ୍ୟନ୍ତ ଶିଳ୍ପୋନ୍ନତ ହୋଇଥିବାରୁ ସେଠାରେ ମୂଳଧନ ଖଟାଇବାର ସେପରି ଅନୁକୂଳ ଅବସ୍ଥା ନାହିଁ । ଲାଭ ସେତେ ବେଶୀ ମିଳେ ନା ଏବଂ ସଙ୍ଗଠିତ ଶ୍ରମିକ ଅନୁଷ୍ଠାନର ଶକ୍ତି ହେତୁ ବାରମ୍ବାର ଶ୍ରମିକ ଗୋଳମାଲ ବି ଉଠେ । ଅନୁନ୍ନତ ଅଞ୍ଚଳରେ ଶ୍ରମିକମାନେ ଦୁର୍ବଳ ଏବଂ ତେଣୁ ମଜୁରି କମ୍ ଓ ଲାଭ ବେଶୀ । ସ୍ୱଭାବତଃ ବ୍ରିଟିଶ ପୁଞ୍ଜିପତିମାନେ ଭାରତ ପରି ଅନୁନ୍ନତ ଦେଶରେ ବ୍ରିଟିଶ ପରିଚାଳନା ଆଧୀନରେ ଧନ ଖଟାଇବାକୁ ଅଧିକ ପସନ୍ଦ

କରନ୍ତି । ଏହିରୂପେ ବ୍ରିଟିଶ ପୁଞ୍ଜି ଭାରତକୁ ଆସିଲା ଏବଂ ଏହା ଫଳରେ ଆହୁରି ଅଧିକ ଶିଳ୍ପୋଦ୍ୟୋଗ ବଢ଼ିଲା ।

୪ । ଯୁଦ୍ଧ ଅଭିଜ୍ଞତାରୁ ଦେଖାଗଲା ଯେ କେବଳ ଅତି ଶିଳ୍ପୋନ୍ନତ ଦେଶମାନେ ସଫଳ ସହକାରେ ଯୁଦ୍ଧ ଚଳାଇପାରନ୍ତି । ଜାରଶାସିତ ରୁଷ ଶେଷରେ ଯୁଦ୍ଧରେ ଭାଙ୍ଗି-ପଡ଼ିଲା; କାରଣ ଏହା ଯଥେଷ୍ଟଭାବରେ ଶିଳ୍ପୋନ୍ନତ ନ ଥିଲା ଏବଂ ଅନ୍ୟ ଦେଶ ଉପରେ ତାକୁ ନିର୍ଭର କରିବାକୁ ପଡ଼ୁଥିଲା । ଇଂଲଣ୍ଡ ଭୟ କରେ ଯେ ଆସନ୍ତା ଯୁଦ୍ଧରେ ଭାରତୀୟ ସୀମାନ୍ତରେ ସୋଭିଏଟ୍ ରୁଷ ସହିତ ତାକୁ ଲଢ଼ିବାକୁ ପଡ଼ିପାରେ । ଭାରତରେ ଯଦି ବଡ଼ ବଡ଼ ଶିଳ୍ପ ନ ହୁଏ, ତେବେ ତାର ସୀମାନ୍ତରେ ବ୍ରିଟିଶ ସରକାର ଠିକ୍‌ରୂପେ ଯୁଦ୍ଧ ଚାଳନା କରିପାରିବ ନାହିଁ । ଏହା ମଧ୍ୟ ଏକ ବଡ଼ ବିପଦ । ତେଣୁ ଭାରତକୁ ଶିଳ୍ପୋନ୍ନତ କରିବା ଦରକାର ।

ଏହିସବୁ କାରଣ ଯୋଗୁଁ ଅନିବାର୍ଯ୍ୟ ଭାବରେ ବ୍ରିଟିଶନୀତି ପରିବର୍ତ୍ତିତ ହେଲା ଏବଂ ଭାରତକୁ ଶିଳ୍ପୋନ୍ନତ କରିବା ସ୍ଥିର ହେଲା । ଏପରିକି ଲଙ୍କାଶାୟାର ଓ ଅନ୍ୟ କେତେକ ବ୍ରିଟିଶ ଶିଳ୍ପ ବିନିମୟରେ ବ୍ରିଟେନର ବ୍ୟାପକ ସାମ୍ରାଜ୍ୟ ନୀତି ହେତୁ ଏହାକୁ କରିବା ଦରକାର ପଡ଼ିଲା । ଅବଶ୍ୟ ବ୍ରିଟେନ ପ୍ରଚାର କଲା ଯେ ବ୍ରିଟିଶ ସରକାରର ଅତ୍ୟଧିକ ଭାରତ-ପ୍ରୀତି ଓ ତାର ମଙ୍ଗଳ କରିବା ଇଚ୍ଛା ଯୋଗୁଁ ଏହିସବୁ ପରିବର୍ତ୍ତନ କରାଯାଉଛି । ଏହି ନୀତି ଚଳାଇବା ଲାଗି ସ୍ଥିର କରିସାରି ଯେପରି ଭାରତରେ ନୂତନ ଶିଳ୍ପ ବ୍ରିଟିଶ ପୁଞ୍ଜିପତିଙ୍କ ହାତରେ ରହିବ ସେଥିପ୍ରତି ବ୍ରିଟେନ ବ୍ୟବସ୍ଥା କଲା । ଅନୁଗ୍ରହ କରି ଏହିସବୁ ଉଦ୍ୟମରେ ଭାରତୀୟ ପୁଞ୍ଜିପତିକୁ ଏକ ଗ୍ରେଟ ଅଂଶୀଦାରରୂପେ ନିଆଗଲା ।

୧୯୧୬ରେ ଯୁଦ୍ଧକାଳ ଭିତରେ ଗୋଟିଏ ଭାରତୀୟ ଶିଳ୍ପ କମିଶନ ନିଯୁକ୍ତ ହେଲା ଏବଂ ଦୁଇବର୍ଷ ପରେ ଏହାର ସୁପାରିଶ ପ୍ରକାଶିତ ହେଲା । ସେଥିରେ ଥିଲା ଯେ ସରକାର ଶିଳ୍ପସବୁକୁ ଉତ୍ସାହିତ କରିବା ଉଚିତ ଏବଂ କୃଷିର ନୂତନ ଶିଳ୍ପ ପ୍ରଣାଳୀ ପ୍ରୟୋଗ ହେବା ଉଚିତ । ଏହା ଆହୁରି ମଧ୍ୟ ପ୍ରସ୍ତାବ କଲା ଯେ ବ୍ୟାପକ ପ୍ରାଥମିକ ଶିକ୍ଷା ଦିଆଯିବା ଲାଗି ଉଦ୍ୟମ ହେବା ଉଚିତ । ଇଂଲଣ୍ଡର କଳକାରଖାନା ବୃଦ୍ଧିର ଆରମ୍ଭବେଳ ପରି କର୍ମପଟୁ ଶ୍ରମିକ ବାହାର କରିବା ନିମନ୍ତେ ସାଧାରଣ ପ୍ରାଥମିକ ଶିକ୍ଷାର ଆବଶ୍ୟକତା ହେଲା ।

ଏହି କମିଶନ ପଛରେ ଯୁଦ୍ଧ ପରେ ଆହୁରି ଅନେକ କମିଶନ ଓ କମିଟିସବୁ ବସିଲା । ଆହୁରି ମଧ୍ୟ ପ୍ରସ୍ତାବ ହେଲା ଯେ ବାହାର ମାଲ ଉପରେ କର ବା ଶୁଳ୍କ ବସାଇ ଭାରତୀୟ ଶିଳ୍ପକୁ ରକ୍ଷା କରିବା ଉଚିତ । ଭାରତୀୟ ଶିଳ୍ପ ପକ୍ଷରେ ଏସବୁ ବଡ଼ ବିଜୟ ପରି ବିଚାର କରାଗଲା । କେତେକ ପରିମାଣରେ ତାହା ହେଲା । କିନ୍ତୁ ଟିକିଏ ସୂକ୍ଷ୍ମ ଭାବରେ ବିଶ୍ଳେଷଣ କଲେ କେତେକ ଆମୋଦଦାୟକ ଲକ୍ଷଣ ଦେଖାଯିବ । ପ୍ରସ୍ତାବ କରାଗଲା

ଭାରତକୁ ବିଦେଶୀ ପୁଞ୍ଜି ଅର୍ଥାତ୍ ପ୍ରକୃତରେ ବ୍ରିଟିଶ ପୁଞ୍ଜି ଆଣିବା ପାଇଁ ଉତ୍ସାହିତ କରାଯାଉ; ଏବଂ ବ୍ରିଟିଶ ପୁଞ୍ଜି କୋହି ଆସିଲା । ଏହା ଯେ ଟାଲ ପ୍ରାଧାନ୍ୟ ଲଭିଲା ତାହା ନୁହେଁ, ଅଭିଭୂତ କରି ପକାଇଲା । ବଡ଼ ବଡ଼ ଶିଳ୍ପୋଦ୍ୟୋଗ ଅଧିକ ସଂଖ୍ୟକ ବ୍ରିଟିଶ ପୁଞ୍ଜିରେ ଚାଲିଲା । ତାହାହେଲେ ଭାରତରେ ଶୁଳ୍କ ଓ ସଂରକ୍ଷଣ ଫଳରେ ଭାରତରେ ବ୍ରିଟିଶ ପୁଞ୍ଜିର ହିଁ ରକ୍ଷା ହେଲା । ଭାରତରେ ବ୍ରିଟିଶନୀତିର ମହାନ୍ ପରିବର୍ତ୍ତନରେ ଯାହାହେଉ ବ୍ରିଟିଶ ପୁଞ୍ଜିପତିଙ୍କ ପକ୍ଷରେ କିଛି ଖରାପ ହେଲା ନାହିଁ । ସେ ଦେଶରେ ବିସ୍ତାର କରିବା ନିମନ୍ତେ ଭଲ ସୁରକ୍ଷିତ ବଜାର ପାଇଲା ଏବଂ ଶ୍ରମିକମାନଙ୍କୁ ଅଳ୍ପ ମଜୁରି ଦେବାଦ୍ୱାରା ଲାଭାଂଶ ବଢ଼ାଇବାକୁ ଲାଗିଲା । ଅନ୍ୟପ୍ରକାରରେ ମଧ୍ୟ ଏହା ତାହା ପକ୍ଷରେ ସୁବିଧାଜନକ ହେଲା । ତାର ପୁଞ୍ଜି ଭାରତ, ଚୀନ, ଇଜିପ୍ଟ ଓ ଏହିପରି ଅଳ୍ପ ମଜୁରି ଦେବା ଦେଶରେ ଖଟାଇପାରି ବ୍ରିଟେନ ପୁଞ୍ଜିପତି ଇଂଲଣ୍ଡର ଶ୍ରମିକମାନଙ୍କର ମଜୁରି କମାଇବା ନିମନ୍ତେ ଧମକଦେଲା । ସେ ସେମାନଙ୍କୁ କହିଲା ଯେ ତାହା ନ ହେଲେ ଭାରତ ଓ ଚୀନ ପ୍ରଭୃତିରେ ଅଳ୍ପ ମଜୁରି ଦେଇ ଯେଉଁସବୁ ଉତ୍ପାଦନ କରାଯାଉଛି ସେଥିରେ ସେ ପ୍ରତିଯୋଗିତା କରିପାରିବ ନାହିଁ । ଯଦି ଇଂରେଜ ଶ୍ରମିକ ମଜୁରି କମାଇବାରେ ଆପତ୍ତି କରିବ, ତେବେ ( ପୁଞ୍ଜିବାଦୀ ତାକୁ କହିଲା ) ଦୁଃଖର ସହିତ ବାଧ୍ୟ ହୋଇ ତାକୁ ଇଂଲଣ୍ଡରେ କାରଖାନା ବନ୍ଦ କରି ଦେବାକୁ ଏବଂ ପୁଞ୍ଜି ଅନ୍ୟତ୍ର ନେଇ ଖଟାଇବାକୁ ପଡ଼ିବ ।

ଭାରତରେ ବ୍ରିଟିଶ ସରକାର ଭାରତର ଶିଳ୍ପକୁ ନିୟନ୍ତ୍ରଣ କରିବା ନିମନ୍ତେ ଆହୁରି ଅନେକ ବ୍ୟବସ୍ଥା କଲା । ଏହା ଏକ ଗୋଳମାଳିଆ ବିଷୟ ଏବଂ ମୁଁ ତାହା ଆଲୋଚନା କରିବାକୁ ଯାଉ ନାହିଁ । କିନ୍ତୁ ଗୋଟିଏ କଥା ମୁଁ କହିପାରେ । ଆଧୁନିକ ଶିଳ୍ପରେ ବ୍ୟାଙ୍କ ସବୁ ପ୍ରଧାନ ଭାଗ ନିଅନ୍ତି; କାରଣ ବଡ଼ ବଡ଼ ବ୍ୟବସାୟ ପ୍ରାୟ ଋଣ ଦରକାର କରନ୍ତି । ଯଦି ଏହି ଋଣ ସୁବିଧାରୁ ବଞ୍ଚିତ କରାଯାଏ ତେବେ ବଡ଼ ବଡ଼ ବ୍ୟବସାୟ ହଠାତ୍ ନଷ୍ଟ ହୋଇ ଯାଇପାରେ । ବ୍ୟାଙ୍କସବୁ ଏହି ଋଣ ଦିଅନ୍ତି; ତେଣୁ ଏହାର କି ପ୍ରବଳ କ୍ଷମତା ରହିଛି ତୁ ଅନୁମାନ କରିପାରିବୁ । ସେଗୁଡ଼ିକ ଗୋଟିଏ ବେପାର ଗଢ଼ି ପାରନ୍ତି ବା ନଷ୍ଟ ବି କରି ପାରନ୍ତି । ଯୁଦ୍ଧର ଅଳ୍ପଦିନ ପରେ ବ୍ରିଟିଶ ସରକାର ଦେଶର ସମଗ୍ର ବ୍ୟାଙ୍କ ପ୍ରଥାକୁ ନିଜ ଆୟତ୍ତକୁ ଆଣିଲା । ଏହିରୂପେ ଏବଂ ମୁଦ୍ରାକୁ ଏପାଖ ସେପାଖ କରି ସରକାର ଭାରତୀୟ ଶିଳ୍ପ ଓ କାରଖାନାମାନଙ୍କ ଉପରେ ପ୍ରଚୁର ପ୍ରଭାବ ପକାଇ ପାରିଲା । ଆହୁରି ମଧ୍ୟ ଭାରତରେ ବ୍ରିଟିଶ ବେପାର ଉତ୍ସାହିତ କରିବା ନିମନ୍ତେ ସେମାନେ "ସାମ୍ରାଜ୍ୟ ପ୍ରତି ଅଧିକ ଅନୁରାଗ" (Imperial Preference) ପ୍ରବର୍ତ୍ତନ କଲେ । ଏହାର ଅର୍ଥ ଆମଦାନି ଓ ରପ୍ତାନି ସକାଶେ ଯଦି ବିଦେଶୀ ଜିନିଷ ଉପରେ ଶୁଳ୍କ ବସିବାର ହେଲା ତେବେ ବିଲାତୀ ମାଲ ଉପରେ କମ୍ ବା ଆଦୌ ଟିକସ ବସିଲା ନାହିଁ—ତାହା ହେଲେ ଅନ୍ୟମାନଙ୍କ ଅପେକ୍ଷା ବିଲାତୀ ଜିନିଷ ସୁବିଧା ପାଇଲା ।

ଭାରତୀୟ ପୁଞ୍ଜିବାଦୀ ଶ୍ରେଣୀ ଓ ଉଚ୍ଚ ବୁର୍ଜୋୟା ଶ୍ରେଣୀର ଯୁଦ୍ଧକାଳରେ କ୍ରମବର୍ଦ୍ଧିଷ୍ଣୁ ଶକ୍ତି ମଧ୍ୟ ରାଜନୀତିକ ଆନ୍ଦୋଳନରେ ପ୍ରକଟିତ ହେଲା । ଯୁଦ୍ଧ ପୂର୍ବ ଓ ଆରମ୍ଭ ଅବସ୍ଥାରେ ରାଜନୀତି ଯେପରି ନିର୍ବେଦ ହୋଇପଡ଼ିଥିଲା ସେଥିରୁ କ୍ରମେ ବାହାରି ଆସିଲା ଏବଂ ସ୍ୱାୟତ୍ତ ଶାସନ ଓ ସେହିପରି ଅନ୍ୟ ଅନେକ ଦାବୀମାନ କରାଗଲା । ଲୋକମାନ୍ୟ ତିଲକ ତାଙ୍କର ଦୀର୍ଘ କାରାଦଣ୍ଡ ଭୋଗି ଜେଲରୁ ବାହାରି ଆସିଲେ । ମୁଁ ଆଗେ କହିଛି ସେତେବେଳେ ଜାତୀୟ କଂଗ୍ରେସ ନରମ ଦଳଙ୍କ ହାତରେ ଥିଲା ଏବଂ ଏହା ଏକ ଶ୍ରେଷ୍ଠ ପ୍ରଭାବହୀନ ସଂସ୍ଥା ଥିଲା—ଲୋକଙ୍କ ସହିତ କିଛି ସମ୍ପର୍କ ନ ଥିଲା । ଅଧିକ ଉନ୍ନତ ରାଜନୀତିଜ୍ଞମାନେ କଂଗ୍ରେସରେ ନ ଥିବାରୁ ସେମାନେ 'ହୋମ୍ ରୁଲ ଲିଗ୍' ସ୍ଥାପନା କଲେ । ଏପରି ଦୁଇଟି ଲିଗ ସ୍ଥାପିତ ହେଲା—ଗୋଟିଏ ଲୋକମାନ୍ୟ ତିଲକଙ୍କ ଦ୍ୱାରା ଏବଂ ଅନ୍ୟଟି ଶ୍ରୀମତୀ ଆନିବେସାନ୍ତଙ୍କ ଦ୍ୱାରା । କେତେକ ବର୍ଷ କ୍ରମରେ ଶ୍ରୀମତୀ ବେସାନ୍ତ ଭାରତୀୟ ରାଜନୀତି କ୍ଷେତ୍ରରେ ପ୍ରଧାନ ଭାଗ ନେଲେ ଏବଂ ତାଙ୍କର ଅପୂର୍ବ ବାଗ୍ମିତା ଓ ପ୍ରଭାବଶାଳୀ ପକ୍ଷ ସମର୍ଥନ ହେତୁ ରାଜନୀତିରେ ଆଗ୍ରହ ଅନେକ ପରିମାଣରେ ବୃଦ୍ଧି ପାଇଲା । ସରକାର ତାଙ୍କର ପ୍ରଚାରକୁ ଏପରି ବିପଜ୍ଜନକ ବୋଲି ବିଚାର କଲା ଯେ ତାଙ୍କର ଦୁଇଜଣ ସହକର୍ମୀଙ୍କ ସହ ତାଙ୍କୁ କେତେମାସ ପାଇଁ ଅନ୍ତରୀଣ ବନ୍ଦୀ କରି ରଖିଲେ । ସେ କଲିକତାରେ କଂଗ୍ରେସର ଗୋଟିଏ ଅଧିବେଶନରେ ସଭାପତି ହୋଇଥିଲେ ଏବଂ ସେ ଏହାର ପ୍ରଥମ ନାରୀ ସଭାପତି ଅଟନ୍ତି । କେତେକ ବର୍ଷ ପରେ ସରୋଜିନୀ ନାଇଡ଼ୁ ହିଁ କଂଗ୍ରେସର ଦ୍ୱିତୀୟ ନାରୀ ସଭାନେତ୍ରୀ ହେଲେ ।

୧୯୧୬ରେ କଂଗ୍ରେସର ନରମ ଓ ଚରମ ଦୁଇ ଦଳ ଭିତରେ ଗୋଟାଏ ମିଳାମିଶା ହେଲା । ୧୯୧୬ ଡିସେମ୍ବର ମାସରେ ହୋଇଥିବା ଲକ୍ଷ୍ନୌ କଂଗ୍ରେସରେ ଉଭୟେ ଯୋଗ ଦେଲେ । ମିଳାମିଶା ଅଳ୍ପକ୍ଷଣ ସ୍ଥାୟୀ ହେଲା; କାରଣ ଦୁଇବର୍ଷ ପରେ ପୁଣି ଆଉ ଏକ ବିବାଦ ଲାଗିଲା ଏବଂ ନରମବାଦୀମାନେ ନିଜକୁ ଲିବରାଲ (ମୋଡ଼ା) ବୋଲି ପରିଚୟ ଦେଇ କଂଗ୍ରେସରୁ ଚାଲିଗଲେ ଏବଂ ସେହିଦିନଠାରୁ ସେମାନେ କଂଗ୍ରେସରୁ ଅଲଗା ହୋଇ ରହିଛନ୍ତି ।

୧୯୧୬ ଲକ୍ଷ୍ନୌ କଂଗ୍ରେସରେ ହିଁ ଜାତୀୟ କଂଗ୍ରେସର ପୁନରୁଦ୍ଧାର ହେଲା । ସେହିଦିନଠାରୁ ଏହାର ଶକ୍ତି ଓ ଶ୍ରେଷ୍ଠତ୍ୱ ବଢ଼ିଲା । ଇତିହାସରେ ପ୍ରଥମ ଥର ପାଇଁ ଏହା ପ୍ରକୃତରେ ବୁର୍ଜୋୟା ବା ମଧ୍ୟବିତ୍ତ ଶ୍ରେଣୀର ଜାତୀୟ ଅନୁଷ୍ଠାନ ହେଲା । ଏହାର ଜନସାଧାରଣଙ୍କ ସହିତ କିଛି ସମ୍ପର୍କ ନ ଥିଲା ଏବଂ ଗାନ୍ଧିଜୀ ନ ଆସିବା ପର୍ଯ୍ୟନ୍ତ ସେମାନେ ଏଥିପାଇଁ କିଛି ଆଗ୍ରହ ଦେଖାଉ ନ ଥିଲେ । ତାହାହେଲେ ଉଭୟ ତଥାକଥିତ ନରମ ପନ୍ଥୀ ଓ ଚରମ ପନ୍ଥୀ ଅଳ୍ପେ ଅଧିକେ ଏକା ଶ୍ରେଣୀ—ବୁର୍ଜୋୟା ଶ୍ରେଣୀର ପ୍ରତିନିଧିତ୍ୱ କରୁଥିଲେ । ନରମପନ୍ଥୀମାନେ ପ୍ରତିନିଧିତ୍ୱ କରୁଥିଲେ ଅଥବା ସେମାନେ ନିଜେ ଥିଲେ କେତେକ ମୁଷ୍ଟିମେୟ ଉନ୍ନତ ଲୋକ ଏବଂ ଯେଉଁମାନେ ସରକାରୀ ଚାକିରି ପାଇବା ଆଶାରେ ଆଥାନ୍ତି; ଚରମପନ୍ଥୀଙ୍କ

ପ୍ରତି ମଧ୍ୟବିତ୍ତ ଶ୍ରେଣୀଙ୍କର ଅଧିକ ସହାନୁଭୂତି ଥିଲା ଏବଂ ଏଥିରେ ଅନେକ ବେକାର ଶିକ୍ଷିତ ବି ଥିଲେ । ଏହି ଶିକ୍ଷିତ ଲୋକେ (ଏହା ବୋଇଲେ କେବଳ ଅଳ୍ପେ ଅଧିକେ ବିଦ୍ୟାଳୟରେ ଶିକ୍ଷା ପାଇଥିବା ଲୋକଙ୍କୁ କହୁଛୁ) ସେମାନଙ୍କର ଦଳକୁ ଦୃଢ଼ କଲେ ଏବଂ ବିପ୍ଳବୀଦଳକୁ ଏଥିରୁ ଲୋକ ମିଳିଲେ । ନରମ ବା ଚରମପନ୍ଥୀଙ୍କର ଉଦ୍ଦେଶ୍ୟ ବା ଆଦର୍ଶରେ ସେପରି କିଛି ବିଶେଷ ପାର୍ଥକ୍ୟ ନ ଥିଲା । ଉଭୟେ ବ୍ରିଟିଶ ସାମ୍ରାଜ୍ୟ ଭିତରେ ସ୍ୱାୟତ୍ତ ଶାସନ କଥା କହୁଥିଲେ ଏବଂ ବର୍ତ୍ତମାନ ପାଇଁ ଏହାକୁ ଆଂଶିକଭାବରେ ଗ୍ରହଣ କରିବାକୁ ଉଭୟେ ପ୍ରସ୍ତୁତ ଥିଲେ, କେବଳ ଚରମବାଦୀମାନେ ନରମପନ୍ଥୀଙ୍କଠାରୁ ଅଧିକ ଚାହୁଁଥିଲେ ଓ କଡ଼ା ଭାଷା ବ୍ୟବହାର କରୁଥିଲେ । ମୁଷ୍ଟିମେୟ ବିପ୍ଳବୀମାନେ ନିଶ୍ଚୟ ପୂର୍ଣ୍ଣ ସ୍ୱାଧୀନତା ଚାହୁଁଥିଲେ; କିନ୍ତୁ କଂଗ୍ରେସର ନେତାଙ୍କ ଉପରେ ସେମାନଙ୍କର କିଛି ପ୍ରଭାବ ନ ଥିଲା । ନରମବାଦୀ ଓ ଚରମ-ବାଦୀଙ୍କ ଭିତରେ ପ୍ରକୃତ ପାର୍ଥକ୍ୟ ହେଉଛି ପ୍ରଥମ ଦଳଟି ଥିଲାବାଲା ଓ ନଥିଲାବାଲାଙ୍କ ଉପରେ ନିର୍ଭର କରୁଥିବା ଏକ ସମୃଦ୍ଧିଶାଳୀ ଲୋକଙ୍କର ଦଳ ଏବଂ ଚରମପନ୍ଥୀଙ୍କ ଭିତରେ କିଛି ନ ଥିଲାବାଲା ( Have not ) ବି ଥିଲେ ଏବଂ ଅଧିକ ଚରମଦଳ ହୋଇଥିବାରୁ ସ୍ୱାଭାବିକରୂପେ ଦେଶର ଯୁବକଙ୍କୁ ଏହା ଆକୃଷ୍ଟ କଲା—ସେମାନଙ୍କ ଭିତରୁ ଅଧିକାଂଶ ଭାବିଲେ ଯେ ବଳିଷ୍ଠ ଭାଷା ହିଁ କାର୍ଯ୍ୟର ସ୍ଥାନ ଠିକ୍ ପୂରଣ କରିପାରିବ । ଅବଶ୍ୟ ଏହିପରି ସାଧାରଣ ନୀତିରେ ଦୁଇପକ୍ଷର ସବୁବ୍ୟକ୍ତି ପଡ଼ିବେ ନାହିଁ; ଦୃଷ୍ଟାନ୍ତସ୍ୱରୂପ ଗୋପାଳକୃଷ୍ଣ ଗୋଖଲେ—ସେ ନରମପନ୍ଥୀଙ୍କ ଭିତରେ ଜଣେ ଅତି ଦକ୍ଷ ଓ ଆତ୍ମତ୍ୟାଗୀ ନେତା ଥିଲେ; ସେ ତ ନିଶ୍ଚୟ ଥିଲାବାଲା ( Have ) ନ ଥିଲେ । ସେ ଭାରତ ସେବକ ସମିତି ସ୍ଥାପନ କଲେ । କିନ୍ତୁ ନରମପନ୍ଥୀ ବା ଚରମପନ୍ଥୀ କାହାରି ପ୍ରକୃତ ନ ଥିଲାବାଲା ଅର୍ଥାତ୍ କୃଷକ ଓ ଶ୍ରମିକଙ୍କ ସହିତ କିଛି ସଂପର୍କ ନ ଥିଲା । ତିଲକ ଯାହାହେଉ ବ୍ୟକ୍ତିଗତ ଭାବରେ ଜନସାଧାରଣଙ୍କ ଭିତରେ ପ୍ରିୟ ଥିଲେ ।

ଆଉ ଏକ ମିଳନ ଅର୍ଥାତ୍ ହିନ୍ଦୁ ମୁସଲମାନ ଏକତା ପାଇଁ ଲକ୍ଷ୍ନୌ କଂଗ୍ରେସ ଉଲ୍ଲେଖଯୋଗ୍ୟ । କଂଗ୍ରେସ ସର୍ବଦା ଜାତୀୟ ଭିତ୍ତି ଧରି ବସିଛି, କିନ୍ତୁ କାର୍ଯ୍ୟତଃ ଏହା ମୁଖ୍ୟଭାବରେ ଏକ ହିନ୍ଦୁ ସଙ୍ଗଠନ ଥିଲା; କାରଣ ବହୁସଂଖ୍ୟକ ହିନ୍ଦୁ ଥିଲେ । ଯୁଦ୍ଧ ହେବାର କେତେବର୍ଷ ପୂର୍ବରୁ କେତେକ ପରିମାଣରେ ସରକାର ଦ୍ୱାରା ଉତ୍ସାହିତ ହୋଇ ମୁସଲମାନ ଶିକ୍ଷିତ ଲୋକେ ନିଖିଳ ଭାରତ ମୁସଲିମ୍ ଲିଗ୍ ନାମକ ଏକ ସ୍ୱତନ୍ତ୍ର ଅନୁଷ୍ଠାନ ଗଠନ କଲେ । ମୁସଲମାନମାନଙ୍କୁ କଂଗ୍ରେସରୁ ଅଲଗା ରଖିବା ନିମନ୍ତେ ଏହା ହୋଇଥିଲା; କିନ୍ତୁ ଶୀଘ୍ର ଏହା କଂଗ୍ରେସ ଆଡ଼କୁ ଆସିଲା ଏବଂ ଲକ୍ଷ୍ନୌଠାରେ ଭାରତର ଭବିଷ୍ୟତ ଶାସନ ବିଧାନ ସମ୍ବନ୍ଧରେ ଦୁହିଁଙ୍କ ଭିତରେ ଗୋଟାଏ ଚୁକ୍ତିନାମା ହେଲା । ଏହାକୁ କଂଗ୍ରେସ ଲିଗ୍ ଯୋଜନା କହନ୍ତି ଏବଂ ଏଥିରେ ଅନ୍ୟାନ୍ୟ କଥା ଭିତରେ ସଂଖ୍ୟାଲଘିଷ୍ଠ ମୁସଲମାନ ଜାତି-ପାଇଁ ଅନୁପାତରେ କାଉନ୍‌ସିଲ ଆଦିରେ ସ୍ଥାନ ସଂରକ୍ଷିତ ହେବାଲାଗି ଧାର୍ଯ୍ୟ କରାଯାଇଥିଲା ।

ଏହି କଂଗ୍ରେସ ଲିଗ ଯୋଜନା ତାପରେ ମିଳିତ କାର୍ଯ୍ୟପନ୍ଥା ହୋଇଯିବାରୁ ଦେଶର ଦାବୀରୂପେ ଗୃହୀତ ହେଲା । ଏହା ବୃଦ୍ଧୋସ୍ଥାମାନଙ୍କର ମତ ବ୍ୟକ୍ତ କଲା —ସେତେବେଳେ ସେହିମାନେ ହିଁ କେବଳ ରାଜନୀତିକ ମନୋଭାବାପନ୍ନ ଲୋକ ଥିଲେ । ଏହି ଯୋଜନାକୁ ଭିତ୍ତି କରି ଆନ୍ଦୋଳନ ବଢ଼ିଲା ।

ମୁସଲମାନଙ୍କ ଭିତରେ ଅଧିକ ରାଜନୀତି ମନୋଭାବ ବଢ଼ିଲା ଏବଂ ବ୍ରିଟିଶ ତୁର୍କି ସହିତ ଲଢ଼ିବାରୁ ହତାଶ ହୋଇ ସେମାନେ କଂଗ୍ରେସ ସହିତ ଯୋଗଦାନ କଲେ । ତୁର୍କି ପ୍ରତି ସହାନୁଭୂତି ଦେଖାଇଥିବା ହେତୁ ଏବଂ ସେହିଭାବ ଦୃଢ଼ଭାବରେ ପ୍ରକାଶ କରିବା ଯୋଗୁଁ ଦୁଇଜଣ ମୁସଲମାନ ନେତା ମୌଲନା ମହମ୍ମଦ ଆଲି ଓ ସୌକତ ଆଲିଙ୍କୁ ଯୁଦ୍ଧ ଆରମ୍ଭରେ ଅନ୍ତରୀଣ ବନ୍ଦୀକରି ରଖାଗଲା । ଆରବ ଦେଶ ସହିତ ତାଙ୍କର ସଂପର୍କ ଥିବାରୁ ମୌଲନା ଆବୁଲ କାଲାମ ଆଜାଦଙ୍କୁ ମଧ୍ୟ ଅନ୍ତରୀଣ କରାଗଲା—ତାଙ୍କର ଲେଖା ସକାଶେ ସେଠାରେ ସେ ଭାରି ଲୋକପ୍ରିୟ ଥିଲେ । ଏହିସବୁ ମୁସଲମାନମାନଙ୍କୁ ବିରକ୍ତ ଓ ଉତ୍ୟକ୍ତ କଲା ଏବଂ ସେମାନେ ଅଧିକରୁ ଅଧିକ ସରକାରଠାରୁ ଦୂରକୁ ଚାଲିଆସିଲେ ।

ଭାରତରେ ସ୍ୱାୟତ୍ତ ଶାସନ ଲାଗି ଦାବୀ ବଢ଼ିବା ସଙ୍ଗେ ସଙ୍ଗେ ବ୍ରିଟିଶ ସରକାର ନାନାପ୍ରକାର ପ୍ରତିଶ୍ରୁତି ଦେଲା ଏବଂ ଭାରତର ସବୁ ଅନୁସନ୍ଧାନ ଆରମ୍ଭ କଲା—ଏହା ଲୋକଙ୍କ ଦୃଷ୍ଟି ଆକର୍ଷଣ କଲା । ୧୯୧୮ ମସିହା ଗ୍ରୀଷ୍ମଋତୁରେ ତତ୍କାଳୀନ ଭାରତ ସଚୀବ ଓ ବଡ଼ଲାଟ ଗୋଟାଏ ମିଳିତ ରିପୋର୍ଟ ଦେଲେ—ଦୁହିଁଙ୍କ ନାମ ଅନୁସାରେ ଏହାକୁ ମଣ୍ଟେଗୁ-ଚେମସଫୋର୍ଡ ରିପୋର୍ଟ କହନ୍ତି । ଏଥିରେ ଭାରତରେ ପରିବର୍ତ୍ତନ ଓ ଶାସନ ସଂସ୍କାରପାଇଁ କେତେକ ପ୍ରସ୍ତାବ ରହିଥିଲା । ଏହିସବୁ ମୋଟାମୋଟି ପ୍ରସ୍ତାବ ଉପରେ ସଙ୍ଗେ ସଙ୍ଗେ ଭାରତ ସାରା ଯୁକ୍ତିତର୍କ ଚାଲିଲା । କଂଗ୍ରେସ ଦୃଢ଼ଭାବରେ ଏହା ନାପସନ୍ଦ କଲା ଏବଂ ଏହା ଯଥେଷ୍ଟ ନୁହେଁ ବୋଲି ମନେ କଲା । ଲିବରାଲମାନେ ଏହାକୁ ସ୍ୱାଗତ କଲେ ଏବଂ ଏହି କାରଣରୁ ସେମାନେ କଂଗ୍ରେସ ସହିତ ସମ୍ପର୍କ ତୁଟାଇଲେ ।

ଯୁଦ୍ଧ ଶେଷ ହେଲାବେଳକୁ ଭାରତରେ ଏହିପରି ଅବସ୍ଥା ଥିଲା । ପ୍ରତ୍ୟେକ ସ୍ଥାନରେ ପରିବର୍ତ୍ତନର ଗୋଟାଏ ଜୀବନ୍ତ ଆଶା ସଞ୍ଚାରିତ ହେଲା । ରାଜନୀତିକ ବାରୋମିଟର ବା ମାପଯନ୍ତ୍ର ଉପରକୁ ଉଠୁଥିଲା ଏବଂ ନରମପନ୍ଥୀଙ୍କର ମାନ୍ଦା ଶ୍ରେଣୀ ଏକପ୍ରକାର ଅନୁଗ୍ରହପ୍ରାର୍ଥୀ ଓ ନିଷ୍ଫଳପ୍ରଦ ଗୁଞ୍ଜନ ସ୍ଥାନରେ ଚରମପନ୍ଥୀଙ୍କର ଅଧିକ ପ୍ରତ୍ୟୟ, ଉଗ୍ର, ପ୍ରତ୍ୟକ୍ଷ ଓ ଭୀଷଣ ଚିତ୍କାର ଶୁଣାଗଲା । କିନ୍ତୁ ଉଭୟେ ନରମପନ୍ଥୀ ଓ ଚରମପନ୍ଥୀ ରାଜନୀତି ଦୃଷ୍ଟିରେ ଚିନ୍ତା କଲାବେଳେ ଓ କହିଲାବେଳେ କେବଳ ସରକାରର ବାହାର ସଙ୍ଗଠନ କଥା କହୁଥିଲେ; ତାଙ୍କ ପଛରେ ବ୍ରିଟିଶ ସାମ୍ରାଜ୍ୟବାଦ ଦେଶର ଆର୍ଥନୀତିକ ଜୀବନ ଉପରେ ନିଜର କର୍ତ୍ତୃତ୍ୱ ନୀରବରେ ଦୃଢ଼ କରି ଚାଲିଥାଏ ।

# ୧୫୫ : ଇଉରୋପର ନୂତନ ମାନଚିତ୍ର

ଏପ୍ରିଲ ୨୧, ୧୯୩୩

ଆମେ ସଂକ୍ଷେପରେ ପୃଥିବୀ ଯୁଦ୍ଧର ଗତ ବର୍ଷର କଥାସାରିବା ପରେ ରୁଷ ବିପ୍ଳବକୁ ଗଲେ ଏବଂ ତା ପରେ ଯୁଦ୍ଧ କାଳ ଭିତରେ ଭାରତର ଅବସ୍ଥା ଆଲୋଚନା କଲେ । ଏବେ ଚାଲ ସନ୍ଧିପତ୍ର କଥା ଆଲୋଚନା କରିବା—ଏହା ହିଁ ଯୁଦ୍ଧର ଅବସାନ କଲା । ବିଜେତାମାନେ କିପରି ଆଚରଣ କଲେ ଦେଖିପାରିବା । ଜର୍ମାନୀ ବିଧ୍ୱସ୍ତ ହୋଇଗଲା । କାଇଜର ପଳାଇ ଯାଇଥିଲା ଏବ ଗୋଟିଏ ପ୍ରଜାତନ୍ତ୍ର ଘୋଷିତ ହୋଇଥିଲା । ତଥାପି ଜର୍ମାନ ସେନାଙ୍କୁ ସମ୍ପୂର୍ଣ୍ଣ କ୍ଷମତାହୀନ କରିଦେବାକୁ ନିଶ୍ଚିନ୍ତ ହେବା ନିମନ୍ତେ ସନ୍ଧିପତ୍ରରେ ଖୁବ କଠୋର ସର୍ତ୍ତମାନ ଧାର୍ଯ୍ୟ କରାଗଲା । ଜର୍ମାନସେନାକୁ ଖାଲି ସମସ୍ତ ଅଧିକୃତ ଅଞ୍ଚଳ ନୁହେଁ, ଆଲସେସ୍, ଲରେନ୍ ଓ ରାଇନ୍ ପର୍ଯ୍ୟନ୍ତ ଜର୍ମାନୀର ଏକ ଅଂଶ ଛାଡ଼ିବାକୁ ପଡ଼ିଲା । ମିତ୍ରପକ୍ଷ ରାଇନଲାଣ୍ଡ—କଲୋନ ଚତୁର୍ଦ୍ଦିଗ ରାଜ୍ୟ ଦଖଲ କଲା । ଜର୍ମାନୀକୁ ମଧ୍ୟ ଅନେକ ଯୁଦ୍ଧ ଜାହାଜ, ସମସ୍ତ ୟୁ ବୋଟ (ଜର୍ମାନୀ ବୁଡ଼ାଜାହାଜର ନାମ), ହଜାର ହଜାର ତୋପ, ଉଡ଼ାଜାହାଜ, ରେଲୱେ ଇଞ୍ଜିନ, ଲରି ଓ ଅନ୍ୟ ସାମଗ୍ରୀସବୁ ଆତ୍ମସମର୍ପଣ କରିବାକୁ ପଡ଼ିଲା । ଉତ୍ତର ଫ୍ରାନ୍ସରେ କମ୍ପିଏନ୍ ଅରଣ୍ୟରେ ଯେଉଁଠି ସନ୍ଧିପତ୍ର ସ୍ୱାକ୍ଷରିତ ହୋଇଥିଲା ସେହି ସ୍ଥଳରେ ଏବେ ଗୋଟିଏ ସ୍ମୃତିସ୍ତମ୍ଭ ରହିଛି । ସେଥିରେ ଲେଖାଅଛି—

"ଏଇଠି ୧୯୧୮ ନଭେମ୍ବର ୧୦ ତାରିଖରେ ଜର୍ମାନ ସାମ୍ରାଜ୍ୟର ଅପରାଧୀ ଦର୍ପ ଭାଙ୍ଗିଛି—ଯେଉଁ ସ୍ୱାଧୀନ ଲୋକଙ୍କୁ ସେ ଦାସ କରିବାପାଇଁ ଇଚ୍ଛା କରିଥିଲା ସେମାନଙ୍କ ଦ୍ୱାରା ପରାଜିତ ହେଲା ।"

ଜର୍ମାନ ସାମ୍ରାଜ୍ୟ ବାସ୍ତବିକ ଗଲା—ଅନ୍ତତଃ ବାହାରକୁ ଦେଖିବାପାଇଁ ଏବଂ ପ୍ରୁସିଆର ସାମରିକ ଔଦ୍ଧତ୍ୟ ଭାଙ୍ଗି ପଡ଼ିଲା । ଏପରିକି ଏହା ପୂର୍ବରୁ ମଧ୍ୟ ରୁଷ ସାମ୍ରାଜ୍ୟ ଆଉ ତିଷ୍ଠୁ ନ ଥିଲା ଏବଂ ଏତେଦିନ ରୋମାନଫ୍ ବଂଶ ଯେଉଁ ମଞ୍ଚ ଉପରେ ଏତେ ବଦ ଆଚରଣ କରି ଆସିଥିଲେ ସେଠି ବିଦାୟ ହୋଇ ଚାଲିଯାଇଥିଲେ । ଯୁଦ୍ଧ ଆହୁ ଏକ ତୃତୀୟ ସାମ୍ରାଜ୍ୟ ଓ ପୁରାତନ ବଂଶ ହାପ୍‌ସବର୍ଗଙ୍କର ଅଷ୍ଟ୍ରୋହଙ୍ଗେରିଆନ ସାମ୍ରାଜ୍ୟକୁ କବର ଦେଲା । କିନ୍ତୁ ଅନ୍ୟ ସାମ୍ରାଜ୍ୟମାନେ ତଥାପି ରହିଲା—ସେଗୁଡ଼ିକ ବିଜେତା ଭିତରେ ଥିଲେ ଏବଂ ବିଜୟ ହେତୁ ସେମାନଙ୍କର ଦର୍ପ କିଛି କମିଲା ନାହିଁ କିମ୍ବା ଯେଉଁସବୁ ଲୋକଙ୍କୁ ସେ ଦାସ କରି ରଖିଥିଲେ ସେମାନଙ୍କର ଅଧିକାର ରକ୍ଷା ନିମନ୍ତେ ବିଶେଷ ଯତ୍ନବାନ ହେଲେ ନାହିଁ ।

୧୯୧୯ରେ ପାରିସରେ ବିଜେତା ମିତ୍ରପକ୍ଷ ଶାନ୍ତି ସମ୍ମିଳନୀ କଲେ । ପାରିସରେ ହିଁ ସେମାନେ ପୃଥିବୀର ଭବିଷ୍ୟତ ଗଢ଼ୁଥିଲେ ଏବଂ ଅନେକମାସ ପର୍ଯ୍ୟନ୍ତ ଏହି ପ୍ରସିଦ୍ଧ ସହର

ପୃଥିବୀର ଦୃଷ୍ଟି କେନ୍ଦ୍ର ହୋଇ ରହିଲା । ଦୂରରୁ ନିକଟରୁ ସବୁ ପ୍ରକାର ଲୋକ ଏଠିକି ଗଲେ । ନିଜକୁ ଖୁବ୍ ପ୍ରଧାନ ବୋଲି ବୋଧ କରୁଥିବା ରାଜନୀତିଜ୍ଞ ଥିଲେ ଏବଂ କୂଟନୀତିଜ୍ଞ, ବିଶେଷଜ୍ଞ, ସାମରିକ କର୍ତ୍ତା, ଧନପତି ଓ ମୁନାଫାଖୋର ସମସ୍ତେ ଗୋଷ୍ଠୀଏ ଲେଖା ସହକାରୀ, ଟାଇପିଷ୍ଟ ଓ କିରାଣୀ ନେଇ ଯାଇଥିଲେ । ସାମ୍ରାଜ୍ୟବାଦୀ ତ ନିଶ୍ଚୟ ଥିଲେ ! ଆଇରିଶ୍, ଇଜିପ୍ଟ, ଆରବବାସୀ ଓ ଅନ୍ୟମାନେ ଯାହାଙ୍କ ନାମ ପୂର୍ବରୁ କେବେ ଶୁଣାଯାଇ ନଥିଲା ଏବଂ ଯେଉଁମାନେ ସ୍ୱାଧୀନତା ଲାଗି ଯୁଦ୍ଧ କରୁଥିଲେ ସେମାନଙ୍କ ପ୍ରତିନିଧି ବି ଆସିଲେ; ପୂର୍ବ ଇଉରୋପର ଲୋକେ ଆସିଲେ - ସେମାନେ ଅଷ୍ଟ୍ରିଆନ୍ ଓ ତୁର୍କି ସାମ୍ରାଜ୍ୟରୁ ଅବଶେଷ ଭାଗବାଣ୍ଟି ନେଇ ଅଲଗା ରାଜ୍ୟ କରିବାଲାଗି ଟାକି ବସିଥିଲେ । ଅବଶ୍ୟ ସଂସ୍ଥାଏ ଦୁଃସାହସିକ ଲୋକ ବି ଥିଲେ । ପୃଥିବୀ ନୂତନ ଆକାରରେ ବିଭକ୍ତ ହେବାର ଥିଲା ଏବଂ ଶାଗୁଣାମାନେ ଏ ସୁଯୋଗ ହରାଇବାକୁ ପ୍ରସ୍ତୁତ ନ ଥିଲେ ।

ଶାନ୍ତି ସମ୍ମିଳନୀରେ ବହୁତ ଆଶା କରାଯାଇଥିଲା । ଲୋକେ ଆଶା ବାନ୍ଧିଥିଲେ ଯେ ଯୁଦ୍ଧର ଭୀଷଣ ଅଭିଜ୍ଞତା ପରେ ଏକ ଯଥାର୍ଥ ଓ ସ୍ଥାୟୀ ଯୋଜନା ବାହାରିବ । ତଥାପି ଜନସାଧାରଣଙ୍କ ଉପରେ ଯୁଦ୍ଧର ଭୟାନକ ଚାପ ପଡ଼ି ସେମାନେ କଷ୍ଟ ଭୋଗୁଥାନ୍ତି ଏବଂ ଶ୍ରମିକଶ୍ରେଣୀଙ୍କ ଭିତରେ ଖୁବ୍ ଅସନ୍ତୋଷ ଥିଲା । ଜୀବନର ଆବଶ୍ୟକୀୟ ପଦାର୍ଥର ମୂଲ୍ୟ ବହୁପରିମାଣରେ ବଢ଼ିଯାଇଥିଲା ଏବଂ ଏଥିରେ ଲୋକଙ୍କର କଷ୍ଟ ଆହୁରି ବଢ଼ିଲା । ଏକ ଆସନ୍ନ ସାମାଜିକ ବିପ୍ଳବର ଅନେକ ସଂକେତ ଇଉରୋପରେ ଦେଖାଦେଲା । ରୁଷ ଦୃଷ୍ଟାନ୍ତ ଲୋକଙ୍କ ମନ ଅଧିକାର କରୁଥିଲା ।

୪୮ ବର୍ଷ ପୂର୍ବେ ଭର୍ସେଲସ୍ ଯେଉଁ ହଲରେ ଜର୍ମାନ ସାମ୍ରାଜ୍ୟ ଘୋଷିତ ହୋଇଥିଲା, ସେଠାରେ ବସିଥିବା ଶାନ୍ତି ସମ୍ମିଳନୀ ଏହି ପରିସ୍ଥିତି ଭିତରେ ବସିଲା । ଏଡ଼େ ବଡ଼ ପ୍ରକାଣ୍ଡ ସମ୍ମିଳନୀ ପକ୍ଷରେ ବେଶିଦିନ ବସିବା କଷ୍ଟକର ଥିଲା; ତେଣୁ ଏହା ଅନେକ କମିଟିରେ ବିଭକ୍ତ ହୋଇଗଲା—ଏସବୁ ଗୁପ୍ତରେ ବସିଲା ଏବଂ ଏକ ଦୃଢ଼ ଆବରଣ ପଶ୍ଚାତରେ ସେମାନଙ୍କର ବିବାଦ ଓ ଚକ୍ରାନ୍ତ ଚାଲିଲା । ଏହି ସମ୍ମିଳନୀ ମିତ୍ରପକ୍ଷରେ "ଦଶଜଣଙ୍କ କାଉନ୍‌ସିଲ" ଦ୍ୱାରା ନିୟନ୍ତ୍ରିତ ହେଉଥିଲା । ପରେ ଏହା କମିଯାଇ ପାଞ୍ଚ ହୋଇଗଲା— ଏଗୁଡ଼ିକୁ "ବଡ଼ ପାଞ୍ଚଟି" ବୋଲି କୁହାଯାଏ । ଏହା ହେଉଛି ସଂଯୁକ୍ତ ରାଷ୍ଟ୍ର, ବ୍ରିଟେନ, ଫ୍ରାନ୍‌ସ, ଇଟାଲୀ ଓ ଜାପାନ । ଜାପାନ ଏଥିରୁ ଖସି ରହିଥିଲା ଏବଂ ତେଣୁ ଏକ "ଚାରିଜଣଙ୍କ କାଉନ୍‌ସିଲ" ରହିଲା; ଶେଷରେ ଇଟାଲୀ ବି ଚାଲିଯିବାରୁ "ବଡ଼ ତିନୋଟି" ରହିଲେ ଅର୍ଥାତ୍ ଆମେରିକା, ବ୍ରିଟେନ ଓ ଫ୍ରାନ୍‌ସ । ଏହି ତିନି ଦେଶର ପ୍ରତିନିଧିରୂପେ ଥିଲେ ସଭାପତି ଉଇଲ୍‌ସନ, ଲୟଡ଼ ଜର୍ଜ ଓ କ୍ଲେମେନ୍‌ସ ଏବଂ ପୃଥିବୀକୁ ନୂତନ କରି ଗଢ଼ିବା ଓ ଭୀଷଣ ଆଘାତକୁ ଉପଶମ କରିବାର ମହାନ୍ କର୍ତ୍ତବ୍ୟ ଏହି ତିନିଙ୍କ ଉପରେ ପଡ଼ିଲା । ଏହା ଅତିମାନବ ଅର୍ଦ୍ଧଦେବତାଙ୍କ ଲାଗି କାମ ଏବଂ ଏହି ତିନିଜଣଯାକ ଏ ଦୁଇଟି ଭିତରୁ କୌଣସି

ଗୋଟିଏ ହେଲେ ନ ଥିଲେ । କର୍ତ୍ତୃତ୍ୱରେ ଥିବା ଲୋକ ଅର୍ଥାତ୍ ରାଜା, ରାଜନୀତିଜ୍ଞ, ସେନାପତି ଓ ସେହିପରି ଲୋକ ସମ୍ବାଦପତ୍ର ଓ ଅନ୍ୟ ଜରିଆରେ ଏପରି ବିଜ୍ଞାପିତ ହୁଅନ୍ତି ଓ ଏତେ ଉପରକୁ ଉଠାଇ ଦିଆହୁଏ ଯେ ସେମାନେ ଅନେକ ସମୟରେ ସାଧାରଣ ଲୋକଙ୍କ ସାମନାରେ ଅସାଧାରଣ ଦେବତା ପରି ପ୍ରତୀତ ହୁଅନ୍ତି । ତାଙ୍କ ଚତୁର୍ଦ୍ଦିଗରେ ଗୋଟାଏ ପ୍ରକାର ଅଲୌକିକତାର ରୂପ ଥିଲା ପରି ମନେହୁଏ ଏବଂ ଆମର ନିଜ ଅଜ୍ଞତା ହେତୁ ଆମେ ତାଙ୍କ ପାଖରେ ଅନେକ ଗୁଣ ଥିବାର ଆରୋପ କରୁ—ମାତ୍ର ସେ ସେସବୁର ଧାର ଧାରି ନ ଥାନ୍ତି । କିନ୍ତୁ ଘନିଷ୍ଠରୂପେ ପରିଚିତ ହେଲେ ସେମାନେ ସାଧାରଣ ଲୋକ ବୋଲି ଆମେ ଦେଖିପାରୁ । ଥରେ ଜଣେ ଖ୍ୟାତନାମା ଅଷ୍ଟ୍ରିୟାନ ରାଜନୀତିଜ୍ଞ କହିଥିଲେ ଯେ ପୃଥିବୀ କିପରି ଅଳ୍ପବୁଦ୍ଧି-ସମ୍ପନ୍ନ ଲୋକଙ୍କଦ୍ୱାରା ଶାସିତ ହେଉଛି ଜାଣିଲେ ଚକିତ ହୋଇପଡ଼ିବ । ତେଣୁ ଏହି ତିନିଜଣ—"ବଡ଼ ତିନୋଟି"; କାରଣ ବଡ଼ପରି ସେମାନେ ବୋଧ ହେଉଥିଲେହେଁ ତାଙ୍କର ଅତି ସୀମାବଦ୍ଧ ଦୃଷ୍ଟି କୋଣ ଥିଲା—ଆନ୍ତର୍ଜାତିକ ବ୍ୟାପାରରେ ସେମାନେ ଅଜ୍ଞ ଥିଲେ—ଏପରିକି ଭୂଗୋଳ ଜ୍ଞାନ ବି ନ ଥିଲା ।"

ସଭାପତି ଉଡ୍ରୋ ଉଇଲସନ୍‌ଙ୍କର ପ୍ରଭୂତ ଖ୍ୟାତି ଓ ଲୋକପ୍ରିୟତା ଥିଲା । ସେ ତାଙ୍କର ଭାଷଣ ଓ ଲେଖାରେ ଏତେଗୁଡ଼ିଏ ସୁନ୍ଦର ଓ ଆଦର୍ଶଯୋଗ୍ୟ ବାକ୍ୟ ବ୍ୟବହାର କରିଥିଲେ ଯେ ଲୋକେ ତାଙ୍କୁ ପ୍ରାୟ ନୂତନ ସ୍ୱାଧୀନତାର ଭବିଷ୍ୟତ ବକ୍ତା ପରି ଭାବିବାକୁ ଲାଗିଲେ । ଗ୍ରେଟ ବ୍ରିଟେନର ପ୍ରଧାନମନ୍ତ୍ରୀ ଲଏଡ୍ ଜର୍ଜ ମଧ୍ୟ ଜଣେ ସୁନ୍ଦର ବାକ୍ୟଜାଲ ବିସ୍ତାର କରିବାବାଲା; କିନ୍ତୁ ସେ ସୁବିଧାବାଦୀ ବୋଲି ତାଙ୍କର ଖ୍ୟାତି ଥିଲା । କ୍ଲେମେନ୍‌ସଙ୍କୁ "ବାଘ" ବୋଲି କହୁଥିଲେ—ସେ ଆଦର୍ଶ ଓ ସାଧୁ ବାକ୍ୟ ପ୍ରୟୋଗ କରୁ ନ ଥିଲେ । ସେ ଫ୍ରାନ୍ସର ପୁରାତନ ଶତ୍ରୁ ଜର୍ମାନୀକୁ ଦମନ କରିବା ନିମନ୍ତେ ଚାହାଁଉଥିଲେ—ତାକୁ ପ୍ରତ୍ୟେକ ପ୍ରକାରେ ଏପରି ଦମନ ଓ ନମ୍ର କରିଦେବେ ଯେ ସେ ଆଉ ତାର ମୁଣ୍ଡ ଟେକିବାକୁ ସମର୍ଥ ହେବନାହିଁ ।

ତେଣୁ ଏହି ତିନିହେଁ ପରସ୍ପର ଭିତରେ ଝଗଡ଼ା କଲେ ଏବଂ ପରସ୍ପରକୁ ନିଜ ଆଡ଼କୁ ଟାଣିଲେ ଏବଂ ପୁଣି ନିଜେ ବି ସମ୍ମିଳନୀରେ ଓ ବାହାରେ ଅସଂଖ୍ୟ ଲୋକଙ୍କ ଦ୍ୱାରା ଧକ୍‌କା ଖାଇଲେ ଓ ଟାଣି ହୋଇଗଲେ । ଏ ସମସ୍ତଙ୍କୁ ସୋଭିଏଟ୍ ରୁଷର ଭୂତ ଧରିଥିଲା । ସମ୍ମିଳନୀକୁ ରୁଷ ପ୍ରତିନିଧି ପଠାଇ ନ ଥିଲା, ଜର୍ମାନୀ ବି ନୁହେଁ; କିନ୍ତୁ ସୋଭିଏଟ୍ ରୁଷର ଅବସ୍ଥିତି ହିଁ ପ୍ୟାରିସରେ ସମ୍ମିଳିତ ହୋଇଥିବା ପୁଞ୍ଜିବାଦୀ ଶକ୍ତିମାନଙ୍କ ପକ୍ଷରେ ବରାବର ଏକ ପ୍ରତିଯୋଗୀ ପରି ମନେ ହେଉଥିଲା ।

ଶେଷରେ ଲଏଡ୍ ଜର୍ଜଙ୍କ ସାହାଯ୍ୟରେ କ୍ଲେମେନ୍‌ସ ଜିତିଲେ । ଉଇଲସନ୍ ଆନ୍ତର୍ଜାତିକ ରାଷ୍ଟ୍ରସଂଘ ( ଲିଗ୍ ଅଫ ନେସନ୍‌ସ ) ଗଢ଼ିବାଲାଗି ଅତ୍ୟନ୍ତ ବ୍ୟଗ୍ର ଥିଲେ ଏବଂ ତାହା ସେ ପାଇଲେ । ଏଥିରେ ଅନ୍ୟମାନେ ସମ୍ମତ ହୋଇଯିବାରୁ ଅନ୍ୟ ଅଧିକାଂଶ ଜିନିଷ

ହିସ୍ଵଚଳାଗି ସେ ସେମାନଙ୍କୁ ଛାଡ଼ିଦେଲେ । ଅନେକ ମାସ ପର୍ଯ୍ୟନ୍ତ ଯୁକ୍ତି ଓ ଆଲୋଚନାପରେ ଶେଷରେ ମିତ୍ରପକ୍ଷ ଶାନ୍ତି ସମ୍ମିଳନୀରେ ଏକ ଚଠା ସନ୍ଧିପତ୍ରରେ ରାଜି ହେଲେ ଏବଂ ନିଜ-ଭିତରେ ସମ୍ମତ ହୋଇସାରି ତାଙ୍କର ଆଦେଶ ଶୁଣିବା ନିମନ୍ତେ ସେମାନେ ଜର୍ମାନ ପ୍ରତିନିଧି-ମାନଙ୍କୁ ହୁକୁମ କଲେ । ୪୪୦ ଦଫା ସମ୍ବଳିତ ଏହି ପ୍ରକାଣ୍ଡ ସନ୍ଧିପତ୍ର ଚଠାଟି ଜର୍ମାନଙ୍କ ଉପରେ ଲଦାଗଲା ଏବଂ ଏଥିରେ ଦସ୍ତଖତ କରିବା ନିମନ୍ତେ ତାଙ୍କୁ କୁହାଗଲା । ସେମାନଙ୍କ ସହି ଆଉ ଯୁକ୍ତି କରାଯିବ ନାହିଁ କି ଏ ବିଷୟରେ କୌଣସି ପରାମର୍ଶ ବା ପରିବର୍ତ୍ତନ କରିବା ନିମନ୍ତେ ସେମାନଙ୍କୁ ସୁଯୋଗ ଦିଆଗଲା ନାହିଁ—ଏହା ଏକ ହୁକୁମ କରିବା ଶାନ୍ତି; ହୁଏ ତ ଏହା ଯେପରି ଅଛି ସେଥିରେ ସେମାନେ ଦସ୍ତଖତ କରିବେ, ନଚେତ ତାର ଫଳାଫଳ ପାଇଁ ପ୍ରସ୍ତୁତ ହୋଇ ପଡ଼ିବେ । ନୂତନ ଜର୍ମାନ ପ୍ରଜାତନ୍ତ୍ରର ପ୍ରତିନିଧିମାନେ ପ୍ରତିବାଦ କଲେ ଏବଂ ତାଙ୍କୁ ଯେଉଁ ସମସ୍ତ ଅନୁଗ୍ରହ କରି ଦିଆଯାଇଥିଲା ତାର ଶେଷଦିନ ଭର୍ସେଲିସ ସନ୍ଧିରେ ଦସ୍ତଖତ କଲେ ।

ଅଷ୍ଟ୍ରିଆ, ହଙ୍ଗେରୀ, ବୁଲଗେରିଆ ଓ ତୁର୍କି ସହି ମିତ୍ରପକ୍ଷ ଅଲଗା ଅଲଗା ସନ୍ଧି କରି ଦସ୍ତଖତ କଲେ । ତୁର୍କି ସନ୍ଧିରେ ସୁଲତାନ ରାଜି ହୋଇଥିଲେ ସୁଦ୍ଧା କେମାଲ ପାଶା ଓ ତାଙ୍କ ବାହାଦୁର ସାଥିମାନଙ୍କର ପ୍ରବଳ ପ୍ରତିରୋଧ ହେତୁ ଏହା ରହିପାରି ନଥିଲା । କିନ୍ତୁ ଏହି କାହାଣୀ ମୁଁ ଅଲଗା ଭାବରେ ତତେ କହିବି ।

ଏହିସବୁ ସନ୍ଧି ଫଳରେ କି ପରିବର୍ତ୍ତନ ହେଲା ? ପୂର୍ବ ଇଉରୋପ, ପଶ୍ଚିମ ଏସିଆ ଓ ଆଫ୍ରିକା ରାଜ୍ୟମାନଙ୍କରେ ଅଧିକାଂଶ ପରିବର୍ତ୍ତନ ହେଲା । ଯୁଦ୍ଧର ଲୁଣ୍ଠନ ଦ୍ରବ୍ୟରୂପେ ମିତ୍ରପକ୍ଷ ଆଫ୍ରିକାରେ ଥିବା ଜର୍ମାନ ଉପନିବେଶ ସବୁ ଅଧିକାର କଲେ—ଇଂଲଣ୍ଡ ସେଥିରୁ ବଡ଼ ବଡ଼ ଅଞ୍ଚଳ ଗ୍ରାସ କଲା । ପୂର୍ବ-ଆଫ୍ରିକାରେ ଟାଙ୍ଗାନିକା ଓ ଅନ୍ୟ ରାଜ୍ୟସବୁ ମିଶାଇ ଦେଇ ଆଫ୍ରିକା ସାରା ଉତ୍ତରରେ ଇଜିପ୍ଟଠାରୁ ଦକ୍ଷିଣରେ କେପ୍ ପର୍ଯ୍ୟନ୍ତ ଯେଉଁ ଅବିଚ୍ଛିନ୍ନ ସାମ୍ରାଜ୍ୟ ଗଠନର ସ୍ଵପ୍ନ ଇଂରେଜମାନେ ବହୁକାଳରୁ ଦେଖୁଥିଲେ, ତାହା ବାସ୍ତବରେ ପରିଣତ ହେଲା ।

ଇଉରୋପରେ ପ୍ରଚୁର ପରିବର୍ତ୍ତନ ହେଲା । ପୁରାତନ ମାନଚିତ୍ର ସହି ନୂତନ ସଂଖ୍ୟକ ନୂତନ ରାଜ୍ୟସବୁ ଦେଖାଦେଲା । ପୁରାତନ ମାନଚିତ୍ର ସହି ନୂତନ ମାନଚିତ୍ରକୁ ତୁଳନା କଲେ ଏକା ପଲକରେ ଏହିସବୁ ପରିବର୍ତ୍ତନ ଦେଖି ପାରିବ । କେତେକ ପରିବର୍ତ୍ତନ ରୁଷ ବିପ୍ଳବ ଯୋଗୁଁ ହୋଇଥିଲା—କାରଣ ଯେଉଁସବୁ ଲୋକେ ରୁଷ ସୀମାନ୍ତରେ ବାସ କରୁଥିଲେ ଏବଂ ନିଜେ ରୁଷୀୟ ନ ଥିଲେ, ସେମାନେ ସୋଭିଏଟ୍ ସହିତ ସଂପର୍କ ତୁଟାଇଲେ ଓ ନିଜର ସ୍ୱାଧୀନତା ଘୋଷଣା କଲେ । ସୋଭିଏଟ୍ ସରକାର ସେମାନଙ୍କର ଆତ୍ମ-ନିୟନ୍ତ୍ରଣ ଅଧିକାରକୁ ସ୍ୱୀକାର କଲା ଓ ସ୍ୱାଧୀନତାରେ ହସ୍ତକ୍ଷେପ କରି ନ ଥିଲା । ଇଉରୋପର ନୂତନ ମାନଚିତ୍ର ପ୍ରତି ଦୃଷ୍ଟିପାତ କର । ଗୋଟାଏ ବଡ଼ ରାଜ୍ୟ ଅଷ୍ଟ୍ରିଆ । ହଙ୍ଗେରୀ ସମ୍ପୂର୍ଣ୍ଣରୂପେ ଲିଭି ଯାଇଛି ଏବଂ

ତାହା ସ୍ଥଳରେ କେତେକ ଶ୍ରେଷ୍ଠ ରାଜ୍ୟର ଉଦୟ ହେଲା । ଏହାକୁ ଅନେକ ସମୟରେ ଅଷ୍ଟ୍ରିୟାନ ଉତ୍ତରାଧିକାରୀ ରାଜ୍ୟ ବୋଲି କୁହାଯାଏ । ଏହା ହେଉଛି, ଅଷ୍ଟ୍ରିଆର ପୂର୍ବ ଆକାରରୁ ଏକ ଶ୍ରେଷ୍ଠ ଅଂଶରେ ପରିଣତ ହେଲା ଏବଂ ଭିଏନା ପରି ଏକ ବଡ଼ ସହର ତାର ରାଜଧାନୀ ହୋଇ ରହିଲା; ହଙ୍ଗେରୀ ମଧ୍ୟ ବହୁତ ଶ୍ରେଷ୍ଠ ହୋଇଗଲା— ଚେକୋସ୍ଲୋଭାକିଆରେ ପୁରାତନ ବୋହେମିଆ ଅନ୍ତର୍ଭୁକ୍ତ ହେଲା; ଆମର ସେହି ପୁରାତନ ଓ ଅପ୍ରୀତିକର ପରିଚିତ ଯୁଗୋସ୍ଲୋଭିଆର ଏକାଂଶ ଏବଂ ସର୍ବିଆ ଆଦୌ ଚିହ୍ନି ହେଲା ନାହିଁ । ଏହାର ଏକାଂଶ ରୁମାନିଆ, ପୋଲଣ୍ଡ ଓ ଇଟାଲୀରେ ମିଶିଲା । ବ୍ୟବଚ୍ଛେଦଟା ପୂର୍ଣ୍ଣ ହୋଇଗଲା ।

ଆହୁରି ଉତ୍ତରକୁ ଏକ ନୂତନ ରାଜ୍ୟ ଅଥବା ଏକ ପୁରୁଣା ରାଜ୍ୟ ପୋଲଣ୍ଡର ପୁନରୁଦ୍ଧାର ହେଲା । ପ୍ରୁସିଆ, ରୁଷ ଓ ଅଷ୍ଟ୍ରିଆରୁ କେତେକ ପ୍ରଦେଶ ଆସି ଏହା ଗଢ଼ାହେଲା । ପୋଲଣ୍ଡକୁ ସମୁଦ୍ରପଥ ଦେବା ନିମନ୍ତେ ଗୋଟାଏ ପ୍ରକାର ଅସାଧାରଣ କାର୍ଯ୍ୟ କରାଗଲା । ଜର୍ମାନୀ ବରଂ ପ୍ରୁସିଆ କହିଲେ ହେବ—ଦୁଇ ଭାଗରେ ବିଭକ୍ତ ହୋଇଗଲା ଏବଂ ସମୁଦ୍ରକୁ ଲାଗି ଏକ ଗୋଜିଆ ଅଞ୍ଚଳ ପୋଲଣ୍ଡକୁ ଦିଆଗଲା । ସୁତରାଂ ପଶ୍ଚିମରୁ ପୂର୍ବ ପ୍ରୁସିଆକୁ ଯିବାକୁ ହେଲେ ଏହି ପୋଲଣ୍ଡ କରିଡ଼ର (Corridor) ଅତିକ୍ରମ କରି ଯିବାକୁ ପଡ଼ିଲା । ଏହି କରିଡ଼ର ନିକଟରେ ପ୍ରସିଦ୍ଧ ଡାନଜିଗ୍ ସହର ଅବସ୍ଥିତ । ଏହାକୁ ଏକ ସ୍ୱାଧୀନ ସହରରେ ପରିଣତ କରାଯାଇଛି—ଅର୍ଥାତ୍ ଏହା ଜର୍ମାନୀ ବା ପୋଲଣ୍ଡ ରାଜ୍ୟ କାହାରି ନୁହେଁ; ଏହା ଖୋଦ୍ ଗୋଟିଏ ରାଜ୍ୟ—ପ୍ରତ୍ୟକ୍ଷଭାବରେ ଆନ୍ତର୍ଜାତିକ ରାଷ୍ଟ୍ରସଂଘ ଅଧୀନରେ ରହିଛି ।

ପୋଲଣ୍ଡ ଉତ୍ତରକୁ ଲିଥୋନିଆ, ଲଟେଭିଆ ଓ ଇସ୍ତୋନିଆ ପ୍ରଭୃତି ବଲଟିକ୍ ରାଜ୍ୟ ରହିଛି — ଏଗୁଡ଼ିକ ପୁରାତନ ଜାର ସାମ୍ରାଜ୍ୟରୁ ବାହାରି ଆସିଛି । ଏଗୁଡ଼ିକ ସବୁ ଶ୍ରେଷ୍ଠ ରାଜ୍ୟ, କିନ୍ତୁ ପ୍ରତ୍ୟେକର ଅଲଗା ଭାଷା ଓ ସ୍ୱତନ୍ତ୍ର ସଂସ୍କୃତି ରହିଛି । ତୁ ଜାଣିଲେ ଖୁସିହେବୁ ଯେ ଏହି ଲିଥୋନିଆବାସୀ ହେଉଛନ୍ତି ଆର୍ଯ୍ୟ ( ଇଉରୋପର ଅନ୍ୟ ଅନେକ ଜାତି ପରି ) ଏବଂ ତାଙ୍କ ଭାଷାରେ ସଂସ୍କୃତ ସହିତ ବହୁ ସାମଞ୍ଜସ୍ୟ ରହିଛି । ଏହା ଏକ ଅପୂର୍ବ ବିଷୟ—ଭାରତରେ ଅନେକ ଲୋକ ସମ୍ଭବତଃ ଏହା ଉପଲବ୍ଧି କରି ନାହାନ୍ତି – ସୁଦୂର ଲୋକଙ୍କ ସହିତ ଆମର ବନ୍ଧନ ଏଥିରୁ ଜଣାପଡ଼େ ।

ଇଉରୋପରେ ଆଉ ଏକ ପ୍ରଧାନ ରାଜ୍ୟ ବିଷୟକ ପରିବର୍ତ୍ତନ ହେଉଛି ଆଲସେସ୍ ଓ ଲରେନ୍ ଅଞ୍ଚଳ ଫ୍ରାନ୍ସକୁ ଦାନ । ଆହୁରି କେତେକ ପରିବର୍ତ୍ତନ ବି ହେଲା; କିନ୍ତୁ ମୁଁ ସେସବୁ ଲେଖି ତୋତେ ବ୍ୟସ୍ତ କରିବି ନାହିଁ । ତୁ ଏବେ ଦେଖିଲୁ ଯେ ଏହିସବୁ ପରିବର୍ତ୍ତନ ଫଳରେ ଅନେକ ନୂତନ ରାଜ୍ୟର ସୃଷ୍ଟି ହେଲା—ଏଥିରୁ କେତେକ ଏକଦମ୍ ଶ୍ରେଷ୍ଠ ରାଜ୍ୟ ଥିଲା । ପୂର୍ବ ଇଉରୋପ ବୋଇଲେ ଏବେ ଖଣ୍ଡ ଖଣ୍ଡ ରାଜ୍ୟ ହୋଇଯାଇଛି ଏବଂ ସେଥିହେତୁ କୁହାଯାଏ ଯେ ଏହିସବୁ ଶାନ୍ତିସର୍ତ୍ତ ଅନୁସାରେ ଇଉରୋପକୁ "ବଲକାନୀକରଣ"

(Balkanized) କରାଗଲା । ଏବେ ଅନେକ ଅଧିକ ସୀମାନ୍ତ ହୋଇଗଲା ଏବଂ ଏହି ଛୋଟ ଛୋଟ ରାଜାଙ୍କ ଭିତରେ ବରାବର ଗୋଳମାଳ ଲାଗି ରହିଛି । ବିଶେଷତଃ ଡାନ୍ୟୁବ୍ ଉପତ୍ୟକାରେ ସେମାନେ ପରସ୍ପରକୁ କପରି ଘୃଣା କରନ୍ତି ଦେଖିଲେ ଆଶ୍ଚର୍ଯ୍ୟ ଲାଗେ । ଏଥିପାଇଁ ବେଶି ଭାବରେ ଦାୟୀ ହେଉଛନ୍ତି ମିତ୍ରପକ୍ଷ—ସେମାନେ ଭୁଲଭାବରେ ଇଉରୋପକୁ ବିଭକ୍ତ କଲେ, ତେଣୁ ଅନେକ ନୂଆ ସମସ୍ୟା ସୃଷ୍ଟି କଲେ । ଅନେକ ଜାତୀୟ ସଂଖ୍ୟାଲଘିଷ୍ଠ ସଂପ୍ରଦାୟ ବିଦେଶୀ ସରକାର ଅଧୀନରେ ରହିଛି ଏବଂ ସେମାନେ ତାଙ୍କ ଉପରେ ଅତ୍ୟାଚାର କରନ୍ତି । ପୋଲଣ୍ଡ ଏକ ବିସ୍ତୃତ ଅଞ୍ଚଳ ପାଇଛି—ଏଥିରୁ ଅଧିକ ଅଂଶ ଇଉକ୍ରେନରୁ ଆସିଛି ଏବଂ ଏହି ଅଞ୍ଚଳର ବିଚରା ଇଉକ୍ରେନବାସୀଙ୍କୁ ପୋଲଣ୍ଡବାସୀ କରିବା ନିମନ୍ତେ ସକଳପ୍ରକାର ନୃଶଂସତା ପ୍ରୟୋଗ କରାଯାଉଛି । ଏହିରୂପେ ଯୁଗୋସ୍ଲାଭିଆ, ରୁମାନିଆ ଓ ଇଟାଲୀ ସବୁ ଦେଶରେ ବିଦେଶୀ ସଂଖ୍ୟାଲଘିଷ୍ଠ ସଂପ୍ରଦାୟ ରହିଛନ୍ତି ଏବଂ ସେମାନେ ତାଙ୍କ ପ୍ରତି ଖରାପ ବ୍ୟବହାର କରୁଛନ୍ତି । ଅନ୍ୟ ପକ୍ଷରେ ଅଷ୍ଟ୍ରିଆ ହଙ୍ଗେରୀକୁ କାଟି କଙ୍କାଳସାର କରାଯାଇଛି ଏବଂ ତା ନିଜ ଦେଶ ଅଧିବାସୀଙ୍କୁ ତାଠାରୁ ଛଡ଼ାଇ ନିଆଯାଇଛି । ବିଦେଶୀ କର୍ତ୍ତୃତ୍ୱାଧୀନରେ ଥିବା ଏହିସବୁ ଅଞ୍ଚଳରେ ଜାତୀୟ ଆନ୍ଦୋଳନ ଓ ପୁନଃ ପୁନଃ ବିବାଦ ଲାଗି ରହିବା ସ୍ୱାଭାବିକ ।

ପୁନର୍ବାର ମାନଚିତ୍ର ଦେଖ, ତୁ ଦେଖିବୁ ଫିନଲଣ୍ଡ, ଇସ୍ତୋନିଆ, ଲାଟେଭିଆ, ଲିଥୁଆନିଆ, ପୋଲଣ୍ଡ ଓ ରୁମାନିଆ ଆଦି ଷ୍ଟେଟମାନଙ୍କଦ୍ୱାରା ରୁଷ୍ ପଶ୍ଚିମ-ଇଉରୋପରୁ ସଂପୂର୍ଣ୍ଣରୂପେ ବିଚ୍ଛିନ୍ନ ହୋଇପଡ଼ିଲା । ମୁଁ ତତେ କହିଛି, ଏହି ରାଜ୍ୟମାନଙ୍କ ଭିତରୁ ଅଧିକାଂଶ ଭର୍ସେଲିସ ସନ୍ଧିଦ୍ୱାରା ଗଢ଼ାହୋଇ ନ ଥିଲା, ମାତ୍ର ସୋଭିଏଟ ବିପ୍ଳବ ଫଳରେ ହୋଇଥିଲା । ଯାହାହେଉ ମିତ୍ରପକ୍ଷ ଏହାକୁ ସ୍ୱାଗତ କଲେ—କାରଣ ରୁଷ୍‌କୁ ଅବ୍‌ଲସେଭିକ୍ ଇଉରୋପଠାରୁ ଏଗୁଡ଼ିକ ବିଚ୍ଛିନ୍ନ କରି ରଖିଲା । ଏହା ସାହାଯ୍ୟରେ ବଲ୍‌ସେଭିକ୍ ସଂକ୍ରାମକ ରୋଗକୁ ଅଲଗା କରି ରଖାଯାଇଥିଲା । ଏହିସବୁ ଆଖପାଖ ରାଜ୍ୟ ଅବଲ୍‌ସେଭିକ୍; ତାହା ନ ହୋଇଥିଲେ ସେମାନେ ନିଶ୍ଚୟ ସୋଭିଏଟ୍ ରାଷ୍ଟ୍ରସଂଘରେ ଯୋଗ ଦେଇଥାନ୍ତେ ।

ପଶ୍ଚିମ-ଏସିଆରେ ପୁରାତନ ତୁର୍କି ସାମ୍ରାଜ୍ୟର କେତେକ ଅଞ୍ଚଳ ପାଶ୍ଚାତ୍ୟ ଶକ୍ତିମାନଙ୍କ ସହିତ ଯୋଗଦେବା ନିମନ୍ତେ ଇଚ୍ଛା କରୁଥିଲେ । ଯୁଦ୍ଧକାଳ ଭିତରେ ଆରବ, ପାଲେଷ୍ଟାଇନ୍ ଓ ସିରିଆ ପର୍ଯ୍ୟନ୍ତ ବିସ୍ତୃତ କରି ଏକ ମିଳିତ ଆରବରାଜ୍ୟ ସୃଷ୍ଟି କରିବାର ପ୍ରତିଶ୍ରୁତି ଦେଇ ବ୍ରିଟିଶ ତୁର୍କି ବିରୁଦ୍ଧରେ ଆରବବିଦ୍ରୋହ ଉତ୍ସାହିତ କରୁଥିଲେ । ଆରବ-ମାନଙ୍କୁ ଏଣେ ଏହି ପ୍ରତିଶ୍ରୁତି ଦେଲବେଳେ ତେଣେ ଏହିସବୁ ଅଞ୍ଚଳକୁ ଭାଗ ଭାଗ କରିବା ନିମନ୍ତେ ଫ୍ରାନ୍‌ସ ସହିତ ବ୍ରିଟିଶ ଗୁପ୍ତସନ୍ଧି କରୁଥାଏ । ଏହା କରିବା କିଛି ସମ୍ମାନଜନକ କାର୍ଯ୍ୟ ନୁହେଁ ଏବଂ ବ୍ରିଟିଶ ପ୍ରଧାନମନ୍ତ୍ରୀ ରାମସେ ମାକ୍‌ଡୋନାଲ୍‌ଡ ଏହାକୁ "ବିକୃତ ଚାଲବାଜି"

ବୋଲି କହିଥିଲେ; କିନ୍ତୁ ସେ ଏହା ୧୦ ବର୍ଷ ପୂର୍ବେ ମନ୍ତ୍ରୀ ହୋଇ ନଥିଲା ବେଳେ କହିଥିଲେ ଏବଂ ସେଥିପାଇଁ ବେଳେ ବେଳେ ସତ୍ୟକଥା କହି ପାରୁଥିଲେ ।

ଏହାର ଆହୁରି ଅଭୁତ ପରିଣତି ବି ହେଲା—ବ୍ରିଟିଶ ସରକାର ଖାଲି ଯେ ଆରବମାନଙ୍କ ପାଖରେ ପ୍ରତିଶ୍ରୁତି ଭାଙ୍ଗିଲା ତାହା ନୁହେଁ, ଫ୍ରାନ୍ସ ସହିତ ହୋଇଥିବା ଗୁପ୍ତସନ୍ଧି ମଧ୍ୟ ଭାଙ୍ଗିଦେବା ଲାଗି ଖେଳ ଖେଳିଲା । ସେମାନଙ୍କ ସମ୍ମୁଖରେ ଏକ ବିଶାଳ ମଧ୍ୟ-ପ୍ରାଚ୍ୟ ସାମ୍ରାଜ୍ୟର କଳ୍ପନା ଜାଗ୍ରତ ହେଲା । ଏହା ଭାରତରୁ ଇଜିପ୍ଟ ପର୍ଯ୍ୟନ୍ତ ବିସ୍ତୃତ ହେବ—ଭାରତ-ସାମ୍ରାଜ୍ୟ ବିଶାଳ ଆଫ୍ରିକା ଦେଶମାନଙ୍କ ସହ ସଂଯୁକ୍ତ ହୋଇ ଏକ ପ୍ରକାଣ୍ଡ ଆକାର ଧାରଣ କରିବ । ଏହା ଏକ ଲୋଭନୀୟ ଓ ବିଶାଳ କଳ୍ପନା; ତଥାପି ସେତେବେଳେ ଏହା କରିବା କିଛି କଷ୍ଟକର ବୋଧ ହେଉ ନ ଥିଲା । ସେହି ସମୟରେ ୧୯୧୯ରେ ବ୍ରିଟିଶସେନା ସମଗ୍ର ଅଞ୍ଚଳ—ପାରସ୍ୟ, ଇରାକ୍, ପାଲେଷ୍ଟାଇନ୍, ଆରବର କେତେକାଂଶ ଓ ଇଜିପ୍ଟ ଦଖଲ କରିଥିଲା । ସେମାନେ ଫରାସୀମାନଙ୍କୁ ସିରିଆରୁ ଅଲଗା ରଖିବା ନିମନ୍ତେ ଚେଷ୍ଟା କରୁଥିଲେ । କନ୍‌ଷ୍ଟାଣ୍ଟିନୋପଲ ସହର ବ୍ରିଟିଶ ଦଖଲରେ ଥିଲା । ୧୯୨୦, ୧୯୨୧ ଓ ୧୯୨୨ରେ ଯେଉଁସବୁ ଘଟଣା ଘଟିଥିଲା, ସେଥିରେ ଏହି ସ୍ୱପ୍ନ ଭାଙ୍ଗିଗଲା । ମୂଳରେ ସୋଭିଏଟ୍ ଏବଂ ସମ୍ମୁଖରେ କେମାଲପାଶା ହିଁ ବ୍ରିଟିଶ ମନ୍ତ୍ରୀମାନଙ୍କ ଏହି ଉଚ୍ଚାକାଙ୍‌କ୍ଷୀ ଯୋଜନାଗୁଡ଼ିକୁ ଶେଷ କରିଦେଲା ।

କିନ୍ତୁ ତଥାପି ବ୍ରିଟେନ ପଶ୍ଚିମ-ଏସିଆରେ ବହୁ ଅଞ୍ଚଳ ଇରାକ୍ ଓ ପାଲେଷ୍ଟାଇନ୍ ଦଖଲରେ ରଖିଲା ଏବଂ ଲାଞ୍ଚ ଓ ଅନ୍ୟାନ୍ୟ ଉପାୟଦ୍ୱାରା ଆରବରେ ଘଟଣାର ଗତିରେ ପ୍ରଭାବ ପକାଇବାକୁ ଚେଷ୍ଟାକଲା । ସିରିଆ ଫରାସୀଙ୍କ ଭାଗରେ ପଡ଼ିଲା । ଆରବ ଦେଶମାନଙ୍କର ନୂତନ ଜାତୀୟବାଦ ଓ ସ୍ୱାଧୀନତା ସଂଗ୍ରାମ ବିଷୟରେ ମୁଁ ଅନ୍ୟ କେତେବେଳେ ତତେ କହିବି ।

ଆମେ ଭର୍ସେଇ-ସନ୍ଧିକୁ ଫେରିଯିବା । ଏହି ସନ୍ଧିରେ ଧାର୍ଯ୍ୟ କରାଗଲା ଯେ ଯୁଦ୍ଧ ଆରମ୍ଭ କରିବାରେ ଜର୍ମାନୀ ହିଁ ଦୋଷୀ; ତେଣୁ ଗୋଟିଏ ସନ୍ଧିରେ ସ୍ୱାକ୍ଷର କରି ନିଜର ଯୁଦ୍ଧ-ଦୋଷକୁ ସ୍ୱୀକାର କରିବା ନିମନ୍ତେ ଜର୍ମାନମାନଙ୍କୁ ବାଧ୍ୟ କରାଗଲା । ଏପରି ବଳପୂର୍ବକ ସ୍ୱୀକାରୋକ୍ତିରେ କିଛି ମୂଲ୍ୟ ନାହିଁ; ଏହା ତିକ୍ତତା ବଢ଼ାଏ—ଏହି ଘଟଣାରେ ବି ତାହା ହେଲା ।

ଜର୍ମାନୀକୁ ବି ନିରସ୍ତ୍ର ହେବା ନିମନ୍ତେ କୁହାଗଲା । କେବଳ ଚୋଟିଏ ଛୋଟ ସେନା ରଖିବା ନିମନ୍ତେ ତାକୁ ଅନୁମତି ଦିଆଗଲା—ଅଳ୍ପ ଅଧିକେ କେବଳ ପୁଲିସକାମ ନିମନ୍ତେ ହେଲା ଏବଂ ତାର ନୌଶକ୍ତି ମିତ୍ରପକ୍ଷଙ୍କ ପାଖରେ ସମର୍ପଣ କରିଦେବାକୁ ପଡ଼ିଲା । ଜର୍ମାନ ନୌବାହିନୀ ଏହି ଆତ୍ମ-ସମର୍ପଣ ନିମନ୍ତେ ଯାଉଥିବାବେଳେ ଏଥିରେ ଥିବା କର୍ମଚାରୀ ଲୋକେ ନିଜ ଦାୟିତ୍ୱରେ ସ୍ଥିର କଲେ ଯେ ବ୍ରିଟିଶଙ୍କ ହାତରେ ସମର୍ପିଦେବା ଅପେକ୍ଷା ବରଂ

ବୁଡ଼ାଇଦେବା ଭଲ । ତେଣୁ ୧୯୧୯ ଜୁନ୍ ମାସରେ ସ୍କାପା-ଫ୍ଲୋଠାରେ ବ୍ରିଟିଶ ତାକୁ ନେବା ନିମନ୍ତେ ପ୍ରସ୍ତୁତ ହୋଇ ରହିଥିବାବେଳେ ତାଙ୍କ ଆଖି ଆଗରେ ସମଗ୍ର ଜର୍ମାନ ନୌବାହିନୀ ଆପଣା ଛୁଏଁ ବୁଡ଼ିଗଲେ— ନିଜ କପ୍ତାନମାନେ ଏହାକୁ ବୁଡ଼ାଇଦେଲେ ।

ଆହୁରି ମଧ୍ଯ ଜର୍ମାନୀକୁ ଯୁଦ୍ଧର କ୍ଷତିପୂରଣ ଓ ଯୁଦ୍ଧଦ୍ୱାରା ମିତ୍ରପକ୍ଷର ହୋଇଥିବା କ୍ଷତି ଦେବା ନିମନ୍ତେ ପଡ଼ିଲା । ଏହାକୁ "କ୍ଷତିପୂରଣ" (ରିପ୍ୟାରେସନ୍) କହନ୍ତି ଏବଂ ଅନେକ ବର୍ଷ ପର୍ଯ୍ୟନ୍ତ ଏହି ଶବ୍ଦଟି ଗୋଟିଏ ଭୂତପ୍ରାୟ ରୂପେ ଇଉରୋପରେ ରହିଲା । ସନ୍ଧିରେ କୌଣସି ନିର୍ଦ୍ଦିଷ୍ଟ ପରିମାଣ ଦିଆଯାଇ ନଥିଲା; କିନ୍ତୁ ଏହି ପରିମାଣ ନିର୍ଦ୍ଦିଷ୍ଟ କରିବା ନିମନ୍ତେ କମିଟି ବସାଯାଇଥିଲା । ମିତ୍ରପକ୍ଷର ଯୁଦ୍ଧ କ୍ଷତିପୂରଣ କରିବାଟା ଗୋଟାଏ ପ୍ରକାଣ୍ଡ ବ୍ୟାପାର । ସେତେବେଳେ ଜର୍ମାନୀ ଏକ ଜର୍ଜରିତ ଓ ବିଧ୍ୱସ୍ତ ଦେଶ ହୋଇଥିଲା ଏବଂ ତାର ନିଜ ଦେଶ ଚଳାଇବା ନିମନ୍ତେ କୌଣସି ପ୍ରକାରେ ଗୁଜୁରାଣ ମେଣ୍ଟାଇବା ସମସ୍ୟାରେ ସାଣ୍ଡି ହେଉଥିଲା । ଏହା ସାଙ୍ଗକୁ ପୁଣି ମିତ୍ରପକ୍ଷର ବୋଝ ବହନ କରିବା ଏକ ଅସମ୍ଭବ କାମ ପୂର୍ଣ୍ଣ କରିବା ପାଇଁ ସେ ଅସମର୍ଥ ଥିଲା । କିନ୍ତୁ ମିତ୍ରପକ୍ଷ ଦ୍ୱେଷ ଓ ପ୍ରତିଶୋଧ ଭାବରେ ପୂର୍ଣ୍ଣ ଥିଲେ ଏବଂ କେବଳ ଯେ ତାର 'ହାଡ଼ମାଂସ' ଚାହୁଁଥିଲେ ତାହା ନୁହେଁ, ଜର୍ମାନୀର ଧ୍ୱସ୍ତ ଶରୀରରୁ ଶେଷ ରକ୍ତବିନ୍ଦୁ ବି ନେବାକୁ ଚାହୁଁଥିଲେ । ଇଂଲଣ୍ଡର 'କାଇଜରକୁ ଫାଶିଦିଅ' ଏହି ଧ୍ୱନି ହେତୁ ଲଏଡ଼ ଜର୍ଜ ନିର୍ବାଚନରେ ଯଶସ୍ୱୀ ହେଲେ । ଫ୍ରାନ୍ସରେ ମନୋଭାବ ଆହୁରି ତିକ୍ତ ଥିଲା ।

ସନ୍ଧିର ଏସବୁ ସର୍ତ୍ତମାନଙ୍କର ସମଗ୍ର ଉଦ୍ଦେଶ୍ୟ ଥିଲା ପ୍ରତ୍ୟେକ ପ୍ରକାରେ ଜର୍ମାନୀକୁ ବାନ୍ଧିଦେବା, ତାକୁ ଅସମର୍ଥ କରିବା ଏବଂ ପୁନର୍ବାର ବଳବାନ୍ ହେବାରେ ତାକୁ ବାଧାଦେବା । ଯୁଗଯୁଗ ଧରି ତାକୁ ମିତ୍ରପକ୍ଷର ଆର୍ଥିକ ଦାସ ହୋଇ ରହିବାକୁ ପଡ଼ିବ—ବହୁତ ବେଶୀ ବାର୍ଷିକ କର ଦେବାକୁ ହେବ । ଭର୍ସେଇଠାରେ ଯେଉଁ ଜ୍ଞାନୀ ଅତିରାଜନୀତିଜ୍ଞମାନେ ପ୍ରତିଶୋଧମୂଳକ ଶାନ୍ତିର ମୂଳଭିତ୍ତି ସ୍ଥାପନ କଲେ, ଇତିହାସର ଗୋଟିଏ ସ୍ପଷ୍ଟ ଶିକ୍ଷା ତାଙ୍କର ସ୍ମରଣ ନ ଥିଲା—ତାହା ହେଉଛି ଏକ ମହାନ୍ ଜାତିକୁ ଦୀର୍ଘକାଳ ପର୍ଯ୍ୟନ୍ତ ଏପରି ଭାବରେ ବାନ୍ଧି ରଖିବା ଅସମ୍ଭବ । ସେମାନେ ଏବେ ଅନୁତାପ କରୁଛନ୍ତି ।

ଶେଷରେ ସଭାପତି ଉଇଲସନ୍‌ଙ୍କ ପ୍ରସ୍ତୁତ ଆନ୍ତର୍ଜାତିକ ରାଷ୍ଟ୍ରସଂଘ ( ଲିଗ ଅଫ୍ ନେସନ୍ସ ) କଥା ତତେ କହିବି; ଭର୍ସେଇ-ସନ୍ଧିର ପୃଥିବୀକୁ ଏହା ଗୋଟିଏ ଉପହାର । ଏହା ସ୍ୱାଧୀନ ଓ ସ୍ୱାୟତ୍ତଶାସିତ ରାଜ୍ୟମାନଙ୍କ ସଙ୍ଘ ହେବାର ଥିଲା ଏବଂ ଏହାର ଉଦ୍ଦେଶ୍ୟ ହେଲା— "ପୃଥିବୀର ଦେଶମାନଙ୍କର ପରସ୍ପର ଭିତରେ ନ୍ୟାୟ ଓ ସମ୍ମାନକୁ ମୂଳଭିତ୍ତି କରି ସମ୍ବନ୍ଧ ସ୍ଥାପନ କରିବାଦ୍ୱାରା ଭବିଷ୍ୟତ ଯୁଦ୍ଧକୁ ବାଧା ଦେବା ଓ ପରସ୍ପର ଭିତରେ ଭୌତିକ ଓ ଆଧିଭୌତିକ ସହଯୋଗ ଆଣିବା ।" ବଡ଼ ପ୍ରଶଂସନୀୟ ଉଦ୍ଦେଶ୍ୟ ! ଲିଗ୍‌ର ସଭ୍ୟ ପ୍ରତ୍ୟେକ ଦେଶକୁ ପ୍ରତିଶ୍ରୁତ ହେବାକୁ ପଡ଼ୁଥିଲା ଯେ ତାର ସହଯୋଗୀ ରାଜ୍ୟ ସହିତ ସେ ଆଦୌ ଯୁଦ୍ଧ କରିବ ନାହିଁ—ଯୁଦ୍ଧ କରିବା ପୂର୍ବରୁ ଶାନ୍ତିପୂର୍ଣ୍ଣ ସମାଧାନର ସମସ୍ତ ଉପାୟ ଅବଲମ୍ବନ କରିବ

ଏବଂ ତାପରେ ମଧ୍ଯ ୯ ମାସ ପରେ ଯୁଦ୍ଧ ଆରମ୍ଭ କରିବ । ଯଦି କୌଣସି ସଭ୍ୟ ଏହି ଶପଥ ଭାଙ୍ଗେ, ତେବେ ସେହି ରାଜ୍ୟ ସହିତ ସମସ୍ତ ଆର୍ଥନୀତିକ ଓ ଆର୍ଥିକ ସମ୍ବନ୍ଧ ଅନ୍ୟ ରାଜ୍ୟମାନେ ତୁଟାଇଦେବେ । କାଗଜ କଲମରେ ଏସବୁ ଭାରି ଭଲ ଦେଖାଯାଏ; କାର୍ଯ୍ୟରେ ଏହା କିନ୍ତୁ ସମ୍ପୂର୍ଣ୍ଣ ଭିନ୍ନ ଦେଖାଯାଏ । ଯାହାହେଉ ଲକ୍ଷ୍ୟ କରିବାର କଥା ଯେ, ତଥ୍ୟ ହିସାବରେ ମଧ୍ଯ ଯୁଦ୍ଧ ଅନ୍ତ କରିବା ନିମନ୍ତେ ଲିଗ୍ ଚେଷ୍ଟା କରି ନ ଥିଲା; ଏହା କେବଳ ଯୁଦ୍ଧପଥରେ ଅସୁବିଧା ପକାଉଥିଲା – ତାହାହେଲେ ସମସ୍ତ ଅତିକ୍ରମ ହୋଇଗଲେ ଏବଂ ମିଳାମିଶାର କଥାବାର୍ତ୍ତା ଚାଲିଲେ ଯୁଦ୍ଧ ପ୍ରତି ଅତ୍ୟଧିକ ଆଗ୍ରହଟା ନରମା ପଡ଼ିଯିବ । ଯୁଦ୍ଧର କାରଣ ସବୁ ଦୂର କରିବାକୁ ମଧ୍ଯ ଏହା ଚେଷ୍ଟା କରି ନଥିଲା ।

ଲିଗ୍ ବୋଇଲେ ହେବ ଏକ ଆସେମ୍ବ୍ଲି—ସେଥିରେ ପ୍ରତ୍ୟେକ ସଭ୍ୟ ଥିବା ଦେଶ ପ୍ରତିନିଧି ପଠାଇବେ ଏବଂ ଗୋଟିଏ କାଉନ୍‌ସିଲ ରହିବ । ସେଥିକୁ ପ୍ରଧାନ ଶକ୍ତିମାନେ ସ୍ଥାୟୀ ପ୍ରତିନିଧି ପଠାଇପାରିବେ ଏବଂ ଆସେମ୍ବ୍ଲିରୁ କେତେକ ଅଧିକା ବି ନିର୍ବାଚିତ ହେବେ । ଗୋଟିଏ ସେକ୍ରେଟାରିଏଟ୍ ରହିବ ଏବଂ ତାର ସଦର ଅଫିସ ରହିବ ଜେନେଭାରେ । ଆଉସବୁ ବିଭାଗ ବି ଥିଲା । ହେଗ୍‌ଠାରେ ଗୋଟିଏ ସ୍ଥାୟୀ ନ୍ୟାୟ ଅଦାଲତ, ଶିକ୍ଷାଗତ ସହଯୋଗ ପାଇଁ ଗୋଟିଏ କମିଟି, ଏ ସବୁ ବିଭାଗ ପ୍ରଥମରୁ ଲିଗ୍‌ରେ ନ ଥିଲା, ପରେ ଖୋଲିଗଲା ।

ଭର୍ସେଇ-ସନ୍ଧିରେ ଲିଗ୍‌ର ମୂଳ ଶାସନବିଧାନ ରହିଥିଲା । ଏହାକୁ "ଆନ୍ତର୍ଜାତୀୟ ରାଷ୍ଟ୍ରସଂଘର କଭେନାଣ୍ଟ" ବୋଲି କହନ୍ତି । କଭେନାଣ୍ଟ୍‌ରେ ଏହା ବି ଧାର୍ଯ୍ୟ କରାଗଲା ଯେ ଜାତୀୟ ନିରାପତ୍ତା ଅକ୍ଷୁଣ୍ଣ ରଖି ସବୁଦେଶରେ ଅସ୍ତ୍ରଶସ୍ତ୍ର ଯେତେ ଦୂର କମ୍ ହୋଇପାରେ, ସେତେ କମ୍ ରହିବ । ଏହି ଦିଗରେ ଜର୍ମାନ ନିରସ୍ତ୍ରୀକରଣ (ଏହା ଅବଶ୍ୟ ବାଧ୍ୟତାମୂଳକ) ପ୍ରଥମ ସୋପାନ ହେଲା—ଅନ୍ୟ ଦେଶସବୁ ପରେ ତାହା ଅନୁସରଣ କରିବେ । ଆହୁରି ଥିଲା ଯେ କୌଣସି ରାଜ୍ୟ ଆକ୍ରମଣ କଲେ ତା ବିରୁଦ୍ଧରେ ପ୍ରତିକାର କରାଯିବ । କିନ୍ତୁ କି କାର୍ଯ୍ୟ କଲେ ଆକ୍ରମଣ ବୋଲି ଧରାଯିବ, ତାହା ପରିଷ୍କାର ହୋଇ ନ ଥିଲା । ଦୁଇଟି ଲୋକ ବା ଦୁଇ ଦେଶ ଭିତରେ ଯେତେବେଳେ ଯୁଦ୍ଧ ଲାଗେ, ସେତେବେଳେ ପ୍ରତ୍ୟେକେ ଅପରକୁ ଦୋଷ ଦିଏ ଓ ଆକ୍ରମଣକାରୀ ବୋଲି କହେ ।

ଏକମତ ହେଲେ ବଡ଼ ଘଟଣାମାନ ନିଷ୍ପତ୍ତି କରାଯିବ ବୋଲି ଲିଗ୍‌ରେ ସ୍ଥିର ହୋଇଥିଲା । ଯଦି ଗୋଟିଏ ସଭ୍ୟ-ଦେଶ କୌଣସି ପ୍ରସ୍ତାବ ବିରୁଦ୍ଧରେ ଯାଉଥିଲା, ତେବେ ତାହା ଆଉ ବିଚାର ହୋଇପାରେ ନାହିଁ । ଏହାର ଅର୍ଥ, ସଂଖ୍ୟାଧିକ ଭୋଟଦ୍ୱାରା ବଳ-ପ୍ରୟୋଗ ପ୍ରଶ୍ନ ନ ଥିଲା । ଏହାର ଅର୍ଥ, ଜାତୀୟ ଶକ୍ତିମାନେ ପୂର୍ବପରି ସ୍ୱାଧୀନ ଓ ଦାୟିତ୍ୱହୀନ ହୋଇ ରହିଲେ; ସେମାନଙ୍କ ଉପରେ କିଛି ଅଧିପତି ରାଷ୍ଟ୍ର (Super State)

ହୋଇ ଲିଗ୍ ରହିଲା ନାହିଁ । ଏହି ସର୍ତ୍ତ ଲିଗ୍‌କୁ ଖୁବ୍ ଦୁର୍ବଳ କରିପକାଇଲା ଏବଂ ଏହାକୁ ଏକ ପରାମର୍ଶଦାତା ସମିତିରେ ପରିଣତ କଲା ।

ଯେ କୌଣସି ସ୍ୱାଧୀନ ରାଜ୍ୟ ଲିଗ୍‌ରେ ଯୋଗଦେଇ ପାରେ; କିନ୍ତୁ ନିର୍ଦ୍ଦିଷ୍ଟରୂପେ ଚାରୋଟି ଦେଶକୁ ଅଲଗା କରାଗଲା—ଜର୍ମାନୀ, ଅଷ୍ଟ୍ରିଆ, ତୁର୍କୀ (ଏମାନେ ପରାଜିତ ଶକ୍ତି) ଏବଂ ବୋଲସେଭିକ୍ ଶକ୍ତି ରୁଷ । ଯାହାହେଉ ଧାର୍ଯ୍ୟ କରାଗଲା ଯେ ପରେ କେତେକ ସର୍ତ୍ତରେ ସେମାନେ ଯୋଗ ଦେଇପାରନ୍ତି । ବିଚିତ୍ର କଥା ଯେ ଭାରତ ଲିଗ୍‌ର ଗୋଟିଏ ମୂଳ ସଦସ୍ୟ ହେଲା, କେବଳ ସ୍ୱାୟତ୍ତ-ଶାସିତ ରାଜ୍ୟ ଯେ ସଭ୍ୟ ହୋଇପାରିବେ, ତାହାର ଏହା ସମ୍ପୂର୍ଣ୍ଣ ବିରୋଧୀ ନୀତି । ଅବଶ୍ୟ "ଭାରତ" ବୋଲି ବୁଝାଉଥିଲା ଭାରତର ବ୍ରିଟିଶ ସରକାରକୁ ଏବଂ ଏହି ଚତୁର ଛଳନାଦ୍ୱାରା ବ୍ରିଟିଶ ସରକାର ଗୋଟିଏ ଅଧିକା ପ୍ରତିନିଧି ରଖିପାରିଲେ । ଅନ୍ୟ ପକ୍ଷରେ ଆମେରିକା ଯେ କି ଏକପ୍ରକାରେ ଲିଗ୍‌ର ଜନ୍ମଦାତା, ଏଥିରୁ ଅଲଗା ରହିଲା । ଆମେରିକା ଲୋକେ ସଭାପତି ଉଇଲସନ୍‌ଙ୍କ କାର୍ଯ୍ୟକଳାପ ଓ ଇଉରୋପର ଚକ୍ରାନ୍ତ ଏବଂ ଜଟିଳତା ସବୁ ନାପସନ୍ଦ କଲେ ଏବଂ ଏଥିରୁ ଅଲଗା ରହିବା ନିମନ୍ତେ ସ୍ଥିର କଲେ ।

ଅନେକ ଲୋକ ବଡ଼ ଆଗ୍ରହରେ ଲିଗ୍ ପ୍ରତି ଅନାଇଥିଲେ ଏବଂ ଆଶା କରିଥିଲେ ଯେ ବର୍ତ୍ତମାନ ଦୁନିଆରେ ବୈଷମ୍ୟ ଏହା ଶେଷ କରିପାରିବ ଅଥବା ଅନ୍ତତଃ ବହୁ ପରିମାଣରେ କମାଇ ଦେଇପାରିବ ଏବଂ ଏକ ଶାନ୍ତି ଓ ପ୍ରାଚୁର୍ଯ୍ୟ ଯୁଗ ଆଣିପାରିବ । ଲିଗ୍ ଅଫ୍ ନେସନ୍‌ସ ସମିତିମାନ ଅନେକ ଦେଶରେ ସ୍ଥାପିତ ହେଲା—ଏହା ଲିଗ୍‌କୁ ଲୋକପ୍ରିୟ କରିବା ନିମନ୍ତେ ଏବଂ କୁହାହେଉଥିଲା ଯେ ଆନ୍ତର୍ଜାତୀୟତା ଦୃଷ୍ଟିରୁ ସମସ୍ୟାମାନଙ୍କ ପ୍ରତି ବିଚାର କରିବାର ଭାବ ପ୍ରଚଳନ ପାଇଁ ହୋଇଥିଲା । ଅନ୍ୟ ପକ୍ଷରେ ଅନେକ ଲୋକ ଲିଗ୍‌କୁ ଏକ ନିର୍ମଳ ଶଠତା ଏବଂ ପ୍ରଧାନ ଶକ୍ତିମାନଙ୍କର ମତଲବ ସିଦ୍ଧି କରିବା ନିମନ୍ତେ ହୋଇଛି ବୋଲି ବିଚାରିଲେ । ଆମର ଏବେ ଏହାର ପ୍ରକୃତ ଅଭିଜ୍ଞତା କିଛି ହୋଇଛି ଏବଂ ଏହାର ଉପକାରିତା ସମ୍ବନ୍ଧରେ ବିଚାର କରିବା ହୁଏତ ସହଜ । ଲିଗ୍ ୧୯୨୦ ନୂତନ ବର୍ଷ ଆରମ୍ଭ ଅବସରରେ ଖୋଲାହେଲା । ଏପର୍ଯ୍ୟନ୍ତ ଏହା ଅଳ୍ପଦିନ ହୋଇଛି; ତଥାପି ଏହାର ଅପଯଶ କରିବା ନିମନ୍ତେ ଦୀର୍ଘ କାହାଣୀସବୁ ହୋଇଗଲାଣି । ଏଥିରେ ସନ୍ଦେହ ନାହିଁ ଯେ ଆଧୁନିକ ଜୀବନର ବିଭିନ୍ନ ବିଭାଗରେ ଏହା ଭଲ କାର୍ଯ୍ୟ କରିଛି ଏବଂ ଜାତିସବୁ ବା ସେମାନଙ୍କର ସରକାରସବୁ କହିଲେ ଠିକ୍ ହେବ—ଯେ ଏକତ୍ର ବସି ଆନ୍ତର୍ଜାତୀୟତା ସମସ୍ୟାର ଆଲୋଚନା କରୁଛନ୍ତି, ଏହା ନିଶ୍ଚୟ ପୁରୁଣା ପ୍ରଣାଳୀରେ ଗୋଟାଏ ଉନ୍ନତିର ଲକ୍ଷଣ । କିନ୍ତୁ ଏହାର ପ୍ରକୃତ ଉଦ୍ଦେଶ୍ୟ ହାସଲ କରିବାରେ ଏହା ସମ୍ପୂର୍ଣ୍ଣରୂପେ ବିଫଳ ହୋଇଛି—ଶାନ୍ତି ରକ୍ଷାରେ କିମ୍ବା ଯୁଦ୍ଧ ହେବାର ସମ୍ଭାବନା କମ୍ କରିବାରେ କୃତକାର୍ଯ୍ୟ ହୋଇନାହିଁ ।

ଏ ସମ୍ବନ୍ଧରେ ସଭାପତି ଉଇଲସନ୍‌ଙ୍କର ଯାହା ମୂଳ ଉଦ୍ଦେଶ୍ୟ ଥାଉ ନା କାହିଁକି ଏଥିରେ ସନ୍ଦେହ ନାହିଁ ଯେ ପ୍ରଧାନ ଶକ୍ତି, ବିଶେଷତଃ ଇଂଲଣ୍ଡ ଓ ଫ୍ରାନ୍ସ

ହାତରେ ଲିଗ୍ ଏକ କ୍ରୀଡ଼ାପୁତ୍ତଳି ହୋଇଛି । ଏହାର ମୌଳିକ କାର୍ଯ୍ୟ ହୋଇଛି ପ୍ରଚଳିତ ବ୍ୟବସ୍ଥା ରକ୍ଷା କରିବା । ଏହା ଦେଶ ଦେଶ ଭିତରେ ନ୍ୟାୟ ଓ ସମ୍ମାନ ରକ୍ଷା ବିଷୟ ଉଠାଏ; ମାତ୍ର ପ୍ରଚଳିତ ସମ୍ବନ୍ଧ ନ୍ୟାୟ ଓ ସମ୍ମାନ ଉପରେ ପ୍ରତିଷ୍ଠିତ ହୋଇଛି କି ନାହିଁ ତାହା ଅନୁସନ୍ଧାନ କରେ ନାହିଁ । ଏହା ଘୋଷଣା କରେ ଯେ ଦେଶମାନଙ୍କର "ଘରୋଇ ବ୍ୟାପାର"ରେ ଏହା ହସ୍ତକ୍ଷେପ କରିବାକୁ ଚାହେଁ ନାହିଁ । ସାମ୍ରାଜ୍ୟବାଦୀ ଦେଶମାନଙ୍କ ଅଧୀନରେ ଥିବା ରାଜ୍ୟସବୁ ସେମାନଙ୍କର ଘରୋଇ ବ୍ୟାପାର । ତେଣୁ ଲିଗ୍ କଥା ଦେଖିଲେ ସାମ୍ରାଜ୍ୟ ଉପରେ ଏହି ଶକ୍ତିମାନଙ୍କ ସ୍ଥାୟୀ କର୍ତ୍ତୃତ୍ୱକୁ ଏହା ସ୍ୱୀକାର କରେ । ଏହା ସାଙ୍ଗକୁ ଜର୍ମାନୀ ଓ ତୁର୍କୀର ନୂତନ ଅଞ୍ଚଳସବୁ ନିଆଯାଇ "ମାଣ୍ଡେଟ୍" ନାମରେ ଏହି ମିଳିତ ଶକ୍ତିଗୁଡ଼ିକ ସହଯୋଗ କରାଯାଏ । ଏହି ଶବ୍ଦ ବ୍ୟବହାରଟା ଲିଗ୍ ଅଫ୍ ନେସନ୍‌ସର ବିଶେଷତ୍ୱ କାରଣ ଏହା ପୁରାତନ ସାମ୍ରାଜ୍ୟବାଦୀ ଶୋଷଣକୁ ଗୋଟାଏ ମଧୁର ନାମକରଣରେ ରକ୍ଷା କରିବାକୁ ଚାହେଁ । ଧରିନିଆଯାଏ ଯେ ଏହିସବୁ ନିର୍ଦ୍ଦିଷ୍ଟ ଅଞ୍ଚଳର ଲୋକଙ୍କର ଇଚ୍ଛାନୁସାରେ ଏହି "ମାଣ୍ଡେଟ୍" (Mandate) ରାଜ୍ୟଗୁଡ଼ିକୁ ଦିଆଯାଇଥିଲା । ଏମାନଙ୍କ ଭିତରୁ ଅନେକ ଲୋକ ଏହା ବିରୁଦ୍ଧରେ ଉଠିଲେ ଏବଂ ଅନେକ କାଳ ପର୍ଯ୍ୟନ୍ତ ଗୋଟାଏ ରକ୍ତାକ୍ତ ସଂଗ୍ରାମ ଚଳାଇଲେ; ଶେଷରେ ସେମାନଙ୍କ ଉପରେ ବୋମା ପଡ଼ିବା ଧମକଦେଇ ସେମାନଙ୍କୁ ବଶ କରିବାର ଚେଷ୍ଟା କରାଗଲା । ସଂପୃକ୍ତ ଲୋକଙ୍କର ଇଚ୍ଛା ଜାଣିବା ନିମନ୍ତେ ଏହିପରି ପ୍ରଣାଳୀ ପ୍ରୟୋଗ ହୋଇଥିଲା ।

ସୁନ୍ଦର ଶବ୍ଦ ଓ ବାକ୍ୟମାନ ବ୍ୟବହୃତ ହେଉଥିଲା । ନିର୍ଦ୍ଦିଷ୍ଟ ଶାସନାଦେଶପ୍ରାପ୍ତ ବା (Mandated) ରାଜ୍ୟର ଅଧିବାସୀଙ୍କର "ମାରଫତ୍‌ଦାର" ହେଲେ ସାମ୍ରାଜ୍ୟବାଦୀ ଶକ୍ତିସବୁ ଏବଂ ଟ୍ରଷ୍ଟ ବା ଚୁକ୍ତିର ସର୍ତ୍ତସବୁ ଯେପରି ପୂରଣ ହୁଏ ତାହା ଦେଖିବା ହେଲା ଲିଗ୍‌ର କାର୍ଯ୍ୟ । ପ୍ରକୃତରେ ଦେଖିବାକୁ ଗଲେ ଏଥିରେ ଅବସ୍ଥା ଖରାପ ହେଲା । ଶକ୍ତିମାନେ ଯେପରି ଇଚ୍ଛା କଲେ; କିନ୍ତୁ ସେମାନେ ଗୋଟାଏ ପବିତ୍ରତାର ପୋଷାକ ପିନ୍ଧିଲେ ଏବଂ ଏହିରୂପେ ଅସାବଧାନ ଲୋକଙ୍କର ବିବେକକୁ ନିବେଦ କରି ପକାଇଲେ । କୌଣସି ଶ୍ରେଷ୍ଠ ଦେଶ କୌଣସି ପ୍ରକାରେ ଦୋଷ କଲେ, ଲିଗ୍ ଖୁବ୍ କଡ଼ା ଭାବ ଦେଖାଇ ଧମକ ଦେଉଥିଲା । ପ୍ରଧାନ ଶକ୍ତି କେହି କିଛି ଦୋଷ କଲେ, ଲିଗ୍ ଯେତେଦୂର ସମ୍ଭବ ଏଥିପ୍ରତି ନଜର ଦିଏ ନାହିଁ କିମ୍ବା ଏହି ଅପରାଧ ବିଶେଷ କିଛି ନୁହେଁ ବୋଲି କହିବାକୁ ଚେଷ୍ଟା କରେ ।

ଏହିପରି ପ୍ରଧାନ ଶକ୍ତିଗୁଡ଼ିକ ଲିଗ୍‌ରେ ପ୍ରାଧାନ୍ୟ କଲେ ଏବଂ ତାଙ୍କର ଉଦ୍ଦେଶ୍ୟ ପରିପୂରଣ ଲାଗି ଏହାକୁ ବ୍ୟବହାର କରୁଥିଲେ ଏବଂ ଯେତେବେଳେ ସୁବିଧାଜନକ ବୋଲି ବିଚାରୁଥିଲେ, ସେତେବେଳେ ଏହା ପ୍ରତି ଅବହେଳା ଦେଖାଉଥିଲେ । ସମ୍ଭବତଃ ଦୋଷ ଲିଗ୍‌ର ନୁହେଁ, ଯେଉଁ ପ୍ରଥା ଉପରେ ଲିଗ୍ ପ୍ରତିଷ୍ଠିତ ଥିଲା, ଏହା ତାହାର ସ୍ୱାଭାବିକ ଫଳ ।

ସାମ୍ରାଜ୍ୟବାଦ ଯୋଗୁଁ ବିଭିନ୍ନ ଶକ୍ତି ଭିତରେ ପ୍ରତିଯୋଗିତା ଓ ବିକଟ ବିରୋଧ ଜନ୍ମସୂତ୍ର ଘଟେ—ପ୍ରତ୍ୟେକ ଦେଶ ଯଥାସମ୍ଭବ ପୃଥିବୀକୁ ଶୋଷଣ କରିବାରେ ଲାଗନ୍ତି । ଯଦି କୌଣସି ଏକ ସମାଜର ସଭ୍ୟ ସର୍ବଦା ନିଜ ନିଜର ପକେଟ ମାରିବାକୁ ଚେଷ୍ଟା କରନ୍ତି ଏବଂ ପରସ୍ପରର ଗଳା କାଟିବା ନିମନ୍ତେ ଛୁରୀ ପଜାଇବାରେ ଲାଗନ୍ତି, ତେବେ ତାଙ୍କ ଭିତରେ ସହଯୋଗ ହେବାର କଳ୍ପନା ସେ ସମାଜ କୌଣସି ପ୍ରଗତି କରିବାର ସମ୍ଭାବନା ନାହିଁ । ସୁତରାଂ ଏତେସଂଖ୍ୟକ ପ୍ରଭାବଶାଳୀ ଧର୍ମପିତାଙ୍କ ସତ୍ତ୍ୱେ ଲିଗ୍ ଯେ ଅବସନ୍ନ ହୋଇଗଲା, ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ।

ଭର୍ସେଲଠାରେ ସନ୍ଧିପତ୍ର ଆଲୋଚନା ହେଉଥିଲାବେଳେ ଜାପାନ ତରଫରୁ କୁହାଗଲା ଯେ ଜାତିଗତ ସମାନତା ସ୍ୱୀକାର କରାଯାଇ ଏକ ଦଫା ସେଥିରେ ରହୁ । ଏହା ମଞ୍ଜୁର ହୋଇ ନ ଥିଲା । ଜାପାନ ଯାହାହେଉ ଚୀନରେ କିଛିଗୁଡ଼ିଏ ପାଇ ଶାନ୍ତ ହୋଇଗଲା । ଚୀନ ପରି ଏକ ଦୁର୍ବଳ ଓ ନମ୍ର ମିତ୍ର ମୁଣ୍ଡରେ ହାତ ବୁଲାଇ "ବଡ଼ ନିଜହେଁ" ବଡ଼ ଉଦାରପଣିଆ ଦେଖାଇଲେ । ଏହି ସନ୍ଧିରେ ସେ ଦସ୍ତଖତ କଲା ନାହିଁ ।

"ଯୁଦ୍ଧ ଶେଷ କରିବା ନିମନ୍ତେ ଯେଉଁ ଯୁଦ୍ଧ ହୋଇଥିଲା" ସେଥିର ଭର୍ସେଲଠାରେ ହୋଇଥିବା ସନ୍ଧି ଏପରି ହେଲା । ଫିଲିପ୍ ସ୍ନୋଡେନ୍ ଯେ କି ପରେ ଭାଇକାଉଣ୍ଟ ସ୍ନୋଡେନ ଓ ଇଂଲଣ୍ଡ ମନ୍ତ୍ରୀମଣ୍ଡଳର ସଦସ୍ୟ ହେଲେ—ସେ ସନ୍ଧି ବିଷୟରେ ନିମ୍ନଲିଖିତ ମନ୍ତବ୍ୟ କରିଥିଲେ :—

"ଏହି ସନ୍ଧିରେ ଦସ୍ୟୁ, ସାମ୍ରାଜ୍ୟବାଦୀ ଓ ଯୁଦ୍ଧବାଦୀ (Militarist) ମାନେ ସନ୍ତୁଷ୍ଟ ହେବେ । ଯୁଦ୍ଧ ପରେ ଶାନ୍ତି ଆସିବ ବୋଲି ଯେଉଁମାନେ ଆଶା କରୁଥିଲେ, ଏହା ସେମାନଙ୍କ ଆଶା ଉପରେ କୁଠାରାଘାତ । ଏହା ଶାନ୍ତିସର୍ତ୍ତ ନୁହେଁ, ଆଉ ଏକ ଯୁଦ୍ଧ ପାଇଁ ଘୋଷଣାପତ୍ର । ଏହା ଗଣତନ୍ତ୍ର ପ୍ରତି ଓ ଯୁଦ୍ଧରେ ପରାଜିତ ଲୋକଙ୍କ ପ୍ରତି ବିଶ୍ୱାସଘାତକତା । ମିତ୍ରପକ୍ଷର ପ୍ରକୃତ ଲକ୍ଷ୍ୟ ଏହି ସନ୍ଧିଦ୍ୱାରା ପଦାରେ ପଡ଼ିଗଲା ।"

ବାସ୍ତବିକ ମିତ୍ରପକ୍ଷ ପରସ୍ପର ପ୍ରତି ଘୃଣା, ଗର୍ବ ଓ ଲୋଭ ହେତୁ ଖୁବ୍ ବଳିପଡ଼ିଲେ । କିନ୍ତୁ ପରବର୍ତ୍ତୀ କାଳରେ ଯେତେବେଳେ ନିଜର ନିର୍ବୋଧତାର ପରିଣତି ସେମାନଙ୍କୁ ଅଭିଭୂତ କରିପକାଇଲା, ସେତେବେଳେ ଅନୁତାପ କରିବାକୁ ଲାଗିଲେ । କିନ୍ତୁ ସେତେବେଳକୁ "ନେଡ଼ିଗୁଡ଼ କାହାଣୀକି ବୋହିଯାଇଥିଲା ।"

# ୧୫୭ : ଯୁଦ୍ଧୋତ୍ତର ଦୁନିଆ

ଏପ୍ରିଲ ୨୭, ୧୯୩୩

ଅବଶେଷରେ ଆମେ ଆମର ଦୀର୍ଘ ଯାତ୍ରାପଥର ଅନ୍ତିମ ଲକ୍ଷ୍ୟରେ—ଆଜିର ଦ୍ୱାରପାଖରେ ଆସି ହାଜର ହେଲେଣି । ଆମକୁ ଯୁଦ୍ଧୋତ୍ତର ଦୁନିଆ—ମହାସମର ପରେ ପୃଥିବୀର ଅବସ୍ଥା ଦେଖିବାକୁ ହେବ । ଆମେ ଏବେ ଆମ ନିଜ ଅମଳରେ, ବାସ୍ତବିକ ତୋ ଅମଳରେ ପହଞ୍ଚିଛେ । ଏହା ଶେଷ ଅବସ୍ଥା ଏବଂ କାଳର ଗତି ତୁଳନାରେ ବହୁତ ଶ୍ରେଷ୍ଠ; କିନ୍ତୁ ତଥାପି କଷ୍ଟକର । ଯୁଦ୍ଧ ଶେଷ ହେବାର ଠିକ୍ ସାଢ଼େ ୧୪ ବର୍ଷ ହେଲା ଏବଂ ଆମେ ଇତିହାସରେ ଯେଉଁ ଦୀର୍ଘକାଳ ଆଲୋଚନା କଲେ, ତାହା ତୁଳନାରେ ଏହି କ୍ଷୁଦ୍ର କାଳ ବା କିଅଣ ? କିନ୍ତୁ ଆମେ ଏହା ଭିତରେ ହିଁ ରହିଛେ ଏବଂ ଘଟଣାର ଏତେ ସମୀପରେ ରହି କୌଣସି ଠିକଣା ମତ ପ୍ରକାଶ କରିବା କଷ୍ଟକର । ଇତିହାସ ଆଲୋଚନା କରିବା ନିମନ୍ତେ ଯେଉଁ ଠିକଣା ଦୃଷ୍ଟିବିନ୍ଦୁ ବା ନିଶ୍ଚଳ ଚିନ୍ତା ସଂବନ୍ଧହୀନ ଭାବ ଦରକାର ତାହା ଆମର ରହିପାରେ ନାହିଁ । ଅନେକ ଘଟଣାରେ ଆମେ ମଧ୍ୟ ଉତ୍ତେଜିତ ହୋଇଉଠୁ ଏବଂ ଶ୍ରେଷ୍ଠ ଶ୍ରେଷ୍ଠ ଜିନିଷ ଆମକୁ ବଡ଼ ପରି ଜଣାପଡ଼େ ଏବଂ ପ୍ରକୃତରେ କେତେକ ବଡ଼ ଜିନିଷର ମହତ୍ତ୍ୱ ଆମେ ପୂର୍ଣ୍ଣରୂପେ ଉପଲବ୍ଧି କରିପାରୁ ନାହିଁ । ଆମେ ବୃକ୍ଷ-ବହୁଳତାରେ ଭୁଲିଯାଉ ଏବଂ ଜଙ୍ଗଲ ଠିକ୍‌ରୂପେ ଦେଖିପାରୁ ନାହିଁ ।

ତାପରେ ଘଟଣାର ଗୁରୁତ୍ୱ ଜାଣିବା ବି କଷ୍ଟକର । ଏଥିପାଇଁ କି ମାପକାଠି ପ୍ରୟୋଗ କରିଯିବ ? ଏକଥା ସୁସ୍ପଷ୍ଟ ଯେ ଆମେ ଯେଉଁ ଦୃଷ୍ଟିକୋଣରୁ ବିଷୟକୁ ଦେଖୁ ତା' ଉପରେ ଅନେକ ନିର୍ଭର କରେ । ଗୋଟିଏ ଦୃଷ୍ଟିରୁ କୌଣସି ଘଟନା ଆମକୁ ବଡ଼ ବୋଲି ମନେ ହୋଇପାରେ । କିନ୍ତୁ ଅନ୍ୟ ଦୃଷ୍ଟିରୁ ଆମକୁ ଅପ୍ରଧାନ ଓ ନିତାନ୍ତ ନଗଣ୍ୟ ପରି ବୋଧ ହୋଇପାରେ । ମୁଁ ତତେ ଯେଉଁସବୁ ଚିଠି ଲେଖିଛି, ସେଥିରେ କେତେକ ପରିମାଣରେ ଏସବୁ ପ୍ରଶ୍ନ ପ୍ରତି ଅବଜ୍ଞା ଦେଖାଇଛି; ମୁଁ ଏହା ଠିକ୍‌ରୂପେ ଓ ବିସ୍ତୃତ ଭାବରେ ଆଲୋଚନା କରି ନାହିଁ । ତଥାପି ମୁଁ ଯାହା ଲେଖିଛି ସେଥିରେ ମୋର ସାଧାରଣ ଦୃଷ୍ଟିକୋଣର ଛାପ ପଡ଼ିଛି । ଆଉ ଜଣେ କେହି ଏସବୁ କାଳର ଘଟଣାସବୁ ଲେଖିଲେ ସଂପୂର୍ଣ୍ଣ ଭିନ୍ନ ଧରଣରେ ଲେଖିବ ।

ଇତିହାସ ପ୍ରତି ଆମର କି ଦୃଷ୍ଟିକୋଣ ହେବା ଉଚିତ ସେ ବିଷୟ ମୁଁ ଏଠି ଲେଖିବାକୁ ଯାଉନାହିଁ । ମୋର ନିଜର ଦୃଷ୍ଟିକୋଣ ବିଷୟରେ ଏବେ ବହୁତ ପରିବର୍ତ୍ତନ ହୋଇଯାଇଛି । ମୋର ଯେପରି ଏଣ୍ଡତେଣ୍ଡ କେତେକ ଘଟଣାରେ ଦୃଷ୍ଟିକୋଣ ପରିବର୍ତ୍ତନ ହୋଇଛି, ସେପରି ଅନେକଙ୍କର ହୋଇଛି । କାରଣ ଯୁଦ୍ଧ ହିଁ ପ୍ରତ୍ୟେକ ଜିନିଷକୁ ଓ ପ୍ରତ୍ୟେକ

ଲୋକଙ୍କୁ ଭୀଷଣ ଧକ୍କା ଦେଲା । ଏହା ପୁରୁଣା ଜଗତକୁ ସଂପୂର୍ଣ୍ଣରୂପେ ଓଲଟାଇ ଦେଲା ଏବଂ ସେହିଦିନଠାରୁ ଆମର ଏହି ଦୁନିଆ ସନ୍ତୁଳନ ସହି ପୁଣି ଛିଡ଼ାହେବାକୁ ଚେଷ୍ଟା କରୁଛି; ମାତ୍ର ବିଶେଷ ସଫଳ ହୋଇପାରୁ ନାହିଁ । ଯେଉଁ ବ୍ୟବସ୍ଥିତ ଭାବଧାରାରେ ଆମେ ବଢ଼ିଛେ, ତାହାକୁ ଏହା ଦୋହଲାଇ ଦେଲା ଏବଂ ଆଧୁନିକ ସମାଜ ଓ ସଭ୍ୟତାର ମୂଳଭିତ୍ତି ପ୍ରତି ସନ୍ଦେହ ଜାତ କରାଇଲା । ଆମେ ଯୁବକପ୍ରାଣର ବ୍ୟର୍ଥ ବିନାଶ, ମିଥ୍ୟା, ହିଂସା, ପାଶବିକତା, ଧ୍ୱଂସସବୁ ଦେଖିଲେ ଏବଂ ଭାବିବାକୁ ଲାଗିଲେ ସଭ୍ୟତା ଶେଷ ପାଇଯିବ କି ? ରୁଷରେ ସୋଭିଏଟ୍‌ର ଆବିର୍ଭାବ ହେଲା—ଏକ ନୂଆ ଜିନିଷ, ନୂତନ ସାମାଜିକ ବ୍ୟବସ୍ଥା ଏବଂ ପୁରାତନକୁ ଚ୍ୟାଲେଞ୍ଜ । ବାୟୁମଣ୍ଡଳରେ ଅନ୍ୟ ଭାବଧାରାସବୁ ଭାସିଉଠିଲା । ଏହା ଏକ ଖଣ୍ଡ ବିଖଣ୍ଡ ବେଳ, ପୁରୁଣା ବିଶ୍ୱାସ ଓ ପ୍ରଥା ଭାଙ୍ଗିଯିବା ବେଳ; ସନ୍ଦେହ ଓ ଜିଜ୍ଞାସାର ଯୁଗ—ଯେକୌଣସି ଅବସ୍ଥାନ୍ତର ଓ ଦ୍ରୁତ ପରିବର୍ତ୍ତନ ବେଳେ ସର୍ବଦା ଏହିପରି ହୁଏ ।

ଏହିସବୁ କାରଣରୁ ଯୁଦ୍ଧୋତ୍ତର ଦିନସବୁ ଇତିହାସରୂପେ ବିଚାର କରିବା ଆମ ପକ୍ଷରେ ଟିକିଏ କଷ୍ଟକର ହୋଇପଡ଼େ । କିନ୍ତୁ ଆମେ ହୁଏତ ବିଭିନ୍ନ ବିଶ୍ୱାସ ଓ ଭାବଧାରାକୁ ପ୍ରଶ୍ନ କରିପାରୁ ଓ ଆଲୋଚନା କରିପାରୁ ଏବଂ ଏହା କେବଳ ପୁରାତନ ହୋଇଥିବାରୁ କିଛି ଗ୍ରହଣ କରି ନ ପାରୁ; ଏହି ଆଳରେ ଆମେ କେବଳ ଭାବନା ସହିତ ଖେଳା କରିବା ଓ କଠିନ ଚିନ୍ତା କରିବା ପ୍ରତି ପରାଙ୍ମୁଖ ହେବା ହୋଇ ନ ପାରେ—ଏହା ଦ୍ୱାରା ଆମେ ଆମର କର୍ତ୍ତବ୍ୟ କଣ ଜାଣିପାରିବା । ପୃଥିବୀଇତିହାସରେ ଏପରି ଅବସ୍ଥାନ୍ତର ବେଳେ ବିଶେଷ ମନ ଓ ଶରୀର କର୍ମଠ ହେବା ଦରକାର । ଏହି ସମୟରେ ଜୀବନର ନିୟମ କାର୍ଯ୍ୟକ୍ରମ ଜୀବିତ ହୋଇପଡ଼େ ଓ ଦୁଃସାହସ ବଢ଼େ ଏବଂ ନୂତନ ବ୍ୟବସ୍ଥା ଗଠନରେ ଆମେ ସମସ୍ତେ ଭାଗ ନେଇପାରୁ । ଏପରି ସମୟରେ ଯୁବଶକ୍ତି ସର୍ବଦା ପ୍ରଧାନ ଭାଗ ନେଇଛି, କାରଣ ଯେ ଦରୁ ବୁଢ଼ା ହୋଇଗଲେଣି ଓ ପୁରାତନ ବିଶ୍ୱାସରେ ନିର୍ଦ୍ଦିଷ୍ଟ ଓ କଠିନ ହୋଇଗଲେଣି ତାଙ୍କ ଅପେକ୍ଷା ସେମାନେ ଖୁବ୍ ସହଜରେ ପରିବର୍ତ୍ତିତ ଭାବଧାରା ଓ ଅବସ୍ଥା ସହିତ ନିଜକୁ ଖାପଖୁଆଇ ପାରନ୍ତି ।

ସମ୍ଭବତଃ ଏହି ଯୁଦ୍ଧୋତ୍ତର ଦୁନିଆକୁ ଟିକିଏ ବିସ୍ତୃତଭାବରେ ଆଲୋଚନା କଲେ ଭଲ ହେବ । କିନ୍ତୁ ଏହି ଚିଠିରେ ଗୋଟାଏ ସାଧାରଣ ଭାବରେ ଦୃଷ୍ଟିପାତ କରିବି । ୧୯ଶ ଶତାବ୍ଦୀରେ ନେପୋଲିୟନଙ୍କ ପତନ ପରେ ଆମେ ଯେଉଁ ନିରୀକ୍ଷଣ କରିଥିଲେ, ତୋର ମନେଥିବ । ଅନିବାର୍ଯ୍ୟଭାବରେ ଜଣେ ୧୮୧୫ର ଭିଏନା-ସନ୍ଧି ଓ ତାର ଫଳାଫଳ କଥା ଭାବେ ଏବଂ ତାହା ସହିତ ୧୯୧୯ର ଭର୍ସେଇ ସନ୍ଧି ଏବଂ ତାର ଫଳାଫଳ ତୁଳନା କରେ । ଭିଏନା-ସନ୍ଧି କିଛି ସୁଖକର ନ ଥିଲା । ଏହା ହିଁ ଇଉରୋପରେ ଭବିଷ୍ୟତ ଯୁଦ୍ଧର ବୀଜ ବପନ କଲା । ଆମେ ତା ଗତ ଚିଠିରେ ଦେଖିଲେ, ଏହି ଅଭିଜ୍ଞତାରେ ରାଜନୀତିଜ୍ଞମାନଙ୍କର ଶିକ୍ଷା

ହେଲ ନାହିଁ—ସେମାନେ ଭର୍ସେଇ-ସନ୍ଧିକୁ ଅଗ୍ରାହ୍ୟ କଲେ । ଯୁଦ୍ଧୋତ୍ତର ଦୁନିଆ କାଳରେ ଏହି ତଥାକଥିତ ଶାନ୍ତିର ସନ୍ଧିଗୁଡ଼ା ପଡ଼ିଥିଲ ।

ଏହି ଗତ ୧୪ ବର୍ଷ ଭିତରେ କଣ ସବୁ ପ୍ରଧାନ ଘଟଣା ଘଟିଛି ? ମୋ ମନରେ ପ୍ରଧାନ ଏବଂ ସବୁଠାରୁ ହୃଦୟଗ୍ରାହୀ ହେଉଛି ସୋଭିଏଟ୍ ଇଉନିଅନର ଉଦୟ ଓ ଦୃଢ଼ୀକରଣ । ଏହାକୁ ୟୁ. ଏସ୍. ଏସ୍. ଆର. ବା ସାମ୍ୟବାଦୀ ଓ ସୋଭିଏଟ୍ ପ୍ରଜାତନ୍ତ୍ରସଂଘ (Union of Socialist & Soviet Republics) ବୋଲି କହନ୍ତି । ନିଜର ଜୀବନ-ସଂଗ୍ରାମରେ ସୋଭିଏଟ୍ ରୁଷକୁ କିପରି ଅତ୍ୟନ୍ତ କଷ୍ଟର ସମ୍ମୁଖୀନ ହେବାକୁ ପଡ଼ିଥିଲ, ସେକଥା ମୁଁ କହିଛି । ଏହାସତ୍ତ୍ୱେ ଯେ ଏହା ଜୟଲାଭ କରିଥିଲ, ଏହାହିଁ ଅଧୁନିକ ଶତାବ୍ଦୀର ଏକ ବୈଚିତ୍ର୍ୟ । ସୋଭିଏଟ୍ ବ୍ୟବସ୍ଥା ଜାରଶାସିତ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ସମଗ୍ର ଏସିଆ ଅଞ୍ଚଳ—ସାଇବେରିଆରେ ପ୍ରଶାନ୍ତ ମହାସାଗର ପର୍ଯ୍ୟନ୍ତ ଏବଂ ମଧ୍ୟ-ଏସିଆରେ ଭାରତ ସୀମାନ୍ତ ନିକଟ ପର୍ଯ୍ୟନ୍ତ ବ୍ୟାପିଲ । ଅଲଗା ସୋଭିଏଟ୍ ପ୍ରଜାତନ୍ତ୍ରସବୁ ଗଢ଼ାହେଲ; କିନ୍ତୁ ସେସବୁ ଗୋଟିଏ ଇଉନିଅନରେ ସଂଘବଦ୍ଧ ହେଲେ ଏବଂ ଏହାକୁ ହିଁ ୟୁ. ଏସ୍. ଏସ. ଆର. କୁହାଯାଏ । ଏହି ଇଉନିଅନ ଇଉରୋପ ଓ ଏସିଆର ଏକ ବିସ୍ତୃତ ଅଞ୍ଚଳରେ ପ୍ରସାରିତ—ଏହା ପୃଥିବୀର ସମଗ୍ର ସ୍ଥଳଭାଗର ପ୍ରାୟ ଏକଷଷ୍ଠାଂଶ । କ୍ଷେତ୍ର ଖୁବ୍ ବଡ଼; କିନ୍ତୁ ବୃହତ୍ ଆକାର ବୋଇଲେ ବିଶେଷ କିଛି ନୁହେଁ; ରୁଷ ଓ ତାଠୁ ବେଶି ସାଇବେରିଆ ଓ ମଧ୍ୟଏସିଆ ଅଧିକ ପରିମାଣରେ ଅନୁନ୍ନତ ଥିଲ । ସୋଭିଏଟ୍‌ଙ୍କ କାର୍ଯ୍ୟରେ ଦ୍ୱିତୀୟ ଆଶ୍ଚର୍ଯ୍ୟ ହେଉଛି, କେଉଁ ଅଜଣା ଅଞ୍ଚଳମାନଙ୍କୁ ସୁଦ୍ଧା ସେମାନେ ବିରାଟ ଯୋଜନା ଦ୍ୱାରେ ଉନ୍ନତ କରୁଥିଲେ । କୌଣସି ଲୋକଙ୍କର ଏପରି ଦ୍ରୁତ ଉନ୍ନତିର ଦୃଷ୍ଟାନ୍ତ ଇତିହାସରେ ନାହିଁ । ଏପରିକି ମଧ୍ୟ-ଏସିଆର ଅତି ଅନୁନ୍ନତ ଅଞ୍ଚଳସବୁ ସୁଦ୍ଧା ଖୁବ୍ ବେଗରେ ଉନ୍ନତି ଲାଭ କରିଛନ୍ତି—ଆମେ ଭାରତରେ ଏହା ଦେଖିଲେ ଈର୍ଷାନ୍ୱିତ ହୁଏ । ସବୁଠାରୁ ଉଲ୍ଲେଖଯୋଗ୍ୟ ଉନ୍ନତି ହେଉଛି—ଶିକ୍ଷା ଓ ଶିଳ୍ପ କ୍ଷେତ୍ରରେ । ବିରାଟ ପଞ୍ଚବାର୍ଷିକ ଯୋଜନା ଦ୍ୱାରା ଖୁବ ଚଞ୍ଚଳ ଗତିରେ ରୁଷର ଶିଳ୍ପୋଦ୍ୟୋଗ ଅଗ୍ରସର ହେଲ ଏବଂ ବଡ଼ ବଡ଼ କାରଖାନାମାନ ଗଢ଼ାହେଲ । ଏସବୁ ଲୋକଙ୍କ ଉପରେ ବହୁତ ଚାପ ପକାଇଲ । ସେମାନଙ୍କୁ ସୁଖସ୍ୱାଚ୍ଛନ୍ଦ୍ୟ ଏବଂ ଏପରିକି ନିଜର ଆବଶ୍ୟକତା ଛାଡ଼ିବାକୁ ପଡ଼ିଲ; ତାହାହେଲେ ତାଙ୍କ ରୋଜଗାରର ଅଧିକ ଅଂଶ ପ୍ରଥମ ସାମ୍ୟବାଦୀ ଦେଶ ଗଢ଼ିବାରେ ଲଗିପାରିବ । ଏହି ବୋଝ ବିଶେଷ ଭାବରେ କୃଷକଙ୍କ ଉପରେ ପଡ଼ିଲ ।

ଏହି ପ୍ରଗତିଶୀଳ, ଅଗ୍ରଗାମୀ ସୋଭିଏଟ୍ ରାଜ୍ୟ ଏବଂ ସର୍ବଦା ଉପଦ୍ରବ କରୁଥିବା ପଶ୍ଚିମ-ଇଉରୋପ ମଧ୍ୟରେ ପାର୍ଥକ୍ୟଟା ସ୍ପଷ୍ଟ ପରିଲକ୍ଷିତ ହୁଏ । ସମସ୍ତ ଅସୁବିଧା ସତ୍ତ୍ୱେ ପଶ୍ଚିମ-ଇଉରୋପ ଏବେସୁଦ୍ଧା ରୁଷ ଅପେକ୍ଷା ଅଧିକ ଧନୀ ହୋଇ ରହିଛି । ଦୀର୍ଘକାଳ ସମୃଦ୍ଧିଶାଳୀ ଥିବା କାଳରେ ଏହା ବହୁ ପରିମାଣରେ ଚର୍ବି ସଞ୍ଚିତ କରି ରଖିଛି—ଏଥିରେ ଏହା କିଛି କାଳ କଟାଇଦେଇପାରେ । କିନ୍ତୁ ପ୍ରତ୍ୟେକ ଦେଶ ଉପରେ ସେଉଁ ଋଣଭାର

ପଡ଼ିଲା, ଭର୍ସେଇ-ସନ୍ଧି ଅନୁସାରେ ଯେଉଁସବୁ କ୍ଷତିପୂରଣ ଜର୍ମାନୀକୁ ଦେବାକୁ ପଡ଼ିଲା ଏବଂ ଗ୍ରେଟ ବଡ଼ ଶକ୍ତିମାନଙ୍କ ଭିତରେ ବରାବର ବିରୋଧ ଓ ସଂଘର୍ଷ ଫଳରେ ବିଚାରା ଇଉରୋପ ଅବସ୍ଥା ବଡ଼ ସାଂଘାତିକ ହୋଇଗଲା । ଏହି ବିପଦରୁ କିଛି ବାଟ ବାହାର କରିବା ନିମନ୍ତେ ଅସଂଖ୍ୟ ସମ୍ମିଳନୀ ବସିଲା । କିଛି ଉପାୟ ବାହାରିଲା ନାହିଁ ଏବଂ ପ୍ରତିଦିନ ପରିସ୍ଥିତି ଖରାପ ହୋଇଯାଉଥିଲା । ଆଜି ସୋଭିଏଟ୍ ରୁଷକୁ ପଶ୍ଚିମ-ଇଉରୋପ ସହ ତୁଳନା କରିବା ଅର୍ଥ ହେଉଛି ଏକ ପ୍ରାଣଶକ୍ତି ଜୀବନ ଓ ତେଜସ୍ୱୀ ଯୁବକ ବଡ଼ ବୋଝ ବହନ କରିଯିବା ସହ ଏକ ଆଶାହରା ବା ଶକ୍ତିହୀନ ବୃଦ୍ଧଲୋକର ତୁଳନା କରିବା । ବୃଦ୍ଧ ଦର୍ପର ସହ ଅଗ୍ରସର ହେବାକୁ ଚେଷ୍ଟା କରୁଛି; ମାତ୍ର ତାହାର ଗତ ଅନିବାର୍ଯ୍ୟରୂପେ ତାର ବିଲୋପ ସାଧନ କରୁଛି ।

ଯୁଦ୍ଧ ପରେ ସଂଯୁକ୍ତ ରାଷ୍ଟ୍ର ଆମେରିକା ଇଉରୋପୀୟ ସଂକ୍ରାମକ ରୋଗରୁ ଅଲଗା ହେଲା ପରି ବୋଧହେଲା । ୨ଣବର୍ଷ ପର୍ଯ୍ୟନ୍ତ ଏହା ଅସାଧାରଣ ଭାବରେ ଉନ୍ନତି କଲା । ଯୁଦ୍ଧକାଳ ଭିତରେ ଇଉରୋପ ଯେ ଦୁନିଆର ମହାଜନୀ କାରବାରରେ ସର୍ବେସର୍ବା ହୋଇଥିଲା, ସେଇଥିରୁ ତାକୁ ତଡ଼ିଦେଇଥିଲା । ଆମେରିକା ଏବେ ହେଲା ପୃଥିବୀର ମହାଜନ ଏବଂ ସମଗ୍ର ଦୁନିଆ ହେଲା ତାର ଖାତକ । ଆର୍ଥିକ ଦୃଷ୍ଟିରେ ଏହା ସମଗ୍ର ଦୁନିଆରେ ପ୍ରାଧାନ୍ୟ ଲାଭକଲା ଏବଂ କେତେକ ପରିମାଣରେ ଇଂଲଣ୍ଡ ଦିନରୁ ଯେପରି ପୃଥିବୀରୁ କର ଆଦାୟ କରି ବଞ୍ଚୁଥିଲା, ଏହା ବି ସେପରି କରିପାରିଥାନ୍ତା । କିନ୍ତୁ ସେଥିରେ ଦୁଇଟି ଅସୁବିଧା ଥିଲା । ଖାତକ ଦେଶଗୁଡ଼ିକ ବଡ଼ ଖରାପ ଅବସ୍ଥାରେ ଥିଲେ ଏବଂ ତାଙ୍କ କରଜ ନଗଦ ମୁଦ୍ରାରେ ଶୁଝି ପାରିଲେ ନାହିଁ । ବାସ୍ତବିକ ସେମାନେ ଭଲ ଅବସ୍ଥାରେ ଥିଲେ ସୁଦ୍ଧା ଏପରି ବିରାଟ ପରିମାଣ ନଗଦ ମୁଦ୍ରାରେ ଦେଇ ପାରନ୍ତେ ନାହିଁ । କେବଳ ଗୋଟିଏ ବାଟରେ ସେମାନେ ପରିଶୋଧ କରିପାରନ୍ତି, ତାହା ହେଉଛି – ତିଆରି ଜିନିଷସବୁ ଆମେରିକାକୁ ପଠାଇବା ଦ୍ୱାରା । କିନ୍ତୁ ବିଦେଶୀ ଜିନିଷ ଆମେରିକାକୁ ଯିବାଟା ସେ ପସନ୍ଦ କଲା ନାହିଁ ଏବଂ ପ୍ରକାଣ୍ଡ ଶୁଳ୍କ-ପାଚେରୀ ସବୁ ଛିଡ଼ା କରିଦେଲା—ତାହା ଫଳରେ ଏହିସବୁ ଜିନିଷ ପ୍ରବେଶ କରିପାରିଲା ନାହିଁ । ତାହାହେଲେ ଗରିବ ଖାତକ ଦେଶଗୁଡ଼ିକ କିପରି ପରିଶୋଧ କରିବେ ? ଗୋଟାଏ ଉତ୍କୃଷ୍ଟ ଉପାୟ ଦେଖାଦେଲା । ସେମାନଙ୍କଠାରୁ ଯେଉଁ ସୁଧ ପ୍ରାପ୍ୟ ହେଉଛି, ତାହା ଦେବା ସକାଶେ ଆମେରିକା ତାଙ୍କୁ ଅଧିକ ଧନ ଦେବ । କରଜ ଶୁଝିବାର ଏହା ଏକ ଅସାଧାରଣ ପନ୍ଥା; କାରଣ ଏହାର ଅର୍ଥ ଋଣଦାତା ଅଧିକରୁ ଅଧିକ ଦେଇଚାଲିଥିବ ଏବଂ ଋଣ ବୃଦ୍ଧି ହେଉଥିବ । ଏହା ପରିଷ୍କାର ଦେଖାଗଲା ଯେ ଅଧିକାଂଶ ଋଣଗ୍ରସ୍ତ ଦେଶ କେବେ ହେଁ କରଜ ଶୁଝିବାକୁ ସମର୍ଥ ହେବେ ନାହିଁ; ତା ପରେ ହଠାତ୍ ଆମେରିକା ଋଣ ଦେବା ବନ୍ଦ କରିଦେଲା ଏବଂ ସାଙ୍ଗେ ସାଙ୍ଗେ କାଗଜ ନୋଟ ଦର କିଛି କମିଗଲା । ଆଉ ଏକ ଅଦ୍ଭୁତ ଜିନିଷ ବି ଘଟିଲା । ଆମେରିକା, ସମୃଦ୍ଧିଶାଳୀ ଆମେରିକା, ସୁବର୍ଣ୍ଣପୁରୀ ଆମେରିକାରେ ହଠାତ୍ ବହୁସଂଖ୍ୟକ ବେକାର ଶ୍ରମିକ ଅବାର ଦେଖାଗଲା ଏବଂ ଶିଳ୍ପଚକ୍ର ଘୂରିବା ହଠାତ୍ ବନ୍ଦ ହୋଇଗଲା ଏବଂ ଦାରିଦ୍ର୍ୟ ବ୍ୟାପିଲା ।

ଧନୀ ଆମେରିକା ଏପରି କଠିନ ଭାବରେ ଆଘାତ ପାଇଥିଲାବେଳେ ଇଉରୋପର ଅବସ୍ଥା ସହଜେ ଅନୁମାନ କରାଯାଇପାରେ । ପ୍ରତ୍ୟେକ ଦେଶ ବର୍ଦ୍ଧିତ ଶୁଲ୍କ-ହାର, ଅନ୍ୟ ଉପାୟ ଏବଂ ଘରୋଇଆରି ଜିନିଷ ବ୍ୟବହାର କରିବା ପାଇଁ ପ୍ରଚାର କରି ବିଦେଶୀ ଜିନିଷ ପ୍ରବେଶରେ ବାଧା ଦେବାକୁ ଲାଗିଲେ । ପ୍ରତ୍ୟେକ ଦେଶ ବିକିବାକୁ ଚାହିଁଲେ, କିଣିବାକୁ ନୁହେଁ ଅଥବା ଯେତେ କମ୍ ସମ୍ଭବ କିଣିବାକୁ ଚାହିଁଲେ । ଆନ୍ତର୍ଜାତୀୟ ବାଣିଜ୍ୟରେ କ୍ଷତି ନ ପହଞ୍ଚାଇ ଏପରି ଜିନିଷ ବେଶିଦିନ ଚାଲିପାରିବ ନାହିଁ; କାରଣ ବେପାର ଓ ବାଣିଜ୍ୟ ବିନିମୟ ଉପରେ ନିର୍ଭର କରେ । ଏହି ନୀତିକୁ ଆର୍ଥନୀତିକ ଜାତୀୟବାଦ କହନ୍ତି; ଏହା ସମସ୍ତ ଦେଶରେ ବିସ୍ତାର କଲା ଏବଂ ସେହି ଭାବରେ ଅନ୍ୟ ପ୍ରକାର ଉଚ୍ଚତ ଜାତୀୟବାଦ ମଧ୍ୟ । ବେପାର ଓ ବାଣିଜ୍ୟ ହ୍ରାସ ହେବା ସଙ୍ଗେ ସଙ୍ଗେ ପ୍ରତ୍ୟେକ ଦେଶର ଅସୁବିଧା ବଢ଼ିଲା ଏବଂ ସାମ୍ରାଜ୍ୟବାଦୀ ଦେଶସବୁ ଅନ୍ୟ ଦେଶରେ ଅଧିକ ସାମ୍ରାଜ୍ୟବାଦୀ ଶୋଷଣ ଚଳାଇଲେ ଏବଂ ନିଜ ଘରେ ଶ୍ରମିକମାନଙ୍କର ମଜୁରି କାଟି ଗୁଜୁରାଣ ମେଣ୍ଟାଇବାକୁ ଚେଷ୍ଟା କଲେ । ପ୍ରତିଦ୍ୱନ୍ଦୀ ସାମ୍ରାଜ୍ୟବାଦସବୁ ପୃଥିବୀର ବିଭିନ୍ନ ଅଞ୍ଚଳ ଶୋଷଣ କରିବା ଅଭିଳାଷ ଓ ପ୍ରଚେଷ୍ଟା ଯୋଗୁ ଅଧିକରୁ ଅଧିକ ସଂଘର୍ଷ ଉପୁଜିଲା । ଲିଗ୍ ଅଫ୍ ନେସନ୍ସ ବଡ଼ ସାଧୁଭାବରେ ନିରସ୍ତ୍ରୀକରଣ କଥା କହୁଥାଏ ଏବଂ କିଛି କରୁ ନ ଥିବାବେଳେ ଯୁଦ୍ଧ ଆତଙ୍କ ନିକଟତର ହେଲା ପରି ବୋଧହେଲା । ପୁନର୍ବାର ଦେଶସବୁ ଅନିବାର୍ଯ୍ୟ ସଂଗ୍ରାମ ପାଇଁ ଦଳ ବାନ୍ଧିବାକୁ ଆରମ୍ଭ କଲେ ।

ଯେଉଁ କାଳରେ ପୁଞ୍ଜିବାଦୀ ସଭ୍ୟତା ପଶ୍ଚିମ-ଇଉରୋପ ଓ ଆମେରିକାରେ ରାଜୁତି କରୁଥିଲା ଏବଂ ପୃଥିବୀ ଅବଶିଷ୍ଟ ଅଞ୍ଚଳ ଉପରେ ପ୍ରାଧାନ୍ୟ କରୁଥିଲା—ଆମେ ସେକାଳ ଆଲୋଚନାର ଶେଷ ଅବସ୍ଥାରେ ପହଞ୍ଚିଲେ । ଯୁଦ୍ଧ ପରେ ପ୍ରଥମ ଦଶ ବର୍ଷ ପର୍ଯ୍ୟନ୍ତ ପୁଞ୍ଜିବାଦ ରୋଗମୁକ୍ତ ହେବ ଏବଂ ଆହୁରି ଦୀର୍ଘକାଳ ପର୍ଯ୍ୟନ୍ତ ବୋଧହୁଏ ଚଳିବ ବୋଲି ବୋଧହେଲା । କିନ୍ତୁ ଗତ ୨।୩ ବର୍ଷରେ ଏହା ଖୁବ୍ ସନ୍ଦେହଜନକ ହୋଇପଡ଼ିଛି । ପୁଞ୍ଜିବାଦୀ ଦେଶ ଭିତରେ ପ୍ରତିଯୋଗିତା ଯେ ଖାଲି ବିପଜ୍ଜନକ ଆକାର ଧାରଣ କଲା ତାହା ନୁହେଁ, ତାହା ସଙ୍ଗେ ସଙ୍ଗେ ପ୍ରତ୍ୟେକ ରାଜ୍ୟ ଭିତରେ, ଶ୍ରେଣୀମାନଙ୍କ ଭିତରେ, ଶ୍ରମିକ ଓ ଶାସନ ଉପରେ କର୍ତ୍ତୃତ୍ୱ କରୁଥିବା ପୁଞ୍ଜିବାଦୀ ମାଲିକ ଶ୍ରେଣୀଙ୍କ ଭିତରେ ସଂଘର୍ଷ ଗୁରୁତର ଆକାର ଧାରଣ କଲା । ଏହିସବୁ ଅବସ୍ଥା ଖରାପ ହେଲାରୁ ଜାଗ୍ରତ ଶ୍ରମିକଙ୍କୁ ଦମନ କରିବା ନିମନ୍ତେ ମାଲିକଶ୍ରେଣୀ ଶେଷ ଉଦ୍ୟମ କଲେ । ଏହା ଫାସିଜିମ ଆକାର ଧାରଣ କଲା । ଯେଉଁଠାରେ ଶ୍ରେଣୀ ଭିତରେ ସଂଘର୍ଷ ଗୁରୁତର ଆକାର ଧାରଣ କରେ ଏବଂ ମାଲିକ ଶ୍ରେଣୀ ତାଙ୍କର ସୁବିଧାଭୋଗୀ ସ୍ଥାନ ହରାଇବା ପରି ବିପଦର ସମ୍ମୁଖୀନ ହୁଅନ୍ତି, ସେଠି ଫାସିଜିମ୍‌ର ଆବିର୍ଭାବ ହୁଏ ।

ଯୁଦ୍ଧର ଅଳ୍ପଦିନ ପରେ ଇଟାଲୀରେ ଫାସିଜମ୍ ଆରମ୍ଭ ହେଲା । ଶ୍ରମିକମାନେ ଆସୁବିଧା ବାହାରେ ଯାଉଥିବାବେଳେ ମୁସୋଲିନୀଙ୍କ ନେତୃତ୍ୱରେ ଫାସିଷ୍ଟମାନେ କ୍ଷମତା ହାସଲ କଲେ ଏବଂ ସେହିଦିନଠାରୁ ସେମାନେ କ୍ଷମତା ପାଇ ରହିଛନ୍ତି । ଫାସିଜମ୍ ଅର୍ଥ ନଗ୍ନ ଉତ୍କଟେଚ୍ଛାଚାରିତା । ଏହା ପ୍ରକାଶ୍ୟ ଭାବରେ ଗଣତାନ୍ତ୍ରିକ ଭାବକୁ ଘୃଣା କରେ । ଇଉରୋପର ଅନେକ ଦେଶରେ ଅଳ୍ପାଧିକ ପରିମାଣରେ ଫାସିଷ୍ଟ ପ୍ରଣାଳୀ ବିସ୍ତାର ଲଭିଛି ଏବଂ ଉତ୍କଟେଚ୍ଛାଚାରିତା ସେଠାରେ ଏକ ସାଧାରଣ ଘଟଣା । ୧୯୩୩ ଆରମ୍ଭରେ ଜର୍ମାନୀର ଫାସିଜମ୍ ଜୟଲାଭ କଲା—୧୯୧୮ରେ ଘୋଷିତ ଶିଶୁ ପ୍ରଜାତନ୍ତ୍ର ଶେଷ ପାଇଗଲା ଏବଂ ଶ୍ରମିକ ଆନ୍ଦୋଳନ ଦବାଇବା ନିମନ୍ତେ ଅତି ବର୍ବର ପ୍ରଣାଳୀ ପ୍ରୟୋଗ କରାଗଲା ।

ତେଣୁ ଇଉରୋପର ଫାସିଜମ୍ ଗଣତନ୍ତ୍ର ଓ ସାମ୍ୟବାଦ ଶକ୍ତିର ସମ୍ମୁଖୀନ ହୋଇଛି ଏବଂ ଏହା ସଙ୍ଗେ ସଙ୍ଗେ ପୁଞ୍ଜିବାଦୀ ଶକ୍ତିମାନେ ପରସ୍ପର ପ୍ରତି ଦୃଷ୍ଟିପାତ କରି ପରସ୍ପର ସହିତ ଲଢ଼ାଇ କରିବା ନିମନ୍ତେ ପ୍ରସ୍ତୁତ ହେଉଛନ୍ତି । ଅଧିକନ୍ତୁ ମଧ୍ୟ ପୁଞ୍ଜିବାଦରେ ଏକସଙ୍ଗରେ ପ୍ରାଚୁର୍ଯ୍ୟ ଓ ଦାରିଦ୍ର୍ୟର ଅପୂର୍ବ ଦୃଶ୍ୟ ଦେଖିବାକୁ ମିଳେ । ଖାଦ୍ୟପଦାର୍ଥ ପଚିଯାଉଛି ଏବଂ ଏପରିକି ପୋଡ଼ି ଦିଆଯାଉଛି ଓ ଧ୍ୱଂସ କରାଯାଉଛି; କିନ୍ତୁ ଏଣେ ଲୋକ ଖାଦ୍ୟ ଅଭାବରେ ସଡ଼ୁଛନ୍ତି ।

ଗତ କେତେବର୍ଷ ଭିତରେ ଇଉରୋପର ଏକ ପୁରାତନ ଦେଶ ସ୍ପେନ୍ ରାଜ୍ୟ ପ୍ରଜାତନ୍ତ୍ରରେ ପରିଣତ ହୋଇଛି ଏବଂ ହାପସ୍‌ବର୍ଗ ବୋବର୍ଣ୍ଣ ଶାସକଙ୍କୁ ତଡ଼ିଦେଇଛି । ତେଣୁ ଇଉରୋପ ଏ ଦୁନିଆରେ ଗୋଟିଏ ରାଜା ବନିଯାଇଛି ।

ଯୁଦ୍ଧପର ୧୪ ବର୍ଷ ଭିତରେ ଘଟିଥିବା ପ୍ରଧାନ ଘଟଣାମାନଙ୍କ ଭିତରୁ ତିନୋଟି ବିଷୟ ମୁଁ ତତେ କହିଲି; ସୋଭିଏଟ୍ ଇଉନିଅନର ଉଦୟ, ଆମେରିକାର ଆର୍ଥନୀତିକ ଜଗତରେ କର୍ତ୍ତୃତ୍ୱ ଏବଂ ତାର ପ୍ରଚଳିତ ସଂକଟ, ଇଉରୋପୀୟ ଦେଶର ଜଟିଳତା । ଚତୁର୍ଥ ଉଲ୍ଲେଖଯୋଗ୍ୟ ଘଟଣା ହେଉଛି —ପ୍ରାଚ୍ୟ ଦେଶମାନଙ୍କର ପୁର୍ଣ୍ଣ ଜାଗ୍ରତ ଓ ସ୍ୱାଧୀନତା ପାଇବା ନିମନ୍ତେ ସେମାନଙ୍କର ଉଗ୍ର ଉଦ୍ୟମ । ପ୍ରାଚ୍ୟ ନିର୍ଦ୍ଦିଷ୍ଟଭାବରେ ପୃଥିବୀ ରାଜନୀତିରେ ପ୍ରବେଶ କଲା । ଏହି ପୂର୍ବୀୟ ଦେଶମାନଙ୍କୁ ଦୁଇ ଶ୍ରେଣୀରେ ବିଭକ୍ତ କରାଯାଇ ପାରେ; ଏକ ହେଉଛି, ଯେଉଁ ଦେଶସବୁକୁ ସ୍ୱାଧୀନ ବୋଲି ଧରାଯାଏ ଏବଂ ଦ୍ୱିତୀୟ ହେଉଛି, ଉପନିବେଶ ଦେଶ — ଯାହା କୌଣସି ସାମ୍ରାଜ୍ୟବାଦୀ ଶକ୍ତିର କର୍ତ୍ତୃତ୍ୱାଧୀନରେ ଥାଏ । ଏସିଆ ଓ ଉତ୍ତର ଆଫ୍ରିକାର ଏହିସବୁ ଦେଶରେ ଜାତୀୟତା ଦୃଢ଼ଭାବରେ ବୃଦ୍ଧି ପାଇଛି ଏବଂ ସ୍ୱାଧୀନତା ପାଇଁ ଆକାଙ୍କ୍ଷା ଜୋରଦାର ଓ ଉଗ୍ର ହୋଇଛି । ସବୁ ଦେଶରେ ଶକ୍ତିଶାଳୀ ଆନ୍ଦୋଳନ ହୋଇଛି ଏବଂ ଏପରିକି କେତେକ ସ୍ଥାନରେ ପାଶ୍ଚାତ୍ୟ ସାମ୍ରାଜ୍ୟବାଦ ବିରୁଦ୍ଧରେ ବିଦ୍ରୋହ ହୋଇଛି । ଅନେକ ଦେଶ ସୋଭିଏଟ୍ ଇଉନିୟନଠାରୁ ପ୍ରତ୍ୟକ୍ଷ ସାହାଯ୍ୟ ଓ ( ସେଥିରୁ ଅଧିକନ୍ତୁ ଅଧିକ ହେଉଛି ) ସଂକଟ ସମୟରେ ନୈତିକ ସାହାଯ୍ୟ ମଧ୍ୟ ପାଇଛନ୍ତି ।

ସର୍ବାପେକ୍ଷା ଅଲୌକିକ ଭାବରେ ପୁନର୍ଜନ୍ମ ହୋଇଛି ତୁର୍କୀ ଦେଶର; ଏଥିପାଇଁ ଅଧିକ ପରିମାଣରେ ଖ୍ୟାତ ହେଉଛି ମୋସ୍ତାଫା କେମାଲପାଶାଙ୍କର । ସମସ୍ତେ ତାଙ୍କ ବିରୁଦ୍ଧରେ ଗଲବେଳେ ସୁଦ୍ଧା ଏହି ନାୟକ ନେତା ବଶ୍ୟତା ସ୍ୱୀକାର କରିବାକୁ ଅସ୍ୱୀକାର କଲେ । ସେ ସେ ନିଜ ଦେଶ ଲାଗି ଖାଲି ସ୍ୱାଧୀନତା ଅର୍ଜନ କଲେ ତାହା ନୁହେଁ; କିନ୍ତୁ ସେ ଏହାକୁ ଆଧୁନିକ କରିଦେଲେ ଏବଂ ଏପରି ପରିବର୍ତ୍ତନ କଲେ ଯେ ତାହାକୁ ଆଉ ଚିହ୍ନି ହୁଏ ନାହିଁ । ସେ ସୁଲତାନ୍ ପଦ ଓ ଖିଲଫତ୍, ନାରୀମାନଙ୍କର ପରଦା ଓ ଏପରି ଅନେକ ପୁରୁଣା ପ୍ରଥା ଲୋପ କରିଦେଲେ । ସୋଭିଏଟ୍‌ର ନୈତିକ ଓ ପ୍ରକୃତ ସମର୍ଥନ ତାଙ୍କ ଖୁବ୍ ସହାୟକ ହୋଇଥିଲା । ପାରସ୍ୟ (ଇରାନ) ବ୍ରିଟିଶ ପ୍ରଭାବ ଦୂରକରିବା ନିମନ୍ତେ ଯେଉଁ ପ୍ରଚେଷ୍ଟା କରିଥିଲା, ସେଥିରେ ମଧ୍ୟ ସୋଭିଏଟ୍ ସାହାଯ୍ୟ ସେ ପାଇଥିଲା । ସେଠି ମଧ୍ୟ ଜଣେ ବଳିଷ୍ଠ ବ୍ୟକ୍ତି ରେଜା ଖାଁ ବାହାରିଲେ ଏବଂ ସେ ଆଜି ଶାସକ ହୋଇ ରହିଛନ୍ତି । ଆଫଗାନିସ୍ତାନ ମଧ୍ୟ ଏହି କାଳ ଭିତରେ ନିଜର ପୂର୍ଣ୍ଣ ସ୍ୱାଧୀନତା ସ୍ଥାପନ କରିବାରେ କୃତକାର୍ଯ୍ୟ ହେଲା ।

ଆରବ ଛଡ଼ା ଅରବୀୟ ଦେଶସବୁ ଏବେସୁଦ୍ଧା ବିଦେଶୀ କର୍ତ୍ତୃତ୍ୱରେ ରହିଛି । ଆରବମାନଙ୍କର ମିଳିତ ହେବା ଦାବୀ ପୂରଣ ହୋଇ ନାହିଁ । ସୁଲତାନ ଇବନ୍ ସାଉଦଙ୍କ ଅଧୀନରେ ଆରବର ବହୁ ଅଞ୍ଚଳ ସ୍ୱତନ୍ତ୍ର ହୋଇଛି । ଇରାକ୍ କାଗଜରେ ସ୍ୱାଧୀନ ହୋଇଛି; ମାତ୍ର ପ୍ରକୃତରେ ଏହା ବ୍ରିଟିଶ ପ୍ରଭାବ ଓ କର୍ତ୍ତୃତ୍ୱ ଭିତରେ ରହିଛି । ପାଲେଷ୍ଟାଇନ୍ ଓ ଟ୍ରାନ୍ସ ଯୋର୍ଡାନ୍ 'ବ୍ରିଟିଶ ମାଣ୍ଡେଟ' ବା ଶାସନାଧୀନ ଦେଶ ଏବଂ ସିରିଆ 'ଫରାସୀ ମାଣ୍ଡେଟ୍' ବା ଶାସନାଧୀନ ଦେଶ ହୋଇ ରହିଛି । ଫରାସୀଙ୍କ ବିରୁଦ୍ଧରେ ସିରିଆରେ ଏକ ଅସାଧାରଣ ନାୟକ ବିଦ୍ରୋହ ହୋଇଥିଲା ଏବଂ ଏହା ଆଂଶିକ ଭାବରେ ସଫଳ ହେଲା । ଇଜିପ୍ଟରେ ମଧ୍ୟ ବିଦ୍ରୋହ ହେଲା ଏବଂ ବ୍ରିଟିଶଙ୍କ ବିରୁଦ୍ଧରେ ଦୀର୍ଘକାଳବ୍ୟାପୀ ସଂଗ୍ରାମ ଚାଲିଲା । ଯଦିଓ ଇଜିପ୍ଟ ସ୍ୱାଧୀନ ବୋଲି କୁହାଯାଉଛି ଏବଂ ବ୍ରିଟିଶଙ୍କ ସମର୍ଥନରେ ସେଠି ଜଣେ ରାଜା ରାଜୁତି କରୁଛନ୍ତି, ତଥାପି ଏହି ସଂଗ୍ରାମ ଚାଲିଛି । ଉତ୍ତର-ଆଫ୍ରିକାର ସୁଦୂର ପଶ୍ଚିମରେ ମରକ୍କୋରେ ଅବଦୁଲ କରିମଙ୍କ ନେତୃତ୍ୱରେ ସ୍ୱାଧୀନତା ପାଇଁ ନାୟକ ସଂଗ୍ରାମ ମଧ୍ୟ ହେଲା । ସେ ସ୍ପେନକୁ ତଡ଼ିଦେବାରେ ସମର୍ଥ ହେଲେ; କିନ୍ତୁ ପରେ ପୂର୍ଣ୍ଣ ଶକ୍ତି ନେଇ ଫରାସୀ ତାଙ୍କୁ ଦବାଇଦେଲା ।

ଏସିଆ ଓ ଆଫ୍ରିକା ଦେଶର ଏହିସବୁ ସ୍ୱାଧୀନତା ସଂଗ୍ରାମରେ ନୂତନ ଭାବ କିପରି ବିସ୍ତୃତ ହୋଇଛି ଏବଂ ଏକସଙ୍ଗରେ ପ୍ରାଚ୍ୟର ସୁଦୂର ଦେଶର ନରନାରୀଙ୍କ ମନ ସ୍ପର୍ଶ କରିଛି, ଏହା ଦେଖାଇ ଦେଉଛି । ଦୁଇଟି ଦେଶ ଏଥିରୁ ପ୍ରଧାନ; କାରଣ ତାଙ୍କର ବିଶ୍ୱଖ୍ୟାତ ରହିଛି —ଏହା ହେଉଛି ଚୀନ ଓ ଭାରତ । ଏହି ଦୁଇଟିରୁ କୌଣସିଟିରେ ଆମୂଳ ପରିବର୍ତ୍ତନ ହେଲେ ପୃଥିବୀର ସମସ୍ତ ପ୍ରଧାନ-ଶକ୍ତି ପ୍ରଥାକୁ ସ୍ପର୍ଶ କରିବ; ଏହାର ପୃଥିବୀ ରାଜନୀତିରେ ଅସୀମ ପରିଣତି ହେବ । ତେଣୁ ଚୀନ ଓ ଭାରତରେ ସଂଗ୍ରାମ କେବଳ ଏହିସବୁ ଘଟେଇ

ସଂଗ୍ରାମ ଅପେକ୍ଷା ବହୁତ ବେଶି । ଚୀନର ବିଜୟ ଅର୍ଥ ଏକ ବିରାଟ ଦେଶ ସ୍ୱାଧୀନ ହୋଇଯିବ —ବର୍ତ୍ତମାନ ଦୁନିଆର କ୍ଷମତା ସମତୁଲ ନୀତିରେ ବହୁ ବିଭ୍ରାଟ ଘଟିଯିବ । ଏହାର ଅର୍ଥ ଚୀନରେ ସମ୍ରାଜ୍ୟବାଦୀ ଶକ୍ତିଙ୍କର ଶୋଷଣ ଆପଣାଛାଏଁ ବନ୍ଦ ହୋଇଯିବ । ଭାରତର ସଫଳତା ବୋଇଲେ ଫଳଦାୟକ ଭାବରେ ଏକ ବିଶାଳ ରାଜ୍ୟର ଆବିର୍ଭାବ ଏବଂ ଅନିବାର୍ଯ୍ୟ ରୂପେ ଏହାର ଅର୍ଥ ହେଉଛି ବ୍ରିଟିଶ ସାମ୍ରାଜ୍ୟବାଦର ଶେଷ ।

ଗତ ଦଶବର୍ଷ ଭିତରେ ଚୀନରେ ବହୁତ ଉତ୍‌ଥାନ ପତନ ହୋଇଛି । କୋମିନ-ଟାଙ୍ଗ ଓ ଚୀନା କମ୍ୟୁନିଷ୍ଟଙ୍କ ଭିତରେ ମିତ୍ରତା ଭାଙ୍ଗି ଯାଇଛି ଏବଂ ସେହିଦିନଠାରୁ ଚୀନ ଟୁଚୁନ ଓ ସେହି ପ୍ରକାର ଦସ୍ୟୁପତିମାନଙ୍କର ଶିକାର ହୋଇ ରହିଛି; ଚୀନରେ ବିଶୃଙ୍ଖଳା ଜାରିରଖିବା ନିମନ୍ତେ ଇଚ୍ଛା କରୁଥିବା ବିଦେଶୀ ଶକ୍ତିଗୁଡ଼ିକ ଏମାନଙ୍କୁ ସାହାଯ୍ୟ କରୁଛନ୍ତି । ଗତ ଦୁଇବର୍ଷ ହେଲା ଜାପାନୀମାନେ ପ୍ରକୃତରେ ଚୀନ ଆକ୍ରମଣ କରିଛନ୍ତି ଏବଂ କେତେକ ପ୍ରଦେଶ ଦଖଲ କରି ଯାଇଛନ୍ତି । ବେଆଇନୀ ଯୁଦ୍ଧ ଏବେ ସୁଦ୍ଧା ଚାଲିଛି । ଇତ୍ୟବସରରେ ଚୀନ ଭିତରେ ବିସ୍ତୃତ ଅଞ୍ଚଳ କମ୍ୟୁନିଷ୍ଟ ହୋଇଯାଇଛି ଏବଂ ସେଠାରେ ଏକ ପ୍ରକାର ସୋଭିଏଟ୍ ସରକାର ଚାଲୁଛି ।

ଭାରତରେ ଗତ ୧୪ ବର୍ଷ ଖୁବ୍ ପୂର୍ଣ୍ଣତା ପ୍ରାପ୍ତ ହୋଇଛି ଏବଂ ଏକ ଉଗ୍ର ଅଥଚ ଶାନ୍ତିପୂର୍ଣ୍ଣ ଜାତୀୟତା ଦେଖାଦେଇଛି । ମହାଯୁଦ୍ଧର ଅଳ୍ପଦିନ ପରେ ବହୁତ ସଂସ୍କାର ଆଶା ପୋଷଣ କରାଯାଉଥିବାବେଳେ ପଞ୍ଜାବରେ ସାମରିକ ଆଇନ ଜାରିହେଲା ଏବଂ ଜାଲିଆନାବାଲାବାଗରେ ଭୀଷଣ ହତ୍ୟାକାଣ୍ଡ ଘଟିଲା । ଏଥିରେ କ୍ରୁଦ୍ଧ ହୋଇ ଏବଂ ଏହା ସାଙ୍ଗକୁ ତୁର୍କୀ ଓ ଖିଲାଫତ ପ୍ରତି ବ୍ୟବହାରରେ ମୁସଲମାନଙ୍କର ଅସନ୍ତୋଷ ହେତୁ ଗାନ୍ଧୀଙ୍କ ନେତୃତ୍ୱରେ ୧୯୨୦-୨୨ରେ ଅସହଯୋଗ ଆନ୍ଦୋଳନ ଆରମ୍ଭ ହେଲା । ବାସ୍ତବିକ ୧୯୨୦ ପରଠାରୁ ଗାନ୍ଧୀ ଭାରତ ଜାତୀୟତାବାଦର ଅପ୍ରତିଦ୍ୱନ୍ଦୀ ନେତା ହୋଇ ରହିଛନ୍ତି । ଏହା ହିଁ ଭାରତରେ ଗାନ୍ଧୀଯୁଗ ଏବଂ ତାଙ୍କର ଶାନ୍ତିପୂର୍ଣ୍ଣ ବିଦ୍ରୋହର ନୂତନତ୍ୱ ଓ ସାମର୍ଥ୍ୟ ହେତୁ ଏହା ପୃଥିବୀର ଦୃଷ୍ଟି ଆକର୍ଷଣ କରିପାରୁଛି । ଅନେକଦିନ ନୀରବ କାର୍ଯ୍ୟ ଓ ଆୟୋଜନ ପରେ ୧୯୩୦ରେ ସ୍ୱାଧୀନତା ସଂଗ୍ରାମ ଆରମ୍ଭ ହେଲା—କଂଗ୍ରେସ ନିର୍ଦ୍ଦିଷ୍ଟଭାବରେ ପୂର୍ଣ୍ଣ ସ୍ୱାଧୀନତା ଲକ୍ଷ୍ୟ ଗ୍ରହଣ କଲା । ସେହିକାଳରୁ ବାରମ୍ବାର ଆଇନଅମାନ୍ୟ ହୋଇଛି ଏବଂ ଜେଲ ଭରିଯାଇଛି ଏବଂ ଆହୁରି ଅନେକ କଥା ଘଟିଛି—ତୋତେ ସେକଥା ଜଣା । ଇତ୍ୟବସରରେ ଗ୍ରେଟ ବ୍ରିଟେନ ସମ୍ଭାବ୍ୟରୀ ଯେତେ ପାରନ୍ତି, ସେତେ ଲୋକଙ୍କୁ ହାତ କରିବା ପାଇଁ ଏବଂ ଜାତୀୟ ଆନ୍ଦୋଳନକୁ ଦବାଇବା ନିମନ୍ତେ ବ୍ରିଟିଶ ନିଜର ନୀତି ଚଳାଇ ଆସିଛି ।

୧୯୩୧ରେ ବର୍ମାରେ ଅନାହାରକ୍ଲିଷ୍ଟ କୃଷକଙ୍କର ବଡ଼ ବିଦ୍ରୋହ ହୋଇଥିଲା । ଅତ୍ୟନ୍ତ କ୍ରୂରଭାବରେ ଏହା ଦମନ କରିଗଲେ । ଜାଭା ଓ ଡଚ ଇଣ୍ଡିଜରେ ମଧ୍ୟ ବିଦ୍ରୋହ

ହୋଇଥିଲା । ଶ୍ୟାମରେ ମଧ୍ୟ ଶୃଙ୍ଖଳା ସୃଷ୍ଟି ହେଲା ଏବଂ କେତେକ ପରିବର୍ତ୍ତନ ହୋଇ ରଜାଙ୍କ କ୍ଷମତା ସୀମାବଦ୍ଧ ହୋଇଯାଇଛି । ଫରାସୀ ଇଣ୍ଡୋ-ଚୀନରେ ଜାତୀୟତା ଗତିଶୀଳ ହେଲା ।

ଏହିରୂପେ ସମଗ୍ର ପ୍ରାଚ୍ୟରେ ଜାତୀୟତା ଅଭିବ୍ୟକ୍ତ ପାଇଁ ସଂଗ୍ରାମ କରୁଛି ଏବଂ କେତେକ ସ୍ଥଳରେ ଟିକିଏ କମ୍ୟୁନିଜମ୍ ସହ ମିଶ୍ରିତ ହୋଇଛି । ଏହାଙ୍କ ଭିତରେ ସାଧାରଣ ଭାବରେ ସାମ୍ରାଜ୍ୟବାଦ ପ୍ରତି ଘୃଣା ଛଡ଼ା ଆଉ କିଛି ସାମଞ୍ଜସ୍ୟ ନାହିଁ । ସୋଭିଏଟ୍ ରୁଷର ଇଉନିଅନ ଭିତରେ ଓ ବାହାରର ସବୁ ପ୍ରାଚ୍ୟଦେଶ ପ୍ରତି ବିଚକ୍ଷଣ ଓ ଉଦାର ନୀତି ହେତୁ ତଥା ଅଣକମ୍ୟୁନିଷ୍ଟ ଦେଶମାନଙ୍କରେ ସୁଦ୍ଧା ତାର ବହୁ ବନ୍ଧୁ ପାଲିଛନ୍ତି ।

ଆଧୁନିକ କାଳରେ ଏକ ଉଲ୍ଲେଖଯୋଗ୍ୟ ଘଟଣା ହେଉଛି, ନାରୀମାନେ ଯେଉଁସବୁ ବନ୍ଧନ, ସାମାଜିକ, ଆଇନଗତ ଓ ପ୍ରଚଳିତ ପ୍ରଥାରେ ବାନ୍ଧି ହୋଇଥିଲେ ସେଥିରୁ ମୁକ୍ତ ଲଭିଲେ । ପଶ୍ଚିମରେ ମହାଯୁଦ୍ଧ ଏହାକୁ ଏକ ଭୀଷଣ ଧକ୍କା ଦେଲା ଏବଂ ଏପରିକି ପ୍ରାଚ୍ୟରେ ତୁର୍କୀଠାରୁ ଆରମ୍ଭ କରି ଭାରତ ଓ ଚୀନ ପର୍ଯ୍ୟନ୍ତ ନାରୀମାନେ ଜାଗ୍ରତ ହେଲେଣି ଏବଂ ଜାତୀୟ ଓ ସାମାଜିକ କାର୍ଯ୍ୟ କରୁଛନ୍ତି ଓ ସାହସିକଭାବରେ ସେଥିରେ ଭାଗ ନେଉଛନ୍ତି ।

ଆମେ ଏପରି କାଳରେ ବାସ କରୁଛେ । ପ୍ରତିଦିନ ପରିବର୍ତ୍ତନ ବା ପ୍ରଧାନ ଘଟଣା— ଜାତି ଜାତି ଭିତରେ ବିବାଦ, ପୁଞ୍ଜିବାଦ ଓ ସାମ୍ୟବାଦ ଭିତରେ ସଂଘର୍ଷ, ଫାସିଜମ୍ ଓ ଗଣତନ୍ତ୍ର ଭିତରେ ସଂଘର୍ଷ; କ୍ରମବର୍ଦ୍ଧିଷ୍ଣୁ ଦାରିଦ୍ର୍ୟ ଓ ଅଭାବ ଏବଂ ସର୍ବୋପରି ସର୍ବଦା ବିସ୍ତୃତ ଯୁଦ୍ଧର ଛାୟା ଲାଗିଥିବାର ସମ୍ବାଦ ମିଳୁଛି ।

ଏହା ଇତିହାସର ଏକ ବିଶୃଙ୍ଖଳାକର କାଳ ଏବଂ ବଞ୍ଚିରହି ଏଥିରେ ଭାଗ ନେବା ଭଲ—ଯଦିଓ ଏପରି ଭାଗନେବା ଫଳରେ ଡେରାଡୁନ ଜେଲରେ ନିର୍ଜ୍ଜନତା ଭୋଗିବାକୁ ପଡ଼ିପାରେ ।

## ୧୯୭ : ପ୍ରଜାତନ୍ତ୍ର ଲାଗି ଆୟର୍ଲାଣ୍ଡର ସଂଗ୍ରାମ

ଏପ୍ରିଲ ୨୮, ୧୯୩୩

ଆମେ ଏବେ ଟିକିଏ ବିସ୍ତୃତଭାବରେ ଆଧୁନିକ କାଳର କେତେକ ପ୍ରଧାନ ଘଟଣା ବିଚାର କରିବା । ପ୍ରଥମ ଆୟର୍ଲାଣ୍ଡଠାରୁ ଆରମ୍ଭ କରିବା । ବିଶ୍ୱଇତିହାସ ଓ ବିଶ୍ୱରାଜନୀତି ଦୃଷ୍ଟିରୁ ଇଉରୋପର ସୁଦୂର ପଶ୍ଚିମରେ ଏହି କ୍ଷୁଦ୍ର ଦେଶଟିର ବର୍ତ୍ତମାନ ଯେପରି

ବିଶେଷ ଗୁରୁତ୍ୱ ନାହିଁ । କିନ୍ତୁ ଏହା ଏକ ସାହସୀ ଓ ଅଦମ୍ୟ ଜାତି । ବ୍ରିଟିଶ ସାମ୍ରାଜ୍ୟର ସକଳ ଶକ୍ତି ଏହାର ଭାବକୁ ଭାଙ୍ଗିଦେଇପାରି ନାହିଁ କିମ୍ବା ଏହାକୁ ବଶ କରି ପାରି ନାହିଁ ।

ମହାସମରର ଠିକ୍ ପୂର୍ବରୁ ବ୍ରିଟିଶ ପାର୍ଲିଆମେଣ୍ଟରେ ଆୟର୍ଲଣ୍ଡ ସମ୍ବନ୍ଧରେ ଯେଉଁ ହୋମରୁଲ ବିଲ୍ ପାଶ୍ ହୋଇଥିଲା, ସେ ବିଷୟ ମୁଁ ପୂର୍ବ ଚିଠିରେ କହିଥିଲି । ଅଲଷ୍ଟରର ପ୍ରୋଟେଷ୍ଟାଣ୍ଟ ନେତା ଓ ଇଂଲଣ୍ଡର କାଠଦଳ ଏଥିରେ ଅସନ୍ତୋଷ ପ୍ରକାଶ କଲେ ଏବଂ ଏହା ବିରୁଦ୍ଧରେ ଏକ ବ୍ୟବସ୍ଥିତ ବିଦ୍ରୋହ ଆରମ୍ଭ ହେଲା । ସେହିହେତୁ ଦରକାର ହେଲେ ଅଲଷ୍ଟର ବିରୁଦ୍ଧରେ ଲଢ଼ାଇ କରିବା ନିମନ୍ତେ ଦକ୍ଷିଣ-ଆଇରିଶ୍‌ମାନେ ମଧ୍ୟ ତାଙ୍କର 'ଜାତୀୟ ସ୍ୱେଚ୍ଛାସେବକ' ସଂଗଠନ କଲେ । ଆୟର୍ଲଣ୍ଡରେ ଗୃହଯୁଦ୍ଧ ଅନିବାର୍ଯ୍ୟ ପରି ମନେହେଲା । ଠିକ୍ ତାପରେ ଆସିଲା ପୃଥିବୀ-ଯୁଦ୍ଧ ଏବଂ ବେଲଜିୟମ୍ ଓ ଉତ୍ତର-ଫ୍ରାନ୍ସର ଯୁଦ୍ଧକ୍ଷେତ୍ର ପ୍ରତି ସମସ୍ତଙ୍କର ଦୃଷ୍ଟି ପଡ଼ିଲା । ପାର୍ଲିଆମେଣ୍ଟରେ ଆଇରିଶ୍ ନେତାମାନେ ଯୁଦ୍ଧରେ ସାହାଯ୍ୟ କରିବା ନିମନ୍ତେ ବାହାରିଲେ; କିନ୍ତୁ ଦେଶ ଉଦାସୀନ ରହିଲା ଏବଂ ଆଦୌ ବ୍ୟଗ୍ର ନ ଥିଲା । ଏଥି ଭିତରେ ଅଲଷ୍ଟର "ବିଦ୍ରୋହୀମାନଙ୍କୁ" ବ୍ରିଟିଶ ସରକାରରେ ଉଚ୍ଚପଦବୀ ଦିଆଗଲେ ଏବଂ ଏଥିରେ ଆୟର୍ଲଣ୍ଡ ଲୋକେ ଅଧିକ ବେଶୀ ଅସନ୍ତୁଷ୍ଟ ହେଲେ ।

ଆୟର୍ଲଣ୍ଡରେ ଅସନ୍ତୋଷ ବଢ଼ିଲା ଏବଂ ଇଂଲଣ୍ଡ ଯୁଦ୍ଧରେ ସେମାନେ ଯେପରି ବଳି ନ ପଡ଼ନ୍ତି, ଏହି ଭାବ ବୃଦ୍ଧି ପାଇଲା । ଯେତେବେଳେ ଇଂଲଣ୍ଡ ପରି ଆୟର୍ଲଣ୍ଡରେ ବାଧ୍ୟତାମୂଳକ ସୈନ୍ୟଶିକ୍ଷା ପ୍ରବର୍ତ୍ତନର ପ୍ରସ୍ତାବ ହେଲା ଏବଂ ସମସ୍ତ ସମର୍ଥ ଯୁବକଙ୍କୁ ସୈନ୍ୟଦଳରେ ଯୋଗଦେବା ଲାଗି ବାଧ୍ୟ କରିବା କଥା ଉଠିଲା, ସେତେବେଳେ ଦେଶସାରା ପ୍ରବଳ ପ୍ରତିବାଦ ଉଠିଲା । ଆବଶ୍ୟକ ହେଲେ ବଳପୂର୍ବକ ଏହାର ପ୍ରତିରୋଧ କରିବା ନିମନ୍ତେ ଆୟର୍ଲଣ୍ଡ ପ୍ରସ୍ତୁତ ହେଲା ।

୧୯୧୬ରେ 'ଇଷ୍ଟର' ସପ୍ତାହରେ ଡବ୍‌ଲିନ୍‌ରେ ଗୋଟାଏ ଜାଗରଣ ହେଲା ଏବଂ ଆଇରିଶ୍ ପ୍ରଜାତନ୍ତ୍ର ଘୋଷିତ ହେଲା । ଅଳ୍ପ କେତେଦିନ ଯୁଦ୍ଧ ପରେ ବ୍ରିଟିଶ ଏହାକୁ ଦମନ କରିଦେଲେ ଏବଂ ଏହି କ୍ଷୁଦ୍ର ବିଦ୍ରୋହରେ ଯୋଗ ଦେଇଥିବାରୁ ପରେ ସାମରିକ ଆଇନରେ ଆୟର୍ଲଣ୍ଡର କେତେକ ସାହସୀ ଓ ସୁନ୍ଦର ଯୁବକଙ୍କୁ ଗୁଳିକରି ମାରି ଦିଆଗଲା । ଏହି ବିଦ୍ରୋହକୁ 'ଇଷ୍ଟର ବିଦ୍ରୋହ' କହନ୍ତି । ବ୍ରିଟିଶକୁ ପ୍ରତିହତ କରିବା ନିମନ୍ତେ ଏହା କିଛି ସେତେ ବଡ଼ ପ୍ରଚେଷ୍ଟା ନ ଥିଲା । ଏହା କେବଳ ଦୁନିଆକୁ ଦେଖାଇଦେଲା ଯେ ସାହସୀ ଆୟର୍ଲଣ୍ଡ ଏବେ ସୁଦ୍ଧା ପ୍ରଜାତନ୍ତ୍ର ସ୍ଥାପନାର ସ୍ୱପ୍ନ ଦେଖୁଛି ଏବଂ ସ୍ୱେଚ୍ଛାପୂର୍ବକ ବ୍ରିଟିଶକର୍ତ୍ତୃତ୍ୱ ମାନିନେବାକୁ ପ୍ରସ୍ତୁତ ନୁହେଁ । ଏହି ବିଦ୍ରୋହରେ ଥିବା କିଛି କ ଯୁବକଗଣ ଦୁନିଆରେ ନିଜର ସଦିଚ୍ଛା ଜଣାଇବା ନିମନ୍ତେ ଜାଣିଶୁଣି ନିଜର ଆତ୍ମବଳି ଦେଲେ—ସେମାନେ ଭଲରୂପେ

ଜାଣିଥିଲେ ବର୍ତ୍ତମାନ ସେମାନେ ପରାସ୍ତ ହେବେ; କିନ୍ତୁ ଆଶା ବାନ୍ଧିଥିଲେ ଯେ ତାଙ୍କର ତ୍ୟାଗ ପରେ ଫଳପ୍ରଦ ହେବ ଏବଂ ସ୍ୱାଧୀନତାକୁ ନିକଟତର କରିବ ।

ଏହି ଜାଗରଣ ବେଳକୁ ଜଣେ ଆଇର୍ଲଣ୍ଡ ଲୋକ ଜର୍ମାନୀରୁ ଆଇର୍ଲଣ୍ଡକୁ ଅସ୍ତ୍ରଶସ୍ତ୍ର ଆଣିବାର ଚେଷ୍ଟା କରୁଛି ବୋଲି ବ୍ରିଟିଶ ଧରିଲେ । ଏ ହେଉଛନ୍ତି ସାର ରୋଜର କେସମେଣ୍ଟ; ସେ ଦୀର୍ଘକାଳ ପର୍ଯ୍ୟନ୍ତ ବ୍ରିଟିଶ-ପ୍ରତିନିଧି ରୂପେ କାର୍ଯ୍ୟ କରୁଥିଲେ । କେସ୍‌ମେଣ୍ଟଙ୍କର ଲଣ୍ଡନରେ ବିଚାର ହେଲା ଏବଂ ମୃତ୍ୟୁଦଣ୍ଡ ଦିଆଗଲା । କଏଦୀ ଘାଟରୁ ସେ କଚେରୀରେ ଏକ ବକ୍ତବ୍ୟ ଦେଇଥିଲେ—ତାହା ଅସାଧାରଣ ଭାବରେ ହୃଦୟଗ୍ରାହୀ ଓ ଜ୍ୱାଳାମୟୀ ଥିଲା ଏବଂ ଆଇରିଶ ଆତ୍ମାର ଅଦମ୍ୟ ଜାତିପ୍ରେମ ପ୍ରକଟ କରିଥିଲା ।

ଏହି ଜାଗରଣ ବିଫଳ ହେଲା; କିନ୍ତୁ ଏହି ପରାଜୟରେ ହିଁ ବିଜୟ ନିହିତ ଥିଲା । ଏହା ପଛରେ ବ୍ରିଟିଶ ସରକାରର ଦମନ ଏବଂ ବିଶେଷତଃ ଦଳେ ଯୁବକନେତାଙ୍କୁ ଗୁଳି କରିବା ଦ୍ୱାରା ଆଇରିଶ ଲୋକଙ୍କ ମନରେ ଗୋଟାଏ ପ୍ରଭାବଶାଳୀ ଛାପ ପଡ଼ିଥିଲା । ଉପରେ ଆଇର୍ଲଣ୍ଡ ନିଶ୍ଚଳ ଥିଲା ପରି ଜଣାପଡ଼ିଲା; କିନ୍ତୁ କ୍ରୋଧ ତଳେ ଜଳୁଥିଲା ଏବଂ ଅଚିରେ ସିନ୍‌ଫେନ୍ ଆକାରରେ ଏହା ବାଟ କରି ବାହାରିଲା । ସିନ୍‌ଫେନ୍ ଭାବଧାରା ଦ୍ରୁତବେଗରେ ବ୍ୟାପିଗଲା । ଆଇର୍ଲଣ୍ଡ ସମ୍ବନ୍ଧରେ ଲେଖିଥିବା ଗତ ଚିଠିରେ ମୁଁ ଏହି ସିନଫେନ୍ ସମ୍ବନ୍ଧରେ କହିଥିଲି । ଆରମ୍ଭ ବେଳେ ଏହା ବିଶେଷ ସଫଳ ହୋଇ ନ ଥିଲା; ଏବେ ଜଙ୍ଗଲ ନିଆଁ ପରି ଏହା ବିସ୍ତାରିତ ହେଲା ।

ମହାସମର ଶେଷ ହେବା ପରେ ଲଣ୍ଡନରେ ବ୍ରିଟିଶ ପାର୍ଲିଆମେଣ୍ଟ ପାଇଁ ସମଗ୍ର ବ୍ରିଟିଶ ଦ୍ୱୀପପୁଞ୍ଜରେ ନିର୍ବାଚନ ହେଲା । ଆଇର୍ଲଣ୍ଡରେ ସିନ୍‌ଫେନମାନେ ଅଧିକାଂଶ ସଂଖ୍ୟକ ସ୍ଥାନ ଦଖଲ କରିଗଲେ; ଯେଉଁ ପୁରୁଣା ଜାତୀୟବାଦୀମାନେ ବ୍ରିଟିଶଙ୍କ ସହ ଏକପ୍ରକାର ସହଯୋଗ କରିବା ନିମନ୍ତେ କହୁଥିଲେ, ସେମାନଙ୍କୁ ଅନ୍ତର କରିଦେଲେ । କିନ୍ତୁ ବ୍ରିଟିଶ ପାର୍ଲିଆମେଣ୍ଟରେ ଯୋଗଦେବା ନିମନ୍ତେ ସିନ୍‌ଫେନମାନେ ନିର୍ବାଚିତ ହୋଇ ନ ଥିଲେ । ତାଙ୍କର ନୀତି ଥିଲା ସଂପୂର୍ଣ୍ଣ ପୃଥକ୍; ସେମାନେ ଅସହଯୋଗ ଓ ବର୍ଜନରେ ବିଶ୍ୱାସ କରୁଥିଲେ । ତେଣୁ ଏହି ନିର୍ବାଚିତ ସିନ୍‌ଫେନମାନେ ଲଣ୍ଡନ ପାର୍ଲିଆମେଣ୍ଟରୁ ଅଲଗା ରହିବେ ଏବଂ ତା ପରିବର୍ତ୍ତେ ୧୯୧୯ରେ ଡବ୍‌ଲିନରେ ନିଜର ପ୍ରଜାତନ୍ତ୍ର ଆସେମ୍ବ୍ଲି ସ୍ଥାପନା କଲେ ଏବଂ ସେହି ଆସେମ୍ବ୍ଲି ନାମ ହେଲା "ଡେଲ ଆଇର୍ଣ୍ଣ" । ଅଲଷ୍ଟର ସମେତ ସମଗ୍ର ଆଇର୍ଲଣ୍ଡର ଆସେମ୍ବ୍ଲି ବୋଲି ଏହା ଧରାଯାଉଥିଲା; କିନ୍ତୁ ସ୍ୱାଭାବିକରୂପେ ଅଲଷ୍ଟରବାସୀ ଏଥିରୁ ଅଲଗା ରହିଲେ । କାଥଲିକ୍ ଆଇର୍ଲଣ୍ଡ ପ୍ରତି ସେମାନଙ୍କର ଶ୍ରଦ୍ଧା ନ ଥିଲା । ଡେଲ ଆଇର୍ଣ୍ଣ ଡି. ଭେଲରାଙ୍କୁ ସଭାପତିରୂପେ ନିର୍ବାଚିତ କଲା ଏବଂ ଗ୍ରିଫିଥ୍ ହେଲେ ସହକାରୀ ସଭାପତି । ସେତେବେଳକୁ ନୂତନ ପ୍ରଜାତନ୍ତ୍ରର ନିର୍ବାଚିତ ବ୍ୟକ୍ତି ଦୁହେଁ ବ୍ରିଟିଶର ଜେଲରେ ଥିଲେ ।

ତାପରେ ଗୋଟାଏ ଅସାଧାରଣ ସଂଗ୍ରାମ ଆରମ୍ଭ ହେଲା । ଏହି ସଂଗ୍ରାମ ଏଥିପୂର୍ବରୁ ଆୟର୍ଲାଣ୍ଡ ଓ ଇଂଲଣ୍ଡ ଭିତରେ ଯେତେ ସଂଖ୍ୟକ ଯୁଦ୍ଧ ହୋଇଥିଲା, ତା ପରି ନୁହେଁ— ଏହି ଯୁଦ୍ଧ ଅତି ଅଲୌକିକ ଥିଲା । ଲୋକଙ୍କର ସହାନୁଭୂତି ତାଙ୍କ ପଶ୍ଚାତରେ ଥିଲା । ଏହି ମୁଷ୍ଟିମେୟ ଯୁବକଯୁବତୀଙ୍କୁ ଅତି ପ୍ରତିକୂଳ ଅବସ୍ଥା ବିରୁଦ୍ଧରେ ଯୁଦ୍ଧ କରିବାକୁ ପଡ଼ିଲା; ଗୋଟିଏ ମହାନ୍ ଓ ସଂଗଠିତ ସାମ୍ରାଜ୍ୟ ତାଙ୍କ ବିରୁଦ୍ଧରେ ଥିଲା । ସିନ୍‌ଫେନ୍ ଯୁଦ୍ଧ ଏକ-ପ୍ରକାର ହିଂସା ଅସହଯୋଗ । ସେମାନେ ଇଂରେଜ ଅନୁଷ୍ଠାନମାନ ବର୍ଜନ କଲେ ଏବଂ ଯେଉଁଠି ସମ୍ଭବ, ନିଜର ଅନୁଷ୍ଠାନ ଗଢ଼ିଲେ—ସାଧାରଣ ଆଇନ ଅଦାଲତ ସ୍ଥାନରେ ପଞ୍ଚାୟତ ସବୁ ସ୍ଥାପନା କଲେ । ମଫସଲରେ ପୁଲିସ ଫାଣ୍ଡି ବିରୁଦ୍ଧରେ ଗରିଲା ବା ଖଣ୍ଡଯୁଦ୍ଧ ଆରମ୍ଭ ହେଲା । ସିନ୍‌ଫେନ୍ ବନ୍ଦୀମାନେ ଜେଲରେ ଅନଶନ କରି ବ୍ରିଟିଶ ସରକାରକୁ ତାଲେ ହଇରାଣ କଲେ । କର୍କର ଲର୍ଡ ମେୟର ଟେରେନ୍ସ ମାକସୁଇନିଙ୍କ ଅନଶନ ସର୍ବପ୍ରସିଦ୍ଧ ଥିଲା ଏବଂ ଆୟର୍ଲାଣ୍ଡରେ ଶୃଙ୍ଖଳା ସୃଷ୍ଟି କରିଥିଲା । ଯେତେବେଳେ ଜେଲ ଗଲେ, ସେତେବେଳେ ସେ ଘୋଷଣା କଲେ ଯେ ସେ ଜୀବିତ ମୃତ ନଚେତ୍ ଜୀବିତ ହୋଇ ଫେରିବେ ଏବଂ ଖାଦ୍ୟ ଗ୍ରହଣ ବନ୍ଦ କଲେ । ସେ ୭୫ ଦିନ ଉପବାସ କଲା ପରେ ତାଙ୍କର ଶବ ଜେଲରୁ ବାହାହୋଇ ଆସିଥିଲା ।

ସିନ୍‌ଫେନ ବିଦ୍ରୋହର ଆଉ ଜଣେ ମୁଖ୍ୟ ସଂଗଠକ ହେଉଛନ୍ତି ମାଇକେଲ କଲିନ୍ସ । ସିନ୍‌ଫେନ କୌଶଳରେ ଆୟର୍ଲାଣ୍ଡରେ ବ୍ରିଟିଶ ସରକାର ବହୁ ପରିମାଣରେ ପଙ୍ଗୁ ହୋଇଗଲା ଏବଂ ମଫସଲ ଅଞ୍ଚଳରେ ଏହାର ଅସ୍ତିତ୍ୱ ପ୍ରାୟ ନ ଥିଲା । କ୍ରମେ ଉଭୟ ପକ୍ଷରେ ହିଂସା ବଢ଼ିଲା ଏବଂ ପ୍ରତିଶୋଧ ନେବା ଚାଲିଲା । ଆୟର୍ଲାଣ୍ଡରେ କାର୍ଯ୍ୟ କରିବା ପାଇଁ ଏକ ବିଶେଷ ବ୍ରିଟିଶସେନା ସଂଗ୍ରହ କରାଗଲା । ଏହାଙ୍କୁ ଉଚ୍ଚ ବେତନ ଦିଆଗଲା ଏବଂ ଯୁଦ୍ଧସେନାରୁ ନିକଟରେ ଆସିଥିବା ଅଧିକ ହିଂସ୍ରକ ଓ ନିଷ୍ଠୁର ଲୋକ ସବୁ ଏଥିରେ ରହିଲେ । ଏହି ସେନାର ପୋଷାକ ରଙ୍ଗରୁ ଏହାଙ୍କୁ "ବ୍ଲାକ୍ ଓ ଟାନ୍‌ସ" (Black and Tans) ବୋଲି କୁହାଗଲା । ଏହି 'ବ୍ଲାକ ଓ ଟାନ୍‌ସ'ମାନେ ଅହେତୁକ ହତ୍ୟା ଅଭିଯାନ ଆରମ୍ଭ କଲେ; ଅନେକ ସମୟରେ ଲୋକେ ବିଛଣାରେ ଶୋଇଥିବା ବେଳେ ତାଙ୍କୁ ଗୁଳି କରାଗଲା— ସେମାନେ ଆଶା କରିଥିଲେ ଯେ ଏପରି ଭାବରେ ସିନ୍‌ଫେନମାନଙ୍କୁ ଡରାଇ ବଶ୍ୟତା ସ୍ୱୀକାର କରାଇପାରିବେ । କିନ୍ତୁ ସିନ୍‌ଫେନମାନେ ବଶ୍ୟତା ସ୍ୱୀକାର କରିବାକୁ ଅସ୍ୱୀକାର କଲେ ଏବଂ ସେମାନଙ୍କର ଗରିଲାଯୁଦ୍ଧ ଚାଲିଲା । ତେଣୁ ବ୍ଲାକ୍ ଓ ଟାନ୍‌ସମାନେ ନିର୍ଦ୍ଦୟ ପ୍ରତିଶୋଧ ନେବାକୁ ଆରମ୍ଭ କଲେ । ଗାଁ ସାରା ଓ ସହରର ବଡ଼ ବଡ଼ ଅଂଶ ପୋଡ଼ିଦେବାରେ ଲାଗିଲେ । ଆୟର୍ଲାଣ୍ଡ ଉଭୟ ପକ୍ଷର ପ୍ରକାଣ୍ଡ ସଂଘର୍ଷସ୍ଥଳୀ ହେଲା—ପରସ୍ପର ପ୍ରତି ହିଂସା ଓ ଧ୍ୱଂସ ଲାଗିଲା । ଏକ ଦଳ ପଛରେ ଗୋଟିଏ ସାମ୍ରାଜ୍ୟର ସଂଗଠିତ ଶକ୍ତି ଥିଲା; ଅନ୍ୟ ଦଳ ପଛରେ ମୁଷ୍ଟିମେୟ ଲୋକଙ୍କର ଅଟଳ ପ୍ରତିଜ୍ଞା ଥିଲା । ୧୯୧୯ ଠାରୁ ୧୯୨୧ ଅକ୍ଟୋବର ପର୍ଯ୍ୟନ୍ତ ଦୁଇ ବର୍ଷ କାଳ ଏହି ଆଙ୍ଗ୍ଲୋ-ଆଇରିଶ ଯୁଦ୍ଧ ଲାଗିଲା ।

ଇତ୍ୟବସରରେ ୧୯୨୦ ରେ ବ୍ରିଟିଶ ପାର୍ଲିଆମେଣ୍ଟ ଦ୍ୱାରା ହୋଇ ଏକ ନୂତନ ହୋମରୁଲ୍ ବିଲ ପାଶ କଲା । ମହାସମରର ଠିକ୍ ପୂର୍ବରୁ ଯେଉଁ ପୁରୁଣା ଆଇନ ପାଶ୍ ହୋଇଥିଲା ଏବଂ ଯାହା ଫଳରେ ଅଲଷ୍ଟରରେ ବିଦ୍ରୋହ ହେଲା ତାହା ରଦ୍ଦ ହୋଇଗଲା । ନୂତନ ବିଲ ଅନୁସାରେ ଆୟର୍ଲଣ୍ଡକୁ ଅଲଷ୍ଟର ବା ଉତ୍ତର ଆୟର୍ଲଣ୍ଡ ଓ ଦେଶର ଅବଶିଷ୍ଟ ଅଞ୍ଚଳ ଏହିପରି ଦୁଇଭାଗରେ ବିଭକ୍ତ କରିଦିଆଗଲା ଏବଂ ପୃଥକ୍ ପାର୍ଲିଆମେଣ୍ଟ ହେବାର ବ୍ୟବସ୍ଥା ହେଲା । ଆୟର୍ଲଣ୍ଡ ଏକ କ୍ଷୁଦ୍ର ଦେଶ ଏବଂ ଏହାକୁ ବିଭାଗ କରିବା ଦ୍ୱାରା କ୍ଷୁଦ୍ର ଦ୍ୱୀପଟି ଅତି ଟୁକୁରା ଟୁକୁରା ହୋଇ ଦୁଇଭାଗ ହୋଇଗଲା । ଉତ୍ତରାଞ୍ଚଳ ପାଇଁ ଅଲଷ୍ଟରରେ ନୂତନ ପାର୍ଲିଆମେଣ୍ଟ ସ୍ଥାପିତ ହେଲା; କିନ୍ତୁ ଦକ୍ଷିଣରେ ଅବଶିଷ୍ଟ ଅଞ୍ଚଳ ପାଇଁ ହୋମରୁଲ ଆଇନ ପ୍ରତି କେହି ନଜର ଦେଲେ ନାହିଁ । ସେମାନେ ସିନ୍‌ଫେନ ବିଦ୍ରୋହରେ ବ୍ୟସ୍ତ ଥିଲେ ।

୧୯୨୧ ଅକ୍ଟୋବର ମାସରେ ବ୍ରିଟିଶ ପ୍ରଧାନମନ୍ତ୍ରୀ ଲଏଡ୍ ଜର୍ଜ ମିଳାମିଶାର ସମ୍ଭାବନା ବିଷୟରେ କଥାବାର୍ତ୍ତା କରିବା ନିମନ୍ତେ ସିନ୍‌ଫେନ ନେତାମାନଙ୍କୁ ନିବେଦନ କଲେ ଏବଂ ଏଥିରେ ସେମାନେ ରାଜିହେଲେ । ଏଥିରେ ସନ୍ଦେହ ନାହିଁ ଯେ ଶେଷରେ ବ୍ରିଟିଶ ସରକାର ନିଜ ପାଖରେ ଥିବା ବିପୁଳ ଅସ୍ତ୍ରଶସ୍ତ୍ର ସାହାଯ୍ୟରେ ସିନ୍‌ଫେନଙ୍କୁ ଦବାଇଦେଇ ପାରିଥାନ୍ତା ଏବଂ ଦେଶକୁ ଏକ ମରୁଭୂମିରେ ପରିଣତ କରି ପାରିଥାନ୍ତା; କିନ୍ତୁ ଆୟର୍ଲଣ୍ଡରେ ତାର ନୀତି ଫଳରେ ଆମେରିକା ଓ ଅନ୍ୟ ଦେଶମାନଙ୍କରେ ତାହା ବଡ଼ ଅପ୍ରିୟ ହୋଇ ଉଠିଲା । ସଂଗ୍ରାମ ଚଳାଇବା ନିମନ୍ତେ ଆମେରିକା ଏବଂ ଏପରିକି ବ୍ରିଟିଶ ଡୋମିନିୟନରେ ଥିବା ଆଇରିଶମାନଙ୍କଠାରୁ ଅର୍ଥ ଆୟର୍ଲଣ୍ଡକୁ ବୋହି ଆସିଲା । ସେତେବେଳକୁ ସିନ୍‌ଫେନ-ମାନେ ମଧ୍ୟ କ୍ଳାନ୍ତ ହୋଇ ପଡ଼ିଥିଲେ, ତାଙ୍କ ଉପରେ ବହୁତ ବେଶି ଚାପ ପଡ଼ିଥିଲା ।

ଇଂରେଜ ଓ ଆଇରିଶ ପ୍ରତିନିଧିମାନେ ଲଣ୍ଡନରେ ବୈଠକ କଲେ ଏବଂ ଦୁଇ ମାସକାଳ ଆଲୋଚନା ଓ ବିତର୍କ ପରେ ୧୯୨୧ ଡିସେମ୍ବର ମାସରେ ଗୋଟିଏ ଅସ୍ଥାୟୀ ସନ୍ଧି ସ୍ୱାକ୍ଷରିତ ହେଲା । ଏଥିରେ ଆଇରିଶ ପ୍ରଜାତନ୍ତ୍ରକୁ ସ୍ୱୀକାର କରାଗଲା ନାହିଁ । କିନ୍ତୁ ଏହା ଆୟର୍ଲଣ୍ଡକୁ ଅଧିକ ସ୍ୱାଧୀନତା ଦେଲା—କେବଳ ଗୋଟିଏ ଦୁଇଟି ବିଷୟ ଛଡ଼ା ଅନ୍ୟ ଯେକୌଣସି ଡୋମିନିୟନଠାରୁ ଏହା ଅଧିକ ସ୍ୱାଧୀନତା ପାଇଲା । ଏହା ସତ୍ତ୍ୱେ ଆଇରିଶ ପ୍ରତିନିଧିମାନେ ଏହା ଗ୍ରହଣ କରିବା ନିମନ୍ତେ ରାଜିହୋଇ ନ ଥିଲେ । କେବଳ ଇଂଲଣ୍ଡ ସାଙ୍ଗେ ସାଙ୍ଗେ ଭୀଷଣ ଯୁଦ୍ଧ କରିବାର ଧମକ ଦେବାରୁ ସେମାନେ ସମ୍ମତ ହେଲେ ।

ଏହି ସନ୍ଧି ଯୋଗୁ ଆୟର୍ଲଣ୍ଡରେ ଗୋଟାଏ ମତାମତ ଝଗଡ଼ା ଲାଗିଲା; କେତେକ ଏହା ସପକ୍ଷରେ ଥିଲେ, ଅନ୍ୟମାନେ ତୀବ୍ର ବିରୋଧ କରୁଥିଲେ । ଏହି ପ୍ରଶ୍ନ ଯୋଗୁ ସିନଫେନ ଦଳ ଦୁଇ ଭାଗରେ ବିଭକ୍ତ ହୋଇଗଲା । ଶେଷରେ ଡେଲ ଆୟରିଣ୍ଟି ସନ୍ଧିକୁ ଗ୍ରହଣ କଲା ଏବଂ

ଆଇରଶ ସ୍ୱାଧୀନ ରାଜ୍ୟ ବା ଆଇରଶ ଫ୍ରି ଷ୍ଟେଟ୍ କାର୍ଯ୍ୟକାରୀ ହେଲା । ଏହାକୁ ଆଯ୍ୟର୍ଲଣ୍ଡର "ସାଓରଟାଟ୍ ଆୟ୍ୟର୍ଣ୍ଣ" (Saortat Eirean) କହନ୍ତି । କିନ୍ତୁ ଏହା ସହିତ ସିନଫେନର ପୁରୁଣା ସାଥିଙ୍କ ଭିତରେ ଗୃହବିବାଦ ଲାଗିଲା । ଡେଲ୍ ଆୟ୍ୟର୍ଣ୍ଣର ସଭାପତି ଡ. ଭଲେରା ଇଂଲଣ୍ଡ ସହିତ ସନ୍ଧିର ବିରୋଧୀ ଥିଲେ ଏବଂ ଆହୁରି ଅନେକ ମଧ୍ୟ ସେହିପରି ଥିଲେ; ଗ୍ରିଫିଥ୍, ମାଇକେଲ କଲିନ୍ସ ଓ ଅନ୍ୟମାନେ ଏହା ସପକ୍ଷରେ ଥିଲେ । ଅନେକ ମାସ ପର୍ଯ୍ୟନ୍ତ ଦେଶରେ ଗୃହଯୁଦ୍ଧ ଚାଲିଲା ଏବଂ ଫ୍ରି ଷ୍ଟେଟ୍ ଓ ସନ୍ଧି ସପକ୍ଷରେ ଯେଉଁମାନେ ଥିଲେ, ସେମାନେ ଅନ୍ୟଙ୍କୁ ଦବାଇବା ନିମନ୍ତେ ବ୍ରିଟିଶ ସେନାର ସାହାଯ୍ୟ ପାଇଲେ । ପ୍ରଜାତନ୍ତ୍ରବାଦୀବାନେ ମାଇକେଲ କଲିନ୍ସଙ୍କୁ ବଧ କଲେ ଏବଂ ଅନେକ ଫ୍ରି ଷ୍ଟେଟ୍ ଲୋକେ ବ ପ୍ରଜାତନ୍ତ୍ର ନେତାମାନଙ୍କୁ ମାରିଲେ । ଜେଲ ପ୍ରଜାତନ୍ତ୍ରବାଦୀ ନେତାମାନଙ୍କରେ ପୂର୍ଣ୍ଣ ହୋଇଗଲା । ଆୟ୍ୟର୍ଲଣ୍ଡ ସାହସିକ ସ୍ୱାଧୀନତା ସଂଗ୍ରାମ ଭିତରେ ଏସବୁ ଗୃହଯୁଦ୍ଧ ଏବଂ ପରସ୍ପର ପ୍ରତି ଦ୍ୱେଷଭାବ ଏକ ଅତ୍ୟନ୍ତ ଶୋଚନୀୟ ଘଟଣା । ଇଂରେଜ ଅସ୍ତ୍ରଶସ୍ତ୍ର ସେଠି ଦବାଇ ପାରି ନ ଥିଲା, କିନ୍ତୁ ଇଂରେଜ-ନୀତି କୃତକାର୍ଯ୍ୟ ହେଲା—ଆଇରଶ ଲୋକେ ନିଜ ଲୋକ ସହିତ ଯୁଦ୍ଧ କଲେ ଏବଂ ଇଂଲଣ୍ଡ କେତେକ ପରିମାଣରେ ନୀରବରେ ଏକ ଦଳକୁ ସାହାଯ୍ୟ କରୁଥାଏ ଏବଂ ନୂତନ ପରିବର୍ତ୍ତନ ପ୍ରତି ସନ୍ତୋଷଜନକ ଭାବରେ ନଜର ପକାଉଥାଏ ।

କ୍ରମେ ଗୃହଯୁଦ୍ଧ ଅନ୍ତ ହୋଇଗଲା ଏବଂ ପ୍ରଜାତନ୍ତ୍ରବାଦୀମାନେ ଫ୍ରି ଷ୍ଟେଟ୍ ଗ୍ରହଣ କଲେ ନାହିଁ, ଏପରି କି ଯେଉଁ ପ୍ରଜାତନ୍ତ୍ରବାଦୀମାନେ ଡେଲ (ଫ୍ରି ଷ୍ଟେଟ୍ ପାର୍ଲିଆମେଣ୍ଟର ନାମ)କୁ ନିର୍ବାଚିତ ହୋଇଥିଲେ ସେମାନେ ଯୋଗ ଦେବାକୁ ଅସ୍ୱୀକାର କଲେ; କାରଣ ସେମାନେ ରାଜା ପ୍ରତି ଭକ୍ତି ଦେଖାଇ ଯେଉଁ ଶପଥପତ୍ର ନେବାର ଥିଲା, ତାହା ନେବାକୁ ମନାକଲେ । ଡେଣ୍ଡି ଡି ଭଲେରା ଓ ତାଙ୍କ ଦଳ ଡେଲରୁ ଅଲଗା ହୋଇ ରହିଲେ ଏବଂ ଫ୍ରି ଷ୍ଟେଟ୍‌ର ସଭାପତି କସଗ୍ରେଭ୍‌ଙ୍କ ନେତୃତ୍ୱରେ ଅନ୍ୟ ଫ୍ରି ଷ୍ଟେଟ୍ ଦଳ ନାନା ଉପାୟରେ ପ୍ରଜାତନ୍ତ୍ରବାଦୀଙ୍କୁ ଦମନ କରିବାକୁ ଚେଷ୍ଟା କଲେ ।

ଆଇରଶ ଫ୍ରି ଷ୍ଟେଟ୍ ଗଠନ ଫଳରେ ବ୍ରିଟେନର ସାମ୍ରାଜ୍ୟ ରାଜନୀତିରେ ସୁଦୂରଗାମୀ ପରିଣତି ହେଲା । ଆଇନ ଅନୁସାରେ ସେତେବେଳେ ଅନ୍ୟ ଡୋମିନିୟନଙ୍କ ଅପେକ୍ଷା ଆଇରଶ ସନ୍ଧି ଆୟ୍ୟର୍ଲଣ୍ଡକୁ ଅଧିକ ପରିମାଣରେ ସ୍ୱାଧୀନତା ଦେଲା । ଆୟ୍ୟର୍ଲଣ୍ଡ ଏହା ପାଇଲାମାତ୍ରେ ଅନ୍ୟ ଡୋମିନିୟନମାନେ ଆପଣା ଛାଏଁ ଏହି ସୂତ୍ରକୁ ଧରିଲେ ଏବଂ ଔପନିବେଶିକ ସ୍ୱାଧୀନତାର ଧାରଣା ପରିବର୍ତ୍ତନ ହୋଇଗଲା । ଡୋମିନିୟନମାନଙ୍କୁ ଅଧିକ ସ୍ୱାଧୀନତା ଦେବା ଦିଗରେ ଆହୁରି ପରିବର୍ତ୍ତନ ଲାଗି ଇଂଲଣ୍ଡ ଓ ଡୋମିନିୟନ୍ ରାଜ୍ୟଙ୍କ ଭିତରେ କେତେକ ସାମ୍ରାଜ୍ୟ ସମ୍ମିଳନୀ ହେଲା । ଆୟ୍ୟର୍ଲଣ୍ଡରେ ପ୍ରବଳ ପ୍ରଜାତନ୍ତ୍ର ଆନ୍ଦୋଳନ ଚାଲିଥାଏ ଏବଂ ଏହା ସର୍ବଦା ପୂର୍ଣ୍ଣ ସ୍ୱାଧୀନତା ଆଡ଼କୁ ଟାଣୁଥାଏ । ସେହିପରି ଭାବରେ ଦକ୍ଷିଣ-ଆଫ୍ରିକା ମଧ୍ୟ ଅଧିକ ସଖ୍ୟକ ବୁଅର ସେନ ଆନ୍ଦୋଳନ କରୁଥାଏ । ଏହିପରି ଭାବରେ

ଡୋମିନିୟନମାନଙ୍କର ସ୍ଥିତି ପରିବର୍ତ୍ତିତ ଓ ଉନ୍ନତ ହେବାକୁ ଲାଗିଲା । ଶେଷରେ ବ୍ରିଟିଶ ରାଷ୍ଟ୍ରସଂଘରେ (British Commonwealth of Nations) ଇଂଲଣ୍ଡ ସହିତ ସମ୍ମୋଦର ଜାତିରୂପେ ଏମାନେ ବିବେଚିତ ହେଲେ । ଏହା ଶୁଣିବାକୁ ଖୁବ୍ ସୁନ୍ଦର ଏବଂ ଏଥିରେ ସନ୍ଦେହ ନାହିଁ ଯେ ଗୋଟାଏ ସମାନ ରାଜନୀତିକ ଅବସ୍ଥାପ୍ରାପ୍ତି ପ୍ରକାଶେ ଏହା ପ୍ରଗତିଶୀଳ ବୃଦ୍ଧି । କିନ୍ତୁ ଏହି ସମାନତା ଖାଲି କାଗଜକଲମରେ, ପ୍ରକୃତ ବ୍ୟବହାରରେ ନୁହେଁ । ଆର୍ଥିକ କ୍ଷେତ୍ରରେ ଏହିସବୁ ଡୋମିନିୟନ ବ୍ରିଟେନ୍ ଓ ବ୍ରିଟିଶପୁଞ୍ଜିରେ ଋଣୀ ଏବଂ ସେଗୁଡ଼ିକ ଉପରେ ଆର୍ଥିକ ଚାପ ଆଣିବାର ଅନେକ ବାଟ ଅଛି । ଏହା ସାଙ୍ଗେ ସାଙ୍ଗେ ମଧ୍ୟ ଡୋମିନିୟନମାନଙ୍କ ଉନ୍ନତି ସଙ୍ଗେ ସଙ୍ଗେ ସେମାନଙ୍କର ଆର୍ଥିକ ସ୍ୱାର୍ଥ ଇଂଲଣ୍ଡ ସ୍ୱାର୍ଥ ସହ ସଂଘର୍ଷ ଲାଗେ । ଏହିରୂପେ ସାମ୍ରାଜ୍ୟ କ୍ରମେ ଦୁର୍ବଳତର ହୁଏ । ସାମ୍ରାଜ୍ୟ ଛିନ୍ନଭିନ୍ନ ପଡ଼ିବାର ଆସନ୍ନ ବିପଦ ଦେଖି ଇଂଲଣ୍ଡ ଶୃଙ୍ଖଳା ଢିଲା କରିବା ନିମନ୍ତେ ଓ ଡୋମିନିୟନ ସହ ରାଜନୀତିକ ସମାନତା ସ୍ୱୀକାର କରିବାକୁ ରାଜି ହୋଇଗଲା । ଠିକଣା ମୁହୂର୍ତ୍ତରେ ବୁଦ୍ଧିମାନ କାର୍ଯ୍ୟ କରି ଏତେଦୂର ଯିବାରୁ ସେ ନିଜକୁ ରକ୍ଷାକଲା; କିନ୍ତୁ ବେଶିଦିନ ପାଇଁ ନୁହେଁ । ଇଂଲଣ୍ଡରୁ ଡୋମିନିୟନଗୁଡ଼ିକୁ ଯେଉଁ ଶକ୍ତି ଅଲଗା କରିଥିଲା, ସେସବୁ କାର୍ଯ୍ୟ କରୁଥାଏ; ସେଗୁଡ଼ିକ ହେଉଛି ମୁଖ୍ୟତଃ ଆର୍ଥିକ ଶକ୍ତି । ଏହି ଶକ୍ତିଗୁଡ଼ିକ ବରାବର ସାମ୍ରାଜ୍ୟକୁ ଦୁର୍ବଳ କରିବାରେ ଲାଗିଲେ । ଏହି କାରଣରୁ ଏବଂ ଇଂଲଣ୍ଡର ନିଃସନ୍ଦେହ ପତନ ହେତୁ ମୁଁ ବ୍ରିଟିଶ ସାମ୍ରାଜ୍ୟ ମହଲିଯିବା ବିଷୟରେ ତଳେ ଲେଖିଥିଲି । ଯଦି ଡୋମିନିୟନମାନଙ୍କର ଏକା ପରମ୍ପରା ସଂସ୍କୃତି ଓ ଜାତିଗତ ଏକତା ସତ୍ତ୍ୱେ ସେମାନଙ୍କ ପକ୍ଷେ ଇଂଲଣ୍ଡ ସହ ବାନ୍ଧି ହୋଇ ରହିବା କଷ୍ଟକର ହୁଏ, ତେବେ ଭାରତ ପକ୍ଷରେ ତା ଦେହରେ ବାନ୍ଧିହୋଇ ରହିବା କିପରି କଷ୍ଟକର ହୋଇ ନଥିବ ! କାରଣ ଭାରତର ଆର୍ଥନୀତିକ ସ୍ୱାର୍ଥସହ ବ୍ରିଟିଶ ସ୍ୱାର୍ଥର ପ୍ରତ୍ୟକ୍ଷ ସଂଘର୍ଷ ହୁଏ ଏବଂ ଦୁହିଁଙ୍କ ଭିତରୁ କାହାରିକ ହେଲେ ନଇଁବାକୁ ପଡ଼ିବ । ସୁତରାଂ ବ୍ରିଟେନ୍ ପାଖରେ ନିଜର ଆର୍ଥନୀତିକ ନୀତି ପରାଧୀନ କରି ତା ସହିତ କୌଣସି ସଂପର୍କ ସ୍ୱୀକାର କରିବା ସ୍ୱାଧୀନ ଭାରତ ପକ୍ଷରେ ସମ୍ଭବ ନୁହେଁ ।

ବ୍ରିଟିଶ ରାଷ୍ଟ୍ରସଂଘ ବୋଲାଇଲେ ସ୍ୱାଧୀନ ଡୋମିନିୟନ ସବୁ, ଦରିଦ୍ର ପରାଧୀନ ଭାରତ ନୁହେଁ—ଏହାର ଅର୍ଥ ରାଜନୀତିକ ସ୍ୱାଧୀନତା ଭୋଗୁଥିବା ଅଙ୍ଗ ସମଷ୍ଟି । କିନ୍ତୁ ଏହିସବୁ ଅଙ୍ଗ ଏବେ ପୁଣି ବ୍ରିଟେନର ଆର୍ଥନୀତିକ ସାମ୍ରାଜ୍ୟ ଅଧୀନରେ ରହିଛି । ଆଇରିଶ ସନ୍ଧି ବୋଇଲେ ବ୍ରିଟିଶ ପୁଞ୍ଜି ଦ୍ୱାରା କେତେକ ପରିମାଣରେ ଆୟର୍ଲାଣ୍ଡର ଶୋଷଣ ଜାରି ରଖିବା ଏବଂ ପ୍ରଜାତନ୍ତ୍ର ଦାବୀ ପାଇଁ ଆନ୍ଦୋଳନ କରିବା ପଛରେ ଏହାହିଁ ପ୍ରକୃତ କଥା ଥିଲା । ଡି ଭେଲେରା ଓ ପ୍ରଜାତନ୍ତ୍ରବାଦୀମାନେ ଗରିବ କୃଷକ, ନିମ୍ନମଧ୍ୟବିତ୍ତ ଶ୍ରେଣୀ ଓ ଦରିଦ୍ର ଶିକ୍ଷିତ ଶ୍ରେଣୀର ପ୍ରତିନିଧିତ୍ୱ କରୁଥିଲେ; କସଗ୍ରେଭ୍ ଓ ତାଙ୍କର ଫ୍ରି ଷ୍ଟେଟ୍ ଦଳ ଧନୀ, ମଧ୍ୟବିତ୍ତ ଶ୍ରେଣୀ ଓ ଧନୀ କୃଷକଙ୍କ ପ୍ରତିନିଧି ଥିଲେ ଏବଂ ଏହି ଦୁଇଟିଯାକ ଶ୍ରେଣୀଙ୍କର ବ୍ରିଟିଶ ବେପାରରେ ସ୍ୱାର୍ଥ ଥିଲା ଏବଂ ବ୍ରିଟିଶ ପୁଞ୍ଜିର ମଧ୍ୟ ତାଙ୍କଠାରେ ସ୍ୱାର୍ଥ ଥିଲା ।

କିଛିକାଳ ପରେ ଡି ଭେଲେରା ତାଙ୍କର କୌଶଳ ପରିବର୍ତ୍ତନ କରିବାକୁ ସ୍ଥିରକଲେ । ସେ ଓ ତାଙ୍କ ଦଳ ଡେଲ ଆୟର୍ଣ୍ଣରେ ଯୋଗଦେଲେ ଏବଂ ଶପଥ ଗ୍ରହଣ କଲେ—ତାହା ସଙ୍ଗେ ସଙ୍ଗେ ଘୋଷଣା କଲେ, କେବଳ ବାଧ୍ୟରକ୍ଷା ପାଇଁ ଏହା କରୁଛନ୍ତି ଏବଂ ସେମାନଙ୍କର ବହୁମତ ହେବା ସଙ୍ଗେ ସଙ୍ଗେ ଏହି ଶପଥ ଉଠାଇଦେବେ । ଆଗାମୀ ନିର୍ବାଚନରେ ୧୯୩୨ ପ୍ରଥମ ଭାଗରେ ଫ୍ରି ଷ୍ଟେଟ୍ ପାର୍ଲିଅମେଣ୍ଟରେ ଡି ଭେଲେରାଙ୍କର ସଂଖ୍ୟାଧିକ୍ୟ ହେଲା ଏବଂ ସାଙ୍ଗେ ସାଙ୍ଗେ ସେ ନିଜର କାର୍ଯ୍ୟପନ୍ଥା ଅନୁସାରେ କାର୍ଯ୍ୟ କରିବାକୁ ଲାଗିଲେ । ପ୍ରଜାତନ୍ତ୍ର ପାଇଁ ସଂଗ୍ରାମ ତଥାପି ଚାଲିଥାଏ; କିନ୍ତୁ ଯୁଦ୍ଧ କରିବାର ପ୍ରଣାଳୀ ପୃଥକ୍ ଥିଲା । ଡି ଭେଲେରା ଶପଥ ଉଠାଇ ଦେବାଲାଗି ପ୍ରସ୍ତାବ କଲେ ଏବଂ ଇଂରେଜ ସରକାରକୁ ମଧ୍ୟ ଜଣାଇଦେଲେ ଯେ ସେମାନେ ଆଉ ବାର୍ଷିକ ଜମିକର ତାଙ୍କୁ ଦେବେ ନାହିଁ । ମୋର ମନେହୁଏ, ଏହି ବାର୍ଷିକ କର ସମ୍ବନ୍ଧରେ ମୁଁ ତତେ ଲେଖିଛି । ଆୟର୍ଲଣ୍ଡରେ ବଡ଼ ବଡ଼ ଜମିଦାରମାନଙ୍କଠାରୁ ଯେତେବେଳେ ଜମିସବୁ ନିଆଗଲା, ସେତେବେଳେ ତାଙ୍କୁ ସୁନ୍ଦରଭାବରେ କ୍ଷତିପୂରଣ ଦିଆଗଲା ଏବଂ ତା ପରେ ଯେଉଁ କୃଷୀମାନେ ଜମି ନେଲେ ସେମାନଙ୍କଠାରୁ ବର୍ଷକୁ ବର୍ଷ କର ଆଦାୟ କରାଗଲା । ଏହି ସ୍ଥିତି ପ୍ରାୟ ଏକ ପୁରୁଷରୁ ବେଶି କାଳ ହେଲା ଚାଲିଆସିଛି; ଏବେ ବି ଚାଲିଛି । ଡି ଭେଲେରା କହିଲେ ଯେ ସେ ଆଉ ଦେବେ ନାହିଁ ।

ସାଙ୍ଗେ ସାଙ୍ଗେ ଇଂଲଣ୍ଡରେ ଚିତ୍କାର ଉଠିଲା ଏବଂ ବ୍ରିଟିଶ ସରକାର ସହ ସଂଘର୍ଷ ଲାଗିଲା । ସେମାନେ ପ୍ରଥମେ ପ୍ରତିବାଦ କରି କହିଲେ ଡି ଭେଲେରାଙ୍କ ପକ୍ଷରେ ଶପଥ ଉଠାଇ ଦେବାଟା ୧୯୨୧ ସନ୍ଧିହାର ଆଇରିଶ୍ ଚୁକ୍ତିଭଙ୍ଗ ହେବ । ଡି ଭେଲେରା କହିଲେ ଯେ, ଡୋମିନିୟନସବୁ ଯେପରି ଘୋଷଣା କରାଯାଉଛି, ସେହିପରି ଆୟର୍ଲଣ୍ଡ ଓ ଇଂଲଣ୍ଡ ସହ ସହୋଦର-ଜାତି ହୋଇଥାନ୍ତି ଏବଂ ପ୍ରତ୍ୟେକର ନିଜର ଶାସନବିଧାନ ପରିବର୍ତ୍ତନ କରିବାର ସବୁ ସ୍ୱାଧୀନତା ରହିଛି, ତେବେ ଏ କଥା ସ୍ପଷ୍ଟ ଯେ ଆୟର୍ଲଣ୍ଡ ତାର ଶାସନବିଧାନକୁ ପରିବର୍ତ୍ତନ କରିପାରେ ବା ଶପଥ ଉଠାଇ ଦେଇପାରେ । ଏବେ ୧୯୨୧ ସନ୍ଧିହା ସନ୍ଧିର କୌଣସି ପ୍ରଶ୍ନ ଉଠୁ ନାହିଁ । ଆୟର୍ଲଣ୍ଡର ସବୁ ଏ ଅଧିକାର ନାହିଁ, ତେବେ ତାହା ହେଉ ଅନୁପାତରେ ଇଂଲଣ୍ଡଠାରେ ପରାଧୀନ ଥିଲା ।

ଦ୍ୱିତୀୟରେ ବାର୍ଷିକ କର ବନ୍ଦ କରିବା ବିଷୟରେ ବ୍ରିଟିଶ ସରକାର ଅଧିକ ପ୍ରତିବାଦ କଲା ଏବଂ କହିଲା ଯେ ଏଥିରେ ଭୀଷଣ ଚୁକ୍ତିଭଙ୍ଗ ହେଉଛି । ଡି ଭେଲେରା ଏହା ଅସ୍ୱୀକାର କଲେ ଏବଂ ଏହି ବିଷୟ ଯେନ ଆଇନଗତ ଯୁକ୍ତି ହବୁ ଲାଗିଲା—ସେ ସମ୍ବନ୍ଧରେ ଆମର ମୁଣ୍ଡ ଘୁରାଇ ଲାଭ ନାହିଁ । ଯେତେବେଳେ ବାର୍ଷିକ କର ଅସୁଲ ଦେବାର ସମୟ ଆସିଲା ଏବଂ ତାହା ଆଦାୟ ହେଲା ନାହିଁ, ସେତେବେଳେ ଇଂଲଣ୍ଡ ଆୟର୍ଲଣ୍ଡ ବିରୁଦ୍ଧରେ ଏକ ନୂତନ ଯୁଦ୍ଧ ଘୋଷଣା କଲା । ଏହା ଏକ ଆର୍ଥନୀତିକ ଯୁଦ୍ଧ । ଇଂଲଣ୍ଡକୁ ଆସୁଥିବା ଅଇରିଶ୍

ମାଲ ଉପରେ ବହୁତ ଶୁଳ୍କ ବସାଇ ଦିଆଗଲା—ଆଇରିଶ କୃଷକର ଉତ୍ପାଦିତ ଜିନିଷପତ୍ର ଇଂଲଣ୍ଡକୁ ଆସୁଥିଲା—ସେ ଏହା ଫଳରେ ଧ୍ୱଂସ ପାଇଯିବ ଏବଂ ଏହିପରି ଭାବରେ ଆଇରିଶ ସରକାର ଗୋଟାଏ ଚୁକ୍ତିନାମାରେ ସହିଦେବାକୁ ବାଧ୍ୟ ହେବ । ଇଂଲଣ୍ଡର ସାଧାରଣ ନୀତି ଯେପରି ସବୁଦିନ ଥାଏ, ସେହିପରି ଅନ୍ୟ ପକ୍ଷକୁ ବାଧ୍ୟ କରିବା ପାଇଁ ଖଡ୍ଗ-ଭୟ ଦେଖାଇଲା । କିନ୍ତୁ ଆମର ଏସବୁ ପ୍ରଣାଳୀ ଯେତେ ଦରକାରୀ ଥିଲା, ଆଜିକାଲି ଆଉ ସେପରି ନାହିଁ । ଆୟର୍ଲଣ୍ଡକୁ ଯାଉଥିବା ବିଲାତି ଜିନିଷ ଉପରେ ଶୁଳ୍କ ବସାଇ ଆଇରିଶ ସରକାର ଏହାର ପ୍ରତିଶୋଧ ନେଲା । ଏହି ଆର୍ଥନୀତିକ ଯୁଦ୍ଧ ଫଳରେ ଉଭୟ ପକ୍ଷର ଶିଳ୍ପ ଓ କୃଷକ-ମାନଙ୍କର ବହୁତ କ୍ଷତି ଘଟିଲା । କିନ୍ତୁ ନିଦାରୁଣ ଜାତୀୟତା ଓ ମର୍ଯ୍ୟାଦାଜ୍ଞାନ କୌଣସି ଦଳ ପକ୍ଷରେ ନଇଁ ପଡ଼ିବାରେ ବାଧାଦେଲା ।

୧୯୩୩ ପ୍ରଥମ ଭାଗରେ ଆୟର୍ଲଣ୍ଡରେ ପୁନର୍ବାର ନିର୍ବାଚନ ହେଲା ଏବଂ ବ୍ରିଟିଶ ସରକାରଙ୍କୁ ସୁଖ ନ ଲଗିଥିଲେ ସୁଦ୍ଧା ପୂର୍ବ ଅପେକ୍ଷା ଡି ଭେଲେରା ଆହୁରି ଅଧିକ ସଂଖ୍ୟାରେ ଆସିଲେ ଓ ସଫଳ ହେଲେ । ତେଣୁ ଏକଥା ସ୍ପଷ୍ଟ ହେଲା ଯେ ବ୍ରିଟିଶର ଆର୍ଥନୀତିକ ବାଧବାଧକତା କରିବା ନୀତି କୃତକାର୍ଯ୍ୟ ହେଲା ନାହିଁ । ଏଥିରେ ବିଚିତ୍ର କଥା ହେଉଛି, ଆଇରିଶ୍‌ମାନେ ତାଙ୍କ କରଜ ନ ଦେଇ ବଦମାସୀ କରୁଛନ୍ତି ବୋଲି ବ୍ରିଟିଶ ସରକାର ଏଣେ ଘୋଷଣା କରୁଥାଏ, ତେଣେ ସେ ନିଜେ ଆମେରିକାକୁ ନିଜର ଋଣ ପରିଶୋଧ କରିବାକୁ ଚାହେଁ ନାହିଁ ।

ଏହିରୂପେ ଆଇରିଶ ସରକାରର ପ୍ରଧାନ ହୋଇ ଏବେ ରହିଛନ୍ତି ଡି ଭେଲେରା ଏବଂ ସେ ତାଙ୍କ ଦେଶକୁ ପାହାଚ ପାହାଚ କରି ପ୍ରଜାତନ୍ତ୍ର ଆଡ଼କୁ ଅଗ୍ରସର କରାଇ ନେଉଛନ୍ତି । ଶପଥ ନେବା ଉଠିଯାଇଛି; ବାର୍ଷିକ କର ଦେବା ଏକଦମ୍ ବନ୍ଦ ହୋଇଯାଇଛି; ସ୍ୱାଧୀନ ଗଭର୍ଣ୍ଣର-ଜେନେରାଲ ବି ଯାଇଛି ଏବଂ ଡି ଭେଲେରା ତାଙ୍କ ଦଳର ଜଣେ ସଭ୍ୟଙ୍କୁ ଏହି ପଦରେ ନିଯୁକ୍ତ କରିଛନ୍ତି—ଏହା ଏବେ ଏହାର ସମସ୍ତ ଗୁରୁତ୍ୱ ହରାଇଛି । ପ୍ରଜାତନ୍ତ୍ର ପାଇଁ ସଂଗ୍ରାମ ଚାଲିଛି; କିନ୍ତୁ ପନ୍ଥା ଏବେ ପୃଥକ ହୋଇଛି । ଶତାବ୍ଦୀ ପୁରାତନ ଆଙ୍ଗ୍ଲୋ-ଆଇରିଶ୍ ସଂଗ୍ରାମ ଏବେ ସୁଦ୍ଧା ଚାଲିଛି ଏବଂ ଆଜି ଏହା ଆର୍ଥନୀତିକ ଯୁଦ୍ଧରୂପ ଧାରଣ କରିଛି ।

ଆୟର୍ଲଣ୍ଡ ଅଳ୍ପଦିନରେ ଏକ ପ୍ରଜାତନ୍ତ୍ରରେ ପରିଣତ ହୋଇପାରେ । କିନ୍ତୁ ଏହା ପଥରେ ଗୋଟିଏ ପ୍ରଧାନ ପ୍ରତିବନ୍ଧକ ରହିଛି । ଡି ଭେଲେରା ଓ ତାଙ୍କ ଦଳ ମୋଟ ଉପରେ ମିଳିତ ଆୟର୍ଲଣ୍ଡ, ଗୋଟିଏ ପ୍ରଜାତନ୍ତ୍ର ଓ ଅଲଷ୍ଟର ସମେତ ସମଗ୍ର ଦ୍ୱୀପ ପାଇଁ ଗୋଟିଏ କେନ୍ଦ୍ର ସରକାର ପ୍ରତିଷ୍ଠା କରିବାକୁ ଚାହାନ୍ତି । ଆୟର୍ଲଣ୍ଡ ପରି କ୍ଷୁଦ୍ର ରାଜ୍ୟଟି ଦୁଇ ଭାଗରେ ବିଭକ୍ତ ହେବାଟା ଠିକ୍ ନୁହେଁ । ଅଲଷ୍ଟର କିପରି ଭାବରେ ଆୟର୍ଲଣ୍ଡର ଅନ୍ୟ ଅଂଶ ସହ ଯୋଗ କରିବ, ଏହାହିଁ ଡି ଭେଲେରାଙ୍କ ସମ୍ମୁଖରେ ମହାନ୍ ସମସ୍ୟା । ଏହା ବଳପୂର୍ବକ କରାଯାଇପାରିବ ନାହିଁ । ୧୯୧୪ରେ ବ୍ରିଟିଶ ସରକାରଙ୍କ ସେହିପରି ଏକ ଉଦ୍ୟମ ଫଳରେ

ତୋଟାଏ ବଡ଼ୋକ୍ସ ହୋଇଥିଲ ଏବଂ ବ୍ରିଟେନ ନିଶ୍ଚୟ ଅଲଷ୍ଟରକୁ ବାଧ୍ୟ କରିପାରିବ ନାହିଁ କିମ୍ବା ସେପରି କରିବାର ସ୍ୱପ୍ନ ସୁଦ୍ଧା ଦେଖେ ନାହିଁ । ତ ଭେଲେରା ଆଶା କରନ୍ତି ସେ ସେ ଅଲଷ୍ଟରର ସହଚ୍ଛା ପାଇପାରିବେ ଏବଂ ଏହିପରି ଭାବରେ ମିଳନ ହୋଇପାରିବ । କିନ୍ତୁ ଏପରି ଆଶାଟା ଅତିମାତ୍ରା ପରି ମନେହୁଏ; କାରଣ ପ୍ରୋଟେଷ୍ଟାଣ୍ଟ ଅଲଷ୍ଟରର କାଥିଲିକ ଆଇର୍ଲଣ୍ଡ ପ୍ରତି ଅବିଶ୍ୱାସ ସେହିପରି ରହିଛି ।

ନୋଟ (୧୯୩୮) :—ଦୁଇ ଦେଶ ଭିତରେ ଆର୍ଥିକ ଯୁଦ୍ଧ କେତେବର୍ଷ ଚାଲିବା ପରେ ଦୁଇ ସରକାର ଭିତରେ ଚୋଟାଏ ଚୁକ୍ତି ହୋଇ ଶେଷ ହେଲା । ଯେଉଁ ଚୁକ୍ତି ଫଳରେ ବାର୍ଷିକ କର ସମସ୍ୟା ଓ ଅନ୍ୟ ଆର୍ଥିକ ସମ୍ବନ୍ଧସବୁ ତୁଟିଗଲା ତାହା ବ୍ରିଟେନ ପକ୍ଷରେ ଖୁବ୍ ଲାଭଜନକ ହୋଇଥିଲା । ତ ଭେଲେରା ପ୍ରଜାତନ୍ତ୍ର ସ୍ଥାପନ ଦିଗରେ ଆହୁରି କାର୍ଯ୍ୟସବୁ କରିଛନ୍ତି ଏବଂ ବ୍ରିଟିଶ ସରକାର ଓ ରାଜା ସହିତ ଅନେକ ସମ୍ପର୍କ ତୁଟାଇ ଦେଇଛନ୍ତି । ଆଇର୍ଲଣ୍ଡର ନାମ ଏବେ ହୋଇଛି ଆୟାର । ଆୟାର ପାଖରେ ଜୀବନ୍ତ ପ୍ରଶ୍ନ ହେଉଛି ଏକତା—ଅଲଷ୍ଟର କିପରି ମିଶିପାରିବ ? କିନ୍ତୁ ଅଲଷ୍ଟର ଏବେସୁଦ୍ଧା ଅସମ୍ମତ ରହିଛି ।

## ୧୫୮ : ଭସ୍ମସ୍ତୂପରୁ ନୂତନ ତୁର୍କୀର ଉଦୟ

ମେ ୭, ୧୯୩୩

ମୁଁ ମୋର ଗତ ଚିଠିରେ ପ୍ରଜାତନ୍ତ୍ର ପାଇଁ ଆଇର୍ଲାଣ୍ଡର ସାହସିକ ସଂଗ୍ରାମ ସମ୍ବନ୍ଧରେ ଲେଖିଥିଲି । ଆଇର୍ଲାଣ୍ଡ ଓ ତୁର୍କୀ ଭିତରେ କିଛି ଖାସ ସମ୍ବନ୍ଧ ନାହିଁ । କିନ୍ତୁ ଆଜି ମୋ ମନରେ ନୂତନ ତୁର୍କୀ କଥା ଉଠିଛି ଏବଂ ସେଥିସକାଶେ ମୁଁ ତାହା ଲେଖିବାକୁ ଯାଉଛି । ଆଇର୍ଲାଣ୍ଡ ପରି ସେ ମଧ୍ୟ ଭୀଷଣ ଅସୁବିଧା ଭିତରେ ଅଦ୍ଭୁତ ପ୍ରକାର ପ୍ରତିରୋଧ ଚଳାଇଛି । ପୃଥିବୀ-ଯୁଦ୍ଧ ଫଳରେ ରୁଷ, ଅଷ୍ଟ୍ରିଆ ଓ ଜର୍ମାନୀ—ଏହି ତିନୋଟି ସାମ୍ରାଜ୍ୟ ଅନ୍ତର୍ହିତ ହେବାର ଆମେ ଦେଖିଲେ । ତୁର୍କୀରେ ଆମ ଚତୁର୍ଥ ସାମ୍ରାଜ୍ୟ—ଅଟୋମାନ୍ ସାମ୍ରାଜ୍ୟର ଶେଷ ଦେଖିଲେ । ଅଟୋମାନ୍ ଓ ତାଙ୍କ ଉତ୍ତରାଧିକାରୀମାନେ ୬୦୦ ବର୍ଷ ପୂର୍ବେ ଏହି ସାମ୍ରାଜ୍ୟ ପ୍ରତିଷ୍ଠା କରି ଗଢ଼ିଥିଲେ । ତେଣୁ ତାଙ୍କ ବଂଶ ରୁଷର ରୋମାନଫ୍ ଓ ପ୍ରୁସିଆ ଏବଂ ଜର୍ମାନୀର ହୋହେନ୍‌ଜଲର୍ଣ୍ଣମାନଙ୍କଠାରୁ ଅଧିକ ପୁରାତନ । ସେମାନେ ୧୩ଶ ଶତାବ୍ଦୀର ପ୍ରଥମ ହାପସ୍‌ବର୍ଗ ବଂଶର ସମସାମୟିକ ଏବଂ ଏହି ଦୁଇଟି ପୁରାତନ ବଂଶଙ୍କର ଏକ ସମୟରେ ପତନ ହେଲା ।

ପୃଥିବୀ-ଯୁଦ୍ଧରେ ଜର୍ମାନୀର କଚ୍ଛାଦନ ପୂର୍ବରୁ ତୁର୍କୀର ପତନ ହେଲା ଏବଂ ମିତ୍ରପକ୍ଷ ସହିତ ଏକ ଅଲଗା ସନ୍ଧି କଲା । ଏହି ଦେଶ ବ୍ୟାବହାରିକରୂପେ ଖଣ୍ଡ ଖଣ୍ଡ ହୋଇଯାଇଥିଲା । ସାମ୍ରାଜ୍ୟ ଆଉ ନ ଥିଲା ଏବଂ ସରକାରୀ କଳ ଭାଙ୍ଗି ପଡ଼ିଥିଲା । ଇରାକ ଓ ଆରବ ଦେଶସବୁ ବିଚ୍ଛିନ୍ନ ହୋଇଥିଲା ଏବଂ ବେଶି ଭାଗରେ ମିତ୍ରପକ୍ଷ ଅଧୀନରେ ରହିଲେ । କନ୍‌ଷ୍ଟାଣ୍ଟିନୋପଲ ବି ମିତ୍ରପକ୍ଷ ନିୟନ୍ତ୍ରଣରେ ଥିଲା ଏବଂ ଏହି ମହାନ୍ ନହରକୁ ସମ୍ମୁଖୀନ ହୋଇ ବସ୍ଫରସ୍‌ରେ ବିଜୟୀଶକ୍ତିର ଗର୍ବିତ ପ୍ରତୀକରୂପେ ବ୍ରିଟିଶ ଯୁଦ୍ଧଜାହାଜସବୁ ଏଠାରେ ଲଙ୍ଗର ପକାନ୍ତି । ପ୍ରତ୍ୟେକ ସ୍ଥାନରେ ଇଂରେଜ, ଫରାସୀ ଓ ଇଟାଲୀ ସେନା ଥିଲେ ଏବଂ ବ୍ରିଟିଶ ଗୁପ୍ତବିଭାଗ ଏଜେଣ୍ଟସବୁ ଏହିସବୁ ସ୍ଥାନରେ ପହିତସ୍ତ ମାରୁଥାନ୍ତି । ତୁର୍କୀ ଦୁର୍ଗମାନଙ୍କୁ ଭାଙ୍ଗି ଦିଆଯାଉଥାଏ ଏବଂ ତୁର୍କୀ ସେନାର ଅବଶେଷଠାରୁ ଅସ୍ତ୍ର ଛଡ଼ାଇ ନିଆ ହେଉଥିଲା । ତୁର୍କୀର ନେତା ଏନବେର ପାଶା, ଟାଲତ୍ ବେଗ୍ ଓ ଅନ୍ୟମାନେ ଅନ୍ୟ ଦେଶକୁ ପଳାଇଗଲେ । ସୁଲତାନ ଗାଦିରେ କ୍ରୀଡ଼ାପୁତ୍ତଳୀ ରୂପେ ଓ୍ୱାହିଦୁଦ୍ଦିନ ବସିଲେ—ନିଜ ଦେଶର ଅବସ୍ଥା ଯାହା ହେଉ ପଛକେ ନିଜକୁ ଧ୍ୱଂସରୁ ରକ୍ଷା କରିବା ହେଲା ତାଙ୍କର କାମନା । ବ୍ରିଟିଶ ସରକାର କଥାରେ ରାଜି ହୋଇଥିବା ଆଉ ଜଣେ ଲୋକ ଗ୍ରାଣ୍ଡ ଭିଜିର (Grand vizier) ବା ପ୍ରଧାନମନ୍ତ୍ରୀ ହେଲେ । ତୁର୍କୀ ପାର୍ଲିଆମେଣ୍ଟକୁ ଭାଙ୍ଗି ଦିଆଗଲା ।

୧୯୧୮ ଶେଷ ଓ ୧୯୧୯ ଆରମ୍ଭ ବେଳକୁ ତୁର୍କୀରେ ଏହିପରି ଅବସ୍ଥା ଥିଲା । ତୁର୍କୀ ସଂପୂର୍ଣ୍ଣରୂପେ ଅବସନ୍ନ ହୋଇପଡ଼ିଥିଲା ଏବଂ ତାର ଉତ୍ତେଜନା କମିଯାଇଥିଲା । ସେମାନଙ୍କୁ କି ଭୀଷଣ ଅବସ୍ଥା ଭୋଗିବାକୁ ହୋଇଥିଲା ସ୍ମରଣ କର । ପୃଥିବୀ-ଯୁଦ୍ଧର ଚାରି ବର୍ଷ ପୂର୍ବରୁ ବଲକାନ୍ ଯୁଦ୍ଧ ହେଲା ଏବଂ ତା ପୂର୍ବରୁ ଥିଲା ଇଟାଲୀ ସହିତ ଯୁଦ୍ଧ ଏବଂ ଏହି ସବୁ ବିପ୍ଳବ ଯୁବକ-ତୁର୍କୀ ପକ୍ଷରେ ଅତି କଠିନ ବାଧା ହେଲା—ସେମାନେ ସୁଲତାନ ଅବଦୁଲ ହାମିଦଙ୍କୁ ଗାଦିଚ୍ୟୁତ କଲେ ଓ ପାର୍ଲିଆମେଣ୍ଟ ସ୍ଥାପନ କଲେ । ତୁର୍କୀ ସର୍ବଦା ଅଲୌକିକ ଧୈର୍ଯ୍ୟ ଓ ଶକ୍ତି ଦେଖାଇଛୁ; କିନ୍ତୁ ପ୍ରାୟ ୮ ବର୍ଷ ପର୍ଯ୍ୟନ୍ତ କ୍ରମାନ୍ୱୟ ଯୁଦ୍ଧ ତାଙ୍କ ପକ୍ଷରେ ବହୁତ ବେଶି ହୋଇପଡ଼ିଲା—ଯେ କୌଣସି ଲୋକଙ୍କ ପକ୍ଷରେ ଏହା ଅତ୍ୟଧିକ ହୋଇ ଥାଆନ୍ତା । ତେଣୁ ସେମାନେ ସମସ୍ତ ଆଶା ଛାଡ଼ିଦେଲେ ଏବଂ ମନ୍ଦ କପାଳ ପଡ଼ିଛି ବୋଲି ବିଜୟୀ ମିତ୍ରପକ୍ଷର ନିଷ୍ପତ୍ତି ପର୍ଯ୍ୟନ୍ତ ଅପେକ୍ଷା କରି ରହିଲେ ।

ଯୁଦ୍ଧକାଳରେ ପ୍ରାୟ ଦୁଇ ବର୍ଷ ଆଗରୁ ମିତ୍ରପକ୍ଷ ଇଟାଲୀ ସହିତ ଏକ ଗୁପ୍ତ ସନ୍ଧି କରି ଇଟାଲୀକୁ ସ୍ମିର୍ଣ୍ଣା ଓ ଏସିଆମାଇନରର ପଶ୍ଚିମ ଅଞ୍ଚଳ ଦେବା ନିମନ୍ତେ ପ୍ରତିଶ୍ରୁତି ଦେଇଥିଲେ । ଏଥିପୂର୍ବରୁ କାଗଜକଲମରେ କନ୍‌ଷ୍ଟାଣ୍ଟିନୋପଲ ରୁଷକୁ ଦିଆହୋଇଥିଲା ଏବଂ ଆରବ ଦେଶକୁ ମିତ୍ରପକ୍ଷ ନିଜ ଭିତରେ ଭାଗ ବାଣ୍ଟି ନେଲେ । ଏସିଆମାଇନର ଇଟାଲୀକୁ ଦେବାର ଯେ ଶେଷ ଗୁପ୍ତ ସନ୍ଧି ଏ ବିଷୟରେ ରୁଷର ସମ୍ମତି ଦରକାର ଥିଲା । ଇଟାଲୀର ଦୁର୍ଭାଗ୍ୟକୁ ଏହା ହେବା ପୂର୍ବରୁ ବଲଶେଭିକମାନେ କ୍ଷମତାକୁ ଆସିଲେ ଏବଂ ଇଟାଲୀ ମିତ୍ର

ପକ୍ଷଙ୍କ ଉପରେ ଯେତେ ବିରକ୍ତି ଓ କ୍ରୋଧ ପ୍ରକାଶ କଲେ ସୁଦ୍ଧା ଏହା କେବେ ମଞ୍ଜୁର ହୋଇପାରିଲା ନାହିଁ ।

ଅବସ୍ଥା ଏହିପରି ଥିଲା । କାପୁରୁଷ ସୁଲତାନଙ୍କଠାରୁ ତୁର୍କମାନେ ପଛରେ ପଡ଼ିଗଲା ପରି ମନେହେଲା । "ଇଉରୋପର ପୀଡ଼ିତ ଲୋକ" ଶେଷକୁ ମଲା ଅଥବା ସେହିପରି ଦେଖାଗଲା । ପ୍ରତିରୋଧ କରିବା ଯେତେ ଅସହାୟତ୍ୱଜନକ ହେଉ ପଛକେ, କେତେକ ତୁର୍କବାସୀ ଭାଗ୍ୟ ବା ପରିସ୍ଥିତିରେ ମୁଣ୍ଡ ନୁଆଁଇ ମାନିନେବାକୁ ପ୍ରସ୍ତୁତ ନ ଥିଲେ । ସେମାନେ ନୀରବରେ ଓ ଗୁପ୍ତ ଭାବରେ କତୁକ୍ଷଣ କାର୍ଯ୍ୟ କଲେ ଏବଂ ପ୍ରକୃତରେ ମିତ୍ରପକ୍ଷର ଅଧୀନରେ ଥିବା ଅସ୍ତ୍ରାଗାରମାନଙ୍କରୁ ଅସ୍ତ୍ରଶସ୍ତ୍ର ଓ ଅନ୍ୟ ସାମଗ୍ରୀ ସଂଗ୍ରହ କଲେ ଏବଂ କୃଷ୍ଣସାଗର ଦେଇ ଆନାଟୋଲିଆ (ଏସିଆମାଇନର)ର ଅଭ୍ୟନ୍ତର ଅଞ୍ଚଳକୁ ତାହାସବୁ ଜାହାଜରେ ପଠାଇଲେ । ଏହି ଗୁପ୍ତକର୍ମୀଙ୍କ ଭିତରେ ପ୍ରଧାନ ଥିଲେ କେମାଲ୍ ପାଶା । ଏହାଙ୍କ ନାମ ମୋର କେତେକ ପୂର୍ବ ଚିଠିରେ ଉଲ୍ଲେଖ କରିଛି ।

ଇଂରେଜମାନେ ଯୋଦ୍ଧା କେମାଲଙ୍କୁ ମୂଳରୁ ଭଲ ପାଉ ନ ଥିଲେ । ସେମାନେ ତାଙ୍କୁ ସନ୍ଦେହ କଲେ ଓ ଗିରଫ କରିବାକୁ ଚାହୁଁଥିଲେ । ସୁଲତାନ ତ ପୂର୍ଣ୍ଣଭାବରେ ଇଂରେଜଙ୍କ ହାତମୁଠାରେ ଥିଲେ ! ସେ ବି ତାଙ୍କୁ ଭଲ ପାଉ ନ ଥିଲେ । କିନ୍ତୁ ସେ ଭାବିଲେ, ତାଙ୍କୁ ଖୁବ୍ ଗାଁଗହଳ ଭିତରକୁ ପଠାଇବା ହିଁ ନିରାପଦ ଊଚିତ ହେବ; ତେଣୁ ପୂର୍ବ ଆନାଟୋଲିଆର ଫୌଜ ଇନ୍ସପେକ୍ଟର ଜେନେରାଲ ରୂପେ କେମାଲ୍ ପାଶା ନିଯୁକ୍ତ ହେଲେ । ପ୍ରକୃତରେ ଅନୁସନ୍ଧାନ କରିବା ପାଇଁ କୌଣସି ସେନା ନ ଥିଲା ଏବଂ ପକୃତରେ ତାଙ୍କର କାର୍ଯ୍ୟ ହୋଇଲେ ଧରାଯାଉଥିଲା ତୁର୍କ ସେନାଙ୍କଠାରୁ ଅସ୍ତ୍ରଶସ୍ତ୍ର ନେଇ ମିତ୍ରପକ୍ଷକୁ ସାହାଯ୍ୟ କରିବା । କେମାଲଙ୍କ ପକ୍ଷରେ ଏହା ଏକ ମାହେନ୍ଦ୍ର ବେଳା; ସେ ଏଥିରେ ଲୁଦପଡ଼ିଲେ ଏବଂ ସଙ୍ଗେ ସଙ୍ଗେ ଚାଲିଲେ । ସେ ଯାଇ ବି ଭଲ କଲେ; କାରଣ ସେ ଯିବାର କେତେକ ଘଣ୍ଟା ପରେ ସୁଲତାନ ପୁଣି ତାଙ୍କର ମତ ପରିବର୍ତ୍ତନ କରି ସାରିଥିଲେ । କେମାଲଙ୍କ ଭୟ ତାଙ୍କୁ ଭଲରୂପେ ଘାରିଲା ଏବଂ କେମାଲଙ୍କୁ ଅଟକାଇବା ନିମନ୍ତେ ଦ୍ରୁତଅଧରେ ସେ ଇଂରେଜଙ୍କୁ ଖବର ପଠାଇଲେ; କିନ୍ତୁ ପକ୍ଷୀ ଉଡ଼ି ଚାଲିଯାଇଥିଲା ।

କେମାଲ ପାଶା ଓ ମୁଷ୍ଟିମେୟ ଅନ୍ୟ ତୁର୍କବାସୀ ଆନାଟୋଲିଆରେ ଜାତୀୟ ପ୍ରତିରୋଧ ପାଇଁ ସଂଗଠନ ଆରମ୍ଭ କଲେ । ସେମାନେ ନୀରବରେ ଅଗ୍ରସର ହେଲେ ଏବଂ ପ୍ରଥମେ ଦକ୍ଷତାର ସହିତ ଗଠନ କରି ସେଠାରେ ଥିବା ସେନା କର୍ମଚାରୀଙ୍କୁ ହାତ କରିବାକୁ ଚେଷ୍ଟା କଲେ । ବାହାରକୁ ସେମାନେ ସୁଲତାନର ଏଜେଣ୍ଟରୂପେ କାର୍ଯ୍ୟ କଲେ; କିନ୍ତୁ କନଷ୍ଟାଣ୍ଟିନୋପଲରୁ ଆସୁଥିବା ହୁକୁମନାମା ପ୍ରତି ଆଦୌ ଦୃଷ୍ଟି ଦେଲେ ନାହିଁ । ଘଟଣାର ଗତି ତା ସାହାଯ୍ୟ କଲା । କନେସରେ ଇଂରେଜମାନେ ଏକ ଆର୍ମେନିଆନ୍ ପ୍ରଜାତନ୍ତ୍ର

ସୃଷ୍ଟି କଲେ ଏବଂ ଏହା ଦ୍ୱାରା ତୁର୍କୀର ଉତ୍ତରଅଞ୍ଚଳ ଯୋଗ କରିବା ନିମନ୍ତେ ପ୍ରତିଶ୍ରୁତି ଦେଲେ । ସେମାନେ ଏଥିପାଇଁ ଯୁଦ୍ଧ କରିବା ଶ୍ରେୟସ୍କର ମନେ କଲେ । ତେଣୁ ପୂର୍ବ ଆନାଟୋଲିଆର ପୂର୍ବ ଅଞ୍ଚଳର ତୁର୍କୀମାନେ କେମାଲ ପାଶାଙ୍କର ନିବେଦନ ଓ ନିର୍ଦ୍ଦେଶ ଶୁଣିବା ନିମନ୍ତେ ଇଚ୍ଛୁକ ଥିଲେ ।

ଇତ୍ୟବସରରେ ଆଉ ଏକ ଅଧିକ ଗୁରୁତର ଘଟଣାରେ ତୁର୍କୀବାସୀ ଜାଗ୍ରତ ହେଲେ । ଇଟାଲୀ, ଇଂଲଣ୍ଡ ଓ ଫ୍ରାନ୍ସ ଯେଉଁ ଗୁପ୍ତ ସନ୍ଧି କରିଥିଲେ ଏବଂ ଯାହା କାର୍ଯ୍ୟକାରୀ ହୋଇପାରି ନ ଥିଲା, ୧୯୧୯ ପ୍ରଥମ ଭାଗରେ ଇଟାଲୀ ଏସିଆମାଇନରରେ ସୈନ୍ୟ ଓହ୍ଲାଇ ତାକୁ ପାଇବାର ଚେଷ୍ଟା କଲା । ଇଂଲଣ୍ଡ ଓ ଫ୍ରାନ୍ସ ଏହାକୁ ଆଦୌ ପସନ୍ଦ କଲେ ନାହିଁ; ସେତେବେଳେ ଇଟାଲୀୟାନ୍‌ମାନଙ୍କୁ ବହିଷ୍କୃତ କରିବାକୁ ସେ ଇଚ୍ଛୁ ନ ଥିଲେ । ଆଉ କଣ କରିବେ ଜାଣି ନ ପାରି ସେମାନେ ଗ୍ରୀକ୍‌ସେନାଙ୍କୁ ସ୍ମିର୍ଣ୍ଣା ଦଖଲ କରିବା ପାଇଁ ଅନୁମତି ଦେଲେ ତାହା ହେଲେ ଇଟାଲୀ ଆସିବା ପୂର୍ବରୁ ଏମାନେ ଦଖଲ କରିପାରିଥିବେ । -

ଗ୍ରୀକ୍‌ଙ୍କୁ କାହିଁକି ଏପରି ବଛାଗଲେ ? ଫରାସୀ ଓ ଇଂରେଜ ସେନାମାନେ ଯୁଦ୍ଧ-କ୍ଳାନ୍ତ ହୋଇ ପଡ଼ିଥିଲେ ଏବଂ ଏକପ୍ରକାର ବିଦ୍ରୋହ କରିବା ଅବସ୍ଥାରେ ଥିଲେ । ସେମାନେ ସୈନ୍ୟରୁ ମୁକ୍ତ ପାଇ ଯେତେଶୀଘ୍ର ସମ୍ଭବ ଘରକୁ ଫିରିବାକୁ ଚାହୁଁଥିଲେ । ଗ୍ରୀକ୍‌ମାନେ ବଳବାନ ଥିଲେ ଏବଂ ଏସିଆମାଇନର ଓ କନ୍‌ଷ୍ଟାଣ୍ଟିନୋପଲ ସଂଯୋଗ କରିବାର ସ୍ୱପ୍ନ ଗ୍ରୀକ୍ ସରକାର ଦେଖୁଥିଲା—ତାହାହେଲେ ପୁରାତନ ବିଜାଣ୍ଟାଇନ୍ ସାମ୍ରାଜ୍ୟ ସେହି ପୁନରୁଦ୍ଧାର କରିପାରିବ । ଇଂଲଣ୍ଡର ସେତେବେଳର ପ୍ରଧାନମନ୍ତ୍ରୀ ଲଏଡ୍ ଜର୍ଜଙ୍କର ଦୁଇଟି ଦକ୍ଷ ଗ୍ରୀକ୍‌ମିତ୍ର ଥିଲେ – ମିତ୍ରପକ୍ଷ କାଉନସିଲରେ ଲଏଡ୍ ଜର୍ଜ ସେତେବେଳେ ପ୍ରଭାବଶାଳୀ ଥିଲେ । ଏମାନଙ୍କ ଭିତରୁ ଜଣେ ହେଉଛନ୍ତି ଗ୍ରୀସ୍‌ର ପ୍ରଧାନ ମନ୍ତ୍ରୀ ଭେନିଜେଲସ୍ । ଅନ୍ୟଜଣେ ବଡ଼ ରହସ୍ୟପୂର୍ଣ୍ଣ ଲୋକ—ସାର ବାସିଲ ଯାହାଙ୍କୁ ସମ୍ଭବରେ ସେ ପରିଚିତ । ତାଙ୍କର ମୂଳ ନାମ ହେଉଛି ବାସିଲିୟସ୍ ଜାଚେରିଆଜ୍ । ୧୮୭୭ ବେଳେ ତାଙ୍କର ଯୁବାବସ୍ଥାରେ ସେ ଗୋଟିଏ ଅସ୍ତ୍ରଶସ୍ତ୍ର କାରଖାନାର ଏଜେଣ୍ଟରୂପେ ବଲକାନ୍‌ରେ ଥିଲେ । ପୃଥିବୀ-ଯୁଦ୍ଧ ଶେଷବେଳକୁ ସେ ଇଉରୋପରେ ସର୍ବାପେକ୍ଷା ଧନୀ ଲୋକ ହୋଇଗଲେ — ସମ୍ଭବତଃ ପୃଥିବୀରେ ବଡ଼ ଧନୀଲୋକ ହେଲେ ଏବଂ ବଡ଼ ବଡ଼ ରାଜନୀତିଜ୍ଞ ଓ ସରକାର-ସବୁ ତାଙ୍କୁ ସମ୍ମାନ ଦେଖାଇ ଆନନ୍ଦିତ ହେବାକୁ ଲାଗିଲେ । ତାଙ୍କୁ ଉଚ୍ଚ ଇଂରେଜୀ ଓ ଫରାସୀ ଉପାଧି ସବୁ ଦିଆଗଲା; ସେ ଅନେକ ଖବରକାଗଜର ମାଲିକ ଥିଲେ, ସେ ପ୍ରଚ୍ଛଦପଟରେ ରହି ସରକାରସବୁ ଉପରେ ପ୍ରଚୁର ପ୍ରଭାବ ପକାଇଲାପରି ଦେଖାଗଲା । ସାଧାରଣ ତାଙ୍କ ସମ୍ବନ୍ଧରେ ବିଶେଷ କିଛି ଜାଣି ନ ଥିଲେ ଏବଂ ସେ ଦୃଷ୍ଟି ଅନ୍ତରାଳରେ ରହିଲେ । ବାସ୍ତବିକ ସେ ଜଣେ ଆଧୁନିକ ଆନ୍ତର୍ଜାତୀୟ ଧନପତି ଥିଲେ—ସେ ଅନେକ ଦେଶରେ ନିଜର ପ୍ରଭାବ ବିସ୍ତାର କରି

ତନ୍ତ୍ରିଳନ୍ତ କରନ୍ତ ଏବଂ କେତେକ ପରମାଣରେ ସେ ସ୍ୱାଧୀନ ଗଣତାନ୍ତ୍ରିକ ଦେଶର ସରକାର-ସବୁକୁ ହାତମୁଠାରେ ରଖିଲେ । ଏପରି ଦେଶମାନଙ୍କରେ ଲୋକେ ନିଜକୁ ଶାସନ କରୁଛନ୍ତି ବୋଲି ଗୋଟାଏ ଉତ୍ତେଜନା ଲଭିକରନ୍ତ; କିନ୍ତୁ ପଶ୍ଚାତ୍ରେ ଅଦୃଶ୍ୟ ଭାବରେ ଆନ୍ତର୍ଜାତୀୟ ଅର୍ଥ ହିଁ ପ୍ରକୃତ କ୍ଷମତା ହୋଇଯାଏ ।

ଜାହାରେଫ କପରି ଏତେ ଧନୀ ଓ ପ୍ରଧାନ ହୋଇ ପାରିଲେ ? ତାଙ୍କର କାମ ଥିଲା ସବୁପ୍ରକାର ଅସ୍ତ୍ରଶସ୍ତ୍ର ବିକ୍ରୀ କରିବା; ଏବଂ ଏହା ବିଶେଷତଃ ବଲକାନ୍‌ରେ ଏକ ଲାଭଜନକ ବ୍ୟବସାୟ ଥିଲା । କିନ୍ତୁ ଅନେକେ ବିଶ୍ୱାସ କରନ୍ତି ଯେ ସେ ଆଗରୁ ବ୍ରିଟିଶ ଗୁପ୍ତ ବିଭାଗର ଜଣେ ସଭ୍ୟ ଥିଲେ । ଏହା ତାଙ୍କ ବ୍ୟବସାୟ ଓ ରାଜନୀତିରେ ଖୁବ୍ ସାହାଯ୍ୟ କଲା ଏବଂ ବାରମ୍ବାର ଯୁଦ୍ଧ ଫଳରେ ଲକ୍ଷ ଲକ୍ଷ ଟଙ୍କା ସେ ଲାଭକଲେ । ଏହିରୂପେ ସେ ଆଜି-କାଲିକାର ରହସ୍ୟଜନକ ବ୍ୟକ୍ତି ହୋଇପାରିଥିଲେ ।

ଏହି କଳ୍ପିତ ଧନୀ ଓ ରହସ୍ୟପୂର୍ଣ୍ଣ ଲୋକ ଏବଂ ଭେନିଜେଲୋସ ଗ୍ରୀକ୍‌ସେନା ଏସିଆମାଇନରକୁ ପଠାଇବା ପାଇଁ ଲଏଡ ଜର୍ଜଙ୍କୁ ରାଜି କରାଇଲେ । ଜାହାରେଫ ଏଥିରେ ଅର୍ଥସାହାଯ୍ୟ ଦେବାଲାଗି ସମ୍ମତ ହେଲେ । ଏହି ଗୋଟିକ ସ୍ଥାନରେ ମୂଳଧନ ଖଟାଇ ହିଁ ସେ ଲାଭ ପାଇପାରି ନ ଥିଲେ; କାରଣ କଥିତ ଅଛି ଯେ ସେ ତୁର୍କୀ ଯୁଦ୍ଧପାଇଁ ଗ୍ରୀକ୍‌ମାନଙ୍କୁ ୧୦୦,୦୦୦,୦୦୦ ଡଲାର (ଆମେରିକା ମୁଦ୍ରା) ଅଗ୍ରୀମ ଦେଇଥିଲେ; ତାହା ହରାଇଲେ ।

ଗ୍ରୀକ୍‌ସେନା ବ୍ରିଟିଶ ଜାହାଜରେ ଏସିଆମାଇନରକୁ ଗଲେ ଏବଂ ବ୍ରିଟିଶ, ଫରାସୀ ଓ ଆମେରିକା ଯୁଦ୍ଧଜାହାଜ ଛତ୍ରଛାୟା ତଳେ ୧୯୧୯ ମସିହା ମେ ମାସରେ ସ୍ମିର୍ଣ୍ଣାରେ ଓହ୍ଲାଇଲେ । ଏହି ସେନା ହେଲା ତୁର୍କୀକୁ ମିତ୍ରପକ୍ଷର ଦାନ । ସେମାନେ ପହଞ୍ଚିବା ମାତ୍ରେ ଭୀଷଣ ଆକାରରେ ହତ୍ୟାକାଣ୍ଡ ଓ ନୃଶଂସତା ଆରମ୍ଭ କଲେ । ଏପରି ଆତଙ୍କ ରାଜୁତି ସେଠି ଆରମ୍ଭ କଲେ ଯେ ଯୁଦ୍ଧକ୍ଳାନ୍ତ ଦୁନିଆରେ ଶାନ୍ତି ଶବ୍ଦେକ ବି ଏଥିରେ କମିଗଲା । ତୁର୍କୀରେ ବି ଏହାର ଖୁବ୍ ପ୍ରଭାବ ପଡ଼ିଲା, କାରଣ ମିତ୍ରପକ୍ଷ ତୁର୍କୀପ୍ରତି କପରି ବ୍ୟବହାର କରିବେ ତାହା ସେ ଦେଖିପାରିଲେ । ତାଙ୍କର ପୁରୁଣା ଶତ୍ରୁ ଓ ପ୍ରଜା ଗ୍ରୀକ୍‌ଙ୍କଠାରୁ ସେମାନେ ପୁଣି ଏପରି ବ୍ୟବହାର ପାଇଲେ; ନତେହେତ୍ୟା ହେଲା । ତୁର୍କୀ ହୃଦୟରେ କ୍ରୋଧାଗ୍ନି ଜଳିଲା ଏବଂ ଜାତୀୟ ଆନ୍ଦୋଳନ ବୃଦ୍ଧି ପାଇଲା । ବାସ୍ତବିକ କୁହାଯାଏ ଯେ ଯଦିଓ କେମାଲ ପାଶା ଏହି ଆନ୍ଦୋଳନର ନେତା ଥିଲେ, ତଥାପି ସ୍ମିର୍ଣ୍ଣାର ଗ୍ରୀକ୍ ଦଙ୍ଗଲ ହିଁ ଏହାର ସ୍ରଷ୍ଟା । ସେ ପର୍ଯ୍ୟନ୍ତ ଯେଉଁସବୁ ତୁର୍କୀ କର୍ମଚାରୀ ଅନିଶ୍ଚିତ ଅବସ୍ଥାରେ ଥିଲେ ସେମାନେ ଏଥିରେ ଯୋଗ ଦେଲେ—ଅବଶ୍ୟ ଏଥିରେ ଯୋଗଦେବାର ଅର୍ଥ ସୁଲତାନଙ୍କ ଆଦେଶ ଅମାନ୍ୟ କରିବା । କାରଣ ସୁଲତାନ ଏଥିଭିତରେ କେମାଲ ପାଶାଙ୍କ ଗିରଫ ଲାଗି ହୁକୁମ ଦେଇ ସାରିଥିଲେ ।

୧୯୧୯ ସେପ୍‌ଟେମ୍ବର ମାସରେ ନିର୍ବାଚିତ ପ୍ରତିନିଧିମାନଙ୍କର କଂଗ୍ରେସ ଆନା-ଟୋଲିଆର ସିଭାସଠାରେ ହେଲା । ଏହା ହିଁ ନୂତନ ପ୍ରତିରୋଧର ଶୁଭ ଦେଲା ଏବଂ କେମାଲଙ୍କୁ ସଭାପତି କରି ଏକ ନୂତନ କାର୍ଯ୍ୟକାରୀ ସମିତି ଗଠିତ ହେଲା । ଏକ "ଜାତୀୟ ଚୁକ୍ତି" ବି ଗୃହୀତ ହେଲା । ସେଥିରେ ଅନ୍ୟୂନ କେଉଁ ସର୍ତ୍ତରେ ମିତ୍ରପକ୍ଷ ସହ ସନ୍ଧି କରାଯିବ ଏବଂ ପୂର୍ଣ୍ଣ ସ୍ୱାଧୀନତା ବିଷୟ ଲିପିବଦ୍ଧ ହେଲା । କନଷ୍ଟାଣ୍ଟିନୋପଲରେ ସୁଲତାନଙ୍କ ଉପରେ ଏହା ପ୍ରଭାବ ପକାଇଲା ଏବଂ ସେ କିଛିଏ ଭୟଭୀତ ହୋଇଗଲେ । ସେ ପାର୍ଲିଆମେଣ୍ଟର ଏକ ନୂତନ ଅଧିବେଶନ ଡାକିବାକୁ ପ୍ରତିଶ୍ରୁତି ଦେଲେ ଓ ନିର୍ବାଚନ ପାଇଁ ଆଦେଶ କଲେ । ଏହି ନିର୍ବାଚନରେ ସିଭାସ କଂଗ୍ରେସର ଲୋକେ ହିଁ ଅଧିକ ସଂଖ୍ୟାରେ ଆସିଲେ । କନଷ୍ଟାଣ୍ଟିନୋପଲ ଲୋକଙ୍କୁ କେମାଲ ପାଶା ବିଶ୍ୱାସ କଲେ ନାହିଁ ଏବଂ ନୂତନ ନିର୍ବାଚିତ ସଭ୍ୟମାନଙ୍କୁ ସେଠାକୁ ନ ଯିବା ସକାଶେ ସେ ପରାମର୍ଶ ଦେଲେ । କିନ୍ତୁ ସେମାନେ ରାଜି ହେଲେ ନାହିଁ ଏବଂ ରାଉଫ ବେଗଙ୍କ ନେତୃତ୍ୱରେ ସେମାନେ ଇସ୍ତାନବୁଲକୁ ଗଲେ (କନଷ୍ଟାଣ୍ଟିନୋପଲକୁ ମୁଁ ପରେ ଏହି ନାମରେ ଲେଖିବି) । ସେମାନଙ୍କର ଯିବାର ଏକ କାରଣ ହେଉଛି ମିତ୍ରପକ୍ଷ ଏକ ଘୋଷଣା କଲେ ଯେ ଯଦି ସୁଲତାନଙ୍କ ସଭାପତିତ୍ୱରେ ନୂତନ ପାର୍ଲିଆମେଣ୍ଟ ଇସ୍ତାନବୁଲରେ ବସେ ତେବେ ସେମାନେ ତାହା ସ୍ୱୀକାର କରିବେ । କେମାଲ ନିଜେ ଜଣେ ଡେପୁଟି ବା ସଭ୍ୟ ଥିଲେ ସୁଦ୍ଧା ଗଲେ ନାହିଁ ।

୧୯୨୦ ମସିହା ଜାନୁୟାରୀରେ ଇସ୍ତାନବୁଲଠାରେ ନୂତନ ପାର୍ଲିଆମେଣ୍ଟ ବସିଲା ଏବଂ ସିଭାସ କଂଗ୍ରେସରେ ଯେଉଁ "ଜାତୀୟ ଚୁକ୍ତି" ହୋଇଥିଲା, ତାହା ସଙ୍ଗେ ସଙ୍ଗେ ଗ୍ରହଣ କଲେ । ଇସ୍ତାନବୁଲରେ ଥିବା ମିତ୍ରପକ୍ଷ ପ୍ରତିନିଧିମାନେ ଏହା ଆଦୌ ପସନ୍ଦ କଲେ ନାହିଁ କିମ୍ବା ପାର୍ଲିଆମେଣ୍ଟର ଆହୁରି ଅନେକ କାର୍ଯ୍ୟ ସେମାନେ ପସନ୍ଦ କଲେ ନାହିଁ । ତେଣୁ ଛ ସପ୍ତାହ ପରେ ସେ ତାଙ୍କର ଚିରାଚରିତ ବରଂ ଅଶିଷ୍ଟ କୌଶଳ ପ୍ରୟୋଗ କରିବା ନିମନ୍ତେ ସ୍ଥିର କଲେ—ଇଜିପଟ ଓ ଅନ୍ୟତ୍ର ସେମାନେ ପୂର୍ବରୁ ଏପରି କରିଥିଲେ । ଇଂରେଜ ସେନାପତି ଇସ୍ତାନବୁଲକୁ ମାଡ଼ି ଆସିଲେ, ସହର ଦଖଲ କଲେ, ସାମରିକ ଆଇନ ଘୋଷଣା କଲେ, ରାଉଫ ବେଗଙ୍କ ସମେତ ୪୦ ଜଣ ଡେପୁଟିଙ୍କୁ ଗିରଫ କଲେ ଓ ମାଲଟାକୁ ସେମାନଙ୍କୁ ଦ୍ୱୀପାନ୍ତର କଲେ । ବ୍ରିଟିଶଙ୍କର ଏହି ଉଦାର ପ୍ରଣାଳୀ ପ୍ରୟୋଗ କରିବାର ଅର୍ଥ ଥିଲା ଦୁନିଆକୁ ଜଣାଇ ଦେବା ଯେ ମିତ୍ରପକ୍ଷ "ଜାତୀୟ ଚୁକ୍ତି"କୁ ପସନ୍ଦ କରୁ ନାହାନ୍ତି ।

ତୁର୍କୀ ପୁନର୍ବାର ଭୀଷଣ ଭାବରେ ଉତ୍ତେଜିତ ହୋଇଉଠିଲା । ଏବେ ପରିଷ୍କାର ଜଣାପଡ଼ିଲା ଯେ ସୁଲତାନ ଇଂରେଜଙ୍କ ହାତରେ କ୍ରୀଡ଼ାପୁତ୍ତଳୀ । ଅନେକ ତୁର୍କୀ ଡେପୁଟି ଆଙ୍ଗୋରାକୁ ପଳାଇଗଲେ; ସେଠାରେ ପାର୍ଲିଆମେଣ୍ଟ ବୈଠକ ହେଲା ଏବଂ ଏହାର ନାମ ଦେଲେ ତୁର୍କୀର ବିରାଟ ଜାତୀୟ ପରିଷଦ । ଏହା ନିଜକୁ ସରକାର ବୋଲି ଘୋଷଣା କଲା ଏବଂ ଆହୁରି ଘୋଷଣା କଲା ଯେ ବ୍ରିଟିଶ ଇସ୍ତାନବୁଲ ଦଖଲ କଲାଦିନୁ ସୁଲତାନ ଓ ତାଙ୍କ ସରକାରର ଆଉ ଅସ୍ତିତ୍ୱ ନାହିଁ ।

ସୁଲତାନ ଏହାର ପ୍ରତିଶୋଧ ନେଲେ – ସେ କେମାଲ ପାଶା ଓ ଅନ୍ୟମାନଙ୍କୁ ଦସ୍ୟୁ ବୋଲି ଘୋଷଣା କଲେ, ସେମାନଙ୍କୁ ଦେଶରୁ ନିର୍ବାସିତ କଲେ ଏବଂ ମୃତ୍ୟୁ ଶାସ୍ତି ଦେବା ନିମନ୍ତେ ଘୋଷଣା କଲେ । ଆହୁରି ମଧ୍ୟ ସେ ଘୋଷଣା କଲେ ଯେ କେହି କେମାଲ ଓ ଅନ୍ୟମାନଙ୍କୁ ବଧ କରିପାରିଲେ ଏକ ପବିତ୍ର କର୍ତ୍ତବ୍ୟ ସମ୍ପାଦନ କରିବ ଏବଂ ଏହି ଦୁନିଆ ଓ ପର ସଂସାରରେ ମଧ୍ୟ ସେ ଏଥିପାଇଁ ପୁରସ୍କୃତ ହେବ । ସ୍ମରଣ ରଖିବା ଦରକାର ଯେ ସୁଲତାନ ମଧ୍ୟ ଖଲିଫା ବା ଧର୍ମଗୁରୁ ଥିଲେ ଏବଂ ହତ୍ୟାଲାଗି ତାଙ୍କ ପାଖରୁ ଏପରି ପ୍ରକାଶ୍ୟ ନିମନ୍ତ୍ରଣ ଅର୍ଥ ଭୀଷଣ ଜିନିଷ । କେମାଲ ପାଶାଙ୍କୁ ଖାଲି ବିଦ୍ରୋହୀ ନୁହେଁ. ଏକ ଧର୍ମଭ୍ରଷ୍ଟ ଲୋକ ବୋଲି ଘୋଷଣା କରାଗଲା ଏବଂ ଯେକୌଣସି ଧର୍ମୀୟ ଲୋକ ତାଙ୍କୁ ହତ୍ୟା କରିପାରେ । ଜାତୀୟବାଦୀମାନଙ୍କୁ ଦମନ କରିବା ନିମନ୍ତେ ସୁଲତାନ ତାଙ୍କ ଶକ୍ତି ଅନୁସାରେ ସବୁ କରିଥିଲେ । ସେ ଏକ ଜିହାଦ୍ ବା ତାଙ୍କ ବିରୁଦ୍ଧରେ ଏକ ଧାର୍ମିକ ଯୁଦ୍ଧ ଘୋଷଣା କଲେ ଏବଂ ସେମାନଙ୍କ ସହିତ ଲଢ଼ିବା ପାଇଁ ଏକ "ଖଲିଫା ସେନା" ସଂଗଠନ କଲେ । ପ୍ରତ୍ୟେକ ସ୍ଥାନରେ ବିଦ୍ରୋହ ହେଲା ଏବଂ କିଛିଦିନ ସମଗ୍ର ତୁର୍କୀରେ ଗୃହଯୁଦ୍ଧ ଲାଗିଗଲା । ଏହା ଏକ ବିକଟ ଯୁଦ୍ଧ— ସହର ସହର ଭିତରେ, ଭାଇ ଭାଇ ଭିତରେ ଲାଗିଲା ଏବଂ ଉଭୟ ପକ୍ଷରୁ ନିର୍ଦ୍ଦୟରୂପେ ନୃଶଂସତା କରାଗଲା ।

ଇତ୍ୟବସରେ ସ୍ମିର୍ଣ୍ଣାରେ ଗ୍ରୀକ୍‌ମାନେ ସେ ଦେଶର ସ୍ଥାୟୀ ପ୍ରଭୁରୂପେ ବ୍ୟବହାର କଲେ—ଅତି ବର୍ବର ପ୍ରଭୁ ବୋଲି ପରିଚୟ ଦେଲେ । ଉର୍ବରା ଉପତ୍ୟକାମାନଙ୍କୁ ସେମାନେ ବିନଷ୍ଟ କରିଦେଲେ ଏବଂ ହଜାର ହଜାର ତୁର୍କୀବାସୀଙ୍କି ଗୃହହୀନ କରିଦେଲେ । ସେମାନଙ୍କ ଅଗ୍ରଗତିରେ ତୁର୍କୀବାସୀ ସେପରି କିଛି ପ୍ରତିରୋଧ କରିପାରି ନ ଥିଲେ ।

ଧର୍ମର ସମ୍ମତି ପାଇ ନିଜ ରାଜ୍ୟରେ ଗୃହଯୁଦ୍ଧ ଲାଗିଛି ଏବଂ ବିଦେଶୀ ଆକ୍ରମଣକାରୀ ସେମାନଙ୍କ ଅନ୍ତକୁ ଅଗ୍ରଗତି କରି ଆସୁଛି ଏବଂ ସୁଲତାନ ଓ ଗ୍ରୀକ୍ ଉଭୟଙ୍କ ପଶ୍ଚାତ୍‌ରେ ଜର୍ମାନୀ ବିଜୟ ପରେ ପୃଥିବୀରେ ପ୍ରାଧାନ୍ୟ କରୁଥିବା ମହାନ୍ ମିତ୍ରଶକ୍ତି ରହିଛନ୍ତି—ଏହିସବୁର ସମ୍ମୁଖୀନ ହେବା ଜାତୀୟବାଦୀଙ୍କ ପକ୍ଷରେ କିଛି ଆନନ୍ଦଦାୟକ ନ ଥିଲା । କିନ୍ତୁ କେମାଲ ପାଶାଙ୍କର ନିଜ ଲୋକଙ୍କ ଆଗରେ ଏହି ଧ୍ୱନି ଥିଲା—"ବିଜୟ ହାସଲ କର, ନଚେତ୍ ଭସ୍ମ ହୋଇଯାଅ ।" ଜାତୀୟବାଦୀମାନେ ଯଦି ବିଫଳ ହୁଅନ୍ତି, ତେବେ ସେ କଣ କରିବେ ବୋଲି ଜଣେ ଆମେରିକାନ୍ ପତ୍ରିକାରୁ ସେ କହିଥିଲେ—"ଯେଉଁ ଜାତି ନିଜର ଜୀବନ ଓ ସ୍ୱାଧୀନତା ସକାଶେ ଅନ୍ତିମ ତ୍ୟାଗ କରେ, ତାହା ବିଫଳ ହୁଏନା । ବିଫଳ ହେବା ଅର୍ଥ ଜାତି ମୃତ ହୋଇଯାଇଛି ।"

ମିତ୍ରଶକ୍ତିମାନେ ଅଭାଗା ତୁର୍କୀ ସକାଶେ ଯେଉଁ ସନ୍ଧିପତ୍ର ତିଆରି କରିଥିଲେ, ତାହା ୧୯୨୦ ଅଗଷ୍ଟ ମାସରେ ପ୍ରକାଶିତ ହେଲା; ଏହାକୁ ସେଭ୍ରେସ (Sevres) ସନ୍ଧି କହନ୍ତି । ଏଥିରେ ତୁର୍କୀ ସ୍ୱାଧୀନତାର ଅନ୍ତ ହେଲା; ସ୍ୱାଧୀନ ଜାତି ବଦଳରେ ତୁର୍କୀକୁ ମୃତ୍ୟୁ ଶାସ୍ତି

ଦିଆଗଲା । କେବଳ ଯେ ସେ ଦେଶକୁ ଖଣ୍ଡ ଖଣ୍ଡ କରି କାଟିଦିଆଗଲା ତାହା ନୁହେଁ, ଅଧିକନ୍ତୁ ଇସ୍ତାନ୍‌ବୁଲରେ ମଧ୍ୟ ଏକ ମିତ୍ରପକ୍ଷ କମିଶନ ବସି ତା ଉପରେ କର୍ତ୍ତୃତ୍ୱ କରିବା ନିମନ୍ତେ ଧାର୍ଯ୍ୟ କରାଗଲା । ସମଗ୍ର ଦେଶରେ ବିଷାଦ ଦେଖାଗଲା ଏବଂ ଜାତୀୟ ଶୋକ ପ୍ରକାଶ ପାଇଁ ଗୋଟିଏ ଦିବସ ପାଳନ କରାଗଲା - ସେ ଦିନ ପ୍ରାର୍ଥନା ଓ ହରତାଳ କରାଗଲା । କଳା ଚିହ୍ନ ଦେଇ ସମ୍ବାଦପତ୍ର ସବୁ ପ୍ରକାଶିତ ହେଲା । ଏସବୁ ସତ୍ତ୍ୱେ ସୁଲତାନର ପ୍ରତିନିଧିମାନେ ଏ ସନ୍ଧି ଦସ୍ତଖତ କଲେ । ଜାତୀୟତାବାଦୀମାନେ ଅବଶ୍ୟ ଘୃଣାସହକାରେ ଏହାକୁ ପ୍ରତ୍ୟାଖ୍ୟାନ କଲେ ଏବଂ ସନ୍ଧିପତ୍ର ପ୍ରକାଶ ଫଳରେ ସେମାନଙ୍କର କ୍ଷମତା ବୃଦ୍ଧି ପାଇଲା ଏବଂ ସମ୍ପୂର୍ଣ୍ଣ ଅଧୋଗତିରୁ ନିଜ ଦେଶକୁ ରକ୍ଷା କରିବା ନିମନ୍ତେ ଅଧିକ ସଂଖ୍ୟାରେ ତୁର୍କୀ ଲୋକେ ସେମାନଙ୍କ ଆଡ଼କୁ ଅନାଇଲେ ।

କିନ୍ତୁ ବିଦ୍ରୋହ ତୁର୍କୀ ଉପରେ ଏହି ସନ୍ଧିପତ୍ର ଜବରଦସ୍ତ ଚଳାଇବ କିଏ ? ମିତ୍ରପକ୍ଷ ଏହା ନିଜେ କରିବା ନିମନ୍ତେ ପ୍ରସ୍ତୁତ ନ ଥିଲେ । ସେମାନେ ସେମାନଙ୍କର ସେନା ସଙ୍ଗଠନ ଭାଙ୍ଗି ଦେଇଥିଲେ ଏବଂ ନିଜ ଦେଶରେ ଏହି ସୈନ୍ୟ ଓ ଶ୍ରମିକମାନଙ୍କର କ୍ରୋଧ ସେମାନଙ୍କୁ ସହ୍ୟ କରିବାକୁ ପଡ଼ୁଥିଲା । ପଶ୍ଚିମ ଇଉରୋପୀୟ ଦେଶମାନଙ୍କରେ ଏବେ ସୁଦ୍ଧା ବିପ୍ଳବ ଭାବ ଦେଖାଯାଉଥିଲା । ଏହାଛଡ଼ା ମଧ୍ୟ ମିତ୍ରପକ୍ଷଙ୍କର ନିଜ ଭିତରେ ଝଗଡ଼ା ଲାଗୁଥିଲା ଓ ଯୁଦ୍ଧର ଲୁଣ୍ଠିତ ଦ୍ରବ୍ୟ ବାଣ୍ଟିବା ସେଇ ବିବାଦ ଚାଲିଥିଲା । ପୂର୍ବରେ ଇଂଲଣ୍ଡ ଓ କେତେକ ପରିମାଣରେ ଫ୍ରାନ୍ସକୁ ଏକ ବିପଜ୍ଜନକ ପରିସ୍ଥିତିର ସମ୍ମୁଖୀନ ହେବାକୁ ପଡ଼ିଲା । ଫରାସୀ ଶାସିତଦେଶ ଅର୍ଥାତ୍ ମାଣ୍ଡେଟ ବା କର୍ତ୍ତୃତ୍ୱାଧୀନରେ ରହି ସିରିଆରେ ଅସନ୍ତୋଷ-ବହ୍ନି ଜଳୁଥିଲା ଏବଂ ଗୋଳମାଳର ସୂଚନା ଦେଖାଯାଉଥିଲା । ଇଜିପ୍ଟରେ ତ ଏକ ରକ୍ତାକ୍ତ ବିଦ୍ରୋହ ହୋଇଯାଇଥିଲା—ଇଂରେଜମାନେ ତାକୁ ଦମନ କରି ଦେଇଥିଲେ । ୧୮୫୭ ବିଦ୍ରୋହଠାରୁ ଶାନ୍ତିପୂର୍ଣ୍ଣ ହେଲେ ସୁଦ୍ଧା ଭାରତରେ ପ୍ରଥମେ ମହାନ୍ ବିଦ୍ରୋହ ଦେଖାଦେଉଥିଲା । ଏହା ହେଉଛି ଗାନ୍ଧିଙ୍କ ନେତୃତ୍ୱରେ ଅସହଯୋଗ ଆନ୍ଦୋଳନ ଏବଂ ଏହି ଆନ୍ଦୋଳନର ଏକ ମୁଖ୍ୟ କାରଣ ହେଲା ଖିଲାଫତ୍ ପ୍ରଶ୍ନ ଓ ତୁର୍କୀ ପ୍ରତି ଯେପରି ବ୍ୟବହାର କରାଯାଇଥିଲା ।

ତେଣୁ ଆମେ ଦେଖିଲେ ଯେ ନିଜର ସନ୍ଧିପତ୍ରି ତୁର୍କୀ ଉପରେ ଚାଲୁ କରିବା ଅବସ୍ଥାରେ ମିତ୍ରପକ୍ଷ ନ ଥିଲେ; କିମ୍ବା ତୁର୍କୀ ଜାତୀୟତାବାଦୀମାନଙ୍କ ଦ୍ୱାରା ଏହାର ପ୍ରକାଶ୍ୟ ଅସ୍ୱୀକୃତି ମଧ୍ୟ ସେମାନେ ସହ୍ୟ କରିବା ନିମନ୍ତେ ପ୍ରସ୍ତୁତ ନ ଥିଲେ । ସେମାନେ ତାଙ୍କର ବନ୍ଧୁ ଭେନିଜେଲୋସ ଓ ଜାହାଗିରଫଙ୍କ ସାହାଯ୍ୟ ଗ୍ରହଣଲେ ଏବଂ ଗ୍ରୀସ୍ ତରଫରୁ ଏହି କାର୍ଯ୍ୟ କରିବା ନିମନ୍ତେ ଏମାନେ ସମ୍ପୂର୍ଣ୍ଣରୂପେ ପ୍ରସ୍ତୁତ ଥିଲେ । ଅବସାଦଗ୍ରସ୍ତ ତୁର୍କୀ ବେଶୀ କିଛି ହୃଦୟଙ୍ଗମ କରିବ ବୋଲି କେହି ଆଶା କରି ନ ଥିଲେ ଏବଂ ଏସିଆ ମାଇନର ପରି ଏକ ପୁରସ୍କାର ପାଇବା କିଛି କମ୍ କଥା ନୁହେଁ । ଅଧିକ ଗ୍ରୀକ୍‌ସେନା ପ୍ରେରିତ ହେଲେ ଏବଂ ବଡ଼ ଆକାରରେ ଗ୍ରୀକ୍ ତୁର୍କୀ-ଯୁଦ୍ଧ ଆରମ୍ଭ ହେଲା । ୧୯୨୦ର ସମଗ୍ର ଗ୍ରୀଷ୍ମ ଓ ଶରତ ଋତୁ ସାରା ଗ୍ରୀକ୍‌ମାନେ ବିଜୟ ଲାଭ କଲେ ଏବଂ ସେମାନେ ତୁର୍କୀଙ୍କୁ ତଡ଼ିଦେଲେ । ତାଙ୍କ

ନିକଟରେ ଥିବା ଧ୍ୱଂସାବଶେଷ ଭିତରୁ ଏକ ପ୍ରଭାବଶାଳୀ ସେନା ଠିଆ କରାଇବା ନିମନ୍ତେ କେମାଲ ପାଶା ଓ ତାଙ୍କ ସହକର୍ମୀମାନେ ଅକ୍ଳାନ୍ତ ଭାବରେ ଲାଗିପଡ଼ିଲେ । ଅତି ଆବଶ୍ୟକ ମୁହୂର୍ତ୍ତରେ ସେମାନେ ଖୁବ୍ ଅଧିକ ଭାବରେ ସାହାଯ୍ୟ ପାଇଲେ । ସୋଭିଏଟ୍ ରୁଷ ସେମାନଙ୍କୁ ଅସ୍ତ୍ରଶସ୍ତ୍ର ଓ ଧନ ସାହାଯ୍ୟ ଦେଲା । ଉଭୟଙ୍କର ସାଧାରଣ ଶତ୍ରୁ ହେଲା ଇଂଲଣ୍ଡ ।

କେମାଲଙ୍କର ଶକ୍ତି ବୃଦ୍ଧି ହେବା ଦେଖି ସଂଗ୍ରାମର ଫଳାଫଳ ବିଷୟରେ ମିତ୍ରପକ୍ଷ ସନ୍ଦିହାନ ହେଲେ ଏବଂ ସେମାନେ ଭଲ ସର୍ତ୍ତ ଯାଚିଲେ । କିନ୍ତୁ ତଥାପି କେମାଲପନ୍ଥୀଙ୍କ ପକ୍ଷରେ ଏହା ଭଲ ବୋଲି ମନେହେଲା ନାହିଁ, ସେମାନେ ଏହାକୁ ଅସ୍ୱୀକାର କଲେ । ତେଣୁ ମିତ୍ରପକ୍ଷ ଗ୍ରୀକ୍-ତୁର୍କୀ ଯୁଦ୍ଧରୁ ସମସ୍ତ ସମ୍ପର୍କ ତୁଟାଇଦେଇ ନିଜର ନିରପେକ୍ଷତା ଘୋଷଣା କଲେ । ଗ୍ରୀକ୍‌ମାନଙ୍କୁ ସେଠାରେ ଜଡ଼ିତ କରିଦେଇ ସେମାନଙ୍କୁ ନିଃସହାୟ ଅବସ୍ଥାରେ ପକାଇ ଛାଡ଼ି ଚାଲିଗଲେ । ବାସ୍ତବିକ ଫ୍ରାନ୍ସ ଓ କେତେକ ପରିମାଣରେ ଇଟାଲି ମଧ୍ୟ ତୁର୍କୀ ସହ ଗୁପ୍ତ ଭାବରେ ବନ୍ଧୁତା ବାନ୍ଧିବାକୁ ଚାହୁଁଥିଲେ । ଇଂରେଜମାନେ ଉଣାଅଧିକେ ଗ୍ରୀକ୍ ପକ୍ଷରେ ଥିଲେ; ମାତ୍ର ବେସରକାରୀ ଭାବରେ ।

୧୯୨୧ ଗ୍ରୀଷ୍ମକାଳରେ ତୁର୍କୀ ରାଜଧାନୀ ଆଙ୍କାରା ଦଖଲ କରିବା ନିମନ୍ତେ ଗ୍ରୀକ୍‌ମାନେ ପ୍ରବଳ ଉଦ୍ୟମ କଲେ । ସେମାନେ ସହର ପରେ ସହର ଦଖଲ କରି ଏହା ସମୀପକୁ ଆସିଲେ – ଶେଷରେ ସାକାରିଆ ନଦୀ ନିକଟରେ ସେମାନଙ୍କୁ ରୋକି ଦିଆଗଲା । ଏହି ନଦୀ ନିକଟରେ ତିନିସପ୍ତାହ ପର୍ଯ୍ୟନ୍ତ ଏହି ଦୁଇ ସେନାଙ୍କ ଭିତରେ ସଂଘର୍ଷ ଚାଲିଲା—ଶତାବ୍ଦୀ ଧରି ଚଳିଆସୁଥିବା ଜାତିଗତ ବିଦ୍ୱେଷ ସହକାରେ ସେମାନେ ଲଢ଼ାଇ କରୁଥାନ୍ତି, କେହି କାହାରିକି ପାଦେ ଛାଡ଼ିବା ଲାଗି ପ୍ରସ୍ତୁତ ନ ଥାନ୍ତି । ଧୈର୍ଯ୍ୟର ଏକ ଭୀଷଣ ପରୀକ୍ଷାସ୍ଥଳ ଏହା ହେଲା; ତୁର୍କୀବାସୀ କୌଣସି ପ୍ରକାର ନିଜର କର୍ତ୍ତୃତ୍ୱ ରକ୍ଷା କରିପାରିଲେ—ଗ୍ରୀକ୍‌ମାନେ କ୍ଳାନ୍ତ ହୋଇ ଅପସରି ଗଲେ । ଗ୍ରୀକ୍‌ସେନା ପ୍ରକୃତି ଅନୁସାରେ ଫେରିଗଲା ବେଳେ ଯାହା କିଛି ପାଇଲେ ପୋଡ଼ିଦେଲେ ଓ ଧ୍ୱଂସ କରିପକାଇଲେ ଏବଂ ଦୁଇ ଶହ ମାଇଲବ୍ୟାପୀ ଉର୍ବରଭୂମିକୁ ମରୁଭୂମିରେ ପରିଣତ କରିଦେଲେ ।

ସାକାରିଆନ୍ ନଦୀ ଯୁଦ୍ଧରେ ପ୍ରାପ୍ତ ବିଜୟ ଲାଭ ହୋଇଛି । ଏହା କେବେହେଁ ନିଷ୍ପତ୍ତିମୂଳକ ବିଜୟ ନୁହେଁ; କିନ୍ତୁ ତଥାପି ଆଧୁନିକ ଇତିହାସର ନିଷ୍ପତ୍ତିମୂଳକ ବିଜୟ ଭିତରେ ଏହା ଗଣ୍ୟ ହୁଏ । ଏହାର ଅର୍ଥସ୍ରୋତ ଅଲଗା ଦିଗରେ ଗତି କଲା । ପ୍ରାଚ୍ୟ ଓ ପାଶ୍ଚାତ୍ୟ ଭିତରେ ଗତ ଦୁଇହଜାର ବର୍ଷ ଓ ଅଧିକକାଳ ହେଲା ଏସିଆ ମାଇନର ମୃତ୍ତିକାରେ ପ୍ରତ୍ୟେକ ଇଞ୍ଚ ସକାଶେ ଯେଉଁ ମନୁଷ୍ୟରକ୍ତ ସବୁ ବୋହିଥିଲା, ସେହି ସଂଗ୍ରାମମାନଙ୍କ ଭିତରେ ଏହା ଅନ୍ୟତମ ।

ଉଭୟ ପକ୍ଷ ସେନା କ୍ଳାନ୍ତ ହୋଇ ପଡ଼ିଥିଲେ ଏବଂ ଶକ୍ତି ସଞ୍ଚୟ କରିବା ନିମନ୍ତେ ଓ ପୁନର୍ଗଠନ ପାଇଁ ସେମାନେ ଲାଗିପଡ଼ିଲେ । କିନ୍ତୁ କେମାଲ ପାଶାଙ୍କ ଗ୍ରହ ନିଃସନ୍ଦେହରୂପେ ତେଜସ୍ୱାନ ଥିଲା । ଫରାସୀ ସରକାର ଆଙ୍କାରା ସହ ଚୁକ୍ତି କଲା । ଆଙ୍କାରା ଓ ସୋଭିଏଟ୍ ଭିତରେ ବି ସନ୍ଧି ହେଲା । ଫ୍ରାନ୍ସର ସ୍ୱୀକାର ମୋସ୍ତାଫା କେମାଲଙ୍କ ପକ୍ଷରେ ଏକ ମହାନ୍ ନୈତିକ ଓ ଭୌତିକ ଲାଭ ହେଲା । ତେଣୁ ସିରିଆ ସୀମାନ୍ତରେ ଥିବା ତୁର୍କୀ ସେନା ଗ୍ରୀକ୍ ବିରୁଦ୍ଧରେ ଲଢ଼ିବାପାଇଁ ମୁକ୍ତ ହୋଇଆସିଲେ । ବ୍ରିଟିଶ ଗଭର୍ଣ୍ଣମେଣ୍ଟ ଏବେସୁଦ୍ଧା କାଠିପୁତୁଳୀ ସୁଲତାନ ଓ ଅକର୍ମଣ୍ୟ ଇସ୍ତାନବୁଲ ସରକାରକୁ ସମର୍ଥନ କରୁଥାଏ । ତେଣୁ ଏହି ଫରାସୀ ଚୁକ୍ତି ତାଙ୍କ ଉପରେ ଏକ ଚଟକଣାରୂପେ ପଡ଼ିଲା ।

ସେଠାରୁ ୧୯୨୨ ଅଗଷ୍ଟ ମାସରେ ଖୁବ୍ ସାବଧାନତାର ସହିତ ପ୍ରସ୍ତୁତ ହୋଇ ସାରିବା ପରେ ତୁର୍କୀ ସେନା ଗ୍ରୀକ୍‌ମାନଙ୍କ ଉପରେ ଆକ୍ରମଣ ଚଳାଇଲା ଏବଂ ସେମାନଙ୍କୁ ସମୁଦ୍ର ଆଡ଼କୁ ତଡ଼ିଦେଲା । ଆଠଦିନ ଭିତରେ ଗ୍ରୀକ୍‌ମାନେ ୧୬୦ ମାଇଲ ପର୍ଯ୍ୟନ୍ତ ଅପସରି ଗଲେ; କିନ୍ତୁ ଏହା ହୋଇ ସୁଦ୍ଧା ସେମାନେ ଯିବା ପଥରେ ଯେତେ ତୁର୍କୀ ପୁରୁଷ, ନାରୀ ଓ ବାଳକ ବାଳିକାଙ୍କୁ ପାଇଲେ ପ୍ରତ୍ୟେକଙ୍କୁ ମାରି ସେମାନଙ୍କର ପ୍ରତିଶୋଧ ନେଲେ । ତୁର୍କୀମାନେ ମଧ୍ୟ ସମାନ ଭାବରେ ନିର୍ଦ୍ଦୟ ଥିଲେ ଏବଂ କେତେକଙ୍କୁ ବନ୍ଦୀ କରି ନେଲା । ବନ୍ଦୀମାନଙ୍କ ଭିତରେ ଗ୍ରୀକର ସେନାଧ୍ୟକ୍ଷ ଓ ତାଙ୍କ କର୍ମଚାରୀବର୍ଗ ଥିଲେ । ଗ୍ରୀକ୍ ସେନାର ଅଧିକ ଅଂଶ ସ୍ମିର୍ଣ୍ଣାଠାରୁ ସମୁଦ୍ରପଥରେ ପଳାଇଗଲେ । କିନ୍ତୁ ସ୍ମିର୍ଣ୍ଣା ସହରର ଅଧିକ ଅଞ୍ଚଳ ପୋଡ଼ି ପକାଇଥିଲେ ।

କେମାଲ ପାଶା ଏହି ବିଜୟ ସାଙ୍ଗେ ସାଙ୍ଗେ ଇସ୍ତାନବୁଲ ଆଡ଼କୁ ନିଜର ସେନା ନେଇ ଅଗ୍ରସର ହେଲେ । ସହରଠାରୁ ଅନତିଦୂରରେ ଚାନକଠାରେ ବ୍ରିଟିଶ ସେନା ତାଙ୍କୁ ରୋକିଲେ ଏବଂ କେତେଦିନ ପର୍ଯ୍ୟନ୍ତ ୧୯୨୨ ସେପ୍ଟେମ୍ବର ମାସରେ ତୁର୍କୀ ଓ ବ୍ରିଟେନ ଭିତରେ ଯୁଦ୍ଧ ଲାଗିବା କଥା ଶୁଣାଗଲା । କିନ୍ତୁ ବ୍ରିଟେନ ତୁର୍କୀର ପ୍ରାପ୍ୟ ସମସ୍ତ ଦାବୀରେ ସମ୍ମତ ହୋଇଗଲେ ଏବଂ ଏକ ସନ୍ଧିପତ୍ର ସ୍ୱାକ୍ଷରିତ ହେଲା । ଏଥିରେ ମିତ୍ରପକ୍ଷ ଥ୍ରେସ୍‌ରେ ଥିବା ସମସ୍ତ ଗ୍ରୀକ୍‌ସେନାଙ୍କୁ ନେଇଯିବେ ବୋଲି ପ୍ରକୃତରେ ପ୍ରତିଶ୍ରୁତି ଦେଲେ । ନୂତନ ତୁର୍କୀ ପଶ୍ଚାତ୍‌ରେ ସର୍ବଦା ସୋଭିଏଟ୍ ରୁଷ ଭୂତ ଥିଲା ଏବଂ ମିତ୍ରପକ୍ଷ ନୂଆ କୌଣସି ଯୁଦ୍ଧ ଉପୁଜେଇବା ନିମନ୍ତେ ପ୍ରସ୍ତୁତ ନ ଥିଲେ ଯେଉଁଥିରେ ତୁର୍କୀ ରୁଷର ସାହାଯ୍ୟ ପାଇପାରିବ ।

ମୋସ୍ତାଫା କେମାଲ ଜୟଲାଭ କଲେ ଏବଂ ୧୯୧୯ର ମୁଷ୍ଟିମେୟ ବିଦ୍ରୋହୀ ଆଜି ପ୍ରଧାନ ଶକ୍ତିର ପ୍ରତିନିଧିମାନଙ୍କ ସହ ସମାନ ଆସନରେ ବସି କଥାବାର୍ତ୍ତା କଲେ । ଅନେକଗୁଡ଼ିଏ ପରିସ୍ଥିତି ଏହି ନିର୍ଣ୍ଣୟକ ବାହିନୀକୁ ସାହାଯ୍ୟ କରିଥିଲା—ଯୁଦ୍ଧପର ପ୍ରତିକ୍ରିୟା, ମିତ୍ରପକ୍ଷ ଭିତରେ ବିବାଦ, ଭାରତ ଓ ଇଜିପ୍ଟରେ ଗୋଳମାଳ ହେତୁ ଇଂରେଜମାନେ

ସେଥିରେ ବ୍ୟସ୍ତ ରହିବା, ସୋଭିଏଟ ରୁଷର ସାହାଯ୍ୟ, ଇଂରେଜମାନେ ଦେଇଥିବା ଅପମାନ —କିନ୍ତୁ ସର୍ବୋପରି ତାଙ୍କର ବିଜୟ, ନିଜର ଦୃଢ଼ପ୍ରତିଜ୍ଞା ଓ ମୁକ୍ତ ଅଭିଳାଷ ଏବଂ ତୁର୍କୀ କୃଷକ ଓ ସୈନିକଙ୍କର ପ୍ରକୃତିରେ ଅଦ୍ଭୁତ ଯୁଦ୍ଧ କରିବା ଶକ୍ତିଯୋଗୁଁ ହେଲା ।

ଲୁସେନ୍‌ରେ ଏକ ଶାନ୍ତି ସମ୍ମିଳନୀ ହେଲା ଏବଂ ଏହା ଅନେକ ମାସ ପର୍ଯ୍ୟନ୍ତ ଚାଲିଲା । ଇଂଲଣ୍ଡ ତରଫରୁ ପ୍ରଭୁତ୍ୱବ୍ୟଞ୍ଜକ ଓ ପ୍ରାଧାନ୍ୟଲିପ୍ସୁ ଲର୍ଡ କର୍ଜନ ଏବଂ ଏକ ପ୍ରକାର ବଧିର ଓ ବନ୍ଧୁ-ଆହାସୀ ଇସ୍‌ମେତ୍ ପାଶାଙ୍କ ଭିତରେ ବଡ଼ ଝଗଡ଼ା ଲାଗିଲା । ଇସ୍‌ମେତ୍ ପାଶା ନୀରବରେ ବସି ରହୁଥାନ୍ତି ଏବଂ ଯାହା ଶୁଣିବା ନିମନ୍ତେ ତାଙ୍କର ଇଚ୍ଛା ନ ଥାଏ, ସେ କଥା ଶୁଣନ୍ତି ନାହିଁ । ଏଥିରେ କର୍ଜନ ଅତ୍ୟନ୍ତ ବିରକ୍ତ ହୋଇଥାନ୍ତି । ଭାରତର ଭାଇସରାୟ ରାଜନୀତିରେ ଅଭ୍ୟସ୍ତ ଓ ଅତ୍ୟନ୍ତ ଆଡ଼ମ୍ବରପ୍ରୟାସୀ ଲର୍ଡ କର୍ଜନ ତର୍ଜନ ଗର୍ଜନ ପ୍ରଣାଳୀ ପ୍ରୟୋଗ କରିବା ନିମନ୍ତେ ଚେଷ୍ଟା କଲେ; ମାତ୍ର ବଧିର ଓ ସସ୍ମିତ ଇସ୍‌ମେତଙ୍କ ଉପରେ ଏହା କିଛି ପ୍ରଭାବ ପକାଇଲା ନାହିଁ । ବିରକ୍ତ ହୋଇ କର୍ଜନ ଫେରି ଆସିଲେ ଏବଂ ସମ୍ମିଳନୀ ଭାଙ୍ଗିଗଲା । ତାପରେ ଏହା ପୁଣି ଥରେ ବସିଲା । କିନ୍ତୁ କର୍ଜନଙ୍କ ପରିବର୍ତ୍ତେ ଆଉ ଜଣେ ବ୍ରିଟିଶ ପ୍ରତିନିଧି ଗଲେ । ଗୋଟିକ ଛଡ଼ା 'ଜାତୀୟ ଚୁକ୍ତି'ରେ ଥିବା ସମସ୍ତ ତୁର୍କୀ ଦାବୀ ସ୍ୱୀକୃତ ହୋଇଗଲା ଏବଂ ୧୯୨୩ ଜୁଲାଇ ମାସରେ ଲୁସେନ୍ ସନ୍ଧି ସ୍ୱାକ୍ଷରିତ ହେଲା । ପୁଣି ଥରେ ସୋଭିଏଟ ରୁଷର ସାହାଯ୍ୟ ଓ ମିତ୍ର ଶକ୍ତିମାନଙ୍କର ପରସ୍ପର ପ୍ରତି ଈର୍ଷାଭାବ ହିଁ ତୁର୍କୀକୁ ସାହାଯ୍ୟ କଲା ।

ବିଜେତା ଅର୍ଥାତ୍ ଘାଜୀ କେମାଲ ପାଶାଙ୍କ ଉଦ୍ଦେଶ୍ୟ ପ୍ରାୟ ସିଦ୍ଧ ହେଲା । କିନ୍ତୁ ମୂଳରୁ ସେ ନିଜର ନ୍ୟୂନତମ ଦାବୀପାଇଁ ଲଢ଼ାଇ କରି ଖୁବ୍ ବୁଦ୍ଧିମତ୍ତାର ପରିଚୟ ଦେଲେ ଏବଂ ସେ ବିଜୟ ପାଇବା ପର୍ଯ୍ୟନ୍ତ ଏଥିରେ ଅଟଳ ରହିଥିଲେ । ଆରବୀୟା, ଇରାକ୍, ପାଲେଷ୍ଟାଇନ୍ ଓ ସିରିଆ ପରି ଅତୁର୍କୀ ରାଜ୍ୟ ଉପରେ ତୁର୍କୀର କର୍ତ୍ତୃତ୍ୱ ଜାରି କରିବା ଧାରଣା ସେ ଛାଡ଼ି ଦେଇଥିଲେ । ସେ ଖାସ ତୁର୍କୀ ଚାହୁଥିଲେ—ତୁର୍କୀ ଜାତି ବାସ କରୁଥିବା ଅଞ୍ଚଳକୁ ମୁକ୍ତ କରିବାକୁ ଚାହୁଥିଲେ । ଅନ୍ୟମାନଙ୍କଠାରେ ତୁର୍କୀ ହସ୍ତକ୍ଷେପ କରିବା ସେ ଚାହୁ ନ ଥିଲେ କିମ୍ବା ତୁର୍କୀରେ କୌଣସି ବିଦେଶୀ ହସ୍ତକ୍ଷେପ ସହ୍ୟ କରିବା ନିମନ୍ତେ ସେ ପ୍ରସ୍ତୁତ ନ ଥିଲେ । ଏହିରୂପେ ତୁର୍କୀ ଏକ ଦୃଢ଼ ଓ ଏକ ଜାତିବିଶିଷ୍ଟ ରାଜ୍ୟ ହେଲା । କେତେବର୍ଷ ପରେ ଗ୍ରୀକ୍ ପ୍ରସ୍ତାବ ଅନୁସାରେ ଲୋକସଂଖ୍ୟାର ଅସାଧାରଣ ଅଦଳ ବଦଳ ହେଲା । ଆନାଟୋଲିଆରେ ଥିବା ଅବଶିଷ୍ଟ ଗ୍ରୀକ୍‌ଙ୍କୁ ଗ୍ରୀସ୍‌କୁ ପଠାଇଦିଆଗଲା ଏବଂ ତାର ବିନିମୟରେ ଗ୍ରୀସରୁ ତୁର୍କୀବାସୀଙ୍କୁ ଅଣା ହେଲା । ଏହିରୂପେ ୧,୫୦୦,୦୦୦ ଗ୍ରୀକ୍ ଅଦଳ ବଦଳ ହେଲେ ଏବଂ ଏଥିରୁ ଅଧିକାଂଶ ପରିବାର ପୁରୁଷ ପୁରୁଷ ଓ ଶତାବ୍ଦୀ ଶତାବ୍ଦୀ ଧରି ଆନାଟୋଲିଆ ଓ ଗ୍ରୀସ୍‌ରେ ବାସ କରିଥିଲେ ।

ଅଦ୍ଭୁତ ପ୍ରକାରେ ଏକ ବାସିନ୍ଦାର ମୂଳୋତ୍ପାଟନ କରାଗଲା ଏବଂ ତୁର୍କୀର ଆର୍ଥନୀତିକ ଜୀବନ ସମ୍ପୂର୍ଣ୍ଣ ଭାବରେ ଓଲଟପାଲଟ ହୋଇଗଲା—କାରଣ ଗ୍ରୀକ୍‌ମାନେ ବାଣିଜ୍ୟରେ ଖୁବ୍ ଲିପ୍ତ ଥିଲେ । କିନ୍ତୁ ଏହାଦ୍ୱାରା ତୁର୍କୀ ଅନେକ ଅଧିକ ଏକଜାତିବିଶିଷ୍ଟ (Homogeneous) ହୋଇଗଲା ଏବଂ ସମ୍ଭବତଃ ଏସିଆ ବା ଇଉରୋପର ଏହା ହିଁ ସର୍ବାପେକ୍ଷା ଅଧିକ ଏକଜାତିବିଶିଷ୍ଟ ଦେଶ ।

ମୁଁ ଆଗରୁ କହିଛି ତୁର୍କୀ ଲୁଜେନ ସନ୍ଧି ଫଳରେ ଗୋଟିଏ ଛଡ଼ା ଆଉ ସବୁ ଦାବୀ ପାଇଲା । ଏହି ଗୋଟିକ ହେଉଛି ଇରାକ ସୀମାନ୍ତ ନିକଟସ୍ଥ ମସୁଲ ପ୍ରଦେଶ ବା 'ଭିଲାୟତ' । ଦୁଇପକ୍ଷ ଏକମତ ନ ହେବାରୁ ଲିଗ୍ ଅଫ୍ ନେସନ୍‌ସ୍‌କୁ ଏହା ଗଲା । ମସୁଲ ଏକ ପ୍ରଧାନ ସ୍ଥାନ—ଆଂଶିକ ଭାବରେ ତେଲ ସକାଶେ; କିନ୍ତୁ ପ୍ରଧାନତଃ ଏହାର ଘାଟ ସ୍ଥଳରେ ଅବସ୍ଥିତି ଯୋଗୁଁ । ମସୁଲ ପର୍ବତ ଉପରେ କର୍ତ୍ତୃତ୍ୱ କରିବା ଅର୍ଥ କେତେକ ପରିମାଣରେ ତୁର୍କୀ, ଇରାକ ପର୍ସିଆ ଓ ଏପରିକି ରୁଷର କକେସସ୍ ଉପରେ ପ୍ରାଧାନ୍ୟ କରିବା । ତୁର୍କୀ ପକ୍ଷରେ ଏହା ଯେ ଅତ୍ୟନ୍ତ ଦରକାର ଥିଲା ଏହା ସ୍ପଷ୍ଟ । ଭାରତକୁ ଯିବାର ସ୍ଥଳ ଓ ଆକାଶପଥ ରକ୍ଷା କରିବା ନିମନ୍ତେ ଏବଂ ସୋଭିଏଟ ରୁଷ ବିରୁଦ୍ଧରେ ଆକ୍ରମଣ ବା ଆତ୍ମରକ୍ଷାର ସ୍ଥାନରୂପେ ବ୍ରିଟେନ ପକ୍ଷରେ ମଧ୍ୟ ଏହା ସେହିପରି ପ୍ରଧାନ ଥିଲା । ମାନଚିତ୍ର ଦେଖିଲେ ମସୁଲ ଅବସ୍ଥିତିର ଗୁରୁତ୍ୱ ବୁଝିହେବ । ଏହି ପ୍ରଶ୍ନରେ ଲିଗ୍ ଅଫ୍ ନେସନ୍‌ସ ବ୍ରିଟେନ ସପକ୍ଷରେ ମତ ଦେଲା । ତୁର୍କୀ ସମ୍ମତ ହେଲା ନାହିଁ ଏବଂ ପୁଣି ଯୁଦ୍ଧ କଥା ଶୁଣାଲେ । ଠିକ୍ ତାପରେ ୧୯୨୬ ଡିସେମ୍ବର ମାସରେ ନୂତନ ରୁଷ-ତୁର୍କୀ ସନ୍ଧି ହେଲା । କିନ୍ତୁ ଶେଷରେ ଅଙ୍ଗୋରା ସରକାର ମାନିନେଲା ଏବଂ ମସୁଲ ନୂତନ ଇରାକ ରାଜ୍ୟର ଅନ୍ତର୍ଭୁକ୍ତ ହେଲା । ଇରାକ ସ୍ୱାଧୀନ ବୋଲି ଧରାଯାଏ; କିନ୍ତୁ ଏପର୍ଯ୍ୟନ୍ତ ବ୍ୟାବହାରିକରୂପେ ଏହା ବ୍ରିଟିଶର ରକ୍ଷିତ ବା ପ୍ରୋଟେକ୍‌ଟରେଟ୍ ହୋଇ ରହିଛି ଏବଂ ବ୍ରିଟିଶ କର୍ମଚାରୀ ଓ ପରାମର୍ଶଦାତା ଭର୍ତ୍ତିହୋଇ ରହିଛନ୍ତି ।

ମୋର ମନେଅଛି, ଏଗାର ବର୍ଷ ପୂର୍ବେ ଗ୍ରୀକମାନଙ୍କ ଉପରେ ମୋସ୍ତାଫା କେମାଲଙ୍କ ବିଜୟବାର୍ତ୍ତା ଶୁଣି ଆମେ କିପରି ଆନନ୍ଦିତ ହୋଇଥିଲୁ ! ୧୯୨୨ ଅଗଷ୍ଟ ମାସର ଆଫିୟୁମ୍ କାରାହିସାର (Afium qarahisar) ଯୁଦ୍ଧରେ ସେ ଗ୍ରୀକ୍ ସେନା ଭାଙ୍ଗିଦେଲେ ଏବଂ ଗ୍ରୀକମାନଙ୍କୁ ସ୍ମର୍ଣ୍ଣା ଓ ସମୁଦ୍ର ଆଡ଼କୁ ତଡ଼ିଦେଲେ । ସେତେବେଳେ ଆମ ଭିତରୁ ଅନେକ ଲକ୍ଷ୍ନୌ ଜିଲା ଜେଲରେ ଥିଲୁ ଏବଂ ଆମେ ସେଠି ଯାହା ଯାହା ପାଇଲୁ ସେଥିରେ ଆମ ଜେଲ ଗାରଦସବୁ ସଜାଇ ତୁର୍କୀର ବିଜୟ ଉତ୍ସବ ପାଳନ କଲୁ ଏବଂ ଅତି ଶ୍ରେଷ୍ଠ ଆକାରରେ ସନ୍ଧ୍ୟାବେଳେ ଦୀପାବଳୀ ଜାଳିବାର ବି ଉଦ୍ୟମ କରିଥିଲୁ ।

# ୧୫୯ ! ମୋସ୍ତାଫା କେମାଲ ଅତୀତରୁ ସମ୍ପର୍କ ତୁଟାଇଲେ

ମେ ୮, ୧୯୩୩

ତୁର୍କୀବାସୀଙ୍କ ପରାଜୟ କାଳରୁ ବିଜୟ ଲାଭ ପର୍ଯ୍ୟନ୍ତ ଭାଗ୍ୟ କିପରି ପରିବର୍ତ୍ତନ ହେଲା ଆମେ ଦେଖିଲେ ଏବଂ ଆମେ ଦେଖିଛେ ଅଦ୍ଭୁତ ପ୍ରକାରେ ସେମାନଙ୍କୁ ଦବାଇବା ପାଇଁ ଓ ଦୁର୍ବଳ କରିବା ନିମନ୍ତେ ମିତ୍ରପକ୍ଷ ବିଶେଷତଃ ଇଂରେଜ ଯେଉଁସବୁ କାଣ୍ଡ କଲେ ତାହାର ବିପରୀତ ପ୍ରଭାବ ସେମାନଙ୍କ ଉପରେ ପଡ଼ିଲା ଏବଂ ପ୍ରକୃତରେ ଏହା ଜାତୀୟବାଦୀମାନଙ୍କୁ ଶକ୍ତିଶାଳୀ କଲା ଏବଂ ଅଧିକ ପ୍ରତିରୋଧ ନିମନ୍ତେ ସେମାନଙ୍କୁ ଅଗ୍ରସର କରାଇଲା । ତୁର୍କୀକୁ ଲୋପ କରିବା ନିମନ୍ତେ ମିତ୍ରପକ୍ଷର ଉଦ୍ୟମ, ସ୍ମର୍ଣ୍ଣାକୁ ଗ୍ରୀକ୍ ସୈନ୍ୟ ପ୍ରେରଣ, ୧୯୨୦ ମାର୍ଚ୍ଚରେ ବ୍ରିଟିଶଙ୍କର ଜବରଦସ୍ତ ଦଖଲ କରିବାର ଉଦ୍ୟମ, ଯେତେବେଳେ ଜାତୀୟବାଦୀ ନେତାମାନେ ଗିରଫ ହେଲେ ଓ ଦ୍ୱୀପାନ୍ତର ଗଲେ, ଜାତୀୟବାଦୀଙ୍କ ବିରୁଦ୍ଧରେ କ୍ରୀଡ଼ା-ପୁତ୍ତଳୀରୂପେ ସୁଲତାନଙ୍କୁ ବ୍ରିଟିଶ ସମର୍ଥନ—ଏସବୁ ତୁର୍କୀବାସୀଙ୍କ ମନରେ କ୍ରୋଧ ଓ ଉତ୍ସାହ ଜାତ କଲା । ଏକ ସାହସିକ ଜାତିକୁ ଅପମାନ ଦେବା ଓ ଦମନ କରିବା ଉଦ୍ୟମର ଅନିବାର୍ଯ୍ୟ ଫଳ ଫଳିଲା ।

ମୋସ୍ତାଫା କେମାଲ ଓ ତାଙ୍କ ସହକର୍ମୀମାନେ ବିଜୟ ହାସଲ ପରେ କଣ କଲେ ? ଗତାନୁଗତିକ ପୁରାତନ ପନ୍ଥାକୁ ଧରି ରହିବାରେ କେମାଲପାଶା ବିଶ୍ୱାସ କରୁ ନ ଥିଲେ; ସେ ସମ୍ପୂର୍ଣ୍ଣ ଭାବରେ ତୁର୍କୀକୁ ବଦଳାଇ ଦେବାକୁ ଚାହୁଁଥିଲେ । କିନ୍ତୁ ତାଙ୍କର ବିଜୟ ପରେ ସେ ଅତ୍ୟନ୍ତ ଲୋକପ୍ରିୟ ହେଲେ; ବଡ଼ ସାବଧାନତାର ସହିତ ତାଙ୍କୁ ଗତି କରିବାକୁ ପଡ଼ୁଥିଲା; କାରଣ ଦୀର୍ଘ ପରମ୍ପରା ଓ ଧର୍ମଦ୍ୱାରା ପ୍ରତିଷ୍ଠିତ ପୁରୁଣା ରୀତିନୀତି ଲୋକଙ୍କ ଭିତରୁ ହଟାଇ ଦେବା ତେତେ ସହଜ କଥା ନୁହେଁ । ସେ ସୁଲତାନେଟ୍ ଓ ଖିଲାଫତ୍ ଉଠାଇ ଦେବାକୁ ଚାହିଁଲେ; କିନ୍ତୁ ତାଙ୍କର ଅନେକ ସହକର୍ମୀ ସେଥିରେ ସମ୍ମତ ହେଲେ ନାହିଁ ଏବଂ ସମ୍ଭବତଃ ସାଧାରଣ ତୁର୍କୀ ମତ ଏପରି ପରିବର୍ତ୍ତନ ବିରୁଦ୍ଧରେ ଥିଲା । କେହି ପୁତ୍ତଳିକା ସୁଲତାନ ଓ୍ୟାହିଦୁଦ୍ଦିନଙ୍କୁ ଚାହୁଁ ନ ଥିଲେ । ସେ ଏକ ବିଶ୍ୱାସଘାତକ ଏବଂ ଦେଶରୁ ବିଦେଶୀଙ୍କୁ ବିକି ଦେବାକୁ ଯାଉଥିଲେ ବୋଲି ଲୋକେ ତାଙ୍କୁ ଘୃଣା କରୁଥିଲେ । କିନ୍ତୁ ଅନେକ ଲୋକ ପ୍ରକୃତ କ୍ଷମତା ଜାତୀୟ ଆସେମ୍ବ୍ଲି ହାତରେ ରଖି ଏକ ପ୍ରକାର ଗଣତାନ୍ତ୍ରିକ ସୁଲତାନ ଓ ଖଲିଫା ରହିବା ପସନ୍ଦ କରୁଥିଲେ । କେମାଲ ସେପରି କୌଣସି ମୀମାଂସା ପକ୍ଷରେ ନ ଥିଲେ ଏବଂ ସେ ନିଜର ସୁଯୋଗକୁ ଚାହିଁ ରହିଲେ ।

ସାଧାରଣତଃ ଯେପରି ହୋଇଥାଏ, ବ୍ରିଟିଶ ହିଁ ଏହି ସୁଯୋଗ ତାଙ୍କୁ ଦେଲେ । ଲୁସେନ ଶାନ୍ତି ସମ୍ମିଳନୀ ବ୍ୟବସ୍ଥା ହେଉଥିବା ବେଳେ, ବ୍ରିଟିଶ ସରକାର ଏଥିକି ଯିବା

ନିମନ୍ତେ ଇସ୍ତାନବୁଲ ସୁଲତାନଙ୍କୁ ନିମନ୍ତ୍ରଣ ପଠାଇଲେ—ଶାନ୍ତି ସର୍ତ୍ତ ଆଲୋଚନା କରିବା ନିମନ୍ତେ ପ୍ରତିନିଧି ପଠାଇବା ପାଇଁ କହିଲେ ଏବଂ ତାଙ୍କୁ ପୁଣି ଆଙ୍କାରାକୁ ଏହି ନିମନ୍ତ୍ରଣ ପଠାଇବା ନିମନ୍ତେ ଅନୁରୋଧ କଲେ । ଆଙ୍କାରାର ଯେଉଁ ଜାତୀୟ ସରକାର ଯୁଦ୍ଧରେ ଜୟଲାଭ କରିଥିଲା—ତା ପ୍ରତି ଏପରି ତାଚ୍ଛଲ୍ୟ ବ୍ୟବହାର ଏବଂ ପୁନର୍ବାର କ୍ରୀଡ଼ାପୁତ୍ତଳୀ ସୁଲତାନକୁ ଜାଣିଶୁଣି ଆଗକୁ ଠେଲିବାର ଉଦ୍ୟମ ଦ୍ୱାରା, ତୁର୍କୀରେ ଏକ ବିଶୃଙ୍ଖଳା ଖେଳିଗଲା ଏବଂ ତୁର୍କୀବାସୀ କ୍ରୋଧାନ୍ୱିତ ହେଲେ । ସେମାନେ ବ୍ରିଟିଶ ଓ ବିଶ୍ୱାସଘାତକ ସୁଲତାନ ଭିତରେ କିଛି ଚକ୍ରାନ୍ତ ଚାଲିଛି ବୋଲି ସନ୍ଦେହ କଲେ । ମୋସ୍ତାଫା କେମାଲ ଲୋକଙ୍କର ଏହି ମନୋଭାବର ସୁବିଧା ଉଠାଇଲେ ଏବଂ ୧୯୨୨ ନଭେମ୍ବର ମାସରେ ସୁଲତାନ ପ୍ରଥା ଉଠାଇ ଦେବା ନିମନ୍ତେ ଜାତୀୟ ଆସେମ୍ବ୍ଲିରେ ପ୍ରସ୍ତାବ ପାସ୍ କଲେ । କିନ୍ତୁ ଖଲିଫା ସେହିପରି ରହିଲା ଏବଂ ଘୋଷଣା କରାଗଲା ଯେ ଓଥମାନ୍ ବଂଶରେ ଏହା ରହିବ । ଅଳ୍ପ କିଛି ଦିନରେ ପୂର୍ବତନ ସୁଲତାନ ଓ୍ୱାହିଦୁଦ୍ଦିନ ବିରୁଦ୍ଧରେ ପ୍ରବଳ ରାଜଦ୍ରୋହ ଅଭିଯୋଗ ହେଲା । ସେ ସାଧାରଣ ବିପ୍ଳବରୁ ଖସିଯିବା ପସନ୍ଦ କଲେ ଏବଂ ଗୁପ୍ତଭାବରେ ଏକ ଇଂରେଜ ଆମ୍ବୁଲାନ୍ସ ଗାଡ଼ିରେ ଚାଲିଗଲେ—ଏହା ତାଙ୍କୁ ବ୍ରିଟିଶ ଯୁଦ୍ଧଜାହାଜକୁ ନେଇଗଲା । ତାଙ୍କ ପୁରୁସ ଅବଦୁଲ ମଜିଦ୍ ଏଫେଣ୍ଡିଙ୍କୁ ନୂତନ ଖଲିଫା ଭାବରେ ଜାତୀୟ ଆସେମ୍ବ୍ଲି ନିର୍ବାଚନ କଲା—ସେ ନାମକୁ ମାତ୍ର ଧର୍ମପତି ହୋଇ ରହିଲେ—କୌଣସି ରାଜନୀତିକ କ୍ଷମତା ନ ଥିଲା ।

ତତ୍ପର ବର୍ଷ ୧୯୨୩ରେ ବିଧିବଦ୍ଧ ଭାବରେ ତୁର୍କୀ ପ୍ରଜାତନ୍ତ୍ର ଘୋଷିତ ହେଲା—ଆଙ୍କାରା ହେଲା ଏହାର ରାଜଧାନୀ । ମୋସ୍ତାଫା କେମାଲ ରାଷ୍ଟ୍ରପତିରୂପେ ନିର୍ବାଚିତ ହେଲେ ଏବଂ ସେ ନିଜହାତରେ ସମସ୍ତ କ୍ଷମତା ରଖିଲେ—ତେଣୁ ଜଣେ ଡିକ୍ଟେଟର୍ ହେଲେ । ଆସେମ୍ବ୍ଲି ତାଙ୍କ ନିର୍ଦ୍ଦେଶ ପାଳନ କଲା । ସେ ଏବେ ଅନେକ ପୁରାତନ ପ୍ରଥା ଉପରେ ଆକ୍ରମଣ ଆରମ୍ଭ କଲେ ଏବଂ ଧର୍ମ ପ୍ରତି ସେପରି କିଛି ବିନୀତ ବ୍ୟବହାର ଦେଖାଇ ନ ଥିଲେ । ତାଙ୍କର ମତାମତ ଓ ଡିକ୍ଟେଟରି ପ୍ରଥାରେ ଅନେକ ଲୋକ ବିଶେଷତଃ ଧର୍ମଗୋଷ୍ଠୀର ଲୋକେ ଅସନ୍ତୁଷ୍ଟ ହେଲେ ଏବଂ ଏସବୁ ନୂତନ ଖଲିଫାଙ୍କ ଆଶ୍ରୟ ନେଲେ—ସେ ଜଣେ ଧୀର ଅଭିମାନୀ ଲୋକ ଥିଲେ । କେମାଲ ପାଶା ଏହା ଆଦୌ ପସନ୍ଦ କଲେ ନାହିଁ । ସେ ଟିକିଏ ହେୟ ଭାବରେ ଖଲିଫା ପ୍ରତି ବ୍ୟବହାର କଲେ ଏବଂ ସୁବିଧାଜନକ ସୁଯୋଗକୁ ଅପେକ୍ଷା କରି ରହିଲେ ।

ପୁନର୍ବାର ସେ ଶୀଘ୍ର ସୁଯୋଗ ପାଇଲେ ଏବଂ ଏହା ବିଚିତ୍ର ଭାବରେ ଆସିଲା । ଲଣ୍ଡନରୁ ଆଗା ଖାଁ ଓ ଭୂତପୂର୍ବ ଭାରତୀୟ ଜଜ୍ ଅମୀର ଅଲିଙ୍କଠାରୁ ଏକ ମିଳିତ ଚିଠି ତାଙ୍କ ପାଖକୁ ପଠାଗଲା । ସେମାନେ ଲକ୍ଷ ଲକ୍ଷ ଭାରତୀୟ ମୁସଲମାନଙ୍କ ତରଫରୁ କହୁଛନ୍ତି ବୋଲି ଦାବୀ କଲେ ଏବଂ ଖଲିଫାଙ୍କ ପ୍ରତି ଯେପରି ବ୍ୟବହାର କରାଯାଉଛି ତାର ପ୍ରତିବାଦ

କଲେ ଓ ଅନୁରୋଧ କଲେ ଯେ ତାଙ୍କର ମର୍ଯ୍ୟାଦା ରକ୍ଷା ହେବା ଉଚିତ ଏବଂ ଭଲ ବ୍ୟବହାର ଦିଆଯାଉ । ସେମାନେ ଚିଠିର ଏକ ନକଲ ଇସ୍ତାନବୁଲର କେତେକ ସମ୍ବାଦପତ୍ରକୁ ପଠାଇଲେ ଏବଂ ମୂଳଚିଠିଟି ଆଙ୍କାରାରେ ପହଞ୍ଚିବା ପୂର୍ବରୁ ଏହା ପ୍ରକୃତରେ ସେଥିରେ ପ୍ରକାଶିତ ହୋଇଗଲା । ଚିଠିରେ ଅପମାନଜନକ କିଛି ନ ଥିଲା; କିନ୍ତୁ କେମାଲ ପାଶା ଏହାକୁ ଧରି ଗୋଟିଏ ପ୍ରବଳ ଆନ୍ଦୋଳନ ଆରମ୍ଭ କରିଦେଲେ । ଶେଷକୁ ତାଙ୍କୁ ଏକ ସୁବିଧା ମିଳିଛି ଏବଂ ତାର ପୂର୍ଣ୍ଣ ବ୍ୟବହାର କରିବାକୁ ସେ ବସିଲେ । ତେଣୁ ପ୍ରଚାରିତ ହେଲା ଯେ ତୁର୍କୀକୁ ବିଭାଗ କରିଦେବା ନିମନ୍ତେ ଏହା ହେଉଛି ଆଉ ଏକ ଇଂରେଜ ଚକ୍ରାନ୍ତ । କୁହାଗଲା ଯେ ଆଗା ଖାଁ ହେଉଛନ୍ତି ଇଂରେଜଙ୍କର ସ୍ପେଶାଲ ଏଜେଣ୍ଟ, ସେ ଇଂଲଣ୍ଡରେ ବାସ କରନ୍ତି—ତାଙ୍କ ମୁଖ୍ୟକାମ ହେଉଛି ଇଂରେଜ ଘୋଡ଼ାଦୌଡ଼ରେ ଭାଗନେବା ଏବଂ ସର୍ବଦା ଇଂରେଜ ରାଜନୀତିଜ୍ଞମାନଙ୍କ ସହ ହେଲ ମେଳ ହୁଅନ୍ତି । ସେ ଏକ ବିଶେଷ ମୁସଲମାନ ସମ୍ପ୍ରଦାୟର ମୁଖିଆ ହୋଇଥିଲେ ସୁଦ୍ଧା ନିଜେ ଜଣେ ରକ୍ଷଣଶୀଳ ମୁସଲମାନ ନୁହନ୍ତି । ଆହୁରି ଦର୍ଶାଇ ଦିଆଗଲା ଯେ ପୃଥିବୀଯୁଦ୍ଧ ବେଳେ ପୂର୍ବରେ ସୁଲତାନ-ଖଲିଫା ବିରୁଦ୍ଧରେ ଏକ ପ୍ରକାର ତାଙ୍କୁ ଇଂରେଜମାନେ ବ୍ୟବହାର କରିଥିଲେ ଏବଂ ପ୍ରଚୁର ଓ ନାନା ପ୍ରକାରେ ତାଙ୍କର ମର୍ଯ୍ୟାଦା ବଢ଼ାଇଛନ୍ତି ଏବଂ ତାଙ୍କୁ ଭାରତୀୟ ମୁସଲମାନଙ୍କ ନେତା କରିବାକୁ ଚେଷ୍ଟା କରିଛନ୍ତି - ତାହାହେଲେ ସେମାନେ ହାତରେ ରହିପାରିବେ । ଆଗା ଖାଁ ଯଦି ଖଲିଫାଙ୍କୁ ରକ୍ଷା କରିବା ନିମନ୍ତେ ଏଡ଼େ ବ୍ୟଗ୍ର, ତେବେ ଯୁଦ୍ଧବେଳେ ଇଂରେଜଙ୍କ ବିରୁଦ୍ଧରେ ଯେତେବେଳେ ଧର୍ମଯୁଦ୍ଧ ବା ଜିହାଦ ଘୋଷଣା କରାଯାଇଥିଲା ତାକୁ ସମର୍ଥନ କଲେ ନାହିଁ କାହିଁକି ? ସେତେବେଳେ ସେ ଖଲିଫାଙ୍କ ବିରୁଦ୍ଧରେ ଓ ଇଂରେଜ ସପକ୍ଷରେ ଥିଲେ ।

ଏହିରୂପେ କେମାଲ୍ ପାଶା ଏହି ମିଳିତ ଚିଠି ଉପରେ ବେଶ୍ ଗୋଟାଏ ଝଡ଼ ସୃଷ୍ଟି କରିଦେଲେ । ଏହାର ଲେଖକମାନେ ଲଣ୍ଡନରୁ ଏହା ପଠାଇଲାବେଳେ ଏପରି ପରିଣାମ ଘଟିବା ସମ୍ବନ୍ଧରେ ସମ୍ପୂର୍ଣ୍ଣ ଅନଭିଜ୍ଞ ଥିଲେ । ସେ ଆଗା ଖାଁଙ୍କୁ ଏପରି ନିନ୍ଦା କଲେ ଯେ ଲୋକେ ଭଲ ଦୃଷ୍ଟିରେ ଦେଖିଲେ ନାହିଁ । ବିଚାରା ଇସ୍ତାନବୁଲର ଯେଉଁ ସମ୍ବାଦପତ୍ର ଚିଠି ଛପାଇଥିଲେ ସେମାନେ ବିଶ୍ୱାସଘାତକ ଓ ଇଂଲଣ୍ଡର ଏଜେଣ୍ଟ ବୋଲି ଅପବାଦ ପାଇଲେ ଏବଂ ଗୁରୁତର ଭାବରେ ଶାସ୍ତି ପାଇଲେ । ଏହିପରି ଭାବରେ ଦୃଢ଼ ଭାବ ଲୋକଙ୍କ ଭିତରେ ଜାଗ୍ରତ କରାଇଲା ପରେ ଜାତୀୟ ଆସେମ୍ବ୍ଲିରେ ଖଲିଫା ପଦ ଉଠାଇଦେବା ନିମନ୍ତେ ଏକ ବିଲ୍ ଆଗତ କରାଗଲା ଏବଂ ସେହିଦିନ ୧୯୨୪ ମାର୍ଚ୍ଚ ମାସରେ ଏହା ଗୃହୀତ ହୋଇଗଲା । ଇତିହାସରେ ଏଡ଼େ ବଡ଼ ଭାଗ ନେଇଥିବା ଏକ ପୁରାତନ ଅନୁଷ୍ଠାନକୁ ଆଧୁନିକ ମଞ୍ଚରୁ ଏପରି ଭାବରେ ଅନ୍ତର କରିଦିଆଗଲା । ଏବେ ତୁର୍କୀରେ ଅନ୍ତତଃ ଆଉ "କମାଣ୍ଡର ଅଫ୍ ଦି ଫେଥଫୁଲ" ( Commander of the Faithful ) ଅର୍ଥାତ୍ ଧର୍ମାବଲମ୍ବୀଙ୍କ ମୁଖିଆ ହୋଇ କେହି ରହିଲେ ନାହିଁ ଏବଂ ତୁର୍କୀ ଏକ ଧର୍ମନିରପେକ୍ଷ ରାଜ୍ୟ ହୋଇ ରହିଲା ।

ଅଳ୍ପ କିଛିଦିନ ପୂର୍ବେ ଯୁଦ୍ଧପରେ ବ୍ରିଟିଶ ଯେତେବେଳେ ଖିଲାଫତ୍ ଉଠାଇ ଦେବା ନିମନ୍ତେ ଧମକ ଦେଇଥିଲା ସେଥିରେ ଭାରତ ଖୁବ୍ ଉତ୍ତେଜିତ ହୋଇ ଉଠିଥିଲା । ଦେଶ ସାରା "ଖିଲାଫତ୍ କମିଟି"ମାନ ଗଢ଼ିଉଠିଲା ଏବଂ ଇସ୍‌ଲାମ ପ୍ରତି ଇଂରେଜ ସରକାର ଅନ୍ୟାୟ କରୁଛି ଭାବି ଏହି ଆନ୍ଦୋଳନରେ ମୁସଲମାନମାନଙ୍କ ସହ ଅନେକ ସଂଖ୍ୟକ ହିନ୍ଦୁ ବି ଯୋଗ ଦେଲେ । ଏବେ ତୁର୍କୀ ନିଜେ ଜାଣିଶୁଣି ଖିଲାଫତ୍ ଉଠାଇ ଦେଲା; ବିନା ଖଲିଫାରେ ଇସଲାମ ରହିଲା । କେମାଲ ପାଶାଙ୍କର ଦୃଢ଼ ମତ ଥିଲା ଯେ ଆରବୀୟ ଦେଶ ବା ଭାରତ ସହ ତୁର୍କୀର କୌଣସି ଧର୍ମ ସମ୍ପର୍କ ରହିବ ନାହିଁ । ସେ ତାଙ୍କ ଦେଶ ବା ନିଜେ ଇସ୍‌ଲାମର ନେତା ହେବାକୁ ଚାହୁଁ ନ ଥିଲେ । ଭାରତ ଓ ଇଜିପ୍ଟର କେତେକ ଲୋକେ ତାଙ୍କୁ ଯେତେବେଳେ ଖଲିଫା ହେବା ନିମନ୍ତେ ଅନୁରୋଧ କଲେ ସେ ତାହା ଅସ୍ୱୀକାର କଲେ । ସେ ପଶ୍ଚିମରେ ଇଉରୋପ ପ୍ରତି ଦୃଷ୍ଟିପାତ କଲେ ଏବଂ ଯେତେଶୀଘ୍ର ସମ୍ଭବ ତୁର୍କୀକୁ ପାଶ୍ଚାତ୍ୟ ଢଙ୍ଗରେ ଗଢ଼ିବାକୁ ଚାହୁଁଥିଲେ । ସେ ପାନ-ଇସଲାମ ଧାରଣାର ସଂପୂର୍ଣ୍ଣ ବିରୋଧୀ ଥିଲେ । ପାନ୍-ତୁରାନିଆନିଜିମ ହେଲା ନୂତନ ଆଦର୍ଶ—ତୁର୍କୀବାସୀଙ୍କର ଜାତି ହେଲା ତୁରାନିୟାନ । ଏହାର ଅର୍ଥ ଇସଲାମର ବିସ୍ତୃତ ଓ ଢ଼ିଲା ଆନ୍ତର୍ଜାତୀୟ ଆଦର୍ଶ ପରିବର୍ତ୍ତେ ନିର୍ମଳ ଜାତୀୟତାର କଠିନ ବନ୍ଧନରେ ବନ୍ଧାହୋଇ ରହିଲା ।

ତୁର୍କୀ ଏବେ ଯେ କେତେକ ବିଦେଶୀ ଲୋକଙ୍କ ସହ ଅତ୍ୟନ୍ତ ଏକଜାତି-ବିଶିଷ୍ଟ ଦେଶ ହୋଇ ରହିଲା, ସେ କଥା ମୁଁ ତତେ କହିଛି । କିନ୍ତୁ ତଥାପି ଇରାକ୍ ଓ ପର୍ସିଆ ସୀମାନ୍ତ ନିକଟରେ ପୂର୍ବ ତୁର୍କୀରେ ଏକ ଅ-ତୁର୍କୀ ଜାତି ରହିଲା । ଏମାନେ ହେଉଛନ୍ତି ଏକ ପୁରାତନ ଜାତି କୁର୍ଦ୍ଦ--ସେମାନେ ଇରାନୀଭାଷା କହୁଥିଲେ । ଏମାନେ ବାସ କରୁଥିବା ସ୍ଥାନକୁ କୁର୍ଦ୍ଦିସ୍ଥାନ କହନ୍ତି । ଏହା ତୁର୍କୀ, ପର୍ସିଆ, ଇରାକ୍ ଓ ମସୁଲ ଅଞ୍ଚଳରେ ବିଭକ୍ତ ହେଲା । ମୋଟ ୩,୦୦୦,୦୦୦ କୁର୍ଦ୍ଦଙ୍କ ଭିତରୁ ପ୍ରାୟ ଅର୍ଦ୍ଧେକ ଏବେସୁଦ୍ଧା ଖାସ ତୁର୍କୀରେ ବାସ କରୁଥିଲେ । ୧୯୦୮ର ତୁର୍କୀ ବିପ୍ଳବର ଅଳ୍ପଦିନ ପରେ ସେଠାରେ ଏକ ଆଧୁନିକ ଜାତୀୟ ଆନ୍ଦୋଳନ ଆରମ୍ଭ ହୋଇଗଲା । ଏପରିକି ଭର୍ସେଇ ଶାନ୍ତି ସମ୍ମିଳନୀରେ କୁର୍ଦ୍ଦ ପ୍ରତିନିଧିମାନେ ଜାତୀୟ ସ୍ୱାଧୀନତା ଦାବୀ କରିଥିଲେ ।

୧୯୨୫ରେ ତୁର୍କୀର କୁର୍ଦ୍ଦ ପ୍ରଦେଶରେ ଏକ ମହା ବିଦ୍ରୋହ ଆରମ୍ଭ ହେଲା । ଠିକ୍ ଏତିକିବେଳେ ମସୁଲ ବିବାଦ ନେଇ ଇଂଲଣ୍ଡ ଓ ତୁର୍କୀ ଭିତରେ ଝଗଡ଼ା ଲାଗୁଥାଏ ଏବଂ ତୁର୍କୀର ଯେଉଁ ଅଞ୍ଚଳ ବିଦ୍ରୋହ କଲା ତାହା ସଂଲଗ୍ନ ମସୁଲ ଏକ କୁର୍ଦ୍ଦ ଅଞ୍ଚଳ ଥିଲା । ସ୍ୱାଭାବିକରୂପେ ତୁର୍କୀବାସୀ ମନେକଲେ ଯେ ଏ ବିଦ୍ରୋହ ପଶ୍ଚାତରେ ଇଂରେଜ ରହିଛନ୍ତି ଏବଂ କେମାଲ ପାଶାଙ୍କ ସଂସ୍କାର ବିରୁଦ୍ଧରେ ଅଧିକ ଧାର୍ମିକ କୁର୍ଦ୍ଦମାନଙ୍କୁ ବ୍ରିଟିଶ ଏଜେଣ୍ଟମାନେ ମତାଇଛନ୍ତି । ଏହି ବିଦ୍ରୋହ ସହ ବ୍ରିଟିଶ ଏଜେଣ୍ଟମାନଙ୍କର କିଛି ସମ୍ପର୍କ ଥିଲା କି ନା କହିବା ସମ୍ଭବ ନୁହେଁ; ଅବଶ୍ୟ ଏହା ସ୍ପଷ୍ଟ ଯେ ଯେତେବେଳେ କୁର୍ଦ୍ଦ ଗୋଳମାଳକୁ ବ୍ରିଟିଶ ଗଭର୍ଣ୍ଣମେଣ୍ଟ ସ୍ୱାଗତ କରିଥିଲା । ଯାହାହେଉ

ଏହା ପରିଷ୍କାର ଜଣାପଡ଼ୁଛି ଯେ ଏହି ବିଦ୍ରୋହ ଧର୍ମର ରକ୍ଷଣଶୀଳତା ଯୋଗୁଁ ଅଧିକ ଭାବରେ ହୋଇଥିଲା ଏବଂ ଆହୁରି ପରିଷ୍କାର ଯେ କୁର୍ଦ୍ଦ ଜାତୀୟତାର ମଧ୍ୟ ଏଥିରେ ସମ୍ପର୍କ ଥିଲା । ସମ୍ଭବତଃ ଜାତୀୟତାବାଦୀ ମତଲବ ହିଁ ବଳବତ୍ତର ଥିଲା ।

କେମାଲ ପାଶା ସଙ୍ଗେ ସଙ୍ଗେ ଚିତ୍କାର ଉଠାଇଲେ ଯେ ତୁର୍କୀ ଜାତି ବିପଦରେ ପଡ଼ିଛି; କାରଣ ଇଂଲଣ୍ଡ କୁର୍ଦ୍ଦମାନଙ୍କ ପଶ୍ଚାତ୍ତରେ ରହିଛି । ସେ ଜାତୀୟ ଆସେମ୍ବ୍ଲିରେ ଏକ ଆଇନ ପାଶ୍ କରାଇନେଲେ—ସେଥିରେ ଥିଲା ଯେ ବକ୍ତୃତା ବା ଲ୍ପାଦ୍ୱାରା ଯଦି ଲୋକଙ୍କ ଭାବପ୍ରବଣତା ଜାଗ୍ରତ କରିବା ନିମନ୍ତେ ଧର୍ମକୁ ବ୍ୟବହାର କରାଯାଏ, ତେବେ ଏହା ଉଚ୍ଚ ରାଜଦ୍ରୋହ ବୋଲି ବିଚାର କରାଯିବ ଏବଂ ସେହିହେତୁ ଏଥିଲାଗି ଖୁବ୍ ଗୁରୁତର ଶାସ୍ତି ଦିଆଯିବ । ଯେଉଁସବୁ ଧର୍ମୋପଦେଶ ପ୍ରଚାର ଫଳରେ ପ୍ରଜାତନ୍ତ୍ର ପ୍ରତି ଲୋକଙ୍କର ଭକ୍ତି କମିଯାଇପାରେ, ମସଜିଦ୍‌ମାନଙ୍କରେ ସେପରି ପ୍ରଚାର ନିଷେଧ କରାଗଲା । ସେ ତାପରେ ନିର୍ଦ୍ଦୟ ଭାବରେ କୁର୍ଦ୍ଦମାନଙ୍କୁ ଦମନକଲେ ଏବଂ ସେମାନଙ୍କୁ ହଜାର ହଜାର ସଂଖ୍ୟାରେ ବିଚାର କରିବା ନିମନ୍ତେ ସ୍ପେଶାଲ ସ୍ୱାଧୀନ ଟ୍ରିବ୍ୟୁନାଲ ବସାଇଲେ । କୁର୍ଦ୍ଦ ନେତା ଶେଖ ସୟଦ୍, ଡାକ୍ତର ଫୁଆଡ଼ ଓ ଆହୁରି ଅନେକଙ୍କୁ ଫାଶି ଦିଆଗଲା । ସେମାନେ କୁର୍ଦ୍ଦିସ୍ଥାନର ସ୍ୱାଧୀନତା ପାଇଁ ମରୁଛନ୍ତି ବୋଲି ମୁହିରେ କହି ପ୍ରାଣଦାନ କଲେ ।

ତେଣୁ ଯେଉଁ ତୁର୍କୀବାସୀ ନିଜର ସ୍ୱାଧୀନତା ପାଇଁ ଏତେ ଅଳ୍ପକାଳ ତଳେ ଲଢ଼ାଇ କରୁଥିଲେ, ସେମାନେ ନିଜର ସ୍ୱାଧୀନତା ଦାବୀ କରୁଥିବା କୁର୍ଦ୍ଦମାନଙ୍କୁ ଦମନ କଲେ । ଏକ ଆତ୍ମରକ୍ଷାମୂଳକ ଜାତୀୟତା କିପରି ଆକ୍ରମଣମୂଳକ ହେଲା ଏହା ଅଦ୍ଭୁତ କଥା ଏବଂ ସ୍ୱାଧୀନତା ପାଇଁ ଯୁଦ୍ଧ ଅନ୍ୟଙ୍କ ଉପରେ କର୍ତ୍ତୃତ୍ୱ କରିବାକୁ ବାହାରିଲା । ୧୯୨୯ରେ କୁର୍ଦ୍ଦମାନେ ଆଉ ଏକ ବିଦ୍ରୋହ କରିଥିଲେ ଏବଂ ପୁନର୍ବାର ଅନ୍ତତଃ କ୍ଷଣକାଳ ପାଇଁ ଏହା ବି ଦମନ କରାଗଲା । କିନ୍ତୁ ଯେଉଁ ଲୋକ ସ୍ୱାଧୀନତା ପାଇଁ ଜୋର ଦେଉଛନ୍ତି ଏବଂ ସେଥିପାଇଁ ତ୍ୟାଗ କରିବା ନିମନ୍ତେ ପ୍ରସ୍ତୁତ ଅଛନ୍ତି, ସେମାନଙ୍କୁ କିପରି ଦମନ କରାଯାଇ ପାରିବ ?

ତା ପରେ ଜାତୀୟ ଆସେମ୍ବ୍ଲି ଭିତରେ ଓ ବାହାରେ ଯେଉଁମାନେ କେମାଲ ପାଶାଙ୍କ ନୀତିର ବିରୋଧ କରୁଥିଲେ, ସେମାନଙ୍କ ଉପରେ ତାଙ୍କର ଦୃଷ୍ଟି ପଡ଼ିଲା । କ୍ଷମତାର ବ୍ୟବହାର ସଙ୍ଗେ ସଙ୍ଗେ ଡିକ୍ଟେଟରର ଅଧିକ କ୍ଷମତାକ୍ଷୁଧା ବରାବର ବଢ଼େ, କେବେହେଲେ ତୃପ୍ତି ହୁଏନା; କୌଣସି ବିରୋଧ ଏହା ସହ୍ୟ କରେ ନାହିଁ । ତେଣୁ ମୋସ୍ତାଫା ସକଳ ପ୍ରକାର ବିରୋଧ ସହିପାରିଲେ ନାହିଁ ଏବଂ କୌଣସି ଧର୍ମାନ୍ଧ ଦ୍ୱାରା ତାଙ୍କୁ ହତ୍ୟା କରିବାର ଉଦ୍ୟମ ଫଳରେ ଅବସ୍ଥା ସଙ୍କଟଜନକ ହେଲା । ସ୍ୱାଧୀନ ଟ୍ରିବ୍ୟୁନାଲ ଏବେ ସମଗ୍ର ତୁର୍କୀରେ ବସିଲା ଏବଂ ଯେଉଁମାନେ ଘାଜି ପାଶାର ବିରୋଧ କରୁଥିଲେ, ସେମାନଙ୍କୁ ବିଚାର କରି ଗୁରୁତର ଶାସ୍ତି ଦେବାରେ ଲାଗିଲେ । ଏପରିକି ଆସେମ୍ବ୍ଲିରେ ବଡ଼ ବଡ଼ ଲୋକେ ସେମାନଙ୍କର ପୁରାତନ ଜାତୀୟତାବାଦୀ ସହକର୍ମୀସବୁ ଯଦି ବିରୋଧ କଲେ ତେବେ ସେମାନେ ବାଦ୍ ପଡ଼ିଲେ ନାହିଁ ।

ରଉଫ୍ ବେଗ ଯାହାଙ୍କୁ ବ୍ରିଟିଶ ମାଲ୍ଟାକୁ ଦ୍ୱୀପାନ୍ତର କରିଥିଲେ ଏବଂ ଯେ ପରେ ତୁର୍କୀର ପ୍ରଧାନମନ୍ତ୍ରୀ ହୋଇଥିଲେ, ତାଙ୍କ ଅନୁପସ୍ଥିତିରେ ତାଙ୍କୁ ମଧ୍ୟ ଶାସ୍ତି ଦିଆଗଲା । ସ୍ୱାଧୀନତା ଯୁଦ୍ଧରେ ଲଢ଼ାଇ କରିଥିବା ଅନେକ ପ୍ରଧାନ ନେତା ଓ ସେନାପତିଙ୍କୁ ଲାଞ୍ଛିତ କରାଗଲା ଓ ଶାସ୍ତି ଦିଆଗଲା ଏବଂ ଏପରିକି କେତେକଙ୍କୁ ଫାଶି ବି ଦିଆହେଲା ।

ସେମାନଙ୍କ ବିରୁଦ୍ଧରେ ଅଭିଯୋଗ ହେଲା ଯେ ସେମାନେ କୁର୍ଦ୍ଦଙ୍କ ସହିତ ମିଶି ଏବଂ ସମ୍ଭବତଃ ପୁରାତନ ଶତ୍ରୁ ଇଂଲଣ୍ଡ ସହିତ ମିଶି ରାଜ୍ୟର ନିରାପତ୍ତା ଭାଙ୍ଗିବା ପାଇଁ ଷଡ଼ଯନ୍ତ୍ର କରୁଥିଲେ ।

ସମସ୍ତ ବିରୋଧ ମୂଳପୋଛ କରିବା ପରେ ମୋସ୍ତାଫା କେମାଲ ଏବେ ଅପ୍ରତିଦ୍ୱନ୍ଦ୍ୱୀ ଡିକ୍ଟେଟର ହେଲେ ଏବଂ ଇସ୍‌ମେତ୍ ପାଶା ତାଙ୍କର ଦକ୍ଷିଣହସ୍ତ ହେଲେ । ତାଙ୍କ ମୁଣ୍ଡ ଭିତରେ ଯେସବୁ ଧାରଣା ଥିଲା ସେସବୁ କାର୍ଯ୍ୟରେ ପରିଣତ କରିବା ନିମନ୍ତେ ଆରମ୍ଭ କଲେ । ସେ ଏକ ଛୋଟ ଜିନିଷରୁ ଆରମ୍ଭ କଲେ; କିନ୍ତୁ ଏହା ଏକଜାତୀୟ ବିଶେଷ ଜିନିଷ । ସେ ଫେଜ୍ ଉପରେ ଆକ୍ରମଣ ଚଳାଇଲେ—ଏହା ଟୋପି । ତୁର୍କୀବାସୀ ଓ କେତେକ ପରିମାଣରେ ମୁସଲମାନମାନଙ୍କର ଏହା ଚିହ୍ନସ୍ୱରୂପ ଥିଲା । ସେ ଅତି ସତର୍କତାର ସହିତ ସେନାଙ୍କଠାରୁ ଏହା ଆରମ୍ଭ କଲେ । ତା ପରେ ସେ ନିଜେ ହ୍ୟାଟ ବା ସାହେବଟୋପି ପିନ୍ଧି ସାଧାରଣରେ ଆସିଲେ—ଏଥିରେ ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ ଏବଂ ଶେଷରେ ଫେଜ୍ ପିନ୍ଧିବା ଏକ ଫୌଜଦାରୀ ଅପରାଧ ବୋଲି ସେ ଆଇନ କରିଦେଲେ । ଏହି ମସ୍ତକ ପୋଷାକ ବା ଟୋପିକି ଏତେ ଗୁରୁତ୍ୱ ଦେବା ଟିକିଏ ନିର୍ବୋଧତା ମନେହୁଏ । ଏହାଠାରୁ ଅଧିକ ଗୁରୁତ୍ୱ ହେଉଛି ମସ୍ତକ ଭିତରେ ଯାହା ରହିଛି, ତା ଉପରେ ଯାହା ଅଛି ତାହା ନୁହେଁ । କିନ୍ତୁ ଛୋଟ ଜିନିଷ ହିଁ ବେଳେବେଳେ ବଡ଼ ଜିନିଷର ପ୍ରତୀକ ହୋଇଯାଏ ଏବଂ କେମାଲ ପାଶା ଆପାତତଃ ଫେଜ୍ ଜରିଆରେ ପୁରୁଣା ପ୍ରଥା ଓ ରକ୍ଷଣଶୀଳତା ଉପରେ ଆକ୍ରମଣ କଲେ । ଏହି ପ୍ରଶ୍ନ ଘେନି ଦଙ୍ଗାମାନ ହୋଇଥିଲା । ସେସବୁ ଦବାଇ ଦିଆଗଲା ଏବଂ ଗୁରୁତର ଶାସ୍ତି ଦିଆଗଲା ।

ପ୍ରଥମ ଚୋଟରେ ଜୟୀ ହୋଇ ମୋସ୍ତାଫା କେମାଲ ଦ୍ୱିତୀୟ ପାହାଚକୁ ଗଲେ । ସେ ସମସ୍ତ ମଠ ଓ ଧର୍ମପୀଠ ବନ୍ଦ କରିଦେଲେ ଓ ଭାଙ୍ଗିଦେଲେ ଏବଂ ସେଗୁଡ଼ିକର ସମସ୍ତ ସମ୍ପତ୍ତି ଷ୍ଟେଟ ବା ସରକାରକୁ ବାଜ୍ୟାପ୍ତ କରି ଆଣିଲେ । ସେଠାରେ ଯେଉଁସବୁ ସନ୍ନ୍ୟାସୀ ବା ଦରବେଶମାନେ ଥିଲେ, ସେମାନଙ୍କୁ ନିଜର ଚଳିବା ପାଇଁ ଶ୍ରମ କରିବା ନିମନ୍ତେ କୁହାହେଲା । ସେମାନଙ୍କୁ ଧର୍ମଶିକ୍ଷା ବନ୍ଦ କରିବାକୁ କୁହାଗଲା ଏବଂ ସେମାନେ ତାହା କରିବାକୁ ଅସ୍ୱୀକାର କଲେ ଧର୍ମପୀଠ ବନ୍ଦ କରି ଦିଆଯାଉଥିଲା ।

ଆଇନରେ ଗୋଟାଏ ଆମୂଳଚୂଳ ପରିବର୍ତ୍ତନ କରାଗଲା । ଏପର୍ଯ୍ୟନ୍ତ ଅନେକ ବିଷୟରେ କୋରାନ୍‌ର ଉପଦେଶ ଉପରେ ଆଇନ ପ୍ରତିଷ୍ଠିତ ଥିଲା—ଏହାକୁ ସରିୟତ୍ ବୋଲି

କରନ୍ତି । ଏବେ ସୁଇଜରଲଣ୍ଡର ସିଭିଲ କୋର୍ଡ୍, ଇଟାଲୀ ପେନାଲ କୋର୍ଡ୍ ଓ ଜର୍ମାନ କମର୍ସିଆଲ କୋଡ଼୍ ଗୃହୀତ ହୋଇଗଲା । ଏହାର ଅର୍ଥ ବିବାହ, ଉତ୍ତରାଧିକାରୀ ଇତ୍ୟାଦି ସମ୍ବନ୍ଧରେ ଯେଉଁ ଆଇନସବୁ ପ୍ରଚଳିତ ଥିଲା ତାର ସଂପୂର୍ଣ୍ଣ ପରିବର୍ତ୍ତନ । ଏହିସବୁ ବ୍ୟାପାରରେ ପୁରାତନ ଇସ୍‌ଲାମ୍ ଆଇନସବୁ ବଦଳିଗଲା । ଏକାଧିକ ସ୍ତ୍ରୀ ରଖିପାରିବା ଉଠାଇ ଦିଆଗଲା ।

ପୁରାତନ ଧାର୍ମିକ ପ୍ରଥା ବିରୁଦ୍ଧରେ ଆଉ ଏକ କାର୍ଯ୍ୟ ହୋଇଥିଲା—ତାହା ହେଉଛି ମାନବ ଶରୀରର ଚିତ୍ର ଅଙ୍କନ ଓ ମୂର୍ତ୍ତି ଗଠନକୁ ଉତ୍ସାହିତ କରିବା । ଇସ୍‌ଲାମ୍‌ରେ ଏହାର ମଞ୍ଜୁରୀ ନାହିଁ । ଏହି ଉଦ୍ଦେଶ୍ୟରେ ମୋସ୍ତାଫା କେମାଲ ବାଳକ ଓ ବାଳିକାମାନଙ୍କ ପାଇଁ କଳା ବିଦ୍ୟାଳୟ ବସାଇଲେ ।

ଯୁବକ ତୁର୍କୀ ଦଳଙ୍କ ଅମଳରୁ ସ୍ୱାଧୀନତା ସଂଗ୍ରାମରେ ତୁର୍କୀ ନାରୀ ଖୁବ୍ ଭାଗ ନେଇ ଆସିଛି । ସକଳପ୍ରକାର ବନ୍ଧନରୁ ସେମାନଙ୍କୁ ମୁକ୍ତ କରିବା ବିଷୟରେ କେମାଲ ପାଶା ବଡ଼ ଆଗ୍ରହୀ ଥିଲେ । "ନାରୀମାନଙ୍କ ଅଧିକାର ରକ୍ଷା ନିମନ୍ତେ ସମିତି" ଗୋଟିଏ ଗଢ଼ାଗଲା ଏବଂ ଚାକିରିବାକରି, ବ୍ୟବସାୟ ପ୍ରଭୃତିରେ ସେମାନଙ୍କର ପ୍ରବେଶ ସ୍ୱୀକୃତ ହେଲା । ପରଦାକୁ ହିଁ ପ୍ରଥମେ ଜୋରଭାବରେ ଉଠାଇଦେବାର କଥା ଏବଂ ତାହା ଅଦ୍ଭୁତଭାବରେ ଓ ଚଞ୍ଚଳ ଗତିରେ ଉଠିଗଲା । ଏହି ପରଦାକୁ ଛିଣ୍ଡାଇ ଫୋପାଡ଼ିଦେବା ନିମନ୍ତେ ନାରୀମାନଙ୍କୁ ଖାଲି ଟିକିଏ ସୁଯୋଗ ଦେଲେ ହେଲା । କେମାଲ ପାଶା ସେମାନଙ୍କୁ ଏ ସୁବିଧା ଦେଲେ ଓ ସେମାନେ ବାହାରିପଡ଼ିଲେ । ସେ ଇଉରୋପୀୟ ନୃତ୍ୟକୁ ଖୁବ୍ ଉତ୍ସାହିତ କଲେ । ସେ ନିଜେ ଯେ କେବଳ ଏହାର ପ୍ରିୟ ଥିଲେ ତାହା ନୁହେଁ, ଏହା ସାଙ୍ଗେ ସାଙ୍ଗେ ନାରୀ ସ୍ୱାଧୀନତା ଓ ପାଶ୍ଚାତ୍ୟ ସଭ୍ୟତା କଥା ବି ତାଙ୍କ ମୁଣ୍ଡରେ ଉଠିଲା । ସାହେବୀ ଟୋପି ଓ ନୃତ୍ୟ ହିଁ ଉନ୍ନତି ଓ ସଭ୍ୟତାର ପ୍ରଧାନ ଧ୍ୱଜ ହେଲା ! ଏହା ପାଶ୍ଚାତ୍ୟର ବରଂ ଅତି କ୍ଷୁଦ୍ର ପ୍ରତୀକ; କିନ୍ତୁ ଅନ୍ତତଃ ଏଗୁଡ଼ିକ ଉପରେ କାର୍ଯ୍ୟ କରାଗଲା ଏବଂ ତୁର୍କୀ ତାର ମୁଣ୍ଡପୋଷାକ, ଲୁଗାପଟା ଓ ଜୀବନର ରୀତିନୀତି ସବୁ ପରିବର୍ତ୍ତନ କଲା । ପୁରୁଷ ପୁରୁଷ ଧରି ଯେଉଁ ନାରୀମାନେ ଅନ୍ତରାଳରେ ଥିଲେ ସେମାନେ ହଠାତ୍ କେତେବର୍ଷ ଭିତରେ ଓକିଲ, ଶିକ୍ଷକ, ଡାକ୍ତର ଓ ଜଜ୍ ହୋଇଗଲେ । ଏପରିକି ଇସ୍ତାନବୁଲ୍ ଗଳିମାନଙ୍କରେ ନାରୀ ପୁଲିସ ବି ଅଛନ୍ତି । ଏକ ଜିନିଷ ଅନ୍ୟ ଉପରେ କିପରି ପ୍ରତିକ୍ରିୟା କରେ ଏହା ଦେଖିଲେ ବାସ୍ତବିକ ମଜ୍ଜା ଲାଗେ । ଲାଟିନ ଅକ୍ଷର ପ୍ରଚଳନ ଦ୍ୱାରା ତୁର୍କୀରେ ଟାଇପ ମେସିନର ବ୍ୟବହାର ଖୁବ୍ ବଢ଼ିଗଲା—ଏହାର ଅର୍ଥ ଅଧିକ ସର୍ଟହାଣ୍ଡ ଲେଖକ ଦରକାର ପଡ଼ିଲେ—ଏହା ଫଳରେ ନାରୀମାନେ ହିଁ ଅଧିକ କାର୍ଯ୍ୟ ପାଇଲେ ।

ପୁରୁଣା ଧର୍ମଶିକ୍ଷା ସ୍କୁଲମାନଙ୍କରେ ମୁଖସ୍ଥ କରି ଶିକ୍ଷା କରିବା ପରିବର୍ତ୍ତେ ପିଲାମାନେ କିପରି ସଂପୂର୍ଣ୍ଣରୂପେ ଆତ୍ମନିର୍ଭରଶୀଳ ଓ ସମର୍ଥ ନାଗରିକ ହେବେ ସେଥିପାଇଁ

ନାନାପ୍ରକାର ଶିକ୍ଷାର ବ୍ୟବସ୍ଥା କରାଗଲା । "ଶିଶୁ ସପ୍ତାହ" ଏକ ଅପୂର୍ବ ଅନୁଷ୍ଠାନ । ତୁର୍କୀମାନେ ସେ ପ୍ରତିବର୍ଷ ଏକସପ୍ତାହ ପ୍ରତ୍ୟେକ ସରକାରୀ ସ୍କୁକରିଆ ସ୍ଥାନ ଗୋଟିଏ ଗୋଟିଏ ପିଲା ଦ୍ୱାରା ଏବଂ ସମସ୍ତ ଷ୍ଟେଟ୍ ପିଲାଙ୍କ ଦ୍ୱାରା ଶାସିତ ହୁଏ । ଏହା କପରି କାର୍ଯ୍ୟରେ ହୁଏ ମୋତେ ଜଣା ନାହିଁ, କିନ୍ତୁ ଏହା ବଡ଼ ଚିତ୍ତାକର୍ଷକ ଭାବ । ଏହା ନିଶ୍ଚିତ ଯେ କେତେକ ପିଲା ଯେତେ ନିର୍ବୋଧ ଓ ଅନଭିଜ୍ଞ ହୋଇଥାନ୍ତୁ ପଛକେ, ଆମର ଅନେକ ପ୍ରୌଢ଼ ଗମ୍ଭୀର ଓ ପବିତ୍ରତା ଆବରଣ ପିନ୍ଧିଥିବା ଶାସକ ଓ କର୍ମଚାରୀଙ୍କ ପରି ଏତେ ନିର୍ବୋଧରୂପେ ବ୍ୟବହାର କରୁ ନ ଥିବେ ।

ଏକ ଶ୍ରେଷ୍ଠ ପରିବର୍ତ୍ତନ; କିନ୍ତୁ ତୁର୍କିର ଶାସକମାନଙ୍କର ଦୃଷ୍ଟିକୋଣର ପ୍ରଧାନ ସୂଚନା ମିଳେ "ସଲାମ କରିବା"କୁ ନିରୁତ୍ସାହିତ କରିବାଦ୍ୱାରା । ସେମାନେ ପରିଷ୍କାର କହିଦେଲେ, ହାତ ମିଳାଇବା ଅଭିବାଦନ କରିବାର ଅଧିକ ସଭ୍ୟ ରୀତି ଏବଂ ଭବିଷ୍ୟତରେ ଏପରି ହେବା ଦରକାର ।

ତା ପରେ କେମାଲ ପାଶା ତୁର୍କୀ ଭାଷା ଅଥବା ସେଥିରେ ଯାହା ବିଦେଶୀ ଅଂଶ ପଶିଥିଲା ତାହା ବିରୁଦ୍ଧରେ ଅଭିଯାନ ଆରମ୍ଭ କଲେ । ଆରବୀ ଅକ୍ଷରରେ ତୁର୍କୀ ଭାଷା ଲେଖା ଯାଉଥିଲା ଏବଂ କେମାଲ ପାଶା ଏହାକୁ କଷ୍ଟକର ଓ ବିଦେଶୀ ବୋଲି ବିଚାରିଲେ । ସୋଭିଏଟ୍ ଲୋକଙ୍କୁ ବି ମଧ୍ୟଏସିଆରେ ଏହି ସମସ୍ୟାର ସମ୍ମୁଖୀନ ହେବାକୁ ପଡ଼ିଥିଲା; କାରଣ ଟାର୍ଟାର (Tartar) ଲୋକେ ଆରବୀ ବା ପାର୍ସୀ ଅକ୍ଷର ବ୍ୟବହାର କରୁଥିଲେ । ଏହି ପ୍ରଶ୍ନ ବିଚାର କରିବା ନିମନ୍ତେ ସୋଭିଏଟ୍‌ମାନେ ବାକୁଠାରେ ଏକ ସମ୍ମିଳନୀ ଅହ୍ୱାନ କଲେ ଏବଂ ବିଭିନ୍ନ ଟାର୍ଟାର ଭାଷା ଲାଗି ଲାଟିନ୍ ଅକ୍ଷର ବ୍ୟବହାର କରିବା ନିମନ୍ତେ ସେଠାରେ ସ୍ଥିର ହେଲା । ଏହାର ଅର୍ଥ ଭାଷା ପୂର୍ବପରି ରହିଲା, କେବଳ ତାହା ଲାଟିନ୍ ବା ରୋମାନ ଅକ୍ଷରରେ ଲେଖାହେଲା । ଏହି ଭାଷାମାନଙ୍କର ବିଶେଷ ଉଚ୍ଚାରଣ ସବୁ ଲାଗି ଗୋଟାଏ ପ୍ରକାର ସଙ୍କେତ ବି ବାହାର କରାଗଲା । ମୋସ୍ତାଫା କେମାଲ ଏହି ପ୍ରଣାଳୀ ପ୍ରତି ଆକୃଷ୍ଟ ହେଲେ ଏବଂ ସେ ଏହା ଶିକ୍ଷା କଲେ । ସେ ତୁର୍କୀ ଭାଷାରେ ଏହା ପ୍ରୟୋଗ କଲେ ଏବଂ ଏହା ସପକ୍ଷରେ ନିଜେ ଖୁବ୍ ଆନ୍ଦୋଳନ ଆରମ୍ଭ କଲେ । କେତେବର୍ଷ ପ୍ରଚାର ଓ ଶିକ୍ଷା ଫଳରେ ଆଇନ ଅନୁସାରେ ଏକ ତାରିଖ ନିର୍ଦ୍ଧାରିତ କରାଗଲା — ସେହିଦିନୁ ଆରବୀ ଅକ୍ଷର ବ୍ୟବହାର ନିଷେଧ କରାଗଲା ଏବଂ ଲାଟିନ୍ ଅକ୍ଷର ବ୍ୟବହାର ବାଧ୍ୟତାମୂଳକ ହେଲା । ସମ୍ବାଦପତ୍ର, ପୁସ୍ତକ—ପ୍ରତ୍ୟେକ ଜିନିଷ ଲାଟିନ୍ ଅକ୍ଷରରେ ପ୍ରକାଶିତ ହେଲା । ଲାଟିନ୍ ଅକ୍ଷର ଶିଖିବା ନିମନ୍ତେ ୧୬ ବର୍ଷରୁ ୪୦ ବର୍ଷ ପର୍ଯ୍ୟନ୍ତ ପ୍ରତ୍ୟେକ ଲୋକଙ୍କୁ ସ୍କୁଲକୁ ଯିବାକୁ ପଡ଼ିଲା । ଆଦେଶ ହେଲା, ଏହା ଜାଣି ନ ଥିବା କର୍ମଚାରୀଙ୍କୁ ବରଖାସ୍ତ କରାଯିବ, ନୂତନ ଅକ୍ଷରରେ ଲେଖାପଢ଼ା ନ ଶିଖିବା ପର୍ଯ୍ୟନ୍ତ କାଳ ପୂରିଗଲେ ସୁଦ୍ଧା ବନ୍ଦୀମାନଙ୍କୁ ଖଲାସ କରାଯିବ ନାହିଁ । ଜଣେ ଡିକ୍‌ଟେଟର ଯଦି ଲୋକପ୍ରିୟ ହୁଏ ତେବେ ସେ ଖୁବ୍ ଦୋରସ୍ତ କାମ

କରିପାରେ । ଲୋକଙ୍କ ଜୀବନରେ ଖୁବ୍ କମ୍ ସରକାର ଏପରି ହସ୍ତକ୍ଷେପ କରିବା ନିମନ୍ତେ ସାହସ କରିନେ ।

ଏହିରୂପେ ଲାଟିନ ଅକ୍ଷର ତୁର୍କୀରେ ପ୍ରଚଳିତ ହୋଇଗଲା; କିନ୍ତୁ ଅତିଶୀଘ୍ର ଆଉ ଏକ ପରିବର୍ତ୍ତନ ହେଲା । ଦେଖାଗଲା ଯେ ଆରବୀ ଓ ପାର୍ସୀ ଶବ୍ଦ ଏହି ଅକ୍ଷରରେ ସହଜରେ ଲେଖି ହେଉ ନାହିଁ; ତାର ବିଶେଷ ଉଚ୍ଚାରଣ ଆଦି ଏଥିରେ ପ୍ରକଟିତ ହୋଇପାରୁ ନାହିଁ । ଖାଣ୍ଟି ତୁର୍କୀ ଶବ୍ଦସବୁ ଏତେ ସୂକ୍ଷ୍ମ ନୁହେଁ; ସେଗୁଡ଼ିକ ମୋଟା, ଅଧିକ ପ୍ରତ୍ୟକ୍ଷ ଓ ଶକ୍ତିଶାଳୀ ଏବଂ ନୂତନ ଅକ୍ଷରରେ ସହଜରେ ଲେଖିହୋଇ ପାରିଲା । ତେଣୁ ସମସ୍ତ ଆରବୀ ଓ ପାର୍ସୀ ଶବ୍ଦ ତୁର୍କୀ ଭାଷାରୁ ଅନ୍ତର କରି ତା ସ୍ଥାନରେ ତୁର୍କୀ ଶବ୍ଦ ପୂରାଇବା ନିମନ୍ତେ ନିଷ୍ପତ୍ତି କରାଗଲା । ଏହି ସିଦ୍ଧାନ୍ତ ପଶ୍ଚାତରେ ଏକ ଜାତୀୟତାବାଦୀ କାରଣ ରହିଥିଲା । ମୁଁ ତତେ କହିଛି କେମାଲ ପାଶା ଯଥାସମ୍ଭବ ତୁର୍କୀକୁ ଆରବୀୟ ଓ ଅନ୍ୟ ପ୍ରାଚ୍ୟ ଦେଶ ପ୍ରଭାବରୁ ବିଚ୍ଛିନ୍ନ ରଖିବାକୁ ଚାହୁଁଥିଲେ । ପୁରୁଣା ତୁର୍କୀ ଭାଷା ଆରବୀ ଓ ପାର୍ସୀ ଶବ୍ଦ ଓ ବାକ୍ୟାଂଶରେ ପୂର୍ଣ୍ଣ ଥିଲା—ଏହା ହୁଏତ ଆଡ଼ମ୍ବରପୂର୍ଣ୍ଣ ସାମ୍ରାଜ୍ୟବାଦୀ ଅଟୋମାନ ରାଜଦରବାରରେ ଶୋଭା ପାଉଥିଲା । କିନ୍ତୁ ନୂତନ ଧର୍ମପ୍ରବଣ ପ୍ରଜାତନ୍ତ୍ର ତୁର୍କୀ ପକ୍ଷରେ ଏହା ଅନୁପଯୋଗୀ ମନେ ହେଲା । ତେଣୁ ସୁନ୍ଦର ଶବ୍ଦସବୁ ଛାଡ଼ି ଦିଆଗଲା ଏବଂ ବିଦ୍ୱାନ୍ ଅଧ୍ୟାପକ ଓ ଅନ୍ୟମାନଙ୍କୁ କୃଷକଙ୍କ ଭାଷା ଶିଖି ତୁର୍କୀ ଭାଷାରେ କିପରି ଭଲ ଭଲ ଶବ୍ଦ ପ୍ରଚଳିତ ରହିଛି ତାହା ସଂଗ୍ରହ କରିବା ନିମନ୍ତେ ଗ୍ରାମକୁ ପଠାଗଲା । ଏ ପରିବର୍ତ୍ତନ ଏବେସୁଦ୍ଧା ଚାଲିଛି । ଉତ୍ତର ଭାରତରେ ଏପରି ଏକ ପରିବର୍ତ୍ତନ ହେଲେ ଆମକୁ ଅନେକ ପରିମାଣରେ ଆମର ଆଳଙ୍କାରିକ ଓ ଅପ୍ରାକୃତିକ ଲକ୍ଷ୍ନୌ ଓ ଦିଲ୍ଲୀର ହିନ୍ଦୁସ୍ଥାନୀ ଭାଷାକୁ ଛାଡ଼ିଦେବାକୁ ପଡ଼ିବ । ଏହା ପୁରୁଣା ରାଜବଂଶର ଚିହ୍ନସ୍ୱରୂପ ରହିଛି । ତା ପରିବର୍ତ୍ତେ ଗ୍ରାମପ୍ରଚଳିତ ଅନେକ ଗାଁଉଲି ଭାଷା ଆମକୁ ପ୍ରଚଳନ କରିବାକୁ ପଡ଼ିବ ।

ଭାଷାର ଏହି ପରିବର୍ତ୍ତନ ହେଉ ସହର ଓ ଲୋକଙ୍କ ନାମରେ ମଧ୍ୟ ପରିବର୍ତ୍ତନ କରାଯାଉଛି । ପୁରୁଣା କନ୍‌ଷ୍ଟାଣ୍ଟିନୋପଲ ଏବେ ହୋଇଛି ଇସ୍ତାନବୁଲ, ଆଙ୍ଗୋରା-ଅଙ୍କାରା, ସ୍ମିର୍ଣ୍ଣା—ଇସମୀର । ତୁର୍କୀରେ ଲୋକଙ୍କର ନାମ ସାଧାରଣତଃ ଆରବୀରୁ ନିଆ ଯାଉଛି—ମୋସ୍ତାଫା କେମାଲ ଏକ ଆରବୀୟ ନାମ । ନୂତନ ପ୍ରବୃତ୍ତି ହେଉଛି ନିର୍ମଳ ତୁର୍କୀ ଭାଷାରେ ନାମକରଣ କରିବା ।

ଇସ୍‌ଲାମୀୟ ପ୍ରାର୍ଥନା ଓ ଆଜାନ୍ (ପ୍ରାର୍ଥନା ପାଇଁ ଡାକରା) ଅବଶ୍ୟ ତୁର୍କୀ ଭାଷାରେ ହେବ ବୋଲି ଆଇନ କରିବା ଦ୍ୱାରା ଏହି ପରିବର୍ତ୍ତନରେ ଗୋଳମାଳ ହେଲା । ମୂଳ ଆରବୀ ଭାଷାରେ ମୁସଲମାନମାନେ ସର୍ବଦା ଏହି ପ୍ରାର୍ଥନା କରି ଆସିଛନ୍ତି; ଆଜି ଭାରତରେ ତାହା ମଧ୍ୟ ହୁଏ । ତେଣୁ ଅନେକ ମୌଲବୀ ଓ ମସ୍‌ଜିଦ୍ ପରିଚାଳନା କରୁଥିବା ଲୋକେ ବିଚାରିଲେ ଏହା ଏକ ଅନୁପଯୋଗୀ ପରିବର୍ତ୍ତନ ଏବଂ ସେମାନେ ଆରବୀ ଭାଷାରେ ପ୍ରାର୍ଥନା

କରିବାକୁ ଲାଗିଲେ । ଏହି ପ୍ରଶ୍ନ ନେଇ ଦଙ୍ଗାମାନ ହୋଇଥିଲା ଏବଂ ଏବେ ବି ହେଉଛି । ଅନ୍ୟହରୁ ବିରୋଧ ପରେ କେମାଲ୍ ପାଶାଙ୍କ ଅଧୀନରେ ତୁର୍କୀ ସରକାର ଏହାକୁ ଦମନ କରିଦେଇଛି ।

ଗତ ଦଶବର୍ଷ ଭିତରେ ଏହିସବୁ ବିରାଟ ସାମାଜିକ ଓଲଟପାଲଟ ଫଳରେ ଲୋକଙ୍କର ଜୀବନ ପୂର୍ଣ୍ଣଭାବରେ ପରିବର୍ତ୍ତିତ ହୋଇଯାଇଛି ଏବଂ ପୁରାତନ ପ୍ରଥା ଓ ସାଧନ ସଂସର୍ଗରୁ ବିଚ୍ଛିନ୍ନ ହୋଇ ଏକ ନୂତନ ପୁରୁଷ ଗଢ଼ି ଉଠୁଛନ୍ତି । କିନ୍ତୁ ଏହିସବୁ ପରିବର୍ତ୍ତନ ପ୍ରଧାନ ହେଲେ ସୁଦ୍ଧା ଦେଶର ଅର୍ଥନୈତିକ ଅବସ୍ଥାରେ ଏହା ବିଶେଷ ସ୍ପର୍ଶ କରିପାରି ନାହିଁ । ଉପରେ କେତେକ ସାମାନ୍ୟ ପରିବର୍ତ୍ତନ ଛଡ଼ା ମୂଳଭିତ୍ତି ଯେପରି ଥିଲା ସେପରି ରହିଛି । କେମାଲ ପାଶା ଅର୍ଥନୀତିଜ୍ଞ ନ ଥିଲେ କିମ୍ବା ସୋଭିଏଟ୍ ରୁଷରେ ଯେପରି ଆମୂଳ ପରିବର୍ତ୍ତନ ହୋଇଛି ସେ ତାର ପକ୍ଷପାତୀ ନ ଥିଲେ । ତେଣୁ ରାଜନୀତିକ ଭାବରେ ସେ ସୋଭିଏଟ୍ ପରି ହେଲେ ସୁଦ୍ଧା ଆର୍ଥନୀତିକ ଦୃଷ୍ଟିରୁ କମ୍ୟୁନିଜମରୁ ବହୁ ଦୂରରେ ଥିଲେ । ସେ ବିରାଟ ଫରାସୀ ବିପ୍ଳବ ଅଧ୍ୟୟନ କରି ସେଥିରୁ ରାଜନୀତିକ ଓ ସାମାଜିକ ଭାବ ଗ୍ରହଣ କରିଥିବାର ବୋଧହୁଏ ।

କେବଳ ସ୍ୱୀକରିବାକର ବ୍ୟବସାୟ କରିବା ବ୍ୟତୀତ ତୁର୍କୀରେ ପ୍ରଭାବଶାଳୀ ମଧ୍ୟବିତ୍ତ ଶ୍ରେଣୀ ସେପରି କିଛି ନାହିଁ । ଗ୍ରୀକ୍ ଓ ଅନ୍ୟ ବିଦେଶୀ ଲୋକମାନଙ୍କୁ ବିଦାୟ କରିଦେବା ଯୋଗୁ ବାଣିଜ୍ୟ ଜୀବନ ଦୁର୍ବଳ ହୋଇପଡ଼ିଛି । କିନ୍ତୁ ଆର୍ଥନୀତିକ ସ୍ୱାଧୀନତାକୁ ବଳିଦେଇ ଜାତୀୟ ଦାରିଦ୍ର୍ୟ ଓ ଧୀର ଶିଳ୍ପୋନ୍ନତି ତୁର୍କୀ ସରକାର ପସନ୍ଦ କରେ । କାରଣ ଏହା ଭୟ କରେ ଯେ ବହୁ ପରିମାଣରେ ଯଦି ବିଦେଶୀ ପୁଞ୍ଜି ତୁର୍କୀ ଭିତରକୁ ଆସେ, ତେବେ ସେହିପରି ତ୍ୟାଗ କରିବାକୁ ପଡ଼ିବ ଏବଂ ତା ପରେ ବିଦେଶୀ ଦ୍ୱାରା ଦେଶ ଶୋଷିତ ହେବ । ତେଣୁ ସ୍ୱଦେଶୀ ଉଦ୍ୟମ କିଛି କରିବାରେ ଏହା ଉତ୍ସାହିତ କରୁଛି । ବିଦେଶୀ ମାଲ ଉପରେ ଖୁବ୍ ଶୁଳ୍କ ବସିଛି । ଅନେକ ଶିଳ୍ପ ଜାତୀୟକରଣ କରାଯାଇଛି—ଅର୍ଥାତ୍ ସରକାର ଲୋକଙ୍କ ତରଫରୁ ମାଲିକ ହୋଇ ପରିଚାଳନା କରୁଛି । ଖୁବ୍ ଦ୍ରୁତଗତିରେ ରେଳପଥ ତିଆରି ଚାଲିଛି ।

କେମାଲ ପାଶା କୃଷିରେ ବେଶି ମନ ଦେଇଥିଲେ; କାରଣ ତୁର୍କୀର କୃଷକ ହିଁ ତୁର୍କୀ ଜାତି ଓ ସେନାର ମେରୁଦଣ୍ଡ । ଆଦର୍ଶ କୃଷିଫାର୍ମସବୁ ହୋଇଛି ଏବଂ କଳଲଙ୍ଗଳ ( ଟ୍ରାକ୍ଟର ) ପ୍ରଚଳନ କରାଯାଇଛି ଏବଂ କୃଷକଙ୍କ ସମବାୟ ସମିତିକୁ ଉତ୍ସାହିତ କରାହୋଇଛି ।

ପୃଥିବୀର ଅବଶିଷ୍ଟାଂଶ ପରି ତୁର୍କୀରେ ମହା ଆର୍ଥିକ ଦୁର୍ଗତି ଘଟିଥିଲା ଏବଂ ଗୁରୁଋଣ ସୁଝାଇବା କଷ୍ଟକର ହେଲା । କିନ୍ତୁ ଏହା ମୋସ୍ତାଫା କେମାଲଙ୍କ ନେତୃତ୍ୱରେ ଧୀରେ ଓ ଦୃଢ଼ ଭାବରେ ଅଗ୍ରସର ହେଉଛି । ସେ ଦେଶର ଶ୍ରେଷ୍ଠ ନେତା ଓ ଡିକ୍ଟେଟର

ହୋଇ ରହିଛନ୍ତି । ତାଙ୍କୁ 'ଆତାତର୍କ' ଉପାଧି ଦିଆଯାଇଛି । ଏହାର ଅର୍ଥ ଦେଶର ପିତା—ସେହି ନାମରେ ସେ ଆଜି ପରିଚିତ ।

## ୧୭୦ : ଭାରତ ଗାନ୍ଧୀଙ୍କର ଅନୁଗାମୀ ହେଲା

ମେ ୧୧, ୧୯୩୩

ମୁଁ ତତେ ଭାରତର ଆଧୁନିକ ଘଟଣା ବିଷୟରେ କିଛି କହିବି । ଆମେ ସ୍ୱାଭାବିକ ଭାବରେ ବାହାର ଘଟଣା ଅପେକ୍ଷା ଏଥିରେ ବେଶି ଆଗ୍ରହୀ ଏବଂ ମୁଁ ଯେପରି ଅତ୍ୟଧିକ ବିସ୍ତୃତ ବର୍ଣ୍ଣନା ନ କରେ ସେଥିପାଇଁ ମୋତେ ସାବଧାନ ହେବାକୁ ପଡ଼ିବ । ଆମର ବ୍ୟକ୍ତିଗତ ଆଗ୍ରହ ଛଡ଼ା ମଧ୍ୟ ମୁଁ ତତେ କହୁଛି ଭାରତ ଆଜି ପୃଥିବୀର ଏକତମ ମୁଖ୍ୟ ସମସ୍ୟା । ସାମ୍ରାଜ୍ୟବାଦୀ କର୍ତ୍ତୃତ୍ୱର ଏହା ଏକ ଉତ୍କୃଷ୍ଟ ଓ ବିଶେଷ ଦୃଷ୍ଟାନ୍ତ । ବ୍ରିଟିଶ ସାମ୍ରାଜ୍ୟବାଦର ସମସ୍ତ ଗଠନ ଏହା ଉପରେ ନିର୍ଭର ହୋଇ ରହିଛି ଏବଂ ଏହି ସଫଳ ବ୍ରିଟିଶ ଦୃଷ୍ଟାନ୍ତ ଦେଖି ଅନ୍ୟ ଦେଶସବୁ ସାମ୍ରାଜ୍ୟବାଦୀ ପଥ ଗ୍ରହଣ କରିବା ନିମନ୍ତେ ଲୋଭ କରିଛନ୍ତି ।

ମୁଁ ମୋର ଗତ ଚିଠିରେ ଭାରତରେ ଯୁଦ୍ଧକାଳୀନ ପରିବର୍ତ୍ତନସବୁ ଯାହା ଘଟିଛି; ଭାରତୀୟ ଶିଳ୍ପବୃଦ୍ଧି ଓ ଭାରତୀୟ ପୁଞ୍ଜିବାଦୀ ଶ୍ରେଣୀ ଏବଂ ଭାରତୀୟ ଶିଳ୍ପପ୍ରତି ବ୍ରିଟିଶ ନୀତି ପରିବର୍ତ୍ତନ ସମ୍ବନ୍ଧରେ କହିଥିଲି । ଭାରତର ଇଂଲଣ୍ଡ ଉପରେ ଶିଳ୍ପଗତ ଓ ବାଣିଜ୍ୟ-ସମ୍ବନ୍ଧୀୟ ଚାପ ବଢ଼ିଲା—ସେହିପରି ରାଜନୀତିକ ଚାପ ମଧ୍ୟ । ସମଗ୍ର ପ୍ରାଚ୍ୟରେ ରାଜନୀତିକ ଜାଗରଣ ହେଲା; ସମଗ୍ର ପୃଥିବୀରେ ଯୁଦ୍ଧ ପରେ ଏକ ଆଲୋଡ଼ନ ଓ କ୍ଷୋଭ ଦେଖାଦେଲା । ଭାରତରେ ବେଳେ ବେଳେ ହିଂସାମୂଳକ ବିପ୍ଳବୀ କାର୍ଯ୍ୟର ସୂଚନା ମିଳିଲା । ଲୋକଙ୍କ ଆଶା ଖୁବ୍ ଉପରକୁ ଉଠିଗଲା । ବ୍ରିଟିଶ ସରକାର ନିଜେ ଅନୁଭବ କଲେ ଯେ କିଛି କରିବାକୁ ପଡ଼ିବ, ରାଜନୀତି କ୍ଷେତ୍ରରେ ଏହା ତେବେ ଚଳାଇଲେ । ତା ପରେ କେତେକ ପରିବର୍ତ୍ତନ ପ୍ରସ୍ତାବ କରି ମଣ୍ଟେଗୁ-ଚେମ୍ସ ଫୋର୍ଡ଼ ରିପୋର୍ଟ ବାହାରିଲା ଏବଂ ଆର୍ଥନୀତିକ କ୍ଷେତ୍ରରେ ଜାଗ୍ରତ ବୁର୍ଜୋୟା ଶ୍ରେଣୀକୁ କିଛି ଯୋଗ ଦେବା ନିମନ୍ତେ ଚେଷ୍ଟା ହେଲା—ତାହା ସଙ୍ଗେ ସଙ୍ଗେ କ୍ଷମତା ଓ ଶୋଷଣଚକ୍ରକୁ ନିଜହାତରେ ଯତ୍ନର ସହିତ ରଖାଗଲା ।

ଯୁଦ୍ଧପରେ ଅଳ୍ପକାଳ ପାଇଁ ବେପାର ବୃଦ୍ଧି ହେଲା ଏବଂ ଏକ ସମୃଦ୍ଧିଶାଳୀ ଯୁଗ ପଡ଼ିଥିଲା । ଏତେବେଳେ ପ୍ରଚୁର ଲାଭ ହେଲା ବିଶେଷତଃ ବଙ୍ଗଳାରେ ଝୋଟରେ ଲାଭ ହେଲା । ଲାଭାଂଶ ଅନେକ ସମୟରେ ପ୍ରାୟ ଶତକଡ଼ା ଶହେ ଟଙ୍କାରୁ ଅଧିକ ହେଲା । ଦର ବୃଦ୍ଧି ହେଲା କେତେକ ପରିମାଣରେ, କିନ୍ତୁ ଅନୁପାତରେ ବହୁତ କମ ମଜୁରି ବ

ବଢ଼ିଲା । ମୂଲ୍ୟବୃଦ୍ଧି ସଙ୍ଗେ ସଙ୍ଗେ ଜମିଦାରଙ୍କୁ ପ୍ରଜାଙ୍କ ଦେବା କର ମଧ୍ୟ ବଢ଼ିଗଲା । ତା ପରେ ଆସିଲା ମାନ୍ଦାବେଳ ଏବଂ ବେପାର ହ୍ରାସ ହେବାକୁ ଲାଗିଲା । ଶିଳ୍ପ ଶ୍ରମିକ ଓ କୃଷକମାନଙ୍କ ଅବସ୍ଥା ଖରାପ ହେଲା ଏବଂ ଦ୍ରୁତବେଗରେ ଅସନ୍ତୋଷ ବ୍ୟାପିଲା । ଅତ୍ୟନ୍ତ କଠିନ ଅବସ୍ଥା ଯୋଗୁଁ କାରଖାନାମାନଙ୍କରେ ଧର୍ମଘଟ ହେଲା । ଅଉ ଥରେ ତାଲୁକଦାରୀ ପ୍ରଥା ଅଧୀନରେ ପ୍ରଜାମାନଙ୍କ ଅବସ୍ଥା ବିଶେଷ ଭାବରେ ଖରାପ ହୋଇଥିଲା— ସେଠି ଆପଣାଛାଏଁ ଏକ ବିରାଟ କୃଷକ ଆନ୍ଦୋଳନ ଗଢିଉଠିଲା । ଶିକ୍ଷିତ ମଧ୍ୟବିତ୍ତ ଶ୍ରେଣୀଙ୍କ ଭିତରେ ଅକର୍ମା ସଂଖ୍ୟା ବଢ଼ିଲା ଏବଂ ଲୋକେ ଅନେକ କଷ୍ଟ ପାଇଲେ ।

ଯୁଦ୍ଧୋତ୍ତର କାଳର ପ୍ରଥମ ଭାଗରେ ଅର୍ଥନୀତି ଅବସ୍ଥା ଏପରି ଥିଲା ଏବଂ ତୁ ଏହାକୁ ଦୃଷ୍ଟିପଥରେ ରଖିଲେ ରାଜନୀତିକ ଅଭିବୃଦ୍ଧି ସବୁ ବୁଝିବାରେ ସାହାଯ୍ୟ କରିବ । ଦେଶରେ ଗୋଟାଏ ଉଗ୍ରଭାବ ଦେଖାଦେଲା—ବିଭିନ୍ନ ଭାବରେ ଏହା ପ୍ରକଟିତ ହେବାକୁ ଲାଗିଲା । ଶିଳ୍ପ ଶ୍ରମିକସବୁ ଶ୍ରମିକ ସଂଘ କରିଆରେ ସଂଗଠିତ ହେଉଥିଲେ ଏବଂ ତା ପରେ ହେଲା ନିଖିଳ ଭାରତ ଟ୍ରେଡ୍ ଇଉନିଅନ କଂଗ୍ରେସ । ଗ୍ରେଟ ଗ୍ରେଟ ଜମିଦାର ଓ ଭୂସ୍ୱତ୍ୱାଧିକାରୀ କୃଷକମାନେ ସରକାର ଉପରେ ଅସନ୍ତୁଷ୍ଟ ଥିଲେ ଏବଂ ଆଗ୍ରହ ଦୃଷ୍ଟିରେ ରାଜନୀତିକ କାର୍ଯ୍ୟକୁ ଅନାଇ ରହିଲେ, ଆଘାତ ପାଇଥିବା କୀଟ ପରି ପ୍ରଜାମାନେ ବି ମାତିଲେ; ମଧ୍ୟବିତ୍ତ ଶ୍ରେଣୀ ବିଶେଷ ଭାବରେ ଅକର୍ମା ଶ୍ରେଣୀ ନିର୍ଦ୍ଦିଷ୍ଟରୂପେ ରାଜନୀତିରେ ପ୍ରବେଶ କଲେ ଏବଂ ସେମାନଙ୍କ ଭିତରୁ ମୁଷ୍ଟିମେୟ ବିପ୍ଳବୀ କାର୍ଯ୍ୟକଲେ । ଏହି ଅବସ୍ଥା ହିନ୍ଦୁ, ମୁସଲମାନ, ଶିଖ ଓ ଅନ୍ୟମାନଙ୍କୁ ସମାନ ଭାବରେ ସ୍ପର୍ଶ କଲା; ଆର୍ଥନୀତିକ ଅବସ୍ଥା ବେଳେ ଧର୍ମ ସମ୍ବନ୍ଧୀୟ ବିବାଦ ପ୍ରତି କେହି ଦୃଷ୍ଟି ଦିଅନ୍ତି ନାହିଁ । ଏହା ସାଙ୍ଗକୁ ମୁସଲମାନମାନେ ପୁଣି ତୁର୍କୀ ବିରୁଦ୍ଧରେ ଯୁଦ୍ଧ ଓ ବ୍ରିଟିଶ ଗଭର୍ଣ୍ଣମେଣ୍ଟ 'ଜାଜିରତ୍-ଉଲ-ଆରବ' ଦଖଲ କରିସିବ ବୋଲି ଆଶଙ୍କା କରି ଖୁବ୍ ଅଧୀର ହୋଇ ପଡ଼ିଥିଲେ । ଆରବ ଦ୍ୱୀପ, ମକ୍କା-ମଦିନା ଓ ଜେରୁଜେଲମ ସହର ଦଖଲ କରିସିବାର ଆଶଙ୍କା ଥିଲା ( ଜେରୁଜେଲମ୍ ଇହୁଦୀ, ଖ୍ରୀଷ୍ଟିୟାନ ଓ ମୁସଲମାନଙ୍କର ପବିତ୍ର ସହର ) ।

ଏହିରୂପେ ଯୁଦ୍ଧ ପରେ ଭାରତପ୍ରଥମେ ଏକପ୍ରକାର ଅସନ୍ତୋଷପୂର୍ଣ୍ଣ, ଏବଂ ଭରି ଆଶାପ୍ରଦ ଥିଲା; କିନ୍ତୁ ତଥାପି ଆତଙ୍କିତ ଅବସ୍ଥାରେ ରହିଥିଲା । ନୂତନ ବ୍ରିଟିଶନୀତିର ଫଳାଫଳକୁ ଏତେ ଆଗ୍ରହ ସହକାରେ ଅପେକ୍ଷା କରା ହୋଇଥିଲା; ଅଥଚ କେତେକ ମାସ ଭିତରେ ବିପ୍ଳବୀ ଆନ୍ଦୋଳନକୁ ଦବାଇବା ପାଇଁ ବିଶେଷ ଆଇନ ଆକାରରେ ଏ ନୀତି ଜଣା ପଡ଼ିଲା । ଅଧିକ ସ୍ୱାଧୀନତା ପରିବର୍ତ୍ତେ ଅଧିକ ଦମନ ଦେଖାଦେଲା । ଏକ କମିଟି ରିପୋର୍ଟ ଅନୁସାରେ ଏହି ବିଲ୍ ତିଆରି ହୋଇଥିଲା ଏବଂ ଏହା 'ରାଉଲାଟ ବିଲ' ରୂପେ ଜଣା । କିନ୍ତୁ ଅତିଶୀଘ୍ର ସମଗ୍ର ଦେଶରେ 'କଳା ବିଲ' ନାମରେ ଏହା ଘୋଷିତ ହେଲା ଏବଂ ପ୍ରତ୍ୟେକ ସ୍ଥାନରେ ନିନ୍ଦା କରାଗଲା—ପ୍ରତ୍ୟେକ ଭାରତୀୟ ଏପରି କି ଅତି ନରମା ଦଳ ବି ଏହାର

ନିନ୍ଦା କଲେ । ଏଥିରେ ସରକାର ଓ ପୁଲିସ ହାତରେ ଅଧିକ କ୍ଷମତା ଦିଆ ଯାଇଥିଲା— ଗିରଫ କରିବା, ବିନା ବିଚାରରେ ଜେଲରେ ଅଟକ ରଖିବା କିମ୍ବା ଯେଉଁ ଲୋକକୁ ସନ୍ଦେହ ବା ନାପସନ୍ଦ କଲେ ତାର ଗୁପ୍ତ ବିଚାର କରିବା ଆଦି କ୍ଷମତା ରହିଲା । ସେତେବେଳେ ଏହି ବିଲକୁ ଲୋକେ ବର୍ଣ୍ଣନା କରି କହୁଥିଲେ, "ନା ଉକିଲ, ନା ଅପିଲ ଓ ନା ଦଲିଲ ।" ବିଲ ବିରୁଦ୍ଧରେ ସେତେବେଳେ ପ୍ରଖର ଆନ୍ଦୋଳନ ଚାଲିଲା, ସେତେବେଳେ ରାଜନୀତିକ ଚକ୍ରବାଳରେ ଏକ ଛୋଟ ମେଘ ଦେଖାଦେଲା ଏବଂ ଅତିଶୀଘ୍ର ଏହା ଭାରତୀୟ ଆକାଶରେ ବ୍ୟାପିଗଲା ।

ଏହି ନୂତନ ମେଘ ହେଉଛି ମୋହନ ଦାସ କରମଚାନ୍ଦ ଗାନ୍ଧୀ । ସେ ଯୁଦ୍ଧ କାଳରେ ଦକ୍ଷିଣ ଆଫ୍ରିକାରୁ ଭାରତକୁ ଫେରିଥିଲେ ଏବଂ ସାବରମତୀରେ ଏକ ଆଶ୍ରମରେ ନିଜର ବସତି କରି ରହିଥିଲେ । ସେ ରାଜନୀତିରୁ ଅଲଗା ହୋଇ ରହିଥିଲେ । ସେ ମଧ୍ୟ ଯୁଦ୍ଧରେ ସୈନ୍ୟ ସଂଗ୍ରହ କାର୍ଯ୍ୟରେ ସରକାରକୁ ସାହାଯ୍ୟ ଦେଇଥିଲେ । ଅବଶ୍ୟ ଦକ୍ଷିଣ ଆଫ୍ରିକାରେ ସତ୍ୟାଗ୍ରହ ସଂଗ୍ରାମକାଳୁ ସେ ଭାରତରେ ଭଲରୂପେ ଜଣାଶୁଣା ହୋଇଥିଲେ । ୧୯୧୭ରେ ବିହାରର ଚମ୍ପାରଣ ଜିଲାରେ ଇଉରୋପୀୟ ନୀଳ ପ୍ଲାଣ୍ଟର୍ସ (ଚାଷୀ)ଙ୍କ ଅଧୀନରେ ପଦଦଳିତ ପ୍ରଜାଙ୍କ ଦୁର୍ଦ୍ଦଶା ଦୂର କରିବାରେ ସେ କୃତକାର୍ଯ୍ୟ ହୋଇଥିଲେ । ପରେ ସେ ଗୁଜରାଟରେ କୈରାଜିଲାର କୃଷକଙ୍କ ପାଇଁ କାର୍ଯ୍ୟ କଲେ । ୧୯୧୯ ପ୍ରଥମ ଭାଗରେ ସେ ଖୁବ୍ ପୀଡ଼ିତ ଥିଲେ । ସେ ଏଥିରୁ ଆରୋଗ୍ୟ ହୋଇଛନ୍ତି କି ନାହିଁ ଏପରି ସମୟରେ ରାଉଲାଟ ବିଲ ଆନ୍ଦୋଳନ ଦେଶସାରା ଭରିଗଲା । ଏହି ସର୍ବବ୍ୟାପୀ ଚିତ୍କାରରେ ସେ ମଧ୍ୟ ଯୋଗଦେଲେ ।

କିନ୍ତୁ ତାଙ୍କର ବାଣୀ ଅନ୍ୟମାନଙ୍କଠାରୁ ଏକପ୍ରକାର ସ୍ୱତନ୍ତ୍ର ଥିଲା । ଏହା ଶାନ୍ତ ଓ ଧୀର, ତଥାପି ଅସଂଖ୍ୟ ଚିତ୍କାର ଉପରେ ଏହା ଶୁଣାଯାଉଥିଲା; ଏହା କୋହଳ ଓ ଭଦ୍ର ଥିଲା ଏବଂ ତଥାପି ଏଥି ଭିତରେ କେଉଁଠି ଇସ୍ପାତ ଲୁଚି ରହିଥିଲା ପରି ବୋଧହେଲା; ଏହା ଶିଷ୍ଟତାପୂର୍ଣ୍ଣ ଓ ନିବେଦନଭଙ୍ଗୀ ଥିଲା, ତଥାପି ଏଥିରେ ଭୀଷଣତା ଓ ଭୟୋତ୍ପାଦନ ହେବାର ଥିଲା; ଏଥିରେ ବ୍ୟବହୃତ ପ୍ରତ୍ୟେକ ଶବ୍ଦ ଅର୍ଥପୂର୍ଣ୍ଣ ଥିଲା ଏବଂ ସାଧାରଣ ରୂପେ ଔତ୍ସୁକ୍ୟ ପରି ଥିଲା । ଶାନ୍ତ ଓ ବନ୍ଧୁତ୍ୱପୂର୍ଣ୍ଣ ଭାଷା ପଶ୍ଚାତ୍ତରେ ଶକ୍ତିର ପରିଚୟ ମିଳୁଥିଲା, କାର୍ଯ୍ୟ କରିବାର ଚମକପ୍ରଦ ଆଲୋଡ଼ନ ପରିଲକ୍ଷିତ ହେଉଥିଲା ଏବଂ ଅନ୍ୟାୟକୁ ମାନି ନ ନେବାର ଦୃଢ଼ସଙ୍କଳ୍ପ ରହିଥିଲା । ସେହି ବାଣୀ ସହିତ ଆମେ ଏବେ ପରିଚିତ ହୋଇଗଲେଣି, ଗତ ୧୪ ବର୍ଷ ଭିତରେ ଆମେ ଅନେକ ସମୟରେ ତାହା ଶୁଣିଛେ । କିନ୍ତୁ ୧୯୧୯ ଫେବୃୟାରୀ ଓ ମାର୍ଚ୍ଚ ମାସରେ ଏହା ଆମ ପକ୍ଷରେ ନୂତନ ଥିଲା; ଏଥିରେ କଣ କରିବାକୁ ହେବ ଆମେ କିଛି ବୁଝି ପାରୁ ନ ଥିଲୁ; କିନ୍ତୁ ଆମେ ପୁଲକିତ ହୋଇ ଉଠିଲୁ । ଆମର ଶବ୍ଦାଡ଼ମ୍ବରମାନ ରାଜନୀତିରୁ ଏହା ସମ୍ପୂର୍ଣ୍ଣ ଭିନ୍ନ ଧରଣର—ଆମ ରାଜନୀତିରେ ନିନ୍ଦା କରିବା ଛଡ଼ା ଆଉ କିଛି ନ ଥିଲା; ଲମ୍ବା ଲମ୍ବା ବକ୍ତୃତା ପରେ ସାଧାରଣତଃ ବୃଥା ଓ ଅକାର୍ଯ୍ୟକାରୀ ପ୍ରତିବାଦମୂଳକ

ପ୍ରସ୍ତାବମାନ ହୁଏ—କେହି ତାକୁ ଆଦୌ ଗୁରୁତ୍ୱ ଦିଅନ୍ତି ନାହିଁ । କିନ୍ତୁ ଏହା ହେଲା କଥାର ନୁହେଁ, କାର୍ଯ୍ୟ କରିବାର ରାଜନୀତି ।

ମହାତ୍ମା ଗାନ୍ଧୀ ସତ୍ୟାଗ୍ରହ ଦଳ ସଂଗଠନ କଲେ—ଯେଉଁମାନେ ବାସ୍ତ ବାସ୍ତ, ଆଇନ ଭାଙ୍ଗି ଜେଲ ଯିବାକୁ ପ୍ରସ୍ତୁତ ହେବେ ସେମାନେ ଏଥିରେ ଯୋଗ ଦେଲେ । ସେତେବେଳେ ଏହା ଏକ ସମ୍ପୂର୍ଣ୍ଣ ନୂତନ କଥା, ଆମ ଭିତରୁ ଅନେକ ଉତ୍ତେଜିତ ହୋଇ ପଡ଼ିଲୁ; କିନ୍ତୁ ଅନେକେ ପଛେଇଗଲେ । ଆଜି ଏହା ଅତି ସାଧାରଣ ଘଟଣା ହୋଇଗଲାଣି ଏବଂ ଆମ ଭିତରୁ ଅଧିକାଂଶଙ୍କ ପକ୍ଷରେ ଏହା ଜୀବନର ଏକ ନିର୍ଦ୍ଦିଷ୍ଟ ଓ ବିଧିବଦ୍ଧ ଅଂଶ ହୋଇଗଲାଣି ।

ଗାନ୍ଧିଜୀଙ୍କ ରୀତି ଅନୁସାରେ, ସେ ଭାଇସରାୟଙ୍କୁ ଏକ ଶିଷ୍ଟତାପୂର୍ଣ୍ଣ ନିବେଦନ ଓ ସତର୍କବାଣୀ ପଠାଇଲେ । ମିଳିତ ଭାରତର ବିରୋଧ ସତ୍ତ୍ୱେ ସେ ଯେତେବେଳେ ଦେଖିଲେ ବ୍ରିଟିଶ ସରକାର ଆଇନ ପାଶ୍ କରିବା ନିମନ୍ତେ ଦୃଢ଼ସଙ୍କଳ୍ପ ସେତେବେଳେ ବିଲଗୁଡ଼ିକ ଆଇନ ହେବା ପରେ ପ୍ରଥମ ରବିବାର ଦିନ ହରତାଳ ଓ ସଭା ପାଇଁ ଘୋଷଣା କଲେ । ଏହା ହେଲା ସତ୍ୟାଗ୍ରହ ଆନ୍ଦୋଳନର ଆରମ୍ଭମାତ୍ର ଏବଂ ତେଣୁ ୧୯୧୯ ଏପ୍ରିଲ ୬ ତାରିଖ ରବିବାର ଦିନ ସମଗ୍ର ଦେଶରେ ସହର ଓ ମଫସଲ ସବୁଆଡ଼େ ସତ୍ୟାଗ୍ରହ ଦିବସ ପାଳିତ ହେଲା । ଏହି ପ୍ରକାର ନିଖିଳ ଭାରତୀୟ ପ୍ରଦର୍ଶନ ହେଲା—ପ୍ରଥମ ଏବଂ ଏହା ଅପୂର୍ବ ଭାବରେ ପ୍ରଭାବ ପକାଇଥିଲା । ଏଥିରେ ସକଳ ପ୍ରକାର ଲୋକ ଓ ସମ୍ପ୍ରଦାୟ ଯୋଗ ଦେଇଥିଲେ । ଆମେସବୁ ଯେ ଏହି ହରତାଳ ପାଇଁ କାର୍ଯ୍ୟ କରୁଥିଲୁ ଏହାର ସଫଳତା ଦେଖି ଅବାକ୍ ହୋଇଗଲୁ । ଆମ ପକ୍ଷରେ କେବଳ ସହରରେ ନିର୍ଦ୍ଦିଷ୍ଟ ସଂଖ୍ୟକ ଲୋକଙ୍କୁ ନିବେଦନ କରିବା ସମ୍ଭବ ହୋଇଥିଲା । କିନ୍ତୁ ବାୟୁମଣ୍ଡଳରେ ଏକ ନୂତନ ଭାବଧାରା ଖେଳୁ-ଥିଲା ଏବଂ କୌଣସି ପ୍ରକାର ଏହି ବାର୍ତ୍ତା ଆମର ବିଶାଳ ଦେଶର ସୁଦୂର ଗ୍ରାମଗହଳରେ ବି ପ୍ରବେଶ କଲା । ପ୍ରଥମ ଥର ପାଇଁ ଗ୍ରାମବାସୀ ଓ ସହରର ଶ୍ରମିକ ବ୍ୟାପକ ଭାବରେ ଏହି ରାଜନୀତିକ କାର୍ଯ୍ୟରେ ଯୋଗଦେଲେ ।

ଏପ୍ରିଲ ତା ୬ ରିଖର ଏକସପ୍ତାହ ପୂର୍ବରୁ ତାରିଖ ଭୁଲ କରି ପୂର୍ବ ରବିବାର ମାର୍ଚ୍ଚ ତା ୩୧ ରିଖ ଦିନ ଦିଲ୍ଲୀରେ ହରତାଳ ପାଳିତ ହେଲା । ସେତେବେଳେ ଦିଲ୍ଲୀରେ ହିନ୍ଦୁ ଓ ମୁସଲମାନଙ୍କ ଭିତରେ ଅଦ୍ଭୁତ ସୌହାର୍ଦ୍ଦ୍ୟ ଓ ସଦିଚ୍ଛା ଥିଲା ଏବଂ ଆର୍ଯ୍ୟ ସମାଜର ଜଣେ ପ୍ରଧାନ ନେତା ସ୍ୱାମୀ ଶ୍ରଦ୍ଧାନନ୍ଦ ଦିଲ୍ଲୀର ପ୍ରସିଦ୍ଧ ଜୁମା ମସଜିଦ୍‌ରେ ପ୍ରକାଣ୍ଡ ଜନତାକୁ ବକ୍ତୃତା ଦେଉଥିବାର ଅପୂର୍ବ ଦୃଶ୍ୟ ଦେଖାଗଲା । ମାର୍ଚ୍ଚ ତା ୩୧ ରିଖରେ ପୁଲିସ ଓ ମିଲିଟାରୀ ଗୁଳି-ମାନଙ୍କରୁ ବିରାଟ ଲୋକ-ଭିଡ଼ ଭାଙ୍ଗିବାକୁ ଚେଷ୍ଟାକଲେ ଏବଂ ସେମାନଙ୍କୁ ଗୁଳି ମାରିଲେ; କେତେକ ଲୋକ ମରିଗଲେ । ସନ୍ନ୍ୟାସୀ ପୋଷାକ ପରିହିତ ଦୀର୍ଘକାୟ ସୁପୁରୁଷ ସ୍ୱାମୀ ଶ୍ରଦ୍ଧାନନ୍ଦ ମୁକ୍ତହୃଦୟ ଦେଖାଇ ଗୁନ୍ଦନିଚୌକିଠାରେ ଗୁର୍ଖାଙ୍କର ସଙ୍ଗୀନ ମାଡ଼ ସହିନେଲେ । ସେ ଏଥିରେ ବଞ୍ଚି ପାରିଲେ ଏବଂ ଏହି ଘଟଣାରେ ଭାରତରେ ଗୁଞ୍ଜନ ଖେଳିଗଲା; କିନ୍ତୁ ସବୁଠାରୁ

ଶୋଚନୀୟ କଥା କେଉଁଛି ଆଠବର୍ଷରୁ କମ୍ ସମୟ ପରେ ସେ ରୋଗଶଯ୍ୟାରେ ପଡ଼ିଥିବା ବେଳେ ଜଣେ ମୁସଲମାନ ଧର୍ମାନ୍ଧ ବିଶ୍ୱାସଘାତକତା କରି ଛୁରିମାଡ଼ରେ ତାଙ୍କର ପ୍ରାଣ ନେଇଗଲା ।

ଏପ୍ରିଲ ୬ ତାରିଖ ସନ୍ଧ୍ୟାଗନ୍ଧ ପରେ ଘଟଣା ଦ୍ରୁତବେଗରେ ଅଗ୍ରସର ହେଲା । ଏପ୍ରିଲ ୧୦ ତାରିଖରେ ଅମୃତସରରେ ଗୋଳମାଳ ହେଲା—ଏକ ନିରସ୍ତ୍ର ଓ ଶୃଙ୍ଖଳବଦ୍ଧ ଜନତା ସେମାନଙ୍କର ନେତା ଡାକ୍ତର କିଚଲୁ ଓ ସତ୍ୟପାଲଙ୍କ ଗିରଫ ସକାଶେ ଦୁଃଖ ପ୍ରକାଶ କରୁଥିବାବେଳେ ମିଲିଟାରୀ ସେମାନଙ୍କ ଉପରେ ଗୁଳି କଲେ ଏବଂ ଅନେକ ନିହତ ହେଲେ । ତେଣୁ ଜନତା ଏହାର ଉନ୍ମତ୍ତ ପ୍ରତିଶୋଧ ନେଲେ—ପାଞ୍ଚ କି ଛଅ ଜଣ ନିରପରାଧ ଇଂରେଜ ତାଙ୍କ ଅଫିସରେ ବସିଥିଲା ବେଳେ ତାଙ୍କୁ ହତ୍ୟା କଲେ ଓ ବ୍ୟାଙ୍କକୋଠାକୁ ପୋଡ଼ିଦେଲେ । ତା ପରେ ପଞ୍ଜାବ ଉପରେ ଏକ ଆବରଣ ପଡ଼ିଗଲା ପରି ମନେହେଲା । କଠୋର ସାଞ୍ଚ ପ୍ରଥା ଦ୍ୱାରା ଭାରତର ଅବଶିଷ୍ଟ ଅଂଶଠାରୁ ଏହା ବିଚ୍ଛିନ୍ନ ହେଲା; ପ୍ରାୟ କୌଣସି ସମ୍ବାଦ ଆସିଲା ନାହିଁ ଏବଂ ଲୋକଙ୍କ ପକ୍ଷରେ ପ୍ରଦେଶ ଭିତରେ ପ୍ରବେଶ କରିବା ବା ତାହା ଛାଡ଼ିବା ଅତ୍ୟନ୍ତ କଷ୍ଟକର ହୋଇପଡ଼ିଲା । ସେଠାରେ ସାମରିକ ଆଇନ୍ ଜାରି ହେଲା ଏବଂ ଏହାର ଜ୍ୱାଳା ଅନେକ ମାସ ପର୍ଯ୍ୟନ୍ତ ରହିଲା । ଧୀରେ ଧୀରେ ଏହି କେତେକ ସପ୍ତାହ ଓ ମାସର ଜ୍ୱାଳାମୁକ୍ତ ଅନିଶ୍ଚୟତା ପରେ ଆବରଣ ଉଠିଗଲା ଏବଂ ସାଙ୍ଘାତିକ ସତ୍ୟ ପଦାକୁ ବାହାରିଲା ।

ପଞ୍ଜାବର ସାମରିକ ଆଇନ ବେଳର ତ୍ରାସ ସମ୍ବନ୍ଧରେ ମୁଁ ଏଠି ବର୍ଣ୍ଣନା କରିବି ନାହିଁ । ଅମୃତସରର ଜାଲିଆନାୱାଲାବାଗରେ ଏପ୍ରିଲ ୧୩ ତାରିଖରେ ଯେଉଁ ହତ୍ୟାକାଣ୍ଡ ହେଲା ସେ ବିଷୟ ସମଗ୍ର ଦୁନିଆ ଜାଣେ, ସହସ୍ର ସହସ୍ର ଲୋକ ମୃତ ଓ ଆହତ ହେଲେ—ସେହି ମୃତ୍ୟୁ ଯନ୍ତ୍ରରୁ ପଳାଇଯିବାର ବାଟ ନ ଥିଲା । "ଅମୃତସର" ଶବ୍ଦଟି ହତ୍ୟାକାଣ୍ଡର ଅପର ନାମ ଭଳି ହୋଇଛି । ଏହା ତ ଅତ୍ୟନ୍ତ ଜଘନ୍ୟ କଥା—ସମଗ୍ର ପଞ୍ଜାବରେ ଏହାଠାରୁ ଅଧିକ ଓ ଅନ୍ୟ ଲଜ୍ଜାଜନକ କାର୍ଯ୍ୟସବୁ ହୋଇଥିଲା ।

ଏତେବର୍ଷ ପରେ ସୁଦ୍ଧା ଏସବୁ ବର୍ବରତା ଓ ଭୟଙ୍କରତା ଭୁଲିବା କଷ୍ଟକର ଏବଂ ତଥାପି ଏହା ବୁଝିବା କିଛି କଷ୍ଟକର ନୁହେଁ । ଯେପରି ଭାବରେ ବ୍ରିଟିଶ ଏଠି କର୍ତ୍ତୃତ୍ୱ କରିଛନ୍ତି ସେମାନେ ସର୍ବଦା ଅନୁଭବ କରୁଛନ୍ତି ଯେ ସେମାନେ ଏକ ଅଗ୍ନିସ୍ରୋତର ପୂର୍ବାବସ୍ଥାରେ ରହିଛନ୍ତି । ସେମାନେ ଭାରତର ହୃଦୟ ବା ମନ କେବେ ବୁଝିବାକୁ ଚେଷ୍ଟାକରି ନାହାନ୍ତି କି ବୁଝିପାରି ନାହାନ୍ତି । ସେମାନେ ଅଲଗା ଜୀବନ ଯାପନ କରନ୍ତି ତାଙ୍କର ବିରାଟ ଓ ଜଟିଳ ସଂଗଠନ ଏବଂ ପଶ୍ଚାତ୍‌ରେ ଥିବା ଶକ୍ତି ଉପରେ ନିର୍ଭରକରି ରହନ୍ତି । କିନ୍ତୁ ସେମାନଙ୍କ ବିଶ୍ୱାସ ମଧ୍ୟରେ ସର୍ବଦା ଏହି ଅଜଣାର ଭୟ ରହିଛି ଏବଂ ୧୫୦ ବର୍ଷ ରାଜୁତି ପରେ ସୁଦ୍ଧା ଭାରତ ତାଙ୍କ ପକ୍ଷରେ ଏକ ଅଜଣା ଦେଶ ହୋଇ ରହିଛି । ୧୮୫୭ ବିଦ୍ରୋହର ସ୍ମୃତି ଏବେ

ସୁଛା ତାଙ୍କ ମନରେ ଡିଟକା ଭଳି ରହିଛି ଏବଂ ସେମାନେ ବୋଧକରନ୍ତି ଯେ ସେମାନେ ଏପରି ଏକ ବିଦେଶ ଓ ବିରୋଧୀ ଦେଶରେ ବାସ କରୁଛନ୍ତି ଯାହା ଯେକୌଣସି ମୁହୂର୍ତ୍ତରେ ତାଙ୍କ ଉପରେ ଆକ୍ରମଣ କରି ତାଙ୍କୁ ବିଧ୍ୱଂସ କରିଦେଇ ପାରେ । ସେମାନଙ୍କର ସାଧାରଣ ମନୋଭାବ ଏହିପରି । ସେମାନେ ଦେଖିଲେ, ତାଙ୍କ ବିରୋଧରେ ଏକ ବିରାଟ ଆନ୍ଦୋଳନ ଦେଶରେ ଉଦୟ ହେଲା । ସେତେବେଳେ ସେମାନଙ୍କର ଭୟ ବଢ଼ିଲା । ଯେତେବେଳେ ଏପ୍ରିଲ ୧୦ ତାରିଖରେ ଅମୃତସରରେ ରକ୍ତାକ୍ତ କାଣ୍ଡ ସଂବାଦ ପଞ୍ଜାବର ଲାହୋରରେ ଥିବା ଉଚ୍ଚ କର୍ମଚାରୀମାନଙ୍କ ନିକଟରେ ପହଞ୍ଚିଲା, ସେମାନେ ସଂପୂର୍ଣ୍ଣଭାବରେ ବିଚଳିତ ହୋଇଗଲେ । ସେମାନେ ଭାବିଲେ, ଏହା ୧୮୫୭ ପରି ବିରାଟ ଆକାରରେ ଆଉ ଏକ ରକ୍ତାକ୍ତ ବିଦ୍ରୋହର ଆରମ୍ଭ ଏବଂ ଇଂରେଜ ଲୋକଙ୍କର ଜୀବନ ବର୍ତ୍ତମାନ ବିପଦସଂକୁଳ । ଗୁରିଆଡ଼େ ଭୟ ଦେଖି ପାରିଲେ ଏବଂ ଆତଙ୍କ ଜାତ କରିଛିବା ନିମନ୍ତେ ସେମାନେ ମନସ୍ଥ କଲେ । ଏହିସବୁ ମନୋଭାବର ଫଳସ୍ୱରୂପ ଜାଲିଆନାୱାଲାବାଗ, ସାମରିକ ଆଇନ ଓ ଅନ୍ୟସବୁ ହେଲା ।

ଭୟ କରିବାରେ କୌଣସି ବାସ୍ତବ କାରଣ ନ ଥିଲା—ଭୟଭୀତ ଲୋକ ପକ୍ଷରେ ବଦ୍ ଆଚରଣ କରିବାଟା ତ୍ରୁଟି ହୋଇପାରେ; ମାତ୍ର ଏଥିଲାଗି କ୍ଷମା ଦିଆଯାଇ ପାରିବ ନାହିଁ । କିନ୍ତୁ ଅମୃତସର ଗୁଳିକାଣ୍ଡପାଇଁ ଦାୟୀ ଜେନେରାଲ ଡାୟାର୍‌ଙ୍କ କାର୍ଯ୍ୟକୁ ଅନେକମାସ ପରେ ତର୍କିତ ଭାବରେ ଯେପରି ଯଥାର୍ଥ ବୋଲି ପ୍ରତିପାଦନ କରାଗଲା, ସେଥିରେ ଭାରତର ଅନ୍ତର କ୍ରୋଧ ଓ ବିତୃଷ୍ଣା ବଢ଼ିଲା । ସେହି ହିଁ ହଜାର ହଜାର ଆହତ ଲୋକଙ୍କ ପ୍ରତି ନିଦାରୁଣ ଅବହେଳା ଦେଖାଇଥିଲେ । ସେ କହିଥିଲେ "ଏହା ମୋର କାମ ନୁହେଁ ।" ଇଂଲଣ୍ଡରେ କେତେକ ଲୋକ ଏବଂ ସରକାର ଅତି ମୃଦୁଭାବରେ ଡାୟାର୍‌ଙ୍କ ସମାଲୋଚନା କରିଥିଲେ; କିନ୍ତୁ ବ୍ରିଟିଶ ଶାସକ ଗୋଷ୍ଠୀଙ୍କର ସାଧାରଣ ମନୋଭାବ ଲର୍ଡ ସଭାର ଏକ ଅଲୋଚନାରେ ଜଣା ପଡ଼ିଥିଲା—ସେଠି ଡାୟାରଙ୍କ ଉପରେ ପ୍ରଶଂସା ବର୍ଷଣ କରାଗଲା । ଏହିସବୁ ଭାରତର ଅଗ୍ନିରେ ଇନ୍ଧନ ପରି କାର୍ଯ୍ୟ କଲା ଏବଂ ପଞ୍ଜାବ ଅନ୍ୟାୟ ବିଷୟରେ ସମଗ୍ର ଦେଶରେ ଖୁବ୍ ଉତ୍କଣ୍ଠା ଦେଖାଦେଲା । ପଞ୍ଜାବରେ ପ୍ରକୃତରେ କଣ ଘଟିଛି ତାହା ବାହାର କରିବା ନିମନ୍ତେ ସରକାର ଓ କଂଗ୍ରେସ ଉଭୟେ ତଦନ୍ତ କମିଟି ବସାଇଲେ । ଦେଶ ତାର ରିପୋର୍ଟକୁ ଅନାଇ ରହିଥାଏ ।

ସେହି ବର୍ଷଠାରୁ ଏପ୍ରିଲ ତା ୧୩ ରିଖ ଭାରତ ପକ୍ଷରେ ଜାତୀୟ ଦିବସ ହୋଇ ରହିଛି ଏବଂ ଏପ୍ରିଲ ତା ୬ ରିଠାରୁ ୧୩ ତାରିଖ ପର୍ଯ୍ୟନ୍ତ ଅଠଦିନ ଜାତୀୟ ସପ୍ତାହ ରୂପେ ପାଳନ କରାଯାଏ । ଜାଲିଆନାୱାଲାବାଗ ଏବେ ଭକ୍ତିଜନକ ତୀର୍ଥସ୍ଥାନ ହୋଇଛି, ଏହା ଏବେ ଚିତ୍ତାକର୍ଷକ ଉଦ୍ୟାନ ହୋଇଛି ଏବଂ ପୁରାତନ ପ୍ରଚଣ୍ଡତା ଭୁଲିଯାଇଛି । କିନ୍ତୁ ସେ ସ୍ମୃତି ବଞ୍ଚି ରହିଛି ।

ସେହି ବର୍ଷ ୧୯୧୯ ଡିସେମ୍ବର ମାସରେ କଂଗ୍ରେସ ଅଧିବେଶନ ଅମୃତସରରେ ହେଲା । ଏହି କଂଗ୍ରେସରେ ଯେପରି କିଛି ବଡ଼ ସିଦ୍ଧାନ୍ତ ହେଲା ନାହିଁ; କାରଣ ତଦନ୍ତ ରିପୋର୍ଟକୁ ଅପେକ୍ଷା କରାଯାଉଥିଲା, କିନ୍ତୁ ଏହାର ପ୍ରମାଣ ମିଳିଲା ଯେ କଂଗ୍ରେସ ବଦଳି ଯାଇଛି । କଂଗ୍ରେସ ଏବେ ଏକ ଗଣଆକୃତି ଧରିଲା ଏବଂ ନୂତନ ଜୀବନ ସଞ୍ଚାର ହେଲା— କେତେକ ପୁରୁଣା କଂଗ୍ରେସ ଲୋକଙ୍କ ଦୃଷ୍ଟିରେ ବଡ଼ ଗୋଳମାଳିଆ ବୋଧହେଲା । ଲୋକମାନ୍ୟ ତିଳକ ଥିଲେ—ସେ ପୂର୍ବପରି ମୀମାଂସା ପକ୍ଷପାତୀ ନ ଥିଲେ—ସେ ଶେଷଥର ପାଇଁ କଂଗ୍ରେସ ଅଧିବେଶନରେ ଯୋଗ ଦେଇଥିଲେ; କାରଣ ଆସନ୍ତା ଅଧିବେଶନ ହେବା ପୂର୍ବରୁ ସେ ମରିଗଲେ । ଗାନ୍ଧୀ ଜନତା ଭିତରେ ଆଦରଣୀୟ ହୋଇଉଠିଥିଲେ ଏବଂ କଂଗ୍ରେସ ଓ ଭାରତ ରାଜନୀତିରେ ତାଙ୍କ ଦୀର୍ଘକାଳ କର୍ତ୍ତୃତ୍ୱ କରିବା ଠିକ୍ ଆରମ୍ଭମାତ୍ର ହେଉଥାଏ । ଆହୁରି ମଧ୍ୟ ସାମରିକ ଆଇନ ଜାରିଥିବା ସମୟରେ ବଡ଼ ବଡ଼ ଷଡ଼ଯନ୍ତ୍ର ମକଦ୍ଦମାରେ ଲିପ୍ତ ହୋଇ ଦୀର୍ଘକାଳ ଶାସ୍ତି ପାଇବା ଅନେକ ନେତା ସିଧା ଜେଲଖାନାରୁ କଂଗ୍ରେସକୁ ଆସିଥିଲେ । ସେମାନଙ୍କୁ ସରକାର ମିଆଦ ପୂର୍ବରୁ ଖଲାସ କରିଦେଲେ ଏବଂ ଅନେକ ବର୍ଷ ଅଟକ ରହିବା ପରେ ପ୍ରସିଦ୍ଧ ଆଲି ଭାଇ ବି ବନ୍ଦୀଶାଳାରୁ ଏହି ସମୟରେ ମୁକ୍ତ ହେଲେ ।

ଆଗାମୀ ବର୍ଷ କଂଗ୍ରେସରେ ଗାନ୍ଧୀଙ୍କର ଅସହଯୋଗ କର୍ମପନ୍ଥା ଗୃହୀତ ହେଲା । କଲିକତାରେ ଏକ ବିଶେଷ ଅଧିବେଶନରେ ଏହା ଗୃହୀତ ହେଲା ଏବଂ ପରେ ନାଗପୁରରେ ଏକ ବାର୍ଷିକ ଅଧିବେଶନରେ ଏହା ମଞ୍ଜୁର ହେଲା । ସଂଗ୍ରାମପନ୍ଥା ସମ୍ପୂର୍ଣ୍ଣ ଶାନ୍ତିପୂର୍ଣ୍ଣ ଥିଲା—ଏହାକୁ ଅହିଂସାତ୍ମକ କହନ୍ତି ଏବଂ ଏହାର ଭିତ୍ତି ହେଲା ସରକାରର ଶାସନ ଓ ଭାରତର ଶୋଷଣରେ ସାହାଯ୍ୟ ଦେବା ନିମନ୍ତେ ଅସ୍ୱୀକାର କରିବା । ପ୍ରଥମେ ଆରମ୍ଭରୁ କେତେକ ବର୍ଜନ କରିବାକୁ ପଡ଼ିବ – ବିଦେଶୀ ସରକାର ଦେଇଥିବା ଉପାଧି, ସରକାରୀ ଉତ୍ସବ ଆଦି, ଓକିଲ ଓ ମକଦ୍ଦମା ଖୋରମାନେ ଆଇନ ଅଦାଲତ ବର୍ଜନ କରିବେ, ସରକାରୀ ସ୍କୁଲ କଲେଜ ଓ ମଣ୍ଟେଗୁ ଚେମସ୍‌ଫୋର୍ଡ଼ ସଂସ୍କାର ଅନୁସାରେ ଗଢ଼ା ହେଉଥିବା ନୂତନ କାଉନ୍‌ସିଲ ବି ବର୍ଜନ ହେବ । ପରେ ଏହି ବର୍ଜନକୁ ଆହୁରି ବଢ଼ାଇ ବେସାମରିକ ଓ ସାମରିକ କର୍ମଚାରୀ କାର୍ଯ୍ୟ ଛାଡ଼ିବେ ଏବଂ ଟିକସ ଦିଆଯିବ ନାହିଁ । ରଚନାତ୍ମକ ଦିଗରେ ହାତରେ ସୂତାକଟା ଓ ଖଦଡ଼ ଉପରେ ଜୋର ଦିଆଗଲା ଏବଂ ଆଇନ ଅଦାଲତ ସ୍ଥାନରେ ପଞ୍ଚାୟତ କୋର୍ଟମାନ ବସାଗଲା । ଆଉ ଦୁଇଟି ବଡ଼ କାମ ହେଲା ହିନ୍ଦୁ-ମୁସଲମାନ ଏକତା ଓ ହିନ୍ଦୁଙ୍କ ଭିତରେ ଅସ୍ପୃଶ୍ୟତା ନିବାରଣ ।

କଂଗ୍ରେସ ମଧ୍ୟ ତାର ନିୟମାବଳୀ ପରିବର୍ତ୍ତନ କଲା ଏବଂ କାର୍ଯ୍ୟକ୍ଷମ ସଂସ୍ଥା ହୋଇଗଲା ଏବଂ ତାହା ସଙ୍ଗେ ସଙ୍ଗେ ଜନସାଧାରଣ ଏଥିରେ ସଭ୍ୟ ହେବା ନିମନ୍ତେ ଦ୍ୱାର ଉନ୍ମୁକ୍ତ ହେଲା ।

ଏପର୍ଯ୍ୟନ୍ତ କଂଗ୍ରେସ ଯାହା କରିଆସୁଥିଲା ଏହି କାର୍ଯ୍ୟପନ୍ଥା ସେଥିରୁ ସମ୍ପୂର୍ଣ୍ଣ ପୃଥକ୍ ହେଲା; ବାସ୍ତବିକ୍ ପୃଥିବୀରେ ଏହା ଏକ ସଂପୂର୍ଣ୍ଣ ନୂତନ ଜିନିଷ ହେଲା; କାରଣ ଦକ୍ଷିଣ ଅଫ୍ରିକା ସତ୍ୟାଗ୍ରହ ବଡ଼ ସୀମାବଦ୍ଧ ଆକାରରେ ହୋଇଥିଲା । ଏହାର ଅର୍ଥ ସଙ୍ଗେ ସଙ୍ଗେ କେତେକ ଲୋକଙ୍କୁ ଖୁବ୍ ତ୍ୟାଗ କରିବା ଦରକାର ହେଲା ଯେପରିକେ ଓକିଲମାନଙ୍କୁ ତାଙ୍କ ପେଶା ଛାଡ଼ି ଆସିବା ସକାଶେ ଆହ୍ୱାନ କରାଗଲା ଏବଂ ଛାତ୍ରମାନଙ୍କୁ ସରକାରୀ କଲେଜ ଛାଡ଼ିଆସିବା ନିମନ୍ତେ ଡାକରା ହେଲା । ଏହା ବିଗ୍ଭର କରିବା କଷ୍ଟକର ଥିଲା; କାରଣ ତୁଳନା କରିବାର କୌଣସି ମାପକାଠି ନ ଥିଲା । ପୁରାତନ ଓ ଅଭିଜ୍ଞ କଂଗ୍ରେସ ଲୋକଙ୍କ ପକ୍ଷରେ ଦ୍ୱିଧା କରିବା ଏବଂ ସନ୍ଦେହପୂର୍ଣ୍ଣ ହେବାଟା କିଛି ଆଶ୍ଚର୍ଯ୍ୟ କଥା ନୁହେଁ । ଏହାର ଅଳ୍ପ କେତେଦିନ ପୂର୍ବରୁ ପୁରାତନ ଲୋକଙ୍କ ଭିତରେ ଶ୍ରେଷ୍ଠ ପୁରୁଷ ଲୋକମାନ୍ୟ ତିଳକ ମରିଗଲେ । ଅନ୍ୟ ଖ୍ୟାତନାମା କଂଗ୍ରେସ ନେତାଙ୍କ ଭିତରେ ମୋତିଲାଲ ନେହରୁ ପ୍ରଥମାବସ୍ଥାରେ ଗାନ୍ଧୀଙ୍କୁ ସମର୍ଥନ କଲେ । କିନ୍ତୁ ସାଧାରଣ କଂଗ୍ରେସ ଲୋକ ଅଥବା 'ମଲମୁଣ୍ଡିଆ' ଲୋକ କିମ୍ବା ଜନସାଧାରଣଙ୍କ ମନରେ କୌଣସି ସନ୍ଦେହ ନ ଥିଲା । ଗାନ୍ଧୀ ସେମାନଙ୍କୁ ଏଭଳି ଭୁଲାଇଦେଲେ ଓ ମନ୍ତ୍ରମୁଗ୍ଧ କରିଦେଲେ ଯେ ମହାତ୍ମା 'ଗାନ୍ଧିଙ୍କ ଜୟ' ବୋଲି ଉଚ୍ଚ ଚିତ୍କାରରେ ସେମାନେ ଅହିଂସା ଅସହଯୋଗର ନୂତନ ଧର୍ମପ୍ରତି ନିଜର ସମର୍ଥନ ପ୍ରଦର୍ଶନ କଲେ । ଅନ୍ୟମାନଙ୍କ ପରି ମୁସଲମାନମାନେ ମଧ୍ୟ ଏଥିରେ ଉତ୍ସାହୀ ଥିଲେ । ବାସ୍ତବିକ ଆଲି ଭାଇଙ୍କ ନେତୃତ୍ୱରେ କଂଗ୍ରେସ କିଛି କରିବା ପୂର୍ବରୁ ଖିଲାଫତ୍ କମିଟି ଏହି କାର୍ଯ୍ୟପନ୍ଥା ଗ୍ରହଣ କରି ସାରିଥିଲା । ଜନସାଧାରଣଙ୍କ ଉତ୍ସାହ ଓ ଆନ୍ଦୋଳନର ପ୍ରାରମ୍ଭିକ ସଫଳତା ଯୋଗୁଁ ଶୀଘ୍ର ଅଧିକାଂଶ ପୁରୁଣା କଂଗ୍ରେସ ନେତା ଏହା ଭିତରକୁ ଆସିଗଲେ ।

ଏହିସବୁ ଚିଠିରେ ଏହି ନୂତନ ଆନ୍ଦୋଳନର ଦୋଷଗୁଣ ବା ଏହା ପଛରେ ଥିବା ଦର୍ଶନ ମୁଁ ପରୀକ୍ଷା କରି ପାରିବି ନାହିଁ । ଏହା ଏକ ଅତି ଜଟିଳ ପ୍ରଶ୍ନ ଏବଂ ସମ୍ଭବତଃ ଏହାର ସ୍ରଷ୍ଟା ଗାନ୍ଧୀଙ୍କ ଛଡ଼ା ଆଉ କେହି ସନ୍ତୋଷଜନକ ଭାବରେ କହିପାରିବ ନାହିଁ । ତଥାପି ଆମେ ବାହାର ଲୋକର ଦୃଷ୍ଟିକୋଣରୁ ଏଥିପ୍ରତି ଦୃଷ୍ଟି ପକାଇବା ଏବଂ ଏହା କାହିଁକି ଏତେ ଶୀଘ୍ର ଓ ସଫଳତାର ସହିତ ବିସ୍ତାର ଲାଭକଲା ତାହା ବୁଝିବାକୁ ଚେଷ୍ଟା କରିବା ।

ଲୋକଙ୍କ ପକ୍ଷରେ ଆର୍ଥିକ ଗୁରୁତର କଥା ମୁଁ ତତେ କହିଛି । ଦିନକୁ ଦିନ ବିଦେଶୀ କର୍ତ୍ତୃତ୍ୱାଧୀନରେ ସେମାନଙ୍କ ଅବସ୍ଥା ଖରାପ ହୋଇଗଲା ଏବଂ ମଧ୍ୟବିତ୍ତ ଶ୍ରେଣୀଙ୍କ ଭିତରେ ଅକର୍ମା ସଂଖ୍ୟା ବୃଦ୍ଧି ପାଇଲା । ଏହାର ପ୍ରତିକାର ବାଟ କଣ ? ଜାତୀୟତାର ବୃଦ୍ଧି ସଙ୍ଗେ ସଙ୍ଗେ ଲୋକଙ୍କର ମନ ରାଜନୀତିକ ସ୍ୱାଧୀନତାର ଆବଶ୍ୟକତା ଆଡ଼କୁ ଗଲା । ପରାଧୀନ ଓ ଦାସ ହୋଇ ରହିବା ଅଧୋଗତିର ପରିଚାୟକ; କେବଳ ସେହିହେତୁ କିମ୍ବା ଯାହା ତିଳକ କହିଥିଲେ, 'ସ୍ୱରାଜ୍ୟ ଆମର ଜନ୍ମଗତ ଅଧିକାର, ଆମେ ତାହା ଅବଶ୍ୟ ପାଇବୁ'—ଏହି କାରଣରୁ ଯେ ସ୍ୱାଧୀନତା ଆବଶ୍ୟକ ତାହା ନୁହେଁ, ଆମ ଲୋକଙ୍କ ଉପରୁ ଦାରିଦ୍ର୍ୟ ବୋଝ ଦୂର

କରିବା ନିମନ୍ତେ ବି ଏହା ଆବଶ୍ୟକ । କିନ୍ତୁ ସ୍ୱାଧୀନତା ମିଳିବ କିପରି ? ଏ କଥା ସୁସ୍ପଷ୍ଟ ଯେ ଆମେ ଚୁପଚାପ ବସି କେବଳ ଏଥିପାଇଁ ଅପେକ୍ଷା କରି ରହିଲେ ଏହା ମିଳିବ ନାହିଁ । ଏହା ମଧ୍ୟ ପରିଷ୍କାରରୂପେ ଜଣାପଡ଼ିଲା ଯେ କଂଗ୍ରେସ ଏପର୍ଯ୍ୟନ୍ତ ଅଳ୍ପେ ଅଧିକେ ଗାନ୍ଧି ଭାବରେ ଯେଉଁ ପ୍ରତିବାଦ ଓ ନିବେଦନ ପ୍ରଣାଳୀ ଅନୁସରଣ କରି ଆସିଥିଲା, ତାହା ଯେ ଖାଲି କୌଣସି ଲୋକଙ୍କ ପକ୍ଷରେ ଅମର୍ଯ୍ୟାଦାସୂଚକ ତାହା ନୁହେଁ, ଅଧିକନ୍ତୁ ବୃଥା ଓ ନିଷ୍ଫଳ ମଧ୍ୟ । ଇତିହାସରେ କେବେହେଁ ଏପରି ପ୍ରଣାଳୀ କେଉଁଠି ସଫଳ ହୋଇନାହିଁ କିମ୍ବା ଶାସକ ବା ସୁବିଧାଭୋଗୀ ଶ୍ରେଣୀ କ୍ଷମତା ହାତରୁ ଛାଡ଼ିଦେଇ ନାହାନ୍ତି । ବାସ୍ତବିକ ଇତିହାସ ଆମକୁ ଶିକ୍ଷା ଦେଇଛି ଯେ ଦାସ ହୋଇଥିବା ଜାତି ଓ ଶ୍ରେଣୀ ହିଂସାମୂଳକ ବିଦ୍ରୋହ ଓ ରାଜବିଦ୍ରୋହ ଦ୍ୱାରା ହିଁ ନିଜ ସ୍ୱାଧୀନତା ଅର୍ଜନ କରି ପାରିଛନ୍ତି ।

ଭାରତର ଲୋକଙ୍କ ପକ୍ଷରେ ସଶସ୍ତ୍ର ବିଦ୍ରୋହ ପ୍ରଶ୍ନ ନ ଉଠିଲା ପରି ମନେହୁଏ । ଆମେସବୁ ନିରସ୍ତ୍ର ଏବଂ ଆମ ଭିତରୁ ଅଧିକାଂଶ ଏପରି ଯେ ଅସ୍ତ୍ର ବ୍ୟବହାର ସୁଦ୍ଧା ଜାଣି ନ ଥିଲେ । ଏହାଛଡ଼ା ହିଂସାମୂଳକ ସଂଘର୍ଷରେ ବ୍ରିଟିଶ ସରକାରର ସଙ୍ଗଠିତ ଶକ୍ତି ବା ଯେକୌଣସି ସରକାରର ହିଂସା ଶକ୍ତି ତା ବିରୁଦ୍ଧରେ ଯେ କୌଣସି ଶକ୍ତିଠାରୁ ଖୁବ୍ ଅଧିକ ହେବ । ସୈନ୍ୟମାନେ ବିଦ୍ରୋହ କରିପାରନ୍ତି; କିନ୍ତୁ ନିରସ୍ତ୍ର ଲୋକ ବିଦ୍ରୋହ କରି ସଶସ୍ତ୍ର ସେନାଙ୍କର ମୁକାବିଲା କରିପାରିବେ ନାହିଁ । ବ୍ୟକ୍ତିଗତ ଆତଙ୍କବାଦ ବା ଅନ୍ୟ କଥାରେ କହିଲେ ବ୍ୟକ୍ତିଗତ କର୍ମଚାରୀଙ୍କି ବୋମା ବା ପିସ୍ତଲରେ ହତ୍ୟା କରିବା ଏକ ବୁଦ୍ଧିହୀନତାର କାର୍ଯ୍ୟ । ଏହା ଲୋକଙ୍କ ପକ୍ଷରେ ଅଧୋଗତିସୂଚକ ଏବଂ ଏହା ଯେତେ ବ୍ୟକ୍ତିବିଶେଷଙ୍କୁ ଭୟଭୀତ କରୁ ପଛକେ ଶକ୍ତିଶାଳୀ ସଙ୍ଗଠିତ ସରକାରକୁ ଦୋହଲାଇଦେବ ବୋଲି ଭାବିବା ହାସ୍ୟାସ୍ପଦ । ମୁଁ ଡିତେ କହୁଛି ରୁଷ ବିପ୍ଳବୀମାନେ ମଧ୍ୟ ଏକପ୍ରକାର ବ୍ୟକ୍ତିଗତ ହିଂସାକୁ ତ୍ୟାଗ କରିଥିଲେ ।

ତାହା ହେଲେ ରହିଲା କଣ ? ରୁଷ ତାର ବିପ୍ଳବରେ କୃତକାର୍ଯ୍ୟ ହେଲା ଏବଂ ଏକ ଶ୍ରମିକ ପ୍ରଜାତନ୍ତ୍ର ସ୍ଥାପନା କଲା ଓ ତାର ପନ୍ଥା ହେଲା ସେନା ସାହାଯ୍ୟରେ ଗଣ ଆନ୍ଦୋଳନ । ଆହୁରି ମଧ୍ୟ ରୁଷରେ ଯୁଦ୍ଧ ହେଉ ଦେଶ ଓ ପୁରାତନ ସରକାର ଯେତେବେଳେ ଚୂରମାର ହୋଇଯାଇଥିଲା ସେତେବେଳେ ରୁଷର ସୋଭିଏତ୍ କୃତକାର୍ଯ୍ୟ ହେଲେ— ସେମାନଙ୍କୁ ସେପରି ବିରୋଧ କରିବାର କିଛି ନ ଥିଲା । ଆହୁରି ସେତେବେଳେ ଭାରତରେ ଅଳ୍ପ ଲୋକ ରୁଷ ମାର୍କସବାଦ ସମ୍ବନ୍ଧରେ ଜାଣିଥିଲେ ଅଥବା ଶ୍ରମିକ ବା କୃଷକଙ୍କ ବିଷୟରେ ଚିନ୍ତା କରୁଥିଲେ ।

ତେଣୁ ଏହିସବୁ ଦୃଷ୍ଟାନ୍ତ ବିଶେଷ କିଛି ସାହାଯ୍ୟକାରୀ ହେଲା ନାହିଁ ଏବଂ ଅବନତ ଦାସତ୍ୱର ଅସହ୍ୟ ଅବସ୍ଥାରୁ ନିସ୍ତାର ପାଇବାର ଅନ୍ୟ କିଛି ପନ୍ଥା ନ ଥିଲା ପରି ମନେହେଲା । ଅନେକ ଅନୁଭବୀ ଲୋକ ବଡ଼ ବିଷାଦଗ୍ରସ୍ତ ଓ ନିଃସହାୟ ବୋଧକଲେ । ଏତିକିବେଳେ ଗାନ୍ଧୀ

ତାଙ୍କର ଅସହଯୋଗ କର୍ମପନ୍ଥା ଯୋଗାଇଲେ । ଆୟର୍ଲାଣ୍ଡରେ 'ସିନ୍‌ଫେନ୍' ପରି ନିଜ ଉପରେ ନିର୍ଭର କରିବା ଓ ନିଜର ଶକ୍ତି ସଙ୍ଗଠନ କରିବାକୁ ଏହା ଶିକ୍ଷା ଦେଲା ଏବଂ ସରକାର ଉପରେ ଚାପ ଆଣିବା ନିମନ୍ତେ ଏହା ଯେ ଅତ୍ୟନ୍ତ ଫଳଦାୟକ ପନ୍ଥା ଏହା ସୁସ୍ପଷ୍ଟ ବୋଧହେଲା । ସରକାର ଇଚ୍ଛାକୃତ ବା ଅନିଚ୍ଛାକୃତ ହେଉ ପଛକେ ଭାରତୀୟ ଲୋକଙ୍କ ସହଯୋଗରେ ହିଁ ଚଳିଛି ଏବଂ ଯଦି ଏହି ସହଯୋଗ କାଢ଼ି ନିଆଯାଏ ଏବଂ ବର୍ଜନ କରାଯାଏ, ତେବେ କଳ୍ପନାରେ ସମସ୍ତ ସରକାରୀ ସଙ୍ଗଠନକୁ ଅଚଳ କରିବା ସମ୍ପୂର୍ଣ୍ଣ ସମ୍ଭବ ମନେହୁଏ । ଯଦିବା ଅସହଯୋଗ ଏତେଦୂର ନ ଯାଇ ପାରିଲା, ତଥାପି ଏଥିରେ ସନ୍ଦେହ ନାହିଁ ଯେ ସରକାର ଉପରେ ଏହା ପ୍ରବଳ ଚାପ ଦେଇପାରିଲା ଏବଂ ତାହା ସଙ୍ଗେ ସଙ୍ଗେ ଲୋକଙ୍କର ଶକ୍ତି ବୃଦ୍ଧି କଲା । ଏହା ସମ୍ପୂର୍ଣ୍ଣ ଶାନ୍ତିପୂର୍ଣ୍ଣ ହେବାର କଥା; ତଥାପି ଏହା କେବଳ ଅପ୍ରତିରୋଧ ନ ଥିଲା । ସତ୍ୟାଗ୍ରହ ହେଉଛି ଅନ୍ୟାୟ ବିରୁଦ୍ଧରେ ନିର୍ଦ୍ଦିଷ୍ଟ ଓ ଅହିଂସା ପ୍ରତିରୋଧ । କାର୍ଯ୍ୟତଃ ଏହା ଏକ ଶାନ୍ତିପୂର୍ଣ୍ଣ ବିଦ୍ରୋହ । ଏକ ଅତି ସଭ୍ୟ ଧରଣର ଯୁଦ୍ଧ, ତଥାପି ସରକାରର ସ୍ଥାୟିତ୍ୱ ପକ୍ଷରେ ବିପଜ୍ଜନକ । ଜନସାଧାରଣଙ୍କୁ କାର୍ଯ୍ୟରେ ଲଗାଇବା ନିମନ୍ତେ ଏହା ଏକ ପ୍ରଭାବଶାଳୀ ପନ୍ଥା ଏବଂ ଭାରତ ଲୋକଙ୍କର ବୈଶିଷ୍ଟ୍ୟ ଧୀମତ୍ତା ସହିତ ଏହା ଖାପ ଖାଇଲାପରି ମନେହେଲା । ଏହା ଆମକୁ ଉନ୍ନତ ବ୍ୟବହାର ଶିଖାଇଲା ଏବଂ ବିରୋଧୀକ ଭୁଲରେ ପକାଇଦେଲା । ଆମେ ଯେଉଁ ଭୟରେ ତ୍ରସ୍ତ ହୋଇଥିଲୁ ତାହା ଛାଡ଼ିବା ନିମନ୍ତେ ଏହା ଆମକୁ ଶିଖାଇଲା ଏବଂ ଆମେ ଲୋକଙ୍କୁ କେବେ ଦେଖି ନ ଥିବା ଦୃଷ୍ଟିରେ ଦେଖିଲୁ ଏହାଛଡ଼ା ଆମର ମନକଥା ପୂର୍ଣ୍ଣ ଭାବରେ ଓ ଖୋଲା ଭାବରେ ପ୍ରକାଶ କଲୁ । ଆମ ମନ ଉପରୁ ଗୋଟାଏ ବୋଝ ଦୂର ହୋଇଗଲାପରି ମନେହେଲା ଏବଂ ଏହି କାର୍ଯ୍ୟ ଓ ବାଣୀର ନୂତନ ସ୍ୱାଧୀନତା ଦ୍ୱାରା ଆଶା ଓ ଶକ୍ତି ପୂର୍ଣ୍ଣ ହୋଇଗଲା । ଶେଷରେ ଶାନ୍ତ ଉପାୟ ହେତୁ ଏପରି ସଂଗ୍ରାମମାନଙ୍କରେ ସର୍ବଦା ଯେଉଁ ବିକଟ ଜାତିଗତ ଓ ଜାତୀୟ ଦ୍ୱେଷ ଉପୁଜେ, ତାହା ବଢ଼ିବାରେ ବହୁପରିମାଣରେ ବାଧା ହେଲା ଏବଂ ଏହିରୂପେ ଚରମ ନିଷ୍ପତ୍ତି ସହଜ କରିପକାଇଲା ।

ଗାନ୍ଧୀଙ୍କର ଅଲୌକିକ ବ୍ୟକ୍ତିତ୍ୱ ସହ ଏହି ଅସହଯୋଗ କର୍ମପନ୍ଥା ଯେ ଦେଶର ଲୋକଙ୍କ ମନ-ପ୍ରଦେଶ ଅଧିକାର କଲା ଏବଂ ଆଶାପୂର୍ଣ୍ଣ କଲା ଏଥିରେ ବିସ୍ମୟ କିଛି ନାହିଁ । ଏହା ପ୍ରସାର ଲଭିଲା ଏବଂ ଏହାର ଆଗମନରେ ପୁରାତନ ଅବସାଦ ଦୂର ହୋଇଗଲା । ନୂତନ କଂଗ୍ରେସ ପ୍ରତି ଦେଶର ଅଧିକାଂଶ ଶକ୍ତିଶାଳୀ ଦଳଙ୍କ ଦୃଷ୍ଟି ଆକୃଷ୍ଟ ହେଲା ଏବଂ ଏହାର ଶକ୍ତି ଓ ସମ୍ମାନ ବଢ଼ିଲା ।

ଇତ୍ୟବସରରେ ମଣ୍ଟେଗୁ-ଚେମସ୍‌ଫୋର୍ଡ଼ ସଂସ୍କାର ଅନୁସାରେ ନୂତନ କାଉନସିଲ ଓ ଆସେମ୍ବ୍ଲି ସବୁ ସ୍ଥାପିତ ହେଲା । ଲିବରାଲ ବୋଲି କଥିତ ନରମବାଦୀମାନେ ଏହାର ସ୍ୱାଗତ କଲେ ଏବଂ ଏଥିରେ ମନ୍ତ୍ରୀ ଓ ଅନ୍ୟ କର୍ମଚାରୀ ହେଲେ । ସେମାନେ ବ୍ୟାବହାରିକ ରୂପେ ସରକାରରେ ମିଶିଯାଇଥିଲେ ଏବଂ ତାଙ୍କ ପଛାରେ ଲୋକସମର୍ଥନ ନ ଥିଲା । କଂଗ୍ରେସ

ଏହିସବୁ ବ୍ୟବସ୍ଥାସବୁ ବର୍ଜନ କରିଥିଲ ଏବଂ ଦେଶର ଏଥିପ୍ରତି ବିଶେଷ କେହି ଦୃଷ୍ଟି ଦେଉ ନ ଥିଲେ । ବାହାରେ, ସହରର ଓ ଗ୍ରାମମାନଙ୍କରେ ଲଗିଥିବା ପ୍ରକୃତ ସଂଗ୍ରାମ ପ୍ରତି ଲୋକଙ୍କର ଦୃଷ୍ଟି ନିକ୍ଷେପ ହେଲ । ପ୍ରଥମଥର ପାଇଁ ବହୁସଂଖ୍ୟକ କଂଗ୍ରେସ କର୍ମୀ ଗ୍ରାମକୁ ଯାଇ ସେଠାରେ କଂଗ୍ରେସ କମିଟିସବୁ ସ୍ଥାପନା କଲେ ଏବଂ ଗ୍ରାମବାସୀଙ୍କର ରାଜନୀତିକ ଜାଗରଣରେ ସାହାଯ୍ୟ କଲେ ।

ବ୍ୟାପାର ଗୁରୁତର ଆକାର ଧାରଣ କଲ୍ ଏବଂ ଅନିବାର୍ଯ୍ୟରୂପେ ୧୯୨୧ ଡିସେମ୍ବର ମାସରେ ସଂଘର୍ଷ ଆରମ୍ଭ ହେଲ । ପ୍ରିନ୍ସ ଅଫ୍ ୱେଲସ୍‌ଙ୍କ ଭାରତ ପରିଦର୍ଶନରେ ଏକ ମଉକା ମିଳିଗଲ୍ – କଂଗ୍ରେସ ଏହାକୁ ବର୍ଜନ କଲ୍ । ଭାରତ ସାରା ବହୁ ଗିରଫ ଚାଲିଲ୍ ଏବଂ ହଜାର ହଜାର "ରାଜବନ୍ଦୀ"ରେ ଜେଲ ଭରିଗଲ୍ । ସେତେବେଳେ ଆମ ଭିତରୁ ଅନେକଙ୍କର ପ୍ରଥମ ଜେଲ ଭିତର ଅଭିଜ୍ଞତା ହେଲ୍; ଏପରି କି କଂଗ୍ରେସର ନିର୍ବାଚିତ ସଭାପତି ଦେଶବନ୍ଧୁ ଚିତ୍ତରଞ୍ଜନ ଦାସଙ୍କୁ ମଧ୍ୟ ଗିରଫ କରାଗଲ ଏବଂ ତାଙ୍କ ସ୍ଥାନରେ ଅହମଦାବାଦ ଅଧିବେଶନରେ ହାକିମ ଆଜମଲ ଖାଁ ସଭାପତିତ୍ୱ କଲେ । କିନ୍ତୁ ଗାନ୍ଧୀଙ୍କି ସେତେବେଳେ ଗିରଫ କରାଯାଇ ନ ଥିଲ୍ ଏବଂ ଆନ୍ଦୋଳନ ବୃଦ୍ଧି ପାଇଲ୍ ଓ ଯେତେ ଗିରଫ ହେଲେ ତାଙ୍କ ଅପେକ୍ଷା ଗିରଫ ହେବାପାଇଁ ବାହାରିବା ଲୋକସଂଖ୍ୟା ସର୍ବଦା ବେଶି ଥିଲ୍ । ଜଣାଶୁଣା ନେତା ଓ କର୍ମୀମାନେ ଜେଲ ଯିବା ପରେ ନୂତନ, ଅନଭିଜ୍ଞ ଓ ବେଳେ ବେଳେ ଏପରି କି ଅବାଞ୍ଛନୀୟ ଲୋକେ (ଏପରିକି ଗୁପ୍ତ ପୁଲିସ ଏଜେଣ୍ଟ) ତାଙ୍କର ସ୍ଥାନ ଦଖଲ କଲେ ଏବଂ ବିଶୃଙ୍ଖଳା ଓ ବେଳେ ବେଳେ ହିଂସା ଦେଖାଦେଲ୍ । ଯୁକ୍ତପ୍ରଦେଶରେ ଗୋରଖପୁର ନିକଟସ୍ଥ ଚୌରିଚୌରା-ଠାରେ କୃଷକ-ଜନତା ଓ ପୁଲିସ ଭିତରେ ୧୯୨୨ ପ୍ରଥମ ଭାଗରେ ସଂଘର୍ଷ ହେଲ୍ ଏବଂ ଏଥିରେ କୃଷକମାନେ ପୁଲିସ ଥାନାକୁ ପୋଡ଼ିଦେଲେ – ତାହା ଭିତରେ କେତେକ ପୁଲିସ ରହିଥିଲେ । ଏଥିରେ ଏବଂ ଅନ୍ୟ କେତେକ ଘଟଣାରେ ଗାନ୍ଧୀ ଚମକି ପଡ଼ିଲେ – ଏଥିରୁ ଦେଖାଗଲ୍ ଯେ ଆନ୍ଦୋଳନ ଅସଂଗଠିତ ଓ ହିଂସାତ୍ମକ ହୋଇଗଲଣି ଏବଂ ତାଙ୍କର ପ୍ରସ୍ତାବ ଅନୁସାରେ କଂଗ୍ରେସ କାର୍ଯ୍ୟକାରୀ ସମିତି ଅସହଯୋଗର ଆଇନ ଭଙ୍ଗ କାର୍ଯ୍ୟପନ୍ଥା ସ୍ଥଗିତ କରିଦେଲେ । ଏହାର ଅଳ୍ପଦିନ ପରେ ଗାନ୍ଧୀ ନିଜେ ଗିରଫ ହେଲେ, ବିଚାର ହେଲ୍ ଏବଂ ଛଅବର୍ଷ କାରାଦଣ୍ଡ ପାଇଲେ । ଏହା ମାର୍ଚ୍ଚ ୧୯୨୨ର ଘଟଣା ଏବଂ ଅସହଯୋଗ ଆନ୍ଦୋଳନର ପ୍ରଥମ ପ୍ରବାହ ଏହିରୂପେ ଶେଷ ହେଲ୍ ।

## ୧୬୧ : ୧୯୨୦ ମସିହା ପରବର୍ତ୍ତୀ ଭାରତ

ମେ ୧୪, ୧୯୩୩

୧୯୨୨ରେ ଆଇନ ଅମାନ୍ୟ ସ୍ଥଗିତ ହେବାରୁ ଅସହଯୋଗ ଆନ୍ଦୋଳନର ପ୍ରଥମ ପ୍ରବାହ ଶେଷ ହେଲ୍ । କିନ୍ତୁ ଏହା ସ୍ଥଗିତ ରହିବା ଫଳରେ ଅନେକ କଂଗ୍ରେସ ଲୋକ ବଡ଼

ଅସନ୍ତୁଷ୍ଟ ହେଲେ । ଗୋଟାଏ ବଡ଼ ଜାଗରଣ ହୋଇଥିଲା ଏବଂ ପ୍ରାୟ ୩୦ ହଜାର ସବିନୟ ପ୍ରତିରୋଧୀ ଜେଲ ଯାଇଥିଲେ । ଏ ସବୁର କଣ କିଛି ମୂଲ୍ୟ ନାହିଁ ଏବଂ କେବଳ କେତେକ ବିଚିତ୍ର ଉତ୍ତେଜିତ କୃଷକ ବଦ୍‌ଆଚରଣ କଲେ ବୋଲି ମଝି ଅବସ୍ଥାରେ ଆନ୍ଦୋଳନ ତାର ଉଦ୍ଦେଶ୍ୟ ହାସଲ କରିବା ପୂର୍ବରୁ କଣ ହଠାତ୍ ବନ୍ଦ କରି ଦିଆଯିବ ? ସ୍ୱାଧୀନତା ଏବେ ସୁଦ୍ଧା ବହୁଦୂରରେ ଥିଲା ଏବଂ ବ୍ରିଟିଶ ସରକାର ପୂର୍ବପରି ଚାଲୁଥିଲା । ଦିଲ୍ଲୀ ଓ ଅନ୍ୟ ପ୍ରଦେଶମାନଙ୍କରେ ନାମକୁ ମାତ୍ର କାଉନ୍‌ସିଲ୍ ସବୁ ରହିଥିଲା; କିନ୍ତୁ ପ୍ରକୃତ କ୍ଷମତା ନ ଥିଲା । କଂଗ୍ରେସ ସେସବୁ ବର୍ଜନ କରିଥିଲା । ଗାନ୍ଧୀ ଜେଲରେ ଥିଲେ ।

ଅସହଯୋଗ କାର୍ଯ୍ୟପନ୍ଥା ସେତେବେଳେ କଂଗ୍ରେସ ଲୋକଙ୍କ ଭିତରେ ଖୁବ୍ ବିତର୍କ ସୃଷ୍ଟି କଲା ଏବଂ କଂଗ୍ରେସ ଭିତରେ ଏକ ପରିବର୍ତ୍ତନ କରିବା ନିମନ୍ତେ ସ୍ୱରାଜ୍ୟଦଳ ନାମରେ ଏକ ଦଳ ଗଢ଼ା ହେଲା । ସେମାନେ ପ୍ରସ୍ତାବ କଲେ ଯେ ମୌଳିକ ଅସହଯୋଗ କର୍ମପନ୍ଥା ସେହିପରି ରହିବ; କିନ୍ତୁ ଗୋଟିଏ ବିଶେଷ ଅଂଶରେ କେବଳ ପରିବର୍ତ୍ତନ ହେବ । ବ୍ୟବସ୍ଥାପକ ସଭା ବର୍ଜନ ଉଠାଇ ଦିଆଯିବ । ଏଥିରେ କଂଗ୍ରେସ ଭିତରେ ବିବାଦ ହେଲା, କିନ୍ତୁ ଶେଷରେ ସ୍ୱରାଜ୍ୟ ଦଳର କଥା ରହିଲା ।

କଂଗ୍ରେସ ଲୋକେ କାଉନ୍‌ସିଲରେ ପ୍ରବେଶ କଲେ, ଦାମ୍ଭିକ ବକ୍ତୃତାମାନ ଦେଲେ ଏବଂ ସହଯୋଗ ଅସ୍ୱୀକାର କରିଦେଲେ । କିନ୍ତୁ ସେମାନଙ୍କର ପ୍ରସ୍ତାବ ଓ ଭୋଟ ପ୍ରତି ସରକାର ଅବହେଳା ଦେଖାଇଲା । ଆଇନସଭା ଯେଉଁ ବଜେଟ୍‌କୁ ଫୋପାଡ଼ିଦେଇଥିଲେ, ଭାଇସରୟ ତାହା ମଞ୍ଜୁର କଲା । କିଛିଦିନ ସକାଶେ ବ୍ୟବସ୍ଥା ସଭାରେ କଂଗ୍ରେସ ଲୋକଙ୍କର ଏହି କାର୍ଯ୍ୟ ପ୍ରଚାରରେ ଭଲ ସାହାଯ୍ୟ କଲା; କିନ୍ତୁ ଏଥିରେ ଆନ୍ଦୋଳନର ମଧ୍ୟଗତି ଟିକିଏ ଧିମା ପଡ଼ିଗଲା । ଏହା ଜନତାଠାରୁ ବିଚ୍ଛିନ୍ନ ହୋଇଗଲା ଏବଂ ପ୍ରତିକ୍ରିୟାପନ୍ଥୀ ଦଳମାନଙ୍କ ସହ ମିଳାମିଶା ହେଲା ।

୧୯୨୦ ବେଳେ ଭାରତକୁ ଆଲୋଡ଼ନ କରୁଥିବା କେତେକ ଶକ୍ତି ଓ ଆନ୍ଦୋଳନକୁ ବୁଝିବାକୁ ଚେଷ୍ଟା କରିବା । ଅନ୍ୟ ସବୁ ଜିନିଷ ଉପରେ ହିନ୍ଦୁ ମୁସଲମାନ ସମସ୍ୟା ହିଁ ପ୍ରଧାନ ଥିଲା । ବିବାଦ ବଢ଼ିଲା, ମସ୍‌ଜିଦ୍ ଆଗରେ ବାଦ୍ୟ ବଜାଇବା ଅଧିକାର ଆଦି କ୍ଷୁଦ୍ର କ୍ଷୁଦ୍ର ପ୍ରଶ୍ନ ଯୋଗୁଁ ଉତ୍ତର ଭାରତର ଅନେକ ସ୍ଥାନରେ ଦଙ୍ଗା ଉପୁଜିଲା । ଅସହଯୋଗ କାଳର ଅପୂର୍ବ ଏକତା ପରେ ଏହା ଏକ ଅଦ୍ଭୁତ ଓ ଆକସ୍ମିକ ପରିବର୍ତ୍ତନ । ଏହା କିପରି ହେଲା ଏବଂ ସେ ଏକତାର ଭିତ୍ତି କଣ ଥିଲା ?

ଜାତୀୟ ଆନ୍ଦୋଳନର ଭିତ୍ତି ହେଲା ଅଧିକ ପରିମାଣରେ ଆର୍ଥିକ ଦୁର୍ଗତି ଓ ବେକାର ସମସ୍ୟା । ଏହା ଫଳରେ ମଧ୍ୟବିତ୍ତ ଦଳ ଭିତରେ ସାଧାରଣ ଭାବରେ ବ୍ରିଟିଶ ସରକାର ବିରୋଧୀ ଭାବ ଜାଗ୍ରତ ହେଲା ଏବଂ ସ୍ୱରାଜ୍ୟ ବା ସ୍ୱାଧୀନତା ପାଇଁ ଗୋଟାଏ ଅସ୍ପଷ୍ଟ ଅଭିଳାଷ

ଜନ୍ମିଲା । ଏହି ବିରୋଧିତା ହିଁ ସାଧାରଣ ସଂଯୋଗ ବିଶେଷଣ ଏବଂ ତେଣୁ ସାଧାରଣ କାର୍ଯ୍ୟ ମଧ୍ୟ ହେଲା; କିନ୍ତୁ ବିଭିନ୍ନ ଦଳର ମତଲବ ବିଭିନ୍ନ ଥିଲା । ପ୍ରତ୍ୟେକ ଦଳ ପକ୍ଷରେ ସ୍ୱରାଜ୍ୟର ଅର୍ଥ ବିଭିନ୍ନ ଥିଲା—ବେକାର ମଧ୍ୟବିତ୍ତ ଶ୍ରେଣୀ କର୍ମରେ ନିଯୁକ୍ତି ଲାଗି ଆଶା ପୋଷଣ କଲେ, ଜମିଦାର ଲଦିଥିବା ଅନେକ ଶୃଙ୍ଖଳରୁ ମୁକ୍ତ ହେବ ବୋଲି କୃଷକ ଆଶା କଲା ଏବଂ ଏହିପରି ଆହୁରି । ମୁସଲମାନ ସମ୍ପ୍ରଦାୟ ଧର୍ମ ଦୃଷ୍ଟିରୁ ପ୍ରଧାନତଃ ଖିଲାଫତ ପ୍ରଶ୍ନ ଯୋଗୁ ଆନ୍ଦୋଳନରେ ଯୋଗ ଦେଉଥିଲେ । ଏହା ମୁସଲମାନମାନଙ୍କ ନିର୍ମଳ ଧର୍ମଗତ ପ୍ରଶ୍ନ ଏବଂ ଅଣ-ମୁସଲମାନମାନଙ୍କର ଏଥିରେ କିଛି ସମ୍ପର୍କ ନ ଥିଲା । ଯାହାହେଉ ଗାନ୍ଧୀ ଏହା ଗ୍ରହଣ କଲେ ଓ ଅନ୍ୟମାନଙ୍କୁ ବି ଏଥିଲାଗି ଉତ୍ସାହିତ କଲେ; କାରଣ ବିପଦରେ ପଡ଼ିଥିବା ଭାଇକୁ ସାହାଯ୍ୟ କରିବା ତାଙ୍କର କର୍ତ୍ତବ୍ୟ ବୋଲି ସେ ବୋଧକଲେ । ସେ ଆହୁରି ମଧ୍ୟ ଆଶା କରୁଥିଲେ—ଏହିପରି ଭାବରେ ହିନ୍ଦୁ ଓ ମୁସଲମାନ ପରସ୍ପର ନିକଟତର ସମ୍ପର୍କରେ ଆସିପାରିବେ । ତେଣୁ ମୁସଲମାନମାନଙ୍କର ସାଧାରଣ ଦୃଷ୍ଟିକୋଣ ହେଲା ମୁସଲମାନ ଜାତୀୟତା ବା ମୁସଲମାନ ଆନ୍ତର୍ଜାତୀୟତା, ସଚ୍ଚା ଜାତୀୟତା । କ୍ଷଣକାଳ ନିମନ୍ତେ ଦୁଇଟି ଭିତରେ ପାର୍ଥକ୍ୟ ଜଣା ପଡ଼ି ନ ଥିଲା ।

ଅନ୍ୟପକ୍ଷରେ ହିନ୍ଦୁମାନଙ୍କ ଦୃଷ୍ଟିରେ ଜାତୀୟଭାବ ନିର୍ଦ୍ଦିଷ୍ଟ ଭାବରେ ହିନ୍ଦୁ ଜାତୀୟତା ହିଁ ଥିଲା । ଏଥିରେ (ମୁସଲମାନ ପକ୍ଷରେ ଯେପରି ସମ୍ଭବ ଥିଲା) ଯେପରି ହିନ୍ଦୁ ଜାତୀୟତା ଓ ପ୍ରକୃତ ଜାତୀୟତା ଭିତରେ ଠିକ୍ ପାର୍ଥକ୍ୟରେଖା ଟାଣିବା ସହଜ ନ ଥିଲା । ଏ ଉଭୟ ମିଳିମିଶିଗଲା; କାରଣ ହିନ୍ଦୁଙ୍କର ଏକମାତ୍ର ଦେଶ ହେଉଛି ଭାରତ ଏବଂ ସେମାନଙ୍କ ସଂଖ୍ୟା ଏଠି ଅଧିକ । ଯଦିଓ ହିନ୍ଦୁ ଓ ମୁସଲମାନ ଉଭୟେ ନିଜର ବିଶେଷ ଢଙ୍ଗର ଜାତୀୟତା ପାଇଁ କାର୍ଯ୍ୟ କରୁଥିଲେ ମୁସଲମାନମାନଙ୍କ ଅପେକ୍ଷା ହିନ୍ଦୁଙ୍କ ପକ୍ଷରେ ପୂର୍ଣ୍ଣ ଜାତୀୟବାଦୀ ବୋଲି ପରିଚିତ ହେବା ସହଜ ଥିଲା ।

ତୃତୀୟରେ ଯାହାକୁ କହନ୍ତି ପ୍ରକୃତ ବା ଭାରତ ଜାତୀୟତା ତାହା ଥିଲା—ଏହା ଏହି ଦୁଇଟି ଧାର୍ମିକ ଓ ସାଂପ୍ରଦାୟିକ ପ୍ରକାରଠାରୁ ସମ୍ପୂର୍ଣ୍ଣ ପୃଥକ ଏବଂ ପ୍ରକୃତରେ କହିଲେ ଜାତୀୟତା ବୋଇଲେ ଆଜିକାଲି ଯାହା ବୁଝାଯାଏ ଏହା ତାର ଏକମାତ୍ର ପ୍ରକାର ଥିଲା । ଏହି ତୃତୀୟ ଦଳରେ ଅବଶ୍ୟ ହିନ୍ଦୁ, ମୁସଲମାନ ଏବଂ ଅନ୍ୟସବୁ ସମ୍ପ୍ରଦାୟ ରହିଥିଲା । ୧୯୨୦ ଠାରୁ ୧୯୨୨ ପର୍ଯ୍ୟନ୍ତ ଅସହଯୋଗ ଆନ୍ଦୋଳନବେଳେ ଏହି ତିନପ୍ରକାର ଜାତୀୟବାଦ ଏକାଠି କାର୍ଯ୍ୟ କଲା । ତିନୋଟିଯାକର ରାସ୍ତା ଅଲଗା; କିନ୍ତୁ ସେହି ମୁହୂର୍ତ୍ତ ପାଇଁ ସେମାନେ ସମାନ ହୋଇ ଗତି କଲେ ।

୧୯୨୧ର ଏହି ଗଣ ଆନ୍ଦୋଳନରେ ବ୍ରିଟିଶ ସରକାର ବଡ଼ ଅବାକ୍ ହୋଇଗଲା । ଏହା ହେବ ବୋଲି କିଛି ଆଗରୁ ଜାଣିପାରି ସୁଦ୍ଧା କିପରି କଣ କରିବାକୁ ହେବ ସରକାର ଜାଣି ନ ଥିଲା । ଚିରାଚରିତ ଗିରଫ ଓ ଶାସ୍ତି ଦେବା ପନ୍ଥା କିଛି ଫଳପ୍ରଦ ହେଲା ନାହିଁ,

କାରଣ କଂଗ୍ରେସ ତ ଏହା ହିଁ ଖୁଣ୍ଟୁଥିଲା । ତେଣୁ ସରକାରର ଗୁପ୍ତ ବିଭାଗ ଭିତରୁ କଂଗ୍ରେସକୁ ଦୁର୍ବଳ କରିବା ନିମନ୍ତେ ଏକ କୌଶଳ ବାହାରିଲା । ପୁଲିସ ଏଜେଣ୍ଟ ଓ ଗୁପ୍ତ ବିଭାଗର ଲୋକେ କଂଗ୍ରେସ କମିଟିରେ ପ୍ରବେଶ କଲେ ଏବଂ ହିଂସାକୁ ଉତ୍ସାହିତ କରି ଗୋଳମାଳ ସୃଷ୍ଟି କଲେ । ଆଉ ଗୋଟିଏ କୌଶଳ ବାହାର କରି ସାଂପ୍ରଦାୟିକ ଗୋଳମାଳ ସୃଷ୍ଟି କରିବା ନିମନ୍ତେ ଗୁପ୍ତଚରମାନଙ୍କୁ ସାଧୁ ଓ ଫକୀରରୂପେ ପଠାଗଲା ।

ଅବଶ୍ୟ ସବଦା ଲୋକଙ୍କ ଇଚ୍ଛା ବିରୁଦ୍ଧରେ ଶାସନ କରୁଥିବା ସରକାରମାନେ ଏହିପରି କୌଶଳ ପ୍ରୟୋଗ କରନ୍ତି । ଏହା ହେଉଛି ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କର ଗର୍ଚ୍ଛିତ ସମ୍ପଦ । ଏହି କୌଶଳ ଯେ ସଫଳ ହୁଏ ଏଥିରୁ ଲୋକଙ୍କର ଦୁର୍ବଳତା ଓ ଅନୁନ୍ନତପଣିଆର ସୂଚନା ମିଳେ—ସମ୍ପୃକ୍ତ ସରକାରର ଦୋଷ ନୁହେଁ । ଅନ୍ୟ ଲୋକଙ୍କୁ ବିଭକ୍ତ କରିଦେବାରେ ସମର୍ଥ ହେବା, ସେମାନଙ୍କ ପରସ୍ପର ଭିତରେ ସଂଘର୍ଷ ଜାତ କରାଇବା ଏବଂ ଏହିପରି ଭାବରେ ସେମାନଙ୍କୁ ଦୁର୍ବଳ କରି ଶୋଷଣ କରିପାରିବା ହିଁ ଉନ୍ନତ ସଙ୍ଗଠନର ପରିଚୟ । ଅନ୍ୟପକ୍ଷରେ କଜିଆ ଓ ବିବାଦ ଥିଲେ ଏହି ନୀତି ସଫଳ ହୋଇପାରେ । ବ୍ରିଟିଶ ଗଭର୍ଣ୍ଣମେଣ୍ଟ ଭାରତରେ ହିନ୍ଦୁ-ମୁସଲମାନ ସମସ୍ୟା ସୃଷ୍ଟି କଲା ବୋଲି କହିବା ପ୍ରତ୍ୟକ୍ଷରୂପେ ଭୁଲ ହେବ; କିନ୍ତୁ ସେମାନେ ଏହା ବଞ୍ଚାଇ ରଖିବା ପାଇଁ ଦୁଇ ସଂପ୍ରଦାୟ ଏକଜ ହେବାରେ ନିରୁତ୍ସାହିତ କରିବାପାଇଁ ଯେପରି ଚେଷ୍ଟା କରି ଆସିଛନ୍ତି, ତାହା ଭୁଲିଯିବା ମଧ୍ୟ ସମାନ ପରିମାଣରେ ଭୁଲ ହେବ ।

୧୯୨୨ରେ ଅସହଯୋଗ ଆନ୍ଦୋଳନ ସ୍ଥଗିତ ହେବାପରେ ଏପରି ଚକ୍ରାନ୍ତ ଲାଗି ଅନୁକୂଳ କ୍ଷେତ୍ର ଥିଲା । ଏକ ପ୍ରକାଣ୍ଡ ଅଭିଯାନ ଆପାତତଃ କୌଣସି ଫଳ ଲାଭ ନ କରି ହଠାତ୍ ବନ୍ଦ ହେବାଦ୍ୱାରା ଗୋଟିଏ ପ୍ରତିକ୍ରିୟା ଉପୁଜିଥିଲା । ଯେଉଁ ଧାରାଗୁଡ଼ିକ ବିଭିନ୍ନ ପନ୍ଥା ସମାନ୍ତରାଳ ହୋଇ ଚାଲି ଆସିଥିଲା, ତାହା ଏବେ ପରସ୍ପରଠାରୁ ଅଲଗା ହୋଇ ଅଲଗା ଢଙ୍ଗରେ ଗତି କରିବାକୁ ଲାଗିଲା । ଖିଲାଫତ ପ୍ରଶ୍ନ ଆଉ ନ ଥିଲା । ହିନ୍ଦୁ ଓ ମୁସଲମାନ ଉଭୟ ସଂପ୍ରଦାୟର ଯେଉଁ ସାଂପ୍ରଦାୟିକ ନେତାମାନେ ଅସହଯୋଗ କାଳର ଜନ-ଉନ୍ମାଦନାରେ ଦବି ଯାଇଥିଲେ ସେମାନେ ପୁଣି ଉଠିଲେ ଏବଂ ସାଧାରଣ ଜୀବନରେ ଭାଗ ନେବାକୁ ଲାଗିଲେ । ଅକର୍ମୀ ମଧ୍ୟବିତ୍ତ ଶ୍ରେଣୀର ମୁସଲମାନମାନେ ଅନୁଭବ କଲେ ଯେ ହିନ୍ଦୁମାନେ ହିଁ ସବୁ ଚାକିରିବାକିରିରେ ଏକାଧିପତ୍ୟ କରିଛନ୍ତି ଏବଂ ତାଙ୍କ ପଥରେ କଣ୍ଟକ ହୋଇଛନ୍ତି । ସେମାନେ ତେଣୁ ଅଲଗା ବ୍ୟବହାର ଓ ପ୍ରତ୍ୟେକ ଜିନିଷରେ ପୃଥକ୍ ଅଂଶ ଦାବୀ କଲେ । ରାଜନୀତିକ ଦୃଷ୍ଟିରେ ହିନ୍ଦୁ-ମୁସଲମାନ ପ୍ରଶ୍ନ ମୂଳତଃ ଏକ ମଧ୍ୟବିତ୍ତ ଶ୍ରେଣୀର ବ୍ୟାପାର ଏବଂ ଚାକିରି ବାକିରି ନିମନ୍ତେ ବିବାଦ । ଯାହାହେଉ ଏହାର ପ୍ରଭାବ ଜନସାଧାରଣଙ୍କ ପାଖରେ ବି ପ୍ରସାର ଲଭିଲା ।

ମୋଟଉପରେ ହିନ୍ଦୁମାନେ ଉନ୍ନତ ସଂପ୍ରଦାୟ ଥିଲେ । ଆଗରୁ ଇଂରେଜ ଶିକ୍ଷା ଗ୍ରହଣ କରିଥିବାରୁ, ଅଧିକାଂଶ ସରକାରୀ ଚାକିରି ସେମାନେ ପାଇଥିଲେ । ସେମାନେ ବି ଧନୀ ଥିଲେ । ବଣିଆ ହେଲା ଗାଁର ଧନପତି ବା କୋଠପତି— ସେ ଶ୍ରେଷ୍ଠ ଭୂସ୍ୱାମୀ ଓ ପ୍ରଜାମାନଙ୍କୁ ଶୋଷଣ କରୁଥିଲା ଏବଂ କ୍ରମେ ସେମାନଙ୍କୁ ଭିକାରୀରେ ପରିଣତ କଲା ଏବଂ ନିଜେ ଜମିଘରୁ ବେଦଖଲ କଲା । ବଣିଆ ସମାନ ଭାବରେ ହିନ୍ଦୁ-ମୁସଲମାନ ପ୍ରଜା ଓ ଭୂସ୍ୱାମୀଙ୍କୁ ଶୋଷଣ କଲା । କିନ୍ତୁ ତାର ଶୋଷଣ ଗୋଟାଏ ସାଂପ୍ରଦାୟିକ ରୂପ ନେଲା; ବିଶେଷତଃ ଯେଉଁ ପ୍ରଦେଶରେ କୃଷକମାନେ ମୁଖ୍ୟତଃ ମୁସଲମାନ ଥିଲେ ସେସବୁ ସ୍ଥାନରେ । କଳତିଆରି ଜିନିଷ ପ୍ରସାରଟା ସମ୍ଭବତଃ ହିନ୍ଦୁଙ୍କ ଅପେକ୍ଷା ମୁସଲମାନଙ୍କୁ ବେଶି ବାଧିଲା; କାରଣ ମୁସଲମାନମାନଙ୍କ ଭିତରେ ଅପେକ୍ଷାକୃତ ଅଧିକ କାରିଗର ଥିଲେ । ଏହିସବୁ ଘଟଣା ହିଁ ଭାରତର ଦୁଇ ବଡ଼ ସଂପ୍ରଦାୟଙ୍କ ଭିତରେ ତିକ୍ତତା ବୃଦ୍ଧି କଲା ଏବଂ ମୁସଲମାନ ଜାତୀୟବାଦକୁ ଶକ୍ତିଶାଳୀ କଲା—ଏହା ଦେଶ ଅପେକ୍ଷା ନିଜର ସଂପ୍ରଦାୟ ପ୍ରତି ଅଧିକ ଦୃଷ୍ଟି ଦେଲା ।

ମୁସଲମାନ ସାଂପ୍ରଦାୟିକ ନେତାମାନଙ୍କର ଏ ପ୍ରକାର ଦାବୀ ଦ୍ୱାରା ଭାରତର ପ୍ରକୃତ ଜାତୀୟ ଏକତା ମୂଳରେ କୁଠାରାଘାତ ହେଲା । ସାଂପ୍ରଦାୟିକ ଭାବରେ ତାକୁ ବିରୋଧ କରିବାପାଇଁ ହିନ୍ଦୁ ସାଂପ୍ରଦାୟିକ ଅନୁଷ୍ଠାନସବୁ ପ୍ରସିଦ୍ଧ ହୋଇଉଠିଲେ । ନିଜକୁ ଖାଣ୍ଟି ଜାତୀୟବାଦୀ ବୋଲି ପରିଚୟ ଦେଇ ସେମାନେ ଅନ୍ୟମାନଙ୍କପରି ସଂପ୍ରଦାୟଗତ ଓ ସଂକୀର୍ଣ୍ଣମନା ଥିଲେ ।

କଂଗ୍ରେସ ସଂସ୍ଥା ହିସାବରେ ସାଂପ୍ରଦାୟିକ ଅନୁଷ୍ଠାନମାନଙ୍କରୁ ଅଲଗା ରହିଲା; କିନ୍ତୁ ଅନେକ ବ୍ୟକ୍ତିଗତ ଭାବରେ କଂଗ୍ରେସ ଲୋକଙ୍କୁ ଏ ବିଷ ଘାରିଲା । ପ୍ରକୃତ ଜାତୀୟବାଦୀ-ମାନେ ସାଂପ୍ରଦାୟିକ ଦ୍ୱେଷ ବନ୍ଦ କରିବା ନିମନ୍ତେ ଯଥେଷ୍ଟ ଚେଷ୍ଟା କଲେ; ମାତ୍ର କିଛି ସଫଳ ହେଲେ ନାହିଁ ଏବଂ ବଡ଼ ବଡ଼ ଦଙ୍ଗାମାନ ହେଲା ।

ଏହି ଗୋଳମାଳ ସାଙ୍ଗକୁ ପୁଣି ଗୋଷ୍ଠୀଗତ ଜାତୀୟତାର ଏକ ତୃତୀୟରୂପ ଦେଖାଗଲା—ତାହା ହେଉଛି ଶିଖ ଜାତୀୟତା । ଅତୀତରେ ଶିଖ ଓ ହିନ୍ଦୁଙ୍କ ଭିତରେ ପାର୍ଥକ୍ୟ ଏକପ୍ରକାର ଅସ୍ପଷ୍ଟ ଥିଲା । ଜାତୀୟ ଜାଗରଣ ତେଜୀୟାନ ଶିଖମାନଙ୍କୁ ଦୋହଲାଇଦେଲା ଏବଂ ସେମାନେ ଅଧିକ ନିର୍ଦ୍ଦିଷ୍ଟ ଓ ପୃଥକ୍ ଅବସ୍ଥିତି ନିମନ୍ତେ କାର୍ଯ୍ୟ କରିବାକୁ ଆରମ୍ଭ କଲେ । ସେମାନଙ୍କ ଭିତରେ ଅଧିକ ସଂଖ୍ୟକ ଥିଲେ ପୂର୍ବତନ-ସୈନିକ—ଏହାହିଁ ଏଡ଼େ ଶ୍ରେଷ୍ଠ ସଂପ୍ରଦାୟକୁ ଖୁବ୍ ସଂଗଠିତ ସଂପ୍ରଦାୟ କରିପାରିଲା -- ଭାରତରେ ଅନ୍ୟ ଅଧିକାଂଶ ଦଳଙ୍କ ପରି ଏମାନେ ନୁହନ୍ତି । ଏମାନେ କଥା ଅପେକ୍ଷା କାର୍ଯ୍ୟ କରିବାକୁ ବେଶି ତତ୍ପର । ଅଧିକାଂଶ ହେଉଛନ୍ତି ପଞ୍ଜାବର ଭୂସ୍ୱତ୍ୱାଧିକାରୀ କୃଷକ ଏବଂ ସେମାନେ ସହରର ବ୍ୟାଙ୍କ ଓ ଅନ୍ୟ ସ୍ୱାର୍ଥ-ସମ୍ପନ୍ନ ବ୍ୟକ୍ତିଙ୍କଦ୍ୱାରା ଅତ୍ୟାଚାରିତ ହେଉଛନ୍ତି ବୋଲି ବୋଧକଲେ । ଗୋଟିଏ ପୃଥକ୍ ଦଳ ରୂପେ ଚିହ୍ନିତ ହେବା ମୂଳରେ ସେମାନଙ୍କର ଏହାହିଁ ପ୍ରକୃତ ମତଲବ ଥିଲା । ଆନ୍ଦୋଳନ

ଆରମ୍ଭ ବେଳେ ସେମାନେ ଧର୍ମସମ୍ବନ୍ଧୀୟ ସମସ୍ୟାରେ କମ୍ପା ମନ୍ଦିରମାନଙ୍କ ଦଖଲରେ ଥିବା ସମ୍ପତ୍ତି ଆଣିବା ସମସ୍ୟାରେ ଆଗ୍ରହ ଦେଖାଇଲେ । ଅକାଲିମାନେ ଶିଖଙ୍କ ଭିତରେ କର୍ମଠ ଓ ଉଗ୍ର ଦଳ ଥିବାରୁ ଏହାକୁ 'ଅକାଲୀ ଆନ୍ଦୋଳନ' କୁହାଯାଏ । ଏହି ସମସ୍ୟାରେ ସେମାନଙ୍କର ସରକାର ସହିତ ସଂଘର୍ଷ ଉପୁଜିଲା ଏବଂ ଅମୃତସରର ଗୁରୁକାବାଗଠାରେ ସେମାନେ ଅଦ୍ଭୁତ ସାହସ ଓ ଧୈର୍ଯ୍ୟର ପରିଚୟ ଦେଇଥିଲେ । ଅକାଲୀ ଜାଠମାନଙ୍କୁ ପୁଲିସ ଅତି ପାଶବିକ ଭାବରେ ପ୍ରହାର କଲେ; କିନ୍ତୁ ସେମାନେ କେବେହେଲେ ପାଦେ ପଛଘୁଞ୍ଚା ଦେଇ ନ ଥିଲେ କିମ୍ବା ପୁଲିସଙ୍କ ବିରୁଦ୍ଧରେ ନିଜର ହାତ ଉଠାଇ ନ ଥିଲେ । ଶେଷରେ ଅକାଲି ମାନେ ଜୟୀ ହେଲେ ଏବଂ ସେମାନଙ୍କର ମନ୍ଦିର ଦଖଲ କଲେ । ସେମାନେ ତାପରେ ରାଜନୀତିକ କ୍ଷେତ୍ର ପ୍ରତି ଦୃଷ୍ଟି ପକାଇଲେ ଏବଂ ନିଜର ସଂପ୍ରଦାୟ ଲାଗି ଚରମ ଦାବୀ କରିବାରେ ଅନ୍ୟ ସାମ୍ପ୍ରଦାୟିକ ଦଳମାନଙ୍କୁ ବଳିପଡ଼ିଲେ ।

ବିଭିନ୍ନ ସଂପ୍ରଦାୟଙ୍କ ଭିତରେ ଏହି ସଙ୍କୀର୍ଣ୍ଣ ସାମ୍ପ୍ରଦାୟିକ ଭାବ କିମ୍ବା ମୁଁ ଯାହାକୁ କହେ ଗୋଷ୍ଠୀଗତ ଜାତୀୟତା ଭାବ, ଅତ୍ୟନ୍ତ ଦୁର୍ଭାଗ୍ୟର କଥା । ତଥାପି ଏହା ଖୁବ୍ ସ୍ୱାଭାବିକ । ଅସହଯୋଗ ସମ୍ପୂର୍ଣ୍ଣରୂପେ ଭାରତକୁ ଆଲୋଡ଼ନ କରିଦେଇଥିଲା ଏବଂ ଏହି ଆଲୋଡ଼ନର ପ୍ରଥମ ପରିଣତି ହେଲା ଗୋଷ୍ଠୀଗତ ଜାଗରଣ ଏବଂ ହିନ୍ଦୁ, ମୁସଲମାନ ଓ ଶିଖ ଜାତୀୟତା । ଆହୁରି ଅନେକ ଛୋଟ ଛୋଟ ଦଳସବୁ ଆତ୍ମ-ଚୈତନ୍ୟ ଲାଭକଲେ ଏବଂ ବିଶେଷ ଭାବରେ ତଥାକଥିତ "ପତିତ ଜାତି" ଉଠିଲେ । ଏମାନେ ଦୀର୍ଘକାଳ ହେଲା ଉଚ୍ଚଶ୍ରେଣୀ ହିନ୍ଦୁଙ୍କଦ୍ୱାରା ଦଳିତ ହୋଇଛନ୍ତି—ଏମାନେ ମୁଖ୍ୟତଃ କ୍ଷେତରେ କାମ କରିବା ଭୂମିହୀନ ଶ୍ରମିକ । ତେଣୁ ଆତ୍ମ-ଚେତନା ଲାଭକରିବା ସଙ୍ଗେ ସଙ୍ଗେ ସେମାନଙ୍କର ଅସୁବିଧାସବୁ ଦୂର କରିବାର ଭାବ ଏବଂ ଯେଉଁ ହିନ୍ଦୁମାନେ ଶତ ଶତ ବର୍ଷ ହେଲା ସେମାନଙ୍କ ଉପରେ ଅତ୍ୟାଚାର କରି ଆସିଛନ୍ତି, ସେମାନଙ୍କ ବିରୁଦ୍ଧରେ କ୍ରୋଧଭାବ ଜାଗ୍ରତ ହେବା ସ୍ୱାଭାବିକ ।

ପ୍ରତ୍ୟେକ ଜାଗ୍ରତ ଗୋଷ୍ଠୀ ନିଜର ସ୍ୱାର୍ଥ ଦୃଷ୍ଟିରୁ ଜାତୀୟତା ଓ ଦେଶପ୍ରୀତିକୁ ଦେଖିଲେ । ଗୋଟିଏ ଜାତି ଯେପରି ସ୍ୱାର୍ଥପର ହୁଏ, ସେହିପରି ଏକ ଗୋଷ୍ଠୀ ବା ସଂପ୍ରଦାୟ ସର୍ବଦା ସ୍ୱାର୍ଥପର ହୁଏ—ଅବଶ୍ୟ ଗୋଟିଏ ଜାତି ବା ସଂପ୍ରଦାୟ ଭିତରେ ବ୍ୟକ୍ତିବିଶେଷ ନିଃସ୍ୱାର୍ଥପର ଭାବ ନେଇପାରନ୍ତି । ତେଣୁ ପ୍ରତ୍ୟେକ ଗୋଷ୍ଠୀ ନିଜର ଭାଗ ଅପେକ୍ଷା ଅତ୍ୟଧିକ ଦାବୀ କରୁଥିଲେ ଏବଂ ଅନିବାର୍ଯ୍ୟ ଭାବରେ ସଂଘର୍ଷ ହେଲା । ସମ୍ପ୍ରଦାୟ-ସମ୍ପ୍ରଦାୟ ଭିତରେ ତିକ୍ତତା ବୃଦ୍ଧି ହେବାରୁ ପ୍ରତ୍ୟେକ ସମ୍ପ୍ରଦାୟର ଉଗ୍ର ନେତାମାନେ ଆଗୁଆ ହୋଇ ବାହାରିଲେ; କାରଣ କ୍ରୋଧାନ୍ୱିତ ହେବା କାଳରେ ପ୍ରତ୍ୟେକ ଗୋଷ୍ଠୀ ଭିତରେ ଯେଉଁ ବ୍ୟକ୍ତି ଅତି ଉଚ୍ଚକୁ ନିଜର ଦାବୀ ଉଠାଇପାରେ ଏବଂ ଅନ୍ୟମାନଙ୍କୁ ଅଧିକ ଗାଳି ଦିଏ ତାହାକୁ ହିଁ ପ୍ରତିନିଧି ରୂପେ ନିର୍ବାଚିତ କରାଯାଏ । ସରକାର ଦ୍ୱାରା ଏହି ସଙ୍ଘର୍ଷ ନାନାପ୍ରକାରେ ଗୁରୁତର କରାଗଲା; ବିଶେଷତଃ ସରକାର ଅଧିକ ଉଗ୍ର ସାମ୍ପ୍ରଦାୟିକ ନେତାଙ୍କୁ ଉତ୍ସାହିତ କରିବାରେ ଲାଗିଲା ।

ଏହିରୂପେ ବିଷ ବ୍ୟାପିବାରେ ଲାଗିଲା ଓ ଆମେ ଏକ ଦୂଷିତ ଗୋଷ୍ଠୀ ଭିତରେ ରହିଛେ— ଏଥିରୁ ଉଧୁରିବାରେ ଆଉ କୌଣସି ସ୍ପଷ୍ଟ ବାଟ ଦେଖାଯାଉନାହିଁ ।

ଏହିସବୁ ଶତ୍ରୁ ଓ ବିନାଶ ପ୍ରବୃତ୍ତି ଭାରତରେ ଆକାର ଧରୁଥିବା ବେଳେ ଗାନ୍ଧୀ ୟେରବାଦା ଜେଲରେ ଭୀଷଣ ପୀଡ଼ିତ ହେଲେ ଏବଂ ଆପେଣ୍ଡିସାଇଟିସ ଲାଗି ଏକ ଅସ୍ତ୍ରୋପଚାର କରିବା ଦରକାର ହେଲା । ୧୯୨୪ ପ୍ରଥମ ଭାଗରେ ତାଙ୍କୁ ଜେଲରୁ ଖଲାସ କରିଦିଆଗଲା । ସେ ସାମ୍ପ୍ରଦାୟିକ ଗୋଳମାଳରେ ବଡ଼ ଦୁଃଖିତ ହେଲେ ଏବଂ କେତେକ ମାସ ମଧ୍ୟରେ ଗୋଟାଏ ବଡ଼ ଦଙ୍ଗା ତାଙ୍କ ପ୍ରାଣରେ ଏପରି ଆଘାତ ଦେଲା ଯେ ସେ ୨୧ ଦିନ ପର୍ଯ୍ୟନ୍ତ ଉପବାସ କଲେ । ଶାନ୍ତି ଆଣିବା ନିମନ୍ତେ ଅନେକ "ଏକତା" ସମ୍ମିଳନୀ ହେଲା; କିନ୍ତୁ ବିଶେଷ କିଛି ଫଳ ହେଲା ନାହିଁ ।

ଏହିସବୁ ସାମ୍ପ୍ରଦାୟିକ ଝଗଡ଼ା ଓ ଗୋଷ୍ଠୀଗତ ଜାତୀୟତା ଫଳରେ କଂଗ୍ରେସ ଓ କାଉନ୍‌ସିଲରେ ସ୍ୱରାଜ୍ୟ ଦଳ ଦୁର୍ବଳ ହୋଇପଡ଼ିଲା । ସ୍ୱରାଜ ଆଦର୍ଶ ପଛରେ ପଡ଼ିଗଲା; କାରଣ ଅଧିକାଂଶ ଲୋକ ଏବେ ନିଜର ଗୋଷ୍ଠୀଗତ ଭାଷାରେ କଥାବାର୍ତ୍ତା କଲେ ଓ ଚିନ୍ତା କରିବାକୁ ଲାଗିଲେ । କଂଗ୍ରେସ କୌଣସି ଗୋଷ୍ଠୀ ସହିତ ସମ୍ପୃକ୍ତ ନ ହେବାକୁ ଚେଷ୍ଟା କଲା ଏବଂ ପ୍ରତ୍ୟେକ ପକ୍ଷରୁ ସମ୍ପ୍ରଦାୟବାଦୀମାନେ ତା ଉପରେ ଆକ୍ରମଣ କଲେ । ଏତେବେଳେ କଂଗ୍ରେସର ମୁଖ୍ୟ କାର୍ଯ୍ୟ ହେଲା ନୀରବ ସଙ୍ଗଠନ ଓ କୁଟୀର ଶିଳ୍ପ (ଖଦଡ଼) ଇତ୍ୟାଦି, ଏବଂ କୃଷକ ଜନତାଙ୍କ ସହ ସମ୍ପର୍କ ରଖିବାରେ ଏହା ସାହାଯ୍ୟ କଲା ।

ଆମର ସାମ୍ପ୍ରଦାୟିକ ଗୋଳମାଳ ସମ୍ବନ୍ଧରେ ମୁଁ ଟିକିଏ ବେଶି ଭାବରେ ଲେଖିଲି; କାରଣ ୧୯୨୦ରେ ଆମର ରାଜନୀତିକ ଜୀବନରେ ଏହା ପ୍ରଧାନ ଭାଗ ନେଇଥିଲା । ତଥାପି ଆମର ତାକୁ ଅତିରଞ୍ଜିତ କରିବା ଉଚିତ ନୁହେଁ । ଏଗୁଡ଼ିକୁ ଯେତେ ଗୁରୁତ୍ୱ ଦେବାର କଥା ନୁହେଁ, ଅନେକ ସମୟରେ ଏହାକୁ ତାହାଠାରୁ ଅଧିକ ଗୁରୁତ୍ୱ ଦେବାର ଏକ ପ୍ରବୃତ୍ତି ଦେଖାଯାଏ ଏବଂ ହିନ୍ଦୁ ବାଳକ ଓ ମୁସଲମାନ ବାଳକ ଭିତରେ ପ୍ରତ୍ୟେକ ଝଗଡ଼ାକୁ ସାମ୍ପ୍ରଦାୟିକ ବିବାଦ ରୂପେ ଗଣ୍ୟ କରାଗଲା ଏବଂ ଅତି ନଗଣ୍ୟ ଦଙ୍ଗାକୁ ମଧ୍ୟ ବହୁଳ ପ୍ରଚାର କରାଗଲା । ଆମର ମନେ ରଖିବା ଦରକାର ଯେ ଭାରତ ଏକ ବିଶାଳ ଦେଶ ଏବଂ ଲକ୍ଷ ଲକ୍ଷ ଗ୍ରାମ ଓ ସହରରେ ହିନ୍ଦୁ ଓ ମୁସଲମାନ ପରସ୍ପର ଭିତରେ ଶାନ୍ତିରେ ବାସ କରୁଛନ୍ତି ଏବଂ ସେମାନଙ୍କ ଭିତରେ କିଛି ସାମ୍ପ୍ରଦାୟିକ ଗୋଳମାଳ ନାହିଁ । ବେଳେ ବେଳେ ଏହା ଗ୍ରାମମାନଙ୍କରେ ବ୍ୟାପିଗଲେ ସୁଦ୍ଧା ସାଧାରଣତଃ ଏହି ପ୍ରକାର ଗୋଳମାଳ ସବୁ ନିର୍ଦ୍ଦିଷ୍ଟ ସଂଖ୍ୟକ ସହରରେ ସୀମାବଦ୍ଧ । ଏହା ସ୍ମରଣ ରଖିବା ଦରକାର ଯେ ସାମ୍ପ୍ରଦାୟିକ ପ୍ରଶ୍ନ ମୁଖ୍ୟତଃ ଭାରତରେ ଏକ ମଧ୍ୟବିତ୍ତ ଶ୍ରେଣୀର ପ୍ରଶ୍ନ ଏବଂ ଯେହେତୁ କଂଗ୍ରେସରେ, କାଉନ୍‌ସିଲରେ, ସମ୍ବାଦପତ୍ରରେ ଓ ଅନ୍ୟ ସବୁପ୍ରକାର କାର୍ଯ୍ୟକଳାପରେ ମଧ୍ୟବିତ୍ତ ଶ୍ରେଣୀ ପ୍ରାଧାନ୍ୟ କରୁଥିବାରୁ ଏହା ଅନୁଚିତ ଗୁରୁତ୍ୱ ଲାଭ କରିଛି । କୃଷକମାନେ ପ୍ରାୟ ଜଡ଼ିତ ନୁହନ୍ତି; ଅଳ୍ପ କେତେଦିନ

ହେଲା ଗ୍ରାମ କଂଗ୍ରେସ କମିଟି, କୃଷକ ସଙ୍ଘ ଓ ସେହିପରି ଅନୁଷ୍ଠାନରେ ରାଜନୀତି କ୍ଷେତ୍ରରେ କାର୍ଯ୍ୟ କରିବାକୁ ଆରମ୍ଭ କରିଥିଲେ । ସହରର ଶ୍ରମିକ ବିଶେଷଭାବରେ ବଡ଼ ବଡ଼ କାରଖାନାର ଶ୍ରମିକମାନେ ଟିକିଏ ଅଧିକ ଜାଗ୍ରତ ଏବଂ ଶ୍ରମିକ ସଙ୍ଘରେ ସଙ୍ଗଠିତ ହୋଇଥିଲେ । କିନ୍ତୁ ଏହି କାରଖାନା ଶ୍ରମିକ ଓ ତାହାଠାରୁ ଅଧିକ ଭାବରେ କୃଷକମାନେ ମଧ୍ୟବିତ୍ତ ଶ୍ରେଣୀର ବ୍ୟକ୍ତି-ବିଶେଷଙ୍କ ନେତୃତ୍ୱକୁ ଅନାଇ ରହିଥିଲେ । ଏହି କାଳରେ କୃଷକ ଓ ଶିଳ୍ପ-ଶ୍ରମିକ ଆଦି ଜନସାଧାରଣଙ୍କର ଅବସ୍ଥା ଏବେ ଆଲୋଚନା କରିବା ।

ମହାଯୁଦ୍ଧ ହେତୁ ଭାରତୀୟ ଶିଳ୍ପର ଯେ ଦ୍ରୁତଗତିରେ ବୃଦ୍ଧି ହେଲା ତାହା ଶାନ୍ତି ପରେ କେତେକ ବର୍ଷ ପର୍ଯ୍ୟନ୍ତ ଚାଲିଲା । ଭାରତକୁ ବ୍ରିଟିଶ ପୁଞ୍ଜି ବୋହିଆସିଲା ଏବଂ ନୂତନ କାରଖାନା ଓ ଶିଳ୍ପ ଉଦ୍ୟୋଗ ଚାଲୁ କରିବା ନିମନ୍ତେ ବହୁସଂଖ୍ୟକ ନୂତନ କମ୍ପାନୀ ରେଜିଷ୍ଟ୍ରି-ଭୁକ୍ତ ହେଲେ । ବଡ଼ ବଡ଼ ଶିଳ୍ପ ଉଦ୍ୟୋଗ ଓ କାରଖାନାସବୁ ବିଶେଷଭାବରେ ବିଦେଶୀ ପୁଞ୍ଜିରେ ଚାଲିଲା ଏବଂ ଏହିରୂପେ ବଡ଼ ଧରଣର ଶିଳ୍ପ ବ୍ୟାବସାୟିକ ଭାବରେ ବ୍ରିଟିଶ ପୁଞ୍ଜି ଦ୍ୱାରା ନିୟନ୍ତ୍ରଣ ହେଲା । କେତେବର୍ଷ ପୂର୍ବେ ହିସାବ ହେଲା ଯେ ଭାରତରେ ଚାଲୁଥିବା କମ୍ପାନୀଙ୍କ ଭିତରୁ ଶତକଡ଼ା ୮୭ ବ୍ରିଟିଶ ପୁଞ୍ଜିରେ ଚାଳିତ ଏବଂ ସମ୍ଭବତଃ ଏହା ବି କମ ହିସାବ ହୋଇଛି । ତେଣୁ ଭାରତ ଉପରେ ବ୍ରିଟେନର ପ୍ରକୃତ ଆର୍ଥନୀତିକ କର୍ତ୍ତୃତ୍ୱ ବଢ଼ିଲା । ଗ୍ରେଟ ସହର ବିନ୍ୟାସରେ—ଗ୍ରାମମାନଙ୍କରେ ନୁହେଁ—ବଡ଼ ବଡ଼ ସହର ଗଢ଼ି ଉଠିଲା । ଲୁଗା ଶିଳ୍ପ ବିଶେଷ ଭାବରେ ବଢ଼ିଲା ଏବଂ ଖଣିଜ ଶିଳ୍ପ ମଧ୍ୟ ।

କ୍ରମବର୍ଦ୍ଧିଷ୍ଣୁ ଶିଳ୍ପୋଦ୍ୟୋଗ ଫଳରେ ଉପୁଜିଥିବା ନୂତନ ସମସ୍ୟା ବିଚାରକରିବା ନିମନ୍ତେ ସରକାର ଅନେକ କମିଟି ଓ କମିଶନ ନିଯୁକ୍ତ କଲେ । ଏମାନେ ସୁପାରିଶ କଲେ ଯେ ବିଦେଶୀ ପୁଞ୍ଜିକୁ ଉତ୍ସାହିତ କରିବା ଦରକାର ଏବଂ ସାଧାରଣ ଭାବରେ ଭାରତରେ ବ୍ରିଟିଶ ଶିଳ୍ପୋଦ୍ୟୋଗୀଙ୍କ ସ୍ୱାର୍ଥ ସପକ୍ଷରେ ମତ ଦେଲେ । ଭାରତୀୟ ଶିଳ୍ପ ରକ୍ଷା କରିବା ନିମନ୍ତେ ଏକ ଶୁଳ୍କ ବୋର୍ଡ଼ ନିଯୁକ୍ତ କରାଗଲା । ମୁଁ ଉତ୍ତେ କହିଛି, ଏହି ରକ୍ଷଣର ଅର୍ଥ ହେଉଛି ଭାରତରେ ଅନେକ ସ୍ଥଳରେ ବ୍ରିଟିଶ ପୁଞ୍ଜି ରକ୍ଷା କରିବା । ଏହି ସୁରକ୍ଷିତ ମାଲର ମୂଲ୍ୟ ବଜାରରେ ସ୍ୱାଭାବିକ ଭାବରେ ବଢ଼ିଲା ଏବଂ ସେହି ଭାବରେ ବଞ୍ଚିବାର ମୂଲ୍ୟ ମଧ୍ୟ ଏହା ବଢ଼ାଇ ଦେଲା । ତେଣୁ ରକ୍ଷା କରିବାର ବୋଝ ଜନସାଧାରଣ ବା ଏହି ମାଲ କ୍ରେତାମାନଙ୍କ ଉପରେ ପଡ଼ିଲା ଏବଂ କଳକାରଖାନା ମାଲିକମାନେ ବେଶ୍ ଏକ ସୁରକ୍ଷିତ ବଜାର ପାଇଲେ— ଏଠାରେ ପ୍ରତିଯୋଗିତା ଦୂର ହୋଇଥିଲା ବା କମି ଯାଇଥିଲା ।

କାରଖାନା ବୃଦ୍ଧି ସହିତ ସ୍ୱାଭାବିକ ଭାବରେ ଶିଳ୍ପୋଦ୍ୟୋଗରେ ମଜୁରି ପାଇ ବଞ୍ଚିବା ଶ୍ରେଣୀ ସଂଖ୍ୟା ବଢ଼ିଲା । ୧୯୨୨ ରେ ହୋଇଥିବା ସରକାରୀ ହିସାବରୁ ଜଣାପଡ଼େ ଭାରତରେ ଏହି ଶ୍ରେଣୀ ପ୍ରାୟ ୨୦,୦୦୦,୦୦୦ ଥିଲେ । ଗ୍ରାମାଞ୍ଚଳରେ ଭୂମିହୀନ ମଜୁରିଆମାନେ ଶିଳ୍ପୋନ୍ନତ ସହରକୁ ଆସି ଏହି ଶ୍ରେଣୀରେ ଯୋଗଦେଲେ ଏବଂ

ସାଧାରଣତଃ ସେମାନଙ୍କୁ ଶୋଷଣର ଲଜ୍ଜାଜନକ ଅବସ୍ଥାରେ ରହିବାକୁ ପଡ଼ିଥିଲା । କାରଖାନା ପ୍ରଥା ପ୍ରଚଳନର ଆରମ୍ଭ ବେଳେ ଶହେ ବର୍ଷ ଆଗରୁ ଇଂଲଣ୍ଡରେ ଯେପରି ଅବସ୍ଥା ଥିଲା, ଭାରତରେ ଏବେ ତାହା ଦେଖାଦେଲା—ଅତ୍ୟନ୍ତ ଘର୍ଘ ଘଣ୍ଟା ଧରି କାର୍ଯ୍ୟ, ଶୋଚନୀୟ ମଜୁରିହାର, ଅଧୋଗତିସଂପନ୍ନ ଏବଂ ଅସ୍ୱାସ୍ଥ୍ୟକର ଚଳିବାର ଅବସ୍ଥା । କାରଖାନା ମାଲିକଶ୍ରେଣୀଙ୍କ ମନରେ କେବଳ ଗୋଟିଏ ଉଦ୍ଦେଶ୍ୟ ଥିଲା; ଲାଭ କୌଣସି ରକମ ଜମା କରି ଏହି ସମୃଦ୍ଧିଶାଳୀ କାଳର ଖୁବ୍ ଫାଇଦା ଉଠାଇବା; ଏବଂ ସେମାନେ କେତେବର୍ଷ ପର୍ଯ୍ୟନ୍ତ ଅତି ଉଚ୍ଚ ଲାଭାଂଶ ନେଇ ଖୁବ୍ ସଫଳତାର ସହିତ ଏହା କଲେ; ଶ୍ରମିକମାନଙ୍କ ଅବସ୍ଥା ସେହିପରି ଦୁର୍ଦ୍ଦଶାଗ୍ରସ୍ତ ରହିଥିଲା । ଶ୍ରମିକମାନେ ଏହି ଯେଉଁ ପ୍ରଚୁର ଲାଭ ପାଇଁ ଉତ୍ପାଦନ କଲେ, ସେମାନେ ଏଥିରୁ କିଛି ଭାଗ ପାଇଲେ ନାହିଁ; କିନ୍ତୁ ପରେ ଯେତେବେଳେ ସମୃଦ୍ଧିଶାଳୀ କାଳପରେ ମାନ୍ଦା ବେଳ ପଡ଼ିଲା ଏବଂ ବେପାର ହ୍ରାସ ଘଟିଲା, ସେତେବେଳେ ଶ୍ରମିକମାନଙ୍କୁ ନିମ୍ନ ମଜୁରିହାର ଗ୍ରହଣକରି ସାଧାରଣ ଅକାଳରେ ଭାଗ ନେବାକୁ ପଡ଼ିଲା ।

ଶ୍ରମିକମାନଙ୍କ ଅନୁଷ୍ଠାନ ଶ୍ରମିକ ସଂଘସବୁ ବୃଦ୍ଧିପାଇବା ସଙ୍ଗେ ସଙ୍ଗେ ଉନ୍ନତ ଶ୍ରମ ଅବସ୍ଥା, ଶ୍ରମ କରିବା ନିମନ୍ତେ ଦୈନିକ କମ୍ ଘଣ୍ଟା ପରିଶ୍ରମ ଏବଂ ଅଧିକ ମଜୁରି ପାଇଁ ଆନ୍ଦୋଳନ ମଧ୍ୟ ହେଲା । ଆଂଶିକ ଭାବରେ ଏଥିରେ ପ୍ରଭାବିତ ହୋଇ ଏବଂ ଶ୍ରମିକମାନଙ୍କୁ ଭଲ ବ୍ୟବହାର କରିବା ନିମନ୍ତେ ଦୁନିଆରେ ଯେଉଁ ସାଧାରଣ ଦାବୀ ହେଲା, ସେଥିସକାଶେ କାରଖାନା ଶ୍ରମିକମାନଙ୍କ ଅବସ୍ଥାର ଉନ୍ନତି କରି ସରକାର ଅନେକଗୁଡ଼ିଏ ଆଇନ ପାଶ୍ କଲା—ମୁଁ ପୂର୍ବର ଏକ ଚିଠିରେ ଯେଉଁ କାରଖାନା ଆଇନ ପାଶ୍ ହେବା କଥା କହିଛି । ଏହି ଆଇନରେ ଧାର୍ଯ୍ୟ ହେଲା ଯେ ୧୨ ବର୍ଷରୁ ୧୫ ବର୍ଷ ପର୍ଯ୍ୟନ୍ତ ପିଲାମାନେ ଦୈନିକ ଛଅଘଣ୍ଟାରୁ ଅଧିକ ବେଳ ପର୍ଯ୍ୟନ୍ତ ଶ୍ରମ କରିବା ଉଚିତ ନୁହେଁ । ନାରୀ ଓ ପିଲାମାନଙ୍କୁ ରାତି କାମରେ ନିଯୁକ୍ତ କରାଯିବ ନାହିଁ । ବୟସ୍କ ନରନାରୀଙ୍କ ପାଇଁ ଖୁବ୍ ବେଶୀ ହେଲେ ଦୈନିକ ଏଗାର ଘଣ୍ଟା ଓ ସପ୍ତାହକେ (କାର୍ଯ୍ୟ କରିବା ସପ୍ତାହଟା ହେଉଛି ଛଅଦିନ) ୬୦ ଘଣ୍ଟା ଶ୍ରମ କରିବାର ନିର୍ଦ୍ଦିଷ୍ଟ କରାଗଲା । ପରବର୍ତ୍ତୀ କେତେକ ସଂଶୋଧନ ପ୍ରସ୍ତାବ ସହ ଏହି କାରଖାନା ଆଇନ ଏବେ ବି ଚାଲିଛି ।

ଯେଉଁ ଅଭାଗା ଶ୍ରମିକସବୁ ଖଣି ମୁଖ୍ୟତଃ କୋଇଲା ଖଣିରେ ଭୂଇଁତଳେ କାମ କରନ୍ତି ସେମାନଙ୍କୁ କିଛି ସୁବିଧା ଦେବା ନିମନ୍ତେ ୧୯୨୩ରେ ଭାରତୀୟ ଖଣି ଆଇନ ପାଶ୍ ହେଲା । ୧୩ ବର୍ଷରୁ କମ୍ ବୟସ୍କ ପିଲାଙ୍କୁ ଭୂଇଁତଳେ କାର୍ଯ୍ୟ କରିବା ନିଷେଧ କରାଗଲା ଏବଂ ସ୍ତ୍ରୀଲୋକମାନେ ସେହିପରି କରୁଥିଲେ ଏବଂ ବାସ୍ତବିକ ସମୁଦାୟ ଶ୍ରମିକଙ୍କର ସେମାନେ ଥିଲେ ଅର୍ଦ୍ଧେକ । ବୟସ୍କଙ୍କ ପାଇଁ ଛଅଦିନିଆ ସପ୍ତାହରେ ସର୍ବୋଚ୍ଚ କାର୍ଯ୍ୟଘଣ୍ଟା ଏହିରୂପେ ନିର୍ଦ୍ଦିଷ୍ଟ ହେଲା । ଭୂମିଉପରେ ଶ୍ରମ କରିବା ଲାଗି ୬୦ ଘଣ୍ଟା ଏବଂ ଭୂଇଁତଳେ ୫୪ ଘଣ୍ଟା ।

ମୋର ମନେହୁଏ ଦୈନିକ ବରୁଠାରୁ ବେଶି ହେଲେ ୧୬ ଘଣ୍ଟା ହୋଇପାରିବ ବୋଲି ଥିଲି । ଶ୍ରମିକ ଅବସ୍ଥା ସମ୍ବନ୍ଧରେ ତୋର କିଛି ଧାରଣା ହେବାପାଇଁ ମୁଁ ଏହି ଘଣ୍ଟାର ପରିମାଣ ତୋତେ ଦେଉଛି । ଏହା ସାହାଯ୍ୟରେ ସୁଦ୍ଧା ତୋର ଅତି ଏକପାଖିଆ ଧାରଣା ହେବ । କାରଣ ପ୍ରକୃତ ଧାରଣା କରିବାକୁ ହେଲେ ଏହା ସାଙ୍ଗକୁ ତୋତେ ମଜୁରି ପରିମାଣ, ଚଳିବା ଅବସ୍ଥା ଇତ୍ୟାଦି ଅନେକ ଅନ୍ୟ ଜିନିଷ ଜାଣିବାକୁ ପଡ଼ିବ; କିନ୍ତୁ ନିଜକୁ ବଞ୍ଚାଇ ରଖିବା ନିମନ୍ତେ ଅତି ସାମାନ୍ୟ ମଜୁରି ସକାଶେ ଶ୍ରେଷ୍ଠ ବାଳକ ବାଳିକା, ପୁରୁଷ ଓ ନାରୀ କାରଖାନାମାନଙ୍କରେ କପରି ଦୈନିକ ଏଗାର ଘଣ୍ଟା ପର୍ଯ୍ୟନ୍ତ ଶ୍ରମ କରନ୍ତି ଏହା ଉପଲବ୍ଧି କରିବା ଦରକାର । ଯେପରି ଏକା ଭଳିଆ ଶ୍ରମ କାରଖାନାମାନଙ୍କରେ ସେମାନଙ୍କୁ କରିବାକୁ ପଡ଼େ ତାହା ଅତ୍ୟନ୍ତ ହତାଶାଜନକ; ଏଥିରେ ଆନନ୍ଦ ନାହିଁ, ଯେତେବେଳେ ସେମାନେ ଘରକୁ ଫେରନ୍ତି ଅତି କ୍ଳାନ୍ତ ହୋଇ ପଡ଼ିଥାନ୍ତି—ଗୋଟିଏ ଶ୍ରେଷ୍ଠ ମାଟି କୁଡ଼ିଆରେ ଅତି ଅସ୍ୱାସ୍ଥ୍ୟକର ଅବସ୍ଥା ଭିତରେ ସାରା ପରିବାରକୁ ସାଧାରଣତଃ ଏକାଠି ରହିବାକୁ ପଡ଼େ ।

କେତେକ ଶ୍ରମିକ-ସ୍ୱାସ୍ଥ୍ୟ ଆଇନ ପାଶ୍ ହେଲା ଓ ୧୯୨୩ ରେ ଶ୍ରମିକମାନଙ୍କୁ କ୍ଷତିପୂରଣ ଆଇନ ପାଶ୍ ହେଲା । ସେଥିରେ ଧାର୍ଯ୍ୟ ହେଲା ଯେ ଦୁର୍ଘଟଣା ଆଦି ଘଟିଲେ ଆଘାତପ୍ରାପ୍ତ ଶ୍ରମିକଙ୍କୁ କ୍ଷତିପୂରଣ ଦେବାକୁ ପଡ଼ିବ । ୧୯୨୬ରେ ଗୋଟିଏ ଟ୍ରେଡ୍ ଇଉନିୟନ ଆଇନ ପାସ ହେଲା—ଟ୍ରେଡ୍ ଇଉନିଅନର ପରିଚାଳନା ଓ ସ୍ୱୀକାର କରିବା ସମ୍ବନ୍ଧରେ ଏହି ଆଇନ ହୋଇଥିଲା । ଏହିକାଳରେ ଟିକିଏ ଦ୍ରୁତବେଗରେ ଭାରତରେ ବିଶେଷତଃ ବମ୍ବେରେ ଟ୍ରେଡ୍ ଇଉନିଅନ ଆନ୍ଦୋଳନ ବୃଦ୍ଧି ପାଇଲା । ଗୋଟିଏ ନିଖିଳ ଭାରତ ଟ୍ରେଡ୍ ଇଉନିଅନ କଂଗ୍ରେସ ଗଢ଼ାଗଲା; କିନ୍ତୁ କେତେକ ବର୍ଷ ପରେ ଏହା ଦୁଇ ଦଳରେ ବିଭକ୍ତ ହୋଇଗଲା । ଯୁଦ୍ଧ ଓ ରୁଷ ବିପ୍ଳବ କାଳରୁ ସମଗ୍ର ଦୁନିଆରେ ଶ୍ରମିକମାନେ ଦୁଇ ଦଳରେ ଯୋଗଦେଇ ହୋଇ ଆସିଛନ୍ତି । ପୁରୁଣା ରକ୍ଷଣଶୀଳ ଓ ମାନ୍ଦା ଟ୍ରେଡ୍ ଇଉନିଅନ ସବୁ ଦ୍ୱିତୀୟ ଅନ୍ତର୍ଜାତୀୟ (ଯାହା ସମ୍ବନ୍ଧରେ ମୁଁ ତତେ ଆଗରୁ କହିଛି) ସହ ସଂଯୁକ୍ତ ହୋଇଥିଲା ଏବଂ ସୋଭିଏଟ ରୁଷ ଓ ତୃତୀୟ ଅନ୍ତର୍ଜାତୀୟ ନୂତନ ଏବଂ ପ୍ରଭାବଶାଳୀ ଆକର୍ଷଣ । ତେଣୁ ପ୍ରତ୍ୟେକ ସ୍ଥାନରେ ମାନ୍ଦା ଓ ସାଧାରଣତଃ ଭଲ ଅବସ୍ଥାରେ ଥିବା କାରଖାନା ଶ୍ରମିକମାନେ ନରମପନ୍ଥୀ ଓ ଦ୍ୱିତୀୟ ଆନ୍ତର୍ଜାତୀୟ ଆଡ଼କୁ ଟାଣି ହୋଇଛନ୍ତି, ଏବଂ ଅଧିକ ବିପ୍ଳବୀ ଅନୁଷ୍ଠାନଟି ତୃତୀୟ ଆନ୍ତର୍ଜାତୀୟରେ ଯୋଗ ଦେଇଛନ୍ତି । ଭାରତରେ ମଧ୍ୟ ଏହି ଟଣା ଘୋଷଣା ଶୃଙ୍ଖଳ ଏବଂ ୧୯୨୯ ଶେଷ ବେଳକୁ ବିଭାଗ ହେଲା । ସେହିଦିନଠାରୁ ଭାରତରେ ଶ୍ରମିକ ଆନ୍ଦୋଳନ ଦୁର୍ବଳ ହୋଇଯାଉଛି ।

କୃଷକଙ୍କ ସମ୍ବନ୍ଧରେ ମୁଁ ଆଗରୁ ଯାହା କହିଛି ସେଥିରୁ ଏଠି ବେଶି କିଛି ଲେଖି ପାରିବି ନାହିଁ । ସେମାନଙ୍କର ଅବସ୍ଥା ଅଧିକ ଖରାପ ହେଲା ଏବଂ ସେମାନେ ଅଧିକରୁ ଅଧିକ ଭାବରେ ମହାଜନର ଋଣଗ୍ରସ୍ତ ହୋଇପଡ଼ିଲେ । ଶ୍ରେଷ୍ଠ ଶ୍ରେଷ୍ଠ ଜମିଦାର, ଭୂସ୍ୱତ୍ୱାଧିକାରୀ କୃଷକ ଓ ପ୍ରଜା ସମସ୍ତେ ମହାଜନ, ବଣିଆ, ସାହୁକାର ହାତରେ ବନ୍ଧା ହୋଇଗଲେ । କ୍ରମେ

ଋଣ ଦେଇ ନ ପାରିବାରୁ ମହାଜନମାନଙ୍କ ହାତକୁ ଜମି ଗୁଡ଼ିକ ଗଲା ଏବଂ ପ୍ରଜା ଜମିଦାର ଓ ସାହୁକାର ଉଭୟ ପ୍ରକାରେ ଜମିଦାରର ଦାସ ହୋଇ ରହିଲା । ସାଧାରଣତଃ ଏହି ବଣିଆ ଜମିଦାର ସହରରେ ବାସ କରନ୍ତି ଏବଂ ପ୍ରଜା ଓ ତାଙ୍କ ଭିତରେ କୌଣସି ଘନିଷ୍ଠ ସଂପର୍କ ନ ଥାଏ । ଅର୍ଥାତ୍ସେ କୃଷକଙ୍କଠାରୁ ଯଥାସମ୍ଭବ ଟଙ୍କା ଆଦାୟ କରିବା ନିମନ୍ତେ ସେ ବରାବର ଉଦ୍ୟମ କରୁଥାଏ । ପୁରୁଣା ଜମିଦାର ପ୍ରଜାଙ୍କ ମଧ୍ୟରେ ବାସ କରୁଥିବାରୁ ବେଳେ ବେଳେ ଟିକିଏ ହେଲେ ଦୟା ଦେଖାଏ; ମହାଜନ-ଜମିଦାର ସହରରେ ବାସ କରି ଅସୁଲ କରିବା ନିମନ୍ତେ ନିଜର ଏଜେଣ୍ଟ ପଠାଇବାରୁ ଏପରି ଦୁର୍ବଳତା ପ୍ରାୟ ତାଠାରେ ଦେଖାଯାଏ ନାହିଁ ।

ସରକାରୀ କମିଟିମାନଙ୍କ ଦ୍ୱାରା କୃଷକ ଶ୍ରେଣୀର ଋଣର ଅନେକ ପରକାରୀ ହିସାବ ବାହାରିଛି । ୧୯୩୦ରେ ହିସାବ କରାଯାଇଥିଲା ଯେ ଏହି ଶ୍ରେଣୀର ମୋଟ ଋଣ ସମଗ୍ର ଭାରତରେ (ବର୍ମା ଛାଡ଼ି) ହେଉଛି ୮,୦୩୦,୦୦୦,୦୦୦ ଟଙ୍କା । ଜମିଦାର ଓ କୃଷକ ଉଭୟଙ୍କ ଋଣ ଏଥିରେ ଅନ୍ତର୍ଗତ । ଆର୍ଥିକ ଦୁର୍ଗତିବେଳେ ଓ ପରେ ଏହି ସଂଖ୍ୟା ବହୁତ ବୃଦ୍ଧି ପାଇଲା ।

ଏହିରୂପେ କୃଷକ ଶ୍ରେଣୀ, ଶ୍ରେଷ୍ଠ ଜମିଦାର ଓ ପ୍ରଜା ସମସ୍ତେ ବୁଡ଼ିଯାଇ ଶେଷରେ ଏହି ଦହରେ ପଶିଲେ ଏବଂ କେବଳ ପ୍ରଚଳିତ ଭୂପ୍ରଥାକୁ ମୂଳୋତ୍ପାଟନ କରି ଆମୂଳ ପରିବର୍ତ୍ତନ ନ କରିବା ପର୍ଯ୍ୟନ୍ତ ଅନ୍ୟ କିଛି ଉପାୟ ନାହିଁ । ଟିକସ ପ୍ରଥାର ଏପରି ବ୍ୟବସ୍ଥା କରାଯାଇଛି ଯେ ଏହି ଶ୍ରେଣୀ ଉପରେ ସବୁଠାରୁ ଅଧିକ ବୋଝ ପଡ଼େ—ସେମାନେ ପୁଣି ହେଉଛନ୍ତି ସବୁଠାରୁ ଦରିଦ୍ର ଓ ଏହା ସହ୍ୟ କରିବା ନିମନ୍ତେ ନିତାନ୍ତ ଅସମର୍ଥ । ସାଧାରଣତଃ ଅର୍ଥବ୍ୟୟ ହୁଏ ସୈନ୍ୟ, ସିଭିଲ ସର୍ଭିସ ଓ ଅନ୍ୟ ବ୍ରିଟିଶ ସ୍ୱାର୍ଥମାନଙ୍କରେ—ଏଥିରୁ ଜନସାଧାରଣ ଆଦୌ ଉପକୃତ ହୁଅନ୍ତି ନାହିଁ । ବ୍ରିଟେନରେ ଜଣ ପିଚ୍ଛା ଦୁଇ ପାଉଣ୍ଡ ୧୫ ଶିଲିଙ୍ଗ ତୁଳନାରେ ଶିକ୍ଷାରେ ଭାରତରେ ଜଣପିଚ୍ଛା ନଅ ପେନ୍ସ ବା ଆଠଅଣା ଖରଚ ହୁଏ; ତେଣୁ ଶିକ୍ଷା ଦଗରେ ବ୍ରିଟେନର ଖର୍ଚ୍ଚ ଭାରତ ଅପେକ୍ଷା ୭୩ $\frac{1}{3}$ ଗୁଣ ବେଶୀ ।

ଭାରତରେ ଜଣପିଚ୍ଛା ଜାତୀୟ ଆୟ କେତେ ହିସାବ କରି ବାହାର କରିବା ପାଇଁ ଭାରତରେ ଅନେକ ଉଦ୍ୟମ ହୋଇଛି । ଏହା କଷ୍ଟକର ବ୍ୟାପାର ଏବଂ ହିସାବସବୁରେ ବହୁତ ପାର୍ଥକ୍ୟ ଦେଖାଯାଏ । ୧୮୭୦ରେ ଦାଦାଭାଇ ନାରୋଜୀ ହିସାବ କରିଥିଲେ, ଜଣପିଚ୍ଛା ୨୦ ଟଙ୍କା, ଆଜକାଲିକା ହିସାବ ବଢ଼ି ବଢ଼ି ୬୭ ଟଙ୍କା ହୋଇଛି ଏବଂ କେତେକ ଇଂରେଜ ଲୋକଙ୍କ ହିସାବ ଅନୁସାରେ ଅତି ଅନୁକୂଳ ଭାବରେ ଦେଖିଲେ କେବେ ୧୧୬ ଟଙ୍କାରୁ ବେଶି ନୁହେଁ । ଅନ୍ୟ ଦେଶ ସହିତ ତୁଳନା କଲେ ବେଶ୍ ମଜା ଲାଗେ । ସଂଯୁକ୍ତ ରାଷ୍ଟ୍ର ଆମେରିକାରେ ଏହା ହେଉଛି ଜଣପିଚ୍ଛା ୧୯୨୫ ଟଙ୍କା ଏବଂ ଏହା ବ ସେହିଦିନଠାରୁ ବହୁତ ବଢ଼ି ଯାଉଛି । ବ୍ରିଟେନରେ ଏହା ଜଣପିଚ୍ଛା ୧,୦୦୦ ଟଙ୍କା । *

* ବର୍ତ୍ତମାନ ବିନିମୟ ହାରରେ ଏକ ଟଙ୍କାର ମୂଲ୍ୟ ହେଉଛି ଏକ ଶିଲିଙ୍ଗ ଛଅ ପେନ୍ସ ।

# ୧୭୨ : ଭାରତରେ ଶାନ୍ତିପୂର୍ଣ୍ଣ ବିଦ୍ରୋହ

ମେ ୧୭, ୧୯୩୩

ମୁଁ ଭାରତ ଓ ତାର ଅତୀତ ସମ୍ବନ୍ଧରେ ତୋତେ ଅନେକ ଚିଠି ଲେଖିଛି—ଅନ୍ୟ ଯେକୌଣସି ଦେଶ ଅପେକ୍ଷା ବହୁତ ଅଧିକ ଲେଖିଛି । କିନ୍ତୁ ଅତୀତ ଏବେ ବର୍ତ୍ତମାନରେ ମିଶିଗଲାଣି ଏବଂ ମୁଁ ଆଶାକରେ ଏହି ଯେଉଁ ଚିଠି ବର୍ତ୍ତମାନ ଆରମ୍ଭ କରିବି ଏହା ଆଜିର ଭାରତ ଅବସ୍ଥା ପର୍ଯ୍ୟନ୍ତ ଆସିଯିବ । ଆମ ମନରେ ତାଜା ହୋଇ ରହିଥିବା କେତେକ ଅଧୁନାକ ଘଟଣା ମୁଁ ଉଲ୍ଲେଖ କରିବି । ସେ ବିଷୟରେ ଲେଖିବା ସମସ୍ତ ଏବେ ସୁଦ୍ଧା ହୋଇନାହିଁ; କାରଣ କାହାଣୀ ଏବେ ସୁଦ୍ଧା ଅର୍ଦ୍ଧେକ କୁହାଯାଇଛି । କିନ୍ତୁ ସବୁ ଇତିହାସ ଏକ ପ୍ରକାରର ହଠାତ୍ ବର୍ତ୍ତମାନରେ ଶେଷ ହୋଇଯାଇଛି ଏବଂ କାହାଣୀର ଅବଶିଷ୍ଟ ଅଧ୍ୟାୟ ଭବିଷ୍ୟତ ଗର୍ଭରେ ରହିଯାଇଛି । ବାସ୍ତବିକ ଏ କାହାଣୀର ଶେଷ ନାହିଁ; ଏହା ଚାଲିଛି, ଚାଲିଥିବ ।

୧୯୩୭ ଶେଷ ବେଳକୁ ବ୍ରିଟିଶ ସରକାର ଘୋଷଣା କଲେ ଯେ ଭବିଷ୍ୟତ ସଂସ୍କାର ଓ ସରକାରୀ ଗଠନରେ ପରିବର୍ତ୍ତନ ନିମନ୍ତେ ତଦନ୍ତ କରିବା ଲାଗି ଭାରତକୁ ଏକ କମିଶନ୍ ପ୍ରେରଣ କରାଯିବ । ଏହି ଘୋଷଣାରେ ରାଜନୀତିକ ଭାରତ କ୍ରୋଧ ଓ ନିନ୍ଦା କଲା । କଂଗ୍ରେସ ଏଥିରେ ଆପତ୍ତି କଲା; କାରଣ ଭାରତ ସ୍ୱାୟତ୍ତ ଶାସନ ଯୋଗ୍ୟ କି ନା ଏହା ଥରକୁ ଥର ତଦନ୍ତ କରିବା କଥାରେ ତାହା ଅସନ୍ତୋଷ ଦେଖାଯାଉଥିଲା । ଦେଶ ଉପରେ ଯେତେଦୂର ସମ୍ଭବ ନିଜର କର୍ତ୍ତୃତ୍ୱ ଜାରି ରଖିବା ମତଲବକୁ ଘୋଡ଼ାଇବା ପାଇଁ ବ୍ରିଟିଶ ଏହି ବାକ୍ୟାଂଶ ବ୍ୟବହାର କରିଥିଲେ । ପୃଥିବୀ ଯୁଦ୍ଧ ବେଳେ ଯେଉଁ ଆତ୍ମନିୟନ୍ତ୍ରଣର ଏତେ ବେଶି ଡିଣ୍ଡିମ ବଜାଯାଇଥିଲା, କଂଗ୍ରେସ ଦୀର୍ଘକାଳ ଆଗରୁ ସେପରି ଦାବୀ କରିଆସିଛି ଏବଂ ଭାରତର ଭବିଷ୍ୟତ ଭାଗ୍ୟ ନିର୍ଣ୍ଣୟ କରିବା ବିଷୟରେ ବ୍ରିଟେନ ଶେଷ ବିଚାରକ କିମ୍ବା ବ୍ରିଟିଶ ପାର୍ଲିଆମେଣ୍ଟ ହୁକୁମ କରିବା ଅଧିକାରକୁ ଏହା ସ୍ୱୀକାର କରିବାକୁ ଅସ୍ୱୀକାର କଲା । ଏହି କାରଣରୁ କଂଗ୍ରେସ ନୂତନ ପାର୍ଲିଆମେଣ୍ଟାରୀ କମିଶନରେ ଆପତ୍ତି ଦର୍ଶାଇଲା । ମାତ୍ର ଦଳମାନେ କମିଶନକୁ ଅନ୍ୟ କାରଣରୁ ନିନ୍ଦାକଲେ—ମୁଖ୍ୟ କାରଣ ହେଉଛି ଏଥିରେ କୌଣସି ଭାରତୀୟ ସଦସ୍ୟ ନ ଥିଲେ । ଏହା ଏକ ଖାଣ୍ଟି ବ୍ରିଟିଶ କମିଶନ ଥିଲା । ଆପତ୍ତିର କାରଣ ପୃଥକ୍ ଥିଲେ ସୁଦ୍ଧା ଅତି ନରମପନ୍ଥୀଙ୍କ ସମେତ ଭାରତର ପ୍ରାୟ ପ୍ରତ୍ୟେକ ଦଳ ଏହାକୁ ନିନ୍ଦା ଓ ବର୍ଜନ କରିବା ନିମନ୍ତେ ଏକାଠି ହେଲେ ।

ସେହି ସମସ୍ତ ବେଳକୁ ୧୯୨୭ ଡିସେମ୍ବର ମାସରେ ମାନ୍ଦ୍ରାଜରେ କଂଗ୍ରେସର ବାର୍ଷିକ ଅଧିବେଶନ ହେଲା ଏବଂ ସେଥିରେ ପ୍ରସ୍ତାବ ହେଲା ଯେ ଭାରତର ଲକ୍ଷ୍ୟ ହେଉଛି

ଜାତୀୟ ସ୍ୱାଧୀନତା । ପ୍ରଥମଥର ପାଇଁ ଏଠାରେ କଂଗ୍ରେସ ସ୍ୱାଧୀନତା ଦାବୀ କରିଥିଲା । ଦୁଇବର୍ଷ ପରେ ଲାହୋରଠାରେ ଜାତୀୟ କଂଗ୍ରେସର ନିର୍ଦ୍ଦିଷ୍ଟ ଲକ୍ଷ୍ୟ ହେଲା ସ୍ୱାଧୀନତା । ମାନ୍ଦ୍ରାଜ କଂଗ୍ରେସ ମଧ୍ୟ ସର୍ବଦଳ ସମ୍ମିଳନୀ ସୃଷ୍ଟି କଲା—ଏହାର ସଂକ୍ଷିପ୍ତ ଅଥଚ କର୍ମଠ ଜୀବନ ଅଳ୍ପକାଳ ଥିଲା ।

ତତ୍ପର ବର୍ଷ ୧୯୨୮ରେ ଭାରତରେ ବ୍ରିଟିଶ କମିଶନ ବସିଲା । ମୁଁ ଯାହା କହିଛି ସାଧାରଣଭାବରେ ଏହାର ବର୍ଜନ କରାଗଲା ଏବଂ ଏହା ଯେଉଁଠିକି ଗଲା ଏହା ବିରୁଦ୍ଧରେ ବଡ଼ ବଡ଼ ପ୍ରଦର୍ଶନମାନ ହେଲା । ଏହାର ଚେୟାରମ୍ୟାନଙ୍କ ନାମାନୁସାରେ ଏହାକୁ ସାଇମନ କମିଶନ କୁହାଯାଉଥିଲା ଏବଂ "ସାଇମନ ଫେରିଯାଅ" ଚିତ୍କାର ସମଗ୍ର ଭାରତରେ ଗୋଟାଏ ସାଧାରଣ ଧ୍ୱନି ହୋଇଗଲା । ଅନେକଥର ପୁଲିସ ଶୋଭାଯାତ୍ରାକାରୀ ଆଦିଙ୍କ ଉପରେ ଲାଠି ପ୍ରହାର କରିଛି; ଲାହୋରରେ ଏପରିକି ଲାଲା ଲଜପତ ରାୟଙ୍କୁ ମଧ୍ୟ ପୁଲିସ ପ୍ରହାର କଲେ । କେତେକ ମାସ ପରେ ଲାଲାଜୀ ମଲେ ଏବଂ ଡାକ୍ତରମାନେ କହିଲେ ଯେ ସମ୍ଭବତଃ ପୁଲିସର ପ୍ରହାର ହିଁ ତାଙ୍କର ମୃତ୍ୟୁର ମୁଖ୍ୟକାରଣ ହୋଇପଡ଼ିଲା । ସ୍ୱାଭାବିକ ଭାବରେ ଏହିସବୁ ଦେଶରେ କ୍ରୋଧ ଓ ଭୀଷଣ ଉତ୍ତେଜନା ସୃଷ୍ଟି କଲା ।

ଇତ୍ୟବସରେ ସର୍ବଦଳ ସମ୍ମିଳନୀ ଗୋଟିଏ ଶାସନ ଖସଡ଼ା ଏବଂ ସାଂପ୍ରଦାୟିକ ଗଣ୍ଡଗୋଳର ଗୋଟାଏ ଉପାୟ ବାହାର କରିବା ନିମନ୍ତେ ଚେଷ୍ଟା କଲା । ଶାସନ ବିଧାନ ଓ ସାଂପ୍ରଦାୟିକ ପ୍ରଶ୍ନ ସମ୍ବନ୍ଧରେ ପ୍ରସ୍ତାବ ସମ୍ବଳିତ ରିପୋର୍ଟ ଏହା ବାହାର କଲା । ଯେଉଁ କମିଟି ଏହି ରିପୋର୍ଟ ତିଆରି କରିଥିଲା ତାର ଚେୟାରମ୍ୟାନ ପଣ୍ଡିତ ମୋତିଲାଲ ନେହରୁ ଥିବାରୁ ଏହା ନେହରୁ ରିପୋର୍ଟ ନାମରେ ଜଣା ।

ଏହିବର୍ଷ ଏକ ଉଲ୍ଲେଖଯୋଗ୍ୟ ଘଟଣା ହେଉଛି ଗୁଜରାଟର ବଦୋଲିରେ ସରକାରୀ ରାଜସ୍ୱ ନିର୍ଦ୍ଧାରଣ ବିରୁଦ୍ଧରେ ଏକ ମହାନ୍ କୃଷକ ଆନ୍ଦୋଳନ । ଯୁକ୍ତପ୍ରଦେଶ ପରି ଗୁଜୁରାଟରେ ବଡ଼ ଜମିଦାରୀ ପ୍ରଥା ନାହିଁ; ସେଠି ଭୂସ୍ୱତ୍ୱାଧିକାରୀ କୃଷକ ଅଛନ୍ତି । ସର୍ଦ୍ଦାର ବଲ୍ଲଭଭାଇ ପଟେଲଙ୍କ ନେତୃତ୍ୱରେ ଏହି କୃଷକମାନେ ଏକ ଅଲୌକିକ ଏବଂ ନିର୍ଭୀକ ଭାବରେ ସଂଗ୍ରାମ କଲେ ଓ ଶେଷରେ ବିଜୟ ହାସଲ କଲେ ।

୧୯୨୮ ଡିସେମ୍ବରରେ କଲିକତା କଂଗ୍ରେସରେ ନେହରୁ ରିପୋର୍ଟ ଗୃହୀତ ହେଲା—ଏହା ବ୍ରିଟିଶ ଡୋମିନିୟନମାନଙ୍କ ପରି ଏକ ଶାସନ ଖସଡ଼ା ପାଇଁ ସୁପାରିଶ କଲା । କିନ୍ତୁ ଏହା ଗ୍ରହଣ କରି ସୁଦ୍ଧା କଂଗ୍ରେସ ଏହା ଅସ୍ଥାୟୀ ଭାବରେ କଲା ଏବଂ ଏକ ବର୍ଷର ସମୟ ନିର୍ଦ୍ଦିଷ୍ଟ କରିଦେଲା । ଏହାକୁ ଭିତ୍ତି କରି ବର୍ଷକ ଭିତରେ ଯଦି ବ୍ରିଟିଶ ସରକାର ସହ କୌଣସି ପ୍ରକାର ଚୁକ୍ତି ନ ହୁଏ, ତେବେ କଂଗ୍ରେସ ପୁଣି ସ୍ୱାଧୀନତା ଦାବୀକୁ ଫେରିଯିବ । ଏହିରୂପେ କଂଗ୍ରେସ ଓ ଦେଶ ଅନିବାର୍ଯ୍ୟରୂପେ ଏକ ସଂକଟଆଡ଼କୁ ଗତି କଲା ।

ଶ୍ରମିକମାନେ ମଧ୍ୟ ବଡ଼ ଅସ୍ଥିର ହୋଇଥିଲେ ଏବଂ କେତେକ ଶିଳ୍ପକେନ୍ଦ୍ରରେ ମଜୁରି ହ୍ରାସ କରିବା ନିମନ୍ତେ ଉଦ୍ୟମ ହେବାରୁ ଆକ୍ରମଣଶୀଳ ବି ହେଉଥିଲେ । ବମ୍ବେରେ ଏହା ବିଶେଷଭାବରେ ସଂଗଠନ ହେଲା ଏବଂ ବଡ଼ ବଡ଼ ଧର୍ମଘଟମାନ ହେଲା । ସେଥିରେ ୧୦୦,୦୦୦ ବା ତହିଁରୁ ଅଧିକ ଶ୍ରମିକ ଯୋଗଦେଲେ । ସାମ୍ୟବାଦୀ ଓ କେତେକ ପରିମାଣରେ କମ୍ୟୁନିଜିମ ଭାବଧାରା ବି ଶ୍ରମିକଙ୍କ ଭିତରେ ପ୍ରବେଶ କଲା ଏବଂ ଏହି ବୈପ୍ଳବିକ ପ୍ରଗତି ଓ ଶ୍ରମିକମାନଙ୍କର କ୍ରମବର୍ଦ୍ଧିଷ୍ଣୁ ଶକ୍ତି ଦେଖି ଭୟଭୀତ ହୋଇଯାଇ ସରକାର ହଠାତ୍ ୧୯୨୯ରେ ୩୨ ଜଣ ଶ୍ରମିକ ନେତାଙ୍କୁ ଗିରଫ କଲା ଏବଂ ସେମାନଙ୍କ ବିରୁଦ୍ଧରେ ଗୋଟାଏ ବଡ଼ ଷଡ଼ଯନ୍ତ୍ର ମକଦ୍ଦମା ଆରମ୍ଭ କଲା । ସମଗ୍ର ଦୁନିଆରେ ଏହା ମିରଟ ମକଦ୍ଦମା ନାମରେ ପରିଚିତ । ପ୍ରାୟ ଚାରିବର୍ଷ କାଳ ବିଚାର କରିବା ପରେ ପ୍ରାୟ ସମସ୍ତ ମୁଦାଲଙ୍କୁ ବହୁତ ଲମ୍ବା ଜେଲ ଶାସ୍ତି ଦିଆଗଲା । ଏଥିରେ ବିଚିତ୍ର କଥା ହେଉଛି ପ୍ରକୃତ ବିଦ୍ରୋହମୂଳକ କାର୍ଯ୍ୟ କିମ୍ବା ଏପରିକି ଶାନ୍ତିଭଙ୍ଗ ଅଭିଯୋଗରେ କେହି ଅଭିଯୁକ୍ତ ହୋଇ ନ ଥିଲେ । ସେମାନଙ୍କର ଅପରାଧ ହେଉଛି, ସେମାନେ କୌଣସି ନିର୍ଦ୍ଦିଷ୍ଟ ମତ ପୋଷଣ କରନ୍ତି ଏବଂ ତାହା ବିସ୍ତାର କରିବା ନିମନ୍ତେ ଉଦ୍ୟମ କରୁଥିଲେ । ଅପିଲ କରିବାରେ ଏହିସବୁ ଶାସ୍ତି ବହୁତ କମ୍ ହୋଇଗଲା ।

ଆଉ ଏକପ୍ରକାର କାର୍ଯ୍ୟ ଭିତରେ ଭିତରେ ଲୁଚିଲୁଚିଥିଲା ଏବଂ ବେଳେବେଳେ ପଦାକୁ ବାହାରି ପଡ଼ୁଥିଲା—ଏହା ହେଉଛି ହିଂସା ଉପାୟରେ ବିପ୍ଳବ କରିବାରେ ଲୋକଙ୍କର ବିଶ୍ୱାସ । ଏହା ମୁଖ୍ୟତଃ ବଙ୍ଗଳାରେ ଏବଂ କେତେକ ପରିମାଣରେ ପଞ୍ଜାବରେ ଓ ଅଳ୍ପ କିଛି ଯୁକ୍ତ ପ୍ରଦେଶରେ ଦେଖାଦେଲା । ଅନେକ ଉପାୟରେ ବ୍ରିଟିଶ ସରକାର ଏହା ଦବାଇବା ନିମନ୍ତେ ଚେଷ୍ଟା କଲା ଏବଂ ଅସଂଖ୍ୟ ଷଡ଼ଯନ୍ତ୍ର ମକଦ୍ଦମା ଚାଲିଲା । "ବଙ୍ଗଳା ଅର୍ଡ଼ିନାନ୍ସ" ବୋଲି ଗୋଟିଏ ବିଶେଷ ଆଇନ ବଙ୍ଗଳା ସରକାର ଘୋଷଣା କଲା । ଏଥିରେ ସରକାର ଯାହାକୁ ସନ୍ଦେହ କରୁଥିଲା ଗିରଫ କଲା ଓ ବିନା ବିଚାରରେ ଜେଲରେ ଅଟକ କରିପାରିଲା । ଏହି ଅର୍ଡ଼ିନାନ୍ସ ଅନୁସାରେ ଶହ ଶହ ବଙ୍ଗାଳୀ ଯୁବକ ଗିରଫ ହୋଇ ଜେଲଦଣ୍ଡ ପାଇଲେ; ଏମାନଙ୍କୁ 'ଅନ୍ତରୀଣବନ୍ଦୀ' ବୋଲି କହନ୍ତି ଏବଂ ସେମାନଙ୍କର ଜେଲରେ ରହିବାର କୌଣସି ନିର୍ଦ୍ଦିଷ୍ଟ ସମୟ ନାହିଁ । ଆହୁରି ମଜାର କଥା ହେଉଛି, ଏହି ଅସାଧାରଣ ଅର୍ଡ଼ିନାନ୍ସ ଜାରି ହେଲାବେଳେ ଇଂଲଣ୍ଡରେ ଏକ ଶ୍ରମିକ ସରକାର ଥିଲା ଏବଂ ଏହି ଅର୍ଡ଼ିନାନ୍ସ ଲାଗି ଏହା ଦାୟୀ ।

ବିପ୍ଳବୀମାନେ ଅନେକ ଆତଙ୍କବାଦୀ କାର୍ଯ୍ୟ କରିଥିଲେ—ଏଥିରୁ ଅଧିକାଂଶ ବଙ୍ଗଳାରେ ହୋଇଥିଲା । ଯାହାହେଉ ତିନୋଟି ଘଟଣା ବିଶେଷ ଦୃଷ୍ଟି ଆକର୍ଷଣ କରିଥିଲା । ପ୍ରଥମ ହେଉଛି ସାଇମନ କମିଶନ ବିରୁଦ୍ଧରେ ପ୍ରଦର୍ଶନ କଲାବେଳେ ଲାଲା ଲାଜପତ୍ ରାୟଙ୍କୁ ମାଡ଼ଦେବାର ସନ୍ଦେହ କରାଯାଉଥିବା ବ୍ରିଟିଶ ପୁଲିସ କର୍ମଚାରୀ ଉପରେ ଗୁଳି । ଦ୍ୱିତୀୟ ହେଉଛି

ଭଗତ୍ ସିଂହ ଓ ବଟୁକେଶ୍ୱର ଦତ୍ତଙ୍କ ଦ୍ୱାରା ଦିଲ୍ଲୀରେ ଆସେମ୍ବ୍ଲି କୋଠାରେ ବୋମା ନିକ୍ଷେପ । ଯାହାହେଉ ଏ ବୋମା ବିଶେଷ କ୍ଷତି କରି ନ ଥିଲା ଏବଂ ଏହା ଏକ ବଡ଼ ଶବ୍ଦ ସୃଷ୍ଟି କରିବା ପାଇଁ ଏବଂ ଏହିରୂପେ ଦେଶର ଦୃଷ୍ଟି ଆକର୍ଷଣ କରିବା ନିମନ୍ତେ କରାଯାଇଥିଲା ପରି ବୋଧହୁଏ । ଦ୍ୱିତୀୟ ହେଉଛି, ଠିକ୍ ଆଇନ ଅମାନ୍ୟ ଆନ୍ଦୋଳନ ଆରମ୍ଭ ହେଲାବେଳକୁ ୧୯୩୦ରେ ଚଟ୍ଟଗ୍ରାମର ଘଟଣା । ଅସ୍ତ୍ରାଗାର ଉପରେ ଏହା ଏକ ସାହସିକ ଓ ବିରାଟ ଆକାରର ଚଢ଼ଉ ଏବଂ ଏହା କିଛି ସଫଳ ହୋଇଥିଲା । ଏହି ଆନ୍ଦୋଳନକୁ ଦବାଇବା ନିମନ୍ତେ ସରକାର ପ୍ରତ୍ୟେକ ପ୍ରକାର କଳ୍ପନା କରାଯାଇ ପାରିବା ଉପାୟସବୁ ବାହାର କଲା । ଅନେକ ଗୋଇନ୍ଦା ଗୁପ୍ତଚର ନିଯୁକ୍ତ ହେଲେ, ବହୁସଂଖ୍ୟକ ଗିରଫ ଓ ଷଡ଼ଯନ୍ତ୍ର ମକଦ୍ଦମା ଚାଲିଲା ଏବଂ ଅନ୍ତରୀଣ ବନ୍ଦୀ ହେଲେ ବେଳେ ବେଳେ ଆଇନ ଅଦାଲତରେ ଲୋକେ ଖଲାସ ହେବା ସଙ୍ଗେ ସଙ୍ଗେ ପୁନର୍ବାର ଗିରଫ ହୁଅନ୍ତି ଏବଂ ଅର୍ଡିନାନ୍ସ ଅନୁସାରେ ସେମାନଙ୍କୁ ଅନ୍ତରୀଣ କରି ରଖି ଦିଆଯାଏ ।) ଏବଂ ପୂର୍ବ ବଙ୍ଗଳାର ଏକାଂଶ ମିଲିଟାରୀ ଅଧୀନରେ ରହିଲା - ଲୋକେ ବିନା ଅନୁମତିପତ୍ରରେ ଯାଇପାରିବେ ନାହିଁ କିମ୍ବା ସେମାନେ ସାଇକେଲରେ ଯାଇପାରିବେ ନାହିଁ କିମ୍ବା ନିଜର ମନମତ ପୋଷାକ ପିନ୍ଧିପାରିବେ ନାହିଁ । ପୁଲିସକୁ ସମ୍ବାଦ ନ ଦେବା ହେତୁ ସହର ଓ ଗ୍ରାମମାନଙ୍କ ଉପରେ ବହୁ ଜୋରିମାନା ଧାର୍ଯ୍ୟ କରାଗଲା ।

୧୯୨୯ ମସିହାର ଲାହୋର ଷଡ଼ଯନ୍ତ୍ର ମକଦ୍ଦମାରେ ସମ୍ପୃକ୍ତ ଜଣେ ବନ୍ଦୀ ଯତୀନ୍ଦ୍ରନାଥ ଦାସ ଜେଲ ବ୍ୟବହାର ବିରୁଦ୍ଧରେ ପ୍ରତିବାଦ କରି ଅନଶନ ଆରମ୍ଭ କଲେ । ଏହି ଯୁବକ ଶେଷପର୍ଯ୍ୟନ୍ତ ନିଜ ପଣରେ ଦୃଢ଼ ରହିଲେ ଏବଂ ୬୧ ତମ ଦିବସରେ ମରିଗଲେ । ଯତୀନ୍ଦ୍ର ଦାସଙ୍କର ଆତ୍ମବିସର୍ଜନ ଭାରତକୁ ସ୍ପର୍ଶ କଲା । ଆଉ ଗୋଟିଏ ଘଟଣା ଦେଶ ମନରେ ଯନ୍ତ୍ରଣା ଓ ଆଘାତ ଦେଲା—ତାହା ହେଉଛି ୧୯୩୧ ପ୍ରଥମ ଭାଗରେ ଭଗତ୍ ସିଂହଙ୍କର ଫାଶି ।

ମୁଁ ଏବେ କଂଗ୍ରେସ ରାଜନୀତିକୁ ଫେରିଯିବି । କଂଗ୍ରେସ ବର୍ଷେ ସମୟ ଦେଇଥିଲା, ତାହା ପୂରି ଆସୁଥିଲା । ବାୟୁମଣ୍ଡଳରେ ଯେଉଁ ଗୁରୁତର ଅବସ୍ଥା ଦେଖାଗଲା ତାହା ରୋକିବା ପାଇଁ ୧୯୨୯ ଶେଷ ବେଳକୁ ବ୍ରିଟିଶ ସରକାର ଚେଷ୍ଟା କଲା । ଏହା ଉପନିବେଶ ପ୍ରଗତି ସମ୍ବନ୍ଧରେ ଗୋଟାଏ ଅସ୍ପଷ୍ଟ ଘୋଷଣା କଲା । ଏହାପରେ ଦୁଇ କେତେକ ସର୍ତ୍ତ ଦେଇ କଂଗ୍ରେସ ନିଜର ସହଯୋଗ ଦେବା ନିମନ୍ତେ କହିଲା । ଏହି ସର୍ତ୍ତସବୁ ପୂରଣ ନ ହେବାରୁ ଅନିବାର୍ଯ୍ୟ ଭାବରେ ୧୯୨୯ ଡିସେମ୍ବର ମାସରେ ଲାହୋର କଂଗ୍ରେସ ସ୍ୱାଧୀନତା ସପକ୍ଷରେ ଏବଂ ଏହା ଲାଭକରିବା ପାଇଁ ସଂଗ୍ରାମ ଦରକାର ବୋଲି ସ୍ଥିର କଲା ।

ତେଣୁ ଆସନ୍ନ ଘଟଣାମାନଙ୍କର ଘନଛାୟା ଭିତରେ ୧୯୩୦ ଆରମ୍ଭ ହେଲା ଏବଂ ଆଇନ ଅମାନ୍ୟ ପାଇଁ ଆୟୋଜନ ହେଉଥିଲା । ଆସେମ୍ବ୍ଲି ଓ କାଉନସିଲଗୁଡ଼ିକୁ ପୁନର୍ବାର ବର୍ଜନ କରାଗଲା ଏବଂ କଂଗ୍ରେସ ସଭ୍ୟମାନେ ସେଥିରୁ ଇସ୍ତଫା ଦେଲେ । ସହର ଓ

ଗ୍ରାମମାନଙ୍କରେ ଅସଂଖ୍ୟ ସଭାରେ ଜାନୁୟାରୀ ତା ୨୬ ଶଖରେ ଦେଶସାରା ଏକ ସ୍ୱତନ୍ତ୍ର ସ୍ୱାଧୀନତା ଶପଥ ଗ୍ରହଣ କରାଗଲା ଏବଂ ସେହି ବାର୍ଷିକ ଦିବସ ସ୍ୱାଧୀନତା ଦିବସରୂପେ ପାଳିତ ହୋଇଆସୁଛି । ମାର୍ଚ୍ଚ ମାସରେ ଲୁଣ ଆଇନ ଅମାନ୍ୟ କରିବା ନିମନ୍ତେ ସମୁଦ୍ରକୂଳସ୍ଥ ଦାଣ୍ଡୀକୁ ଗାନ୍ଧୀଜୀଙ୍କ ପ୍ରସିଦ୍ଧ ଯାତ୍ରା ଆରମ୍ଭ ହେଲା । ତାଙ୍କର ଆନ୍ଦୋଳନ ଆରମ୍ଭ କରିବା ନିମନ୍ତେ ସେ ଲୁଣ ଟିକସକୁ ବାଛିଲେ; କାରଣ ଏହି ଟିକସଭାର ଗରିବଙ୍କ ଉପରେ ବେଶି ପଡ଼ୁଥିଲା ଏବଂ ସେହି ହେତୁ ତାହା ଏକ ଖରାପ ଟିକସ ମଧ୍ୟ ।

୧୯୩୦ ଏପ୍ରିଲ ମଧ୍ୟଭାଗ ବେଳକୁ ଆଇନ ଅମାନ୍ୟ ପୁରାଦମ୍‌ରେ ଚାଲିଲା । ଏବଂ ପ୍ରତ୍ୟେକ ସ୍ଥାନରେ କେବଳ ଯେ ଲୁଣ ଆଇନ ଭଙ୍ଗ କରାଗଲା ତାହା ନୁହେଁ, ଆହୁରି ଅନେକ ଆଇନ ମଧ୍ୟ । ସମଗ୍ର ଦେଶରେ ଶାନ୍ତିପୂର୍ଣ୍ଣ ବିଦ୍ରୋହ ହେଲା ଏବଂ ଏହାକୁ ଦମନ କରିବା ନିମନ୍ତେ ଶୀଘ୍ର ପରେ ପରେ ନୂତନ ଅର୍ଡ଼ିନାନସ୍ ଜାରି ହେଲା, ବହୁତ ଗିରଫଦାରୀ ହେଲା, ପାଶବିକ ଲାଠିମାଡ଼ ସାଧାରଣ ଘଟଣା ହୋଇଗଲା, ଶାନ୍ତିପୂର୍ଣ୍ଣ ଜନତା ଉପରେ ଗୁଳି ହେଲା, କଂଗ୍ରେସ କମିଟିସବୁ ବେଆଇନ ଘୋଷିତ ହେଲା । ସମ୍ବାଦପତ୍ର ଉପରେ କଟକଣା ହେଲା । ଯାଞ୍ଚ ପ୍ରଥା, ମାଡ଼ ଓ କଠୋର ଜେଲ ବ୍ୟବହାର ଚାଲିଲା । ଏକପକ୍ଷରେ ଅର୍ଡ଼ିନାନ୍‌ସ ରାଜୁତି ଏବଂ ଅନ୍ୟ ପକ୍ଷରେ ଦୃଢ଼ପ୍ରତିଜ୍ଞ ଓ ବାଧ୍ୟବଦ୍ଧ ଭାବରେ ଏହିସବୁ ଅର୍ଡ଼ିନାନ୍‌ସ ଭଙ୍ଗ ଏବଂ ବିଦେଶୀ ଲୁଗା ଓ ବିଳାତି ଜିନିଷର ବର୍ଜନ ଚାଲିଲା । ପ୍ରାୟ ଏକଲକ୍ଷ ଲୋକ ଜେଲ ଯାଇଥିଲେ ଏବଂ କିଛିଦିନ ପର୍ଯ୍ୟନ୍ତ ଭାରତର ଏହି ଶାନ୍ତିପୂର୍ଣ୍ଣ ଅଥଚ ଅଟଳ ସଂଗ୍ରାମ ପୃଥିବୀର ଦୃଷ୍ଟି ଆକର୍ଷଣ କଲା ।

ମୁଁ ତୋର ଦୃଷ୍ଟିକୁ ତିନୋଟି ଘଟଣା ଆଣିବାକୁ ଚାହେଁ – ପ୍ରଥମ ହେଉଛି ଉତ୍ତର ପଶ୍ଚିମ ସୀମାନ୍ତ ପ୍ରଦେଶରେ ଅପୂର୍ବ ରାଜନୀତିକ ଜାଗରଣ । ସଂଗ୍ରାମ ଆରମ୍ଭରେ ୧୯୩୦ ଏପ୍ରିଲ ମାସରେ ପେଶାବାରରେ ଶାନ୍ତିପୂର୍ଣ୍ଣ ଜନତା ଉପରେ ଅଦ୍ଭୁତ ଗୁଳିକାଣ୍ଡ ହେଲା ଏବଂ ଏହି ବର୍ଷସାରା ଆମର ସୀମାନ୍ତ ନିବାସୀ ଭାଇ ଅତି ନିର୍ଭୀକ ଦମ୍ ଦେଖାଇ ଅଦ୍ଭୁତ ପ୍ରକାରରେ ପାଶବିକ ବ୍ୟବହାର ସହ୍ୟ କଲେ । ଏହା ଦ୍ୱିଗୁଣଭାବରେ ଅଲୌକିକ; କାରଣ ସୀମାନ୍ତ ଲୋକେ ସାଧାରଣତଃ ଶାନ୍ତସ୍ୱଭାବ ଲୋକ ନୁହନ୍ତି ଏବଂ ସେମାନେ ସାମାନ୍ୟ ଉତ୍ତେଜନାରେ ଅଗ୍ନିଶର୍ମା ହୋଇଯାଆନ୍ତି । ତଥାପି ସେମାନେ ସେଠି ଶାନ୍ତ ରହିଥିଲେ । ଏହା ବିସ୍ମୟଜନକ, ଅତି ସୁଖ୍ୟାତିର କଥା—ବିଶେଷତଃ ପଠାଣମାନଙ୍କ ପରି ରାଜନୀତି କ୍ଷେତ୍ରରେ ନୂତନ ଆଗନ୍ତୁକମାନଙ୍କ ପକ୍ଷରେ । ପଠାଣମାନଙ୍କ ପକ୍ଷରେ ସମ୍ମୁଖକୁ ତତ୍‌କ୍ଷଣାତ୍ ଆସି ଏପରି ସାହସିକ ଭାଗନେବା ଅଦ୍ଭୁତ କଥା ।

ଦ୍ୱିତୀୟ ଉଲ୍ଲେଖଯୋଗ୍ୟ ବିଷୟ ଏବଂ ନିଶ୍ଚୟ ସେ ବର୍ଷର ପ୍ରଧାନ ଘଟଣା— ଏହା ହେଉଛି ଭାରତୀୟ ନାରୀର ଅପୂର୍ବ ଜାଗରଣ । ଯେପରି ଭାବରେ ହଜାର ହଜାର ସଂଖ୍ୟାରେ ନାରୀମାନେ ତାଙ୍କର ପରଦା ଫିଙ୍ଗିଦେଲେ, ସେମାନଙ୍କର ଆଶ୍ରିତ ଘର ଛାଡ଼ି

ଆସିଲେ, ସେମାନଙ୍କର ଭାଇଙ୍କ ସହିତ କାନ୍ଧକୁ କାନ୍ଧ ମିଳାଇ ସଂଗ୍ରାମ କରିବା ନିମନ୍ତେ ସହରର ବଡ଼ ବଜାରକୁ ବାହାରି ଆସିଲେ ଏବଂ ବେଳେ ବେଳେ ନିଜର ପୁରୁଷମାନଙ୍କୁ ହରମରେ ପକାଇଦେଲେ—ଏପରି ଦୃଶ୍ୟ ଯେ ନ ଦେଖିଛି ସେ ବୋଧହୁଏ ବିଶ୍ୱାସ କରିବ ନାହିଁ ।

ତୃତୀୟ ଉଲ୍ଲେଖନୀୟ ଘଟଣା ହେଉଛି—ଆନ୍ଦୋଳନର ବୃଦ୍ଧି ସଙ୍ଗେ ସଙ୍ଗେ କୃଷକଙ୍କ ସଂପର୍କରେ ଯେତେଦୂର ବୁଝାଯାଇପାରେ ଆର୍ଥନୀତିକ ସମସ୍ୟା ଆସି ଏଥିରେ ମିଶିଲା । ପୃଥିବୀର ମହାନ୍ ଦୁର୍ଗତିର ପ୍ରଥମବର୍ଷ ହେଲା ୧୯୩୦ ଏବଂ ଶସ୍ୟଜାତ ପଦାର୍ଥର ଦର ବହୁତ ପଡ଼ିଗଲା । ଏଥିରେ କୃଷକମାନେ କଠିନ ଭାବରେ ଆଘାତ ପାଇଲେ; କାରଣ ତାଙ୍କର ଆମଦାନି ଜିନିଷର ବନ୍ଧାଲବ୍ଧ ଆୟ ଉପରେ ସେମାନେ ନିର୍ଭର କରି ରହିଥାଆନ୍ତି । ତେଣୁ ଚିକସ ବନ୍ଦ କରାଟି ତାଙ୍କ ଦୁର୍ଗତି ସହିତ ଖାପ ଖାଇଲା ଏବଂ ତାଙ୍କ ପକ୍ଷରେ ସ୍ୱରାଜ୍ୟ କୌଣସି ସୁଦୂର ରାଜନୀତିକ ଲକ୍ଷ୍ୟ ହୋଇ ରହିଲା ନାହିଁ; କିନ୍ତୁ ଆହୁରି ଅଧିକ ଗୁରୁତର କଥା—ଏହା ସେମାନଙ୍କର ଜରୁରି ଆର୍ଥନୀତିକ ପ୍ରଶ୍ନ ହୋଇଗଲା । ତେଣୁ ସେମାନେ ଆନ୍ଦୋଳନରେ ଏକ ନୂତନ ଓ ତାଙ୍କ ମନ ମୁତାବକ ଅଧିକ ଅର୍ଥ ପାଇଲେ ଏବଂ ଜମିଦାର ଓ ପ୍ରଜା ଭିତରେ ଟିକିଏ ଶ୍ରେଣୀ ସଂଘର୍ଷ ଭାବ ଦେଖାଦେଲା; ବିଶେଷତଃ ଯୁକ୍ତପ୍ରଦେଶ ଓ ପଶ୍ଚିମଭାରତରେ ଏପରି ହୋଇଥିଲା ।

ଭାରତରେ ଆଇନ ଅମାନ୍ୟ ବୃଦ୍ଧି ପାଉଥିବାବେଳେ ସମୁଦ୍ର ସେପାରି ଲଣ୍ଡନରେ ବ୍ରିଟିଶ ସରକାରଦ୍ୱାରା ଅତି ଆଡ଼ମ୍ବର ଓ ଅନ୍ୟ ପରିସ୍ଥିତିରେ ଗୋଲଟେବୁଲ ସମ୍ମିଳନୀ କରାଯାଉଥାଏ । କଂଗ୍ରେସର ଏହା ସହିତ କୌଣସି ସଂପର୍କ ନ ଥିଲା । ଏଠାରୁ ଯେଉଁ ଭାରତୀୟ ଗଲେ ସେମାନେ ସବୁ ସରକାରୀ ମନୋନୀତ ବ୍ୟକ୍ତି । ବ୍ରିଟିଶ୍‌ଦ୍ୱାରା ଚାଳିତ ପୁତୁଳିପରି କମ୍ବା କୌଣସି ସାର ନ ଥିବା ଛବିର ଛାୟା ପରି ସେମାନେ ଲଣ୍ଡନ ଲୀଳାଭୂମିରେ ବିଚରଣ କଲେ । ସେମାନେ ଭଲଭାବେ ବୁଝିଥିଲେ ଯେ ପ୍ରକୃତ ସଂଗ୍ରାମ ଭାରତରେ ଚାଲିଛି । ଭାରତୀୟମାନଙ୍କ ଦୁର୍ବଳତା ଖାଲି ଭାରତକୁ ଦେଖାଇଦେବା ନିମନ୍ତେ ଏଠାରେ ଆଲୋଚନାରେ ସରକାର ସାଂପ୍ରଦାୟିକ ସମସ୍ୟାକୁ ପ୍ରଧାନ କରି ଥୋଇଲା; ସେମାନେ ଯତ୍ନର ସହିତ ଚେଷ୍ଟାକରି ଅତ୍ୟନ୍ତ ଉଗ୍ର ସଂପ୍ରଦାୟବାଦୀ ଓ ପ୍ରତିକ୍ରିୟାପନ୍ଥୀଙ୍କୁ ସମ୍ମିଳନୀକୁ ବାଛି ବାଛି ନେଲେ ଏବଂ ମିଳାମିଶାର କୌଣସି ସୁବିଧା ରହିଲା ନାହିଁ ।

ଆହୁରି ଅଧିକ ଆଲୋଚନା କରିବାକୁ ସମର୍ଥ କରିବା ନିମନ୍ତେ ଗୋଟାଏ ସନ୍ଧି ବା ଅସ୍ଥାୟୀ ବନ୍ଦୋବସ୍ତ ୧୯୩୧ ମାର୍ଚ୍ଚ ମାସରେ ହେଲା । ଏହାକୁ ଗାନ୍ଧୀ-ଇରୱିନ୍ ଚୁକ୍ତି କହନ୍ତି । ଆଇନ ଅମାନ୍ୟ ଆନ୍ଦୋଳନ ବନ୍ଦ କରାଗଲା । ହଜାର ହଜାର ସଂଖ୍ୟାରେ ଆଇନ ଅମାନ୍ୟ ବନ୍ଦୀସବୁ ଜେଲରୁ ଖଲାସ ହୋଇଗଲେ ଏବଂ ଅର୍ଡିନାନ୍‌ସ ସବୁ ପ୍ରତ୍ୟାହାର କରାଗଲା ।

୧୯୩୧ ରେ ଗାନ୍ଧୀ କଂଗ୍ରେସ ତରଫରୁ ଲଣ୍ଡନରେ ଦ୍ୱିତୀୟ ଗୋଲଟେବୁଲ୍ ସମ୍ମିଳନୀରେ ଯୋଗ ଦେଲେ । ଭାରତରେ ଏହି ତିନୋଟିଯାକ ସମସ୍ୟା ପ୍ରଧାନ ହେଲା ଏବଂ ସରକାର ଓ କଂଗ୍ରେସ ଉଭୟଙ୍କର ଏଥିପ୍ରତି ଦୃଷ୍ଟି ଆକୃଷ୍ଟ ହେଲା । ପ୍ରଥମ ହେଉଛି ବଙ୍ଗଳା— ସେଠାରେ ଆତଙ୍କବାଦ ଦବାଇବା ଛଳନାରେ ସରକାର ରାଜନୀତିକ କର୍ମୀମାନଙ୍କ ବିରୁଦ୍ଧରେ ଗୁରୁତର ଅଭିଯାନ ଚଳାଇଲେ । ଏକ ନୂତନ ଓ ଅତ୍ୟନ୍ତ କଠୋର ଅର୍ଡିନାନ୍‌ସ ଜାରି ହେଲା ଏବଂ ଦିଲ୍ଲୀ ଚୁକ୍ତି ପରେ ସୁଦ୍ଧା ବଙ୍ଗଳାରେ ଶାନ୍ତି ଆସିଲା ନାହିଁ ।

ଦ୍ୱିତୀୟ ସମସ୍ୟା ହେଲା ସୀମାନ୍ତ ପ୍ରଦେଶରେ । ଏଠାରେ ରାଜନୀତିକ ଜାଗରଣ ଫଳରେ ଲୋକେ ଏବେସୁଦ୍ଧା କାର୍ଯ୍ୟରେ ବ୍ରତୀ ହେଉଥାନ୍ତି । ଖାଁ ଅବଦୁଲ ଗଫୁର ଖାଁଙ୍କ ନେତୃତ୍ୱରେ ଏକ ପ୍ରକାଣ୍ଡ, ଶୃଙ୍ଖଳାବଦ୍ଧ ଅଥଚ ଶାନ୍ତିପୂର୍ଣ୍ଣ ସଂଗଠନ ବିସ୍ତାର ଲାଭକଲା । ଏହାକୁ 'ଖୁଦାଇ ଖିଦ୍‌ମତ୍‌ଗାର୍' କୁହାଯାଉଥିଲା ଏବଂ ବେଳେ ବେଳେ 'ଲାଲକୁର୍ତ୍ତା ଦଳ' ବୋଲି କୁହାଯାଏ—ଏହା ତାଙ୍କର ଲାଲ ପୋଷାକ ହେତୁ (ସୋସଲିଷ୍ଟ ବା କମ୍ୟୁନିଷ୍ଟଙ୍କର କୌଣସି ସଂବନ୍ଧ ହେତୁ ନୁହେଁ) । ସରକାର ଏହି ଆନ୍ଦୋଳନକୁ ଆଦୌ ଭଲ ପାଇଲା ନାହିଁ । ସେ ଏଥିରେ ଭୟ କଲା; କାରଣ ଭଲ ପଠାଣ ଯୋଦ୍ଧାର ମୂଲ୍ୟ ତାକୁ ଜଣା ଥିଲା ।

ତୃତୀୟ ସମସ୍ୟା ଉଠିଲା ଯୁକ୍ତପ୍ରଦେଶରେ । ବିଶ୍ୱବ୍ୟାପୀ ଦୁର୍ଗତି ଓ ଦରହ୍ରାସ ଫଳରେ ଗରିବ ପ୍ରଜା ଉପରେ ବଡ଼ ଚାପ ପଡ଼ିଲା । ସେ ଖଜଣା ଦେଇ ପାରିଲା ନାହିଁ । ତାକୁ କେତେକ ଛାଡ଼ ଦିଆଗଲା; କିନ୍ତୁ ତାହା ଯଥେଷ୍ଟ ବୋଲି ଗଣ୍ୟ କରାଗଲା ନାହିଁ । ଏଥିରେ କଂଗ୍ରେସ ମଧ୍ୟସ୍ଥି କରିବାକୁ ଚେଷ୍ଟା କଲା; କିନ୍ତୁ ବିଶେଷ କୃତକାର୍ଯ୍ୟ ହେଲା ନାହିଁ । ୧୯୩୧ ନଭେମ୍ବର ମାସରେ ଯେତେବେଳେ ଖଜଣା ଅସୁଲ ବେଳ ପଡ଼ିଥିଲା, ସେତେବେଳେ ଘଟଣା ସଙ୍କଟଜନକ ହେଲା । କଂଗ୍ରେସ ଏଲ୍ଲାହାବାଦ ଜିଲ୍ଲାରୁ ପ୍ରଥମେ ଆରମ୍ଭ କଲା ଏବଂ କୃଷକ ଓ ଜମିଦାରମାନଙ୍କୁ ପରାମର୍ଶ ଦେଲା ଯେ ଖଜଣା ଛାଡ଼ ଦେବା ବିଷୟରେ ଗୋଟାଏ ନିଷ୍ପତ୍ତି ନ ହେବା ପର୍ଯ୍ୟନ୍ତ କେହି ଖଜଣା ଓ ରାଜସ୍ୱ ଦିଅନ୍ତୁ ନାହିଁ । ସାଙ୍ଗେ ସାଙ୍ଗେ ସରକାର ଏହା ବିରୁଦ୍ଧରେ ଯୁକ୍ତପ୍ରଦେଶରେ ଏକ ଅର୍ଡ଼ିନାନ୍‌ସ ଜାରି କଲା । ଏହା ଏକ କଠୋର ଓ ବ୍ୟାପକ ଅର୍ଡ଼ିନାନ୍‌ସ— ଜିଲା ଅଫିସରଙ୍କ ହାତରେ ସମସ୍ତ ପ୍ରକାର କାର୍ଯ୍ୟ ଦମନ କରିବାପାଇଁ ଏବଂ ଏପରି କି ବ୍ୟକ୍ତିବିଶେଷଙ୍କ ଚାଲଚଳନରେ ବାଧା ଦେବା ପାଇଁ କ୍ଷମତା ଦେଲା ।

ଏହା ସାଙ୍ଗକୁ ପୁଣି ସୀମାନ୍ତ ପ୍ରଦେଶରେ ଦୁଇଟି ଅଦ୍ଭୁତ ଅର୍ଡିନାନ୍‌ସ ଜାରି ହୋଇଗଲା ଏବଂ ସେଠାରେ ଓ ଯୁକ୍ତପ୍ରଦେଶରେ ନେତୃସ୍ଥାନୀୟ କଂଗ୍ରେସ ଲୋକେ ଗିରଫ ହେଲେ । ଏହିବର୍ଷ ଶେଷ ସପ୍ତାହକୁ କୌଣସି ସଫଳତା ନ ପାଇ ଗାନ୍ଧୀ ଯେତେବେଳେ ଲଣ୍ଡନରୁ ଫେରନ୍ତି, ସେତେବେଳେ ତାଙ୍କୁ ଏପରି ଅବସ୍ଥାର ସମ୍ମୁଖୀନ ହେବାକୁ ପଡ଼ିଲା । ତିନୋଟି ପ୍ରଦେଶରେ ଅର୍ଡ଼ିନାନ୍‌ସ ରାଜୁତି ହୋଇଥିଲା ଏବଂ ତାଙ୍କର କେତେକ ସହକର୍ମୀ

ଆଗରୁ ଜେଲରେ ଭର୍ତ୍ତି ହୋଇ ସାରିଥିଲେ । ଏକସପ୍ତାହ ଭିତରେ କଂଗ୍ରେସ ପୁଣି ଆଇନ ଅମାନ୍ୟ ଆରମ୍ଭ କଲା ଏବଂ ସରକାର ମଧ୍ୟ ହଜାର ହଜାର କଂଗ୍ରେସ କମିଟି ଓ ଏଥି-ସଂପୃକ୍ତ ଅନେକ ଅନୁଷ୍ଠାନକୁ ବେଆଇନ କରିଦେଲା ।

୧୯୩୦ ଅପେକ୍ଷା ଏହି ସଂଗ୍ରାମ ଅଧିକ କଠିନ ଥିଲା । ପୂର୍ବ ଅଭିଜ୍ଞତାରୁ ଶିକ୍ଷା କରି ସରକାର ଏଥିଲାଗି ଆଗରୁ ସତର୍କ ସହିତ ପ୍ରସ୍ତୁତ ହୋଇଥିଲା । ନ୍ୟାୟପରତାର ଆବରଣ ଏବଂ ଆଇନର ପରଦାସବୁ ଫୋପାଡ଼ି ଦିଆଗଲା ଏବଂ ସର୍ବଗ୍ରାସୀ ଅର୍ଡିନାନ୍ସ ଅନୁସାରେ ବେସାମରିକ କର୍ମଚାରୀଙ୍କ ଅଧୀନରେ ଦେଶରେ ଏକ ପ୍ରକାର 'ସାମରିକ ଆଇନ' ଚାଲୁହେଲା । ସରକାରର ପ୍ରକୃତ ପାଶବିକ ଶକ୍ତି ଖୁବ୍ ପ୍ରତୀୟମାନ ହେଲା । ଏହା ଏକ ସ୍ୱାଭାବିକ ବୃଦ୍ଧି; କାରଣ ଜାତୀୟତାବାଦୀ ଆନ୍ଦୋଳନ ଯେତେ ଅଧିକ ଶକ୍ତିଶାଳୀ ହେବ ଏବଂ ବିଦେଶୀ ସରକାରର ମୂଳଭିତ୍ତି ଯେତିକି ସଂକଟାପନ୍ନ ହେବ, ସରକାରର ବିରୋଧ ସେତିକି ଭୀଷଣ ହେବ । ମାରଫତ୍‌ନାମା ଓ ସଦିଚ୍ଛା ଜ୍ଞାପନର ପବିତ୍ର ବାକ୍ୟସବୁ କୁଆଡ଼େ ଉଭେଇଗଲା ଏବଂ ତରବାରୀ ଓ ସଂଗୀନ ହିଁ ବିଦେଶୀ ଶାସନର ପ୍ରକୃତ ଖୁଣ୍ଟି ପରି ବୋଧହେଲା । ଆଇନ ଖାଲି ଯେ ଉପରେ ଭାଇସରୟଙ୍କର ଇଚ୍ଛାକୃତ ହେଲା ତାହା ନୁହେଁ; ପ୍ରତ୍ୟେକ ନିମ୍ନତମ କର୍ମଚାରୀ ମଧ୍ୟ ଯାହା ଇଚ୍ଛା ତାହା କରିପାରିଲା – ସେ ଭଲରୂପେ ଜାଣିଥିଲା ଯେ ତାର ଏପରି କାର୍ଯ୍ୟରେ ଉଚ୍ଚପଦସ୍ଥ କର୍ମଚାରୀଙ୍କ ସମର୍ଥନ ପାଇବ । ଭୁତରେ ଜାର ଅମଲ ପରି ଗୁଇନ୍ଦା ଓ ସି ଆଇ.ଡି. ବିଶେଷଭାବରେ ଚାରିଆଡ଼େ ବ୍ୟାପିଗଲେ ଏବଂ ଶକ୍ତିଶାଳୀ ହେଲେ । ଏହାଙ୍କୁ ରୋକିବାର କିଛି ନ ଥିଲା ଏବଂ ନିରଙ୍କୁଶ କ୍ଷମତାର କ୍ଷୁଧା ପ୍ରୟୋଗ ସାଙ୍ଗେ ସାଙ୍ଗେ ବଢ଼ିଲା । ଯେଉଁ ସରକାର ମୁଖ୍ୟତଃ ଗୁପ୍ତ ବିଭାଗ ଜରିଆରେ ଶାସନ କରେ ଏବଂ ଯେଉଁ ଦେଶ ଏହା ଅଧୀନରେ କଷ୍ଟ ଭୋଗେ; ଉଭୟେ ଶୀଘ୍ର ନୀତିଭ୍ରଷ୍ଟ ହୋଇଯାଆନ୍ତି । କାରଣ ପ୍ରତ୍ୟେକ ଗୁପ୍ତ ବିଭାଗ ଏକ ଚକ୍ରାନ୍ତ, ଗୁଇନ୍ଦାଗିରି, ମିଥ୍ୟା, ଆତଙ୍କବାଦ, ଉତ୍ତେଜନା, ମନଗଢ଼ା କଥା, ପରନିନ୍ଦା ଓ ସେହିପରି ବାୟୁମଣ୍ଡଳ ସୃଷ୍ଟି କରେ । ଗଲା ତିନିବର୍ଷରେ ଭାରତରେ ଶ୍ରେଷ୍ଠ ଶ୍ରେଷ୍ଠ କର୍ମଚାରୀ, ପୁଲିସ ଓ ସି.ଆଇ.ଡି.ଙ୍କୁ ଯେଉଁ ଅତ୍ୟଧିକ କ୍ଷମତା ଦିଆଯାଇଛି ଏବଂ ତାହାର ଯେପରି ବ୍ୟବହାର କରାଯାଇଛି ତାହା ଫଳରେ ଏହିସବୁ ବିଭାଗ କ୍ରମେ ଅଧିକ ପାଶବିକ ଓ ଅଧୋଗତି ଆଡ଼କୁ ଯାଇଛନ୍ତି । ଏମାନଙ୍କର ଉଦ୍ଦେଶ୍ୟ ହୋଇଛି ଆତଙ୍କ ଜାତକରିବା ।

ମୁଁ ବିସ୍ତୃତ ବିବରଣୀ ଦେବି ନାହିଁ । ସରକାର ଏତେବେଳେ ଅନୁଷ୍ଠାନ ଓ ବ୍ୟକ୍ତିବିଶେଷଙ୍କର ସଂପତ୍ତି, ଘର, ମଟରଗାଡ଼ି, ବ୍ୟାଙ୍କରେ ଥିବା ଟଙ୍କା ଆଦି ବ୍ୟାପକଭାବରେ ବାଜ୍ୟାପ୍ତ କଲା । କଂଗ୍ରେସର ମଧ୍ୟବିତ୍ତ ଶ୍ରେଣୀର ସମର୍ଥକମାନଙ୍କୁ ଆଘାତ ଦେବା ଉଦ୍ଦେଶ୍ୟରେ ଏହା କରାଗଲା । ଏହି ଅର୍ଡିନାନ୍ସର ଆଉ ଏକ ଶ୍ରେଷ୍ଠ ଅଥଚ ଅପୂର୍ବ ମତଲବ ଥିଲା ପିଲାମାନଙ୍କ ଅପରାଧ ନିମନ୍ତେ ବାପ, ମା ଓ ମୁରବୀମାନଙ୍କୁ ଶାସ୍ତି ଦେବା ।

ଏହିସବୁ ହେଉଥିବାବେଳେ ଭାରତ ବିଷୟରେ ଗୋଟାଏ ଗୋଲମ୍ପୀ ଚିତ୍ର ଦୁନିଆ-ଆଗରେ ବ୍ରିଟିଶ ପ୍ରଚାରଯନ୍ତ୍ର ଆଙ୍କିବାରେ ବ୍ୟସ୍ତ ଥାଏ । ଭାରତରେ ପରିଣାମ ଭୟରେ ସଂବାଦପତ୍ରଗୁଡ଼ିକ ସତ୍ୟକଥା ଛାପିବାକୁ ସାହସ କରୁ ନ ଥିଲେ— ଏପରି କି ଗିରଫ ହେବା ବ୍ୟକ୍ତିଙ୍କ ନାମ ପ୍ରକାଶ କରିବା ମଧ୍ୟ ଏକ ଅପରାଧ ହେଲା ।

କିନ୍ତୁ ଭାରତରେ ବ୍ରିଟିଶ ନୀତିର ଏକ ସ୍ୱକଟିତ ଲକ୍ଷଣ ହେଉଛି ଭାରତର ଅତି ପ୍ରତିକ୍ରିୟାପନ୍ଥୀମାନଙ୍କ ସହ ବନ୍ଧୁତା ସ୍ଥାପନର ଉଦ୍ୟମ । ପ୍ରଗତିଶୀଳ ଶକ୍ତି ସହ ଯୁଦ୍ଧ କରିବା ନିମନ୍ତେ ଆଜି ବ୍ରିଟିଶ ସାମ୍ରାଜ୍ୟ ସାମନ୍ତବାଦୀ ଓ ଅନ୍ୟ ଉଗ୍ର ପ୍ରତିକ୍ରିୟାମୂଳକ ଶକ୍ତି ଉପରେ ନିର୍ଭର କରି ରହିଛି । ବ୍ରିଟିଶ କର୍ତ୍ତୃତ୍ୱ ଭାରତରୁ ଦୂର ହୋଇଗଲେ ସାମାଜିକ ବିପ୍ଳବର ଭୟ ହେବ ବୋଲି ଭୟ ଦେଖାଇ ସେମାନେ "ସ୍ଥାପିତ ସ୍ୱାର୍ଥ" ମାନଙ୍କୁ ନିଜର ସମର୍ଥନ ପାଇଁ ଏକାଠି କରିଛନ୍ତି । ବ୍ରିଟିଶ ସାମ୍ରାଜ୍ୟ ରକ୍ଷା କରିବାରେ ପ୍ରଥମ ହେଉଛନ୍ତି ସାମନ୍ତରାଜା; ତା ପରେ ବଡ଼ ଜମିଦାରଶ୍ରେଣୀ । ଚତୁରତାର ସହିତ ଚକାନ୍ତ କରି ଏବଂ ଉଗ୍ର ସମ୍ପ୍ରଦାୟବାଦୀ-ମାନଙ୍କୁ ଆଗକୁ ଠେଲି ଭାରତର ସ୍ୱାଧୀନତା ପଥରେ ପ୍ରତିବନ୍ଧକ ରୂପେ ସଂଖ୍ୟାଲଘିଷ୍ଠ ସମସ୍ୟା ଆଣି ରଖାହୋଇଛି । ଏବେ ଏକ ଅଦ୍ଭୁତ ଦୃଶ୍ୟ ଦେଖିବାକୁ ମିଳିଲା— ମନ୍ଦିର ପ୍ରବେଶ ପ୍ରଶ୍ନରେ ବ୍ରିଟିଶ ସରକାର ହିନ୍ଦୁଙ୍କ ଭିତରେ ଉଗ୍ର ଧାର୍ମିକ ସମ୍ପ୍ରଦାୟବାଦୀମାନଙ୍କୁ ସହାନୁଭୂତି ଓ ଆଦର ଦେଖାଇଲା । ପ୍ରତ୍ୟେକ ସ୍ଥାନରେ ବ୍ରିଟିଶ ସରକାର ପ୍ରତିକ୍ରିୟା, ସଂକୀର୍ଣ୍ଣ ଧର୍ମାନ୍ଧତା ଓ ଭୁଲପଥରେ ଚାଳିତ ସ୍ୱାର୍ଥସମ୍ପନ୍ନ ବ୍ୟକ୍ତିଙ୍କ ସମର୍ଥନ ପାଇଆସିଛି ।

ଏକ ଗଣସଂଗ୍ରାମରେ ବହୁ ଉପକାର କି ହୁଏ । ଟିକିଏ ଯନ୍ତ୍ରଣାଦାୟକ ହେଲେ ସୁଦ୍ଧା ଜନସାଧାରଣଙ୍କୁ ରାଜନୀତିକ ଶିକ୍ଷା ଦେବା ନିମନ୍ତେ ଏହା ଉତ୍କୃଷ୍ଟ ଓ ଦ୍ରୁତ ପନ୍ଥା । ଜନସାଧାରଣଙ୍କ ପାଇଁ "ବଡ଼ ବଡ଼ ଘଟଣା ଦ୍ୱାରା ଶିକ୍ଷା" ଆବଶ୍ୟକ । ଗଣତାନ୍ତ୍ରିକ ଦେଶ-ମାନଙ୍କରେ ନିର୍ବାଚନ ପରି ସାଧାରଣ ଶାନ୍ତିକାଳର ରାଜନୀତିକ କାର୍ଯ୍ୟ ଅନେକ ସମୟରେ ସାଧାରଣ ଲୋକଙ୍କୁ ଗୋଳମାଳିଆରେ ପକାଇଦିଏ । ବକ୍ତୃତାର ଝଙ୍କା ବହିଯାଏ, ପ୍ରତ୍ୟେକ ପ୍ରାର୍ଥୀ ସବୁ ପ୍ରକାର ସୁନ୍ଦର ପ୍ରତିଶ୍ରୁତି ବାଣୀ ଶୁଣାନ୍ତି ଏବଂ ଗରିବ ଭୋଟର କମ୍ପା କ୍ଷେତ, କାରଖାନା ବା ଦୋକାନରେ କାର୍ଯ୍ୟ କରୁଥିବା ଲୋକ ବିଚରା ଗୋଳମାଳରେ ପଡ଼ିଯାଏ । ଏକ ଦଳ ବା ଅନ୍ୟ ଦଳ ଭିତରେ ସେ ପରିଷ୍କାର ରୂପେ କିଛି ପାର୍ଥକ୍ୟ ଦେଖି ପାରେନା । କିନ୍ତୁ ଗଣସଂଗ୍ରାମ କାଳରେ କମ୍ପା ବିପ୍ଳବବେଳେ ପ୍ରକୃତ ପରିସ୍ଥିତି ପରିଷ୍କାର ପରିସ୍ଫୁଟ ହୁଏ— ସତେ କି ବିଦ୍ୟୁତ୍‌ଦ୍ୱାରା ସବୁ ଆଲୋକିତ ହୋଇଯାଇଛି । ଏପରି ସଙ୍କଟକାଳରେ ଗୋଷ୍ଠୀ, ଶ୍ରେଣୀ ବା ବ୍ୟକ୍ତିବିଶେଷ ସେମାନଙ୍କର ପ୍ରକୃତ ଭାବ ବା ଚରିତ୍ର ଗୋପନ କରିପାରନ୍ତି ନାହିଁ । ସତ୍ୟ ପ୍ରକାଶିତ ହୁଏ । ବିପ୍ଳବକାଳ କେବଳ ଚରିତ୍ର, ସାହସ, ଧୈର୍ଯ୍ୟଶୀଳତା ଓ ନିଃସ୍ୱାର୍ଥ-ପରତାର ପରୀକ୍ଷାବେଳ ନୁହେଁ—ଏହା ବିଭିନ୍ନ ଶ୍ରେଣୀ ଓ ଗୋଷ୍ଠୀ ଭିତରେ ପ୍ରକୃତ ସଂଘର୍ଷକୁ ପଦାକୁ ବାହାର କରି ଆଣେ; ଏତେଦିନ ପର୍ଯ୍ୟନ୍ତ ସୁନ୍ଦର ଓ ଅସ୍ପଷ୍ଟ ବାକ୍ୟାବଳୀରେ ଏହା ଛପି ରହିଥାଏ ।

ଭାରତରେ ଆଇନ ଅମାନ୍ୟ ହେଉଛୁ ଜାତୀୟ ସଂଗ୍ରାମ; ଏହା ନିଶ୍ଚୟ ଶ୍ରେଣୀ-ସଂଗ୍ରାମ ନୁହେଁ । ଏହା ନିର୍ଦ୍ଦିଷ୍ଟରୂପେ ଏକ ମଧ୍ୟବିତ୍ତ ଶ୍ରେଣୀର ଆନ୍ଦୋଳନ । କୃଷକର ସମର୍ଥନ ରହିଛି । ତେଣୁ ଶ୍ରେଣୀ ଆନ୍ଦୋଳନରେ ଶ୍ରେଣୀ ପାର୍ଥକ୍ୟ ଯେପରି ହୋଇଯାଏ ଏଥିରେ ସେପରି ହୋଇପାରିନାହିଁ । ତଥାପି ଏହି ଜାତୀୟ ଆନ୍ଦୋଳନରେ କେତେକ ପରିମାଣରେ ଶ୍ରେଣୀ ସବୁ ଅଲଗା ଅଲଗା ହୋଇ ଯାଇଛନ୍ତି । ସାମନ୍ତ ରାଜା, ତାଲୁକଦାର ଓ ବଡ଼ ଜମିଦାରଙ୍କ ପରି କେତେକ ଶ୍ରେଣୀ ସରକାର ସହି ସଂପୂର୍ଣ୍ଣରୂପେ ମିଶିତା ବାନ୍ଧିଛନ୍ତି; ସେମାନେ ଜାତୀୟ ସ୍ୱାଧୀନତା ଅପେକ୍ଷା ନିଜର ଶ୍ରେଣୀର ସ୍ୱାର୍ଥକୁ ଅଧିକ ଦୃଷ୍ଟି ଦେଇଛନ୍ତି ।

କଂଗ୍ରେସ ନେତୃତ୍ୱରେ ଜାତୀୟ ଆନ୍ଦୋଳନର ବୃଦ୍ଧି ଫଳରେ କୃଷକ ଜନତା କଂଗ୍ରେସରେ ଯୋଗ ଦେଇଛନ୍ତି ଏବଂ ସେମାନଙ୍କ ଉପରେ ଥିବା ଅନେକ ଭାରରୁ ମୁକ୍ତ ହେବାକୁ ଆଶା ବାନ୍ଧିଛନ୍ତି । ଏହା ବହୁପରିମାଣରେ କଂଗ୍ରେସର ଶକ୍ତି ବୃଦ୍ଧି କରିଛି ଏବଂ ଏହା ସାଙ୍ଗେ ସାଙ୍ଗେ ଏହାର ଗଣ ଦୃଷ୍ଟିକୋଣ ହୋଇଛି । ମଧ୍ୟବିତ୍ତ ଶ୍ରେଣୀର ନେତୃତ୍ୱ ରହିଛି, ତଥାପି ତଳର ଚାପରେ ଏହା ପରିଚାଳିତ ହୋଇଛି ଏବଂ କୃଷକ ଓ ସାମାଜିକ ସମସ୍ୟା ପ୍ରତି ଅଧିକରୁ ଅଧିକ ଭାବରେ କଂଗ୍ରେସ ଦୃଷ୍ଟି ଦେଇଛି । ସାମ୍ୟବାଦ ଆଡ଼କୁ କ୍ରମେ ମନୋବୃତ୍ତି ଯାଉଛି । ୧୯୩୧ ରେ କରାଚୀ କଂଗ୍ରେସରେ ମୌଳିକ ଅଧିକାର ଓ ଆର୍ଥନୀତିକ କାର୍ଯ୍ୟପନ୍ଥା ସମ୍ବନ୍ଧରେ ଯେଉଁ ଗୁରୁତ୍ୱର ପ୍ରସ୍ତାବ ପାଶ୍ ହେଲା, ସେଥିରୁ ଏହାର ପ୍ରମାଣ ମିଳେ । ଏହି ପ୍ରସ୍ତାବରେ ଧାର୍ଯ୍ୟ ହୋଇଛି, ସ୍ୱାଧୀନ ଦେଶର ଶାସନ ବିଧାନରେ କେତେକ ସୁପ୍ରତିଷ୍ଠିତ ଗଣତାନ୍ତ୍ରିକ ଅଧିକାର ଓ ସ୍ୱାଧୀନତା ଏବଂ ସଂଖ୍ୟାଲଘିଷ୍ଠ ଅଧିକାର ବିଷୟରେ ନିର୍ଭରତା ରହିବା ଦରକାର । ଏଥିରେ ଆହୁରି ରହିଛି ଯେ ମୂଳ ଓ ଅସଲ ଶିଳ୍ପ ଓ ବିଭାଗ ସବୁ ସରକାର ଦ୍ୱାରା ନିୟନ୍ତ୍ରିତ ହେବ । ସ୍ୱାଧୀନତା ସଂଗ୍ରାମର ଅର୍ଥ ରାଜନୀତିକ ସ୍ୱାଧୀନତା ଛଡ଼ା ଆଉ କିଛି ଅଧିକା ବୁଝାଇଲା ଏବଂ ଏକ ସାମାଜିକ ରୂପ ଏହାକୁ ଦିଆଗଲା । ପ୍ରକୃତ ପ୍ରଶ୍ନ ହେଲା ଜନସାଧାରଣଙ୍କର ଦାରିଦ୍ର୍ୟ ଓ ଶୋଷଣ ଶେଷ କରିବା । ସ୍ୱାଧୀନତା ଏହି ଲକ୍ଷ୍ୟ ହାସଲର ଏକ ପନ୍ଥା ମାତ୍ର ।

ଭାରତରେ ଆଇନ ଅମାନ୍ୟ ଲଢ଼ାଇ ଚାଲିଥିଲାବେଳେ ଏବଂ ବହୁସଂଖ୍ୟକ ରାଜନୀତିକ କର୍ମୀ ଜେଲରେ ଥିଲାବେଳେ ବ୍ରିଟିଶ ଗଭର୍ଣ୍ଣମେଣ୍ଟ ଭାରତୀୟ ଶାସନ ବିଧାନରେ ସଂସ୍କାର କରିବା ନିମନ୍ତେ ପ୍ରସ୍ତାବମାନ ବାଢ଼ିଲେ । ଏକ ସଙ୍କୁଚିତ ଧରଣର ପ୍ରାଦେଶିକ ସ୍ୱତନ୍ତ୍ରତା ପ୍ରସ୍ତାବ କରାଗଲା ଏବଂ ଏକ ରାଷ୍ଟ୍ରସଙ୍ଘ ପ୍ରସ୍ତାବ ହେଲା—ଏଥିରେ ସାମନ୍ତ ରାଜା-ମାନଙ୍କର ପ୍ରାଧାନ୍ୟ ଜାରି ରହିବ । ସେମାନଙ୍କର ସ୍ୱାର୍ଥରକ୍ଷା ପାଇଁ କେବଳ ନୁହେଁ, ଭାରତରେ ତାଙ୍କର ଧନ ପ୍ରକାର କର୍ତ୍ତବ୍ୟ ଯଥା—ମିଲ୍‌ଟାରୀ, ସିଭିଲ ଓ ବାଣିଜ୍ୟଗତ ଦଫଲକୁ ଦୃଢ଼ କରିବା ନିମନ୍ତେ ମଣିଷ ବୁଦ୍ଧିକି ପଇଟିଲା ପରି ସମସ୍ତ ପ୍ରକାର ଉପାୟ ବାହାରକରି ନାନା ହାତରେପାଞ୍ଚ ମଧ୍ୟ ରଖାଗଲା । ପ୍ରତ୍ୟେକ ସ୍ଥାପିତ ସ୍ୱାର୍ଥର ପୂର୍ଣ୍ଣ ସଂରକ୍ଷଣ କରାଗଲା ଏବଂ ଏଥିରେ ସର୍ବଶ୍ରେଷ୍ଠ ହେଉଛି ବ୍ରିଟେନର ସ୍ୱାର୍ଥ—ତାହା ଖୁବ୍ ଫଳପ୍ରଦ ଭାବରେ ସୁରକ୍ଷିତ

ହେଲା । କେବଳ ଭାରତର ୩୫ କୋଟି ଲୋକଙ୍କର ସ୍ୱାର୍ଥ ପ୍ରତି ଦୃଷ୍ଟି ଦିଆଯାଇ ନ ଥିଲା । ଏହି ପ୍ରସ୍ତାବ ଉପରେ ଭାରତରେ ଏକ ବିରୋଧ ଝଡ଼ୀ ବୋହିଗଲା ।

ମୁଁ ବର୍ମା କଥା ଛାଡ଼ିଯାଇଛି ଏବଂ ସେ ବିଷୟରେ ଟିକେ କିଛି କହିବି । ୧୯୩୦ ବା ୧୯୩୨ର ଆଇନ ଅମାନ୍ୟ ଆନ୍ଦୋଳନରେ ବର୍ମୀ ଲୋକେ ଯୋଗ ଦେଇ ନ ଥିଲେ । ଅତ୍ୟନ୍ତ ଆର୍ଥିକ ଦୁର୍ଗତି ହେତୁ ୧୯୩୦ ଓ ୧୯୩୧ରେ ଉତ୍ତର ବର୍ମାରେ ଏକ ବଡ଼ କୃଷକ ବିଦ୍ରୋହ ହୋଇଥିଲା । ବ୍ରିଟିଶ ସରକାର ଅତ୍ୟନ୍ତ ବର୍ବରତା ସହକାରେ ତାହା ଦମନ କଲା । ଏବେ ରାଜନୀତିକ ଭାବରେ ଭାରତରୁ ବର୍ମାକୁ ଅଲଗା କରିବାର ଉଦ୍ୟମ ହେଉଛି । ତାହା ହେଲେ ଭାରତ ସ୍ୱାଧୀନତା ପାଇଲେ ସୁଦ୍ଧା ବର୍ମା ବ୍ରିଟିଶ ସାମ୍ରାଜ୍ୟବାଦ ଦ୍ୱାରା ସେପରି ଶୋଷିତ ହେଉଥିବ । ବର୍ମାର ତେଲ, କାଠ ଓ ଖଣିଜ ସମ୍ପଦ ନିମନ୍ତେ ଖୁବ୍ ଗୁରୁତ୍ୱ ରହିଛି ।

ଟିପ୍‌ପଣୀ ( ଅକ୍‌ଟୋବର ୧୯୩୮ ) :—

ସାଢ଼େ ପାଞ୍ଚ ବର୍ଷ ପୂର୍ବେ ଜେଲରେ ଏହି ଚିଠି ଲେଖା ହେବା ପରେ ଭାରତରେ ଅନେକ ପରିବର୍ତ୍ତନ ହୋଇଯାଇଛି । ଅଳ୍ପ ଆକାରରେ ସେତେବେଳେ ଆଇନ ଅମାନ୍ୟ ଆନ୍ଦୋଳନ ଚାଲୁଥାଏ ଏବଂ ବହୁସଂଖ୍ୟକ କଂଗ୍ରେସ ଲୋକ ଜେଲରେ ଥାଆନ୍ତି । କଂଗ୍ରେସ ହଜାର ହଜାର କଂଗ୍ରେସ କମିଟି ଓ ଅନ୍ୟ ସଂପୃକ୍ତ ଅନୁଷ୍ଠାନ ସହ ବେଆଇନ ଘୋଷିତ ହୋଇଥିଲା । ୧୯୩୪ରେ କଂଗ୍ରେସ ଆଇନ ଅମାନ୍ୟ ସ୍ଥଗିତ ରଖିଲା ଏବଂ ସରକାର କଂଗ୍ରେସ ଉପରୁ ନିଷେଧାଜ୍ଞା ଉଠାଇନେଲା । କଂଗ୍ରେସର ବ୍ୟବସ୍ଥା ବର୍ଜନର ପୁରାତନ ନୀତି ବଦଳାଇଲା ଏବଂ କେନ୍ଦ୍ର ଆସେମ୍ବ୍ଲି ପାଇଁ ନିର୍ବାଚନ ଲଢ଼ିଲା—ବହୁ ସଫଳତା ଲାଭକଲା ।

୧୯୩୫ରେ ଦୀର୍ଘ ଆଲୋଚନା ପରେ ବ୍ରିଟିଶ ପାର୍ଲ୍ୟାମେଣ୍ଟରେ ଭାରତ ଶାସନ ବିଧାନ ପାଶ୍ ହୋଇଗଲା—ଏଥିରେ ଭାରତ ପାଇଁ ଏକ ନୂତନ ଶାସନ ଖସଡ଼ା ଧାର୍ଯ୍ୟ ହେଲା । ଏହା ଅନୁଯାରେ ଅସଂଖ୍ୟ ହାତରପାଞ୍ଚ ସହ ଏକପ୍ରକାର ପ୍ରାଦେଶିକ ସ୍ୱାତନ୍ତ୍ର୍ୟ (Provincial Autonomy) ରହିବ ଏବଂ ପ୍ରଦେଶ ଓ ଦେଶୀୟ ରାଜ୍ୟ ଭିତରେ ଏକ ରାଷ୍ଟ୍ରସଂଘ ସ୍ଥାପିତ ହେବ । ଭାରତରେ ସବୁଆଡ଼େ ଏହି ଆଇନର ବିରୋଧ କରାଗଲା ଏବଂ କଂଗ୍ରେସ ଏହା ପ୍ରତ୍ୟାଖ୍ୟାନ କଲା । ଗଭର୍ଣ୍ଣର ଓ ଭାଇସରୟଙ୍କ ହାତରେ ଥିବା ହାତରପାଞ୍ଚ ଓ "ବିଶେଷ କ୍ଷମତା"କୁ ବେଶି ଆପତ୍ତି କରାଗଲା—ଏହା ପ୍ରାଦେଶିକ ସ୍ୱାତନ୍ତ୍ର୍ୟର ସାର ନେଇଯାଉଛି ବୋଲି କୁହାହେଲା । ରାଷ୍ଟ୍ରସଂଘକୁ ଆହୁରି ଦୃଢ଼ଭାବରେ ବିରୋଧ କରାଗଲା—କାରଣ ଏହା ଦେଶୀୟ ରାଜ୍ୟମାନଙ୍କରେ ଏକଚ୍ଛତ୍ର ଶାସନ କାଏମ ରଖିଲା ଏବଂ ସାମନ୍ତବାଦୀ ଓ ସ୍ୱେଚ୍ଛାଚାରୀ ଅଞ୍ଚଳ ଓ ଅର୍ଦ୍ଧ-ଗଣତନ୍ତ୍ର ପ୍ରଦେଶ ଭିତରେ ଏକ ଅସ୍ୱାଭାବିକ ଓ ଅକାର୍ଯ୍ୟକାରୀ ମିଳନ ବ୍ୟବସ୍ଥା କଲା । ଭାରତର ରାଜନୀତିକ ଓ ସାମାଜିକ ପ୍ରଗତିରେ ବାଧା ଦେବା ନିମନ୍ତେ ଏହା ଏକ ସୁଚିନ୍ତିତ ଉଦ୍ୟମ ବୋଲି ଲୋକେ ବିଶ୍ୱାସକଲେ ଏବଂ ମନେକଲେ ପ୍ରତ୍ୟକ୍ଷ ଭାବରେ ଓ ସାମନ୍ତ ରାଜାମାନଙ୍କ ଦ୍ୱାରା ଭାରତରେ ବ୍ରିଟିଶ ସାମ୍ରାଜ୍ୟବାଦର କର୍ତ୍ତୃତ୍ୱ ଜାରି

ରକ୍ଷିବା ନିମନ୍ତେ ଏହା ଏକ ଉଦ୍ୟମ । ନୂତନ ଶାସନ ଯନ୍ତ୍ରଦ୍ୱାରେ ସାଂପ୍ରଦାୟିକ ବ୍ୟବସ୍ଥା ସ୍ଥିର ହେଲା—ଏଥିରେ ବହୁସଂଖ୍ୟକ ଅଲଗା ନିର୍ବାଚନମଣ୍ଡଳୀ ସୃଷ୍ଟି କରାଗଲା । କେତେକ ସଂଖ୍ୟାଲଘିଷ୍ଠ ସଂପ୍ରଦାୟ ଏହାର ସ୍ୱାଗତ କଲେ; ସେମାନେ କେତେକ ପରିମାଣରେ ଏଥିରେ ଲାଭବାନ ହେଲେ; କିନ୍ତୁ ଅଗଣତାନ୍ତ୍ରିକ ଓ ପ୍ରଗତି ପଥରେ ଅନ୍ତରାୟ ବୋଲି ଏହାର ନିନ୍ଦା କରାଗଲା ।

ଭାରତ ଶାସନ ବିଧାନର ପ୍ରାଦେଶିକ ସ୍ୱାତନ୍ତ୍ର୍ୟ ଅନୁସାରେ ଭାରତ ସାରା ନିର୍ବାଚନ ହେଲା । କଂଗ୍ରେସ ଶାସନବିଧାନକୁ ପ୍ରତ୍ୟାଖ୍ୟାନ କରି ସୁଦ୍ଧା ନିର୍ବାଚନରେ ଯୋଗଦେବା ନିମନ୍ତେ ସ୍ଥିର କଲା, ଏବଂ ଦେଶର ସବୁଆଡ଼େ ଅତ୍ୟନ୍ତ ବ୍ୟାପକ ଓ ପ୍ରବଳ ନିର୍ବାଚନ ଆନ୍ଦୋଳନ କରାଗଲା । ଅଧିକ ସଂଖ୍ୟକ ପ୍ରଦେଶରେ କଂଗ୍ରେସର ଅପୂର୍ବ ସାଫଲ୍ୟ ହେଲା ଏବଂ ଅଧିକାଂଶ ନୂତନ ପ୍ରାଦେଶିକ ବ୍ୟବସ୍ଥାସଭାରେ କଂଗ୍ରେସ ଦଳ ବହୁମତ ହେଲା । ସେମାନେ ପ୍ରାଦେଶିକ ସରକାରରେ ମନ୍ତ୍ରୀପଦ ଗ୍ରହଣ କରିବେ କି ନାହିଁ—ଏ ପ୍ରଶ୍ନ ଖୁବ ଗରମାଗରମ ଭାବରେ ଆଲୋଚନା ହେଲା । ଶେଷରେ କଂଗ୍ରେସ ମନ୍ତ୍ରୀପଦ ଗ୍ରହଣ କରିବା ସପକ୍ଷେ ସ୍ଥିର କଲା; କିନ୍ତୁ ଏହା ପରିଷ୍କାର କରିଦେଲା ଯେ ସ୍ୱାଧୀନତାର ପୂର୍ବତନ ଉଦ୍ଦେଶ୍ୟ ଓ ପୂର୍ବତନ ନୀତି ସେହିପରି ରହିଛି ଏବଂ ସେହି ନୀତି ଅଗ୍ରସର କରାଇବ ଏବଂ ଦେଶର ସ୍ୱାଧୀନତା ସଂଗ୍ରାମକୁ ଦୃଢ଼ କରିବା ନିମନ୍ତେ ଅଫିସ ଗ୍ରହଣ କରାଯିବ । ଅଧିକନ୍ତୁ ମଧ୍ୟ ସ୍ଥିର ହେଲା, ଗଭର୍ଣ୍ଣର ସବୁ ହାତରପାଞ୍ଚ କ୍ଷମତା ବ୍ୟବହାର କରିବେ ନାହିଁ ।

ଏହା ଫଳରେ ୭ଟି ପ୍ରଦେଶ ଯଥା ବମ୍ବେ, ମାନ୍ଦ୍ରାଜ, ଯୁକ୍ତପ୍ରଦେଶର ବିହାର, ମଧ୍ୟପ୍ରଦେଶ, ଓଡ଼ିଶା ଓ ଉତ୍ତରପଶ୍ଚିମ ସୀମାନ୍ତ ପ୍ରଦେଶରେ କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଢ଼ାଗଲା । କେତେଦିନ ପରେ ଆସାମରେ କଂଗ୍ରେସ ଏକ ମିଳିତ ମନ୍ତ୍ରୀମଣ୍ଡଳ ଗଢ଼ିଲା । ବଙ୍ଗଳା ଓ ପଞ୍ଜାବ ଏହି ଦୁଇଟି ବଡ଼ ପ୍ରଦେଶରେ ଅଣକଂଗ୍ରେସ ମନ୍ତ୍ରୀମଣ୍ଡଳ ଥିଲା ।

କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଢ଼ାହେବାରେ ରାଜବନ୍ଦୀ ସବୁ ମୁକ୍ତ ହେଲେ ଏବଂ ସେସବୁ ଅଞ୍ଚଳରେ ନାଗରିକ ଅଧିକାର ଉପରେ କଟକଣା ଉଠିଲା । ଜନତା ଏହି ପରିବର୍ତ୍ତନକୁ ସ୍ୱାଗତ କଲା ଏବଂ ଅବସ୍ଥାର ଦ୍ରୁତ ଉନ୍ନତି ଆଶା କରି ରହିଲା । ଲୋକଙ୍କ ଭିତରେ ରାଜନୀତିକ ଚେତନା ଦ୍ରୁତବେଗରେ ବଢ଼ିଲା ଏବଂ କୃଷକ ଓ ଶ୍ରମିକ ଆନ୍ଦୋଳନସବୁ ବଳ ସଞ୍ଚାର କଲା । ଅନେକ ଧର୍ମଘଟ ହେଲା । କୃଷକମାନଙ୍କର ବୋଝ ହାଲୁକା କରିବା ନିମନ୍ତେ ମନ୍ତ୍ରୀମଣ୍ଡଳ ସାଙ୍ଗେ ସାଙ୍ଗେ ଭୂମି ସଂକ୍ରାନ୍ତ ଓ ଋଣ ସଂକ୍ରାନ୍ତ ଆଇନ କଲେ ଏବଂ ଶିଳ୍ପ ସଂପର୍କୀୟ ଶ୍ରମିକଙ୍କ ଅବସ୍ଥା ଉନ୍ନତ କରିବା ନିମନ୍ତେ ଚେଷ୍ଟା କଲେ । କିଛି କରାଗଲା; କିନ୍ତୁ ସେମାନେ ଯେପରି ପରିସ୍ଥିତିରେ ଥିଲେ ଓ ବିଧାନର ସୀମା ଭିତରେ ସେମାନଙ୍କୁ କାର୍ଯ୍ୟ କରିବାକୁ ପଡ଼ିବାରୁ କୌଣସି ସୁଦୂରଗାମୀ ସାମାଜିକ ପରିବର୍ତ୍ତନ କରାଯାଇ ପାରି ନ ଥିଲା ।

କଂଗ୍ରେସ ମନ୍ତ୍ରୀ ଓ ଗଭର୍ଣ୍ଣରମାନଙ୍କ ଭିତରେ ବରାବର ବିବାଦ ଲାଗିଲା ଏବଂ ଦୁଇଥର ମନ୍ତ୍ରୀମାନେ ଇସ୍ତଫା ଦାଖଲ କଲେ । ଏହି ଇସ୍ତଫାପତ୍ର ଗୃହୀତ ହୋଇଥିଲେ

କଂଗ୍ରେସ ଓ ବ୍ରିଟିଶ ସରକାର ଭିତରେ ଗୋଟାଏ ବଡ଼ ଧରଣର ସଂଘର୍ଷ ହୋଇଥାଆନ୍ତା। ସରକାର ଏହା ଇଚ୍ଛା କରୁ ନ ଥିଲେ ଏବଂ ତେଣୁ ମନ୍ତ୍ରୀମାନଙ୍କ କଥା ରହିଲା। ଯାହାହେଉ ଅବସ୍ଥା ବଡ଼ ଅନିଶ୍ଚିତ ଏବଂ ସଂଘର୍ଷ ହେବା ଅନିବାର୍ଯ୍ୟ। କଂଗ୍ରେସ ପକ୍ଷରେ ଏହା ଏକ ଅସ୍ଥାୟୀ ପ୍ରବାହ—ତାର ଉଦ୍ଦେଶ୍ୟ ସ୍ୱାଧୀନତା ସେହିପରି ରହିଛି।

ରାଷ୍ଟ୍ରସଂଘ ଜବରଦସ୍ତି ଲଦିବାପାଇଁ ବ୍ରିଟିଶ ସରକାର ଉଦ୍ୟମ କଲେ ଏକ ବଡ଼ ସଂଘର୍ଷ ହୋଇପାରେ। ଏହାପ୍ରତି ଦୃଢ଼ ବିରୋଧ ଥିବାରୁ ଏ ପର୍ଯ୍ୟନ୍ତ ଏହା ଚେଷ୍ଟା କରାଯାଇ ନାହିଁ। ଏଥିପୂର୍ବରୁ ଯେକୌଣସି ସମୟ ଅପେକ୍ଷା କଂଗ୍ରେସ ଆଜି ଅତି ଅଧିକ ଶକ୍ତିଶାଳୀ ହୋଇଛି ଏବଂ ଏହାକୁ ଅବଜ୍ଞା କରିହେବ ନାହିଁ। ପ୍ରସ୍ତାବିତ ରାଷ୍ଟ୍ରସଂଘକୁ ନ ମାନିବା ପାଇଁ ଏହା ମନସ୍ଥ କରିସାରିଛି। କଂଗ୍ରେସର ଦାବୀ ହେଉଛି ଏକ ବୈଧାନିକ ସଭା ଗଣ ପରିଷଦ (Constituent Assembly) – ଏହା ସାବାଳକ ଭୋଟଦ୍ୱାରା ନିର୍ବାଚିତ ହେବ ଏବଂ ସ୍ୱାଧୀନ ଭାରତ ଲାଗି ଶାସନ ଖସଡ଼ା ତିଆରି କରିବ।

ସାଂପ୍ରଦାୟିକ ସମସ୍ୟା ପୁଣି ଭାରତରେ ପ୍ରଧାନ ହୋଇ ଉଠିଛି ଏବଂ ବିବାଦ ଲାଗିଛି। ଯାହାହେଉ ଆର୍ଥନୀତିକ ଓ ସାମାଜିକ ପ୍ରଶ୍ନସବୁ ପ୍ରତି ବେଶି ନଜର ପକାଇବାର ଗୋଟାଏ ପ୍ରବୃତ୍ତି ଦେଖାଯାଉଛି। ସେହି ହିସାବରେ ସାଂପ୍ରଦାୟିକ ଓ ଧାର୍ମିକ ବିଭିନ୍ନତାରୁ ଏହା ଦୃଷ୍ଟି ଫେରାଇ ନେବ।

ଭାରତର ଗଣ ଜାଗରଣ ଭାରତୀୟ ଦେଶୀୟ ରାଜ୍ୟରେ ବିସ୍ତାର ଲଭିଲା ଏବଂ ଦାୟିତ୍ୱମୂଳକ ଶାସନ ଦାବୀ କରି ଅନେକ ଦେଶୀୟ ରାଜ୍ୟରେ ଶକ୍ତିଶାଳୀ ଆନ୍ଦୋଳନ ଆରମ୍ଭ ହୋଇଛି। ବଡ଼ ବଡ଼ ଦେଶୀୟ ରାଜ୍ୟମାନଙ୍କ ଭିତରେ ମହୀଶୂର, କାଶ୍ମୀର ଓ ତ୍ରାଭାଙ୍କୋରରେ ଏହା ଉଲ୍ଲେଖଯୋଗ୍ୟ। ବିଶେଷଭାବରେ ତ୍ରାଭାଙ୍କୋରରେ ଏବେ ଷ୍ଟେଟ କର୍ତ୍ତୃପକ୍ଷମାନେ ପାଶବିକ ଦମନ ଓ ହିଂସାଦ୍ୱାରା ଏହି ଦାବୀ ଦବାଇଛନ୍ତି। ଅନେକ ଅର୍ଦ୍ଧ-ସାମନ୍ତ ଷ୍ଟେଟ (କାଶ୍ମୀର ପରି)ର ଶାସନ ବ୍ରିଟିଶ କର୍ମଚାରୀଙ୍କ ଦ୍ୱାରା ପରିଚାଳିତ ହେଉଛି।

ଗତ କେତେବର୍ଷ ହେଲା ଆନ୍ତର୍ଜାତିକ ବ୍ୟାପାରରେ ଭାରତର ଅଧିକ ଆଗ୍ରହ ଦେଖାଯାଉଛି ଏବଂ ପୃଥିବୀ ସମସ୍ୟା ସହ ନିଜର ସମସ୍ୟା ତୁଳନା କରି ଦେଖିବାକୁ ଚେଷ୍ଟା କରୁଛି। ଆବିସିନିଆ, ସ୍ପେନ୍, ଚୀନ, ଚେକୋସ୍ଲୋଭାକିଆ ଓ ପାଲେଷ୍ଟାଇନ ଘଟଣାବଳୀରେ ଭାରତ ଲୋକେ ଗଭୀର ଭାବରେ ବିଚଳିତ ହୋଇଛନ୍ତି ଏବଂ କଂଗ୍ରେସ ଏକ ବୈଦେଶିକ ନୀତି ବିଧାନ କରିବା ଆରମ୍ଭ କରିଛି। ଏହି ନୀତି ଶାନ୍ତି ଓ ଗଣତନ୍ତ୍ର ସମର୍ଥନରେ ପ୍ରତିଷ୍ଠିତ। ଏହା ସମାନ ଭାବରେ ସାମ୍ରାଜ୍ୟବାଦ ଓ ଫାସିଜମ୍‌ର ବିରୋଧୀ।

୧୯୩୭ରେ ବର୍ମାକୁ ଭାରତରୁ ପୃଥକ୍ କରାଯାଇଛି। ଭାରତରେ ପ୍ରାଦେଶିକ ବ୍ୟବସ୍ଥାପକମାନଙ୍କ ପରି ଏଠାରେ ଏକ ବ୍ୟବସ୍ଥା ପରିଷଦର ସ୍ଥାପନା କରାଯାଇଛି।

●